
ବଳରାମ ଦାସଙ୍କ କୃତ
ଜଗମ୍ମୋହନ ରାମାୟଣ
ବା
ଦାଣ୍ଡି ରାମାୟଣ
ପ୍ରକାଶକ : ଧର୍ମଗ୍ରନ୍ଥ ଷ୍ଟୋର, ଅଲିଶା ବଜାର, କଟକ - ୨

ସନ୍ଥକବି ବଳରାମ ଦାସଙ୍କ ବିରଚିତ

# ଜଗମୋହନ ରାମାୟଣ

# ବା

# ଦାଣ୍ଡି ରାମାୟଣ

(ପ୍ରାଚୀନ ତାଳପତ୍ର ପୋଥିରୁ ସଂଗୃହୀତ)

## ଉତ୍ତରା କାଣ୍ଡ

ସଂଗ୍ରାହକ - ଶ୍ରୀ ତାରେଶ୍ୱର ଚୌଧୁରୀ
ଶ୍ରୀ ବନମାଳୀ ଚୌଧୁରୀ

(ନୂତନ ମୁଦ୍ରଣ)

ପ୍ରକାଶକ ଓ ପ୍ରାପ୍ତିସ୍ଥାନ :




ଧର୍ମଗ୍ରନ୍ଥ ଷ୍ଟୋର
ପ୍ରତିଷ୍ଠାତା : ୰ ବିଦ୍ୟାଧର ସାହୁ
ପ୍ରୋ : ମହିମା ପ୍ରସାଦ ସାହୁ
ଅଲିଶା ବଜାର, କଟକ- ୭୫୩୦୦୨
ଫୋନ୍ ନଂ- (୦୬୭୧) ୨୫୦୮୨୯୬

# ବିଜ୍ଞାପନ

**ଧର୍ମପିପାସୁ ସୁଧୀବୃନ୍ଦ !**

ଆପଣମାନେ ବହୁ ପୂର୍ବରୁ ରାମାୟଣ ପଢ଼ିବାର ସୁଯୋଗ ଏ ପର୍ଯ୍ୟନ୍ତ ପାଇ ଆସୁଛନ୍ତି, ମାତ୍ର ପର୍ଶୁରାମଙ୍କର ଜୀବନୀ ଚରିତ କୌଣସିଥିରେ ପାଇକରି ନାହାଁନ୍ତି। ଏଣୁକରି ଆପଣମାନଙ୍କର ଜାଣିବା ନିମିତ୍ତ, ବ୍ରହ୍ମଗ୍ରନ୍ଥ ଓ ତାଳପତ୍ର ପୋଥି ଇତ୍ୟାଦି ପଠନ କରି ସରଳ ଭାଷାରେ **'ପର୍ଶୁରାମ ପୁରାଣ'**ଟିକୁ ସର୍ବାଙ୍ଗୀନ ସୁନ୍ଦର କରାଯାଇଛି ଯାହାକି ମୁର୍ଖଠାରୁ ପଣ୍ଡିତ ପର୍ଯ୍ୟନ୍ତ ସମସ୍ତଙ୍କର ଶ୍ରୁତି ମଧୁର ହେବ ।

ଏଠାରେ ପ୍ରଶ୍ନବାଚୀ ହୁଏ, 'ପର୍ଶୁରାମ' ଭଗବାନଙ୍କର ଷଷ୍ଠ ଅବତାର ରୂପେ ଜନ୍ମ ହୋଇ ତପସ୍ୟା କରି କଳା ପାଇଲେ କାହିଁକି ? ଅବତାର ଭିତିରେ ହିଂସାଚରଣ କରି କ୍ଷତ୍ରିୟ ଦମନ କରିବାର କାରଣ କ'ଣ ? ପୁଣି ଗୋଟିଏ ଯୁଗରେ ଦୁଇଟି ଅବତାର (ରାମଚନ୍ଦ୍ର ଓ ପର୍ଶୁରାମ)ର କାରଣ କ'ଣ ? ଅଗ୍ନି ବଂଶରେ 'ପର୍ଶୁରାମ', ସୂର୍ଯ୍ୟ ବଂଶରେ 'ରାମଚନ୍ଦ୍ର' ଓ ଚନ୍ଦ୍ର ବଂଶରେ 'ବଳରାମ' ଏହାର ବୃତ୍ତାନ୍ତ ଏଥିରୁ ବୁଝି ପାରିବେ । ପର୍ଶୁରାମ ବିଷ୍ଣୁଙ୍କର କେଉଁ କଳାଧରି ଜନ୍ମ ହୋଇଥିଲେ ତା'ର ପ୍ରମାଣ ପାଇ ପାରିବେ ।

ଏସବୁ ଅନେକ ଯୁଗାଚାର୍ଯ୍ୟଙ୍କର ମତ ଗୃହୀତ କରାଯାଇ ରାମଚଣ୍ଡୀ ବରପୁତ୍ର ଅର୍ଜ୍ଜୁନ ବାରିକଙ୍କ ଦ୍ୱାରା ପର୍ଶୁରାମ ପୁରାଣ ବହିଟି ପୂର୍ଣ୍ଣାଙ୍ଗ ଲେଖା ହୋଇଅଛି ।

**ପ୍ରକାଶକ ଓ ପ୍ରାପ୍ତିସ୍ଥାନ :**

ପ୍ରତିଷ୍ଠାତା : ✓ ବିଦ୍ୟାଧର ସାହୁ
ପ୍ରୋ : ମହିମା ପ୍ରସାଦ ସାହୁ
ଅଲିଶା ବଜାର, କଟକ- ୭୫୩୦୦୨
ଫୋନ୍ ନଂ- (୦୬୭୧) ୨୫୦୮୨୯୬

# ଜଗମୋହନ ରାମାୟଣ

## ବା

# ଦାଣ୍ଡି ରାମାୟଣ



# ଉତ୍ତରାକାଣ୍ଡ

ଶ୍ରୀ ଗଣେଶାୟ ନମଃ

ଶ୍ଳୋକ

ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା
ଆଦୌ ପ୍ରାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗିୟତେ ।
ଦେବାଧି ଦେବରାଜ ହେ ଅଟନ୍ତି ଦଇତାରି
ବଳରାମ ଦାସ ମୁଁ ଯେ ଚରଣେ ପରିଚାରୀ ।
ସେ ହରି ଚରଣେ ମୁଁ ଯେ ସର୍ବଦା ବିଶ୍ୱାସ
ବାଳକ କାଳରୁ ମୋତେ ରଖିଲେ ପୀତବାସ ।

---

ସାଗର ଜଳରେ ମୁଁ ଯେ ଯାଉଥିଲି ଭାସି
ଉଦ୍ଧରି ଧଇଲେ ମୋତେ କ୍ଷୀରସାଗର ବାସୀ ।
ସେହିଦିନୁ ପାଦପଦ୍ମେ ଲଗାଇଲି ଆଶ
ମୋଠାରେ ସୁଦୟା କଲେ କମଳା ବିଳାସ ।
ଜୟ ତୁମ୍ଭେ ଜଗନ୍ନାଥ ଜଗତ ଜୀବନ
ତୁମ୍ଭ ନାମ ଧଇଲେ ନ ଦଣ୍ଡେ କାଳ୍‌ଯମ ।
ତୁମ୍ଭ ନାମ ଧରିଲେ ହୁଅଇ ସଦଗତି
ତେଣୁ କରି ତୁମ୍ଭ ନାମ ହୃଦରେ କରି ସ୍ତୁତି ।
ଜୟତୁମ୍ଭେ ଅନନ୍ତ ହେ ବାସୁଦେବ ମୂର୍ତ୍ତି
ତେଣୁକରି ତୁମ୍ଭନାମ ହୃଦରେ କରି ସ୍ତୁତି ।
ଜୟ ତୁମ୍ଭେ ଅନନ୍ତ ହେ ବାସୁଦେବ ମୂର୍ତ୍ତି
ତୁମ୍ଭଙ୍କୁ ସ୍ତୁତିକଲେ ଲଭିବି ମୁକତି ।
ତୁମ୍ଭେ ସିନା ସୃଜିଲ ଜଗତ ତିନିପୁର
ଚଉଦ ଭୁବନ ଯେ ସପତ ସାଗର ।
ନବଖଣ୍ଡ ମେଦିନୀ ଅଟଇ ସାର
ପଚାଶ କୋଟି ମେଦିନୀ ତୁମ୍ଭେ ରଚି ପାର ।
ତେତିଶକୋଟି ଦେବତା ତୁମ୍ଭଦେହରୁ ଜାତକଲ
ସ୍ୱର୍ଗପୁରେ ନେଇଣ ତାହାଙ୍କୁ ରଖିଲ ।
ନବକୋଟି ଦେବୀ ଚଉଷଠିକୋଟି ଯୋଗିନୀ
ବାଉନକୋଟି ପିଶାଚୁଣୀ ତାଙ୍କ ସଙ୍ଗରେ ଭାର୍ଗି

ତିନିପୁରେ ଚଉଦ ଭୁବନେ ଏହୁ ରହି
ତୁ କହିଲେ ଦୈତ୍ୟବଳ ବିନାଶକରେ ଯାଇ ।
ମର୍ତ୍ତ୍ୟପୁରେ ଅତି ଦୁଷ୍ଟେ ଦନୁଜ ହେବାରୁ
ସ୍ୱର୍ଗପୁରେ ଦେବତାଙ୍କୁ ଦୁଃଖ ସେ ଦେବାରୁ ।
ପୃଥିବୀର ଭାର ହେବ ଯେତେବେଳେ ଭାଳି
ତେତେବେଳେ ଅବତରି ହୁଅ ମହିଆଳୀ ।
ଦୁଷ୍ଟଙ୍କୁ ମାରିଣ ସନ୍ଥ ରଖ ହେ ନାରାୟଣ
ଜଗତେ ବିଖ୍ୟାତ ତେଣୁ ତୁମ୍ଭର ପ୍ରଭୁପଣ ।
ସହସ୍ରେ ଗ୍ରୀବ ଶତଗ୍ରୀବ ହୟଗ୍ରୀବ ପୁଣି
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ବୀରବାହୁ ଜାଣି ।
ଠୁଳଜଙ୍ଘ ସହିତେ ରାବଣ ଏକମୁଖ
ସଣ୍ଢସେନ ଗଣ୍ଡସେନ କାମଦେବ ସେନ ।
କୋମଦସେନ ଗରିଷ୍ଠ ଅଗରିଷ୍ଟ
ଚାରି ରାବଣର ଅଟନ୍ତି ଏହୁ ଶ୍ରେଷ୍ଠ ।
ଏମାନେ ତିନିପୁର ପକାଇଲେ ଦଳି
ସେ ସକାଶୁ ବିଜୟ କଲେ ବନମାଳୀ ।
ଜମ୍ବୁଦ୍ୱୀପ ମଣ୍ଡଳରେ ଭାରତ ଖଣ୍ଡରେ
ଅଯୋଧ୍ୟା ନାମ ପୁର ଉତ୍ତର ହେମାଳରେ ।
ଜନ୍ମ ହୋଇଲେ ଦେବ ଦଶରଥ କୋଳେ
ଚାରିଭାଇ ଜନ୍ମିଲେ ଚତୁର୍ଦ୍ଧା ମୂର୍ତ୍ତିରେ ।
ଦଶଗ୍ରୀବ, ଏକଗ୍ରୀବ, ଶତଗ୍ରୀବ ପୁଣି
ସହସ୍ର ଗ୍ରୀବ ସହିତେ ଅସୁରବଳ ହାଣି ।
ଅଯୋଧ୍ୟାରେ ଅଭିଷେକ ହେଲେ ରାମରାଣ
ତିନିପୁରେ ଖ୍ୟାତ ହେଲା ବାସୁଦେବଙ୍କ ଗୁଣ ।
ଲଙ୍କାକାଣ୍ଡ ସରିବାରୁ ବିଚାରୁଛି ମନ
ଉତ୍ତରାକାଣ୍ଡ କେମନ୍ତେ କରିବି ରଚନ ।
ମୋର କଣ୍ଠେବସି ଏଣେ କହିବେ ଯେବେହରି
ତେବେ ମୁଁ ପାରଇ ଅବା ଉତ୍ତରାକାଣ୍ଡ କରି ।
ଷୋଳ ସହସ୍ର ପନ୍ଦର ହୋଇବ ଏହୁ ଗ୍ରନ୍ଥ
ବିଚାରୁଛି ଦୟା ମୋତେ କରିବେ ପୀତବାସ ।
ତେବେ ମୁଁ ଏହି ଗ୍ରନ୍ଥ କରି ପାରଇ ପୂର୍ଣ୍ଣ
ବଳରାମ ଦାସ କହେ ହେବା ହେ ପ୍ରସନ୍ନ ।
ପାର୍ବତୀଙ୍କ ଆଗେ ଯାହା ଈଶ୍ୱର ବଖାଣି
ସେହି ପଦକୁ ଶରଧା କରିଅଛି ପୁଣି ।
ଲଙ୍କାକାଣ୍ଡେ ସରିବାରୁ ବିଚାରୁଛି ମନେ
ରାଜାମାନେ ଚଳିଗଲେ ଯେ ଯାହା ଭୁବନେ ।
ରକ୍ଷ କପିମାନେ ଯେ ଗଲେ ନିଜସ୍ଥାନ
ଦେବତାଏ ରହିବେ ସ୍ୱର୍ଗରେ ନିଶ୍ଚିନ୍ତେଣ ।
ପାର୍ବତୀ ବୋଇଲେ ଦେବ ଶୁଣ ତ୍ରିଲୋଚନ
ଶ୍ରୀରାମ ଅଯୋଧ୍ୟାରେ ହୋଇବେ ରାଜନ ।
ଦେବତା ରଷିଗଣ ଅସୁର ଯେ ପୂଣ
ରକ୍ଷ କପି ରାଜାଗଣ ଗଲେ ନିଜସ୍ଥାନ ।
କିସ କିସ କଥା ନିଜ ସ୍ଥାନେ ସେହୁ କଲେ
ସେ କଥା ବିଚାରି ଦେବ କହ ମୋଆଗରେ
ଈଶ୍ୱର ବୋଲେ ତୁମ୍ଭେ ଶୁଣ ପ୍ରାଣସହି
ଦେବତାମାନେ ସ୍ୱର୍ଗପୁରକୁ ଯାଇ ।
ଯେ ଯାହା ସ୍ଥାନରେଯାଇ ହେଲେ ପରବେଶ
ମନରେ ଆନନ୍ଦ ଯେ ହୋଇଲେ ତ୍ରିଦଶ ।
ବଜ୍ରଧର ପ୍ରବେଶ ହୋଇଲେ ନିଜ ମନ୍ଦିରରେ
ସପ୍ତଋଷି ମଙ୍ଗଳ ଆଳତୀ ଆଣି କରେ ।
ମଙ୍ଗଳ ଆଳତୀ ସାରି ଭିତରେ ପ୍ରବେଶ
ଶଚିଦେବୀ ଆସିଣ ଭିତରେ ପ୍ରବେଶ ।
କରପତ୍ର ଯୋଡ଼ି କହେ ଗନ୍ଧର୍ବଙ୍କର ମାତ
ଅସୁର ନାଶିଲେ କି ଦଶରଥ ସୁତ ।
ସହସ୍ର ଯୋନି ବୋଇଲେ ଶୁଣରେ ପ୍ରାଣସହି
ବ୍ରହ୍ମାଣ୍ଡ କର୍ତ୍ତା ବାସୁଦେବ ଯେ ଅଟଇ ।
ଦେବଙ୍କର ଦେବ ଯେ ଅଟଇ ଅନନ୍ତ
ଦେବ ଦୁଃଖ ପାଇଲେ ହୁଅଇ ସେହୁ ଜାତ ।
ଦେବଙ୍କର ଛଳେ ସେହୁ ମାରନ୍ତି ଅସୁର
ସବୁଦିନେ ଦେବଙ୍କୁ ରଖନ୍ତି ଚକ୍ରଧର ।
ଦେବଙ୍କର ସକାଶେ ମାନବ କୋଳେଜାତ
ଦଶରଥ ନନ୍ଦନ ଯେ ବୋଲାନ୍ତି ଅଚ୍ୟୁତ ।
ଚାରିରାବଣଙ୍କୁ ମାରି ଉଦ୍ଧର ମହୀଆଳି
ତେଣୁକରି ସୂରଦେବେ ସ୍ୱର୍ଗରେ ଏବେହୁରି ।
ଅନେକ ଅସୁର ଯେ କଲେକ ବିନାଶ
ଚଉଦ ଭୁବନରେ ସେ ପାଇଲେ ବଡ଼ ଯଶ ।
ଅଯୋଧ୍ୟା ନଗରେ ପୁଣିଦେବ ହେଲେ ରାଜା
ଅନେକ ଦୁଷ୍ଟମାରି ପାଳିଲେ ପରଜା ।
ଏଗାର ସହସ୍ର ବର୍ଷ ମୃତ୍ୟୁ ପୁରେ ରହି
କଷ୍ଟ ପୁରିଲେ ଦେବ ସ୍ୱର୍ଗକୁ ଆସଇ ।
ଶଚିଦେବୀ ବୋଇଲେ ହେଲା କାର୍ଯ୍ୟେସିଦ୍ଧି
ଅସୁର ଦଳନ ନାଥ ଅଟନ୍ତି ଦୟାନିଧି ।

ମରୁତ ଦେବତା ଅଟେ ତୁମ୍ଭର କନିଷ୍ଠ
ପ୍ରଭଞ୍ଜ କପିଠାରେ ହୋଇଲେ ଉପଗତ ।
ଶଙ୍କର ବୀର୍ଯ୍ୟରେ ମାରୁତି ଜାତହେଲା
ନିରଞ୍ଜନ ପୁରୁଷଙ୍କୁ ଉପକାର କଲା ।
ରାମାୟଣ ଯୁଦ୍ଧରେ ହୋଇଲା କବାଟ
ମୋତେଦେଖି ମାନ୍ୟ ଧର୍ମ କଲାକ ବହୁତ ।
ଏମନ୍ତ ପୁତ୍ର ଯେବେ ତ୍ରିଜୀବୀ ହୋଇ ରହି
ତେବେ ସେ ଦେବ କାର୍ଯ୍ୟ ବହୁତ ହୁଅଇ ।
ତୁମ୍ଭର କନିଷ୍ଠ ଭ୍ରାତ ଅଟନ୍ତି ଦିନମଣି
ସୁଯୋଗରେ ଜାତକଲେ ସୁଗ୍ରୀବି ସେହିପୁଣି ।
ଦେବଙ୍କ କାର୍ଯ୍ୟ ବାସୁଦେବଙ୍କ କାର୍ଯ୍ୟ କଲା
ଜୀବଙ୍କୁ ସୁଫଳ କରି ପିତାଙ୍କୁ ମୋହିଲା ।
ଅଶ୍ୱିନୀ କୁମରେ ଯେ ଅଟନ୍ତି ତୁମ୍ଭ ଭାଇ
ଗଉରୀଙ୍କ ଗର୍ଭରେ ପ୍ରବେଶ ହେଲେ ଯାଇ ।
ନଳନାମେ ପୁତ୍ର ତାଠାରୁ ହେଲା ଜାତ
ସେ ଛୁଇଁଲେ ପର୍ବତ ଭାସିଲେ ତୁରିତ ।
ବୃହସ୍ପତିଙ୍କଠାରୁ ଜାତ ହୋଇ ସୁଷେଣ
ଅଉଷଧି ଦେଇଣ ବଞ୍ଚାଏ ନାରାୟଣ ।
ଚନ୍ଦ୍ରଙ୍କର ଠାରୁ ଜାମ୍ବବ ଜାତ ହେଲା
କୋକୋଟ ବୋଲି ଭାଲୁ ମାତାଯେ ତାରପରା ।
ମନ୍ତ୍ରୀ ପଣେ ଶ୍ରୀରାମଙ୍କୁ ହେଲା ଉପକାରୀ
ଏମାନେ ଅଟନ୍ତି ହାଦେ ପୁତୁରା ମୋହରି ।
କୁମ୍ଭଠାରୁ ଜାତ ଯେ ବଳି ହୋଇଥିଲା
କୁଳେ କଳଙ୍କ ଲଗାଇ ଭାଇ ବୋହୂ ହରିଲା ।
ଏକା କାଣ୍ଡକରେ ତାକୁ ଶ୍ରୀରାମେ କଲେ ନାଶ
ବୋହୂ ହେଲା ବଦଳ ସୁଗ୍ରୀ ଯେ ବିଶେଷ ।
ଶ୍ରୀରାମଚନ୍ଦ୍ର ତାକୁ ଦୟା ମାତ୍ର କଲେ
ସାଧବୀରେ ତଳେ ତାକୁ ଗଣିତା କରାଇଲେ ।
କୌଣସି କାଳେ ତୁମ୍ଭେ ନୁହ ଭଲ
ଦେବରାଜ ହୋଇକରି ମତ୍ତ ଗର୍ବ କଲ ।
ନାରାୟଣ ଉପକାରୀ ନୋହୁ ତୁ ଏବେତେଣେ
ସବୁଦିନେ ମତ୍ତଗର୍ବ ବହୁ ତୁ ରାଜନେ ।
ଗୌତମଙ୍କ ଭାରିଜା ଅହଲ୍ୟା ନାମେ ସତୀ
ତାହାଙ୍କୁ ବିଡ଼ମ୍ଭଣ କଲୁ ତୁ ଯାଇ ସେଥି ।
ସେ ଦୋଷରୁ ତୋର ହେଲା ସହସ୍ରେ ଯୋନି
କେତେକାଳ ଲଜ୍ୟାଘରେ ରହିଲୁ ତହିଁ ପୁଣି ।

ସେହି ବାସୁଦେବ ସୁଦୟା ତୋତେ କଲେ
ତେବେ ତୁମ୍ଭେ ସଭାରେବସିଲ ଯାଇଁ ଭଲେ ।
ଏବେ ନାରାୟଣ ହୋଇଲେ ଅବତାର
ସ୍ୱର୍ଗରେ ରାଜାହୋଇ କଲେ କି ଉପକାର ।
ତ୍ରିଦଶ ଦେବତାଏ କପିର ସଙ୍ଗେ ମେଳ
ତାଙ୍କ ବୀର୍ଯ୍ୟୁଜାତ ହେଲେ ସମସ୍ତ କପିବଳ ।
ନାରାୟଣ କାର୍ଯ୍ୟରେ ହେଲେ ଜଗହିତା
ରାଜାହୋଇଣ ତୁମ୍ଭେ ନୋହିଲେ ଶକତା ।
ଏମନ୍ତ ବୋଇଲେ ଯହୁଁ ଶଚୀଦେବୀ ପୁଣ
ମନରେ ଚିନ୍ତାକଲେ ସାଧବଟି ଜାଣ ।
ବୋଇଲେ ନାରୀରନ୍ଧ୍ରେ ମୋତେ ତୁନିନ୍ଦାକଲୁ
ଭର୍ତ୍ସନା କରିମୋତେ ତୁ ବଚନ ବୋଇଲୁ ।
ନାରାୟଣ ପ୍ରଶ୍ନ ମୋତେ ହେବା ପରିଯନ୍ତେ
ଯୋଗ ମୁଁ ସାଧିବିତୋତେ କହିଲି ସଙ୍କେତେ ।
ଏତେକହି ଦେବରାଜ ବହନ ଉଠିଲା
କବାଟ କିଳି ଅନ୍ଧାର ଘରରେ ରହିଲା ।
ଆସନରେ ବସି ସେ କଲେ ଯୋଗଲୟେ
ରାମନାମ ସୁମରଣ ହୃଦରେ ତାର କହେ ।
ଶୁଣଗୋ ହେମମନ୍ତ ଦୁହିତା ଗଉରା
ନିଜପୁରେ ଦେବତାଏ ନିଶ୍ଚିନ୍ତେ ରହେ ପରା ।
ସାତବର୍ଷ ଛଅମାସ ପରିଯନ୍ତେ ପୁଣ
ଯୋଗ ସାଧନ ଯେ କଲା ବେରାଣ ।
ଅନ୍ଧାରଘରେ ବସିସହସ୍ର ଯୋନି ହେବାରୁଜାଣ
କିମ୍ଭୁତ କଥାଏ ଦେବ କଲେ ବିଚାରିଣ ।
ପ୍ରତିଦିନ ଆସିଣ ଯାଆନ୍ତି ନିଜ ପୁର
ଦେବ ରାଜଙ୍କୁ ଭେଟ ନ ପାଏ ଦେବ ସୁର ।
ଶୁଣିଣ ମନ ତୁମ୍ଭର ହୋଇଲାଟିକି ତୋଷ
ଶଚୀ କହିବାରୁ ଲଜ୍ୟା ପାଇଲେ ଦେବନାଥ ।
ପାର୍ବତୀ ବୋଇଲେ ଦେବ ଶୁଣ ଯେ ଈଶାନ
କେତେ କାଳେ ନାରାୟଣ ଦେଖିଲେଟି ପୁଣ ।
ଈଶ୍ୱର ବୋଇଲେ ସାତ ବର୍ଷ ଛଡ଼ ମାସ
ଏଥିରେ ଦିନ ବହିଗଲା ଯେ ବିଶେଷ ।
ଏକଦିନେ ନାରଦ ବିଜେ କଲେ ପୁଣ
ଶଚୀକି ପଚାରିଲେ ରାଜା କାହାନ୍ତି ଜାଣ ।
ଶଚୀଦେବୀ ବୋଇଲେ ଶୁଣ ହେ ବ୍ରହ୍ମମୁନି
ଯୋଗ ଲୟ କରୁଛନ୍ତି ଦେବା ରଜା ପୁଣି ।

ନାରାୟଣ ଅବତାର ଶ୍ରୀରାମ ଯହୁଁ ହେଲେ
ସକଳ ଦେବତାଏ ଉପକାର କଲେ ।
ଦେବ ରାଜାର କିଛି ନୋହିଲା କିଛି ଧର୍ମ
ତେଣୁ କରି ତପ ସାଧନ୍ତି ନିମଗ୍ନ ।
ତାହାଶୁଣିଣ ନାରଦ ଚଳିଣ ବେଗେ ଗଲେ
ମୃତ୍ୟୁପରେ ଅଯୋଧ୍ୟା ନଗରେ ମିଳିଲେ ।
ଶ୍ରୀରାମ ବାହାରେ ହୋଇଛନ୍ତି ଅବକାଶ
ବ୍ରହ୍ମମୁନି ରାମ ପାଶେ ହେଲେ ପରବେଶ ।
ମୁନିଙ୍କୁ ଦେଖି ଶ୍ରୀରାମ ନମସ୍କାର କଲେ
ଗଙ୍ଗାଜଳ ଆଣିଣ ଚରଣ ଧୋଇଦେଲେ ।
ସିଂହାସନ ପରେ ବସାଇଲେ ରଘୁବୀର
ଧୂପ ଦୀପ ଥୋଇଲେ ମୁନିଙ୍କ ଆଗର ।
ଦେଖିକରି ନାରଦ ମନରେ ତୋଷ ହେଲେ
ଶ୍ରୀରାମଙ୍କୁ ମୁନି ବୋଲନ୍ତି ବସ ମୋ ପାଦରେ ।
ଶୁଣିକରି ଦାଶରଥି ବସିଲେ ସିଂହାସନେ
ନାରଦ ବୋଇଲେ ତୁମ୍ଭେ ଶୁଣ ରଘୁନାନେ ।
ସ୍ୱର୍ଗରୁ ଦେବତାଏ ଅଯୋଧ୍ୟା ଆସିଥିଲେ
ତୁମ୍ଭଙ୍କୁ ରାଜା କରିଣ ସ୍ୱର୍ଗପୁର ଗଲେ ।
ସମସ୍ତଙ୍କ ମନରେ ଯେ ହୋଇଲା ଆନନ୍ଦ
ଦେବନାରୀ ପୁଛିଲେ ତୁମର ସମ୍ବାଦ ।
ସମସ୍ତେ କହିଲେ ଚାରି ରାବଣ ମାରି
ଦେବତାଏ ନିଶ୍ଚିନ୍ତେ ବସିଲୁ ସ୍ୱର୍ଗପୁରୀ ।
ଶୁଣିକରି ଦେବନାରୀ ସନ୍ତୋଷ ମନ ହେଲେ
ଶ୍ରୀରାମ ନାରାୟଣ ମନରେ ବିଚାରିଲେ ।
ଶଚୀଦେବୀ ଅଟନ୍ତି ଯେ ଇନ୍ଦ୍ରାୟଣୀ ପୁଣ
ବାସବକୁ ବୋଇଲେ ତୁମ ଜୀବନ ଅକାରଣ ।
ସକଳ ଦେବତାଏ ଅଟନ୍ତି ପୁଣ ସାଧୁ
ନାରାୟଣ କାର୍ଯ୍ୟ କଲେ ଯେସନେ ଭାଇବନ୍ଧୁ ।
ମର୍କଟ ମାନଙ୍କ ସଙ୍ଗେ ଶୃଙ୍ଗାର ଯାଇ କଲେ
ବୀର୍ଯ୍ୟ ହେବାରୁ ପୁତ୍ରମାନେ ଉପୁଜିଲେ ।
ଶ୍ରୀରାମରେ କାରେଣି ହେଲେ ସେହିମାନେ
ନିଷ୍ଫଳ ହୋଇଲ ତୁମ୍ଭେ ଦେବ ହେ ରାଜନେ ।
ବଳବନ୍ତ ପଣରେ ବାଳିକି ଜାତ କଲ
ମତ୍ତଗର୍ବ ହୋଇଣ ବୀର୍ଯ୍ୟ ତୁମ୍ଭେ ନେଲ ।
ତେଣୁକରି ଅଧର୍ମ ହୋଇଲା ବାଳୀରାଜା
ଭାଇ ବୋହୁଙ୍କୁ ହରିଲା ନ ରଖି ପରଦା ।
ତେଣୁକରି ଶ୍ରୀରାମ ବାଣରେ ପ୍ରାଣ ଦେଲା
ତୁମ୍ଭ ଅଂଶେ ଜନ୍ମିରାମ କାର୍ଯ୍ୟ ଯେ ନକଲା ।
ତେଣୁ କରି ରାଜା ପଦ ଅଟେ ବଡ଼ ମନ୍ଦ
ଏମନ୍ତ ବିଚାରି ଦେବୀ କହିଲାକ ଛନ୍ଦ ।
ସେହିଠାରୁ ବଚନ ଯେ ଶୁଣି ଦେବରାଜା
ଲଜ୍ଜ୍ୟାପାଇ ତପକରେ କଶ୍ୟପ ତନୁଜା ।
ସପ୍ତବର୍ଷ ଛଡ଼ମାସ ହୋଇଲା ଆସି ପୁଣ
ସ୍ୱର୍ଗରେ ସଭା ନୋହିଲା ଶୁଣ ହେ ଶ୍ରୀରାମ ।
ଶ୍ରୀରାମ ବୋଇଲେ ଆମ୍ଭେ ନୋହୁ ପରେମନ୍ଦ
କିମ୍ପାଇ ଅଭିମାନ ପାଇଲେ ଦେବ ଇନ୍ଦ୍ର ।
ନାରଦ ବୋଇଲେ ଦେବ ମୋରଠାରୁ ଶୁଣ
ତାର ଆଶେଜନ୍ମି କାର୍ଯ୍ୟ ନ କଲାତୋର ପୁଣ ।
ତେଣୁ କରି କାନ୍ୟ ତାକୁ ହୋଇଲେକ ବଡ଼
ତପରେ ବସିଅଛି ମନରେ କରି ଗାଢ଼ ।
ତୁମ୍ଭେ ଯେବେ ସ୍ୱର୍ଗପୁରେ ବିଜୟ କରିବ
ତୁମ୍ଭଙ୍କୁ ଦେଖିଲେ ରାଜା ସଭା ମଣ୍ଡାଇବ ।
ଶାନ୍ତିକରି କହିଲେ ଲଭିବେ ସେହୁ ଗତି
ଏତେବୋଲି କହିଲେ ଋଷିଗଣ ମିଶି ।
ଶୁଣିକରି ଶ୍ରୀରାମ ହୋଇଲେ ହରଷ
ବୋଇଲେ ସ୍ୱର୍ଗକୁ ଆମ୍ଭେଯିବା ଯେ ଅବଶ୍ୟ ।
ଏତେ ବୋଲି ଦେବ ଯେ କହିଲେ ମୁନି ଆଗେ
ଶୁଣିକରି ନାରଦ ବିଜେ କଲେ ବେଗେ ।
ମନଦଣ୍ଡ ଉପରେ ବିଜେ କରି ଗଲେ
ଯଶୋବନ୍ତୀ ପୁରେ ପ୍ରବେଶ ଯାଇଁ ହେଲେ ।
ସେଠାରୁ ଶ୍ରୀରାମ ଯେ ବଶିଷ୍ଠଙ୍କୁ ରାଇ
ସ୍ୱର୍ଗକୁ ଆମ୍ଭର ଯେ ଯିବାର ଯୋଗାଇ ।
ପ୍ରଥମ ଦିଗବିଜେ ସ୍ୱର୍ଗକୁ ଆମ୍ଭର
ବାସବେ ଦେଖିଲେ ତାର ମନରେ ଗୁରୁତର ।
ବଶିଷ୍ଠ ବୋଇଲେ ତେବେ ବେଗେ ହୋଇଯାଅ
ଲକ୍ଷ୍ମଣଙ୍କୁ ତୁମ୍ଭର ସଙ୍ଗତରେ ନିଅ ।
ଯେବେ ବିଜେ କରିବ ସେ ସ୍ୱର୍ଗ ପୁରକୁ
ସୀତାଙ୍କୁ ସଙ୍ଗେ ନେବ କହିଲି ତୁମ୍ଭଙ୍କୁ ।
ଲକ୍ଷ୍ମଣ ନେବେ ତାଙ୍କ ଉର୍ମିଳା ନାରୀ ସଙ୍ଗେ
ଦେବ ନାରୀ ଦେଖିଲେ ବହୁତ ତୋଷହେବେ ।
ଶୁଣିକରି ରାମ ଯେ ଲକ୍ଷ୍ମଣଙ୍କୁ କହି
ତାଳ ଧ୍ୱଜ ରଥରେ ବସ ବେଗେ ଯାଇ ।

ତୁମ୍ଭର ଘରଣୀ ସଂଗତରେ ନେବ
ମୁହିଁ ସୀତାଙ୍କୁ ସଂଗରେ ନେବି ସଦଭାବ ।
ଶୁଣିକରି ଲକ୍ଷ୍ମଣ ସନ୍ତୋଷ ହୋଇଲେ
ସାରଥିକୁ ଡକାଇ ବଚନ ବୋଇଲେ ।
ବୋଇଲେ ତାଳଧ୍ୱଜ ସାଜରେ ଯତ୍ନକରି
ଦିଗ ବିଜେ କରୁଁ ଆମ୍ଭେ ଯିବା ସ୍ୱର୍ଗପୁରୀ ।
ଶୁଣିକରି ଦାରୁକ ରଥକୁ ସଜ କଲା
ତ୍ରୈଲୋକ୍ୟ ଜିଣିଲା ପରି ରଥ ଯେ ଦିଶିଲା ।
ଦେଖିଣ ଅଯୋଧ୍ୟା ଲୋକେ ହୋଇଲେ ପ୍ରସନ୍ନ
ବୋଇଲେ ଦିଗ ବିଜେ କରିବେ ଲକ୍ଷ୍ମଣ ।
ଏଥୁ ଅନନ୍ତରେ ଗୋ ପାର୍ବତୀ ତୁମ୍ଭେ ଶୁଣ
ଶ୍ରୀରାମ ମାତଳିକୁ ଡାକିଲେ ଯେ ପୁଣ ।
ବୋଇଲେ ପୁଷ୍ପକ ରଥ ସଜ କରି ଆଣ
ସ୍ୱର୍ଗକୁ ଦିଗ ବିଜେ କରିବୁ ଆମ୍ଭେ ପୁଣ ।
ଶୁଣିଣ ମାତଳି ଯେ ବେଗ ହୋଇ ଗଲା
ପୁଷ୍ପକ ବିମାନ ରଥ ଯତନେ ସାଜିଲା ।
ରାତ୍ରକୁ ଉଜ୍ଜ୍ୱଳ ଯେ ଦିବସେ ଦିଶେ ଶୋଭା
କେତେଗୁଣ କହିବି ପୁଷ୍ପକ ରଥ ପ୍ରଭା ।
ସିଂହଦ୍ୱାରେ ରଥ ନେଇଣ କଲାଉଭା
ତିନିପୁର ଜିଣିଣ ଅଟଇ ରଥ ପ୍ରଭା ।
ଶତ୍ରୁଘ୍ନ, ଭ୍ରଥ ଡକାଇ ଦାଶରଥି
ବୋଇଲେ ସ୍ୱର୍ଗକୁ ଆମ୍ଭେ ଯିବୁ ପୁଣି ଧାତି ।
ବାସବ ଦେବତା କିମ୍ପା ମନରେ କଲେଚିନ୍ତା
ସ୍ୱର୍ଗରେ ସଭାକିମ୍ପା ନ କଲେ ଦେବତା ।
ବୋଧ କରି ତାଙ୍କୁ କହିଣ ଆସିବୁ
ସଭା ମଣ୍ଡାଇଣ ଦେବତା ତୋଷିବୁ ।
ଶତ୍ରୁଘ୍ନ ବୋଇଲେ ଶୁଣିମା ଚାପଧାରୀ
ଲକ୍ଷ୍ମଣଠାକୁରେ ଯିବେ ସଂଗରେ ତୁମ୍ଭରି ।
ଶ୍ରୀରାମ ବୋଇଲେ ଆମ୍ଭେ ଛଡ଼ଜଣ ଯିବୁ
ଦେବତା ଦେବ ସ୍ତ୍ରୀ ସମସ୍ତଙ୍କୁ ବୋଧିବୁ ।
ଏତେକହି ଶ୍ରୀରାମ ଭିତର ପୁରଗଲେ
ଧାଇ ପରିବାରି ମଣାଇ ଆସି ନେଲେ ।
ଅନ୍ତଃପୁରେ ଯାଇଁ ହେଲେକ ପ୍ରବେଶ
ଜନକ ଦୁହିତା ମିଳିଲେ ଆସି ପାଶ ।
ଚରଣେ ନମସ୍କାର କରନ୍ତି ବୈଦେହୀ
କରଯୋଡ଼ି ବେଗେ ଉଭା ହୋଇଲେ ଯାଇ ।
ଭିତର ସିଂହାସନରେ ରାମ ବିଜେକଲେ
ଜନକର ଦୁହିତାକୁ କୋଳରେ ବସାଇଲେ ।
ବୋଇଲେ ଜାନକୀ ଶୁଣ ମୋର ବାଣୀ
ସ୍ୱର୍ଗପୁରକୁ ଆମ୍ଭେ ଯିବୁ ଗୋ ଏହିକ୍ଷଣି ।
ସ୍ୱର୍ଗପୁର ରାଜା ଯେ ଅଟନ୍ତି ବାସବ
ଶଚି ଦେବୀ ତାହାଙ୍କୁ ନୋହିଲେ 'ସଦଭାବ ।
ବୋଇଲେ ରାମର କିମ୍ପା ନ କଲ କିଛିକାର୍ଯ୍ୟ
ନିର୍ଲଜ ଆତ୍ମା ତୁମ୍ଭର ନୁହେଁ ସେ ସଲଜ ।
ଦେବକୀର ବଚନ ଶୁଣି ମନରେ ଚଳ ରାଜା
ମୋର ନାମ ଧରି ତପ କରଇ ଧଉର୍ଯ୍ୟ ।
ଦିଗବିଜେ କରି ଆମ୍ଭେ ସ୍ୱର୍ଗପୁରେ ଯିବୁ
ରାଜାଙ୍କୁ ପ୍ରବୋଧ କରି ଫେରିଣ ଆସିବୁ ।
ଜାନକୀ ବୋଇଲେ ଦେବ ତୁମ୍ଭ ମନ ଇଚ୍ଛା
ଦେବକାର୍ଯ୍ୟ ନିମନ୍ତେ ଜନ୍ମ କଲେ ଧାତା ।
ଶ୍ରୀରାମ ବୋଇଲେ ତୁମ୍ଭେ ଯିବକି ଆମ୍ଭସଙ୍ଗେ
ଦେବ ସ୍ତିରୀମାନଙ୍କୁ ଦେଖ ସୁଖ ଭାବେ ।
ଜାନକୀ ବୋଇଲେ ଦେବସଙ୍ଗରେ ନେଲେ ଯିବି
ଗତ କଥାମାନ ଦେବ ମନରେ ନ ଭାବି ।
ଶ୍ରୀରାମ ବୋଇଲେ ବେଗେ ତୁମ୍ଭେ ସଜ ହୁଅ
ସ୍ୱର୍ଗକୁ ଯିବାକୁ ମନ ହେଉଛି ଉଦ୍‌ବେଗ ।
ଶୁଣିକରି ଜାନକୀ ଯେ ବେଗେ ଚଳିଗଲେ
ମାଜଣା ହୋଇଣ ଦେବୀ ବେଶଭୂଷା ହେଲେ ।
ଏଥୁଅନ୍ତେ ପାର୍ବତୀ ଶୁଣତୁମ୍ଭେ ଏବେ
ସେଠାରୁ ଶ୍ରୀରାମ ଯେ ଉଠିଗଲେ ବେଗେ ।
ଜାନକୀଙ୍କ ପାଖରେ ଯେ ହେଲେ ପରବେଶ
କଉଶଲ୍ୟା ଦେଖିଣ ହୋଇଲେ ହରଷ ।
ଚରଣରେ ନମସ୍କାର କଲେ ଚାପଧାରୀ
ବୋଇଲେ ଜନନୀ ଶୁଣ ବଚନ ମୋହରି ।
ସ୍ୱର୍ଗପୁରେ ରାଜା ଯେ ଅଟନ୍ତି ଇନ୍ଦ୍ରପୁଣ
ସଭା ଯେ ନ କରିଲା ରହିଛି ମଉନେଣ ।
ତ୍ରିଦଶ ଦେବତାଏ ବସି ବିଚାରିଲେ
ଶ୍ରୀରାମ ଅଇଲେ ସଭା ହେବ ସ୍ୱର୍ଗପୁରେ ।
ନାରଦଙ୍କୁ ଡକାଇ କହିଲେ ମୋର ପୁରେ
ମୋତେ କହି ନାରଦ ଯେ ଗଲେକ ସଦ୍ୱରେ ।
ବୋଇଲେ ବେନିଭାଇ ସ୍ୱର୍ଗେ ବେଗେ ଯିବ
ଦୁହିଁଙ୍କର ଘରଣୀକୁ ସଂଗରେ ଯେ ନେବ ।

ଦେବ ସ୍ତିରୀମାନେ ତାଙ୍କୁ ଦେଖିବେଯେଭଲେ
ଏତେ କହି ନାରଦ ସ୍ୱର୍ଗକୁ ଚଳିଗଲେ ।
କୌଶଲ୍ୟା ବୋଇଲେ ବାବୁ ଶୁଣ ହେ ରାଘବ
ଦେବତାଏ କୁଟ ଯେ କରି ପାରନ୍ତି ସର୍ବ ।
ଯେବେ ଯିବୁ ବାବୁରେ ଦେବଙ୍କ ପୁରେତୁହି
ଦଣ୍ଡେ ସମ୍ଭାଳ ମୁଁ ବୁଝିଣ ଆସଇ ।
ସୁମିତ୍ରା ସପତଣୀର ପୁରକୁ ମୁଁ ଯିବି
ଜନକ ଦୁହିତା ଉର୍ମିଳାକୁ ପଚାରିବି ।
ସର୍ବଜ୍ଞ ଅଟନ୍ତି ସେ ଯେ ଜନକ ଦୁହିତା
ପଚାରିଲେ ଆଗତ ନିଗତ କହେ କଥା ।
ଏତେ କହି କୌଶଲ୍ୟା ହାନ୍ଦୋଳା ଅଣାଇଲେ
ଦାସ ଦାସୀ ସଙ୍ଗେ ବେନି ବାହାରହୋଇଲେ ।
ଲକ୍ଷ୍ମଣଙ୍କ ପୁରରେ ଯେ ହେଲେ ପରବେଶ
ଦେଖି କରି ସୁମିତ୍ରା ପାଶରେ ପରବେଶ ।
ଓଳଗି ହୋଇଣ ଯେ ଚରଣରେ ନମିଲା
କେଉଁ ଭାଗ୍ୟେ ମୋର ପୁରେବିଜେ ଆଜଦ୍ୱରା ।
କୌଶଲ୍ୟା ବୋଇଲେ କାହାନ୍ତି ମୋ କୁଳବଧୂ
ଘେନି ଆସ ମୋ ପାଖକୁ ଜୀବନ ତା ସାଧୁ ।
ଶୁଣି କରି ସୁମିତ୍ରା ଯେ ବେଗେ ଚଳିଗଲେ
ଜନକ ଦୁହିତାର ଆଗରେ ମିଳିଲେ ।
ବୋଇଲେ ବଡ଼ ଶାଶୁ ତୋ ଆସିଛନ୍ତି ଦେଖି
ଶୁଣି ଜନକ ସୁତା ଯେ ଉଠିଲେ ତଡ଼ତି ।
କୌଶଲ୍ୟା ଚରଣେ କଲେକ ନମସ୍କାର
ଦେଖି କରି କୌଶଲ୍ୟା ମନରେ ହେଲେ ଭୋଳ ।
ବଧୂକୁ ନେଇଣ କୋଳରେ ବସାଇଲେ
ମୁଖେ ଚୁମ୍ବନ ଦେଇଣ ଆଶ୍ୱାସନା କଲେ ।
ବୋଇଲେ ମାଗୋ ମୁଁ କଥାଏ ପଚାରି
ମାୟା ନ କରିଣ କହିବୁ ସତ୍ୟ କରି ।
ଶ୍ରୀରାମ ଲକ୍ଷ୍ମଣ ମୋର ଯିବେ ସ୍ୱର୍ଗପୁର
ସେ ଗଲେ ସ୍ୱର୍ଗକୁ ଶୁଭ ଅଛିଟିକି ମୋର ।
ଜନକ ଦୁହିତା କହନ୍ତି ଯେ କରଯୋଡ଼ି
ସେ କଥାରେ ଶୁଭଯୋଗ ଅଛଇ ଆମ୍ଭରି ।
ଛଡ଼ଜଣ ସଙ୍ଗେ ଧରି ଯିବେ ଚାପଧାରୀ
ସାତଦିନେ ଫେରିଣ ଆସିବେ ଏହିପୁରୀ ।
ଦେବତା ହେବେତୋଷ ଯେ ଦେବସ୍ତିରୀବଶ
ସେ ପୁରକୁ ଗଲେ ଯଶ ହୋଇବ ଅବଶ୍ୟ ।

ଶୁଣିକରି କଉଶଲ୍ୟା ମନରେ ତୋଷହେଲେ
ଛଡ଼ଜଣ କେକେ ଯିବେ ବୋଲି ପଚାରିଲେ ।
ଉର୍ମିଳା ବୋଇଲେ ଜନନୀ ଶୁଣମୋରବାଣୀ
ବଡ଼ ଠାକୁରଙ୍କ ସଙ୍ଗେ ଜାନକୀ ଯିବେ ପୁଣି ।
ମଝିଆ ପୁତ୍ରଙ୍କ ସଙ୍ଗେ ମୁହିଁ ଯିବି ପୁଣ
ଦାରୁକା ମାତଳି ରଥ ଯିବେ ଯେ ଘେନିଣ ।
ଏହିପରି ଛଡ଼ ଜଣ ଉପର ପୁରେ ଯିବୁ
ଦେବତା ଦେବ ସ୍ତ୍ରୀ ବୋଧିଣ ଆସିବୁ ।
ଶୁଣିଣ ରାମ ମାତା ସନ୍ତୋଷ ହୋଇଲେ
ଲେଉଟି ହାନ୍ଦୋଳରେ ବସିଣ ବିଜେକଲେ ।
ଶ୍ରୀରାମଙ୍କ ପାଶରେ ଯେ ହେଲେ ପରବେଶ
ବୋଇଲେ ଦାଶରଥି ପାଇଲି ସନ୍ଦେଶ ।
ଯାଅ ବାବୁ ସ୍ୱର୍ଗପୁର ବେଗେ ହୋଇ ଆସ
ଏତେ କହି ଜନନୀ ହୋଇଲେ ସନ୍ତୋଷ ।
ଜନନୀଙ୍କ ଚରଣେ ରାଘବ ଓଳଗିଲେ
ଭିତର ପୁରକୁ ରାମ ବାହାର ହୋଇଲେ ।
ସିଂହଦ୍ୱାରେ ରାମ ଯାଇ ହେଲେ ପରବେଶ
ପୁଷ୍ପକ ବିମାନେ ଯାଇ ବସିଲେ ହରଷ ।
ଶ୍ରୀରାମଙ୍କୁ ଦେଖିଣ ଯେ ଜନକ ଦୁଲଣୀ
ପାଞ୍ଚଜଣ ଦାସୀ ଘେନି ଗମନ କଲେ ପୁଣି ।
ପୁଷ୍ପକ ବିମାନେ ବସି ହେଲେ ପରବେଶ
ଦାସୀଙ୍କି ସଙ୍ଗେ ଘେନି ବସିଲେ ହରସ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଲକ୍ଷ୍ମଣଙ୍କୁ ଆଜ୍ଞା ଦେଇଥିଲେ ଦାଶରଥି ।
ଶ୍ରୀରାମଙ୍କ ଆଜ୍ଞାରେ ସଉମିତ୍ରୀ ଗଲେ
ଅନ୍ତଃପୁରେ ଯାଇଣ ପରବେଶ ହେଲେ ।
ଦେଖି ଉର୍ମିଳା ନାରୀ ଉଠିଲେ ତତକ୍ଷଣ
ସ୍ୱାମୀଙ୍କ ଚରଣେ ନମିଲେ ଆସି ପୁଣ ।
କରଯୋଡ଼ିଣ ଉଭାହେଲେ ଉର୍ମିଳାନାରାୟଣ
ସଉମିତ୍ରୀ ବୋଇଲେ ବେଗେ ଯାଅ ପୁଣ ।
ଉପରକୁ ଯିବା ଆଜ୍ଞା ଦେଲେ ରଘୁଶିଷ୍ୟ
ମାଜଣା ହୋଇଣ ବେଗ ହୋଇ ଆସ ।
ସ୍ୱାମୀଙ୍କ ବଚନ ଶୁଣି ଉର୍ମିଳା ଚଳିଗଲେ
ମାଜଣା ହୋଇଣ ବେଶ ଲାଗି ଯେ ହେଲେ ।
ଅମଳାଣ ବସ୍ତ୍ର ପିନ୍ଧି ଉପରାଣ ଦେଇ
ପାଞ୍ଚଜଣ ଦାସୀ ଘେନି ବେଗେ ଚଳିଯାଇ ।

ତାଳଧ୍ୱଜ ରଥରେ ବିଜୟେ କଲେ ଯାଇ
ଲକ୍ଷ୍ମଣ ରଥ ଉପରେ ଯାଇଣ ବସଇ ।
ରାଜାର ସ୍ତିରୀମାନେ ହୁଳହୁଳି ଦେଲେ
ପୁରୁଷମାନେ ସର୍ବେ ଯେ ରାମ ତାଳି ଦେଲେ ।
ମାତଳି ସାରଥି ହୋଇ ବାହିଲାକ ଯାନ
ଉଠିଣ ପୁଷ୍ପକ ବିମାନ କରଇ ଗମନ ।
ରାମ ବୋଇଲେ ଯାନ ଦକ୍ଷିଣ ଦିଗେ ଯାଉ
ରତ୍ନାକରଙ୍କ ପୁରେ ପ୍ରବେଶ ବେଗ ହେଉ ।
ଶୁଣିଣ ମାତଳି ରଥ ବହେ ଘନ ଘନ
ଏଥୁ ଅନନ୍ତରେ ଗୋ ଭଗବତୀ ଶୁଣ ।
ତାଳଧ୍ୱଜ ରଥ ଦାରୁକ ବେଗେ ଚାଳି
ପୁଷ୍ପକ ଯାନ ସଙ୍ଗରେ ଚଳାଇ ବେଗ କରି ।
ବରୁଣର ପୁରେ ଯାଇ ହେଲେ ପରବେଶ
ତରଙ୍ଗ ମନ୍ତ୍ରୀ କହିଲେ ରତ୍ନାକରଙ୍କ ପାଶ ।
ବୋଇଲେ ଜଳଧି ପତି ଶୁଣ ମୋ ବଚନ
ତୁମ୍ଭ ପୁରେ ବିଜେ ଦଶରଥଙ୍କ ନନ୍ଦନ ।
ଶୁଣିଣ ବରୁଣ ରାଜା ଉଠିଲା ବହନ
ଗଳାରେ କୋଠର ତାର ଦଣ୍ଡରେ ତିରଣ ।
ଶ୍ରୀରାମ ଚରଣେ ଆସି କଲେ ଦରଶନ
ଶତବାର ପରିଯନ୍ତେ ଓଳଗି ରାଜନ ।
ପୁଷ୍ପକ ଯାନ ଉପରେ ଓହ୍ଲାଇ ଚାପଧାରୀ
ବରୁଣ ରାଜାଙ୍କୁ କୋଳ କଲେ ଯାଇ କରି ।
ସଉମିତ୍ରୀ ଓହ୍ଲାଇଲେ ତାଳଧ୍ୱଜ ରଥୁ
ଶ୍ରୀରାମ ଲକ୍ଷ୍ମଣ ଚଳିଗଲେ ତହୁଁ ସେଥୁ ।
ବରୁଣ ନିଜ ପୁରେ ପରବେଶ ହେଲେ
ସୁବାସ ଜଳ ଘେନିଣ ବରୁଣ ଚରଣପଖାଳେ ।
ଶୀତଳ ଆସନ ଆଣି ତହିଁ ପକାଇଲା
ତହିଁପରେ ଦୁଇଭାଇ ବସିଲେ ଯାଇ ତ୍ୱରା ।
ବରୁଣ ଚଳିଗଲେ ଅନ୍ତଃଶ୍ୱର ପୁର
ନୀଳାବତୀ ପାଟରାଣୀ ଦେଖିଲା ନେତ୍ରର ।
କରଯୋଡ଼ି ଆଗେ ଉଭା ବରୁଣ ପାଟରାଣୀ
ରତ୍ନାକର ବୋଲେ ବେଗେ ଯାଅ ତୁମ୍ଭେପୁଣି ।
କମଳା ବିଜୟେ କଲେ ଆମ୍ଭର ଭୁବନ
ଶୀଘ୍ର ବନ୍ଦାପନା କରି ଆଣ ଗୋ ବହନ ।
ଶୁଣିଣ ନୀଳାବତୀ ବେଗେ ଚଳିଗଲା
ସୁବର୍ଣ୍ଣ ଥାଳିରେ ଅର୍ଘ୍ୟ ପରିପୂର୍ଣ୍ଣ ନେଲା ।

ପୁଷ୍ପକ ଯାନ ତଳରେ ବିଜେ କଲେ ଯାଇ
ଦେଖିଣ ଜନକ ଜେମା ରଥରୁ ଓହ୍ଲାଇ ।
ତାଳଧ୍ୱଜ ରଥୁ ଉର୍ମିଳା ଅଇଲେ ତଡ଼ତି
ଦୁଇଭଗ୍ନୀ ଓଳଗିଲେ ନୀଳାବତୀ କତି ।
କର ଧରି ନୀଳାବତୀ କୋଳେ ବସାଇଲା
କୋଳରେ ବସାଇ ଅର୍ଘ୍ୟ ବନ୍ଦାଇଲା ।
କର ଧରି ଘେନିଗଲା ଆପଣା ନିଜ ପୁରୀ
ବୋଇଲା ମୋର ଭାଗ୍ୟ ହେଲା ଗୋ ଦୁଲାଳି ।
ବିଷ୍ଣୁଙ୍କ ପାଟରାଣୀ ମୋ ପୁରେ ବିଜେକଲେ
ଈଶ୍ୱରଙ୍କ ପାଟରାଣୀ ଆସିଛନ୍ତି ଭଲେ ।
ଦାସୀଙ୍କୁ କହିଣ ବେଗେ ବେଶ କରାଇଲା
ପଞ୍ଚରତ୍ନ ମଣ୍ଡିଣ ଶରୀରେ ଲାଗି କଲା ।
ଶୀତଳ ପଦାର୍ଥ ଆଣି ଦେଲାକ ବହନ
ଦୁଇଭଗ୍ନୀ ଭୁଞ୍ଜିଣ ହେଲେ ତୋଷମନ ।
ଉଠିଣ ଆଚମନ ବେଗେ ସେ ସାରିଲେ
ବିଡ଼ିଆ ଲାଗି ହୋଇଣ ବହନ ଉଠିଲେ ।
ଓଳଗି ମେଲାଣି ହୋଇ ଚଳିଲେ ଯେ ଖରେ
ଦୁଇ ରଥେ ବିଜୟେ କଲେକ ସତ୍ୱରେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ପାର୍ବତୀ
ଶ୍ରୀରାମ ଲକ୍ଷ୍ମଣ ଯେ ବରୁଣ ପୁରେ ଛନ୍ତି ।
ଶୀତଳ ପଦାର୍ଥ ଆଣି ଦେଲେ ରତ୍ନାକର
ଦୁଇଭାଇ ସେଠାରେ ଭୋଜନ ତତ୍ପର ।
ଭୋଜନ ସାରି ବେଗେ ଆଚମନ କଲେ
ବିଡ଼ିଆ ଲାଗି ହୋଇ କୁଶଳ ପଚାରିଲେ ।
ସାଗର ନୃପତି କହେ ତୁମ୍ଭରି ପ୍ରସାଦେ
ସକଳ କୁଶଳ ମୋର ଶୁଣ ହେ ରାମରାୟେ ।
ଏ ସାଗର ଭିତରେ ଅନେକ ଦୁଷ୍ଟଛନ୍ତି
ତାଙ୍କର ଚିନ୍ତା ମତେ ଲାଗେ ରଘୁପତି ।
ଚାରି ରାବଣ ଦର୍ପିଷ୍ଟ ପୁଣ ଥିଲେ
ତୁମ୍ଭରି ପ୍ରସାଦରେ ସେମାନେ କ୍ଷୟ ଗଲେ ।
ଶ୍ରୀରାମ ବୋଇଲେ ଆମ୍ଭେ ଯାଉଛୁ ସ୍ୱର୍ଗକୁ
ଦୁଷ୍ଟ କଟାଳ କଲେ କହିବ ଆମ୍ଭଙ୍କୁ ।
ଏତେ କହି ଦାଶରଥି ହୋଇଲେ ବାହାର
ଦୁଇଭାଇ ବିଜେ କଲେ ରଥର ଉପର ।
ମାତଳିକି ବୋଇଲେ ଶ୍ରୀରାମଚନ୍ଦ୍ର ଚାହିଁ
ମର୍ତ୍ତ୍ୟ ପୁରକୁ ବେଗେ ରଥ ବାହ ତୁହି ।

ଶୁଣିକରି ମାତଳି ଯାନକୁ ବାହି ନେଲା
ଶୀତଳ ପୁରେ ନେଇ ପ୍ରବେଶ ହୋଇଲା ।
ବସନ୍ତ ମନ୍ତ୍ରୀ ତାକୁ ଦେଖିଲା ସିଂହଦ୍ୱାରେ
ବାରତା କହିଲେ ଯାଇ ପବନ ଆଗରେ ।
ଶୁଣିକରି ମରୁତ ଦେବତା ବେଗ ଆସି
ରାମଙ୍କୁ ଦେଖିଣ ମନେ ହେଲେ ତୋଷି ।
ଶିରେ କର ଦେଇଣ ଯେ ଓଳଗି ହୋଇଲା
ମୋହର ପୁର ଆଜି ଯେ ପବିତ୍ର ହୋଇଲା ।
ତାହାର ବିନତି ଦେଖାଇଣ ବେନି ଭାଇ
ରଥରୁ ଓହ୍ଲାଇ ନଗ୍ରରେ ତାର ଯାଇ ।
ଗଙ୍ଗାଜଳ ନେଇଣ ଚରଣ ଧୋଇଦେଲା
ଅଗୁର ଚନ୍ଦନରେ ଆସନ ଆଣି ଦେଲା ।
ସର୍ବାଙ୍ଗରେ ଶୀତଳ ଚନ୍ଦନ ଲାଗିକଲା
ସୁବାସ ଫୁଲ ଆଣି ସେ ବେଶ କରାଇଲା ।
ଲବଣୀ ସର ଆଣି ଭୁଞ୍ଜାଏ ଦୁଇଭାଇ
ଆଚମନ କରାଇ ବିଡ଼ିଆ ଆଣି ଦେଇ ।
ବିଡ଼ିଆ ଭୁଞ୍ଜିଣ ରାମ କୁଶଳ ପଚାରିଲେ
ତୁମ୍ଭ ପ୍ରସାଦେ କୁଶଳ ମରୁତ କହିଲେ ।
ଶ୍ରୀରାମ ବୋଇଲେ ବହୁତ କଲା ଉପକାର
ରାମାୟଣ ଯୁଦ୍ଧେ ତୋ ପୁତ୍ର ବାଟଦେଲାମୋର ।
ଯୁଗେ ଯୁଗେ ଅମର ହେଲା ତୋରପୁତ୍ର
ଭଲ ଯୋଗରେ ଜାଣିଣ ଜାତ କଲୁମରୁତ ।
କପିକୁଳ ଇନ୍ଦ୍ର ସେ ହୋଇଲା ସାମର୍ଥ
କୁଳଧର୍ମ ଉଦ୍ଧରିଲା ତୋ ପୁତ୍ର ମରୁତ ।
ଶୁଣି କରି ପବନ ମନରେ ତୋଷ ଦେଲା
ତୁମ୍ଭର ସୁଦୟା ଦେବ ମୋଠାରେ ହୋଇଲା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ପବନ ପାଟରାଣୀ ସଉରଭୀ ନାମେ ସତୀ ।
ଦାସୀ ଜଣାଇଲା ଯେ ଛାମୁରେ ଯାଇଣ
ବିଷ୍ଣୁଙ୍କ ପାଟରାଣୀ ବିଜେ କଲେ ଜାଣ ।
ସଙ୍ଗତରେ ପାର୍ବତୀ ଯେ ଅଛନ୍ତି ତାଙ୍କର
ତୋ ପୁରେ ବିଜୟେ ହରିହରଙ୍କର ସଙ୍ଗର ।
ଶୁଣି କରି ପାଟରାଣୀ ବେଶ ବେଗେ ହେଲା
କନକ ଥାଳିରେ ଅଗୁର ଚନ୍ଦନ ଥୋଇଲା ।
ପଞ୍ଚବର୍ଣ୍ଣ ଫୁଲମାଳ ତା ସଙ୍ଗରେ ଘେନି
ଧୀରେ ଧୀରେ ଚଳିଲେ ପବନ ପାଟରାଣୀ ।
ସୀତାଙ୍କୁ ଦେଖିଣ ରଥେ କଲା ନମସ୍କାର
ଶତେବାର ପରିଯନ୍ତେ ଓଳଗେ ପୟର ।
ଦେଖିକରି ଜନକ ଦୁଲଣୀ ଦୟାକଲେ
ରଥରୁ ଓହ୍ଲାଇ ଆସି ବେଗେ ତୋଳିଧରେ ।
ଉଠ ପାଟରାଣୀ ଗୁଣ ସୁଝି ନୁହେଁ ତୋର
ତୋର ସକାଶେ ସ୍ୱାମୀ ପ୍ରାପତ ମୋହର ।
ଶୋକଭର ହୋଇଣ କହଇ ସଉରଭୀ
କେଉଁ ଉପକାର ଅବା ମୁଁ ଯେ କରିଅଛି ।
ତୁମେ ତ୍ରୈଲୋକ୍ୟର ଯେ ଅଟ ପାଟରାଣୀ
ତୁମ୍ଭେ ସିନା ଆମ୍ଭଙ୍କୁ ଜନମ କଲ ପୁଣି ।
ଜନକ ବୋଇଲେ ତୋର ପୁତ୍ର ହନୁମନ୍ତ
ରାବଣକୁ ମାରିବାକୁ ସେହି ଯେ ସାମର୍ଥ ।
ଲଙ୍କାଗଡ଼କୁ ଯାଇ ମୋତେ ସେ ଦେଖିଆସି
ରାମଙ୍କୁ ଘେନି ଯାଇ ଅସୁର ବିନାଶି ।
ଶୁଣିଣ ଆନନ୍ଦ ହେଲେ ପବନର ନାରୀ
ଭଲରେ ବାନର ପୁତ୍ର କୁଳକୁ ଉଦ୍ଧାରି ।
ନାରାୟଣ କାର୍ଯ୍ୟ କଲୁରେ ବାବୁ ଯେବେ
ପ୍ରଳୟ ପରିଯନ୍ତେ ମୃତ୍ୟୁ ଯେ ନୋହୁତୋତେ ।
ଯେତେବେଳେ ମୃତ୍ୟୁତୋର ହୋଇବରେ ବଳା
ତେତେବେଳେ ବିଷ୍ଣୁଅଙ୍ଗେ ଲୀନ ହେବୁପରା ।
ଏତେବୋଲି ପାଟରାଣୀ ଅର୍ଘ୍ୟ ବନ୍ଦାଇଲା
ଅଗୁର ଚନ୍ଦନ ଲେପି ପୁଷ୍ପ ବେଶ କଲା ।
ପହଣ୍ଡ ମଣାଇ ନିଜ ମନ୍ଦିରକୁ ନେଲା
ଶୀତଳ ମଣୋହି ଦୁଇ ଭଗ୍ନୀକି କରାଇଲା ।
ବିଦ୍ୟାଲାଗି କରାଇ ବିନୋଇ କରି କହି
ମୋଠାରେ ସୁଦୟା କରିଥିବ ବଇଦେହୀ ।
ଏତେବୋଲି ପହଣ୍ଡ ମଣାଇ ଘେନିଗଲା
ଯାନର ଉପରେ ନେଇ ଛାଡ଼ିଣ ଅଇଲା ।
ଶ୍ରୀରାମ ଲକ୍ଷ୍ମଣ ମରୁତ ପୁରେ ଗଲେ
ରଥ ଉପରେ ଯାଇଣ ବିଜେ କଲେ ।
ଏଥୁ ଅନନ୍ତରେ ପାର୍ବତୀ ତୁମ୍ଭେ ଶୁଣ
ଚଳିଲା ରଥ ଯେ ପବନହୁଁ ବେଗେ ଜାଣ ।
ନାଶକର ପୁରରେ ହେଲେ ପରବେଶ
ଯାତନା ପଥେ ଗମନ୍ତି କଉଶଲ୍ୟା ଶିଷ୍ୟ ।
ଦୁଇପାଖେ ଯେତେ ପାପି ଲୋକମାନେ ଥିଲେ
ରାମଙ୍କୁ ଦେଖିବାକୁ ସ୍ୱର୍ଗପୁରେ ଗଲେ ।

ସଞ୍ଜିବନୀ ପୁରେ ଯାଇଁ ହେଲେ ପରବେଶ
ଚିତ୍ରଗୁପ୍ତ ଦେଖିଣ ହୋଇଲେ ହରଷ ।
ବିଚାରିଲେ ଜନ୍ତୁପତି ଗଲା ବଡ଼ପଣ
ଆଜ ମୃତ୍ୟୁ ତୋତେଦେବ ତହୁଁ ନାରାୟଣ ।
ଶୁଣିକରି ଜନ୍ତୁପତି ବେଗେ ଉଠିଗଲା
ଗଳାରେ କୁଠାର ଦନ୍ତେ ତିରଣ ଧରିଲା ।
ରଥ ତଳେ ଓଳଗି ହେଲା ଶତେଥର
ବୋଇଲା ମୋତେ ରଖ ହେ କୋଦଣ୍ଡଧର ।
ଶ୍ରୀରାମ ବୋଇଲେ ଉଠରେ ନାଶକର
କିମ୍ପାଇଁ ଆରତ ହୁଅ ରବିର କୁମର ।
ତୋର ପିତା ମୋହର କରିଛି ଉପକାର
ତେଣୁ କରି ଦୋଷ ଯେ ନଧରେ ତୋହର ।
କପିକୁଳେ ଜାତକଲା ସୁଗ୍ରୀନାମେ ପୁତ୍ର
ରାମାୟଣ ଯୁଦ୍ଧକୁ ସେ ହୋଇଲା ସାମର୍ଥ ।
ଜାଣିମାରେ ଅସୁରକୁ ଭଜୁସ ହୋଇଥିଲୁ
ତୋହର ସାମର୍ଥରେ କାଳ ଫାଶ ଦେଲୁ ।
ପାପି ଲୋକମାନଙ୍କୁ ରେ ସମ୍ଭାଳ ଦଣ୍ଡକର
ନୋହିଲେ ନିଶ୍ଚୟ ପ୍ରାଣ ହରିବ ତୋହର ।
ଏତେ କହି ଶ୍ରୀରାମ ସେଠାରୁ ଚଳିଗଲେ
ଯଶୋବନ୍ତ ପୁରେ ପ୍ରବେଶ ହୋଇଲେ ।
ନାରଦ କହିଲେ ଯାଇ ବିଧାତା ଆଗର
ତୁମ୍ଭ ପୁରେ ବିଜେକଲେ ଦଶରଥଙ୍କ କୁମର ।
ତର୍ପଣ ସାରିଣ ବ୍ରହ୍ମା ବେଗେ ଚଳିଗଲେ
ରାମ ଲକ୍ଷ୍ମଣଙ୍କ ଆଗେ ପ୍ରବେଶ ହୋଇଲେ ।
କରଯୋଡ଼ି ସ୍ତୁତି କଲେ ଚତୁର ବଦନ
ଜୟ ତୁମ୍ଭେ ନାରାୟଣ ତ୍ରୈଲୋକ୍ୟକାରଣ ।
ଜୟ ତୁମ୍ଭେ ବାସୁଦେବ ଅସୁର ଦଳନ
ତୁମ୍ଭର ନାମ ଗୋଟି ପରମ କାରଣ ।
ଜୟ ତୁ ଅନାଦି ଜୟ ପ୍ରଭୁ ନିରଞ୍ଜନ
ତୁମ୍ଭର ନାମ ଗୋଟି ଚପନ୍ତି ଯେଉଁ ଜନ ।
ଅଚ୍ୟୁତ, ମଧୁସୂଦନ, ଗୋବିନ୍ଦ, କେଶବ
ଏମନ୍ତ ତୋର ନାମ ଧରନ୍ତି ସର୍ବଜୀବ ।
ଦୁଷ୍ଟ ଜନ ମାରିଣ ସନ୍ଥଜନ ପାଳୁ
ତେଣୁକରି ତୁମ୍ଭ ନାମ ଅଚଳ ମହାମେରୁ ।
ଏତେବୋଲି ସ୍ତୁତି କରେ ଚତୁର ବଦନ
ଶୁଣିକରି ସନ୍ତୋଷ ହୋଇଲେ ଶ୍ରୀରାମ ରାଜନ ।
ବ୍ରହ୍ମାର କାକୁସ୍ଥ ଦେଖି ରଥରୁ ଓହ୍ଲାଇଲେ
ବ୍ରହ୍ମାକୁ ତତକ୍ଷଣ ସେ ତୋଳିଣ ଧରିଲେ ।
ତୁ ମୋହର ଶରୀରୁ ହେଉ ଯେ କାକୁସ୍ଥ
ତୋ ସକାଶେ ମୁହିଁ ଜନ୍ମ ହୋଇଲି ମନୁଷ୍ୟ ।
ଏତେବୋଲି ଶାନ୍ତି କରେ ସାବିତ୍ରୀର ପତି
ଲକ୍ଷ୍ମଣଙ୍କୁ ସଙ୍ଗେ ଘେନି ଚଳିଲେ ଦାଶରଥି ।
ଆଗରେ ବେଦବର ପଛରେ ଶ୍ରୀରାମ
ଏହି ପଛେ ସଉମିତ୍ରୀ କରନ୍ତି ଗମନ ।
ଯଶୋବନ୍ତ ଜଳ ଆଣି ଦେଲେ ଯେ ଦଣ୍ଡବତ
ସୁବାସିତ ଜଳ ଆଣି ଦେଲେ ଯେ ଦଣ୍ଡବତ ।
ଚରଣ ଧଉତ ନେଇ ଶିରରେ ସିଞ୍ଚିଲା
ନିସ୍ତରିଲି ବୋଲି କରଯୋଡ଼ି ଉଭା ହେଲା ।
ନିଳାପିଢ଼ା ଦୁଇଗୋଟି ଆଣିଣ ଦେଲା ବେଗ
ତହିଁପରେ ବସିଲେ ଯାଇ ରାମ ଦେବରାଜ ।
ବ୍ରହ୍ମାଙ୍କୁ ବୋଇଲେ ତୁମ୍ଭେ ଗୋଟିଏ ପିଢ଼ା ଆଣ
ମୋର ସଙ୍ଗେ ବସ ହେ ତ୍ରୈଲୋକ୍ୟ ସଞ୍ଚରଣ ।
ଶୁଣିକରି ବେଦବର ବେଗେ ଚଳିଗଲା
ଆସନ ଗୋଟିଏ ଆଣି ସଙ୍ଗରେ ବସିଲା ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ବେଦବର
ସାତ ବରଷ ଛଡ଼ମାସ ରାଜତ୍ୱ ମୋହର ।
ରାଜାର ଭଲ ମନ୍ଦ ବୁଝିଣ ଦିନ ନେଇ
ପ୍ରଜାଙ୍କୁ ପାଳି ମୁହିଁ ଯେ ନିଶ୍ଚିନ୍ତେ ଅଛିରହି ।
ଆଜକୁ ଚାରିଦିନ ହେଲା ମୋର ପୁଣ
ନାରଦ ବିଜୟେ କଲେ ମୋହର ଭୁବନ ।
ବୋଇଲେ ଦେବସଭା ନୋହିଲା ଏବେ ପୁଣ
ସ୍ୱର୍ଗକୁ ଥରେ ବିଜେ କର ହେ ଆପଣ ।
ଶୁଣିଣ ତାଙ୍କଠାରୁ ଅଇଲୁ ଆମ୍ଭେ ବେଗେ
କିମ୍ପାଇଁ ସଭା ନୋହିଲା କହ ମୋତେ ତୁମ୍ଭେ ।
ବିଧାତା ବୋଇଲେ ମୁଁ ଯେ ସେକଥା ଜାଣଇ
ନାରଦ ବୋଇଲେ ଇନ୍ଦ୍ର ତପ ସେ କରଇ ।
ରାଜା ନ ଯିବାରୁ ସଭା ନୋହିଲା ସ୍ୱର୍ଗର
ଦେବତାଏ ଫେରିଗଲେ ନ ଦେଖି ରାଜାର ।
ଶୁଣିକରି ରାମ ବୋଲେ ଚାଲ ଆମ୍ଭେ ଯିବା
କିମ୍ପାଇଁ ତପ କରେ ଦେବଲୋକ ରାଜା ।
ଶୁଣିକରି ବେଦବର ବୋଇଲେ ବଚନ
ତୁମ୍ଭେ ଯାଅ ଆଗେ ମୁଁ ପଛେ କରୁଛି ଗମନ ।

ଦଶଦିଗପାଳେ ଅଷ୍ଟବସୁ ମୂଳ ଯେତେ
ବରୁଣ, କୁବେର ଆଦି ଦେବତା ସହିତେ ।
ସମସ୍ତଙ୍କୁ ସଙ୍ଖୋଳିଣ ସୁରପୁରେ ଯିବା
ସପତ ଦିନେ ଇନ୍ଦ୍ରର ଭୁବନେ ମିଳିବା ।
ସେ ଦିନ ସେ ଠାବରେ ପ୍ରବେଶ ହେବି ମୁହିଁ
ସବୁ ଦେବତାଙ୍କୁ ଘେନି ଠୁଳ ହେବା ତହିଁ ।
ଶୁଣିକରି ରାମ ମନରେ ତୋଷ ହେଲେ
ଶୀତଳ ମଣୋହି ଆଣି ବେଦବର ଦେଲେ ।
ଭୋଜନ ସେଠାରେ କଲେ ବେନି ଭାଇ
ଆଚମନ ସାରିଣ ବିଡ଼ିଆ ଲାଗି ହୋଇ ।
ଏଥୁଅନନ୍ତରେ ଶୁଣ ଗୋ ଭଗବତୀ
ସାବିତ୍ରୀ ଆଗରେ କହିଦେଲେ ନାରଦ ଯତି ।
ବୋଇଲେ କମଳା ତୁମ୍ଭପୁରରେ ବିଜେକଲା
ପାର୍ବତୀଙ୍କୁ ସଙ୍ଗେ ଘେନି ତୋ ପୁରେ ଅଇଲା ।
ରାମଲକ୍ଷ୍ମଣ ବେନିଭାଇଙ୍କୁ ଚରଚା ସୀତାକଲେ
ବିନୟ ବଚନରେ ତାହାଙ୍କୁ ତୋଷ କଲେ ।
ଶୁଣିଣ ସାବିତ୍ରୀ ଗାୟତ୍ରୀ ବେନି ଜନ
ଦାସୀଗୁଣ ଘେନିଣ ଚଳିଲେ ଧୀରେ ପୁଣ ।
ସିଂହଦ୍ୱାରେ ଯାଇଣ ହେଲେ ପରବେଶ
ଦେଖିଲେ ଦୁଇରଥେ ବସିଅଛନ୍ତି ଯେ ପୁଣ ।
ସାବିତ୍ରୀ ବୋଇଲେ ସତୀଗୋ କାହାକୁ ମାନ୍ୟକରୁ
ତୋ ପୁରକୁ ଆସିବାକୁ କିମ୍ପା ନ ବିଚାରୁ ।
ବ୍ରହ୍ମା, ବିଷ୍ଣୁ, ସଦାଶିବ ଅଟନ୍ତି ଏକ ଅଂଗ
ଭିନ୍ନା ଭିନ୍ନ ନୁହନ୍ତି ଗୋ ତିନିଭାଇ ସଙ୍ଗ ।
ଶୁଣିଣ ଜାନକୀ ଯେ ରଥରୁ ଓହ୍ଲାଇଲେ
ସାବିତ୍ରୀ ଚରଣେଯାଇ ନମସ୍କାର କଲେ ।
ଗାୟତ୍ରୀ ଚରଣରେ ନମିଲେ ଯାଇଣ
ଜାନକୀର କର ଧରି ସାବିତ୍ରୀ ନେଲେ ପୁଣ ।
ଉର୍ମିଳାର କରଧରି ଗାୟତ୍ରୀ ଚଳିଲେ ସତ୍ୱର
ପାର୍ବତୀ ଯେ ଶୁଣନ୍ତି କହନ୍ତି ଈଶ୍ୱର ।
ବିଚିତ୍ର ଆସନରେ ନେଇଣ ବସାଇଲେ
କୋମଳ କରି ଚାଟୁ ଭାଷା ସେ କହିଲେ ।
ନାନା ଛନ୍ଦରେ କଥା ହୋଇଲେ ପୁଣ
ଏକବ୍ରତ କରାଇଲେ ପ୍ରଭୁ ନାରାୟଣ ।
ଆଉବେଳେ ଏ କଥା ଗୋ ନ କରିବ ତୁମ୍ଭେ
ଏତେବୋଲି ସାବିତ୍ରୀ ଯେ କହିଲେ ଆରମ୍ଭେ ।

ଶୀତଳ ପଦାର୍ଥମାନ ଭକ୍ଷିବାକୁ ଆଣି
ଦୁଇ ଯାଆଙ୍କୁ ସନ୍ତୋଷ କରାଏ ସେହୁ ଗୁଣି ।
ବେଶ ଭୂଷଣ କରାଇଲେ ଜନକ ଦୁହିତାଙ୍କୁ
ପ୍ରସନ୍ନ କରିଣ ରଥେ ଛାଡ଼ିଲେ ତାହାଙ୍କୁ ।
ଶ୍ରୀରାମ ଲକ୍ଷ୍ମଣ ଯେ ବେଦବରଙ୍କୁ କହି
ଯାନର ଉପରେ ବସିଲେକ ଯାଇ ।
ଦେଖିକରି ମାତଳି ଯାନ ବାହିନେଲା
ବୃହସ୍ପତିଙ୍କ ପୁରରେ ପ୍ରବେଶ ବେଗେ କଲା ।
ଦେଖିଣ ବୃହସ୍ପତି ଯେ ପାଛୋଟି ଅଇଲେ
ମଂଗଳ ଆଳତୀ ନେଇଣ ରାମଙ୍କୁ ବନ୍ଦାଇଲେ ।
ଲକ୍ଷ୍ମଣଙ୍କୁ ସେହି ପ୍ରାୟ କଲେ ବନ୍ଦାପନା
ସାରିଣ ଦେବଗୁରୁ ସାନନ୍ଦ ହେଲେ କିନା ।
ବୋଇଲେ ଦିଗବିଜେ ହେଲା ଦେବ ପୁରେ
ରାବଣ ମଲା ଦିନୁ ସଭା ନାହିଁ ସ୍ୱର୍ଗରେ ।
ଏତେ ବୋଲି ଗୁରୁ ଯେ ସୁକଲ୍ୟାଣ କଲେ
ଦୁଷ୍ଟକୁଳ ନାଶି ସନ୍ଥ ପାଳ ଯେ ବୋଇଲେ ।
ଏଥୁଅନ୍ତେ ଗଉରୀ ଶୁଣ ତୁମ୍ଭେ ଏବେ
ବୃହସ୍ପତିଙ୍କ ଘରଣୀ ତାରା ଜାଣି ଭାବେ ।
ଅର୍ଘ୍ୟଥାଳି ଘେନିଣ ହେଲେ ପରବେଶ
ଜାନକୀ ଶିରେ ନେଇ ଦେଲେକ ବିଶେଷ ।
ରାମଙ୍କ ଶିରେ ନେଇ ଅର୍ଘ୍ୟ ବନ୍ଦାଇଲେ
ମାନ୍ୟଧର୍ମ କରିଣ ପ୍ରବୋଧ କହିଲେ ।
ସେଠାରୁ ମାତଳି ଚାଳେ ବେଗେ ଯାନ
ଶୁକ୍ର ମନ୍ତ୍ରୀ ପୁରେ ମିଳିଲେ ବହନ ।
ଅଯୋଧ୍ୟାରୁ ଅଇଲେ ତତକ୍ଷଣ ମନ୍ତ୍ରୀବର
ନୟନକୁ କିଛି ଯେ ନ ଦିଶେ ତାଙ୍କର ।
ଯୋଗବଳେ ଜାଣିଲେ ବିଜେ ଦାଶରଥି
ବିଚାରିଲେ ମନରେ ଗୋ ହେଲା ତପଶାନ୍ତି ।
ରାମ ନାମ ସୁମରି ଉଠିଲେ ଆସନୁ
ଦିଶିଲା ନେତ୍ରକୁ ସକଳ ଶୂନ୍ୟ ମନୁ ।
ପରମ ବ୍ରହ୍ମ ନାରାୟଣ ମନରେ ସୁମରିଲା
ପାପମାନ ମୋଚନ ହୋଇଣ ତହୁଁ ଗଲା ।
ମଙ୍ଗଳ ଆଳତୀ କଲା ଶ୍ରୀରାମ ଆଗର
କରଯୋଡ଼ି ବୋଇଲେ ଶୁଣ ନୃପବର ।
ଏଥୁଅନନ୍ତରେ ଶୁଣ ଉମାଦେବୀ
ଶୁକ୍ରଙ୍କର ଘରଣୀ ଯେ ଅଟନ୍ତି ନିଳନ୍ଦୀ ।

ଜାଣିଲା କମଳା ଯେ ବିଜେ ମୋର ପୁର
ଅକ୍ଷତ ତଣ୍ଡୁଳ ଘେନି ମିଳିଲା ଆଗର ।
ବଇଦେହୀ ଶିରେ ନେଇ ନିଉଡ଼ିଲା
ପୁଣି ଉର୍ମିଳା ଦେବୀ ଶିରରେ ନେଇ ଦେଲା ।
କୋମଳରେ ଭାଷା କହି ଓଳଗି ହୋଇଲେ
ମୋଠାରେ ସୁଦୟା କର ଗୋ ବୋଇଲେ ।
ଏତେ ବୋଲି ନିଳନ୍ଦି ଗଲେ ନିଜ ପୁର
ଶୁକ୍ରଦେବ ଓଳଗେ ରାମର ପୟର ।
ମେଲାଣି ହୋଇଣ ମନ୍ତ୍ରୀ ନିଜ ପୁର ଗଲା
ପୁଷ୍ପକ ଯାନକୁ ମାତଳି ବାହିଲା ।
ଅଗ୍ନିଙ୍କର ପୁରେ ଯାଇ ହେଲେ ପରବେଶ
ଏଥୁ ଅନନ୍ତରେ ଶୁଣ କଥା ରସ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ଏଠାରେ ରହିଲା କଥା କରିବି ପ୍ରକାଶ ।
ଶୁକ୍ରମନ୍ତ୍ରୀ ରାମଙ୍କୁ କଲା ଉପକାର
ଦୁଇମାସ ପର୍ଯ୍ୟନ୍ତେ ଗଲା ସମର ଭୂମିର ।
ସଞ୍ଜିବନୀ ମନ୍ତ୍ରରେ କପିଙ୍କି ଜିଆଇଲା
ସେ କିମ୍ପା ପାତେକି ହୋଇ ଚକ୍ଷୁକୁ ନଦିଶିଲା ।
ଈଶ୍ୱର ବୋଇଲେ ଶୁଣ ଗୋ ସେହି କଥା
ମୃତ୍ୟୁ ସଞ୍ଜିବନୀ ମନ୍ତ୍ରେ ଜିଆଏ କପିଲତା ।
ଶ୍ରୀରାମ ସୀତା ଘେନି ଅଯୋଧ୍ୟା ପ୍ରବେଶ
ଅଭିଷେକ ବେଳରେ ମିଳିଲେ ତ୍ରିଦଶ ।
ସୁରଗଣେ ମେଲାଣି କଲେ ରାମରାଏ
ସନ୍ତୋଷରେ ଦେବତାଏ ନିଜପୁର ଯାଏ ।
ସେଠାରେ ଶୁକ୍ରମନ୍ତ୍ରୀ ବିଚାର କଲେ ମନେ
ମୋହର ସକାଶେ ରାମ ଜିଣିଲେ ରାବଣେ ।
ସେ କଥା ଶୁଣି ରାମ ଜାଣିଲେ ମନରେ
ବୋଇଲା ଗର୍ବକଲା ମୋଠାରେ ଦିଗପାଳେ ।
ଯେତେବେଳେ ମୋତେ ସେ କରିବେ ଦରଶନ
ତେତେବେଳେ ଚକ୍ଷୁକୁ ଦିଶିବ ଯାର ପୁଣ ।
ଏମନ୍ତେ କହିବାରୁ ଶୁକ୍ରମନ୍ତ୍ରୀ ଅନ୍ଧ
କାଳେ ପ୍ରାପତ ତାକୁ ହେଲେ ରାମଚନ୍ଦ୍ର ।
ରାମ ସୁମରନ୍ତେ ଫିଟିଲା ତିମିର
ଏ ପ୍ରକାର ପାତକ ଘୋଟିଲା ତାକୁ ବଳ ।
ନିରଞ୍ଜନ ପୁରୁଷ ଯେ ଅଟନ୍ତି ଚାପଧାରୀ
ଦେବକାର୍ଯ୍ୟ ନିମନ୍ତେ ମଞ୍ଚରେ ଅବତରି ।

ଶୁଣିଲଟି ଉମା ହରଷ କରି ମନ
ରାମ ନାମ ଶୁଣନ୍ତେ ଚକ୍ଷୁକୁ ଦିଶେ ଗୁଣ ।
ପାର୍ବତୀ ବୋଇଲେ ରାମ ଅଗ୍ନିଙ୍କପୁରେ ଗଲେ
ସେଠାରେ କିସ କଲେ କହ ମୋତେ ଭଲେ ।
ଈଶ୍ୱର ବୋଇଲେ ରାମ ଗଲେ ଅଗ୍ନିପୁର
ସିଂହଦ୍ୱାରେ ଯାଇଣ ମିଳିଲେ ସତ୍ୱର ।
ଅଗ୍ନିଦେବତା ମନ୍ତ୍ରୀ ଯେ ଅଟଇ ଝାସକେତୁ
ସିଂହଦ୍ୱାରେ ଦେଖିଲା ଅସୁରଙ୍କ ବପୁ ।
ବୈଶ୍ୱାନର ଆଗରେ କହିଲା ଯାଇ ବେଗେ
ରାମ ଲକ୍ଷ୍ମଣ ବିଜେ ତୋର ଦ୍ୱାର ଆଗେ ।
ଶୁଣିକରି ବୈଶ୍ୱାନର ବହନ ଉଠିଲେ
ଅକ୍ଷତ ଦୁବ ଘେନି ପାଶରେ ମିଳିଲେ ।
ରାମ ନାମ ସୁମରି ଅକ୍ଷତ ଦେଲା ନେଇ
କରଯୋଡ଼ି ଆଗରେ ଜଣାଣ କରଇ ।
ନମସ୍ତେ ଚକ୍ରଧର ହେ ନମସ୍ତେ ନାରାୟଣ
ଅତ୍ରାହି ତ୍ରାହି ବାନା ଅଟଇ ତୁମ୍ଭର ।
ମୋତେ ଦେଖି ଏବେ କି ଅଇଲେ ଦାଶରଥି
ମୁଁ ତୁମ୍ଭର ଭୃତ୍ୟ ଅଟଇ ସଦାକାଳେଟି ।
ଏମନ୍ତ ବୋଲିଣ ସ୍ତୁତି କଲେ ବୈଶ୍ୱାନର
ସନ୍ତୋଷ ହୋଇଲେ ଦେବକୋଦଣ୍ଡକାଣ୍ଡଧର ।
ବୋଇଲେ କୁଶଳଟିକି ଅଟଇ ସବୁ ପୁଣି
ବୈଶ୍ୱାନର ବୋଇଲେଯାକୁ ସୁଦୟାକୁମ୍ଭମଣି ।
ସକଳ ଅଟଇ ଶୁଭ ହେ ଦାଶରଥି
ଗୋଟିଏ କଥାରେ ମନ ନିର୍ମଳ ନୋହିଲାଟି ।
ସ୍ୱର୍ଗପୁରେ ଇନ୍ଦ୍ର ଯେ ଅଟଇ ଦେବରାଜା
ସକଳ ଦେବତା ଅଟନ୍ତି ପରଜା ।
ସଭା ନ କରିବାରୁ ସମସ୍ତଙ୍କ ମନଦୁଃଖ
ତୁମ୍ଭର ପ୍ରସାଦରେ ମିଳେ ସର୍ବସୁଖ ।
ସେଠାରୁ ବୈଶ୍ୱାନର ବେଗେ ଚଳିଗଲା
ଲକ୍ଷ୍ମଣ ଶିରରେ ନେଇ ଅର୍ଘ୍ୟ ବନ୍ଦାଇଲା ।
ବୈଶ୍ୱାନରକୁ ବୋଇଲେ କୋଦଣ୍ଡ ଚାପଧାରୀ
ଆମ୍ଭେ ଯାଉଅଛୁ ତୁମ୍ଭେ ଯାଅ ନିଜପୁରୀ ।
ଏଥୁ ଅନନ୍ତରେ ଯେ ଗଉରୀ ଶୁଣ ବାଣୀ
ବୈଶ୍ୱାନର ଘରଣୀ ସ୍ୱାହା ନାମେ ରାଣୀ ।
ଦାସୀ ଜଣାଇଲା ଶୁଣ ରାଣୀ ଭଲେ
ଲକ୍ଷ୍ମୀନାରାୟଣ ତୋ ପୁରେ ବିଜେ କଲେ ।

ଶୁଣିଣ ସ୍ୱାହାନାରୀ ବେଗେ ଚଳିଗଲା
ଅମଳାଣ ଶାଢ଼ୀରୁ ଦୁଇଗୋଟି ନେଲା ।
ଦୁଇ ଭଗ୍ନୀଙ୍କି ନେଇ ଦେଲାକ ବହନ
ଦେଖିଣ ଜାନକୀ ପରମ ତୋଷମନ ।
ସ୍ୱାହାଦେବୀ ବୋଇଲେମାଗୋଅକ୍ଷୟଶାଢ଼ୀ ଏହି
କୌଣସି ଦିନେ ଏ ଯେ କ୍ଷୟଟି ନୁହଇ ।
ଜାନକୀ ବୋଇଲେମୋତେ ସୁଦୟାଯେବେ କଲୁ
ପ୍ରସନ୍ନ ହୋଇଣ କିମ୍ବା ନିର୍ଦ୍ଦୟ ହୋଇଲୁ ।
ସାନ ଭଗ୍ନୀ ଗୋଟି ଅଛନ୍ତି ମୋହର
ତାଙ୍କପାଇଁ ଦୁଇଶାଢ଼ୀ ଦିଅ ଗୋ ସତ୍ୱର ।
ଦେଖିଲେ ବୋଲିବେ ସେ ଆମ୍ଭର ଶାଢ଼ୀକାହିଁ
ଆମ୍ଭଠାରୁ ଏ ଶାଢ଼ୀକି ନେବେ ସେ ଛଡ଼ାଇ ।
ଶୁଣି ବୈଶ୍ୱାନର ନାରୀ ଚଳିଗଲେ
ଅକ୍ଷୟ ଶାଢ଼ୀ ଦୁଇଗୋଟି ପୁଣ ଦେଲେ ।
ହୁତାଶନ ପ୍ରାୟ ଦିଶେ ଶାଢ଼ୀର ତେଜଗୋଟି
ଶାଢ଼ୀର ତେଜରେ ରବି ତେଜ ଗଲା ତୁଟି ।
ଦେଖିଣ ସନ୍ତୋଷ ହେଲେ ଜନକ ଦୁଲଣୀ
ବୋଇଲେ ଏ ନାରୀର ଜୀବନ ଧନ୍ୟ ପୁଣି ।
ବୋଇଲେ ଥାଅ ତୁମ୍ଭେ ଯାଉଅଛୁ ଆମ୍ଭେ
ସୁଦୟା କରିବ ମୋହଠାରେ ଏହିଭାବେ ।
ଶୁଣିକରି ସ୍ୱାହା ନାରୀ ନିଜ ପୁରେ ଗଲେ
ଏଥୁ ଅନନ୍ତରେ ଶୁଣ ଶାକମ୍ଭରୀ ଭଲେ ।
ଶ୍ରୀରାମ ସଙ୍ଗତରେ ବୈଶ୍ୱାନର କଥାହେଲା
ଚାରିବର୍ଣ୍ଣେ ଅତୁଟ ବସନ ଆଣି ଦେଲା ।
ବୈଶ୍ୱାନର ଦେଇଣ ଗଲା ନିଜପୁର
ଶ୍ରୀରାମ ସେଠାରୁ ଯେ ଚଳିଲେ ସତ୍ୱର ।
ରବିପୁରେ ଯାଇ ହେଲେକ ପ୍ରବେଶ
ବାର ଆଦିତ୍ୟ ଘେନି ବସିଛନ୍ତି ଧର୍ମବନ୍ତ ।
ଦେଖିଣ ରାମ ଲକ୍ଷ୍ମଣ ଶିରେ କର ଦେଲେ
ଶତେବାର ପରିଯନ୍ତେ ଓଳଗି ହୋଇଲେ ।
ଉଠି ଧର୍ମ ନିରଞ୍ଜନ ସୁକଲ୍ୟାଣ କଲେ
ଆଜ ମୋର ବଡ଼ ଭାଗ୍ୟ ବୋଲିଣବୋଇଲେ ।
ସତଚାଳିଶ ଯୁଗେ ଦେଖିଲି ମୁହିଁ ତୋତେ
ଦୁର୍ବାଦଳ ଶ୍ୟାମଳ ଦେଖିଲି ନେତ୍ର ପଟେ ।
ଚାରି ରାବଣକୁ ମାରି ଦେବଙ୍କୁ କଲ ସୁଖି
ଏବେ ଦୁଷ୍ଟ ଜନଙ୍କୁ ଧ୍ୱଂସି ପକାଅ ବେଗି ।

ଏହିଠାରୁ ସତର ଯୁଗ ବହିଯିବ
ରାମ କୃଷ୍ଣ ରୂପେ ଦୁଇଭାଇ ଜନମିବ ।
ମଥୁରା କଟକେ ହେବ ତୁମ୍ଭେ ଅବତାର
କଂସର ଭୟରେ ଯାଇ ଲୁଚିବ ଗୋପପୁର ।
ତ୍ରିପୁରା ସଙ୍ଗରେ ଷୋଳସହସ୍ର ଗୋପୀମେଳେ
ତାଙ୍କୁ ଘେନି ଲୀଳା କରିବ ଯମୁନା କୂଳରେ ।
ତ୍ରିପୁରା ବଂଶରେ ପଞ୍ଚ ରାଧା ଜାତ ହେବେ
ତିନିରୂପ ତୋହର ପ୍ରକାଶ ସେହୁ ଠାବେ ।
ପ୍ରଥମେ ହୋଇବ କୃଷ୍ଣ ରାଧା ସଙ୍ଗେ ମେଳ
ସେ ରାଧା ପଦ୍ମିନୀ ଅଂଶେ ହେବ ଅବତାର ।
ତୋତେ ଉପକାର ଅଟେ ପବନ କୁମର
ସେ ଜନ୍ମରେ ତ୍ରିପୁରାରୀ ହୋଇବେ ସେ ବର ।
ନପୁଂସକ ଲକ୍ଷ୍ମଣରେ ନେବେ ସେହୁଦିନ
ଛୁଇଁବାକୁ ନୋହିବେ ଭାର୍ଜନ ତାର ପୁଣ ।
ସେତେବେଳେ ଚୋରୀ ରତି ରାଧା ସଙ୍ଗତରେ
ବାଇବ ବାଂଶରୀ ଦେବ ମୂରଲୀ ସଧୀରେ ।
ସେ ଯୁଗରେ ଅନନ୍ତ ହୋଇବେ ବଡ଼ଭାଇ
ସବୁଦିନେ ତୋର ସଙ୍ଗେ ଏହି ଜନ୍ମ ହୋଇ ।
ଦ୍ୱିତୀୟ ରୂପ ଗୋଟି ଗୋପରେ ହେବ ପୁଣ
ମଦନମୋହନ ରୂପ ଦେଖିବେ ସର୍ବଜନ ।
ତେତେବେଳେ ଶ୍ରୀମତୀଚନ୍ଦ୍ରାବତୀ ସଙ୍ଗେମେଳ
ତ୍ରିପୁରାର ରୂପ ଗୋଟି ଦୁଇ ଯେ ପ୍ରକାର ।
ତାଙ୍କୁ ଘେନି କୁଞ୍ଜବନେ ଲୀଳା ତୁ କରିବୁ
ପରସ୍ତିରୀଙ୍କର ସଙ୍ଗେ ଭୋଳ ତୁ ଯେ ହେବୁ ।
ଦ୍ୱିତୀୟରୂପ ଗୋପୀନାଥ ହୋଇବ ତୋର ପୁଣ
ଷୋଳ ସହସ୍ର ଗୋପୀଙ୍କୁ ତ ନକରିବୁ ମରଣ ।
ସେତେବେଳେ ସରଦାର ବୃନ୍ଦାବନରେ ଲଳିତା
ବୃନ୍ଦାବନେ ସବୁଦିନେ ଏ ଦୁହେଁ କରତା ।
ଏଗାର ବର୍ଷ ଛଡ଼ମାସ ବହିଯିବ
ତେବେ ସେ ଗୋପଲୀଳା ତୁମ୍ଭର ସରିବ ।
ମଥୁରା ପୁରକୁ ତୁମ୍ଭେ ବିଜେ କରି
କଂସକୁ ନାଶିବ ତୁମ୍ଭେ ପ୍ରଭୁ ପଣକରି ।
ତେତେବେଳେ ଦେବନାରୀ ହେବେ ପରବେଶ
ଷୋଳ ସହସ୍ର ଅପସରି ବାସବ ବିଶେଷ ।
ତେର ବର୍ଷ ଛଡ଼ମାସ ତାଙ୍କର ସଙ୍ଗେ ଲୀଳା
ଏହି ପ୍ରାୟେ ପାଞ୍ଚଶ ବରଷ ଯିବ ପରା ।

ସହସ୍ର ମୁଖା ରାବଣ ହେବ ଜରାଜନ୍ଧ
ମଥୁରାରୁ ତୁମ୍ଭଙ୍କୁ ସେ ଘଉଡ଼ିବ ଦେବରାଜ ।
ସମୁଦ୍ରର ଭିତରେ ଦ୍ୱାରକା ନାମେ ପୁର
ସେଠାରେ ଘର ତୁମ୍ଭେ କରିବ ଚକ୍ରଧର ।
ତେତେବେଳେ ପରକ୍ରିୟା ତୋର ପୁଣ ଯିବ
ସୁକ୍ରିୟାରେ ପ୍ରବେଶ ହେବ ହେ ଦେବରାଜ ।
ତେତେବେଳେ ଜାତ ମୁଁ ଯେ ଯୁଧିଷ୍ଠି ରୂପହୋଇ
ତୁମ୍ଭରି ଉପର ବଂଶେ ହରିଶ୍ଚନ୍ଦ୍ର ମୁହିଁ ।
ମାନଧାତା ଯେହୁଟି ସେହୁ ବିଭୀଷଣ
ଭାଗ୍ୟରଥି ହୋଇବେଟି ଅର୍ଜୁନ ପାର୍ଥ ପୁଣ ।
ଶିବ ଦାତା ଜନମ ଆମ୍ଭର ସଙ୍ଗେ ହୋଇ
ଅଶ୍ୱିନି କୁମାରଟି ନକୁଳ ବୋଲାଇ ।
ସଗର ରାଜା ହୋଇ ସହଦେବ ପୁଣ
ଆମ୍ଭେ ଏକା ଅଂଶରେ ଜନମ ପାଞ୍ଚଜଣ ।
ଏ ଜନ୍ମରେ ଉପର ବଂଶ ଆରଜନ୍ମରେ ମେଳ
ତେତେବେଳେ ଆମ୍ଭେ ସର୍ବେ କରିବୁ ଉପକାର ।
ଅର୍ଜୁନକୁ ଘେନି ଭାର ଭାରା ଉଶ୍ୱାସିବୁ
ପଣ୍ଡୁଙ୍କ ନିମନ୍ତେ ରାଜସି ଯାଗ କରାଇବୁ ।
ତେତେବେଳେ ଭୀମସେନ ମାରିବ ଜରାସନ୍ଧ
ଭାରତ ଯୁଦ୍ଧ ହୋଇଲେ ପୃଥିବୀ ହେବ ସୋଧ ।
ଏହି ସୀତା ଜାତ ହେବ ରୁକ୍ମିଣୀ ରୂପରେ
ଯାରଠାରୁ ଅଷ୍ଟପାଦ ବଂଶୀ ଅଂଶ ଧରେ ।
ଅଷ୍ଟପାଟ ବଂଶୀରୂପେ ଅନେକ ନାରୀ ହେବେ
ବତିଶ ସହସ୍ର କନ୍ୟା ତୋ ପାଦେ ଖଟିବେ ।
ସୁକ୍ରୟା ଘରେ ରାଜକନ୍ୟା ଷୋଳ ସହସ୍ର
ବିପ୍ରଙ୍କର ଦୁହିତା ଖଟିବେ ଷୋଳ ସହସ୍ର ।
ଏହାଙ୍କଠୁଁ ଜାତ ଲକ୍ଷେ ଷାଠିଏ ସହସ୍ର ଅଣିକୁମର
ବତିଶ ସହସ୍ର ଦୋହିତା ହୋଇବେ ତୋହର ।
ପରକ୍ରିୟା ନାରୀ ଯେ ବତିଶ ସହସ୍ର ହେବେ
ତୋର ବୀର୍ଯ୍ୟେ ଗୋଟିଏ ସମ୍ଭବ ନୋହିବେ ।
ଦଶଗ୍ରୀବ ରାବଣ ହେବ ଶିଶୁପାଳ
କୁମ୍ଭକର୍ଣ୍ଣ ହୋଇବ ଯେ ସାଲୁ ନାମେ ବୀର ।
ଶତମୁଖା ହୋଇବ ଦନ୍ତବକ୍ର ଶୁଣି
ମହୀରାବଣ ହୋଇବ ରକ୍ମିଣୀ ବୋଲି ଜାଣି ।
ପୁଣ୍ଡରିକ ବାସୁଦେବ ହେବ ଇନ୍ଦ୍ରଜିତ
କାଳ ଦମନ ହେବ ଗୁମାନି ସୁର ସୁତ ।

ଏମାନେ ତୁମ୍ଭ ସଙ୍ଗରେ ହୋଇବେ ବଇରି
ଚକ୍ରେ ଛେଦନ ହୋଇଯିବେ ବୈକୁଣ୍ଠପୁରୀ ।
ଶତେ ପଞ୍ଚାଶ ବରଷେ ତୁମ୍ଭେ ଯିବ ନିଜପୁର
ପୁତ୍ରନାତି ସମସ୍ତଙ୍କୁ ନେବ ହେ ସଙ୍ଗର ।
ଏତେକହି ନିରଞ୍ଜନ ଧର୍ମକୁ ଆଜ୍ଞା ଦେଲେ
ଶ୍ରୀରାମ ଅଙ୍ଗେ ବସ ବୋଲିଣ ବୋଇଲେ ।
ନିରଞ୍ଜନ ଆଜ୍ଞାରେ ସେ ଧର୍ମ ପୁରୁଷ
ବେଗେ ସେ ବସିଲେ ଯାଇ ରାମ ହୃଦଗତ ।
ବରାହ ଆଦିତ୍ୟ ଆସି ଓଳଗି ମେଲାଇଲେ
ନମସ୍କାର କରିଣ ବିନତି ସର୍ବେ କଲେ ।
ବିରଞ୍ଚିଙ୍କୁ ଦେଖିଣ ବୋଇଲେ ରାଘବ
ବଡ଼ ଉପକାର ତୁମ୍ଭେ କଲ ଏହୁ ଜନ୍ମ ।
ତୋରଠାରୁ ଜାତ ହେଲେ କପି ସୁଗ୍ରୀରାଣ
ରାମାୟଣ ଯୁଦ୍ଧକୁ ସେ ହୋଇଲେ କାରଣ ।
ଏହାଶୁଣି ଆଦିତ୍ୟ ବାରେ ସେ ଫେରିଗଲେ
ଧର୍ମ ନିରଞ୍ଜନଙ୍କ ପୁରରେ ମିଳିଲେ ।
ପାର୍ବତୀ ବୋଇଲେ ତୁମ୍ଭେ ହେ ଦିଗମ୍ବର
ଘରଣୀମାନେ ନାହାନ୍ତିକି ବାର ଆଦିତ୍ୟର ।
ନିରଞ୍ଜନ ପୁରୁଷର ନାହାନ୍ତିକି ସ୍ୱତୀ
କୋଉଁଠାରୁ ଜାତହେଲେ ବାର ଆଦିତ୍ୟ ଗୋଟି ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ପ୍ରାଣସହି
ଜଣକେ ଦୁଇ ନାରୀ ବିଭା ଯେ ସେହୁ ହୋଇ ।
ଛାୟା ମାୟା ବୋଲି ଦୁଇ ନାରୀ ଯେ ତାଙ୍କର
ବାର ଆଦିତ୍ୟଙ୍କର ଚବିଶ ନାରୀଟି ସୁନ୍ଦର ।
ବାର ଆଦିତ୍ୟ ଯିବାରୁ ସେମାନେ ଆସିଥିଲେ
ପୁଷ୍ପାଞ୍ଜଳି ଦେଇଣ ସୀତାଙ୍କୁ ସଙ୍ଖୋଳିଲେ ।
ମସ୍ତକ ମଣି ଦ୍ୱାର ଚବିଶ ଗୋଟି ଦେଲେ
ରଜନୀରେ ଗଳାରେ ଲଗାଅ ବୋଇଲେ ।
ନିଶାରେ ଲଗାଇଲେ ହୋଇବ ଆଲୋକ
ରାତ୍ରକାଳ ଲୁଚିବ ହୋଇବ ଦିବା ବେଳ ।
ଏତେ କହି ଛାୟା ମାୟା ବେଗେ ଚଳିଗଲେ
ଧର୍ମ ନିରଞ୍ଜନ ନାରୀ ପ୍ରବେଶ ହୋଇଲେ ।
ଅନାମିକା ମୁଦି ଲଗାଏ ସୀତାର କରର
ବୋଇଲେ ଅନାଦିଙ୍କ ଅଟଇ ଏହୁ ସାର ।
ଏ ମୁଦି ମଧ୍ୟ ଅଙ୍ଗୁଷ୍ଠିରେ ଯେ ରଖିଇନେଇ
ଏମୁଦି ଥିଲେ ତୋଠାରେ ଶ୍ରୀରାମ ସ୍ନେହହୋଇ ।

ଏତେକହି ମୁଦି ଗୋଟି ସୀତା ହସ୍ତେ ଦେଲେ
ମଧ୍ୟ ଅଙ୍ଗୁଷ୍ଠିରେ ନେଇ ଜାନକୀ ଲଗାଇଲେ ।
ଆଉ ଥରେ ଗୋଟିଏ ମୁଦି ଆଣିକରି ପୁଣ
ଉର୍ମିଳା ହସ୍ତରେ ନେଇ ଦେଲେକ ବହନ ।
ବୋଇଲେ ମୋରଠାରୁ ଉର୍ମିଳା ସଙ୍କେତ ଯେପୁଣ
ଏହି ଥର ଦିଗ ବିଜେ ନ ଯିବ ପୁଣ ।
ଏତେ କହି ଯୋଗମାୟା ନିଜପୁର ଗଲେ
ରବିପୁରୁ ଶ୍ରୀରାମ ବେଗେ ଚଳି ଗଲେ ।
କେତୁପୁରେ ପ୍ରବେଶ ହୋଇଲେ ଯାଇ ପୁଣ
ପରିବାରି କହିଲେ କେତୁର ଆଗେଣ ।
ତୋର ପୁରେ ବିଜେକଲେ ଅନନ୍ତ ନାରାୟଣ
ଶୁଣିଣ କେତୁ ବେଗେ ଉଠିଲା ବହନ ।
ତାହାର ଘରଣୀ ଯେ କର୍ମଠ ନାମେ ନାରୀ
ତାହାକୁ ସଙ୍ଗେ ଘେନିଣ କେତୁଯେ ବେଗେଚଳି ।
ମଙ୍ଗଳ ଆଳତୀ ଘେନି ବେଗେ ଚଳିଗଲେ
ଦାନ୍ତରେ ତିରଣ ଧରି ଓଳଗି ବେଗି ହେଲେ ।
ମଙ୍ଗଳ ଆଳତୀ କରି ବୋଇଲେ ଦେବ ରଖ
ଏବେ ମୁଁ ଦେଖିଲି ଦେବ ତୁମ୍ଭର ପଦ୍ମମୁଖ ।
ବିନତି ହୋଇବାରୁ ସୁଦୟା ତାକୁ କଲେ
ସେଠାବରୁ ଶ୍ରୀରାମ ବେଗେ ଚଳିଗଲେ ।
ବୁଧର ପୁରେ ଯାଇହେଲେ ପରବେଶ
ଦାସୀମାନେ ଜଣାଇଲେ ବୁଧଙ୍କର ପାଶ ।
ବୋଇଲେ ରାମଲକ୍ଷ୍ମଣ ତୋପୁରେ ବିଜେକଲେ
ବେଗେ ଯାଇ ଦର୍ଶନ କରଯେ ତୁହି ଭଲେ ।
ଶୁଣିକରି ବୁଧ ବେଗ ହୋଇଲାକ ସଜ
ଜମ୍ବୁଭେଦି ପଦ୍ମମାଳା ଚାରିଗୋଟି ସଜ ।
ତାହାର ଭାରିଜା ଯେ କେଳି ନାରୀ ନାମ
ତାହାକୁ ଡକାଇ ବୁଧ ଆଣିଲା ବହନ ।
ତାର ହସ୍ତେ ଦୁଇଗୋଟି ମାଳା ନେଇ ଦେଲା
ଜାନକୀ ଉର୍ମିଳାଙ୍କୁ ଏହାଦେବୁଟି ବୋଇଲା ।
ବେକରେ କୋଠାର ତାର ଦନ୍ତରେ ତିରଣ
ଦୁଇଜଣ ପ୍ରବେଶ ରାମ ଛାମୁରେଣ ।
ସାତଥର ପରିଯନ୍ତ ଓଳଗି ମେଲାଇଲା
ଜମ୍ବୁଭେଦି ମୋହମାଳା ଗଳେ ଲମ୍ୱାଇଲା ।
ରାମ ଲକ୍ଷ୍ମଣ ଗଳାରେ କଲେ ଆଭରଣ
କେଳିନାରୀ ଦେଲେ ନେଇ ସୀତା ଗଳାରେଣ ।

ସୀତାର ଗଳାରେ ନେଇ ମାଳାକୁ ଲମ୍ୱାଇଲା
ମେଲାଣି ମାଗିଣ ସେ ଯେ ବେଗେ ଚଳିଗଲା ।
ବୁଧକୁ ମେଲାଣି ଦେଇ ଶ୍ରୀରାମ ଗଲେ ଚଳି
ମଙ୍ଗଳ ସିଂହଦ୍ୱାରେ ଯାଇଣ ବେଗେ ମିଳି ।
ଶଙ୍ଖ, ମହୁରୀ ବାଜଇ ଦୁଆରେ ତାହାର
ଉପରେ ଚନ୍ଦ୍ରାତପ ନାନା ଯେ ପ୍ରକାର ।
ରମ୍ଭା ବୃକ୍ଷ ନାରୀକେଳ ଉପରେ ହୋଏ ମାଳ
ତାହାଦେଖି ବିଚାରନ୍ତି ଶ୍ରୀରାମ ମନର ।
ବୋଇଲେ ଏ ପୁରଗୋଟି ମଙ୍ଗଳ କିମ୍ପାହୋଇ
ସ୍ୱର୍ଗପୁରୁ ଏ ପୁରତ ଅଲଗା ଦିଶଇ ।
ବଜନ୍ତରୀ ବୋଇଲେ ଏ ମଙ୍ଗଳ ପୁର
ତିନିଦିନେ ଥରେ ନିର୍ଭା ହୁଅଇ ମଙ୍ଗଳ ।
ଶ୍ରୀରାମ ବୋଇଲେ ସେ କିମ୍ପା ଭିତର ପୁରେଅଛି
ବଜନ୍ତରୀ ବୋଇଲେ ସେ ବେଦିରେ ବସିଛି ।
ଶୁଣିଣ ଶ୍ରୀରାମ ଲକ୍ଷ୍ମଣ ବେଗେ ଚଳିଗଲେ
ସିଂହଦ୍ୱାର ବାଟରେ ଭିତରେ ପଶିଲେ ।
ମଙ୍ଗଳଙ୍କ ଅନ୍ତଃପୁରେ ହେଲେ ପରବେଶ
ଦେଖିଲେ ବରକନ୍ୟା ବେଦିରେ ବିଶେଷ ।
ରାମ ଲକ୍ଷ୍ମଣ ବେଦି ତଳେ ଉଭାହେଲେ
ଦେଖିକରି ବର କନ୍ୟା ବେଦିରୁ ଉଠିଲେ ।
ଶ୍ରୀରାମ ଲକ୍ଷ୍ମଣ ଚରଣରେ ପୁଣି
ଓଳଗି ମେଲାଇଲେ ଦୁଇଜଣ ଜାଣି ।
କରଯୋଡ଼ି ଜଣାଇଲେ ଆଜଦିନ ମୋ ସଫଳ
ମୋର ପୁରେ ବିଜେ କଲେ ବ୍ରହ୍ମାଣ୍ଡ ଠାକୁର ।
କେଉଁ ଭାଗ୍ୟ କରିଣ ପୂର୍ବରୁ ଥିଲି ମୁହିଁ
ମୋହର ସୁଫଳ ବେଳେ ପ୍ରାପତ ଭାବଗ୍ରାହୀ ।
ଏତେ ବୋଲି ଆନନ୍ଦ ହେଲେ ବେନିଜନ
ଅସରଳା ସୂତା ବନ୍ଧା ଦୁହିଁଙ୍କ କରେଣ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ମୋ ବଚନ
କେବଣ ବିଧିରେ ତୁମ୍ଭର ଏହୁ ଶୁଭ ପୁଣ ।
ମଙ୍ଗଳ ବୋଇଲେ ଦେବ ସାତ ବରଷ ଦିନୁ
ଏ କନ୍ୟା ବରିଛି ଦେବମୋତେ ସେହିଦିନୁ ।
ସନାତନ ମୁନିଙ୍କୁ ମୁଁ ସେ ଦିନ ଅନାଇଲି
ବିଭାର ବେଦିରେ ତାଙ୍କୁ ଆନନ୍ଦେ ବରିଲି ।
ସେ ମୁନି ପ୍ରଶନ୍ନ ହୋଇ କହିଗଲା ମୋତେ
ତିନିଦିନ ଥରେ ବିଭା ହେଉଥିବୁ ସୁଖେ ।

ସେହିଦିନୁ ତିନିଦିନେ ହୁଅଇ ଥରେ ବିଭା
ଏତେ କାଳେ ଯୋଗଆସି ହେଲା ମୋର ଶୁଭ ।
ଶ୍ରୀରାମ ବୋଇଲେ ତୋର ମନ ବାଞ୍ଛାଫଳୁ
କାଳେ କାଳେ ତୋତେଶୁଭ ସବୁଠାରେ ମିଳୁ ।
ଏତେ ବୋଲି ଶ୍ରୀରାମ ଲକ୍ଷ୍ମଣ ବାହୁଡ଼ିଲେ
ରଥପରେ ଦୁଇଭାଇ ଯାଇଣ ବସିଲେ ।
ମଙ୍ଗଳ କନ୍ୟାକୁ ଘେନିଗଲା ତତକ୍ଷଣ
ସିଂହଦ୍ୱାରେ ପ୍ରବେଶ ହୋଇଲାକ ପୁଣ ।
ମଙ୍ଗଳ ମୁକୁଟକୁ ଶିରରେ ଛନ୍ତି ବାନ୍ଧି
ଜାନକୀ ଉର୍ମିଳା ପାଦେ ନମିଲେକ ବନ୍ଦୀ ।
ଅନେକ କାକୁସ୍ଥହୋଇ ବିନୟୀ ହୋଇଲେ
ସେଠାରୁ ଶ୍ରୀରାମ ରଥ ଚଳିଲାକ ଖରେ ।
ଶ୍ରୀରାମ ଲକ୍ଷ୍ମଣ ଯିବାରୁ ଫେରିଲା ମଙ୍ଗଳ
ଫେରିଣ ନିଜପୁରେ ମିଳିଲା ସତ୍ୱର ।
ଚନ୍ଦ୍ରଙ୍କର ପୁରେ ରାମ ହେଲେ ପରବେଶ
ଦେଖିଣ ଶୀତଳ ପୁର ମନରେ ହରଷ ।
ଷୋଳଗୋଟି ଚନ୍ଦ୍ରମା ଯେ ସଭା କରିଥିଲେ
ଦୁଆରି ଜଣାଇଲା ତାହାର ଛାମୁରେ ।
ବୋଇଲା ଶ୍ରୀରାମ ଲକ୍ଷ୍ମଣ ଅଛନ୍ତି ଦୁଆରେ
ବିଜେ କରିଅଛନ୍ତି ସେ ଯେ ରଥର ଉପରେ ।
ଶୁଣି ଷୋଳଚନ୍ଦ୍ରମା ଉଦ୍‌ବେଗେ ଆସି
ସିଂହଦ୍ୱାରେ ଦେଖିଲେ ବିଜେ ବ୍ରହ୍ମରାଶି ।
ନିସ୍ତରିଲୁ ବୋଲି କରି ପଡ଼ିଲେ ପାଦତଳେ
ଉଠ ଉଠ ବୋଲିଣ ରାମଚନ୍ଦ୍ର ବୋଲେ ।
କର ଯୋଡ଼ି ଆଗେ ଉଭା ହେଲେ ଶଶିଧର
କେଉଁ କାର୍ଯ୍ୟେ ବିଜେ କଲ ମୋର ପୁର ।
ଶ୍ରୀରାମ ବୋଇଲେ ଆମ୍ଭେ ସ୍ୱର୍ଗକୁ ଅଇଲୁ
ଦିଗ ବିଜେ କରିଅଛୁ ତୁମ୍ଭ ଆଗରେ କହିଲୁ ।
ଶଶିଧର ବୋଇଲେ ଯେବେ ଅଇଲ ମତେଦେଖି
ମୋରପୁରେ ବିଜେ କର ତ୍ରିଲୋକନାଥ ଆସି ।
ଶୁଣିଣ ଶ୍ରୀରାମଚନ୍ଦ୍ର ରଥରୁ ଓହ୍ଲାଇଲେ
ଲକ୍ଷ୍ମଣଙ୍କୁ ସଙ୍ଗେ ଘେନି ସେଠାରୁ ଚଳିଗଲେ ।
ଚନ୍ଦ୍ରଶାଳା ପୁରେ ଯାଇ ହେଲେକ ପ୍ରବେଶ
ଦେଖିଲେ ସେପୁର ଗୋଟି ଦିଶଇ ବିଶେଷ ।
ବଇଡ଼ୁର୍ଯ୍ୟ ପଲଙ୍କରେ ମୁକୁତା ପ୍ରବାଳ
ହୀରା ନୀଳା ମାଣିକ୍ୟ ଖଞ୍ଜିଛି ଅପାର ।

ଶଶିଧର ବୋଇଲେ ଦେବ ମୋପୁରେ ବିଜେକର
ମୋ ଠାରେ ସୁଦୟା ଯେବେ ଅଛଇ ତୁମ୍ଭର ।
ଶୁଣିଣ ଶ୍ରୀରାମଚନ୍ଦ୍ର ପଲଙ୍କେ ବସିଲେ
ଆଉ ପଲଙ୍କରେ ଯାଇ ଲକ୍ଷ୍ମଣ ବିଜେକଲେ ।
ଦାସୀମାନେ କହିଲେ ଯାଇ ରାଣୀଙ୍କ ଆଗର
ବୈକୁଣ୍ଠ ନାରାୟଣ ବିଜେ ତୋର ପୁର ।
ଅନନ୍ତଙ୍କୁ ସଙ୍ଗେ ଘେନି ଚନ୍ଦ୍ରଶାଳା ପୁରେ
ବଇଡ଼ୁର୍ଯ୍ୟ ପଲଙ୍କରେ ବିଜୟେ ସତରେ ।
କମଳା ଅଛନ୍ତି ରଥେ ପାର୍ବତୀ ସଙ୍ଗେ ଘେନି
ଶୁଣିକରି ରୋହିଣୀ ବେଶ ହେଲେ ତତକ୍ଷଣି ।
ସତାଇଶ ଭଗ୍ନୀବେଶ ତାଙ୍କ ସଙ୍ଗରେ ହେଲେ
ଅର୍ଘ୍ୟଥାଳୀ ଘେନି ସର୍ବେଚଳନ୍ତି ଧୀରେଧୀରେ ।
ସିଂହଦ୍ୱାରେ ପ୍ରବେଶ ହେଲେ ଯାଇକରି
ଦେଖିଲେ ରଥପରେ ବିଜୟେ ସୁନ୍ଦରୀ ।
ମଙ୍ଗଳ ଆଳତି କରି ଅର୍ଘ୍ୟ ବନ୍ଦାଇଲେ
ରଥ ଉପରୁ ସୀତା ଉର୍ମିଳା ଓହ୍ଲାଇଲେ ।
ତ୍ରୈଲୋକ ମୋହଇ ଯେ ରୋହିଣୀ ନାମେ ନାରୀ
ଦେଖିଣ ପ୍ରଶଂସା କଲେ ଜନକ କୁମାରୀ ।
ତରଣେ ଓଳଗି ହୁଏ ଶଶିଧର ନାରୀ
କରଧରି ତୋଳନ୍ତି ଯେ ଜନକ କୁମାରୀ ।
ଜାନକୀ ବୋଇଲେ ତୁମ୍ଭେଅଟ ମୋର ଶାଖା
ପ୍ରଜାପତି ଦୁହିତାକୁ ମୋର ଅଟୁ ଲେଖା ।
ରୋହିଣି ବୋଇଲେ ମୋର ପୁରକୁ ଯିବାଚାଲ
ଯେବେ ଦୟା ମୋତେ କଲ ମନରେ ନଭାଳ ।
ଶୁଣି ଜାନକୀ ରୋମା କରଧରି ଚଳି
ଚନ୍ଦ୍ରଶାଳ ପୁରରେ ଯାଇଣ ବେଗେ ମିଳି ।
ବାରସ୍ୱତୀ ଭୁବନ ଦେଖିଲେ ଫେରିକରି
ହୀରାନୀଳା ପଲଙ୍କେ ବିଜୟ ବିଚାରି ।
ରୋହିଣୀ ଆଣିଣ ଶୀତଳଜଳ ଦେଲେ
ଚରଣ ଧୋଇ ଝୀନ ବସନେ ପୋଛିଲେ ।
ଉଦକ ପାଣି ନେଇ ସିଞ୍ଚିଲେ ମସ୍ତକରେ
ନିସ୍ତରିଲି ବୋଲି ଯେ ବୋଲନ୍ତି ତୁଣ୍ଡରେ ।
ଶୀତଳ ମଣୋହିନେଇ ବେନିଠାରେ ଦେଲେ
ସୁଖ ପାଇ ଜାନକୀ ସେଠାରେ ଭୁଞ୍ଜିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଆଚମନ ସାରିଲେ ଜନକଦୁହିତୀ ।

ବିଡ଼ିଆ ଲାଗି ତତ୍‌କ୍ଷଣ ରୋହିଣୀ ଆଣିଲେ
ଚରଣ ମଞ୍ଜାଳିଲେ ରୋହିଣୀ ହୋଇ ତ୍ୱରା ।
ଏଥୁ ଅନନ୍ତରେ ଶୁଣ ଗୋ ହେମବନ୍ତୀ
ଚନ୍ଦ୍ରଶାଳା ପୁରେ ଶ୍ରୀରାମ ବିଜେ କରିଛନ୍ତି ।
ଶୀତଳ ମଣୋହି ଆଣି ଶଶିଧର ଦେଲେ
ଦୁଇଭାଇ ଭୋଜନ କରିଣ ଶୋଇଲେ ।
ନିଦ୍ରାତେଜି ଦୁଇଭାଇ ଉଠିଲେକ ପୁଣ
ବିଡ଼ିଆ ଲାଗି କରାଏ ଚନ୍ଦ୍ର ଦେବତା ପୁଣ ।
କର୍ପୂର ତାମ୍ବୁଳ ନେଇଲାଗି କରାଏ ପୁଣ
ବେଶ ହୋଇଲେ ଶଶିଧର ପୁଣ ।
ନାନା ଛନ୍ଦରେ ବେଶ ଦୁଇଭାଇଙ୍କୁ କରି
ବନମାଳା ଗୁଞ୍ଜମାଳା ଗଳାରେ ନେଇ ଭରି ।
ଶୀତଳ ମୁକୁଟ ନେଇ ଗଳାରେ ବାନ୍ଧିଲା
ଅଗୁର ଚନ୍ଦନ ଚୂଆ ଅଙ୍ଗରେ ବୋଳିଲା ।
ହୀରା ନୀଳା ପାଦୁକାଦେଲା ନେଇଁ ପାଦତଳେ
ବିଜୟେ କଲେ ରାମ ଅତି ଉତ୍ସବରେ ।
ପୁଷ୍ପକ ବିମାନେ ତାଳଧ୍ୱଜେ ବିଜେକଲେ
ଶାକମ୍ଭରୀ ଶୁଣଗୋ ଏଥୁ ଅନନ୍ତରେ ।
ବାରସ୍ୱତୀ ଭୁବନେଯେ ଜାନକୀ ଉର୍ମିଳାଥିଲେ
ରୋହିଣୀ ଯେ ବିଚିତ୍ର ବେଶ କରାଇଲେ ।
ମଣିମୟ ଅଳଙ୍କାର ଜରିଲଗା ଖଞ୍ଜି
ମୁକୁତା ଚଉରୀ ଭୁଣ୍ଡି ଝରକା କାଠି ଖଣ୍ଡ ।
ହୀରା, ନୀଳା, ମଲ୍ଲୀକଢ଼ି ନୀଳ ବର୍ଣ୍ଣରେ କାପ
ବୈଡୁର୍ଯ୍ୟରେ ଜାଲି କମ ଚନ୍ଦ୍ରଫାସିଆ ରୂପ ।
ମୁକୁତାର ଫଇରି ଫିରା କର୍ଣ୍ଣର ମଧରେ
ନୀଳ ବର୍ଣ୍ଣେ ନୋଥ ଖଞ୍ଜେ ନାସାର ପୁଟରେ ।
ମାଣିକ୍ୟର ବସଣୀ ମୁକୁତା ଜାଉଁଳି
ଗଳାରେ ଚାପ ସରି ଜମ୍ବୁନଦ ଘେରି ।
ଶୀତଳ ଯେ ଚନ୍ଦ୍ରହାର ପଦକ ବକ୍ଷସ୍ଥଳେ
ହୀରା ମାଣିକ୍ୟ ଗୁଣ ଯେ ବେନି ହସ୍ତରେ ।
ମୁକୁତାର ତାଡ଼ବିଦ ବାହାରେ ବାହୁଟି
ବେନି ଚରଣରେ ପାହୁଡ଼ ନୂପୁରଟି ।
ଝୁଣ୍ଟିଆ ବଳାଶୋହଇ ଚରଣ ତଳରେ
ରତ୍ନ ନାମେ କାଞ୍ଚଲା ସୋହଇ ହୃଦୟରେ ।
ନୀଳ ନାମେ ଦୁଇଶାଢ଼ୀ ଅମଳୀନ ଆଣି
କାଛି କରି ପିନ୍ଧାଇଲେ ଚନ୍ଦ୍ରର ଘରଣୀ ।

ଏମନ୍ତ ଯେ ବେଶ ଧରି ଶଶଧର ନାରୀ
ପୁଷ୍ପକ ରଥରେ ନେଇ ଛାଡ଼ିଦେଲା ବାଳି ।
ପହଣ୍ଡ ମଣାଇ ରଥେ ବିଜୟ କରାଇଲେ
ମେଲାଣି ମାଗିଣ ନିଜ ପୁରକୁ ଅଇଲେ ।
ପାର୍ବତୀ ବୋଇଲେ ଦେବ କଥାଏ ରହିଲା
ଜାନକୀର ନିଜ ବେଶ କେମନ୍ତେ ହୋଇଲା ।
ଈଶ୍ୱର ବୋଇଲେ ବେଶ ଭଲ ରୂପେ କଲ
ଅମଳାନ ଶାଢ଼ିରେ ବାନ୍ଧି ଆଣିଥିଲ ।
ଜାନକୀର ଦାସୀ ପାଶେ ଦେଲେକ ସତ୍ୱର
ଶୁଣିକରି ତୁମ୍ବର ହୋଇଲାକ ମନ ସ୍ଥିର ।
ପାର୍ବତୀ ବୋଇଲେ ଦେବ ସେଠାରୁ କିସ ନେଲ
ସେ କଥା ଗୋଟି ଦେବ କହ ମୋ ଆଗର ।
ଈଶ୍ୱର ବୋଇଲେ ଶୁଣ ଶାକମ୍ଭରୀ
ସେଠାରୁ ବିଜେ କରି ଗଲେ ଚାପଧାରୀ ।
ଗନ୍ଧର୍ବ ପୁରେ ହେଲେ ପରବେଶ
ବତିଶ ଗୋଟି ଗନ୍ଧର୍ବ ଦେଖିଣ ହରଷ ।
ସେଠାରୁ ଯେ ଦାଶରଥି ବେଗେ ଚଳିଗଲେ
ଯକ୍ଷମାନଙ୍କର ପୁର ଦେଖନ୍ତି ହରଷରେ ।
ସେଠାରୁ ବିଜେ କଲେ କୋଦଣ୍ଡ ଚାପଧାରୀ
ଅପସରି ଗଣ ଦାଣ୍ଡରେ ଦେଖି କରି ।
ଦେଖିଣ ଅପସରା ହୁଳହୁଳି ଦେଲେ
ମଙ୍ଗଳ ଆଳତୀ କରି ଅର୍ଘ୍ୟ ବନ୍ଦାଇଲେ ।
ସେଦାଣ୍ଡରେ ହାଲହୋଳି ପଡ଼ଲା ଉଛେତାକ
କେ ବୋଲେ ବିଜୟ କଲେ ରଘୁନାୟକ ।
କେ ବୋଲେ ରାମ ଲକ୍ଷ୍ମଣ ଚାରି ରାବଣମାରି
ରାବଣ ମାରି ଆମ୍ଭଙ୍କୁ କଲେ ସୁଖି ପୁଣି ।
କେ ବୋଲେ ରାବଣ ଯାଙ୍କର ଶତ୍ରୁ ହେଲା
ନାରାୟଣେ ଦୋଷୀହୋଇ ପ୍ରାଣ ହରାଇଲା ।
କେ ବୋଲନ୍ତି ରାମ ଏ ଲକ୍ଷ୍ମଣ ବେନିଭାଇ
ଅସୁର ବଳ ମାରି ସବୁଙ୍କୁ ସୁଖ ଦେଇ ।
କେ ବୋଲେ ସବୁଦିନେ ଦେବତାଙ୍କର ଏ ପ୍ରଭୁ
ଆରତ ନାଶନ ବାନା ଆରତ ଫେଡ଼େ ସବୁ ।
କେ ବୋଲେ କ୍ଷୀର ସାଗରେ ତାଙ୍କ ଘର
ଦୁଷ୍ଟ ଜନ ମାରିବାକୁ ଜନମ ମୃତ୍ୟୁ ପୁର ।
କେ ବୋଲେ ଏ ପୁରେ ହୁଅନ୍ତୁ ଯେବେଦାସୀ
ମୋ ଜନ୍ମସୁଫଳ ହୁଅନ୍ତା ଯାଙ୍କର ପାଦେଖଟି ।

କେ ବୋଲେ ବହୁତ ଦେବତା କଷ୍ଟ ପାଇଲେ
ଏହାର ପ୍ରସାଦରୁ ନିଶ୍ଚିନ୍ତେ ରହିଲେ ।
କେ ବୋଲେ ଅସୁରର ଅଟନ୍ତି ଏହୁରିପୁ
ପ୍ରଥମେ ଜାତହେଲା ଶଙ୍ଖାସୁର ଦତ୍ୟୁ ।
ତିନିପୁର ସାଧକରି ସିନ୍ଧୁରେ କରେ ଘର
ସମସ୍ତଙ୍କୁ ଜିଣି ଖଟାଏ ପାଦତଳ ।
ଶତେ ଯୁଗେ ପରିଯନ୍ତେ ତପସ୍ୟା ସେହୁକଲା
ସାହେର ଭିତରେ ସେ ନିଶ୍ଚିନ୍ତେ ବସିଲା ।
ସଦାଶିବ ଦେବତା ପ୍ରସନ୍ନ ହେଲେ ତାକୁ
ଅମରବର ଦେଇଣ ପ୍ରସନ୍ନେ ଦେଲେ ବପୁ ।
ଏ ବଳେ ଅସୁର ଜିଣିଲା ସପ୍ତ ଦୀପ
ଚଉଦ ଭୁବନ ଯାକ କଲାକ ଆୟତ ।
ସମସ୍ତଙ୍କୁ ଜିଣି ବେଦବର ପାଶେ ଗଲା
ବିଧାତାଙ୍କୁ ଟୋଳି ଫୋପାଡ଼ିଣ କେଣେ ଗଲା ।
ରମ୍ୟକ ଦୀପରେ ବିଧାତା ପଡ଼ିଲେକ ଯାଇଁ
ବେଦ ଶାସ୍ତ୍ରଘେନି ଅସୁର ଗଲା ବେଗହୋଇ ।
ତେତେବେଳେ ବିଧାତାବାସୁଦେବଙ୍କୁ ସୁମରିଲେ
ସ୍ୱୟଂ ବାସୁଦେବ ସେ କଥା ଜାଣିଲେ ।
ସାଗର ମନ୍ଥନ କାଳେ ଏହି ନାରାୟଣ
କୂର୍ମରୂପେ ଅବତାର ପାଇଲେ ସେହୁପୁଣ ।
ଟେକି ଧରିବାରୁ ସେ ମନ୍ଦର ଗିରି ଜାଣ
ତେବେ ଦେବତାଏ ସାଗର ମନ୍ଥି ଜାଣ ।
ଅସୁର ଦ୍ୱନ୍ଦ୍ୱ କରିବାରୁ ବିଚାରି ନାରାୟଣ
କୌମୁଦି ଗଦାରେ ମାଇଲେ ଦୁଷ୍ଟଗଣ ।
କଶ୍ୟପର ପ୍ରତାପରେ ଧରଣୀ ହେଲା ଭାରୀ
ସମ୍ଭାଳି ନପାରିଲା ବାସୁକୀ ନାଗବାଳୀ ।
ନାରାୟଣ ସୁମରଣା କଲାକ ମନରେ
ତେତେବେଳେ ବାସୁଦେବ ଶୂକର ରୂପଧରେ ।
ଦନ୍ତରେ ବିଦାରିଲେ କଶ୍ୟପ ହୃଦଗତ
ଏକଦନ୍ତେ ପୃଥିବୀ ଧଇଲେ ଜଗନ୍ନାଥ ।
ବିଷ୍ଣୁରୂପ ଦେଖିଣ ଦେବତା ସ୍ତୁତି କଲେ
ତେବେ ଶାନ୍ତି ହୃଦୟ ନାରାୟଣ ହେଲେ ।
କଶ୍ୟପର ଭାଇ ଯେ ଅଟଇ ହିରଣ୍ୟ
ଭାଇ ଛଳେ ସେ ମାଇଲା ଦେବଗଣ ।
ସ୍ୱର୍ଗରେ ଇନ୍ଦ୍ରହେଲା ମର୍ତ୍ତରେ ନରେନ୍ଦ୍ର
ପାତାଳ ପୁରେ ସେ ଯେ ହୋଇଲା ଗଜେନ୍ଦ୍ର ।
ତାହାଦେଖି ବାସୁଦେବ ନୃସିଂହ ରୂପ ହେଲେ
ମାଡ଼ିବସି ନୃସିଂହ ଅନ୍ତ ବିଦାରିଲେ ।
ସେଠାରୁ ତାର ଅଂଶରେ ବଳି ଜାତ ହେଲା
ସ୍ୱର୍ଗରେ ଇନ୍ଦ୍ର ହୁଅନ୍ତେ ମହା ଦାନୀ ହେଲା ।
ବ୍ରାହ୍ମଣ ରୂପେ ବାମନ ମାଗିଲେ ତାଙ୍କୁ ଭିକ୍ଷା
ତ୍ରିପାଦ ଭୂମି ସେ ଦେବାକୁ କଲା ଇଚ୍ଛା ।
ତିନିପାଦ ଦାନ ସେ ଘେନିଲେ ଦେବ ହରି
ବଳିକି ପାତାଳ ପୁରେ ନିଶ୍ଚିନ୍ତ ତାକୁ କରି ।
ପର୍ଶୁରାମ୍ ରୂପଗୋଟି ହୋଇଲେ ନାରାୟଣ
ତେବେ ସେ ନାଶଗଲେ ସକଳ ଦୁଷ୍ଟଗଣ ।
ସହସ୍ରାର୍ଜ୍ଜୁନକୁ ମାରି ଶାନ୍ତ ମୂର୍ତ୍ତି ହେଲେ
ଏବେ ଚତୁର୍ଦ୍ଧା ମୁରତି ପ୍ରତ୍ୟକ୍ଷେ ହୋଇଲେ ।
ଏମନ୍ତେ ଅପ୍‌ସରା ହୁଅନ୍ତି କୁହାକୁହି
ଦାଣ୍ଡ ମଧରେ ରାମ ଲକ୍ଷ୍ମଣ ଚଳିଯାଇ ।
ଯକ୍ଷ ନାରୀଙ୍କ ପୁରେ ହେଲେ ପରବେଶ
ଦେଖିଣ ଯକ୍ଷନାରୀ ମନରେ ହରଷ ।
କେ ବୋଲେ ଅପୂର୍ବ ଯାତନାରେ ବିଜେକଲେ
ପାତକ ଦୋଷ ଆମ୍ଭର ଦେଖିବାକୁ ଗଲେ ।
କେ ବୋଲେ ସ୍ୱର୍ଗକୁ ଏବେ ଦିଗବିଜେ କଲେ
କେ ବୋଲେ କମଳା ଅଛନ୍ତି ସଙ୍ଗତରେ ।
କେ ବୋଲେ ଦେବତା ନ କଲେ ସଭା ଯେଣୁ
ରାମ ଲକ୍ଷ୍ମଣ କ୍ରୋଧେ ଆସିଛନ୍ତି ତେଣୁ ।
କେ ବୋଲେ ଇନ୍ଦ୍ରକୁ ସେ ସଭାରେ ବସାଇବେ
କେ ବୋଲେ ଦେବତାଙ୍କ ସଙ୍ଗରେ ଭାବହେବେ ।
କେ ବୋଲଇ ସ୍ୱର୍ଗପୁର ଆସିଛନ୍ତି କଳି
କେବୋଲଇ ଦେବତାଙ୍କ ସଙ୍ଗରେ ହେବ କଳି ।
ଏମନ୍ତ ଯେ କୁହାକୁହି ଦକ୍ଷନାରୀ ହୁଅନ୍ତି
ଦାଣ୍ଡର ମଧରେ ରଥ ସନ୍ଧିରେ ଚାଲିଯାନ୍ତି ।
ବିଦ୍ୟାଧରୀ ପୁରକୁ ସେ କଲେକ ଗମନ
ସେ ଦାଣ୍ଡରେ ବିଜେ ରଘୁନାଥ ପୁଣ ।
ଦେଖିଲେ ସେପୁର ଗୋଟି ଅତ୍ୟନ୍ତ ଶୋଭାଦିଶେ
ନୀଳବର୍ଣ୍ଣ ଧବଳ ଯେ ବସନ୍ତ ବର୍ଣ୍ଣ ଦିଶେ ।
ସେ ପୁରକୁ ରାମ ଦେଖି କଲେକ ପସନ୍ଦ
କେ ବୋଲଇ ବିଧାତା ଏହାକୁ କରିଛି ନିର୍ମାଣ ।
ନୋହିଲେ କି ଦିଶନ୍ତା ଏତେ ଶୋଭା ଏହିପୁର
ଏତେ କରି ପ୍ରଶଂସା କରନ୍ତି ରଘୁବୀର ।

ଏଥୁ ଅନନ୍ତରେ ଶୁଣ ଭଗବତୀ
ବୀଣା ସୀତାର ପ୍ରତି ଘରେ ବାଜୁଅଛି ।
ମର୍ଦ୍ଦଳ, କଂସାଳ ଯେ ବାଜଇ ଘଣ୍ଟାଘଣ୍ଟି
ଶବଦରେ ସେ ପୁରଗୋଟି ଉଛୁଳୁଛି ।
କେଉଁଠାରେ ଗାୟକ ଗାଆନ୍ତି ନାନାଗୀତ
କେଉଁଠାରେ ନାନାରଙ୍ଗେ ହେଉଅଛି ନୃତ୍ୟ ।
କେଉଁଠାରେ ପଞ୍ଜା ପଞ୍ଜା ବେଶ ହୋଇପୁଣ
କେଉଁଠାରେ ଦାଣ୍ଡ ହାଟେ କରନ୍ତି ଗମନ ।
ହାସ୍ୟ ରସ ପରିହାସ କେଉଁଠାରେ ହୋଇ
କେଉଁଠାରେ ସାତପାଞ୍ଚ କଥା ହୋନ୍ତି ଯାଇ ।
ଏହି ପ୍ରାୟେ ସେହିଦାଣ୍ଡ ହୋଇଅଛି ଗହଳ
ସ୍ୱର୍ଗପୁର ଗୋଟି ପ୍ରାୟ ଶୋଭା ଯେ ଚହଳ ।
ସେ ପୁର ଦେଖିଣ ସୀତା ରୋମାହର୍ଷ ହେଲେ
କେଉଁ ପୁର ବୋଲିଣ ଏ ସ୍ୱାମୀଙ୍କୁ ପଚାରିଲେ ।
ଶ୍ରୀରାମ ବୋଇଲେ ଏ ବିଦ୍ୟାଧରଙ୍କ ପୁର
ବିଦ୍ୟାଧର ମାନଙ୍କର ଅଟେ ଏହୁ ପୁର ।
ସ୍ୱର୍ଗରେ ସାର ଏହୁ ଅଟଇ ପୁର ଗୋଟି
ଅତି ଅଶୋଭା ପୁର ଗୋଟି ଅତି ସୁନ୍ଦରଦିଶି ।
ଏତେ କହି ଶ୍ରୀରାମ ସେଠାରୁ ଚଳିଗଲେ
ଅଷ୍ଟ ବସୁଙ୍କ ପୁରେ ପ୍ରବେଶ ହୋଇଲେ ।
ଦେଖିଣ ସେ ପୁର ଗୋଟିକ କହିଲେ
ତୁମ୍ଭର ପୁରକୁ ରାମ ଲକ୍ଷ୍ମଣ ବିଜେ କଲେ ।
ସଙ୍ଗରେ ଛନ୍ତି ତାଙ୍କର ଜାନକୀ ଉର୍ମିଳା
ଏ ରୂପେ ବିଜୟେ ଦଶରଥଙ୍କର ବଳା ।
ଶୁଣିଣ ଅଷ୍ଟବସୁ ବେ ହୋଇ ଆସେ
ଦେଖିକରି ରାମଚନ୍ଦ୍ର ମନର ହରଷେ ।
ରଥର ଉପରୁ ବେଗେ ଓହ୍ଲାଇ ଦୁଇଭାଇ
ଅଷ୍ଟବସୁଙ୍କୁ ନମସ୍କାର କଲେ ପୁଣି ତହିଁ ।
ସୁକଲ୍ୟାଣ କରିଣ ବସିଲେ ଅଷ୍ଟବସୁ
ଦୁଇଭାଇଙ୍କୁ କୋଳକଲେ ହୋଇଣ ସନ୍ତୋଷ ।
ଅଷ୍ଟବସୁ ବୋଇଲେ ଶ୍ରୀରାମ ସୁଫଳ ଆଜିଦିନ
ଏ ପୁରେ ବିଜେକଲେ ଅନାଦି ନାରାୟଣ ।
ଯେଉଁନାମ ଧଇଲେ ପାପିର ପାପକ୍ଷୟ
ଯେଉଁ ନାମ ଧଇଲେ ନିର୍ଭୟ ମନ ହୁଏ ।
ଯେଉଁନାମ ଗୋଟିକି ଶଙ୍କର କରେ ଧ୍ୟାନ
ଯେଉଁନାମ ଧରି ଅମର ହୁଅ ପୁଣ ।

ଯେଉଁନାମକୁ ମୁନିମାନେ କରନ୍ତି ଜପ
ଯେଉଁନାମ ଶୁଣିଲେ ଅସୁରଙ୍କର ଭାଙ୍ଗେଦର୍ପ ।
ଯେଉଁନାମକୁ ଆଶ୍ରେ କରନ୍ତି ଦେବଗଣ
ଯେଉଁପାଦେ ସୁରାସୁରୀ ଲୁଚିଲେ ଯାଇପୁଣ ।
ଯାହାଙ୍କ ପାଦଲାଗି ଅହଲ୍ୟା ମୁକତ
ଯେଉଁନାମ ଅବିଶ୍ୱାସେ ମଲେକ ଦଇତ୍ୟ ।
ଯେଉଁନାମ ସୁମରିଲେ ବୈକୁଣ୍ଠ ପୁରମିଳେ
ସେ ପୁରୁଷ ବିଜୟେ କରିଛି ଆମ୍ଭପୁରେ ।
ଯେଉଁନାମ ପଦକୁ ମୃଗୁଣୀ ସ୍ତୁତି କଲା
ବ୍ୟାଧର ଜାଲ ଛିଡ଼ିଲା ଶ୍ୱାନକୁ ନ ଦିଶିଲା ।
ଏମନ୍ତେ ଅନେକ ସ୍ତୁତିକଲେ ଅଷ୍ଟବସୁ
ବୋଇଲେ କିମ୍ପାଇ ନାଥ ଏ ପୁରକୁ ଆସୁ ।
ଶ୍ରୀରାମ ବୋଇଲେ ଆମ୍ଭେ ଅଯୋଧ୍ୟାରେ ଥିଲୁ
ନାରଦ କହିବାରୁ ସ୍ୱର୍ଗକୁ ଅଇଲୁ ।
ପ୍ରଥମରୁ ଦିଗବିଜେ ସ୍ୱର୍ଗପୁର ମୋର
ନାରଦ ବୋଇଲେ ସଭା ନୋହିଲା ସ୍ୱର୍ଗପୁର ।
ତେଣୁକରି ଦିଗ ବିଜେ କରିଣ ଅଇଲୁ
ସବୁ ପୁର ଦେଖି ଆମ୍ଭେ ହରଷ ହୋଇଲୁ ।
ଅଷ୍ଟବସୁ ବୋଇଲେ ଇନ୍ଦ୍ର ନଆସେ ଏବେସଭା
କେଉଁ ଅବିଗୁଣ ସେ ପାଇଛି ଦେବରାଜା ।
ଏମନ୍ତ ବୋଲିଣ ବସୁ କଥା ଯେ ହୋଇଲେ
ରାମ ଲକ୍ଷ୍ମଣ ସେଠାରୁ ବେଗେ ଚଳିଗଲେ ।
ଅଷ୍ଟବସୁଙ୍କର ପୁରେ ଯାଇଣ ମିଳିଲେ
ଅତି ଶୋଭା ପୁରମାନ ସେଠାରେ ଦେଖିଲେ ।
ବସିବାକୁ ଆସନ ଦେଲା ଆଣିପୁଣ
କୋମଳ ଆସନ ପରେ ବସିଲେ ଦେବରାଣ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ଅଷ୍ଟବସୁଙ୍କର କି ନ ଥିଲେ ନାରୀମାନ ।
ଈଶ୍ୱର ବୋଇଲେ ସେ ଭିତରେ ପୁରେ ଥିଲେ
ଦାସୀମାନେ ତାହାଙ୍କର ଆଗରେ କହିଲେ ।
ବୋଇଲେ ନାରାୟଣ ଅଇଲେ ଆମ୍ଭପୁରେ
କମଳା ଉର୍ମିଳା ଅଛନ୍ତି ରଥର ଉପରେ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ବରିଲେ ତୁମ୍ଭ ସ୍ୱାମୀ
ତୁମ୍ଭେ ଏବେ ତତକ୍ଷଣି ବର ଦେବୀ ଲକ୍ଷ୍ମୀ ।
ଶୁଣିକରି ଅନ୍ନପୂର୍ଣ୍ଣା ବେଗେ ଚଳିଗଲେ
ପାରିଜାତ ପୁଷ୍ପେ ଦୁଇମାଳ ଦେଲେ ।

ଅକ୍ଷତ ଦେଲେ ନେଇ ଦୁହିଁଙ୍କ ଶିରରେ
ପାରିଜାତ ପୁଷ୍ପ ମାଳା ଲମ୍ବାଇ ବକ୍ଷସ୍ଥଳେ ।
କରଧରି ରଥପରୁ ଦୁହିଁଙ୍କି ଘେନିଗଲେ
ହେମମୟୀ ପୁରରେ ବେଗେ ବସାଇଲେ ।
ମାଜଣା ସ୍ନାହାନ ଯେ କଲେ ଦେବୀ ସୀତା
ସଯତନେ ବେଶ ହେଲେ ଶ୍ରୀରାମ ବନିତା ।
ଉର୍ମିଳା ସେହି ରୂପେ ଅପୂର୍ବ ବେଶ ହେଲେ
ସେ ମାଳା ନେଇଣ ଗଳାରେ ଲମ୍ବାଇଲେ ।
ଦୁଇ ଭଗ୍ନୀଙ୍କୁ ଅନ୍ନପୂର୍ଣ୍ଣା ଘେନି
ରଥପରେ ନେଇ ଛାଡ଼ିଲେ ତତକ୍ଷଣି ।
ମେଲାଣି ମାଗି ଦେବୀ ଚଳିଣ ଅଇଲେ
ଏଥୁ ଅନନ୍ତରେ ତୁମ୍ଭେ କଥାଶୁଣ ଭଲେ ।
ରାମ ଲକ୍ଷ୍ମଣ ଅଷ୍ଟ ବସୁଙ୍କ ପୁରେ ଥିଲେ
ମାଜଣା ହୋଇ ସେଠାରୁ ସ୍ନାନ ବିଧି କଲେ ।
ଅମଳାଣ ପିନ୍ଧିଣ ପୁଷ୍ପଲାଗି ହେଲେ
ବସୁଙ୍କୁ ମେଲାଣିମାଗି ସେଠାରୁ ଅଇଲେ ।
ଯାନପରେ ଦୁଇଭାଇ ହେଲେ ପରବେଶ
ସେ ପୁରରୁ ଯାନ ଚଳି ଗଲାକ ବିଶେଷ ।
ଅଶ୍ୱିନୀକୁମାରଙ୍କର ପୁରରେ ପ୍ରବେଶ
ଦ୍ୱାରେପ୍ରବେଶ ହୋଇଲେ ଜାଉଁଳିନାମେ ରଥ ।
ଅଶ୍ୱିନୀକୁମାର ନାରୀ ଅନ୍ତଳା ନାମେ ପୁଣ
ଉଚ୍ଚପରେ ବସି ଖେଳେ ଦାସୀଙ୍କ ସଙ୍ଗେ ଜାଣ ।
ରଥକୁ ଦେଖିଣ ଉଚ୍ଚରୁ ଓହ୍ଲାଇଲେ
ସ୍ୱାମୀଙ୍କ ଆଗରେ ସେ ପ୍ରବେଶ ହୋଇଲେ ।
କରଯୋଡ଼ି ଜଣାଏ ସ୍ୱାମୀଙ୍କ ଛାମୁରେ
ଆମ୍ଭଦ୍ୱାରେ ବିଜେ କରିଛନ୍ତି ଧନୁର୍ଦ୍ଧରେ ।
ଶ୍ରୀରାମ ଲକ୍ଷ୍ମଣ ଛନ୍ତି ଦୁଆରେ ଆମ୍ଭର
ସତ୍ୱରେ ଚଳିଯାଅ ତାହାଙ୍କ ପାଶର ।
ଶୁଣିକରି ଅଶ୍ୱିନୀକୁମାର ଚଳିଗଲେ
ଦାଣ୍ଡ ଦୁଆରେ ଯାଇ ରଥକୁ ଦେଖିଲେ ।
ବୋଇଲେ ସୁଦୟା କି କଲ ଏତେ କାଳେ
ସପ୍ତମ ଅବତାରେ ବିଜେ ମୋର ପୁରେ ।
ଶ୍ରୀରାମ ଲକ୍ଷ୍ମଣ ଚାହିଁଲେ ରଥେ ପୁଣ
ତଳେ ଉଭା ହୋଇଛନ୍ତି ଅଶ୍ୱିନୀକୁମାର ।
ବିଚାରିଲେ ଅଷ୍ଟମ ଅବତାରେ ମୁହିଁ
ଜନମ ହୋଇବି ମୁଁ ମଧ୍ୟ ପୁରେ ଯାଇ ।
ତେତେବେଳେ ଏହି ମୋର ହୋଇବେ କି ଗୁରୁ
ପଣ୍ଡୁ ବିଭା ହୋଇବେ ବସୁଦେବ ଭଗ୍ନୀକୁ ।
ସେ ପ୍ରକାଶେ ମାନ୍ୟ ଧର୍ମ ଏହାକୁ ମୋହର
ନକୁଳ ଜାତ ହେବେ କୋଇନ୍ତୀ ଗର୍ଭର ।
ଏତେ ବିଚାରି ଦେବ ରଥରୁ ଓହ୍ଲାଇଲେ
ଅଶ୍ୱିନୀକୁମାରଙ୍କୁ ନମସ୍କାର କଲେ ।
କୁମରବୋଇଲେ ବାବୁରେ ଶୁଭେ କାର୍ଯ୍ୟକର
ଏ ଦେହ ଘେନି କରି ତୁ ନିଜ ପୁରେ ଚଳ ।
ଏତେ କହି କୁମରଙ୍କୁ କୋଳରେ ବସାଇଲେ
ଆର ଅବତାରେ ବାନ୍ଧବ ହେବ ମୋର ଭଲେ ।
ଏତେ ବୋଲି ମେଲାଣି ହୋଇ ବେଗେ ଗଲେ
ଅଶ୍ୱିନୀକୁମାରଙ୍କ ନାରୀ ଯେ ମିଳିଲେ ।
ଶୀତଳ ଆସନ ଯେ ଦୁଇଗୋଟି ଘେନି
ଦେଖି ଜାନକୀ ଉର୍ମିଳା ଓହ୍ଲାଇଲେ ପୁଣି ।
ଦୁଇ ଭଗ୍ନୀ ଓହ୍ଲାଇଲେ ତାଙ୍କର ବଚନେ
ଶୀତଳ ଆସନ ଦେଇ ବୋଧିଲେ ତୋଷମନେ ।
ବୋଇଲେ ଆସନରେ ବିଜୟେ କରିବ
ଆସନେ ବିଜେକଲେ ଚିନ୍ତା ଯେ ନୋହିବ ।
ଏତେକହି ଚଳିଗଲେ ବୃଦ୍ଧମାତା ବେଗେ
ଆପଣାର ଘରେ ପ୍ରବେଶ ସଂଯୋଗେ ।
ସେଠାରୁ ଦୁଇଭଗ୍ନୀ ରଥରେ ଯାଇ ବସି
ମାତଳି ବାହିଲା ରଥ ଚଳିଲେ ଦାଶରଥି ।
ତିରିଶ ଯୁଣ ପଥ ଏକା ନିମିଷକେ ଗଲେ
କୁବେର ଭୁବନେ ଯାଇ ବେଗେଣ ମିଳିଲେ ।
ଦାଣ୍ଡ ପରିମଳ ଯେ ଦିଶେ ସେହୁ ପୁର
ଧବଳ ବର୍ଣ୍ଣପୁର ଦିଶଇ ସୁନ୍ଦର ।
ଦୁଆରେ ଛେରା ପହଁରା ଚନ୍ଦନ ପିଚିକା
କର୍ପୂରର ଗୁଣ୍ଡି ହୋଇଛି ତହିଁ ମିଶା ।
ଆଲଟ ଚାମର ବିଞ୍ଚନ୍ତି ସର୍ବପୁରେ
ଦେଖିଣ ହରଷ ହେଲେ ଦଶରଥ ବାଳେ ।
କୁବେର ଭଣ୍ଡାର ବସି ଦେଉଅଛଇ ପଡ଼ି
ଜ୍ଞାତବ ମନ୍ତ୍ରୀମାନେ ଲେଖୁଛନ୍ତି ଧରି ।
ଏହି ସମୟରେ ମିଳିଲେ ରାମ ଦେବ
ଦେଖିକରି ଦ୍ୱାରୀ ଯେ କଲେକ ଶବଦ ।
ବାଜା ବଜାଇଣ ଶଙ୍ଖ ବାଏ ଘେନି
ଶବଦ ଶୁଣିଣ କୁବେର ଜାଣେ ପୁଣି ।

ବୋଇଲା ମୋର ଦ୍ୱାରେ ହୋଇଲା ଆଚମ୍ବିତ
କେଉଁ ଦେବତା ଆସି ହୋଇଲେ ଉପଗତ ।
ପରିଜନେ କହିଲେ ରାମ ବିଜେ କଲେ
ତୋହର ପୂର୍ବଦ୍ୱାରେ ରଥ ରୁହାଇଲେ ।
କୁବେର ବିଚାରେ ନିଶ୍ଚେ ପ୍ରାଣ ଗଲା
ରାବଣ କନିଷ୍ଠ ମୋର ବଇରି ହୋଇଲା ।
ନୀଳିଣୀ ନାମରେ ଅଟଇ ଯେ ତାର ନାରୀ
ସେଠାରେ ପ୍ରବେଶ ହେଲେ ବ୍ରହ୍ମାଣ୍ଡ ଅଧିକାରୀ ।
ବୋଇଲେ ପ୍ରାଣସହିରେ ମୋର କଥା ଶୁଣ
ଅଧିକାର ମୋର ଆଜ ସରିଲା ଯେ ଜାଣ ।
ରାବଣ କୁମ୍ଭକର୍ଣ୍ଣକୁ ମାଇଲେ ଯେଉଁ ରାମ
ମୋର ପୁରେ ବିଜୟ କଲେ ଆଜ ପୁଣ ।
ମୋର ଅଧିକାର ଆଜ କରିବେ ସେହୁ ନାଶ
ରାବଣ ଚଣ୍ଡାଳ ଯୋଗେ ସର୍ବ ହେଲା ଧ୍ୱଂସ ।
ନୀଳିଣୀ ନାମେ ନାରୀ ବୋଇଲା ତୁମ୍ଭେ ଶୁଣ
ମୋର ସଙ୍ଗେ ଆସ ତୁମ୍ଭେ ନ କର ଭୟପୁଣ ।
ବିଭୀଷଣ ଅଟଇ କନିଷ୍ଠ ତୁମ୍ଭର
ସେ ରାମେ ଶରଣ ପଶି ବଧିଛି ଅସୁର ।
ତୁମ୍ଭେ ଗଲେ ପୌରୁଷ ପାଇବ ରାମ ପାଶେ
ନୀଳିଣୀ କନ୍ୟା କହିଲା ସ୍ୱାମୀର ଅଗ୍ରତେ ।
କନକ ଥାଳିରେ ଅର୍ଘ୍ୟ ପୂରାଇ ବହନ
ଘେନିଣ ବେନିଜନ ଚଳିଗଲେ ପୁଣ ।
ଶ୍ରୀରାମର ଛାମୁରେ ହେଲେ ପରବେଶ
ଦେଖିକରି ରାମ ଯେ ହୋଇଲେ ହରଷ ।
ଶ୍ରୀରାମଙ୍କୁ ଦେଖିଣ ଧନପତି ପୁଣ
କୁଶଳ ଅଛଟିକି କହ ମୋ ଆଗେଣ ।
କୁବେର ବୋଇଲେ ଦେବ ହେ ତୁମ୍ଭର ପ୍ରସନ୍ନେ
ରାବଣ ନାଶ ଯିବାର ଶୁଣି ମୋର ମନେ ।
ଶ୍ରୀରାମ ବୋଇଲେ ପରା ଅଟେ ତୋର ଭାଇ
ସେହି ମଲେ ସୁଖ ତୋତେ କେମନ୍ତେ ଯୋଗାଇ ।
କୁବେର ବୋଇଲା ଦେବ ଅନ୍ୟାୟ ବଡ଼ କଲା
ଦେବତାମାନଙ୍କୁ ଜିଣି ସେବା କରାଇଲା ।
ସମସ୍ତଙ୍କର ବଇରୀ ହେଲା ସେ ପାପିଷ୍ଠ
ବିଷ୍ଣୁରେ ଦୋରେହା ହେଲା ଅସୁର ଚଣ୍ଡାଳ ତ ।
ଶୁଣିକରି ରାମରାଣ ରଥରୁ ଓହ୍ଲାଇଲେ
ତୁହି ମୋର ଭକ୍ତ ଅଟୁ ଡରୁ କିମ୍ପା ମୋରେ ।

ଏକେତ ଦିଗପାଳେ ମୋର ସଙ୍ଗରେ ସରି
ଏତେବୋଲି ତାହାକୁ ତୋଳିଲେ ଚାପଧାରୀ ।
ଧନପତି ନୟନରୁ ଲୋତକ ଗଲା ବହି
ଦେଖିଣ ଶ୍ରୀରାମ ତାକୁ ପ୍ରବୋଧ କରାଇ ।
ପ୍ରବୋଧ କରିଣ ସେ କୁବେର ନାମ ବୀର
ତୀର୍ଥଜଳ ଅଣାଇଲା କୁବେର ସତ୍ୱର ।
ଗଙ୍ଗାଜଳ ଆଣିଣ ରାମପାଦ ଧୋଇ
ଲକ୍ଷ୍ମଣର ଚରଣ ଧୋଇଲା ପୁଣ ଯାଇ ।
ଦୁଇଭାଇଙ୍କର କର ଧରିଣ ଘେନିଗଲା
ବିଚିତ୍ର ପଲଙ୍କ ପରେ ନେଇଣ ବସାଇଲା ।
ଧୂପ ଦୀପ ଦେଇଣ ଆଳତୀ ବନ୍ଦାଇଲା
ନିସ୍ତରିଲି ବୋଲଇ ଯେ ଗଡ଼ଘାଲି ଶୋଇଲା ।
ଶ୍ରୀରାମ ବୋଇଲେ ଶୁଣ ତୁ ହୋ ଧନପତି
କେମନ୍ତ ପ୍ରକାରେ ପଡ଼ି ଦେଉ ତୁହି ପୃଥ୍ୱୀ ।
କୁବେର ବୋଇଲେ ଦେବ ସେକଥା ଏବେଶୁଣ
ବାଉନକୋଟି ଭଣ୍ଡାରକୁ ଛପନକୋଟି ଜୀବଜାଣ ।
ଚାରିକୋଟି ଭଣ୍ଡାର ମୋହର ଊଣାହେଲା
ତେଣୁକରି ଚିନ୍ତା ମୋର ମନରେ ହୋଇଲା ।
ମୋର ଚିନ୍ତାହେବାରୁ ଯେଅଇଲେ ତ୍ରିଲୋଚନ
ମୋତେ ବୋଇଲେ କିମ୍ପାରେ ଚିନ୍ତାକରୁମନ ।
ମୁଁ ବୋଇଲି ଚାରିକୋଟି ଜୀବପଡ଼ି ନପାଇଲେ
କେଉଁ ପ୍ରକାରେ ଦେବ ବଞ୍ଚିବେ ସେ ଭଲେ ।
ପଞ୍ଚମୁଖ ବୋଇଲେ ହେ ବଣ୍ଟରା କରିବୁ
ଯେଉଁଦିନ ଯାହା ପାଳି ବୁଝି ତାକୁ ଦେବୁ ।
ଶୁଣିକରି ମୋର ମନ ସନ୍ତୋଷ ହୋଇଲା
ଯାହା ପାଳି ପଡ଼ଇ ଉପବାସ ରହେ ପରା ।
ଶୁଣିକରି ରାମଚନ୍ଦ୍ର ସନ୍ତୋଷ ହୋଇଲେ
କରଯୋଡ଼ି ରାମଙ୍କୁ କୁବେର ପଚାରିଲେ ।
କେଉଁ କାର୍ଯ୍ୟେ ବିଜେ କର ତୁମ୍ଭେ ମୋହପୁର
ଏକଥାଗୋଟି ଦେବ କହ ମୋ ଆଗର ।
ଶ୍ରୀରାମ ବୋଇଲେ ଆମ୍ଭେ ରାବଣ ନାଶ କଲୁ
ଦିଗବିଜେ କରିବାକୁ ସ୍ୱର୍ଗକୁ ଅଇଲୁ ।
ଦେବତାଙ୍କ କୁଶଳ ଦେଖିଲୁ ସର୍ବଠାରେ
ତୋର ପୁରେ ଅଇଲୁ ହେ ଶୁଣ ଦିଗପାଳେ ।
ଶୁଣିକରି ଧନପତି ମନ କଲା ତୋଷ
ବୋଇଲା ମୋହର ପାପ ହୋଇଲାକି ନାଶ ।

ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ଧନପତିର ସ୍ତିରୀ ନୀଳିଣୀ ନାମେ ନାରୀ ।
ଅର୍ଘ୍ୟଥାଳି ତଳେ ଅଛି ବିଜେ କରି
ଶ୍ରୀରାମ ଯିବାରୁ ସେ ସନ୍ତୋଷ ମନ ତାରି ।
ରଥପରେ ଯାଇଣ ସେ ବହନ ଉଠିଲା
ଚରଣ ତଳେ ଓଳଗି ଶତେବାର ହେଲା ।
ଅର୍ଘ୍ୟ ବନ୍ଦାପନା କଲା ସୀତାର ଶିରରେ
ମଙ୍ଗଳ ଆଳତୀ କଲା ତାଙ୍କ ଚରଣରେ ।
ତାହାଙ୍କ ପାଶୁଁ ନୀଳିଣୀ ବେଗେ ଚଳିଗଲା
ଉର୍ମିଳା ପାଶରେ ଯାଇ ପ୍ରବେଶ ହୋଇଲା ।
ମଙ୍ଗଳ ଆଳତୀ କରି ଅର୍ଘ୍ୟ ବନ୍ଦାଇଲା
ଚରଣେ ଶତବାର ଓଳଗି ମେଲାଇଲା ।
ବୋଇଲା ମୋର ପୁରେ ବିଜେ କର ଆଜ
ମୋର ପୁର ପବିତ୍ର କର ହେ ଦେବରାଜ ।
ତୁମ୍ଭର ପଦରଜ ପଡ଼ିବ ମୋର ପୁର
କୃତାର୍ଥ ଲଭିବି ମୁଁ ହେ ଏ ଜନ୍ମ ସୁମୂଳ ।
ଏମନ୍ତ ଶୁଣିଣ ଜାନକୀ ରଥରୁ ଓହ୍ଲାଇଲେ
ଉର୍ମିଳାକୁ ସଙ୍ଗେ ଘେନି ଗମନ କରିଗଲେ ।
ଧୀରେ ଧୀରେ ଗମନ କରନ୍ତି ବେନିଜନ
ଧନପତି ନଗରେ ହେଲେ ଯାଇ ପୁଣ ।
ସୁବାସ ଜଳ ଆଣିଣ ଚରଣେ ଧୋଇଦେଲା
ଝୀନ ବସନରେ ସେହୁ ଚରଣ ପୋଛିଲା ।
ପୁଷ୍ପଶେଯ ଉପରେ ବସାଇଲା ନେଇ
ପୁଷ୍ପର ବାସନାରେ ସେ ପୁର ଚହଟଇ ।
ଦେଖି ଆନନ୍ଦ ହେଲେ ଜାନକୀ ଉର୍ମିଳାପୁଣ
ବିଚାରିଲେ ଏ ନାରୀ ଯୋଗ୍ୟତା ପୁଣ ।
ଆଳଟ ଚାମର ସେ ବିଞ୍ଚଣା ଅଣାଇଲା
ଦାସୀଗଣ ଘେନି ସେ ଛାମୁରେ ଖଟିଲା ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଶାକମ୍ବରୀ
ରମ୍ଭା ମେନକା ଆସି ପୁଣି ମିଳି ।
ବେଶ ଭୂଷଣ ସେ ହୋଇଛନ୍ତି ତୋରା
ଉର୍ବଶୀଙ୍କି ସଙ୍ଗେ ଧରି ଅଇଲେ ପାଞ୍ଚପରା ।
ସପତ ଅପସରୀ ଆସିଣ ମିଳିଲେ
ଚରଣ ତଳେ ଓଳଗି ଶତେବାର ହେଲେ ।
ବୋଇଲେ ଆମ୍ଭେ ଶରଣ ତୁମ୍ଭର ଚରଣେ
ପ୍ରତ୍ୟେକ୍ଷ କମଳା ତୁମ୍ଭେ ସୁଦୟା କର ଏଣେ ।
ରମ୍ଭାନାରୀ ବୋଇଲେ ମୋର ମନୋରଥ ପୂର୍ଣ୍ଣ
ଯେଉଁଦିନୁ ମଲାଣିଟି ଲଙ୍କାର ରାବଣ ।
ମେନକା ବୋଇଲେ ମୁଁ ଯେ ଏବେ ସୁଖିହେଲି
କୁମ୍ଭକର୍ଣ୍ଣ ମଲାଦିନୁ ନିଶ୍ଚିନ୍ତ ହୋଇଲି ।
ଉର୍ବଶୀ ବୋଇଲା ମୋତେ ଭଲ ଏବେ
ଶତମୁଖା ରାବଣକୁ ମାଇଲେ ରାମଦେବେ ।
ରୂପବନ୍ତି ବୋଇଲେ ପ୍ରଭୁ କଲ ବଡ଼ କାର୍ଯ୍ୟ
ସଉମିତ୍ରୀ ମାଇଲେ ଇନ୍ଦ୍ରଜିତ ଯେ ଦନୁଜ ।
ମନୁମାୟା ବୋଇଲେ ହୋଇଲା ମୋର କଥା
ମହୀରାବଣକୁ ମାଇଲେ ରାବଣ ସମର୍ଥା ।
ମନୁଛାୟା ବୋଇଲେ ମୁଁ ଏବେ ହେଲି ସୁଖୀ
ଯେଉଁଦିନୁ ମଲାଣି ଯେ ଗୁମାନିସୁର ବର୍ଷି ।
କଟକକ୍ଷା ବୋଇଲା ଏ କଥା ଭଲ ହେଲା
ପନ୍ତିମୁଖା ସହ ରାବଣ ନାଶ ଗଲା ।
ଏହି ରାବଣ ସମସ୍ତଙ୍କୁ ଥିଲେ ସଲ
କୁମ୍ଭକର୍ଣ୍ଣ ଇନ୍ଦ୍ରଜିତ ଗୁମାନି ନାମେ ବୀର ।
ଏମାନଙ୍କୁ ପ୍ରତିଦିନ ଡରଇ ବସୁମତୀ
ଦିନକେ ତିନିଥର ଶୋକ ଯେ କରେ ସତୀ ।
ଏମନ୍ତ ବଚନ ଯେ କୁହାକୁହି ହେଲେ
ଖଡି ଚାମର ଘେନିଣ ଯେ ଯାହା ସେବା କଲେ ।
କେ ଚରଣ ମଞ୍ଜାଳଇ କେ ପହଞ୍ଚାଏ ଦୋଳି
କେ ପୁଷ୍ପ ଆଞ୍ଜୋଳିରେ ପିଚିକା ନେଇମାରି ।
କେହୁ ଚନ୍ଦନ ଅଗୁର ବୋଲନ୍ତି ନେଇକରି
କେ ନେଇ କର୍ପୂର ଧୂଳି ଶ୍ରୀଅଙ୍ଗରେ ବୋଳି ।
କେହୁ କେଶ ସାମୋଳିଣ ବାନ୍ଧିଲାକ ଜୋଡ଼ା
କେହୁ ଅଳଙ୍କାର ନେଇ ବେଶ କଲା ତ୍ୱରା ।
କେହୁ କାଞ୍ଚଳା ପିନ୍ଧାଏ ପିନ୍ଧାଏ ନୀଳଶାଢ଼ୀ
କେ ନାରୀ ହରଷରେ ଦିଅନ୍ତି ହୁଳହୁଳି ।
କେ ନୃତ୍ୟ କରଇ କେ ନାଚେ ନାନାବନ୍ଧେ
କେହୁ ବୀଣା ସୀତାର ବଜାନ୍ତି ନାନାଛନ୍ଦେ ।
କେହୁ ତାଳ, ମର୍ଦ୍ଦଳ, କଂସାଳ କରେ ଧରି
ନାନାବନ୍ଧେ ରାଗିଣୀ ସେ ବାଦ୍ୟ ରାଗ କରି
ଏମନ୍ତ ଅପସରୀ କରନ୍ତି ତହିଁ ଲୀଳା
ଦେଖି ଜାନକୀ ଉର୍ମିଳା ହେଲେ ସୁଖଭୋଳା ।
ପାର୍ବତୀ ବୋଇଲେ ଦେବ ମୋରଠାରୁ ଶୁଣ
ସପ୍ତ ଅପସରୀ ଯେ ଅଛନ୍ତି ସେ ପୁରେ ପୁଣ ।

ଚାରି ରାବଣ ତିନି ରାକ୍ଷସ ମରିବାରୁ
ସେ କିମ୍ପାଇ ସୁଖି ହେଲେ ମୋତେ ହେଲା ଗରୁ
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଏହୁ କଥା
ରାବଣ ରମ୍ଭାକୁ କଲା ବିଡ଼ମ୍ବଣ କଥା ।
ଶତମୁଖ ମେନକାକୁ ବିଡ଼ମ୍ବଣ କଲା
ଉର୍ବଶୀକି କୁମ୍ଭକର୍ଣ୍ଣ ବଳେଣ ଧରିଲା ।
ରୂପବନ୍ଦିକି ମହୀରାବଣ ହରିଲା ପୁଣ
ମନୁମାୟାକୁ ଇନ୍ଦ୍ରଜିତ କଲା ବିଡ଼ମ୍ବଣ ।
ଅନୁଛାୟାକୁ ଧଇଲା ଗୁମାନି ଅସୁର
କଟକମ୍ପାକୁ ଘେନିଲା କରେ ସହସ୍ରମୁଖା ବୀର ।
ତେଣୁକରି ସପତ ଯେ ଅପସରୀମାନେ
ପୂର୍ବକଥା ଚିନ୍ତି ରାମଙ୍କୁ ଦୁଃଖ ତେଣେ ।
ପାର୍ବତୀ ବୋଇଲେ ପୁଣଅଟନ୍ତି ସେ ଯେ ବେଶ୍ୟା
ସେମାନଙ୍କୁ ସେ ନାରୀ କିମ୍ପାଇ କଲେ ହିଂସା ।
ଈଶ୍ୱର ବୋଇଲେ ସେ ଯେବେ ଦେବଙ୍କ କୁଳରେ
ଅସୁରେ ବଳେହରିବାରୁ ବିକାର ତାଙ୍କଠାରେ ।
ପାର୍ବତୀ ବୋଇଲେ ଦେବ କହ ହେ ବିଚାରୀ
ବିକାର ଆକାର କହ କେହୁ ଜନ୍ମ କରି ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଶାକମ୍ବରୀ
ଅଲର ବୋଲିଣ ପୂଜାକୁ ଜାତ କରି ।
ଯେଉଁ ନାରୀକି ପୁରୁଷ ହୁଅନ୍ତି ବିଭା ପୁଣ
ସେ ନାରୀଗୋଟି ଆକାର ସୁକ୍ରିୟାବୋଲି ଜାଣ ।
ପରନାରୀ ସଙ୍ଗରେ ହେଲେ ଅଙ୍ଗସଙ୍ଗ
ପରକ୍ରିୟାକୁ ସେହି କଥା ଅଟଇ ବିଭଙ୍ଗ ।
ପରଦାରା ପାତକ ସେଠାରୁ ହୁଏ ଜାତ
ସେ ପୁରୁଷ ସ୍ତ୍ରୀ ଅଟେ ଧର୍ମରେ ବିଟପ ।
ତାର କନ୍ଧୁ ଲକ୍ଷ୍ମୀ ତୁଟେ ସରିଯାଏ ଧର୍ମ
ଅଧର୍ମରେ ସେହୁ ଦୁହେଁ ହୋନ୍ତି ପରିପୂର୍ଣ୍ଣ ।
ସେ ପୁରୁଷ ସେ ସ୍ତିରୀଙ୍କି କୁପୁରୁଷ ବୋଲି
ମନ କାମନା କେତେବେଳେ ସିଦ୍ଧ ନୁହେ ତାରି ।
ସେଥିର ସକାଶେ ନାରାୟଣ ଉପାୟେ
ବେଶ୍ୟା କରି ଜାତ କଲେ କୁଳ ଯେ ଗୋଟାଏ ।
ଦେବତାଙ୍କର ବେଶ୍ୟା ଯେ ଅଟନ୍ତି ଅପସରୀ
ଦେବତାମାନଙ୍କ ମନ ସେ ପାରନ୍ତି ହରି ।
ବଡ଼ଲୋକମାନଙ୍କର ବେଶ୍ୟା ଖଟେ ଦାସୀ
ସାନ ଲୋକମାନେ ନଟକାରୀରେ ଧ୍ୱଂସି ।

ଏମନ୍ତ ପ୍ରକାର ଧରା ବାସୁଦେବ କଲେ
ପରନାରୀ ପାଶେ ଯାନ୍ତେ ପରଦାର ବୋଲେ ।
ପାର୍ବତୀ ବୋଇଲେ ସେ ଯେ ଅଟେ ବେଶ୍ୟାନାରୀ
ଅସୁର ଗମନେ କିମ୍ବା ମନେ ଦୁଃଖ କରି ।
ଈଶ୍ୱର ବୋଇଲେ ଶୁଣ କୁଳଧର୍ମ ଅଛି
ଦେବ ବେଶ୍ୟାମାନଙ୍କ ଦେବତାଙ୍କଠାରେ ମତି ।
ନାଗଙ୍କର ବେଶ୍ୟା ଅଟେ ନାଗଙ୍କର ପ୍ରୀତି
ଏ ତିନି କୁଳ ଖଟନ୍ତି ସୁଜାଣ ସୁଗତି ।
ଅଚଳନ୍ତି ଚଳନ୍ତି ଯେ ଉଡ଼ନ୍ତା ପକ୍ଷୀ ଜୀବ
ଜ୍ଞାନ ଯେ ଜ୍ଞାତପ ନାହିଁ ରମନ୍ତି ସଦଭାବ ।
ଯେ ଯାହାକୁ ସୁଖ ଲଭେ ସେ ତାହାକୁ ହରେ
ସେମାନେ କୁଳଧର୍ମରୁ ବାହାର ନୋହେ ପରେ ।
ଦେବ ବେଶ୍ୟାଙ୍କୁ ଅସୁରେ ବଳେଣ ହରିଲେ
ତେଣୁ ସେ ଶୃଙ୍ଗାରକୁ ସୁଖ ନ ମଣିଲେ ।
ତେଣୁକରି ବିକାର ଜନ୍ମିଲେ ତାଙ୍କ ମନେ
ଶୁଣିଣ ପାର୍ବତୀ ଦେବୀ ପରମ ତୋଷମନେ ।
ପାର୍ବତୀ ବୋଇଲେ ଦେବ କଥାଏ ପଚାରିବି
ସେହିକଥା ଶୁଣିଲେ ମୁଁ ସନ୍ତୋଷ ହୋଇବି ।
ଛପନ କୋଟି ଜୀବ ସେ ମର୍ତ୍ତ୍ୟପୁରେ ଜାତ
ବାଉନକୋଟି ଭଣ୍ଡାର ତହିଁକି ଉପଗତ ।
ଚାରିକୋଟି ଉପବାସ ବାଣ୍ଟିକେରି ରହେ
ବାଣ୍ଟିକରି ସବୁଦିନେ ଧନପତି ଦିଏ ।
ଏ କଥାରେ ମୋର ମନ ନୋହିଲା ପରିପୂର୍ଣ୍ଣ
ରାମ ସଙ୍ଗେ କପି ଗଲେ ନଉ ସାଗର ଜାଣ ।
ଦଶ ଦଶରେ ହୁଏ ଶତେକ ପରିପୂର୍ଣ୍ଣ
ଶତଶତରେ ସହସ୍ରେ ଏବେ ବୋଲି ଜାଣ ।
ଦଶସହସ୍ରେ କହିଲେ ଅହିବ୍ରତେ କହି
ଦଶ ଅହିବ୍ରତରେ ଲକ୍ଷ ପୂର୍ଣ୍ଣ ହୋଇ ।
ଦଶଲକ୍ଷରେ ଗୋଟିଏ ଅଟଇ ତାର ଧାରା
ଦଶ କୋଟିରେମର୍ଭୁତେ ହୁଅଇ ଏବେ ପରା ।
ଦଶ ମର୍ଭୁତରେ ପଦ୍ମେ ବୋଲି କହି
ଦଶପଦ୍ମ ହୋଇଲେ ସାଗର ଲେଖା ହୋଇ ।
ସାଗରେ ହୋଇଲେ ସିନ୍ଧୁ ସାଗରେ ହୁଏ ସରି
ଏହି ପ୍ରାୟେ ନଉ ସାଗରେ ରାମ ସଙ୍ଗେ ଘେରି ।
ଏମାନେ କେମନ୍ତେ ବଞ୍ଚେ କହ ମୋ ଆଗର
ଈଶ୍ୱର ବୋଇଲେ ଶୁଣ ମନ କରି ସ୍ଥିର ।

ପିଲେ ଡାଳ ହେଲେ ତାଙ୍କର ମୂଳ ସାର
ସେ ମୂଳରେ ଜଳ ଦେଇ ଜୀଅନ୍ତି ସକଳ ।
ଏମନ୍ତ ପ୍ରକାର ସେ ଉପାୟ କରି ବଞ୍ଚେ
ଯାହାକୁ ଯେଉଁ ଦ୍ରବ୍ୟ ସେ ସଞ୍ଜ୍ଞାମାନ ସଞ୍ଚେ ।
ସେହି ସଞ୍ଜ୍ଞା କରିଣ କୁଳଧର୍ମେ ବଞ୍ଚି
ଅନ୍ୟ ପଦାର୍ଥରେ ମନକୁ ହୁଅଇ ସଞ୍ଚି ।
ଏକ ସଞ୍ଜ୍ଞା ଗୋଟିକରେ ସାଗର ନିର୍ଭା ହୋଇ
କେତେବେଳେ ସଞ୍ଜ୍ଞାରେ ଶତେସାଗର ବଞ୍ଚଇ ।
ସଞ୍ଜ୍ଞାଗୋଟିକରେ ପଦ୍ମେ କେତେବେଳେମର୍ଭୁତ ।
କେତେବେଳେ କୋଟି ଲକ୍ଷ ହୁଏ ଯେ ସମ୍ଭୂତ ।
ଶୁଣିଣ ପାର୍ବତୀଦେବୀ ସନ୍ତୋଷ ହୋଇଲେ
ଉପାୟରେ ସର୍ବଜୀବେ ବଞ୍ଚନ୍ତି ବୋଇଲେ ।
ପାର୍ବତୀ ବୋଇଲେ ଦେବ ଶୁଣ ହେ ଈଶାନ
ଶ୍ରୀରାମ ଯେ ବିଜେକଲେ କୁବେର ଭୁବନ ।
ସେଠାରୁ କିସ କଲେ କହ ମୋର ଆଗେ
ଶୁଣିଲେ ସନ୍ତୋଷ ମନ ହୋଇବ ମୋରଏବେ ।
ଈଶ୍ୱର ବୋଇଲେ ଦେବ ସେକଥା ଏବେଶୁଣ
ରାମ ବିଜେ କଲେ ଯାଇ କୁବେର ଭୁବନ ।
ଅତି ଆନନ୍ଦେ ପାଛୋଟି ନେଲେ ଧନପତି
ପଲଙ୍କେ ବସାଇ ଆଗେ ଉଭା ହୋଇଛନ୍ତି ।
ରାମ ବୋଇଲେ ଆମ୍ଭେ ଯାଉଛୁ ତୁମ୍ଭେ ଥାଅ
ଏତେ କହି ଉଠିଲେ ଯେ ଦଶରଥ ପୁଅ ।
ଲକ୍ଷ୍ମଣଙ୍କୁ ସଙ୍ଗେ ଘେନି ରଥରେ ଯାଇ ବସି
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ହେମବନ୍ତୀ ।
ନିଳେଣି କନ୍ୟାକୁ ଯେ ଜାନକୀ କହେ ପୁଣ
ଆମ୍ଭେ ଯାଉଅଛୁ ପୁଣ ଥାଅ ନିଶ୍ଚିନ୍ତେଣ ।
ଏତେ କହି ଜାନକୀ ଉର୍ମିଳା କର ଧରି
ରଥର ଉପରେ ବିଜେ କଲେ ରାମ ନାରୀ ।
ଅପସରୀଗଣ ଆସି ହୁଳହୁଳି ଦେଲେ
ନିଳେଣୀ ନାମେ କନ୍ୟା ଦୁର୍ବାକ୍ଷିତ ବନ୍ଦାଇଲେ ।
ପୁଷ୍ପ ଶଯ୍ୟାରେ ଯାଇ ବସିଲେ ଚାରିଜଣ
ଏଥୁଅନ୍ତେ ଶୁଣ ଗୋ ପାର୍ବତୀ ଦେବୀ ପୁଣ ।
ସେଠାରୁ ମାତଳି ରଥ ବାହିନେଲା
ଆମ୍ଭର ସିଂହଦ୍ୱାରେ ଆସିଣ ମିଳିଲା ।
ନନ୍ଦୀ ଯେ ଭୃକୁଟି ଦ୍ୱାରେଥିଲେ ପୁଣ
ଗଣେଶ କାର୍ତ୍ତିକକୁ କହି ତତକ୍ଷଣ ।
ରାମ ଲକ୍ଷ୍ମଣ ଯେ ବିଜୟେ ତୁମ୍ଭ ପୁର
ଜାନକୀ, ଉର୍ମିଳା ଅଛନ୍ତି ତାଙ୍କର ସଙ୍ଗର ।
ଶୁଣି ବେନି ନନ୍ଦନ ବେଗେ ଚଳିଗଲେ
ରାମଙ୍କର ପାଦତଳେ ଓଳଗି ମେଲାଇଲେ ।
ଶତେବାର ପରିଯନ୍ତେ କଲେ ନମସ୍କାର
ଉଠ ଉଭା ହୋଇ ଶିରେ ଲଗାଇ ବେନି କର ।
ଜାନକୀଙ୍କ ଚରଣେ ଓଳଗି ଶୋଇଲେ
ଉର୍ମିଳା ଚରଣେ ସେ ପୁଣି ଓଳଗିଲେ ।
ବୋଇଲେ ଜନନୀ ଗୋ ଏଠାରେ କିମ୍ପା ରହ
ନିଜ ପୁରେ ବିଜୟ କିମ୍ପା ତୁମ୍ଭେ ନୁହ ।
ଜାନକୀ ବୋଇଲେ ତୁମ୍ଭେ ଶୁଣରେ କୁମର
ଜନନୀ କି କରୁଛନ୍ତି କହ ମୋ ଆଗର ।
ବେନି ପୁତ୍ର ବୋଇଲେ ଦେଖିବ ଯାଇଁ ପୁରେ
କିମ୍ପାଇ ରହିଅଛି ଯେ ଅଲଗା ବାହାରେ ।
ଶୁଣିଣ ଜାନକୀ ଯେ ରଥରୁ ଓହ୍ଲାଇଲେ
ଉର୍ମିଳାକୁ ସଙ୍ଗେ ଧରି ଭିତର ପୁରେ ଗଲେ ।
ଦୁଇ ଭଗ୍ନୀ ଆସିଣ ମିଳିଲେ ତୁମ୍ଭ ପାଶ
ଦେଖିଣ ତାହାକୁ ତୁମ୍ଭେ ହୋଇଲ ହରଷ ।
ତୁମ୍ଭ ଚରଣେ ସେ କଲେ ନମସ୍କାର
ଦାସୀଙ୍କି ବୋଇଲେ ତୁମ୍ଭେ ଚରଣଧୁଅ ଯାଙ୍କର ।
ତୁମ୍ଭଠାରୁ ଶୁଣି ଦାସୀ ଚରଣ ଧୋଇଲେ
ଝୀନବସନ ଘେନି ଚରଣ ପୋଛିଦେଲେ ।
ଏ ପଲଙ୍କରେ ଯେ ବସିଲେ ତିନିଜଣ
ନାନାରସେ କଥା ଯେ ହୋଇଲ ତୁମ୍ଭେ ପୁଣ ।
ଜାନକୀ ବୋଇଲେ ତୁମ୍ଭେ ଯୋଗୀଆଣି ଶୁଣ
କିସ କରୁଅଛି ଗୋ ଯୋଗୀଙ୍କୁ ଘେନି ପୁଣ ।
ଜାନକୀ ବୋଇଲେ ତୁମ୍ଭେ ଶୁଣ ଗୋ ସମସ୍ଥାନି
ତୁମ୍ଭଙ୍କୁ ଦେଖିବାକୁ ଅଇଁଲୁ ଆମ୍ଭେ ପୁଣି ।
ତୁମ୍ଭେତାଙ୍କୁ ବୋଇଲ ଯେ ଅସୁର ନେଲା ଧରି
କିପରି ଲଙ୍କାଗଡ଼େ ରହିଲେ ସୁନ୍ଦରୀ ।
ଜାନକୀ ବୋଇଲେ ଶୁଣ ପାର୍ବତୀ ଦୁହିତା
ଯୋଗୀଆଣି ଦେଖି ତୁମ୍ଭଙ୍କୁ ନ ବରିଲେ ପିତା ।
ପ୍ରତିଦିନ ଭିକ୍ଷା କରି କର ଯେ ଆହାର
ତିନି ପ୍ରହରକୁ ଆଶା ଅଟେ ଯେ ତୁମ୍ଭର ।
ତୁମ୍ଭେ ତାକୁ ବୋଇଲ ବନସ୍ତେ ବାସକଲ
ଫଳମୂଳ ଖାଇ ପଶୁଙ୍କ ପ୍ରାୟେ ଦିନ ନେଲ ।

ଗିରସ୍ତଙ୍କୁ ଘେନିଣ ବୃକ୍ଷର ମୂଳେ ଶୋଇ
ଧନୁଶର ଧରି ତୁମ୍ଭଙ୍କୁ ଦିଅର ଜଗଇ ।
ଲଜ୍ୟା ନ ମାଡ଼ଇ ଲୀଳାକର ତହିଁ ପୁଣ
କିପରି ଦିନ କାଟିଲ ତୁମ୍ଭେ ବେନିଜନ ।
ତୁମ୍ଭର ଅବିଦ୍ୟା ଯାକ ଦିଅର ଦେଖଇ
ତୁମ୍ଭ ଜୀବନ ନିର୍ଲଜ ସଲଜ ନୁହଇ ।
ଜାନକୀ ବୋଇଲେ କେତେ କହ ପରଦାରୀ
ତୁମ୍ଭ ଗିରସ୍ତ ନାଚନ୍ତି ଅସୁରଙ୍କ ପୁରୀ ।
ନାଚି ଡେଇଁ ଆଣନ୍ତି ଅସୁର ପୁରୁ ଭିକ୍ଷା
ତିନିଦିନ ବେଳେ ରାନ୍ଧି ଖାଅ ବେନି ଲୋକ ।
ତୁମ୍ଭେ ତାଙ୍କୁ ବୋଇଲ ଗୋ ଏବେତ ବେଶଧର
ଅସୁର ଘରେ କିମ୍ପା ବିଧବା ବେଶ ତୋର ।
ଯେତେ ତୋର ଅସୁରଙ୍କୁ ବଳିଲା ଗୋ ମତି
ସୁବେଶ ନୋହିଲୁ କିମ୍ପା ଶ୍ରୀରାମ ଯୁବତୀ ।
ଜାନକୀ ବୋଇଲେ ତୋତେ କିସ ମିଳବ ଅବା
ଗିରସ୍ତ ଲଙ୍ଗଳା ଅଟେ ଜାତି ତ ମହାଦେବା ।
ସେ ଗୁଣ ଶ୍ମଶାନେ ମିଳିଲା ତୋତେ ବାସ
ନିରାଶ ଯୁବତୀ ତୁ ଯେ ନାହିଁ ପତି ଆଶ ।
ପାର୍ବତୀ ବୋଇଲେ ତୋତେ ସାୟ ଯେ ବହୁତ
ରାବଣ ନେଲାବେଳେ ନୋହିଲା ସମ୍ଭାଳିତ ।
ମୋତେ ଯେ ଜଳନ୍ଧର ନେବାକୁ ଆସିଥିଲା
ଜାଣିଣ ସ୍ୱାମୀ ମୋର ତାହାକୁ ସଂହାରିଲା ।
ଏକା ଲୋକ ହାତରେ ଗୋ ହୋଇ ଏଡ଼େକାର୍ଯ୍ୟ
ଚାରିଜଣ ତୋର ଥାଇ ଦେଖୁ ଅସୁର ରାଜ୍ୟ ।
ଶୁଣିକରି ତୁମ୍ଭଙ୍କୁ ବୋଇଲେ ଯେ ରାମରାଣୀ
ସରି ହେଲା ଦୁଇକଥା ଦୃଷ୍ଟାନ୍ତର ବାଣୀ ।
ଜାନକୀ ଦେଖିଣ ତୋର ଚରଣେ ପରଣାମି
କୋଳକରି ତାକୁ ଯେ ଧଇଲୁ ତୁହି ପୁଣି ।
ଜାନକୀ ବୋଲନ୍ତି ଶୋକ ତୋତେ କୋଳକରି
ତୁମ୍ଭେ ପୁଣି ଶୋକକଲ ଜାନକୀ କର ଧରି ।
ଗଣେଶ, କାର୍ତ୍ତିକ ବେନି ନନ୍ଦନ ଅଇଲେ
ତିନି ଜନନୀକି ଧରି ନିବର୍ତ୍ତ କରାଇଲେ ।
ବୋଇଲେ ଜନନୀମାନେ କିମ୍ପାଇ ଶୋକକର
ଉଠିଣ ଜାନକୀ କାର୍ତ୍ତିକକୁ କଲେ କୋଳ ।
ଗଣେଶକୁ କୋଳକଲେ ଲକ୍ଷ୍ମଣ ବାମା ପୁଣି
ତୁମ୍ଭଙ୍କୁ ବୋଇଲେ ବେଗେ ହୁଅ ହେ ରାନ୍ଧୁଣୀ ।
ଶୁଣିକରି ଅମୃତ ଯୋଗାଡ଼ ତୁମ୍ଭେ କଲ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ବାଣୀମୋର ।
ଶ୍ରୀରାମ ବେନିଭାଇ ସିଂହ ଦ୍ୱାରେ ଥିଲେ
ରଥରୁ ଓହ୍ଲାଇ ବେଗେ ମୋ ପାଶେ ଅଇଲେ ।
ଯୋଗଧ୍ୟାନ ଆସନରେ ବସିଣ ଥିଲି ମୁହିଁ
ମୋତେ ଦେଖି ରାମଚନ୍ଦ୍ର ନମସ୍କାର ହୋଇ ।
ଲକ୍ଷ୍ମଣ ଓଳଗିଲେ ମୋହର ଚରଣେ
ତିନିଜଣ ଆମ୍ଭେ ଯେ ବସିଲୁ ଏକସ୍ଥାନେ ।
ଶ୍ରୀରାମ ବୋଇଲେ ଦେବ ବହୁତ ଦୁଷ୍ଟଛନ୍ତି
ଆମ୍ଭେ ବୋଲୁଁ ତାଙ୍କୁ ମାରହେ ନିପାତି ।
କେଉଁକାର୍ଯ୍ୟେ ବିଜେ କଲ ମୋର ପୁରେପୁଣ
ରାମ ବୋଇଲେ କଥା ହୋଇଛି ବିଡ଼ମ୍ବଣ ।
ସଭା କିମ୍ବା ନ କରଇ ଦେବରାଜା ଏଥି
ଅସୁର ମରିବାରୁ କି ମନରେ ହେଲା ଦୁଃଖୀ ।
ରାବଣର ଚରଣ ତଳେ କରିଥିଲ ସେବା
ଅସୁର ମରିବାରୁ ଏବେ ନିଶ୍ଚିନ୍ତେ ମଘବା ।
ଇନ୍ଦ୍ରକୁ ମାରିଣ ଆନ ଇନ୍ଦ୍ର ଯେ କରିବା
ଦେବରାଜର ଗର୍ବ ବିନାଶି ପକାଇବା ।
ଏଥିର ସକାଶେ ମୁଁ ଯେ ଅଇଲି ତୁମ୍ଭପୁର
ତୁମ୍ଭର ମନକୁ ଦେବ କେମନ୍ତେ ବିଚାର ।
ଆମ୍ଭେ ତାଙ୍କୁ ବୋଇଲେ ଯେ ସଙ୍ଗ ହୋଇଯିବା
କେଣେ ଅଛି ସୁର ରାଜା ଡକାଇ ଅଣାଇବା ।
ଶୁଣିକରି ରାମଚନ୍ଦ୍ର ସନ୍ତୋଷ ହୋଇଲେ
ଭୋଜନ କରିବାକୁ କହିଲୁ ତାହାଙ୍କରେ ।
ଦୁଇଭାଇ ସଙ୍ଗରେ ଘେନିଣ ଅଇଲୁ
ତିନିଠାବ ହୋଇ ଆମ୍ଭେ ଯେ ବସିଲୁ ।
ତୁମ୍ଭେ ଆଣି ଅମୃତ ପରସିଲ ଗୋ ପୁଣି
ତିନିଜଣ ଭୁଞ୍ଜିଣ ସନ୍ତୋଷ ଆମ୍ଭେ ପୁଣି ।
ଆଚମନ କରିଣ ବସିଲୁ ଯାଇଣ
ବିଡ଼ିଆ ଲାଗି ହୋଇ କଲୁ ଯେ ଶୟନ ।
ଏଥୁ ଅନନ୍ତରେ ତୁମ୍ଭେ ତିନିଜଣ ଯାଇ
ଭୋଜନ ସାରି ଶୟନ କଲ ଯେ ମେଳହୋଇ ।
ରଜନୀ ପାହିବାରୁ ଉଠିଣ ତୁମ୍ଭେ ପୁଣ
ମାଜଣା ସାରି ସ୍ନାହାନ କଲେ ତିନିଜଣ ।
ସ୍ନାହାନ ସାରିଣ ତୁମ୍ଭେ ନିତ୍ୟକର୍ମ କରି
ପାକ ସମ୍ପାଦିଲ ହେମବନ୍ତୀର ଦୁଲାଳି ।

ରଜନୀ ଶେଷରେ ଆମ୍ଭେ ରାମ ଲକ୍ଷ୍ମଣ ଘେନି
ଗଙ୍ଗାଜଳରେ ସ୍ନାନ କଲୁ ତିନିଜଣ ।
ସେଠାରୁ ଅମୃତ ମଣୋହି ଯାଇ କଲୁ
ବିଡ଼ିଆ ଭୁଞ୍ଜିଣ ସକଳ ଦେବଙ୍କୁ ସୁମରିଲୁ ।
ତତ୍‌କ୍ଷଣେ ମିଳିଲେ ଚଉଦ କୋଟି ରୁଦ୍ର
ଡାକି ଡମ୍ବରୁ ବଜାଇ କଲେକ ଶବଦ ।
ତେତେବେଳେ ଆମ୍ଭେ ବୃଷ ଉପରେ ବିଜେ
ଶ୍ରୀରାମ ଲକ୍ଷ୍ମଣ ଯାନପରେ ସାଜେ ।
ସଙ୍ଗରେ ଦୁଇ ନାରୀ ବସିଲେ ଯାଇକରି
ତୁମ୍ଭେ ଯାଇ ବସିଲ କୋଳରେ ମୋହରି ।
ଡମ୍ବରୁ ଶବଦରେ କମ୍ପିଲା ମେରୁଗିରି
ଅଳକା ପୁରରୁ ଆମ୍ଭେ ଗଲୁ ଯେ ବିଜେକରି ।
ସୁର ରାଜା ପୁରରେ ହେଲୁ ପରବେଶ
ଏଥୁ ଅନନ୍ତରେ ଶୁଣ ଗୋ ଦିବ୍ୟରସ ।
ମରାଳ ବାହନ ଚଢ଼ି ଅଇଲେ ଚତୁର୍ମୁଖ
ସଙ୍ଗରେ ଗାୟତ୍ରୀ ସାବିତ୍ରୀ ପ୍ରତ୍ୟକ୍ଷ ।
ଚାରିଜଣ ଆମ୍ଭେ ଯେ ହୋଇଲୁ ଏକମେଳ
ପଞ୍ଚଭଗ୍ନି ଏକଠାରେ ହେଲ ତୁମ୍ଭେ ଠୁଳ ।
ଇନ୍ଦ୍ରଙ୍କର ଭୁବନେ ପଶିଲୁ ଆମ୍ଭେ ଯାଇ
ଶଚୀ ଦେବୀ ଆସିଣ ଅର୍ଘ୍ୟ ଯେ ବନ୍ଦାଇ ।
ତୁମ୍ଭଙ୍କୁ ବନ୍ଦାପନା କଲାକ ଆନନ୍ଦରେ
ଆମ୍ଭେ ପଚାରିଲୁ ରାଜା ଅଛନ୍ତି କେଉଁଠାରେ ।
ସେ ବୋଇଲେ ଦେବରାଜା ତପ କରୁଛନ୍ତି
ତାଙ୍କଠାରୁ ଶୁଣି ବେଦବର ତଳେ ଧାତି ।
ବୋଇଲେ ଦେବରାଜା ବେଗ ହୋଇ ଉଠ
ନୋହିଲେ ରାଜାପଣ ଗଲାଟି ପ୍ରତ୍ୟକ୍ଷ ।
ତ୍ରୈଲୋକ୍ୟ ଠାକୁର ଯେ ଅଟନ୍ତି ରାମରାଜ
ତୁମ୍ଭ ପୁରେ ବିଜେ କରିଛନ୍ତି ଆଜ ।
ଦୁଃଖ ସୁଖ ଯେବେ ତୋର ଅଛଇ ପୁଣ
ଶ୍ରୀରାମଙ୍କ ଆଗେ କର ତୁ ଜଣାଣ ।
ଶୁଣିକରି ଶଚୀନାଥ ତପରୁ ବେଗେ ଉଠି
ବେଦବର ଚରଣେ ବେଗେ ଯାଇ ଲୋଟି ।
ଶତେବାର ପ୍ରଲମ୍ବିତ କରଇ ପାଦତଳେ
ଚତୁର୍ମୁଖ ବୋଇଲେ ଦେଖନ୍ତୁ ଯାଇ ତୋଳେ ।
ବେଦବର ବଚନେ ବେଗେ ଚଳିଗଲା
ତ୍ରିଲୋଚନଙ୍କ ଚରଣେ ଯାଇ ଓଳଗିଲା ।
ଶତେବାର ଚରଣେ ନମସ୍କାର ହୋଇ
କରଯୋଡ଼ି ଆଗରେ ଉଭାହେଲେ ସେହି ।
ଆମ୍ଭେ ତାକୁ ବୋଇଲୁ ପୂର୍ବଦ୍ୱାରେ ଚଳ
କୋଦଣ୍ଡ କାଣ୍ଡଧାରୀ ବିଜେ ସିଂହଦ୍ୱାର ।
ରାମ ଲକ୍ଷ୍ମଣଙ୍କୁ କର ମାନ୍ୟ ଧର୍ମ
ତୋର ପୁରେ ବିଜୟ କରିଛନ୍ତି ପୁଣ ।
ସ୍ୱର୍ଗ ପୁରକୁ ସେହି ଦିଗ ବିଜୟ କଲେ
ସମସ୍ତଙ୍କ ପୁର ଦେଖି ତୋ ପୁରେ ଅଇଲେ ।
ଆମ୍ଭଠାରୁ ଶୁଣିଣ ସୁର ରାଜା ପୁଣ
ଅର୍ଘ୍ୟ ଥାଳି ଘେନି ରାଜା କଲେକ ଗମନ ।
ପୂର୍ବ ଦ୍ୱାରରେ ଯାଇ ହେଲେ ପରବେଶ
ଦୁଇଭାଇଙ୍କୁ ଦେଖିଣ ମନରେ ହରଷ ।
ଶତେବାର ପାଦତଳେ ଓଳଗି ହୋଇଲା
ତପସିଦ୍ଧ ହୋଇଲା ବୋଲିଣ ବୋଇଲା ।
ସୁବାସିତ ଜଳ ନେଇ ଚରଣ ଧୋଇଦେଲା
ଝୀନ ବସନ ଘେନିଣ ଚରଣ ପୋଛିଲା ।
ଅର୍ଘ୍ୟ ବନ୍ଦାପନା କଲା ନେଇ ପୁଣ
ମଙ୍ଗଳ ଆଳତୀ ଯେ ବନ୍ଦାଏ ରାଜନ ।
ଏ ରୂପେ ଲକ୍ଷ୍ମଣଙ୍କୁ ବନ୍ଦାପନା କଲା
ଦୁର୍ବାକ୍ଷତ ଅର୍ଘ୍ୟ ନେଇ ଶିର ପରେ ଦେଲା ।
ଦୁଇଭାଇଙ୍କ କରଧରି ନେଲା ଭିତରକୁ
ରତ୍ନସିଂହାସନ ପରେ ନେଇ ବସାଏ ତାହାଙ୍କୁ ।
ସେଠାରୁ ଆମ୍ଭ ପାଶେ ହେଲା ପରବେଶ
ମଙ୍ଗଳ ଆଳତୀ କରି ମନକଲା ତୋଷ ।
ଅର୍ଘ୍ୟ ବନ୍ଦାପନା କରି ଚରଣ ଧୋଇଦେଲା
କର ଧରି ରାମପାଶେ ନେଇ ବସାଇଲା ।
ବେଦବରଙ୍କୁ ନେଇଣ ବସାଇ ଆମ୍ଭପାଶ
ଏକ ଆସନେ ବସିଲୁ ଚାରିଜଣ ଯାକ ।
କରଯୋଡ଼ି ଉଭାହେଲା ଆମ୍ଭର ଆଗରେ
ଦେଖିଣ ବିଧାତା ତାକୁ ପଚାରେ ସତ୍ୱରେ ।
କିହୋ ଦେବରାଜା ତୁମ୍ଭେ ଅନ୍ୟାୟ କିମ୍ପାକର
କେଉଁ ଅବଗୁଣ ଧରି ରହିଲ ନିଜ ପୁର ।
ସଭା ନ ମଣ୍ଡିଲେ ନ ଘେନି ଦେବଗଣ
ବଡ଼ପଣ ଲୁଚାଇ କିମ୍ପା ରହିଲ ଗୁପ୍ତେଣ ।
ଦେବରାଜ ହେବାକୁ କି ନାହିଁ ତୋର ମନ
ଅସୁର ମରିବାରୁ କି ଦୁଃଖ କଲ ପୁଣ ।

ନୋହିଲେକେମନ୍ତେ ଗର୍ବ ତୋ ମନେ ଜାତହେଲା
ତହିଁର ସକାଶେ ରାମ ତୋ ପୁରେ ବିଜେକଲା ।
କେଉଁ କଥା ଦୁଃଖ ତୋର କହ ବେଗକରି
ନ କହିଲେ ନାଶ ତୋତେ କରିବେ ଚାପଧାରୀ ।
ଶୁଣିକରି ସୁର ରାଜା କରଯୋଡ଼ି କହି
ମୋ ପୁରେ ବିକାର ଉପୁଜିଲା ଶୁଣ ତୁହି ।
ଏହି ରାମ ଅଯୋଧ୍ୟାରେ ଅଭିଷେକ ହେଲେ
ଦେବତା ଋଷିମାନେ ସନ୍ତୋଷ ହୋଇଗଲେ ।
କପିବଳ ଭାଲୁ ବଳ ଅସୁର ବଳପୁଣ
ସମସ୍ତେ ହୋଇଲେ ସୁଖୀ ରାମ ପ୍ରସାଦେଣ ।
ରାଜାମାନେ ନିପୁରେ ମେଲାଣି ହୋଇଗଲେ
ଅଯୋଧ୍ୟାରେ ଶ୍ରୀରାମ ଯେ ନିଶ୍ଚିନ୍ତେ ରହିଲେ ।
ରାମଙ୍କ ପାଶରୁ ମୁଁ ଯେ ଅଇଲି ନିଜସ୍ଥାନ
ପ୍ରବେଶ ହୋଇଲି ଆସି ଶଚୀର ଆଗେଣ ।
ମୋତେ ଦେଖି ଶଚୀ ଦେବୀ ବଚନ ପ୍ରକାଶି
ରାମ ଲକ୍ଷ୍ମଣ କେଉଁ ଦେବତା ଜନ୍ମ ଆସି ।
ମୁଁ ବୋଇଲି ବାସୁଦେବ ନାରାୟଣ ପୁଣି
ଯେଉଁ ଦେବତାତ୍ରିପୁରଚଉଦଭୁବନକରେ ଜାଣି ।
ସେ ଦେବ କ୍ଷୀର ସିନ୍ଧୁ ସାଗର ଭିତରେ
ସମସ୍ତ ରଚନା କରି ଶୟନ ନିଶ୍ଚିନ୍ତରେ ।
ଅସୁରଙ୍କ ଉପଦର୍ପ ଦେଖି ବେଦବର
ସହସ୍ର ବର୍ଷ ତପ କଲେ କ୍ଷୀରସିନ୍ଧୁ ତୀର ।
ଅନନ୍ତ ଉପରେ ଯେ ଶୟନ ଚକ୍ରଧର
ଜାଣିଣ ଜନ୍ମ ହେଲେ ଦଶରଥ ଘର ।
ରାମ ଯେ ନାରାୟଣ ଅନନ୍ତ ଲକ୍ଷ୍ମଣ
ନାରାୟଣଙ୍କ ଆୟୁଧ ଆଉ ଭରତ ଶତୃଘନ ।
ମୁଁ ଯେ କାଲି ସକଳ ଦେବତା ମେଳହେଲୁଁ
ବାନରମାନଙ୍କ ସଙ୍ଗେ ଶୃଙ୍ଗାର ଯାଇକଲୁଁ ।
ତାଙ୍କଠାରୁ ଜାତ ଷାଠିଏ ସାଗର କପି
ଭାଲୁଙ୍କ ସଙ୍ଗେ ଦେବେ ଯାଇ କଲେ ରତି ।
ତାଙ୍କଠାରୁ ଭାଲୁ ଜାତ ତିରିଶି ସାଗର
ଭାଲୁ ମର୍କଟ ଘେନି ରାମ କଲେକ ସମର ।
ଦେବତାଙ୍କ ବୀର୍ଯ୍ୟରେ ଯେଣୁ ଜାତହେଲେ
ଅସୁରଙ୍କ ସଙ୍ଗରେ ଯୁଦ୍ଧ ସେହୁ କଲେ ।
ତେଣୁ କରି ଅକ୍ଷୟ ଯେ ଭାଲୁକ ମର୍କଟ
ସେମାନଙ୍କୁ ଘେନି ରାମ ମାଇଲେ ସର୍ବ ଦୈତ୍ୟ ।
ଶଚୀଦେବୀ ବୋଇଲେ ଶୁଣହେ ଦେବରାଏ
ତୁମ୍ଭ ବୀର୍ଯ୍ୟେ କେହୁ ଜାତ କହ ହେ ନିଶ୍ଚଏ ।
ତାହାଙ୍କର ବଚନେ ମୁଁ କହିଲି ଉତ୍ତର
ଖଡ଼ଦନ୍ତ ପତି ଅଟେ ବାନର ନୃପବର ।
ପାର୍ବତୀ ବନରେ ଦିନେ ପ୍ରବେଶ ହୋଇଲା
ପୁରୁଷ ବେଶ ଛାଡ଼ି ସ୍ତିରୀ ରୂପହେଲା ।
ରବିଙ୍କୁ ଘେନିଣ ମୁଁ ସେ ବାଟେ ଯାଉଥିଲି
ସେ ନାରୀକୁ ଦେଖି ମୁହିଁ ବିହ୍ୱଳିତ ହେଲି ।
ବିହ୍ୱଳରେ ବୀର୍ଯ୍ୟ ମୋର ଟଳିଲାକ ପୁଣ
ସେ ବୀର୍ଯ୍ୟ ପଡ଼ିଲା ଯାଇ ବାନର ଉପରେଣ ।
ସେଥିରୁ ଜନମ ହେଲା ବାଳିନାମେ ବୀର
ବଳରେ ସାଗର ଅଟେ ସାଧିଲା ତିନିପୁର ।
ତାକୁ ଶ୍ରୀରାମଚନ୍ଦ୍ର ଏକା କାଣ୍ଡକରେ ମାରି
କିଷ୍କିନ୍ଧ୍ୟାରେ ରାଜାକଲେ ସୁଗ୍ରୀବ ଭାଇ ତାରି ।
ଶଚୀଦେବୀ ବୋଇଲେ ସେ କିମ୍ପା ନାଶିଲେ
ସୁର ରାଜା ପୁତ୍ର ବୋଲି ଜାଣିକି ନଥିଲେ ।
ମୁଁ ବୋଇଲି ସେହୁପୁତ୍ର କଲାକ ଅନୀତି
ତେଣୁକରି ତାକୁ ନାଶ କଲେ ଦାଶରଥି ।
ଶଚୀଦେବୀ ବୋଇଲେ ସେ ତୁମ୍ଭ ପୁତ୍ରହୋଇ
କେଉଁ ଅନୀତି କଲା କହ ହେ ଗୋସାଇଁ ।
ମୁଁ ବୋଇଲି ଯେତେବେଳେ ଟଳିଲା ମୋବିନ୍ଦୁ
ଶୃଙ୍ଗାର ନ କରିବାରୁ ମନରେ ହେଲା ଖଙ୍ଗୁ ।
ଖଳ ଉପୁଜିବାରୁ ବୀର୍ଯ୍ୟ ବାଳରେ ପଡ଼ିଲା
ତେଣୁକରି ଏ ପୁତ୍ରକୁ କାଳ ଆବୋରିଲା ।
ଦୁର୍ଯ୍ୟୋଗ ବେଳେ ଯେବେ ଜାତ ହୁଅନ୍ତି ବଳା
ଭାଇକୁ ଦେଲା ଘଉଡ଼ି ଭାଇ ବୋହୁକୁ ହରିଲା ।
ସେ ଦୋଷ ଦେଖିଣ ରାମ ତାକୁ କଲେ ନାଶ
ଶଚୀ ପଚାରନ୍ତି ସୁଗ୍ରୀ ଅଟେ କାର ଶିଷ୍ୟ ।
ମୁଁ ବୋଇଲି ରବିର ସେ ଅଟଇ ତନୟ
ସେହି ବିଭୋଳିତ ହେଲେ ଦେଖିଣ କପିରାୟ ।
ମୋର ସଙ୍ଗରେ ସେ ଶୃଙ୍ଗାର ଦେଲେଛାଡ଼ି
ତାଙ୍କ ବୀର୍ଯ୍ୟ ହୃଦୟରେ ପଡ଼ିଲା ଯାଇଁକରି ।
ସେ ବୀର୍ଯ୍ୟରୁ ଜାତ ହେଲା ସୁଗ୍ରୀବ ନାମେକପି
ନାରାୟଣେ ଉପକାର ସେହୁ କଲାନିକି ।
କପି ସୈନ୍ୟ ଘେନି ସେ ଅସୁର କୁଳଧ୍ୱଂସି
ତେଣୁକରି ଶ୍ରୀରାମ ହୋଇଲେ ତାକୁ ତୋଷି ।

ବାଳିର ଭାରିଯାକୁ ତା ତଳେ ରଖିଲେ
ସେ ରାମର କାର୍ଯ୍ୟ ଯେ ନକଲେ ମୋରବାଳେ ।
ଏହା ଶୁଣି ଶଚୀ ମୋତେ କଲାକ ଭର୍ତ୍ସନା
ସବୁଦିନ କୁପୁରୁଷ ହୋଇଲୁ ତୁହି ସିନା ।
ଗଉତମ ଋଷିଙ୍କ ଭାରିଯାକୁ ତୁ ହରି
ତେଣୁ ସହସ୍ର ଯୋନି ଶରୀରେ ତୋହରି ।
ମତ୍ତଗର୍ବପଣେ ଯେ ମାଇଲୁ ବୃତାସୁର
ସେ ତୋତେ ରଖିଣ ରଖେ ଉଦର ଭିତର ।
ମଳ ମୂତ୍ର ଦୁଇସ୍ଥାନେ ରଖିଲା ସେହୁ ନେଇ
ଚଉରାଶି ରୋଗବହୁ ଦେବରାଜା ହୋଇ ।
ସକଳ ଦେବତାଏ ରାମର କାର୍ଯ୍ୟ କଲେ
ତୋର ବେଳେ ରାମକାର୍ଯ୍ୟ ନୋହିଲା ଗର୍ବରେ ।
ଦେବରାଜା ପଣକୁ ତୁ ନୋହୁରେ ଯୋଗ୍ୟପୁଣ
ଏତେ ପାପ କଲୁଣି ତୁ ନୋହିବୁ ରାଜା ଜାଣ ।
ବଳି ଅସୁରକୁ ରେ ନୋହିବ ସ୍ୱର୍ଗ ଭୋଗ
କୁଳଟୁଟା ଶରୀର ତୋ ନୋହୁରେ ମୋତେ ଯୋଗ୍ୟ ।
ତାହାର ଭର୍ତ୍ସନା ଶୁଣି ଚିନ୍ତା ମନରେ ହେଲା
କୌଣସି କଥାରେ ମୋର ମନହିଁ ନୋହିଲା ।
ବିଚାରିଲି ବାସୁଦେବ ଅଟନ୍ତି କରତା ।
ଏହାଙ୍କୁ ଚିନ୍ତାକଲେ ଫେଡ଼ିବେ ମୋର ବ୍ୟଥା
ଏତେ କହି ସକଳ ଚିନ୍ତା ତ୍ୟାଗ କରି ମନୁ
ଯୋଗଲଏ ଧ୍ୟାଇଲି ମୁଁ ନରଜନ୍ମ ତନୁ ।
ଏବେ ମୁଁ ଦେଖିଲି ହେ ନୟନ ଯୁଗଳରେ
ପ୍ରତ୍ୟକ୍ଷ ଫଳିଲା ତପ ଦେଖିଲି ନୟନରେ ।
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଅନନ୍ତ ଚାରିଜଣ
ମୋର ପୁରେ ବିଜେ କଲେ ହେଲି ମୁଁ କାରଣ ।
ଶ୍ରୀରାମ ବୋଇଲେ ଏବେ ମନରୁ ଦୁଃଖ ଛାଡ଼
ଆରଜନ୍ମେ ବାଳିକି ଆମ୍ଭେ କରିବା ବଡ଼
ପଣ୍ଡୁରାଜା କୋଳେ ଜାତ କୋଇନ୍ତା ଗର୍ଭରେ
ସେତେବେଳେ ସେ ସ୍ୱତୀ ସୁମରିବ ତୋରେ ।
ତୋହର ବୀର୍ଯ୍ୟୁଦେବୁ ତାହାରି ଗର୍ଭରେ
ସଦାଶିବଙ୍କର ଜୀବରକ୍ତ ମାଂଏସରେ ।
ମୁହିଁ ଦେବୀ ପଞ୍ଚୁ ପ୍ରାଣ ବ୍ରହ୍ମାଙ୍କ ଶରୀର
ଚର୍ତୁଧା ରୂପରେ ପୁତ୍ର ଜାତ ହେବ ତୋର ।
ସେ ପୁତ୍ର ନାମ ଗୋଟି ହୋଇବ ଅର୍ଜୁନ
ତ୍ରୈଲୋକ୍ୟ ଜିଣିବ ସେ ଜାଣହେ ନ ଜାଣ ।
ତେତେବେଳେ ତୋର ପୁତ୍ର ଉପକାରୀ ମୋତେ
ଚିନ୍ତା ନକର ତୁ ରାଜା କ୍ରୋଧ ମୋ ନାହିଁଚିତ୍ତେ ।
ପ୍ରଥମେ ଯେ ବେଣୁରାଜା ଦ୍ୱିତୀୟେ ମାନଧାତା
ତୃତୀୟେ ସେ ବାଳିବୀର ବଳରେ ଶକତା ।
ଚତୁର୍ଥେ ଅର୍ଜୁନ ନେବ ଦ୍ୱିତୀକୃଷ୍ଣ ପୁଣ
ତେତେବେଳେ ତୁମ୍ଭକୁଳ କରିବ ଉଦ୍ଧାରଣ ।
ସୁଗ୍ରୀବର ସେ ଯୁଗରେ କର୍ଣ୍ଣ ଯେ ହୋଇବ
କୋଇନ୍ତା ସଙ୍ଗରେ ରବି ଶୃଙ୍ଗାର କରିବ ।
କର୍ଣ୍ଣବାଟେ ଜନ୍ମ ହୋଇ କର୍ଣ୍ଣ ତାର ନାମ
ଭାରତ ମଧ୍ୟରେ ତାକୁ ମାରିବେ ଅର୍ଜୁନ ।
ଶୁଣି ଶଚୀନାଥ ହରଷ ହୋଇଲେ
ଭୁଞ୍ଜିବାକୁ ଅମୃତ ଭଣ୍ଡାରୁ ଆଣିଦେଲେ ।
ପାଞ୍ଚଜଣ ବସି କରି କଲେ ଯେ ଭୋଜନ
ଯେତେକ ଦେବତା ଥିଲେ ସଙ୍ଗରେ ଭୁଞ୍ଜେପୁଣ ।
ଆଚମନ ସାରିଣ ବିଡ଼ିଆ ଲାଗି ହେଲେ
ବାରସ୍ୱତୀ ଭୁବନରେ ଯାଇଣ ମିଳିଲେ ।
ରତ୍ନ ପଲଙ୍କରେ ଯାଇ ପହୁଡ଼ିଲେ ପୁଣ
ଶୁଣିଣ ପାର୍ବତୀ ବୋଲେ ଶୁଣ ହେ ତ୍ରିଲୋଚନ ।
ଇନ୍ଦ୍ରର ମନ ଦୁଃଖ ଭାଜିଲା ଯେ ଏବେ
ପୂର୍ବଜନ୍ମ କଥା ତାକୁ କହିଲେ ରାମଦେବେ ।
ଗାୟତ୍ରୀ ସାବିତ୍ରୀ ପୁଣ ପାର୍ବତୀ ଯେ ଗଲେ
ଜାନକୀ ସଙ୍ଗରେ ପୁଣି ଉର୍ମିଳା ଦେବୀମିଳେ ।
ସେମାନେ କେଉଁଠାରେ ରହିଲେ କହ ଦେବ
ତାହାଙ୍କୁ ମାନ୍ୟ ଧର୍ମ କି ନୋହିଲା ଶଚୀହୃଦ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ମନ ଦେଇ
ଅପସରୀମାନେ ଭିତର ପୁର ଯାଇ ।
ଇନ୍ଦ୍ରାୟଣୀ ଆଗରେ କହିଲେ ଯାଇ କରି
ବୋଇଲେ ତୋର ଦ୍ୱାରେ ବିଜେ ପାଞ୍ଚନାରୀ ।
ଗାୟତ୍ରୀ ସାବିତ୍ରୀ ଯେ ସଙ୍ଗରେ ପାର୍ବତୀ
ଜାନକୀଙ୍କ ସଙ୍ଗେ ଉର୍ମିଳା ବିଜେ କରିଛନ୍ତି ।
ଶ୍ରୀରାମ, ଲକ୍ଷ୍ମଣ ଯେ ଈଶ୍ୱର ବ୍ରହ୍ମଚାରୀ
ତୋ ସ୍ୱାମୀ ପାଞ୍ଚଜଣଙ୍କୁ ଘେନି ପାଞ୍ଚଜଣ ସରି ।
ବାରସ୍ୱତୀ ଭୁବନରେ ବିଜେ କରିଛନ୍ତି
ତୋର ଦ୍ୱାରେ ଏ ପାଞ୍ଚ ଠାକୁରାଣୀ ଛନ୍ତି ।
ଶୁଣିକରି ଶଚୀଦେବୀ ମାଜଣା ବିଧିହେଲେ
ପାଞ୍ଚଠାବ କରି ଅର୍ଘ୍ୟ ଥାଳିରେ ଭରିଲେ ।

ମଙ୍ଗଳ ଆଳତୀମାନ ଧୂପ ଦୀପ ଥୋଇ
ଅପ୍‌ସରୀମାନଙ୍କ ହସ୍ତରେ ପୁଣ ଦେଇ।
ଅମଳାଣ ଶାଢ଼ୀ ପିନ୍ଧି ପହରଣ କଲେ
ପାଞ୍ଚଗୋଟି ମଣିମାଳା କରରେ ଧଇଲେ।
ଅପ୍‌ସରୀମାନଙ୍କ ହସ୍ତରେ ନେଇ ଝରୀ
ସୁବାସିତ ଗଙ୍ଗାଜଳ ସେଥିରେ ନେଇଭରି।
ଧୀରେ ଧୀରେ ଗମନ କରଇ ଦେବରାଣୀ
ସିଂହଦ୍ୱାରେ ବିଜେ କଲା ଅତୁଟ କାମିନୀ।
ପାଞ୍ଚନାରୀ ଏକ ଆସନେ ଛନ୍ତି ରହି
ଦେଖିଣ ଇନ୍ଦ୍ର ନାରୀର ବୁଦ୍ଧି ନସ୍ଫୁରଇ।
ମନେ ମନେ ସ୍ତୁତି ଯେ କରଇ ଦେବରାଣୀ
କାହାକୁ ଏଥିରେ ମୁଁ କରିବି ଆଗେ ପୁଣି।
ସାବିତ୍ରୀ ବୋଇଲେ ତୁମ୍ଭେ ମନରେ କିମ୍ପାଭାଳ
ପ୍ରଥମରେ ପାର୍ବତୀଙ୍କ କର ଗୋ ସମ୍ଭାର।
ଦ୍ୱିତୀୟରେ ବିଷ୍ଣୁନାରୀ ଜାନକୀ ଯେ ପୁଣ
ତୃତୀୟେ ଅନନ୍ତ ନାରୀ ଉର୍ମିଳା ଅଟେ ଜାଣ।
ଚତୁର୍ଥେ ମୋର ପାଶେ ପାଞ୍ଚ ଯେ ଗାୟତ୍ରୀ
ଏମାନଙ୍କୁ ମାନ୍ୟଧର୍ମ କର ଗୋ ଏବେ ସତୀ।
ଶୁଣି କରି ଶଚୀଦେବୀ ବେଗେ ଚଳିଗଲେ
ସୁବର୍ଣ୍ଣ ଝରୀରେ ତୁମ୍ଭ ଚରଣ ଧୋଇଲେ।
ଝୀନ ବସନେ ପୋଛିଲେ ବେନି ଯେ ଚରଣ
ଝରୀ ଧରି ଉଭା ହେଲା ଜାନକୀ ପାଶେଣ।
ଜାନକୀ ବୋଇଲେ ଏକଥା ଉଚିତ ନୁହଇ
ବଡ଼ଥାଉଁ ସାନ କିମ୍ପା ମାର୍ଜନା ହୋଇ।
ସାବିତ୍ରୀ ଚରଣ ଧୋଇ ଗାୟତ୍ରୀ କରି ବୋଧ
ତେବେ ଆମ୍ଭ ପାଶକୁ ଆସ ଗୋ ରାଣୀବୋଧ।
ଶୁଣିକରି ଶଚୀଦେବୀ ବେଗେ ଚଳିଗଲେ
ସାବିତ୍ରୀ ଗାୟତ୍ରିଙ୍କ ଚରଣ ଧୋଇଲେ।
ଝୀନ ବସନେ ଦୁଇ ଚରଣ ପୋଛିଲେ
ଜାନକୀଙ୍କ ଚରଣ ଯାଇଣ ଧୋଇଲେ।
ଉର୍ମିଳାର ଚରଣ ଧୋଇଲେ ପୁଣଯାଇଁ
ଝିନ ବସନରେ ପୋଛେ ହରଷ ମୁଖହୋଇ।
ମଙ୍ଗଳ ଆଳତୀ ଘେନି ସଭିଙ୍କି ବନ୍ଦାଇଲେ
ଅର୍ଘ୍ୟ ବନ୍ଦାପନା କରି ଦୁର୍ବାକ୍ଷତ ଦେଲେ।
ଚରଣେ ଓଳଗି ସେ ଶୋଇଲେ ଶତେବାର
କରଧରି ଘେନିଗଲା ଆପଣା ନିଜ ପୁର।

ହୀରା ନୀଳା ପଲଙ୍କରେ ନେଇଣ ବସାଇଲା
ଅମୃତ ଯୋଗାଡ଼ୁ ଆଣି ଭୁଞ୍ଜିବାକୁ ଦେଲା।
ଅମୃତ ମଣୋହି କରି ଉଠିଲେ ପାଞ୍ଚଜଣ
ଅଲୋଚନା କରି ବସେ ପଲଙ୍କ ପରେଣ।
ବିଡ଼ିଆ ଲାଗି ହୋଇଲେ ଅପସରୀ ଗଣ
ଆଲଟ ଚାମର ଧରେ ଦକ୍ଷ ନାରୀ ପୁଣ।
ନୃତ୍ୟ ରଙ୍ଗ କରନ୍ତି ଯେ ଅପସରି ତହିଁ
ବୀଣାଯନ୍ତ୍ର ସ୍ୱରରେ ସମସ୍ତେ ମୋହ ହୋଇ।
ନାନା କଉତୁକେ ସେଥି ଉପୁଜିଲା ହାସ୍ୟ
ବାରସ୍ୱତି ଭୁବନରେ ହୋଇଲା ହରଷ।
ବଳରାମ ଦାସ ମୁଁ ଯେ ତାଙ୍କପଛେ ଥିଲି
ତାହାଙ୍କ ପତ୍ରରୁ ମୁଁ ଯେ କୈବଲ୍ୟ ସେବାକଲି।
ତେଣୁକରି ଦୟା ମୋତେ କଲେ ପାଞ୍ଚନାରୀ
ଚରଣେ ଶରଣ ମୋତେ ରଖଇଲେ ବିଚାରି।
ସେ ପଞ୍ଚ ସତୀଙ୍କ ଚରଣକୁ ମୋ ଆଶ
ତେଣୁ ସେ ପଦେ ଶରଣ ମୁଁ ବଳରାମ ଦାସ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ସୁଜ୍ଞଜନ
ସ୍ୱର୍ଗପୁର ବୁଲି ରାମ ଇନ୍ଦ୍ରଙ୍କ ଭୁବନ।
ଶୟନକୁ ତେଜ୍ୟା କରି ଉଠିଣ କହିଲେ
ଦିଗବିଜେ କରିବାର ଛଡ଼ଦିନେ ଗଲେ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ଇନ୍ଦ୍ରଙ୍କ ସଭାରେ ରାମ କି କଲେ ଆଉପୁଣ।
ଈଶ୍ୱର ବୋଇଲେ ସେ ଇନ୍ଦ୍ରଙ୍କ ପୁରେଥିଲେ
ଇନ୍ଦ୍ରଙ୍କୁ ଚାହିଁ ଶ୍ରୀରାମ ବଚନ ବୋଇଲେ।
ବେଗେ ସଭା ମଣ୍ଡାଇ ଦେବତା ଅଣାଅ
ଋଷିଗଣ ଅଣାଇ ଯତନ କରାଅ।
ଶୁଣିକରି ଦେବରାଜା ଗନ୍ଧର୍ବଙ୍କୁ ଚାହିଁ
ବୋଇଲେ ଦେବତା ଗଣ ବରିଆଣ ଯାଇ।
ସକଳ ଦେବତାଙ୍କୁ ଯେ ତୁମ୍ଭେ ଅଣାଇବ
ଦେବ ସ୍ତିରୀଙ୍କ ସଙ୍ଗେ ସେ ଆଣିବେ କହିବ।
ବୋଲିବ ଯେ ବ୍ରହ୍ମା ହର ବିଜେ କଲେ
ପାର୍ବତୀ, ସାବିତ୍ରୀ, ଗାୟତ୍ରୀ ଅଛନ୍ତି ସଙ୍ଗରେ।
କମଳା ଆନ ନାରୀ ଆସିଛନ୍ତି ପୁଣ
ଶଚୀଙ୍କି ଘେନି ରାଜା ବିଜେ ସଭାରେଣ।
ଶୁଣିଣ ଗନ୍ଧର୍ବଗଣ ବେଗେ ଚଳିଗଲେ
ସକଳ ଦେବତା ପୁରେ ଯାଇଣ ମିଳିଲେ।

ବୋଇଲେ ଗନ୍ଧର୍ବଗଣ ଦେବତାଏ ଶୁଣ
ବେଗହୋଇ ଯାଅତୁମ୍ଭେ ଘେନି ନାରୀଗଣ ।
ଦେବରାଜା ତୁମ୍ଭଙ୍କୁ ଯେ କରିଲେ ବରଣ
ବ୍ରହ୍ମା, ବିଷ୍ଣୁ, ସଦାଶିବ ମିଳିଲେ ଆସିଣ ।
ଏଥୁ ଅନନ୍ତରେ ଯେ ଦକ୍ଷଗଣ ଚାହିଁ
ସୁରରାଜା ବୋଇଲେ ହେ ବେଗ ହୋଇଯାଇଁ ।
ସୁଧର୍ମା ସଭାକୁ ବେଗେ କରନ୍ତେ ମଣ୍ଡନ
ଦେଖିଣ ସକଳ ଦେବେ ହୋଇବେ ପ୍ରସନ୍ନ ।
ଶୁଣିଣ ଦକ୍ଷଗଣ ବେଗେ ଚଳିଗଲେ
ପଞ୍ଚରତ୍ନେ ସଭାକୁ ମଣ୍ଡିତ ଯାଇଁ କଲେ ।
ଭିତରେ ଟାଣିଲେ ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ
ଚନ୍ଦ୍ରାତପ କାଟିବାରୁ ସକଳ ଦିଶେ ନୂଆ ।
ନାନାବର୍ଣ୍ଣେ ଛନ୍ଦଣୀ ଯେ ବିଚିତ୍ର ବେଶକଲେ
ସ୍ୱର୍ଗକୁ ଜିଣିଲା ସଭା ମୋହିଲା ତିନିପୁରେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଶାକମ୍ଭରୀ
ନାରଦଙ୍କୁ ସୁମରଣା ଇନ୍ଦ୍ର ଦେବ କରି ।
ଜାଣି ମନଦଣ୍ଡେ ଚଢ଼ି ମିଳିଲେ ଦେବରଷି
ନାରଦଙ୍କୁ ଦେଖି ଯେ ସୁର ରାଜ ତୋଷି ।
ପିତାଙ୍କୁ ଦେଖିଣ ରଷି ନମସ୍କାର କଲେ
ସଦାଶିବ ଚରଣରେ ବିନତି ହୋଇଲେ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ମାନ୍ୟ କଲେ ପୁଣ
ବେଦବର ବୋଲେ ତୁମ୍ଭେ ଯାଅ ତତକ୍ଷଣ ।
ଦେବରଷି, ବ୍ରହ୍ମରଷି ସମସ୍ତଙ୍କୁ ଆଣ
ସୁଧର୍ମା ସଭାରେ ଆଜ ବସିବେ ଦେବଗଣ ।
ଶୁଣିଣ ନାରଦ ରଷି ବେଗେ ଚଳିଗଲେ
ସକଳ ମୁନିଙ୍କ ପୁରେ ପ୍ରବେଶ ହୋଇଲେ ।
ବୋଇଲେ ଦେବ ସଭାକୁ କରହେ ଗମନ
ସେ ସଭାରେ ବିଜେକଲେ ବ୍ରହ୍ମା, ବିଷ୍ଣୁ ପୁଣ ।
ସଦାଶିବ ସହିତେ ସକଳ ଦେବ ଗଣ
ବିଜୟ କରିଛନ୍ତି ତୁମ୍ଭେ ଯାଅ ହେ ବେଗେଣ ।
ଶୁଣିଣ ସକଳ ରଷି ମନରେ ତୋଷହେଲେ
ନାରଦ କହିଣ ବେଗେ ଫେରିଣ ଅଇଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଭଗବତୀ
ଶଚୀପତି ଅଣାଇଲେ ଐରାବତ ହସ୍ତୀ ।
ବେଶ ହୋଇ ବାହନ ପରେ ବିଜେକଲେ
ଶଚୀଦେବୀ ବେଶ ହୋଇ କୋଳରେ ବସିଲେ ।
ଆମ୍ଭେ ସଜ ହୋଇ ବୃଷଭ ପରେ ବିଜେ
ପିନାକୀ ଧନୁଗୋଟି ଆମ୍ଭର କରେ ସାଜେ ।
ତୁହି ବେଶ ହୋଇ କରି ମୋ କୋଳେ ବସିଲୁ
ହରଷ ଦିଶିଲା ମହୀ ବୋଲିଣ ବିଚାରିଲୁ ।
ଏମନ୍ତ ସମୟରେ ବେଦବର ପୁଣ
ହଂସର ବାହନେ ଯାଇ ବସିଲେ ତକ୍ଷଣ ।
ଦୁଇନାରୀ ସଙ୍ଗେ ଘେନି ନିଶ୍ଚଳ ଆସନେ
ବିଜୟେ ବେଦବର ହୋଇଣ ତୋଷମନେ ।
ସୀତାଙ୍କୁ ଘେନି ରାମ ନନ୍ଦିଘୋଷରେ ବସି
ଉର୍ମିଳା ଘେନି ଲକ୍ଷ୍ମଣ ତାଳଧ୍ୱଜେ ଉଠି ।
ବେଦବର ବାହନରେ ବିଜେକରି ଗଲେ
ଗାୟତ୍ରୀ ସାବିତ୍ରୀ ଘେନି ସଭାରେ ବସିଲେ ।
ବୃଷଭ ତେଜ୍ୟାକରି ଆମ୍ଭେ ଗଲୁ ଚଳି
ତୁମ୍ଭଙ୍କୁ କୋଳେ ଘେନିଣ ସଭାରେ ବିଜେକରି ।
ରାମ, ଲକ୍ଷ୍ମଣ ଦୁହେଁ ରଥରୁ ଓହ୍ଲାଇଲେ
ଦୁଇନାରୀଙ୍କି ଘେନି ସଭାରେ ବସିଲେ ।
ଦେବତାଏ ଅଇଲେ ସେ ସକଳ ବେଗହୋଇ
ଯେ ଯାହା ନାରୀ ଘେନି ସଭାରେ ବସେଯାଇ ।
ଗନ୍ଧର୍ବ କିନ୍ନରଗଣ ଯକ୍ଷ ବିଦ୍ୟାଧରି
ଦଶଦିଗପାଳେ ଯେ ଆସି ବିଜେକରି ।
ନବଗ୍ରହ ଷୋଳ ଯେ ଚନ୍ଦ୍ରମା ବିଜେକଲେ
ବାର ଆଦିତ୍ୟ ସଙ୍ଗରେ କନ୍ଦର୍ପ ଆସିଲେ ।
ଧର୍ମ ନିରଞ୍ଜନ ବିଜେ ସଙ୍ଗରେ ଘେନି ଶିଷ୍ୟ
ଚାରିମେଘ ଅଇଲେ ଯେ ହୋଇଣ ହରଷ ।
ବରୁଣ, ଅଗ୍ନି, କୁବେର, ମରୁତ ଅଇଲେ
ମଙ୍ଗଳ, କେତୁ, ବୁଧ ଯେ ବୃହସ୍ପତି ତୁଲେ ।
ଅଷ୍ଟବସୁ ସଙ୍ଗରେ ଅଶ୍ୱିନୀ କୁମାର
ବିଜୟେ କଲେ ଆସି ସେ ସଭାର ଉପର ।
ଅପସରୀ, କିନ୍ନରୀ, ଯକ୍ଷ, ବିଦ୍ୟାଧରି
ଏମାନେ ବିଜେ କଲେ ସଭାତୁଳ ଘେରି ।
ସକଳ ଦେବଗଣ ପ୍ରବେଶ ଯହୁଁ ହେଲେ
ନାରଦଙ୍କ ସଙ୍ଗରେ ସପତ ରଷିମେଳେ ।
ତେତିଶ କୋଟି ରଷି ଆସି ହେଲେ ଠୁଳ
ଦେବରଷି, ବ୍ରହ୍ମରଷି ବସିଲେ ସଭାର ।
ବାସ୍ତରି କୋଟି ଖମ୍ଭ ସେ ସଭାରେ ଅଛି ଜାଣ
ଚାରିଅଂଶା ଖମ୍ଭା ଗୋଟି ଅଟଇ ପ୍ରମାଣ ।

ବାରଯୁଗ ପରିଯନ୍ତେ ସଭାର ବିସ୍ତାର
ଯେଉଁ ସଭାରେ ବସିଲେ ଲୁଚିଲେ ତିନିପୁର ।
ପାର୍ବତୀ ବୋଇଲେ ଦେବ ସେଠାରୁ କିସହେଲା
ସେ ସଭାର କଥା କହ ଅଣାକାର ବଳା ।
ଈଶ୍ୱର ବୋଇଲେ ସକଳ ଦେବ ବସି
ସଭାପରେ ବସିଲେ ସେ ଘେନି ଶଶିମୁଖୀ ।
ବ୍ରହ୍ମରଷି, ଦେବର୍ଷି, ଦଶଦିଗପାଳ, ନବଗ୍ରହ
ପୁଷ୍କର ସହିତ ସେ ସଭାରେ ବସି ସ୍ନେହ ।
ଗହଳରେ ସଭା ଯେ ହୋଇଲା ସ୍ୱର୍ଗପୁରେ
ସକଳେ ବସି ପ୍ରଶଂସା କରନ୍ତି ରାମରେ ।
ବୃହସ୍ପତି ବୋଇଲେ ହେ ଦେବତାଏ ଶୁଣ
ଛୟାନବେ ଯୁଗେ ସଭା ହୋଇଲା ଗହଳେଣ ।
ଚାରି ରାବଣ ଯହୁଁ ମର୍ତ୍ତ୍ୟପୁରେ ଜାତହେଲେ
ଏତେ ଯୁଗ ପରିଯନ୍ତେ ସଭା ନିରୋଧ କଲେ ।
ନାରାୟଣ ଅବତାର ହେବାରୁ ମନୁଷ୍ୟରେ
ଚାରି ରାବଣ ମାରିଣ ସ୍ୱର୍ଗକୁ ସୁଖକରେ ।
ସବୁଦିନେ ନାରାୟଣ ଅଟନ୍ତି ଆମ୍ଭର
ଆମ୍ଭେ ତାଙ୍କ ଅଟୁ ସେ ଆମ୍ଭ ପ୍ରଭୁ ସାର ।
ଏତେବୋଲି ଦେବ ଗୁରୁ କହିଲେ ସଭାରେ
ସକଳ ଦେବତା ତୋଷ ଶ୍ରୀରାମ ଲକ୍ଷ୍ମଣରେ ।
ଋଷିମାନେ ବୋଇଲେ ଏଠାରେ ହେବ ଯାଗ
ଅଗ୍ନିଦେବତା ବୋଇଲେ ହୋଇଲା ହବିର୍ଭାଗ ।
ଚାରି ମେଘ ବୋଇଲେ ଆମ୍ଭେ ସୁସ୍ଥରେ ପାଳିବୁ
ମେଦିନୀରେ ଶୀତଳ ଜଳ ଯେ ବୃଷ୍ଟି କରିବୁ ।
ଶଶିଧର ବୋଇଲେ ଶିଶିର ହେଲା ଜାତ
ମୋର ତେଜ ଗଗନରେ ହୋଇଲା ବିଦିତ ।
ବିରଞ୍ଚି ବୋଇଲେ ମୋର ଭୟ ଯେ ତୁଟିଲା
ନାଶକର ବୋଲେ ମୋର ଧର୍ମ ଉଦେହେଲା
ଦେବତାଏ ବୋଇଲେ ନିଶ୍ଚଳ ଆମ୍ଭେ ହେଲୁ
ସ୍ୱର୍ଗପୁରେ ବିହାର କରିବୁ ରାମ ସକାଶରୁ ।
ସୁରରାଜ ବୋଇଲେ ହେ ଦେବଗଣ ଶୁଣ
ସମସ୍ତଙ୍କର ମନ ସନ୍ତୋଷ ହେଲା ପୁଣ ।
କରିବା ତାଣ୍ଡବ ନୃତ୍ୟ ଆଜ ଏ ସଭାରେ
ନାରାୟଣ ଅଛନ୍ତି ତ ଏ ସଭା ମଧ୍ୟରେ ।
ହଉବୋଲି ବେଦବର ସଭାରୁ ଉଠିଗଲେ
ମର୍ଦ୍ଦଳ ଗୋଟିଏ ନେଇ କନ୍ଧରେ ଭରିଲେ ।

ସଦାଶିବ ବେଶ ହୋଇ ହୋଇଲେ ବାହାର
ପାହୁଡ଼ ନୂପୁର ଶୋହେ ତାଙ୍କର ପୟର ।
ବଜ୍ରଧର ଲୋଟଣି ଛଳରେ ବେଶ ହେଲେ
ଅନୁକମ୍ପା ଧରି ସେ ଯେ ସଭାରେ ଉଭାହେଲେ ।
ଦଶଦିଗପାଳେ ଯେ ସୀତାର ଗିନି ଧରି
ନବଗ୍ରହ ସପତ ଘଣ୍ଟି ଶବଦ ବେଗେ କରି ।
ନାରଦ ବୋଇଲେ ବୀଣା ଯନ୍ତ୍ର ଧରି କରେ
ସପ୍ତଋଷି ଗାଏଣୀ ଯେ ରାଗରେ ଗୀତ କଲେ ।
ଅପସରୀ, କିନ୍ନରୀ ଯେ ବିଦ୍ୟାଧରି ପୁଣ
ନଟକାରୀ ବେଶେ ନାଟ କଲେ ସେହୁ ଜାଣ ।
ଯେ ଯାହାର ଖଞ୍ଜରେ ରହିଲେ ସକଳ
ବୃହସ୍ପତି ବୋଇଲେ ଉଠ କୋଦଣ୍ଡ ଚାପଧର ।
ସବୁଦିନେ ତୁମ୍ଭ ଭାଗେ ତାଳ ଯେ କଂସାଳ
କିମ୍ପାଇଁ ବସିଛ ଦେବ ସଭାର ଉପର ।
ବୃହସ୍ପତି କହିବାରୁ ଉଠିଲେ ଦାଶରଥି
ତାଳ ଧରି ବିଜେ କଲେ ବ୍ରହ୍ମାଙ୍କର କତି ।
ବାଇଲେ ମର୍ଦ୍ଦଳ ବେଦବର ପୁଣି
ଯନ୍ତ୍ରମାନ ବଜାଇଲେ ଦିଗପାଳେ ଜାଣି ।
ନାରଦ ବଜାଏ ବୀଣା ସପ୍ତ ନାଗେଶ୍ୱର
ତିନିପୁରକୁ ଶବଦ ହେଲା ମହାଘୋର ।
ସକଳ ଦେବତା ଋଷି ସଧିରରେ ଚାହିଁ
ସମସ୍ତଙ୍କର ହରଷ ମନ ଅଛି ହୋଇ ।
ଏମନ୍ତେ ତାଣ୍ଡବ ନୃତ୍ୟ ହେଲା ବେଳୁବେଳ
ଆନନ୍ଦ ହୋଇଲେ ସର୍ବେ ଦେଖି ନୃତ୍ୟସାର ।
ଏକଦିନେ ଏକରାତ୍ର ନୃତ୍ୟରେ ବହିଗଲା
ତିନିପୁରକୁ ହରଷ ନୃତ୍ୟ ଯେ ରଙ୍ଗହେଲା ।
ଦେବସ୍ତିରୀମାନେ ଦେଖି ହୋଇଲେ ହରଷ
ବେଦବର ବୋଇଲେ ରହୁ ଏବେ ନୃତ୍ୟ ।
ମର୍ଦ୍ଦଳ ରଖିଲେ ବ୍ରହ୍ମା ତାଳ ଯେ ରାମଚନ୍ଦ୍ର
ବୀଣା ରଖିଲେ ନାରଦ କଟକମ୍ପା ରଖେଇନ୍ଦ୍ର ।
ସକଳ ରଖିଣ ସଦାଶିବ ପୁଣ ରହି
ସରିଲା ତାଣ୍ଡବ ନୃତ୍ୟ ହରଷ ମନ ହୋଇ ।
ବସିଲେ ସକଳ ଦେବ ହୋଇଣ ଶାନ୍ତମୂର୍ତ୍ତି
ସଦାଶିବ ବୋଇଲେ ଆମ୍ଭେ ଯାଉଛୁ ବେଦପତି ।
ବୃଷଭ ବାହାନ ପରେ ବସିଲେ ଯାଇଁ ହର
ପାର୍ବତୀଙ୍କୁ କୋଳେ ଧରି ବିଜେ ଦିଗମ୍ବର ।

ଚୌଦକୋଟି ଶିବ ଘେନି ବିଜେ ତ୍ରିଲୋଚନ
ନବକୋଟି ଡମ୍ବରୁ ବଜାଇଲେ ପୁଣ ।
ଶୂନ୍ୟରେ ଶିବ ଘେନି କଲେ ସେ ଗମନ
ଯଶୋବନ୍ତୀ ପୁରେ ଯାଇ ମିଳିଲେ ବହନ ।
ଋଷିମାନେ ଯେ ଯାହାର ଆଶ୍ରମକୁ ଗଲେ
ଏଥୁ ଅନନ୍ତରେ କଥା ଶୁଣ ଯେ ତୁମ୍ଭେଭଲେ ।
ବିଦ୍ୟାଧର, ଗନ୍ଧର୍ବ ଯେ ଅପସରୀଗଣ
ଇନ୍ଦ୍ର ଆଜ୍ଞା ଦେବାରୁ ସେ ଚଳିଗଲେ ପୁଣ ।
ଦେବତାଏ ଚଳିଗଲେ ଯେ ଯାହା ମନ୍ଦିର
ଦିଗପାଳମାନେ ଗଲେ ଆଶ୍ରମେ ତାଙ୍କର ।
ନବଗ୍ରହ ବିଜେ କଲେ ଯେ ଯାହା ଭୁବନ
ସଭାରୁ ଚଳିଲେ ସର୍ବ ଅଷ୍ଟବସୁ ପୁଣ ।
ସମସ୍ତେ ଯିବାରୁ ରାମଲକ୍ଷ୍ମଣ ଓହ୍ଲାଇଲେ
ନନ୍ଦିଘୋଷ ରଥପରେ ଶ୍ରୀରାମ ବିଜେକଲେ ।
ଜାନକୀ ବସିଲେ ଯାଇ ଶ୍ରୀରାମଙ୍କ କୋଳେ
ତାଳଧ୍ୱଜ ରଥେ ଯାଇ ଲକ୍ଷ୍ମଣ ବସିଲେ ।
ଉର୍ମିଳା ବସିଲେ ଲକ୍ଷ୍ମଣ ସଙ୍ଗତେ
ଦାରୁକ ସେଠାରୁ ରଥ ଚାଳିଲେ ତୁରିତେ ।
ତାଳଧ୍ୱଜ ନନ୍ଦିଘୋଷ ଘନ ଘନ ଚଳେ
ରାମଲକ୍ଷ୍ମଣ ବସିଛନ୍ତି ହରଷ ମନରେ ।
ଶଚୀନାଥ ଉଠିଣ ବସିଲେ ଐରାବତେ
ଶଚୀକି କୋଳେଧରି ଆନନ୍ଦ ହେଲେ ଚିତ୍ତେ ।
ବୋଇଲେ ତୋରଲାଗି ମୋର ଶୁଭ ହେଲା
ବ୍ରହ୍ମା, ବିଷ୍ଣୁ, ରୁଦ୍ରଙ୍କୁ ଦେଖିଲି ମୁହିଁ ପରା ।
ଶ୍ରୀରାମ କହିଲେ ଚାଟୁ ବଚନ ମୋହରେ
ପାତକେ ଦହିଲେ ମୋର କରୁଣା ସାଗରେ ।
ସଦାଶିବ ବୋଲେ ହୋଇଲା ସଭା ମୋର
ବେଦବର ବୋଲରେ ତାଣ୍ଡବ ନୃତ୍ୟସାର ।
ନାରଦ କହିବାରୁ ଶ୍ରୀରାମ ବିଜେ କଲେ
ବୃହସ୍ପତି କହିବାରୁ ସମସ୍ତେ ତୋଷହେଲେ ।
ପୂର୍ବଜନ୍ମ କଥା ମୋତେ କହିଲେ ରାମଦେବେ
ସବୁ ସୁଖ ହେଲା ତୋର ସକାଶୁ ମୋତେ ଏବେ ।
ଶଚୀଦେବୀ ବୋଲେ ତୁମ୍ଭେ ନାରାୟଣ ସେବ
ତେବେ ସଦାକାଳେ ତୁମ୍ଭେ କୁଶଳେ ରହିବ ।
ଶଚୀର ବଚନ ମାନି ସୁରରାଜା ପୁଣ
ନିଜପୁରେ ପ୍ରବେଶ ହେଲେ ବେନିଜନ ।

ପାର୍ବତୀ ବୋଇଲେ ଦେବ ଶୁଣ ମୋରବାଣୀ
ସୁଧର୍ମା ସଭାକୁ କେହୁ ସମ୍ଭାଳିଲା ପୁଣି ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ମନଦେଇ
ମଣ୍ଡୁକୀ ନାମେ ଯେ ଅଛି ସଭା ସମ୍ଭାଳଇ ।
ପାର୍ବତୀ ବୋଇଲେ ନୃତ୍ୟର ଅବଧାନ ଯେହୁ
କେହୁ ଏହା ସମ୍ଭାଳଇ କହ ମୋତେ ପ୍ରଭୁ ।
ମର୍ଦ୍ଦଳ, କଂସାଳ ଯେ ବୀଣା ଯନ୍ତ୍ରମାନ
କେଉଁଠାରେ ରହ ମୋତେ କହ ତ୍ରିଲୋଚନ ।
ଈଶ୍ୱର ବୋଇଲେ ଯେ ଅପସରୀ ମାନେ
ସେ ବିତକୁ ସମ୍ଭାଳନ୍ତି ନେଇଣ ଯତନେ ।
ପାର୍ବତୀ ବୋଇଲେ ମଣ୍ଡଣି ସଭା ହୋଇଥିଲା
ସେ ସଭାର ମଣ୍ଡଣିକି କେହୁ ଯେ ସମ୍ଭାଳିଲା ।
ଈଶ୍ୱର ବୋଇଲେ ସଭା ମଣ୍ଡଣି ଯାକ ପୁଣ
ଗନ୍ଧର୍ବେ ସମ୍ଭାଳନ୍ତି ଶୁଣ ଦେଇମନ ।
ପାର୍ବତୀ ବୋଇଲେ ସଭା କେଉଁଠାରୁ ଜାତ
ଈଶ୍ୱର ବୋଇଲେ ସଭା ବିଷ୍ଣୁ ଆସନତ ।
ପାର୍ବତୀ ବୋଇଲେ ଦେବ ନୃତ୍ୟ କାହୁଁ ଜାତ
ତାଣ୍ଡବ ନୃତ୍ୟ ବୋଲିଣ ତା ନାମ ସମ୍ଭୁତ ।
ଈଶ୍ୱର ବୋଇଲେ ନୃତ୍ୟ ମୋହଠାରୁ ପୁଣ
ଶବଦକୁ ଜାତ କଲେ ସରସ୍ୱତୀ ଜାଣ ।
ଯନ୍ତ୍ରଯାକ ଭିଆଇଲେ ବେଦବର ପୁଣି
ବିଧିଗତ କହିଲେ ବୃହସ୍ପତି ଜାଣି ।
ଏମନ୍ତ ପ୍ରକାରେ ସଭା ନୃତ୍ୟ ଯେ ଭିଆଣ
ସନ୍ତୋଷ ହୋଇଲେଟିକି ଏହା ଶୁଣି ପୁଣ ।
ପାର୍ବତୀ ବୋଲେ ଦେବ ରାମ, ଲକ୍ଷ୍ମଣ ଦୁଇଜଣ
ରଥପରେ ବସିଲେ ଜାନକୀ ଉର୍ମିଳା ଘେନିଣ ।
ଅଯୋଧ୍ୟାକୁ ଗଲେକି ଗଲେ ସେ କେଉଁପୁର
ସେ କଥା ଗୋଟି ମୋତେ ହୋଇଲା ଅଗୋଚର ।
ସ୍ୱର୍ଗପୁର ଦିଗବିଜେ ସରିଲା ତାଙ୍କରି
ସବୁ ଦେବେ ତୋଷ ହେଲେ କଳହ ନକରି ।
ଈଶ୍ୱର ବୋଇଲେ ସମସ୍ତେ ଭବୁଷି ହେଲେ
ଦେବକାର୍ଯ୍ୟ କଲେ ସେ ଯେ ଅସୁର ମାଇଲେ ।
ତେଣୁଟି ଦେବ ରାମର ଅଟନ୍ତି କିଙ୍କର
ସବୁଦିନେ ଜପୁଥାନ୍ତି ନାମ ଶ୍ରୀରାମଚନ୍ଦ୍ରର ।
ଶ୍ରୀରାମ ଯେ ସ୍ୱର୍ଗପୁରୁ ରଥ ଫେରି ନେଲେ
ମେରୁ ଗିରି ପରେ ଯାଇ ପ୍ରବେଶ ହୋଇଲେ ।

ଦେଖି କରି ମେରୁଗିରି ଓଳଗି ହୋଇଲା
ଶତେବାର ପରିଯନ୍ତେ ଚରଣେ ଶୋଇଲା ।
ସୁରା ସୁରିଙ୍କି ଡକାଇ ଚରଣ ଧୋଇଦେଲା
ମଙ୍ଗଳ ଆରତି କରି ଅର୍ଘ୍ୟ ବନ୍ଦାଇଲା ।
ଶ୍ରୀରାମ ବୋଇଲେ ତୁମ୍ଭେ ଗିରିରାଜ ଶୁଣ
ସକଳ କୁଶଳଟିକି ଅଟଇ ତୋର ପୁଣ ।
ମେରୁଗିରି ବୋଇଲେ ମୁଁ ତୁମ୍ଭର ପ୍ରସନ୍ନେ
ଚଉଦ ଭୁବନେ ମୁଁ ଯେ ସମ୍ଭାଳଇ ଏଣେ ।
ଗୋଟିଏ ଦୁହିତା ମୋର ଜାତ ଯେ ହୋଇଲା
ତାର ନାମ କସ୍ତୁବତୀ ବୋଲିଣ ଦେଲିପରା ।
କମଳା ଅଂଶରେ ସେ ହେଲେ ଉତପତି
ପଦ୍ମିନୀ ଜାତି ତାର ଶୁଣ ହେ ଦାଶରଥି ।
ସେ କନ୍ୟାକୁ ବର ମୁଁ ଯେ ବରିଲି ଅନେକ
ତାହାର ମନ କେଭେ ନୋହିଲା ତୃପତ ।
ସପତ ବର୍ଷ ଶେଷେ ନବ ଯୁବା ହେଲା
ନାରାୟଣ ପୁରୁଷଙ୍କୁ ମନରେ ସୁମରିଲା ।
ବୋଇଲା ପିତା ହେ ମୁଁ ଯାଉଛି ପାତାଳକୁ
ପାତାଳକୁ ଚଳିଗଲା ସତ୍ୱରେ ମନକୁ ।
ହେମାଳୟ ଯୋତିପୁରେ ସେ ଯାଇଣ ରହିଲା
ତୁମ୍ଭର ନାମକୁ ସେ ନିତ୍ୟ ଚିନ୍ତାକଲା ।
କଳ୍ପନା କରିଅଛି ଯେ ମନରେ ତାହାର
ଦ୍ୱିତୀୟ ନାରାୟଣଙ୍କୁ ସେ ଦେଖିଲେ ବରିବର ।
ସେ କଥାରେ ମାତ୍ରକ ମୋର ଚିନ୍ତା ଅଛି
ସମସ୍ତ କୁଶଳ ମୋର ଶୁଣ ହେ ଦାଶରଥି ।
ଶୁଣିକରି ରାମଚନ୍ଦ୍ର ସେଠାରୁ ଚଳିଗଲେ
ହେମଗିରି ଉପରେ ଯାଇ ପ୍ରବେଶ ହୋଇଲେ ।
ଦେଖିକରି ହେମଗରି ଚରଣେ ସେବାକଲା
ମାନ୍ୟ ଧର୍ମ କରିଣ ଓଳଗି ମେଲାଇଲା ।
ଶ୍ରୀରାମ ବୋଇଲେ ସେ ଯେ ନୁହଇ ଉଚିତ
ପିତା ହୋଇ ପୁତ୍ର ପାଦେ କରୁଛ ଅବିହିତ ।
ହେମଗିରି ବୋଲେ ତୁମ୍ଭେ ଅଟ ହେ ନିରଞ୍ଜନ
କି ପ୍ରକାରେ ତୁମ୍ଭର ମୁଁ ପିତା ଅଟେ ପୁଣ ।
ଶ୍ରୀରାମ ବୋଇଲେ ତୁମ୍ଭେ ମହାଦେବଙ୍କ ଶ୍ୱଶୁର
ଗଉରିଙ୍କ ପିତା ତୁମ୍ଭେ ଅଟଇ ହେ ନୃପବର ।
ସେ ତ୍ରିଲୋଚନ ଯେ ଅଟଇ ତୁମ୍ଭ ଭାଇ
ତୁମ୍ଭ ଦୁହିତା ସାନବୋହୂ ମୋ ଅଟଇ ।

ଏତେ ବୋଲି ଦୁଇଭାଇ ରଥରୁ ଓହ୍ଲାଇଲେ
ହେମ ରାଜାଙ୍କ ଚରଣେ ଯାଇଣ ଓଳଗିଲେ ।
ସୁକଲ୍ୟାଣ କଲେ ଯେ ହେମବନ୍ତ ରାଜା
ରଥରେ ବିଜେ ଦଶରଥଙ୍କ ତନୁଜା ।
ଜାନକୀ, ଉର୍ମିଳା ଯେ ଦୁଇଭଗ୍ନୀ ପୁଣ
ରଥରୁ ଓହ୍ଲାଇଲେ ସେହୁ ବେଗେ ଜାଣ ।
ହେମବନ୍ତ ଚରଣରେ ନମସ୍କାର କଲେ
ଭିତର ପୁରେ ଯାଇ ପ୍ରବେଶ ହୋଇଲେ ।
ତୁମ୍ଭର ଜନନୀ ହେଲେ ମାନ୍ୟଧର୍ମ
ଗଉରବ କଲେ ତୁମ୍ଭ ଜାନକୀ ଯେ ପୁଣ ।
ସେ ପୁଣ ତୋଷ ହୋଇ ଅଇଲେ ବେଗକରି
ସ୍ୱାମୀମାନଙ୍କ କୋଳରେ ବିଜୟେ ରାମନାରୀ ।
ସେଠାରୁ ଶ୍ରୀରାମ ପୁଣ ଶୀଘ୍ର ଚଳିଗଲେ
ଗନ୍ଧମାର୍ଦ୍ଦନ ଗିରିରେ ପ୍ରବେଶ ହୋଇଲେ ।
ଦେଖିଣ ଗନ୍ଧମାର୍ଦ୍ଦନ ବେଗେ ଯେ ଆସିଲେ
ଶ୍ରୀରାମ ଲକ୍ଷ୍ମଣଙ୍କର ଚରଣ ଧୋଇଲେ ।
ଭିତର ପୁରକୁ ସେ ନେଲାକ ଗଉରବେ
ଶୀତଳ ପୁରେ ନେଇ ବସାଇଲେ ବେଗେ ।
ଶୀତଳ ମଣୋହି ଯେ ଆଣିଦେଲେ ପୁଣ
ଭୁଞ୍ଜିଣ ଶ୍ରୀରାମ ସନ୍ତୋଷ ହେଲେ ପୁଣ ।
ଗନ୍ଧମାର୍ଦ୍ଦନର ଯେ ନାରୀ ଅଟେ ପୁଣ
ସୁଗନ୍ଧା ବୋଲିଣ ଯେ ନାମ ଅଟେ ଜାଣ ।
ସେ ଆସି ଜାନକୀ ଉର୍ମିଳା ଘେନି ଗଲା
ନିଉଛାଳି କରିଣ ମାଜଣା କରାଇଲା ।
ଶୀତଳ ମଣୋହି ଯେ ଭୋଜନ କରାଇ
ବୋଇଲା କମଳା ଗୋ ମୁଁ ତୋତେ ବିନଇ ।
ତୁମ୍ଭର ଅଂଶରେ ମୋର ନନ୍ଦିନୀ ଚାରିଗୋଟି
ମୋହର ଜାତ ଯେ ହୋଇଛନ୍ତି ସେଠି ।
ଶତେକ ବରଷରେ ହେଲେ ନବ ଯୁବା
ବରଖୋଜି ଆଣିବାରୁ ନୋହିଲେକ ବିଭା ।
ବୋଇଲେ ନାରାୟଣ ଭେଟ ଯେତେବେଳେ
ସେ ଯାହାକୁ କହିବେ କରିବୁ ତାଙ୍କୁ ବର ।
ଏତେକହି ମୋର ପୁରୁ ବାହାର ହୋଇଗଲେ
ମେରୁରାଜା ଦୋହିତା ସଙ୍ଗରେ ରହ ଭଲେ ।
ଏତେ କହି ଦୁଇଭଗ୍ନୀ ଘେନିଣ ଚଳିଲେ
ରଥରେ ବସାଇ ଦେଇ ଲେଉଟି ଅଇଲେ ।

ସେଠାରୁ ଶ୍ରୀରାମ, ଲକ୍ଷ୍ମଣ ଲେଉଟିଣ ଗଲେ
ନନ୍ଦିଘୋଷ, ତାଳଧ୍ୱଜ ରଥରେ ବସିଲେ ।
ଦାରୁକ, ମାତଳି ଦୁହେଁ ରଥ ବାହି ନେଲେ
ଆଠଗୋଟି ହେମଗିରି ଦେଖିଣ ଚଳିଲେ ।
ସାତଦିନେ ଅଯୋଧ୍ୟରେ ହେଲେ ପରବେଶ
ଦିଗବିଜେ କରିଣ ଜାନକୀ ବିଳାସ ।
ରଥରୁ ଓହ୍ଲାଇ ରାମ ଜାନକୀ କର ଧରି
ନିଜପୁରେ ବିଜେକଲେ କୋଦଣ୍ଡ ଚାପଧାରୀ ।
ଜନନୀମାନଙ୍କୁ ରାମ ହେଲେ ନମସ୍କାର
ଜାନକୀ ଓଳଗିଲେ ମାତାଙ୍କ ପୟର ।
ଏଥୁ ଅନନ୍ତରେ ସଉମିତ୍ରୀ ପୁଣ
ଊର୍ମିଳାଙ୍କ କରଧରି କଲେକ ଗମନ ।
ନିଜପୁରେ ତାଙ୍କର ହେଲେ ପରବେଶ
ଜନନୀମାନଙ୍କ ଓଳଗେ ସୁମିତ୍ରାଙ୍କ ସୁତ ।
ଊର୍ମିଳା ଯାଇଣ ଶାଶୁଙ୍କୁ ଓଳଗିଲେ
ସୁକଲ୍ୟାଣ କରି ସୁମିତ୍ରା ଘରକୁ ଘେନିଗଲେ ।
ସ୍ୱର୍ଗ ଦିଗ୍‌ବିଜୟେ କରିଣ ଚାପଧାରୀ
ଗିରି ଦିଗବିଜେ କରି ନିଜ ପୁରେ ମିଳି ।
ମାଜଣା ମଦନ ହୋଇ ସ୍ନାନ ବିଧି କଲେ
ପିତୃ ତର୍ପଣ ସାରିଣ ତିଳକ ଲାଗିହେଲେ ।
ଜାନକୀ ମାଜଣା ହୋଇଣ ସ୍ନାନ କଲେ
ନିତ୍ୟକର୍ମ ସାରିଣ ପାକ ବିଧି କଲେ ।
ଅମୃତ ଯୋଗାଡ଼ ଛଡ଼ ରସରେ ପୁଣ
ଶ୍ରୀରାମ ବିଜୟେ କଲେ ମଣୋହିରେ ପୁଣ ।
ଆଚମନ ସାରିଣ କୋଦଣ୍ଡ ଚାପଧାରୀ
ବିଡ଼ିଆ ଲାଗି ହୋଇଣ ପଲଙ୍କେ ପହୁଡ଼ି ।
ଜାନକୀ ଭୋଜନ କରି ହରଷ ହୋଇଲେ
ବିଡ଼ିଆ ଲାଗି ହୋଇଣ ପଲଙ୍କେ ବିଜେକଲେ ।
ମାୟାସୀତା ଆସିଣ ମଞ୍ଚାଳେ ପାଦ ଦୁଇ
ସ୍ୱର୍ଗପୁର କଥା ଯେ ହୋନ୍ତି କୁହା କୁହି ।
ସକଳ ଲୋକ ଯେ ଦାସୀକି ବୁଝାଇ
ପଲଙ୍କରେ ବିଜେକଲେ ଶରଦଚନ୍ଦ୍ର ମୁହିଁ ।
ପାର୍ବତୀ ବୋଇଲେ ଦେବ ସେଠାରୁ କିସହେଲା
ସେଠାରୁ ବୁଝାଇ କହିବ ମୋତେ ରାମଲୀଳା ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ମନଦେଇ
ଶ୍ରୀରାମ ଲୀଳା ତୋତେ କହିବା ବୁଝାଇ ।

ପଲଙ୍କରୁ ଉଠିଣ ଶ୍ରୀରାମଚନ୍ଦ୍ର ରାୟେ
ବାହାର ଅବକାଶ ଯାଇଣ ଦେବ ହୋଏ ।
ଜଗତୀ ପରେ ରାମ ସିଂହାସନେ ବସି
ଖଟଣି ନିଯୋଗମାନେ ଦେଖିବାକୁ ଆସି ।
ବଶିଷ୍ଠ ଜାବାଳି ବାମଦେବ ଯେ କଶ୍ୟପ
ସକଳ ଲୋକ ଆସି ହେଲେ ଉପଗତ ।
ସୁମନ୍ତ ସହିତେ ଅମାତ୍ୟ ଗଣମାନେ
ଗହଗହ ଶବଦ ଯେ ଶ୍ରୀରାମ ଦେହରଣେ ।
କେ ବୋଲନ୍ତି ମଣିମା ହେ ବିଜେ କରିଛନ୍ତି
ଭଟ୍ଟମିଶ୍ର ସଭାପଣ୍ଡା ଧର୍ମ ବିଚାରନ୍ତି ।
ସଇନି ପଟୁଆର ଯେ ଅଛନ୍ତି ସଭାତଳେ
ପଶି ନ ପାରନ୍ତି ଅଶ୍ୱ ଗର୍ଜନ ଗହଳେ ।
ଖୁଣ୍ଟିଆ ଗଡହାରୀ ଯେ ଆଡୋ ଆଡୋ କରେ
ଗାୟେଣୀମାନେ ଗୀତ ଗାଆନ୍ତି ପଞ୍ଚସ୍ୱରେ ।
ରତ୍ନ ସିଂହାସନରେ ବିଜୟେ ରାମ ରାହୁ
ନୀଳଗିରି ଶିଖରେ କି ବିଜେ ଜଗନ୍ନାଥ ପ୍ରଭୁ ।
କରେ କାଣ୍ଡ କୋଦଣ୍ଡ ବୀର ବେଶ ସାଜେ
ମୁକୁଟ କୁଣ୍ଡଳରେ ବିବିଧ ଦ୍ୱାର ଖଞ୍ଜେ ।
ଝୀନବାସ ପରିହରିଣ ଦୋଷଡ଼ା ଅମଳାଣ
ସର୍ବାଙ୍ଗରେ ଘେନିଛନ୍ତି ସୁଗନ୍ଧ ଚନ୍ଦନ ।
କପାଳରେ ଠିଆଚିତା ଚନ୍ଦନ ତିଳକ
ଫରଫର ନିଶ ଯେ କସ୍ତୁରି ବର୍ଣ୍ଣରେଖା ।
କୋଟିଏ କାମଦେବ ରୂପକୁ ନୋହେ ସରି
ଆଉ କିସ ଅବା ଯେ ପଟାନ୍ତର କରି ।
ପ୍ରସନ୍ନ ବଦନ ଯେ ବିକ୍ରମ ସିଂହଠାଣି
ବିଞ୍ଚଣୀ ଘେନି ଲକ୍ଷ୍ମଣ ପ୍ରବେଶ ହେଲେ ପୁଣି ।
ଭରତ, ଶତ୍ରୁଘନ ଯେ ଦୁଇଭାଇ ପୁଣ
ରଥଚଢ଼ି ଅଇଲେ ନନ୍ଦିଗ୍ରାମୁ ପୁଣ ।
ଶ୍ରୀରାମଙ୍କ ଛାମୁରେ ସେ ହେଲେ ପରବେଶ
ନମସ୍କାର କଲେ ଦୁଇଭାଇ ଯେ ବିଶେଷ ।
ଦୁଇଭାଇ ଢାଳିଲେ ଘେନିଣ ଚାମର
ସମ୍ପର୍ବରେ ବିଜୟ ଥାଏ ଶ୍ରୀରାମର ।
ଏମନ୍ତ ସମୟରେ ଅଗସ୍ତି ମହାଋଷି
ଶ୍ରୀରାମଙ୍କ ସିଂହଦ୍ୱାରେ ପ୍ରବେଶ ହେଲେ ଆସି ।
ଦେଖି ଦ୍ୱାରପାଳ ଯେ ଉଠିଲା ତଡତଡି
ବେନିକର ଧରିଣ ହୋଇଲା ଭଗତି ।

ମୁନି ବୋଇଲେ ତୁରେ ରାଜାଙ୍କୁ ଜଣାସି
ଦ୍ୱାରେ ତୁମ୍ଭର ଛନ୍ତି ସେ ଅଗସ୍ତି ମହାଋଷି ।
ଶୁଣିଣ ଦ୍ୱାରପାଳ ଗଲା ଅତିବେଗେ
ଯାଇଣ ଜଣାଇଲା ଶ୍ରୀରାମଙ୍କ ଆଗେ ।
ବୋଇଲେ ରଘୁନାଥ ହେ ବୀର ଚକ୍ରବର୍ତ୍ତୀ
ତୁମ୍ଭର ସିଂହଦ୍ୱାରେ ବିଜେ କଲେହେଁ ଅଗସ୍ତି ।
ଶୁଣିଣ ଶ୍ରୀରାମ ଆସନରୁ ଉଠି ବେଗେ
ଧୀରେ ଧୀରେ ଗମନ କରନ୍ତି ରାମଦେବେ ।
ପଛରେ ଗୋଡ଼ାଇ ଯେ ଅଛନ୍ତି ସର୍ବ ଜନ
ମନ୍ତ୍ରୀ ଅମାତ୍ୟ ଯେ ଆବର ଋଷିଗଣ ।
ସଙ୍ଗତେ ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ
ପାତ୍ରମନ୍ତ୍ରୀ ସହିତେ ସକଳ ଲୋକ ପୁଣ ।
ସିଂହଦ୍ୱାରେ ରାମ ପ୍ରବେଶ ହେଲେ ଯାଇଁ
ବଶିଷ୍ଠ ବାମଦେବ ସଙ୍ଗରେ ଛନ୍ତି ରହି ।
ଦେଖିଲେ ସିଂହ ଦ୍ୱାରେ ଅଗସ୍ତି ଉଭାହୋଇ
ଅଗସ୍ତି ପାଦତଳେ ଶ୍ରୀରାମ ବିନୟୀ ।
ଉଠି ବେନି କରଯୋଡି ଉଭା ଦାଶରଥି
ଗଉରବ କରି ଭିତରକୁ ଘେନି ଯାନ୍ତି ।
ରତ୍ନ ସିଂହାସନରେ ନେଇଣ ବସାଇଲେ
ଧୂପ ଦୀପ ଦେଇଣ ପୂଜାବିଧି କଲେ ।
ବେନିକର ଯୋଡିଣ ବୋଲନ୍ତି ରାବଣାରି
ସର୍ବ କୁଶଳଟିକି ଅଇଲ ତପଚାରୀ ।
ଅଗାଧ ଜଳ ଅଛିଟିକି ସନ୍ନିଧେ ତୁମ୍ଭର
ପୁଷ୍ପଫଳ ଫଳନ୍ତିଟି ସେହି ତରୁବର ।
କୁଶ ସମୀଧ ପାଅଟିକି ଲୋଡିଲାର ବେଳେ
ହାନି ଅପଚୟେ କାହିଁନା ବିପିନ ଭିତରେ ।
କନ୍ଦମୂଳ ପାଅଟିକି ପ୍ରାପତ ଅନୁବ୍ରତେ
ହବିପାନେ ଦେବତା ହୁଅନ୍ତି ଟିକି ସୁସ୍ଥେ ।
ସନ୍ଧ୍ୟା କରଟିକି ତୁମ୍ଭେ ବେଳ କାଳ ଜାଣି
ଯଥାକାଳେ ଦିଅଟିକି ଅତିଥିକି ପାଣି ।
ଅଗସ୍ତି ବୋଲନ୍ତି ରାମ ହେ ତୁମ୍ଭର ପ୍ରସାଦେ
କୁଶଳେ ବିପିନରେ ବଞ୍ଚୁଆମ୍ଭେ ହାଦେ ।
ତୁମ୍ଭେ କ୍ଷମ ଅଛଟିକି କହ ହେ ରଘୁପତି
ଅଧର୍ମ କଥାମାନ ନ ପଶେ ତୁମ୍ଭମତି ।
ରାମ ଧର୍ମ ତୁମ୍ଭେ କରଟିକି ରଘୁସାଇଁ
ଅମାତ୍ୟେ ଯେ ଲୋଡନ୍ତିନା ତୁମ୍ଭର ହିତପାଇଁ ।
ଛିଦ୍ର ନ କହିଣ ଅଲେଭୀଟି ହୋଇ
କାଳଙ୍କ ବିଚାରିଣ କଥା ଯେ ପୁଣ କହି ।
ଦେବତାମାନଙ୍କୁ ହୁଅଇଟି ଉପକାରୀ
ଏତେ ଗୁଣଥିଲା ଲୋକକୁ ମନ୍ତ୍ରୀ କରି ବରି ।
ଶତ୍ରୁକୁ ସର୍ବଦା କାଳେ ଥିବ ଲୟେ
କାର୍ଯ୍ୟ ଅକାର୍ଯ୍ୟ ତୁମ୍ଭେ ମଣିବ ଏକ ପ୍ରାୟେ ।
ଗୁହାରି ଶୁଣଟିକି ଅବଧାନ ହୋଇ
ବିଚାରିଲେ ପ୍ରସନ୍ନଟିକି ହୁଅ ହେ ରଘୁସାଇଁ ।
ଚତୁରଙ୍ଗ ବଳ ତୁମ୍ଭର ସଙ୍ଗରେ ଘେନିବ
ବରତନ ପଡିଦେଇ ଯତନେ ପାଳିବ ।
ମନ୍ତ୍ରସିଦ୍ଧ ବ୍ରାହ୍ମଣ ତପ କ୍ରିୟାରେ ଯିତା
ସେ ବିପ୍ର ପୂଜିବ ତୁମ୍ଭ ଇଷ୍ଟ ଯେ ଦେବତା ।
ବେଦାନ୍ତ ବ୍ରାହ୍ମଣଙ୍କୁ ନିତ୍ୟେ ଦାନ ଦେବ
ଦୁଃଖୀ ଦରିଦ୍ରଙ୍କୁ ରାମ ସୁଦୟା କରିଥିବ ।
ସମସ୍ତ ଦେବଙ୍କୁ ରାମ ଜାଣିବା ଅନୁମାନେ
ବହୁତ ବଚନ ତୁମ୍ଭେ ନ ଦେବ ପରସନ୍ନେ ।
ତୁମ୍ଭର ମନ୍ତଗୋଟି ନ ଜାଣିବେ ଆନ
ଯେଉଁ ପ୍ରାୟେ ବଶ ହେବେଟି ସର୍ବଜନ ।
ପଥଶ୍ରାନ୍ତ ଲୋକମାନେ ଆତ ଜାତ ହୋନ୍ତି
ବାଟରେ ଯେମନ୍ତେ ଯେ ପ୍ରାଣୀ ଦୁଃଖନପାବନ୍ତି ।
ବର୍ଷାକାଳେ ନଦୀରେ ନାବ ଭିଆଇବୁ
ଗ୍ରୀଷମ କାଳରେ ପାଣିପଣା ଛତ୍ର ଦେବୁ ।
ଗ୍ରୀଷ୍ମଋତୁରେ ତୋର ଥିବ ଦକ୍ଷିଣ ମେଲାଘର
ଅଗ୍ନିକି ଦାନ ଦେବ ହେ କରିଣ ବିଚାର ।
ତେବେ ସେ ପଥଶ୍ରାନ୍ତି ଲୋକେ ସୁସ୍ଥ ହେବେ
ସେମାନେ ତୋ ଶରୀରକୁ କଲ୍ୟାଣ ବାଞ୍ଛିବେ ।
ନିତିପ୍ରତି ଅନ୍ତଃପୁରେ ବୁଝିବୁ ପାପ ପୁଣ୍ୟ
ହିତ ଅଣହିତ ତୁମ୍ଭେ ଜାଣିବ ରଘୁରାଣ ।
ବୃଦ୍ଧା ଅବସ୍ଥାରେ ଥିବେ ଯେବେଣ ନରନାରୀ
ଅନ୍ତଃପୁରେ ତାହାଙ୍କୁ ଲୋଭ ଯେ ନ କରି ।
ସେକଥା ନ ଚିହ୍ନିଲେ ଆୟୁଷ ହେବ ହାନି
ଆହୁରି କଥାଏ ତୁମ୍ଭେ ଶୁଣ ରାମଚନ୍ଦ୍ର ପୁଣି ।
ଧନଠାରେ ଯେବେଣ ଜନ ମାୟା ସେହୁକରି
ଯେତେ ପ୍ରକାରେ ଅର୍ଜିଲେ ତାହାର ବଂଶମରି ।
ସେକଥାକୁ ବିଚାର କର ଦଶରଥ ସୁତ
ଆବର କଥାଏ ତୁମ୍ଭେ ଶୁଣ ହେ ରଘୁନାଥ ।

ମହା ଧାର୍ମିକ ପୁରୁଷ ତୁମ୍ଭେ ଜ୍ଞାନରେ ଗୋଚର
ଯୋଗ୍ୟତା ବ୍ରାହ୍ମଣଙ୍କୁ ତୁମ୍ଭେ କରିବ ସୂପକାର ।
ଭୃତ୍ୟ ଜନଙ୍କଠାରେ ନ ଦେବ ସଦବୁଦ୍ଧି
ବେଳକାଳ ଜାଣିଣ କରିବ କାର୍ଯ୍ୟ ସିଦ୍ଧି ।
ଯେବଣ ଜନଠାରେ ନଥିବ ଅଭିମାନ
ସେ ଜନ କାର୍ଯ୍ୟ କରି ନ ପାରେ ରଘୁନାନ ।
ଦଣ୍ଡିତ ଜନକୁ ଯେବେ ସୁଦୟା ହୃଦେ କରି
ତେବେ ସେ ଜ୍ଞାନ ଉଦୟ ହୁଅଇ ଚାପଧାରୀ ।
ପରଜା ପାଳିବ ଯେ ପୁତ୍ରଙ୍କ ସମକରି
ପ୍ରଜାମାନେ ସମସ୍ତେ ଅଟନ୍ତି ପଶୁପରି ।
ଶତ୍ରୁର ଛିଦ୍ର କଥା ଜାଣିବ ଦୂତ ପେଶି
ଚଞ୍ଚଳ ପ୍ରକୃତି ତୁମ୍ଭେ ବହିବ ଅହର୍ନିଶି ।
ଗୃହ ଚକ୍ର କରିବ ଈଶାନ ଭାଗ କରି
କୃଷି ଉପୁଜିବାକୁ ପୋଖରୀ ଥିବ ଖୋଳି ।
ମୁଁ କିସ ତିଆରିବି ନ ଜାଣ କି ତାହା
ଶୁଣି କରଯୋଡି କହନ୍ତି ରଘୁନାହା ।
ତୁମ୍ଭରି ଆଜ୍ଞା ପ୍ରମାଣେ ମୁହିଁ ଏଥି ଥିବି
ଯାହା ଆଜ୍ଞା କରିବ ମୁଁ ସେକଥା କହିବି ।
ତୁମ୍ଭେ ମୋର ପିତା ଯେ ଦଶରଥ ପୁଣ
ତୁମ୍ଭର ବଚନ ମୋତେ ଅଟଇ କାରଣ ।
ଯେଉଁ କଥାମାନ ତୁମ୍ଭେ କହିଲ ମୋତେ ଆସି
ଦଶରଥ କୋଳେ ଧରି କହିଣ ଥିଲେ ହସି ।
ଆରଦିନ ମୋତେ ଯେ କରନ୍ତେ ଅଭିଷେକ
ଦେବେ କୂଟକଲେ ତାଙ୍କର ଯେ ପାଶ ।
ମୋତେ ବନକୁ ପେଶିଣ ସେହି ଗଲେ ସ୍ୱର୍ଗ
ମୁହିଁ ବନବାସେ କଲି ଅନେକ କଷ୍ଟ ଭୋଗ ।
ଅନେକ ଅରିଷ୍ଟ ମୋତେ ବନରେ ଜାତହେଲା
ତୁମ୍ଭର ସନ୍ତୋଷୁ ମୋତେ ଅଯୋଧ୍ୟା ମିଳିଲା ।
ଶୁଣିକରି ପ୍ରସନ୍ନ ଯେ ହେଲେ କୁମ୍ଭ ସୁତ
ତୁମ୍ଭେ ସତ୍ୟବାଦୀ ହେ ବ୍ରାହ୍ମାଣ୍ଡର ନାଥ ।
ଧଇର୍ଯ୍ୟରେ ମେରୁ ଯେ ଗଭୀର ମହାଜଳ
ବୁଦ୍ଧିବନ୍ତରେ ସରି ନୋହିବେ ତିନିପୁର ।
ବଳବନ୍ତ ପଣରେ ତୋଠାରୁ ନାହିଁ ଜନ
ସତ୍ୟବନ୍ତ ପଣରେ ଅଟୁ ଯେ ଗୁରୁ ପୁଣ ।
ପିତାର ଆଜ୍ଞାରେ ତୁ ଯେ ବନବାସ କଲୁ
ଭାଇ ଭାରିଯା ଘେନିଣ ବନସ୍ତେ ଦିନନେଲୁ ।
ଅନେକ ପ୍ରତିଜ୍ଞା ରାମ ଅଟଇ ତୁମ୍ଭର
ଅନେକ ଅସୁର ତୁମ୍ଭେ ନାଶିଲ ରଘୁବୀର ।
ପୁତ୍ର ଭ୍ରାତ ସହିତେ ଚାରି ରାବଣ ନାଶକଲୁ
ତେଡ଼େ ଅସୁର ବଳକୁ ଦଳି ପକାଇଲୁ ।
କେଉଁ କଥା ଅପୂର୍ବ ତୋତେ ଅଟେ ଦାଶରଥି
କ୍ଷତ୍ରୀରେ ସମନାହିଁ ସପତ ଦ୍ୱୀପ ପୃଥ୍ୱୀ ।
ତୋହର ମହିମା ଦେବତାଙ୍କୁ ଅଗୋଚର
ବ୍ରହ୍ମାଣ୍ଡ ମଧରେ ତୁମ୍ଭେ ଅଟେ ହେ ଧନୁର୍ଦ୍ଧର ।
ତୁମ୍ଭେ ଶସ୍ତ୍ର ଧରିଲେ ଜଗତ ଜିଣି ପାର
ତ୍ରୈଲୋକ୍ୟର ନାଥ ତୁମ୍ଭେ ଅଟ ଧନୁର୍ଦ୍ଧର ।
ଚାରି ରାବଣ ଆଦି ଯେ ବଧିଲୁ ଅସୁର
ଇନ୍ଦ୍ରଜିତଠାରୁ କ୍ଷତ୍ରୀ ନୁହନ୍ତି କେହି ବଡ଼ ।
କାହାରି ହାତେ ବଧ ନୋହେ ଇନ୍ଦ୍ରଜିତ
ଦୈତ୍ୟଙ୍କ ମଧରେ ସେ ଜାଣେ ଛନ୍ଦ କୁଟ ।
ଲକ୍ଷ୍ମଣ ତାହାକୁ ଯେ ବଧିଲେ କେଉଁବାଣେ
ସେହି କଥା ଆଶ୍ଚର୍ଯ୍ୟ ଲାଗୁଛି ମୋତେ ଏଣେ ।
ଦେବଙ୍କ ଅଂଶଧରି ଦଇତ୍ୟେ ଜାତ ହୋନ୍ତି
ତିନିପୁରେ ପଶିଣ ସେ ଅନ୍ୟାୟ କରନ୍ତି ।
ତୁମ୍ଭର ବଳେ ଯେ ତାହାକୁ ହୋଏ ମାରି
ଆନର ବଳେ ସେ ଯେ ନୋହେ କ୍ଷୟକାରୀ ।
ଏବେ ତୁ ଶ୍ରୀରାମ ହେ ଦିଗବିଜେ କଲୁ
ସ୍ୱର୍ଗକୁ ଯାଇଣ ତୁ କିସ ଯେ ଦେଖିଲୁ ।
ଶ୍ରୀରାମ ବୋଇଲେ ମୁନି ଶୁଣ ମୋ ଉତ୍ତର
ସ୍ୱର୍ଗରେ ସଭା ନକଲେ କଶ୍ୟପ କୁମର ।
ସେ କଥା ନାରଦ ମୋତେ ଆସିଣ କହିଲେ
ଶଚୀଦେବୀ ପଚାରି ଇନ୍ଦ୍ରକୁ ଗାଳି ଦେଲେ ।
ନପାରୁ ସବୁଠାରେ ମତ୍ତଗର୍ବ ତୋର
ଦେଖିଲେ ଦେବେ ହାସ୍ୟ କରନ୍ତି ଅପାର ।
ଦେବରାଜା ହୋଇଣ ସହସ୍ରେ ଯୋନି ବହୁ
ମତ୍ତଗର୍ବ ପଣରେ ନିଶ୍ଚଳ ତୁ ଯେ ନୋହୁ ।
ଏବେ ନାରାୟଣ ଯେ ହେଲେ ଅବତାର
ସକଳ ଦେବେ କାର୍ଯ୍ୟ କଲେ ଯେ ଅପାର ।
ତୋତେ ବେଳେ ସେ ଦେବର ନୋହିଲା କାର୍ଯ୍ୟକରି
ଅସୁରଙ୍କ ପାଦତଳେ ଖଟୁ ଯାଇଁ କରି ।
ନାରାୟଣ ତୋତେ ସାନ ଅସୁର ଅଟେ ବଡ଼
ଦେବତାଙ୍କର ଉପରେ ତୋର କି ଅଧିକାର ।

ତୋରପଣ ଆଜିଠାରୁ ସରିଲା ସୁରରାୟେ
କୋଦଣ୍ଡ ଧରିଣ ରାମ ତୋତେ କରିବେକ୍ଷୟେ ।
ନାରାୟଣଙ୍କୁ ଦେଖିଲେ ମୋ ମନ ହେବ ସ୍ଥିର
କହିବି ଦୁଃଖ ମୋର ରାମଙ୍କ ଛାମୁର ।
ସେ କଥା ନାରଦ ଯେ କହିଲେ ମୋର ଆଗେ
ତେଣୁ କରି ସ୍ୱର୍ଗକୁ ମୁଁ ଗଲି ଉଦବେଗେ ।
ଭାଇ ଭାରିଯାଙ୍କୁ ମୁଁ ସଙ୍ଗରେ ଘେନିଗଲି
ଇନ୍ଦ୍ରଙ୍କ ପୁରେ ଯାଇଁ ପ୍ରବେଶ ହୋଇଲି ।
ମୁଁ ଯିବାରୁ ଅଇଲେ ଯେ ବେଦବର ପୁଣ
ସକଳ ଋଷିଗଣଙ୍କୁ ସଙ୍ଗରେ ଘେନିଣ ।
ସଦାଶିବ ଅଇଲେ ମହେଶଗଣ ଘେନି
ଦେବତାଏ ଅଇଲେ ସଙ୍ଗରେ ଘେନି ଧରଣୀ ।
ଅପସରୀ, କିନ୍ନରୀ, ନୃତ୍ୟକାରୀମାନେ
ସମସ୍ତେ ରୁଣ୍ଡ ହେଲେ ଇନ୍ଦ୍ରଙ୍କ ଭୁବନେ ।
ଚତୁର୍ମୁଖ ଯାଇଣ ଇନ୍ଦ୍ରଙ୍କୁ କହିଲେ
ତୋହର ପୁରେ ରାମ ଲକ୍ଷ୍ମଣ ବିଜେକଲେ ।
ଶୁଣିଣ ଦେବରାଜା ଅଇଲେ ବହନ
ବୋଇଲା ମୋର ମନ ଯେ ହୋଇଲା ସମ୍ପୂର୍ଣ୍ଣ ।
ଏତେ ବୋଲି ସକଳ ଦେବତା ଘେନିପୁଣ
ସୁଧର୍ମା ସଭାରେ ବିଜେ କଲେକ ବହନ ।
ସମସ୍ତେ ବିଜେକଲେ ହୋଇଲା ତହିଁ ସଭା
ତାଣ୍ଡବ ନୃତ୍ୟ ସେଠାରେ କଲେକ ମଘବା ।
ସବୁ ଦେବତାଙ୍କୁ ଆମ୍ଭେ ସେଠାରେ ସଙ୍ଖୋଳିଲୁଁ
ତାଣ୍ଡବ ନୃତ୍ୟ ସାରି ଆମ୍ଭେ ମେରୁଗିରି ଗଲୁଁ ।
ଗିରି ଦିଗ୍‌ବିଜୟେ କରି ଅଇଲୁଁ ଅଯୋଧ୍ୟା
ମୁନିଙ୍କି ଦେଖିବାରୁ ମୋହର ବଡ଼ ଶ୍ରଦ୍ଧା ।
ଏବେ ସଭା କରିବାକୁ ବସିଣ ଥିଲି ମୁହିଁ
ଶୁଭଯୋଗ ପ୍ରବେଶ ହୋଇଲେ ମୁନିହିଁ ।
ଶ୍ରୀରାମ ବଚନ ଶୁଣିଣ ଅଗସ୍ତି ହରଷ
ବୋଇଲେ ଶ୍ରୀରାମ ତୁମ୍ଭେ ବିରାଟ ପୁରୁଷ ।
ଏହା ଶୁଣିଣ ପାର୍ବନ୍ତି ବୋଲନ୍ତି ବଚନ
କଥାଏ ପଚାରିବି କହ ହେ ଈଶାନ ।
ଅଗସ୍ତି ଆସିଣ ଯେ ଶ୍ରୀରାମେ ତିଆରି
ବୋଲେ ଯୁବାସ୍ତିରୀ ବେଳେ ନହଟିବୁ ବୃଦ୍ଧାସ୍ତିରୀ ।
ଦାସୀପଣ କରି ଯେବେ ଖଟିବେ ବୃଦ୍ଧାନାରୀ
ଶୋଭାପଣେ ସୁନ୍ଦର ସେ ଦେବକନ୍ୟା ପରି ।
ତାକୁ ମନ ନ କରିବୁ କୋଦଣ୍ଡ ଚାପଧାରୀ
ବୟସ ଅଧିକ ଲୋକ ମାତାସଙ୍ଗେ ସରି ।
ଏମନ୍ତ ବଚନ ଯେ ଅଗସ୍ତି ଋଷି କହି
ତାହାଙ୍କୁ ଉତ୍ତର କିସ ଦେଲେ ରଘୁସାଇଁ ।
ଈଶ୍ୱର ବୋଇଲେ ଯେ ଋଷି କହେ ଯାହା
ତହିଁକି ଉତ୍ତର ଦେଲେ ରଘୁକୁଳ ନାହା ।
ବୋଇଲେ ବ୍ରହ୍ମଋଷି ସେ କଥା ମୋର ନାହିଁ
ଚାରିଭାଇ ଏକବ୍ରତି ଅଟହିଁ ଏକଦେହୀ ।
ମୋର ବିଭାକାଳେ ସଥ୍ୟ କଲା ଏ ଜାନକୀ
ତୁମ୍ଭସଙ୍ଗ ମୋର ଅଙ୍ଗ ଏକଇଁ ଅଟେଟି ।
ନ ଛୁଇଁବ ଆନ ଅଙ୍ଗ କରିଥାଅ ସତ୍ୟ
ବହୁତ କାଳରୁ ମୁଁ ଯେ ଶୃଙ୍ଗାରେ ହେଲି ଭେଟ ।
ବୈକୁଣ୍ଠ ପୁରେ ତୁମ୍ଭେ ଶୋଇଲ ନିଶ୍ଚନ୍ତେଣ
ଶତତିରିଶି ଯୁଗ ଯେ ବହିଗଲା ପୁଣ ।
ମୋର ମନ ସୁରତୀରେ ବଳିଣ ଲୋଭ ହୋଏ
ଏତେ କହି ଜାନକୀ ମୋତେ ସତ୍ୟ ଯେ କରାଏ ।
ସେ ସକାଶୁଁ ପତିବ୍ରତା ଏକସ୍ତିରୀ ମୋର
ଜାନକୀଠାରୁ ଆନ ନ ରୁଚେ ମନର ।
ତେଣୁ କରି ଭାଇଚାରି ଏକବ୍ରତୀ ହେଲୁ
ପରକୀୟା ସମ୍ପଦ ଯେ ଏ ଜନ୍ମେ ଛାଡ଼ିଲୁଁ ।
ଶୁଣିଣ ଅଗସ୍ତି ମୁନି ପରମ ତୋଷ ହେଲେ
ଗଉରୀ ବୋଲେ ତୁମ୍ଭେ କଥା ଯେ ଶୁଣଭଲେ ।
ସେଠାରୁ ଅଗସ୍ତି ଋଷି କିସ କଲେ ପୁଣ
ସେକଥା ଗୋଟା ହେ ଦେବ କହ ମୋଆଗେଣ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ମନ ଦେଇ
ଅଗସ୍ତି ଋଷିଙ୍କି ରାମ ପଚାରନ୍ତି ତହିଁ ।
ବୋଲନ୍ତି ହେ ମୁନିବର ଅନୁଗ୍ରହ କର
କଥାଏ ପୁଚ୍ଛିବି ମୋତେ କହ ହେ ଋଷିବର ।
ଇନ୍ଦ୍ରଜିତ ଅସୁର ଯେ ହୋଇଲାକ ଜାତ
ଇନ୍ଦ୍ରକୁ କେମନ୍ତେ ସେ ଜିଣିଲା ଦଇତ୍ୟ ।
ଅଗସ୍ତି ବୋଇଲେ ରାମ ଶୁଣ ଏକମନେ
ରାବଣ ଯେ ଉତପତି ଯେବଣ ବିଧାନେ ।
ଅନେକ ଯୁଗ ଯାଇ ବ୍ରହ୍ମ ସତ୍ୟଯୁଗ ହେଲା
ସେ ଯୁଗରେ ବ୍ରହ୍ମା ଯେ ମୁନିଙ୍କି ଜାତକଲା ।

ବାରକୋଟି ମୁନି ଜାତ ହେଲେ ସେ ଯୁଗରେ
ମନରୁ ଜାତ କଲେ ଚତୁର୍ମୁଖ ବେଦବରେ ।
ଚାରିକୋଟି ସ୍ୱର୍ଗପୁରେ ରହିଲେ ଜ୍ୟେଷ୍ଠମୁନି
ଦେବତାଙ୍କ ସଙ୍ଗରେ ସମାନ ହେଲେ ପୁଣି ।
ଦେବରଷି ହୋଇଲେ ଯେ ଚାରିକୋଟି ଜାଣ
ମର୍ତ୍ତ୍ୟପୁରେ ଚାରିକୋଟି ମିଳିଲେ ଆସି ପୁଣ ।
ସେ ଋଷିମାନେ ବୋଲାଏ ବ୍ରହ୍ମଋଷି ପୁଣି ।
ଲକ୍ଷେ ରାଜା ଜାତକଲେ ଅଠର ଲକ୍ଷପୁତ୍ର
ସେ ପୁତ୍ରେ ସାତ ଦ୍ୱୀପରେ ହୋଇଲେ ସମ୍ଭୃତ ।
ସାତ ଦ୍ୱୀପରେ ହେଲେ ଅଠରଲକ୍ଷ ମହୀପାଳ
ବାଣ୍ଟିକରି ରାଜ୍ୟ ସେ ପାଳିଲେ ଯେ ଯାହାର ।
କଶ୍ୟପ ଋଷିଙ୍କଠାରୁ ଦେବତା ଜାତ ହେଲେ
ଅଦିତୀଙ୍କ ଗର୍ଭରୁ ସେ ସ୍ୱୟଂମ୍ଭୁବ ହେଲେ ।
ହେତୀଠାରୁ ଜାତ ହେଲେ ଅସୁରବଳ ପୁଣ
ଦେବ ଅସୁରଙ୍କର ଯେ ହେଲା ଭିନ୍ନ ଭିନ୍ନ ।
କଳହ କଲେ ଯେ ବାସୁଦେବ ତାଙ୍କୁ ମାରି
ଥୋକେ ଅସୁର ପଳାଇ ହିରଣ୍ୟ ଗର୍ଭଧରି ।
ଅନେକ ରୂପରେ ପୁଣି ଅସୁର ଜାତ ହେଲେ
ଦେବଙ୍କୁ ଘଉଡ଼ି ଦେଇ ସ୍ୱର୍ଗରେ ରହିଲେ ।
ଦେବତାଏ ଶରଣ ଗଲେ ଯେ ନାରାୟଣେ
ତାଙ୍କର ବିକଳ ଦେଖି ଦେବ ନାରାୟଣେ ।
କୋଦଣ୍ଡ ଧରିଣ ତାଙ୍କୁ ଅନେକ ନାଶକଲେ
ଅବତାର ହୋଇଣ ଅନେକ ମାଇଲେ ।
ଶଙ୍ଖାସୁର ଶମ୍ଭୁ ଯେ ନିଶମ୍ଭୁ ମୈଷାସୁର
ହିରଣ୍ୟ କଶ୍ୟପୁ ବୈଲୋଚନ ନାମେ ବୀର ।
ଜଳନ୍ଧର ତ୍ରିପୁରା ଯେ ବୃଧାଇଁ ଅସୁର
ବଳିରାଜା ସହିତେ ଶୁଣ ହେ ରଘୁବୀର ।
ଏଡ଼େ ଏଡ଼େ ଅସୁରେ ଉପଦ୍ରବ କଲେ
ଦେବ ନାରାୟଣ ଶଙ୍କର ନାଶକଲେ ।
ବଜ୍ର ଧର ଅସୁର ଯେ ପୁଣି କଲେ ନାଶ
ଏମାନେ ମଲେ ଭାଗିଲା ଅସୁରଙ୍କର ଦର୍ପ ।
ପଉଲସ୍ତି ବୋଲି ବ୍ରହ୍ମାଙ୍କର ସୁତ ପୁଣି
ସାବିତ୍ରୀର ନନ୍ଦନ ସେ ଶୁଣ ହେ ରଘୁମଣି ।
ତ୍ରେତୟା ଯୁଗରେ ସେ ଅନେକ ତପକଲେ
ତପିଙ୍କର ମଧ୍ୟରେ ଗୌତମ ବୋଲାଇଲେ ।

ଏକଦିନେ ଋଷି ଯେ ମେରୁ ପୃଷ୍ଠରେ ମିଳି
ତହିଁରେ ଭେଟିଲେ ସେ ତୀରଣ ତପଶାଳୀ ।
ପରଂବ୍ରହ୍ମ ସ୍ୱରୂପରେ ବସିଣଛନ୍ତି ଋଷି
ଦେଖିଣ ବ୍ରହ୍ମାଙ୍କ ନନ୍ଦନ ପରଶଂସି ।
ମନରେ ବିଚାରିଲେ ସାଧୁ ଏ ତପଚାରୀ
ଏ ମୁନି ଭଜିବାକୁ ସୁଖେ ଯେବେ ପାରି ।
ଏହାଙ୍କ ସନ୍ନିଧେ ମୁଁ ଯେ ଅନୁବ୍ରତେ ଥିବି
ଏକବ୍ରତି ସ୍ଥାନେ ମୁଁ ଯେ ତପ ଆରମ୍ଭିବି ।
ଏସନେକ ବିଚାରି ଯେ ରହିଲେ ସେହିସ୍ଥାନେ
ଅନେକ ତପକଲେ ବ୍ରହ୍ମାଙ୍କ ନନ୍ଦନେ ।
ସେହି ମେରୁ ଶିଖରେ ଅଛନ୍ତି ସୁରାସୁରୀ
ବିବିଧ ସ୍ୱାଦଫଳ ପଡ଼େ ପାଚିକରି ।
ସେହି ଭୁବନରେ ଥିଲା ଏକ କନ୍ୟା ଆସି
ଆବର ଦିଶେ ତା ଦେହ କିନ୍ନରୀ ଶୁଭ୍ରକେଶୀ ।
ରାଜକନ୍ୟା ମୁନିକନ୍ୟା ସମସ୍ତେ ତହିଁ ମିଳି
ଋଷିଙ୍କର ତପସ୍ଥାନେ ଯାଇଁଣ କଲେ କେଳି ।
ଯନ୍ତର ଶବଦରେ ଉଚ୍ଚାଟ କଲେ ଯହୁଁ
କୋପଭରେ ପଉଲସ୍ତି ଶାପ ଦେଲେ ତହୁଁ ।
ବୋଇଲେ ସୁନ୍ଦରୀ ଗୋ ମତ୍ତଗର୍ବରେ ମତ୍ତ
ତପୀ ତପ ଭାଙ୍ଗିବାକୁ ହୋଇଛ ଉପଗତ ।
ଆଜ ମୋର ଛାମୁକୁ ଆସିବ ଯେଉଁନାରୀ
ବିନା ଶୃଙ୍ଗାରେ ପୁତ୍ର ଉପୁଜେ ତାହାରି ।
ହେଉ ଗର୍ଭବାସ ସେ ଶୃଙ୍ଗାର ନ କଲେ
ଦୂଷିତ ହୋଇବଟି ଏଘାନ୍ତି ଅଇଲେ ।
ଶୁଣିଣ ସୁନ୍ଦରୀମାନେ ପଳାଏ ତହୁଁ ହସି
ଆବର ବେଳେ ସେମାନେ ନଗଲେକ ତ୍ରାସି ।
ସେଦିନ ତୀରଣରାଜାର ତନୟି ନଥିଲେ
ମୁନି ଶାପ ଅଛି ବୋଲି ଜାଣି ନ ପାରିଲେ ।
ଅଜ୍ଞାନରେ ସୁନ୍ଦରୀ ଅଇଲା କେଳିକରି
ଦେଖିଲା ଯୋଗଧ୍ୟାନରେ ବିଜୟେ ତପଚାରୀ ।
ସୁରଧ୍ୱନୀ ଶୁଣିଣ କାମରେ ବଶ ହେଲା
ମଦନ ଉନ୍ମତ୍ତରେ ଶରୀର ଆମଞ୍ଜିଲା ।
ମୁନିଙ୍କର ଶାପରେ ସେ ହେଲେ ଗର୍ଭବାସ
ଛନ୍ନ ଛନ୍ଦ ମନ ତାର ଖର ଯେ ନିଃଶ୍ୱାସ ।
ପାଣ୍ଡୁର ବର୍ଣ୍ଣ ଅଙ୍ଗ ଯେ ଦିଶିଲା ତାର ଯହୁଁ
ସୁନ୍ଦରୀ ସୁନ୍ଦର ଚେଷ୍ଟା ନ ରହିଲା ତହୁଁ ।

ମନରେ ବିଚାରିଲା ହୋଇଲି ମୁଁ ଦୋଷୀ
ଅଦଭୁତେ ଗର୍ଭବାସ ମୁଁ ହୋଇଲି ଆସି ।
କିସ ବୋଲି କହିବି ମୁଁ ସଁଖିଙ୍କର ଆଗେ
ମାତା ପିତା ଶୁଣିଲେ ହେବେ ବଇରାଗେ ।
ଏତେଭାଳି ସୁନ୍ଦରୀ ଯେ ଆଶ୍ରମକୁ ଗଲା
ମାତା ପିତାଭ୍‌କ ଛାମୁରେ ଯାଇଁ ଜଣାଇଲା ।
ଅକାରଣେ ଦେଖ ଏବେ ହେଲି ଗର୍ଭବାସ
ଶୁଣି ତୀରଣ ରାଜା ବିମୁଖ କଲା ଚିତ୍ତ ।
ବୋଇଲେ ଏକଥା ମୋତେ ଲାଗୁଛି ବିପରୀତ
କେବେହେଁ ଶୁଣାନାହିଁ ଏମନ୍ତ ଯେ କୃତ୍ୟ ।
କନ୍ୟା ବୋଇଲା ପିତା ମୁଁ ପୂର୍ବଜରେ ଅଭାଗୀ
ଏତେକହି ପିତାର ଚରଣେ ପଡ଼େ ବେଗି ।
ଅତି ଆକୁଳେ ବୋଲଇ ଶୁଣ ହେ ପିଅର
ଅଦଭୁତେ ଗର୍ଭବାସ ହୋଇଲା ମୋହର ।
ପଉଲସ୍ତି ଆଶ୍ରମକୁ ମୁଁ ସଖୀଙ୍କି ଦେଖିଗଲି
କେହି ନାହାନ୍ତି ମୁଁ ପଉଲସ୍ତି ଦେଖିଲି ।
ଧ୍ୟାନରେ ବସିଛନ୍ତି ପୌଲସ୍ତି ବ୍ରହ୍ମଋଷି
ତାଙ୍କୁ ଦେଖି ମୁହିଁ ଡରି ବାହୁଡ଼ିଲି ଆସି ।
ଆନ ବିକାରମାନ ହେ ତାତ ନାହିଁ କିଛି
କିମ୍ପା ଦେହ ମୋହର ଏମନ୍ତ ଦିଶୁଅଛି ।
ଶୁଣିଣ ତୀରଣ ରାଜା ବସିଲାକ ଧ୍ୟାନେ
ଯୋଗବଳରେ କଥା ଜାଣିଲେ ଅନୁମାନେ ।
ପୌଲସ୍ତିଙ୍କର ଶାପ ଏ ଅଟଇ ନିଷ୍ଚୟେ
ଏସନ ବିଚାର ରାଜା ଦୋହୀତା ଘେନିଯାଏ ।
ପୌଲସ୍ତି ସନ୍ନିଧେ ମିଳି ତୀରଣ ରାଜନ
ଦେଖି କରି ହସିଲେ ଯେ ବ୍ରହ୍ମାଙ୍କ ନନ୍ଦନ ।
ତୀରଣ ରାଜା ବୋଇଲେ ଶୁଣ ହେ ମହାଋଷି
ମୋହର ନନ୍ଦିନୀ ଏ ରୂପେ ଚାରୁହଂସୀ ।
ବିଭା ହୁଅ ମୁନି ହେ କନ୍ୟାଦାନ ଘେନ ମୋର
ଏ ଘୋର ବନସ୍ତେ ସାହା ହେଉ କନ୍ୟାମୋର ।
ତୁମ୍ଭଙ୍କୁ ହେ ମୁନି ମୁହିଁ ସମର୍ପିଲି ଚିତ୍ତେ
ମୋହର ଦୁଲଣୀ ଏ ସେବାକରୁ ତୋତେ ।
ତୁମ୍ଭରି ଶାପରେ ଏ ହେଲା ଗର୍ଭବାସ
ଆନକୁ ପ୍ରଦାନକଲେ ବାଜିବେ ମୋତେ ଦୋଷ ।
ଶାପ ଦେଲେ ବୋଲି କରି ନ ଜାଣଇଁ ବାଳୀ
ସଖୀଙ୍କି ଲୋଡ଼ିଣ ସେ ଗଲା ଖେଳ ଖେଳି ।

ତୁମ୍ଭେ ଏହାର ମୁନି ହେ ଦୋଷ ନ ଘେନିବ
ଅତ୍ୟନ୍ତ ସୁନ୍ଦରୀ ଏ ଯେ ରୂପରେ ପରଂବ୍ରହ୍ମ ।
ଏକଥା ଶୁଣିଣ ମୁନି ସନମତ କଲେ
ଘେନିବି କନ୍ୟାଦାନ ବୋଲିଣ ବୋଇଲେ ।
ତୀରଣ ମହାରାଜା ଶଙ୍ଖରେ ପାଣି ଘେନି
ବ୍ରହ୍ମାଙ୍କ ପୁତ୍ର ହସ୍ତେ ନିଉଡ଼ିଲେ ଆଣି ।
କନ୍ୟାଦାନ ଦେଇଣ ତୀରଣ ରାଜା ଗଲା
ପଉଲସ୍ତିଙ୍କ ସନ୍ନିଧେ ତରୁଣୀ ରହିଲା ।
ପିତାଙ୍କର ଆଜ୍ଞାରେ ସେ ଋଷିଙ୍କି ସେବା କରି
ପ୍ରକୃତି ଜାଣିଣ ସେ ଋଷିଙ୍କ ମନ ହରି ।
ସେବାକରି ମନାଇଲା ସେ ଋଷିଙ୍କର ତୁଲେ
ଅତ୍ୟନ୍ତ ଧାର୍ମିକ ପୁତ୍ର ଜନ୍ମ ଯେ ହୋଇଲେ ।
ବଳରେ ବଳିଷ୍ଠ ଯେ ସେ କନ୍ୟା କୁମର
କନ୍ଦର୍ପ ସମାନେ ରୂପ ଅଟଇ ତାହାର ।
ଏ ପୁତ୍ର ତୋହର ଉଦ୍ଧରିବ କୁଳରାଶି
ଏମନ୍ତ ବଚନ ଯେ ବୋଲନ୍ତି ବ୍ରହ୍ମଋଷି ।
ଏଥୁ ଅନନ୍ତରେ ଯେ କେତେକ ସମୟରେ
ତୀରଣ ରାଜ କୁମାରୀ ପୁତ୍ର ଜାତ କରେ ।
ପ୍ରତ୍ୟକ୍ଷରେ ପୌଲସ୍ତିର ଅଟଇ ପଟାନ୍ତର
ବିଶ୍ରବା ନାମଗୋଟି ଦେଲେ ସେ କୁମରର ।
ଦିନୁଦିନ ବଳା ଯେ ଚନ୍ଦ୍ରଙ୍କ ପ୍ରାୟ ବଢ଼ି
ସୁସ୍ୱର ଧ୍ୱନି କରିଣ ଚତୁର୍ବେଦି ପଢ଼ି ।
ପିତାଙ୍କର ନୀତି ସେ ଦେଖିଣ ତପକଲା
ଅଳପ ସମୟେ ବହୁ ଧର୍ମ ଅରଜିଲା ।
ଭରଦ୍ୱାଜ ମୁନି ଯେ ଦେଖିଲେ ତାର ନୀତି
ତାକୁ ବିଭା କଲେ ଯେ ଆପଣା ଦୋହିତୀ ।
ହର ଗଉରୀ ଜାଣିଣ ଦିଶନ୍ତି ବେନିଜନ
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ହେ ରଘୁନାନ ।
ଭରଦ୍ୱାଜ ଋଷିଙ୍କର ଦୁହୀତାର ସଙ୍ଗେ
ବିଶ୍ରବା ମହାମୁନି ରମିଲେ ନାନାରଙ୍ଗେ ।
କାଳେ ପୁତ୍ର ତାଙ୍କର ହୋଇଲାକ ଜାତ
ରୂପ ଗୁଣରେ ସୁନ୍ଦର ବିଶ୍ରବାର ସୁତ ।
ପିତା ମାତା ଦେଖିକରି ଆନନ୍ଦ ହୋଇଲେ
ବଇଶ୍ରବଣ ବୋଲିଣ ପୁତ୍ରନାମ ଦେଲେ ।
ସେ ପୁତ୍ର ଶତେବରଷ ବସିଣ ତପକଲା
ଜଳ ପବନ ଭକ୍ଷିଣ କଷ୍ଟରେ ଦିନନେଲା ।

ଅତି କଷ୍ଟ ଦେଖିଣ ସୁରଗଣ ଘେନି
ପ୍ରସନ୍ନ ହୋଇଣ ବର ଯାଚିଲେ ପଦ୍ମଯୋନି।
କୁମର ବୋଲେ ମୁହିଁ ଦିଗପାଳ ହେବି
ଦେବତାଙ୍କ ତନୁଧରି ମୁଁ ଯୁଗେ ଯୁଗେ ଥିବି।
ଶୁଣିଣ ପିତାମହ ଯେ ହୋଇଲେ ତୃପତି
ପ୍ରସନ୍ନରେ ବର ଯେ ଦେଲେ କୁଶକେତୀ।
ବୋଇଲେ ବେଦଶ୍ରବଣ ତୁ ହୁଅରେ ଧନପତି
ହୋଇଲୁ ଦେବତା ତୁରେ ତପକର ଶାନ୍ତି।
ଶଙ୍କର ମରୁତଙ୍କ ମଧରେ ସ୍ଥାନ ପାସି
ସେ ସ୍ଥାନେ ଆଶ୍ରମକର ବିଶ୍ରବାର ବସି।
ପୁଷ୍ପକ ଯାନ ଯେ ଶୁଦ୍ଧ ସ୍ଥାନ ଜାଣି
ଏଥିରେ ବିଜେ କର ତୁ ସପତ ନିଧି ଘେନି।
କୁବେରର ସମ୍ପଦ ତୋତେ ମୁହିଁ ଦେଲି
ତ୍ରୈଲୋକ୍ୟ ବ୍ରହ୍ମାଣ୍ଡ ମୁଁ ତୋତେ ସମର୍ପିଲି।
ପୁଷ୍ପକ ଯାନରେ ତୁ ବେଗେ ବିଜେ କର
ମୋହର ଦେଖୁ ଦେଖୁ ତୁ ଦେବତା ତନୁଧର।
ବ୍ରହ୍ମାଣ୍ଡର ବର ଯାଇ ବଇଶ୍ରବଣ ଋଷି
ପୁଷ୍ପକ ଯାନପରେ ବେଗ୍ରରେ ସେ ବସି।
ଦ୍ୱିତି ଇନ୍ଦ୍ର ପ୍ରାୟେ ରୂପ ଦିଶିଲେକ ଋଷି
ଦେବତନୁ ଘେନିଣ ଦେବତା ପ୍ରକାଶି।
ବର ଦେଇ ବ୍ରହ୍ମା ନିଜପୁରେ ଗଲେ
ଅଗସ୍ତି କହିବାରୁ ଶ୍ରୀରାମ ଶୁଣିଲେ।
ସେହିକାଳେ ସ୍ୱର୍ଗରୁ ଯେ ପୁଷ୍ପ ବୃଷ୍ଟିମାନ
କୁବେର ଆରୋହିଲା ପୁଷ୍ପକ ନାମେ ଯାନ।
ନିଜ ମାତା ପିତାଙ୍କର ଛାମୁରେ ମିଳେ ଯାଇଁ
ନମସ୍କାର କଲେ ସେ ବିମାନୁ ଓହ୍ଲାଇ।
ଦେଖିଣ ପରମ ତୋଷ ହେଲେ ବିଶ୍ରବା ଋଷି
ପୁତ୍ରକୁ କୋଳରେ ଘେନିଣ ମୁନି ବସି।
ବଇଶ୍ରବଣ ବୋଇଲେ ମୁଁ କୁବେର ହୋଇଲି
ବେଦବର ଠାବରୁ ମୁଁ ଏ ବର ପାଇଲି।
ଭୋ ପିତାମହ ତୁମ୍ଭେ ଶୁଣ ହେ ମୋର ବୋଲ
ରହିବାକୁ ଆଶ୍ରମ ଦିଅ ହେ ମୋତେ ଭଲ।
ସେ ସ୍ଥାନ ହୋଇଥିବ ଶଉଚ ନିର୍ମଳ
ଲୋଡ଼ିଲେ ଅବସନ୍ତେ ମିଳିବ ଫଳ ମୂଳ।
ଥିବା ଲୋକମାନଙ୍କୁ ନୋହିବ ସେଥି ପୀଡ଼ା
ନିଃଶଙ୍କା ହୋଇଣ ମୁଁ ଯେ କରୁଥିବି କ୍ରୀଡ଼ା।
ସେ ପୁରେ ଉପୁଜିଲେ ହରଷ ହେବ ମନ
ଅବିଚ୍ଛିନ୍ନେ ହେଉଥିବ ମଙ୍ଗଳ ବିଧାନ।
ଲକ୍ଷ୍ମୀଙ୍କର ଆକୃତି ଯେ ହେବେ ନରନାରୀ
ତେଜମୟ ପ୍ରଭା ଯେ ଦିଶିବ ସଭିଙ୍କରି।
ରୋଗ, ଶୋକ, ପୀଡ଼ା ନଥିବ ସେଥି ଭଲେ
ଅନେକ ଧର୍ମ ଲଭିବ କିଞ୍ଚିତ ପୁଣ୍ୟକଲେ।
ଏହି ପ୍ରାୟ ସ୍ଥାନଟି ତୁମ୍ଭେ ମୋତେ ଦିଅ
ଶୁଣି ଧ୍ୟାନରେ ବସିଲେ ପୌଲସ୍ତିଙ୍କ ପୁଅ।
ତପବଳରେ ଜାଣିଣ ଛାଡ଼ିଲେ ସମାଧି
ପୁତ୍ର ମୁଖ ଚାହିଁଣ ବୋଲନ୍ତି ତପୋନିଧି।
ଶୁଣରେ ବଇଶ୍ରବଣ ପୁଚ୍ଛା ତୁ କଲୁ ଯାହା
ଦିବ୍ୟ ପୁରେକ ଅଛିରେ ମୁଁ ଠାବ କଲି ତାହା।
ଲବଣ ସିନ୍ଧୁ ଭିତରେ ଲଙ୍କାର ନାମେ ପୁରୀ
ଗଢ଼ିଲା ବିଶ୍ୱକର୍ମା ଅତି ଯତ୍ନ କରି।
ଅମରାବତୀ ନାମରେ ଅଟେ ସେହୁ ପୁର
ତହିଁ ଯାଇ ବିଶ୍ରାମ କରରେ କୁମର।
ସେ ପୁରରେ ଥିଲେ ସକଳ ଶ୍ରେଷ୍ଠ ହୋଇ
ସପତ ଦ୍ୱୀପକୁ ଯେ ଅଟେ ସାର ସେହି।
ଯାଅ ପୁତ୍ର କଲ୍ୟାଣରେ ହେଉ ବଳା ତୋତେ
ଦେଲି ମୁଁ ପୁଣ୍ୟ ସ୍ଥାନରେ ମାଗିଲୁ ଯେ ମୋତେ।
ପୂର୍ବରେ ସେ ପୁରରେ ଦାନବେ ରହିଥିଲେ
ଶ୍ରୀହରି ଭୟେ ଛାଡ଼ି ପାତାଳେ ପଶିଲେ।
ଜମ୍ବୁଦ୍ୱୀପକୁ ନିକଟ ଟଇ ହାଦେ ସେହି
ଯାଅ ତୁ ସେ ପୁରରେ କଲ୍ୟାଣ ତୋତେ ହୋଇ।
ବିଶ୍ରବାଙ୍କ ମୁଖରୁ ଏମନ୍ତ ବାଣୀ ଶୁଣି
ସନ୍ତୋଷ ହୋଇଲେ ବଇଶ୍ରବଣ ଋଷି ପୁଣି।
ପିତାର ଆଜ୍ଞା ପାଇ ଅନୁକୂଳ କରି
ପ୍ରବେଶ ଧନପତି ଲଙ୍କାଗଡ଼ ପୁରୀ।
ଦେଖିଲାକ ନଗ୍ର ଯେ ଅତିହିଁ ସୁସଜ୍ଜିତ
ଚଉକତିରେ ତାର ବାରାନିଧି ବେଢ଼ିଛି ତ।
ସେ ଗଡ଼କୁ ପାଚେରୀ ପରାୟେ ଅଛି ଘେରି
ସେ ପୁରର ଉପମା କହିଲେ ନ ସରି।
ସୁବର୍ଣ୍ଣରେ ଟୁଙ୍ଗିଘର ମର୍କତ ମେଖଳା
ଲଙ୍କା ଗଡ଼କୁ ତେସନେ ଦିଶେ ଜଳଘେରା।
ପୁଷ୍ପକ ଯାନ ଯେ ଆରୋହୀ ଧନପତି
ଊର୍ଦ୍ଧ୍ୱରେ ଥାଇଣ ଦେଖେ ଲଙ୍କାର ଆକୃତି।

ପାର୍ବତୀ ବୋଇଲେ ଦେବ କିମ୍ଭୁତ କଥା ଏହି
ବଇଶ୍ରବଣଙ୍କୁ ଯେବେ ବିଧାତା ବର ଦେଇ ।
ଗଉରୀ କହନ୍ତି କଥା କେମନ୍ତ ହୋଇଲା
ପୁଣ କିସ ଅଗସ୍ତି ରାମରେ କହିଲା ।
ତ୍ରିଲୋଚନ ବୋଇଲେ ତୁମ୍ଭେ ଶୁଣ ମନଦେଇ
ଶ୍ରୀରାମଙ୍କ ଆଗରେ ଯେ ଅଗସ୍ତି କହଇ ।
ଅଗସ୍ତିଙ୍କ ମୁଖରୁ ଏମନ୍ତ ବାଣୀ ଶୁଣି
ବେନିକର ଯୋଡ଼ି ଯେ ବୋଲନ୍ତି ରଘୁମଣି ।
ଭୋ ମୁନି ଯାହା ତୁମ୍ଭେ କହିଲଟି ବାଣୀ
ପୂର୍ବରେ ଏକଥା ମୁହିଁତ ଥିଲି ଶୁଣି ।
ଶୁଣିଣ ପାର୍ବତୀ ଯେ ଯୋଡ଼ିଲେ ବେନିକର
କୁମ୍ଭରଷି ସୁତ କହେ କେବଣ ପ୍ରକାର ।
ସେଠାରୁ ଅଗସ୍ତି ରାମଙ୍କୁ କିସ କହି
ସେ କଥା ଦେବ ମୋତେ କହ ହେ ବୁଝାଇ ।
ଈଶ୍ୱର କହିଲେ ଦେବ ଶୁଣ ମନଦେଇ
ଦୈତ୍ୟଙ୍କ ବଂଶାନୁଚରିତ ଅଗସ୍ତି ମୁନିକହି ।
ଶୁଣି କରପତ୍ର ଯୋଡ଼ି କହିଲେ ରଘୁମଣି
ଏଥୁ ଅନନ୍ତରେ କଥା କହ ମୁନି ପୁଣି ।
ଲଙ୍କାକୁ ତେଜିଣ ଦଇତ୍ୟଗଣ ଗଲେ
ତହୁଁ ବାସୁଦେବ କେବଣ କୃତ କଲେ ।
କହ ହେ ମହାମୁନି ମୋ ଦୋଷ ହେଉ କ୍ଷମା
ତୁମ୍ଭ ମୁଖୁଁ ରାବଣର ଜନ୍ମହିଁ ଶୁଣିମା ।
ବୋଲନ୍ତି ଅଗସ୍ତି ତୁମ୍ଭେ ଶୁଣ ହେ ରଘୁନାଥ
ପଳାଇଲେ ମାଳି ଯେ ସୁମାଳି ମାଲ୍ୟବନ୍ତ ।
ଶ୍ରୀହରି ହାସ୍ୟ କରିଣ ବାହୁଡ଼ା ବିଜେ କଲେ
ପଳାଇ ଅସୁରଗଣେ ପାତାଳେ ପଶିଲେ ।
ଲଙ୍କାର ନଗ୍ରରେ ଯେ ଗୋଟିଏ ନ ରହିଲେ
ସକଳ ଦୈତ୍ୟଗଣ ପାତାଳେ ଲୁଚିଲେ ।
ସେହିଦିନୁ ଲଙ୍କାନଗ୍ର ହୋଇଲା ଯେ ଶୂନ୍ୟ
ବିଷ୍ଣୁ ମାରିମାରୁ ପଳାଇଗଲେ ଦୈତ୍ୟଗଣ ।
ସାତ ଯୁଗ ପରିଯନ୍ତେ ସେ ପୁର ହେଲା ତୁଚ୍ଛା
କୁବେର ରହିବାକୁ ବିଶ୍ରବା ରଷି ବଞ୍ଛା ।
ବିଶ୍ରବା ରଷି ସେ କଥା ସନ୍ତୋଷେ କହିଲେ
କେହି ନାହିଁ ବୋଲିଣ ପୁତ୍ରକୁ ବୋଇଲେ ।
ତେଣୁ ବଇଶ୍ରବଣ କଟକ ସେଥି କଲା
ମାତା ପିତାଙ୍କୁ କହିଣ ସେଠାରୁ ଚଳିଗଲା ।
ସୁମାଳୀ ପାତାଳ ବିମ୍ବରେ ଲୁଚିଥିଲା
ଶତେଯୁଗ ଉତ୍ତାରୁ ସେ ବାହାର ହୋଇଲା ।
ବିଚାରିଲା ଏବେ ମର୍ତ୍ତ୍ୟପୁର ଯିବି ମୁହିଁ
କେମନ୍ତ କରିଅଛି ମୁଁ ଲଙ୍କା ଦେଖିବଇଁ ।
ଆସନ୍ତେ ଗୋଡ଼ାଇଲା ଦୋହୀତା ନଉକେଶୀ
ମୁହିଁ ଯିବି ବୋଲିଣ ପିତା ସଙ୍ଗରେ ଆସି ।
ଦୋହୀତାଠାରୁ ଶୁଣିଣ ସଙ୍ଗରେ ଦୈତ୍ୟଘେନି
ସ୍ନେହଭରେ ଦଇତ୍ୟ ସଙ୍ଗରେ ପୁଣି ଆଣି ।
ବିମ୍ବରଦ୍ୱାରେ ବାହାର ସୁକେଶର ପୁଅ
ପ୍ରବେଶ ଲଙ୍କାଗଡ଼ରେ ହୋଇଲା ଦୈତ୍ୟସହ ।
ଦେଖିଲା ଲଙ୍କାଗଡ଼ ଅନେକ ସମ୍ପଦ
ବାଜଇ ନିସାଣ ଯେ ଟମକ ଭେରୀ ବାଦ୍ୟ ।
ତିନିପୁର ମଧ୍ୟରେ ଦିଶେ ସେହି ଉଜ
ଦେଖିଣ ଦୈତ୍ୟ ମନେ ହୋଇଲା ଆଶ୍ଚର୍ଯ୍ୟ ।
ପୂର୍ବରୁ ଶତେଗୁଣେ ଦିଶୁଅଛି ଶିରୀ
ମାୟାରୂପ ଧରି ଦୈତ୍ୟ ସେ ପୁରେ ବିଜେକରି ।
ଲୋକମାନେ ଦେଖି ବିଚାରି ପଚାରି
କେବଣ ନୃପତି ଏଥିରେ ବିଜେକରି ।
ଦେବତା କି ମନୁଷ୍ୟ ନୃପତି ଅଟେ ପୁଣ
ତୁମ୍ଭେ ତ ସ୍ୱର୍ଗ ଦେବତା ପରାୟେ ଦିଶ ଜାଣ ।
ଲୋକେ ବୋଇଲେ ଏଥିରେ କୁବେର ରାଜ୍ୟକରି
ସେହି ସେ ଭଣ୍ଡାର ଘରରେ ଅଧିକାରୀ ।
ବିଶ୍ରବା ରଷିଙ୍କର ସେ ଅଟନ୍ତି ତନୟେ
ବ୍ରହ୍ମାଙ୍କର ସମାନେ ଦିଗପାଳ ହୋଏ ।
ଆମ୍ଭେ ସମସ୍ତେ ଯେ ଗନ୍ଧର୍ବ ବିଦ୍ୟାଧର
ନ ଗଲା ଲୋକର ପ୍ରାୟେକ ପଚାର ।
ସୁମାଳୀ ବୋଲେ ମୁହିଁ ଦ୍ୱୀପାନ୍ତରେ ଥିଲି
ଯୋଗରେ ଭ୍ରମନ୍ତେ ମୁଁ ଏଥକୁ ଅଇଲି ।
ଏତେବୋଲି ସେଠାରୁ ଅନ୍ତରୀକ୍ଷେ ଗଲା
କୁବେର ସନ୍ନିଧେ ଯେ ଯାଇଣ ମିଳିଲା ।
ଗୁପତ ରୂପେ ଯାଇଣ ଦେଖିଲା ସ୍ୱରୂପ
ଜାଣିଲା ଦେବତା ଏ ଅଟଇ ରଷିପୁତ୍ର ।
କେ ତୁମ୍ଭର ପିତା ଯେ ନବୁଝେ ପୁଣି ମୁହିଁ
ଏମନ୍ତ ବଇଶ୍ରବଣଙ୍କୁ ପଚାରଇ ।
କୁବେର ବୋଲେ ଆମ୍ଭେ ବିଶ୍ରବା ନନ୍ଦନ
ପିତାଙ୍କ ବୋଲେ ଏପୁରେ ହେଲି ରାଜାପୁଣ ।

ଶୁଣି କରି ବିଚାର କରେ ଦୈତ୍ୟ ତହିଁ
ଏ ଦୋହୀତା ଗୋଟି ମୁଁ କାହାକୁ ଦେବିନେଇ।
ଏ ଦୋହୀତା ଠାରୁ ଯେ ପୁତ୍ର ଉତପତ୍ତି
ଏ ପୁରେ ବିଳସିବ ମିଳଇ ଯୁଗତି।
ମୋତେ ଯେବେ ପ୍ରାପତ ନୋହିଲା ଏହୁଦେଶ
ସବୁଦିନେ ଏ ପୁରେ ଦୈତ୍ୟଙ୍କର ବାସ।
ତାହାର ଭୟରେ ମୁଁ ଯେ ନ ପାରିଲି ରହି
ବାସୁଦେବ ସଙ୍ଗେ ମୋର ଅପ୍ରୀତି ଅଟଇ।
ଦୋହୀତା ପୁତ୍ରକୁ ଅବା ପ୍ରାପତ ରତ୍ନମହୀ
ଏମନ୍ତେ ମନରେ ଯେ ଦେଖି ବିଚାରଇ।
ବିଶ୍ରବା ଋଷି ଯେବେ ଆବୋରେ ଏ ପୁର
ବ୍ରହ୍ମାର ପ୍ରସାଦେ ଭୋଗ କରଇ କୁବେର।
ମୁହିଁ ଯେ ଧନପତିଙ୍କି ନ ପାରିବି ଜିଣି
ଲଙ୍କାକୁ ବିଧ୍ୱଂସିବି ମୁଁ ଦେଇଣ ଦୁଲଣୀ।
ଦୈତ୍ୟର ଦୋହୀତା ବୋଲି ନକରେ ଗ୍ରାହିର୍ଯ୍ୟ
ଏତେବୋଲି ପାଶକୁ ରାଇଲା ଦୈତ୍ୟରାଜ।
ବୋଇଲା ନୈକେଶୀ ଲୋ ମୋର ବୋଲକର
ଯେଉଁଠାରେ ଅଛନ୍ତି ବିଶ୍ରବା ମୁନିବର।
ତାଙ୍କ ସନ୍ନିଧକୁ ତୁ ଏହିକ୍ଷଣି ଯିବୁ
ଅନେକ ପ୍ରକାରେ ତୁ ଭାରତୀ ହୋଇବୁ।
ପ୍ରସନ୍ନ କରାଇ ତୁ ମାଗିବୁ ଏକ ବର
କୁବେର ସମାନ ତାହାକୁ ମାଗିବୁ କୁମର।
ଲଙ୍କାରେ ନୃପତି ଯେ ହେବ ମୋର ନାତି
ତେବେ ସେ ରହିବେ ଯେ ଅସୁରଙ୍କର କୀର୍ତ୍ତି।
ପିତାଙ୍କର ବଚନରେ ନଉକେଶୀ ଗଲା
ବିଶ୍ରବା ଋଷିଙ୍କର ନିକଟେ ମିଳିଲା।
ରୂପରେ ଯଉବନରେ ସମ୍ପୂର୍ଣ୍ଣ ସୁନ୍ଦରୀ
କି ଜାଣି ପଟାନ୍ତର ସ୍ୱର୍ଗର ବିଦ୍ୟାଧରୀ।
ଚନ୍ଦ୍ରମାବଦନୀ ସେ କୁରଙ୍ଗୀ ନୟନୀ
ସିଂହ ମଝା ଅଟେ ମତ୍ତଗଜର ସାଜେଣୀ।
ଯଉବନେ ଭାରି ଯେ ସକଳ ଗୁଣେ ସରି
ସୁବର୍ଣ୍ଣ ଝଲକ ପ୍ରାୟେ ଢଳଢ଼ଳ ସୁକୁମାରୀ।
ଚାଚର ଚିକୁର ନିର୍ବାଣ ଚାରୁ ଖୋଷା
କସ୍ତୁରୀ ଚିତା ପରେ ସିନ୍ଦୂରର ଟୀକା।
କର୍ଣ୍ଣରେ ତଡ଼କୀ ଯେ ମଥାରେ ମଥାମଣି
ସର୍ବ ଅଳଙ୍କାରରେ ଭୂଷଣ ତରୁଣୀ।
ନୀଳ ଝୀନବାସ ପରିହରଣ ଅଟେ ଶୋଭା
ସୁବର୍ଣ୍ଣର ପ୍ରତିମା ମର୍କତର ପ୍ରଭା।
ବିଳାସ ଦୃଷ୍ଟିରେ ସେ ଚାହେଁ ଧୀର ଧୀର
ସୁବର୍ଣ୍ଣ କନ୍ୟା ପ୍ରାୟେ ଦିଶଇ ଆକାର।
ବିମାନ ଆରୋହିଲା ପ୍ରାୟେକ ଦିଶେ ତେଣୁ
ଏମନ୍ତ ବେଶେ ବାହାର ହୋଇଲାକ ଯେଣୁ।
ଚାରି ଦିଗକୁ ଚାହିଁ ଭାଳେ ବିଶ୍ରବା ଋଷି
ଏସମୟରେ ମିଳିଲା ନଉକେଶୀ ଆସି।
ଅଞ୍ଚଳ ପାଡ଼ିଣ ଯେ ଓଳଗେ ପୁଣ ନାରୀ
ଉଠି କରି ଯୋଡ଼ି ନୟନ ଦୁଇ ଢାଳି।
ଦେଖିଣ ମହାଋଷି ମଦନେ ଭୋଳ ହୋଇ
ବିଶ୍ରବା ପଚାରନ୍ତି ତୁ କାହାର ତନୟୀ।
କେ ତୋହର ପିଅର କେବଣ ଦେଶେ ଘର
କି କାରଣେ ଗମନ ତୁ କଲୁ ମୋର ପୁର।
ମୁଁ ତୋତେ ଦେଖିଣ ଏବେ ହୋଇଲଇଁ ତୋଷି
ସୁରତୀ ରସ ଦେଇ ତୁ ମୋ ମନ ତୋଷି।
ସୁନ୍ଦରୀ ବୋଇଲା ମୁଁ ରାକ୍ଷସ କୁମାରୀ
ସୁମାଳୀ ଦୈତ୍ୟ ପିଅର ଅଟଇ ମୋହରି।
ପୂର୍ବେ ଲଙ୍କାରେ ସେହୁ ରାଜ୍ୟ କରିଥିଲା
ଶ୍ରୀହରିଙ୍କ ଭୟରେ ପାତାଳେ ରହିଲା।
ଶତେଯୁଗ ଅନ୍ତରେ ସେ ଦେଖି ଯାଇଥିଲା
ମୋତେ ସଙ୍ଗରେ ଘେନିଣ ଶୀଘ୍ରରେ ଅଇଲା।
କୁବେରକୁ ଦେଖିଣ ହୋଇଲା ସନ୍ତୋଷ
ମୋତେ କହିଣ ଯେ ପେଶିଲେ ତୁମ୍ଭ ପାଶ।
ବୋଇଲେ କୁମାରୀ ତୁ ଋଷିଙ୍କ ପାଶେ ଯିବୁ
କୁବେର ସମାନରେ ପୁତ୍ର ତୁ ମାଗିବୁ।
ତେଣୁ ମୋର କୁଳ ହୋଇବ ଯେ ରକ୍ଷା
ଏସନେକ ବୋଲିଣ ମୋର ପିତା ଦେଲେ ଦୀକ୍ଷା।
ପିତାଙ୍କର ଆଜ୍ଞାରେ ମୁଁ ଅଇଲି ତୁମ୍ଭ ପାଶ
ତୁମ୍ଭେ ମହାମୁନି ଯେ ନକର ମୋତେ ରୋଷ।
ମୁହିଁ ଯେ ଅବିବାହୀ ପତି ମୋର ନାହିଁ
ପିତା କହିଦେଲେ ମୋତେ ତୋପାଦେ ଖଟିବଇଁ।
ଶୁଣିକରି ମହାମୁନି ଆନନ୍ଦ ବୋଇଲେ
ଏକଥା ଯୋଗବଳେ ମୁଁ ଜାଣଇଁ ବୋଇଲେ।
ଯେତେବେଳେ ତୋର ପିତା ପେଶିଦେଲେ ତୋତେ
ସେ କଥା ଯୋଗବଳେ ଦୃଶ୍ୟ ହେଲା ମୋତେ।

କିସ ତୋର ନାମ ଏବେ କହଟିରେ ନାରୀ
ଯୁବତୀବୋଲେ ନୈକେଶୀ ନାମ ଶୁଣ ତପଚାରୀ।
ବିଶ୍ରବା ବୋଇଲେ ତୁ ଶୁଣରେ ନଉକେଶୀ
ସନ୍ଧ୍ୟାରେ ବେଳେ ଆମ୍ଭଙ୍କୁ ଭେଟିଲୁ ସୁକେଶୀ।
ଦେବତାମାନଙ୍କର ମଧ୍ୟାହ୍ନବେଳ ଏହୁ
ଦିନ୍‌ମଣି ଅସ୍ତ ହେଲେ ଦଶଦିଗ ଅନ୍ଧାର ତହୁଁ।
ଭୟଙ୍କର ପୁତ୍ର ଯେ ତୋଠାରୁ ହେବ ଜାତ
ତାହାର ଯୋଗୁଁ ପୀଡ଼ା ଯେ ପାଇବେ ଜଗତ।
କନ୍ୟା ବୋଲଇ ଏତ ଯୁଗତ ନୁହଇ
ଋଷିର ପୁତ୍ର କାହିଁ ଅସୁର ରୂପ ହୋଇ।
ବ୍ରହ୍ମାର ବୀର୍ଯ୍ୟରେ ଉର୍ବଶୀର ହେଲା ପୁତ୍ର
ବଶିଷ୍ଠ ମୁନି ବୋଲି ହେଲେ ସେ ବିଦିତ।
ପିତାର ଲକ୍ଷଣ ଘେନି ସେହୁ ଜାତ ହୋନ୍ତି
ସୁନ୍ଦରୀ ବଦନ ଚାହିଁ ବିଶ୍ରବା ଭାଷନ୍ତି।
ଶ୍ରୀହରିଙ୍କଠାରୁ ମଧୁକୈଟଭ ହେଲେ ଜାତ
ବେଳ କାଳ ଯୋଗରୁ ସେ ହୋଇଲେ ଦଇତ୍ୟ।
ତୁ ଏବେ ସୁନ୍ଦରୀ ଗୋ ନ ପାଅ ମନେ ଶଙ୍କା
ଭବିଷ୍ୟ କଥାଏ ଯେ ପୂର୍ବରୁ ଅଛି ଲେଖା।
ସେହି କଥାଗୋଟି ଅନ୍ୟଥା ନୋହିବରେ ସହୀ
ବୀରବନ୍ତ ପୁତ୍ରେକ ଯେ ପ୍ରସବିବୁ ତୁହି।
ଦଶମୁଣ୍ଡ ବିଂଶଭୁଜ ହୋଇବ ତାହାର
ନୀଳ ମେଘ ପ୍ରାୟେ ତନୁ ହେବ ଭୟଙ୍କର।
ଆବର ପୁତ୍ରେକ ତୋର ହେବ ପାଣ୍ଡୁର ବର୍ଣ୍ଣ
ବିକଟ ପ୍ରାୟେ ଘଟଣ ହେବ ବେନି କର୍ଣ୍ଣ।
ବିକଟ ମୂରତି ତୋର ବଳରେ ବଳବନ୍ତା
ତିନିପୁରେ ତାହାକୁ କେ ନୋହିବେ ଜିଣତା।
ତୃତୀୟ ପୁତ୍ର ଜାତ ହେବ ତୋର ତହୁଁ
ଧର୍ମରେ ପରାୟଣ ହୋଇବତ ସେହୁ।
ମୋହରି ପରାୟେ ସେ କରିବଟି ତପ
ପର ଉପକାରୀ ହେବ ଜାଣିବ ପୁଣ୍ୟ ପାପ।
ଚନ୍ଦ୍ର, ସୂର୍ଯ୍ୟ ଥିବାଯାଏ ନୋହିବ ସେହୁ କ୍ଷୟେ
ବିଷ୍ଣୁରେ ଭକତି କରି ହେବ ସେ ଉଦୟେ।
ଉଦୟରୁ ଅସ୍ତ ପର୍ଯ୍ୟନ୍ତେ ହେବ ଲଙ୍କାରେ ରାଜା
ପୃଥିବୀ ପ୍ରଳୟକାଳେ ତା ଶରୀର ହେବ ତେଜ୍ୟା।
ଚତୁର୍ଥ ଗର୍ଭରେ ତୋର ଦୋହିତା ଜାତ ହେବ
ସେହୁ ପୁଣି ଅସୁରୁଣୀ ସ୍ୱଭାବ ପାଇବ।
ବିଷ୍ଣୁଠାରେ ଦୋରେହା ହେବ ସେ ଦୋହିତା
ତେଣୁକରି ଦୁଇପୁତ୍ର ନୋହିବେ ଚିରଂ ଯଥା।
ବଡ଼ବୋହୂ ହସ୍ତରେ ସେହୁ ନାଶ ଯିବ
ସାୟଂକାଳେ ରତି କଲେ ଘଟେ ଏତେ ଭାବ।
ଶୁଣିକରି ନଉକେଶୀ ସନମତ କଲା
ଦୋହିତାଗୋଟି ମାଗିବାରୁ ଚତୁର୍ଥ ଗର୍ଭ ହେଲା।
ଅସ୍ତୁ ହେଉ ବୋଲିଣ ବୋଇଲେ ତପଚାରୀ
ବୋଇଲେ ନଉକେଶୀ ରମଣ ଦିଅ ମୋରି।
ନୈକେଶୀ ବୋଲେ ମୋ ଅଙ୍ଗ ପବିତ୍ର କର
ଶୁଣିଣ ବିଶ୍ରବା ସୁମରନ୍ତି ଯେ ପିଅର।
ପଉଲସ୍ତୀ ଆସିଣ ପୁତ୍ର ପାଶେ ହେଲେ
କିମର୍ଥେ ସୁମରିଲୁ ବୋଲିଣ ବୋଇଲେ।
ଉଠିଣ ବିଶ୍ରବା ଋଷି ନମସ୍କାର କଲେ
କନ୍ୟା ଗୋଟିଏ ତାତ ପ୍ରାପତ ହେଲା ବଳେ।
ତୁମ୍ଭେ ବସି ମୋତେ କରାଅ ବିଭା ପୁଣ
ପୌଲସ୍ତୀ ବୋଇଲେ ଏ ନୁହଇ ଭିଆଣ।
ବଳାତ୍କାରେ ଏହାକୁ କରୁ ତୁ ଘରଣୀ
ଏହାଠାରୁ ଜାତ ହେବେ ଅସୁରବଳ ପୁଣି।
ଏତେ କହି ପୌଲସ୍ତି ନିଜ ପୁରେ ଗଲେ
ନୈକେଶୀ ଶୁଣିଣ ହରଷ ମନ କଲେ।
ଗଳାରୁ କାଢ଼ିଲା ଚନ୍ଦ୍ରହାର ଯେ ଗୋଟିଏ
ଋଷିଙ୍କର ଗଳାରେ ନେଇଣ ଲମ୍ବାଏ।
ଶୁଣିଣ ଶ୍ରୀରାମ ମନେ ହେଲେ ତୋଷ
କରଯୋଡ଼ି ମୁନିଙ୍କି ପୁଚ୍ଛିଲେ ସନ୍ଦେଶ।
ବୋଇଲେ ମହାମୁନି ମୁଁ କଥାଏ ପଚାରିବି
ମଧୁ କଇଟଭ କଥା କହ ଦେବଦର୍ଷୀ।
ବାସୁଦେବ ଠାରୁ ଜାତ ସେ ହୋଇଲା
କିମ୍ପାଇଁ ଅସୁର ତନୁ ସେହି ଯେ ପାଇଲା।
ଅଗସ୍ତି ବୋଇଲେ ସେ ନିମଗ୍ନ ପାପକାଳେ
ବାସୁଦେବ କର୍ଣ୍ଣଗୁଆ ଖସିଲା ସେ ବେଳେ।
ମହାଜଳେ ପଡ଼ିଣ ସେ ବଳବନ୍ତ ହେଲା
ଚେତା ପାଇ କମଳାଙ୍କୁ ସୁରତୀ ମାଗିଲା।
ତାହା ଜାଣି ନାରାୟଣ ତାକୁ କଲେ ନାଶ
ତା ସକାଶେ ତିନିପୁର ଧରଣୀ ପ୍ରକାଶ।
ପାପବେଳେ ଜନ୍ମ ହେଲେ ଏମନ୍ତ ହୁଅନ୍ତି
ପୁଣ୍ୟବେଳେ ଜାତ ହେଲେ ସୁଗୁଣ ବିକାଶନ୍ତି।

ଶ୍ରୀରାମ ବୋଇଲେ ନଉକେଶୀ କିସ କଲା
ଅଗସ୍ତି ବୋଇଲେ ଶୁଣ ଦଶରଥ ବଳା ।
ନୌକେଶୀ ସଙ୍ଗେ ବିଶ୍ରବା ରମଣ ଭୋଗ କଲେ
ତତକ୍ଷଣେ ପୁତ୍ରେକ ଜାତ ହେଲା ଭଲେ ।
ଥରହର ହୋଇଣ କମ୍ପିଲା ଜଗତ ।
ପଡ଼ିବାରୁ ଧରଣୀରେ ହୋଏ ଭାରା ସେ ତ ।
ସ୍ୱର୍ଗରେ ଉପଦ୍ରବ ରୁଧିର ବୃଷ୍ଟି ହେଲା
ଅକାରଣେ ଦେବଙ୍କର ସଭା ଭାଙ୍ଗିଗଲା ।
ଐରାବତ କାନ୍ଦଇ ଉଚ୍ଚୈଶ୍ରବା ସେ ଡରଇ
ଚିନ୍ତାକରି ଏମାନେ ଝୁଣ୍ଟନ୍ତି ଯେ ଚାହିଁ ।
ପବନ ନ ବହିଲା ସାହେର ସ୍ତବଦ
ଚଉଦ ଭୁବନ ଲୋକେ ବୋଇଲେ ବିଷାଦ ।
ଅଦଭୂତେ ନିର୍ଘାତ ପଡ଼େ ଘନ ଘନ
ଚନ୍ଦ୍ର, ସୂର୍ଯ୍ୟ ଦୁହିଁଙ୍କର କିରଣ ନିଊନ ।
ରାବଣ ଜନମ ହେଲା ଦଶମୁଣ୍ଡ ଧରି
ବିକରାଳ ବଦନ ଦେଖିଣ ମାତା ଡରି ।
କୋଡ଼ିଏ ନୟନ ତାର ଅନଳ ଜାଣି ତେଜ
ଆବର ଅଟଇ ତାର ବିଶେଷେ ବିଂଶଭୁଜ ।
ତଳେ ପଡ଼ି ରୋଦନ କରେ ସେ ତକ୍ଷଣ
ପ୍ରଥମରେ ରାବନ୍ତେ ଜଗତପୁରେ ପୁଣ ।
ଜନନୀ ବିଚାରଇ ମୁଁ କି ବୁଦ୍ଧି କରିବି
କେବଣ ପ୍ରକାରେ ମୁଁ ୟା ଚିତ୍ତ ହରିବି ।
କେଉଁ ମୁଖରେ ଏହାର ଦେବି ମୁହିଁ କ୍ଷୀର
ଅଖଡ଼ରେ ନାଶ ଯିବ ଏଡ଼େକ ପୁତ୍ର ବୀର ।
ଏକଥା ଶୁଣି କୁମର ବୋଲଇ ଆଗୋ ମାଆ
ଜଗତେ ବିଦିତ ହେବ ମୋହର ମହିମା ।
ତୁ ଏବେ ମୋତେ ଗୋ ବିନାଶ ନ କର
ଯେବଣ ମୁଖେ ପାର ଦିଅ ମୋତେ କ୍ଷୀର ।
ତେବେ ମୋର ସନ୍ତୋଷ ହେବ ପିଣ୍ଡ ପ୍ରାଣ
ଏଥୁ ଅନନ୍ତରେ ବିଚିତ୍ର କଥା ଶୁଣ ।
ଶ୍ରୀରାମ ବୋଇଲେ ଶୁଣ କୁମ୍ଭଋଷି ସୁତ
ପୂର୍ବରେ କେଉଁଠାରେ ଥିଲା ଏ ରାବଣ ତ ।
ଏଡ଼େ ବଳବନ୍ତ ହୋଇଲା ସେ କାହୁଁ
ଧରଣୀରେ ପଡ଼ନ୍ତେ କମ୍ପାଇଲା ସେହୁ ।
ଅଗସ୍ତି ବୋଇଲେ ସେ ବାସୁଦେବଙ୍କ ପୁରେ
ଘର ସାହେର ଭିତରେ ଅନନ୍ତଶୟନରେ ।
ପଶ୍ଚିମଦ୍ୱାର ଦ୍ୱାରୀ ସେ ଜୟେ ବିଜୟେ ଦୁଇ
ବାସୁଦେବଙ୍କର ଦ୍ୱାରୀ ସେ ଅଟଇ ।
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଅମାବାସ୍ୟା ଦିନ
କମଳା ସେଦିନ ସୁବେଶ ତତକ୍ଷଣ ।
ନାରାୟଣଙ୍କୁ ଦର୍ଶନ କରିବାକୁ ଗଲେ
ସେଦିନ ପିତାଙ୍କୁ କମଳା ସଙ୍ଖୋଳନ୍ତି ଭଲେ ।
ସେହି ଦ୍ୱାରେ ପ୍ରବେଶ ହେଲା କାଳେ ଜାଣି
ଦ୍ୱାରପାଳ ନିରୋଧ କଲେ ଜାଣି ଶୁଣି ।
ଦ୍ୱାର ନିରୋଧିବାରୁ ସତୀ ଶାପ ଦେଲେ
ରାକ୍ଷସ ହୋଇ ଜାତ ହୁଅରେ ବୋଇଲେ ।
ଏତେ କହି କମଳା ନିଜପୁରେ ଗଲେ
ଚିନ୍ତା କରି ଦେବୀ ଯେ ସାୟେର ନଗରେ ।
ଦ୍ୱାରପାଳ ଦୁହେଁ ପାଇଲେ ଯହୁଁ ଶାପ
ଅନେକ ରୋଦନ କଲେ ହୋଇଣ ସେ କୋପ ।
ତାଙ୍କର ରୋଦନ ଶୁଣି ଅନନ୍ତ ଶଯ୍ୟାରୁ
ବାସୁଦେବ ପଚାରନ୍ତି କେତେ ଶୋକ କରୁ ।
ସେ ବୋଇଲେ ଠାକୁରାଣୀ ଦର୍ଶନେ ଆସିଥିଲେ
ନିରୋଧ କରିବାରୁ ଶାପ ସେ ଦେଇ ଗଲେ ।
ବୋଇଲେ ରାକ୍ଷସକୁଳେ ତୁମ୍ଭେ ହୁଅଯାଇଁ ଜନ୍ମ
ସେ କଥା ଶୁଣି ଆମ୍ଭେ ହୋଇଲୁଁ ବିମନ ।
ବାସୁଦେବ ବୋଇଲେ ଅଧର୍ମ ତୁମ୍ଭେ କଲ
ଆମ୍ଭର ଘରଣୀକି ପଥ ନିରୋଧିଲ ।
ଏହି ଶାପ ତୁମ୍ଭଙ୍କୁ ହେବ ପରାପତ
ଷାଠିଏ ଗଣ୍ଡା ଯୁଗ ହେବ ତୁମ୍ଭେ ଦୈତ୍ୟ ।
ଯେତେବେଳେ ମୋରଚକ୍ରେ ହୋଇବ ଛେଦନ
ତେତେବେଳେ ମୋରଦ୍ୱାରେ ରହିବ ତୁମ୍ଭେପୁଣ ।
ପ୍ରଥମେ ଜନ୍ମ ହେବ ଅଦିତି ଗର୍ଭରେ
ବତିଶି ଗଣ୍ଡାଯୁଗ ଦେବଙ୍କୁ କଷ୍ଟ ଦେଲେ ।
ସେତେବେଳେ ଶୂକରରୂପେ ମୁହିଁ ଜାତ ହେବି
ହୃଦୟ ଚିରି ତୁମ୍ଭ ଦୁଇଜଣଙ୍କୁ ମାରିବି ।
ନୃସିଂହ ଅବତାର ମୁହିଁ ହେବି ପୁଣ
ପୁଣି ଏକଜଣ ମୁଁ କରିବି ବିଦାରଣ ।
ସେଠାରୁ ସତର ଯୁଗ ତୁମ୍ଭେ ନିଜପୁରେ
ମୋ ପୁରେ ନ ଆସି ରହିବ ସେଠାରେ ।
ସେଥିର ଉତ୍ତାରୁ ପୁଣ ମର୍ତ୍ତ୍ୟପୁର ଯିବ
ନୌକେଶୀ ଗର୍ଭରେ ଯାଇଁ ଜନମ ହୋଇବ ।

ଚଉଦଗଣ୍ଡା ଯୁଗ ଯାଇ ରହିବ ଲଙ୍କାପୁରେ
ତିନିପୁର ଭୟ ଯେ କରିବେ ତୁମ୍ଭରେ ।
ବିଶ୍ରବା ଋଷି ଯେ ତୁମ୍ଭର ହେବେ ପିତା
ତାଙ୍କ ବୋଲ ନ ମାନି ତୁ ହେବୁ ଜଗଜ୍ଜିତା ।
ଦେବତାଙ୍କୁ ଘେନିଣ ବଳେ ସେ ନେଇଯିବ
ବାରଯୁଗ ପରିଯନ୍ତେ ସେବାରେ ରଖିବ ।
ତେତେବେଳେ ସୁମରଣ କରିବେ ଦେବେ ମୋତେ
କମଳାଙ୍କୁ କଷ୍ଟ ତୁମ୍ଭେ ଦେବ ଯେ ଯୁଗତେ ।
ତୁମ୍ଭଙ୍କୁ ଶାପ ଦେଲେ ସେ ଅବତାର ହେବ
ତୁମ୍ଭ ସକାଶେ ଚୌଦବର୍ଷ ବନରେ ସେ ବୁଲିବ ।
ଚଉଦମାସ ତୁମ୍ଭେ ତାଙ୍କୁ ରଖିବ ବନ୍ଦୀରେ
ସେକାଳେ ମାରିବି ମୁଁ ମାନବ ରୂପରେ ।
କୋଦଣ୍ଡ କାଣ୍ଡ ଘେନିଣ ମୁହିଁ ନାଶ କରି
ତେତେବେଳେ ତୁମ୍ଭେ ଦୁହେଁ ଆସିବ ନିଜପୁରୀ ।
ସତରଯୁଗ ସେଠାରୁ ପୁଣ ବହିଯିବ
ଦ୍ୱାପରେ ଶିଶୁପାଳ ଶାଲ୍ୱ ଯେ ହୋଇବ ।
କାଳ ନଉମୀ ପୁଣି ଜନ୍ମିବ କଂସ ହୋଇ
ତାହାକୁ ମାରିବାକୁ ଜାତ ହେବି ମୁହିଁ ।
ତେତେବେଳେ ଚକ୍ରରେ ଛେଦିବି ତୁମ୍ଭ ଶିର
ତେବେ ତୁମ୍ଭେ ଆସିବ ମୋହର ନିଜ ପୁର ।
ଏତେକହି ବାସୁଦେବ ପଶ୍ଚିମ ଦ୍ୱାର ରୁନ୍ଧି
ଉତ୍ତର ଦ୍ୱାରେ ଯାଇ ମିଳେ ଆଦିକନ୍ଦି ।
କ୍ଷେତ୍ରପାଳଙ୍କୁ ଡକାଇ ବଚନ କହିଲେ
ସମସ୍ତଙ୍କୁ ଏ ଦୁଆରେ ଛାଡ଼ିବ ଭିତରେ ।
ପଶ୍ଚିମ ଦୁଆରୀ ଦୋଷ ମନେ ହେଲେ ଜାଣ
ସାୟେର ଦୁଲଣୀକି ପଥ ନ ଛାଡ଼ିଲେ ପୁଣ ।
ସେ ଦୋଷରୁ ରାକ୍ଷସ କୁଳରେ ଜାତ ହେବେ
ଷାଠିଏଗଣ୍ଡା ଯୁଗ ଗଲେ ସେବାରେ ରହିବେ ।
ଏତେ କହି ନାରାୟଣ ନିଜସ୍ଥାନେ ଗଲେ
ସାତଗଣ୍ଡା ଯୁଗ ଦ୍ୱାରୀ ସେଠାରେ ଭାଳିଲେ ।
ଅଦିତିଙ୍କ ଗର୍ଭରେ ହୋଇଲେ ଯାଇଁ ଜାତ
ବତିଶଗଣ୍ଡା ଯୁଗ ମାଇଲେ ଜଗନ୍ନାଥ ।
ସେଠାରୁ ଦୁଇଭାଇ ରହିଲେ ଯେ ଭାଳି
ଜାତ ହେଲେ ରାବଣ କୁମ୍ଭକର୍ଣ୍ଣ ରୂପ ଧରି ।
ଚଉଦଗଣ୍ଡା ଯୁଗ ଏଥିରେ ବହିଗଲେ
ନାରାୟଣ ଚତୁର୍ଦ୍ଧା ରୂପରେ ଜାତ ହେଲେ ।

ଦେବତାଙ୍କ କଷ୍ଟରେ ମାଇଲେ ଆସି ପୁଣ
ଶୁଣିକରି ରାମଚନ୍ଦ୍ର ହେଲେ ତୋଷମନ ।
ପାର୍ବତୀ ପଚାରନ୍ତି ସେଠାରୁ କିସ ହେଲା
କହନ୍ତି ସଦାଶିବ ଅନାଦିଙ୍କର ବଳା ।
ଶୁଣ ଗୋ ଶାକମ୍ଭରୀ ରାମଚନ୍ଦ୍ର ପୁଛି
କୁମ୍ଭ ଋଷି ସୁତ ଯେ କହନ୍ତି ପରଶଂସି ।
ଏଥୁଅନନ୍ତରେ ତୁମ୍ଭେ ଶ୍ରୀରାମଚନ୍ଦ୍ର ଶୁଣ
ସେ ପୁତ୍ରଙ୍କୁ ପାଳଇ ନଉକେଶୀ ପୁଣ ।
କ୍ଷୀରପାନ ଦେଇଣ ମନବୋଧ କଲା
ଦୁଇମାସେ ଫଳ ମୂଳ ସେହୁ ଯେ ଭୁଞ୍ଜିଲା ।
ଛଡ଼ମାସ ଉତ୍ତାରୁ ସେ ନଉକେଶୀ ପୁଣ
ପାକାସ୍ୱରଶ ହେଲା ସେହୁ ନାରୀ ଜାଣ ।
ଚତୁର୍ଥ ଦିନରେ ଶୁଦ୍ଧ ସ୍ନାହାନ କଲା ଯାଇଁ
ସୁବେଶ ହୋଇଲା ନାରୀ ଚନ୍ଦନ ପୁଷ୍ପ ଲାଇ ।
ରଜନୀରେ ଋଷିଙ୍କପାଶେ ହେଲା ସେ ପ୍ରବେଶ
ତକ୍ଷଣେ ମହାମୁନି କଲେକ ରତିରସ ।
ଯେତେବେଳେ ଋଷିର ଟଳିଲାକ ବୀର୍ଯ୍ୟ
ସେତେବେଳେ ଗର୍ଭବାସ ନଉକେଶୀ ଶୁଭ ।
ତତକ୍ଷଣେ ପୁତ୍ରେକ ହେଲା ଉତପତ୍ତି
ପେଟରୁ ପଡ଼ନ୍ତେ ସେ କମ୍ପିଲା ବସୁମତୀ ।
ସିଂହରଡ଼ି ଗୋଟିଏ ଛାଡ଼ିଲା ଜନ୍ମକାଳେ
ଦେବତାଏ ତରସ୍ତ ହେଲେ ସୁରଆଳେ ।
ଦେଖିଣ ପିତାମାତା ଅନେକ ସ୍ନେହ କଲେ
ବିଚାରିଣ କୁମ୍ଭକର୍ଣ୍ଣ ନାମ ତାକୁ ଦେଲେ ।
କ୍ଷୀରପାନ ଦେଇଣ କରାଇଲେ ତୋଷ
ମାସକରେ ଫଳ ମୂଳ କଲେକ ସେ ଗ୍ରାସ ।
ସେଠାରୁ ପାଞ୍ଚମାସ ପନ୍ଦର ଦିନ ଗଲା
ପାକାସ୍ୱରଶ ନୌକେଶୀ ଶୁଦ୍ଧସ୍ନାନ କଲା ।
ସୁବେଶ ହୋଇ ନାରୀ ମୁନିଙ୍କ ପାଶେ ମିଳି
ନାନାରସେ ରତିଲୀଳା କରାଇଲା ବାଳୀ ।
ଋଷିର ବୀର୍ଯ୍ୟ ଟଳନ୍ତେ ଗର୍ଭବାସ ହେଲା
ଆଶକତରେ ନାରୀ ଅଳସ ମନେ କଲା ।
ତାଠାରୁ ଉତପତ୍ତି ହେଲା ଯେ ଦୋହୀତା
ଅତି ଭୟଙ୍କର ବିକଟାଳ ମୂର୍ତ୍ତି ଗୋଟା ।
ଏମନ୍ତ ଦେଖି ଋଷି ମନରେ ବିଚାରିଣ
ସୂର୍ପଲେଖା ନାମ ତାକୁ ଦେଲେ ଋଷି ପୁଣ ।

କ୍ଷୀରପାନ ଦେଇଣ ତାକୁ ତୋଷକଲେ
ମାସକରେ ଫଳ ମୂଳ ସେଥି ସେ ଭକ୍ଷିଲେ।
ପୁଣି ସପତ ମାସ ସେଥିରେ ବହିଗଲା
ନଉକେଶୀ ପୁଣି ଯେ ପାକାମ୍ବରଶ ହେଲା।
ବିଚାରିଲା ଏହିଠାରୁ ସରଇ ମୋର ଫଳ
ସତ୍ୟ କରିବା କଥା ଯେ ହୋଇଲା ମୋହର ।
ଏବେ ମୁହିଁ ମୁନିଙ୍କି ସେବା ଯେ କରିବି
ସ୍ୱାମୀ ପ୍ରସନ୍ନ ନୋହିଲେ ପୁତ୍ରଙ୍କ ପାଶେଯିବି।
ଏତେ କହି ନଉକେଶୀ ଉତ୍ତମ ବେଶହେଲା
ସ୍ୱର୍ଗର ଅପସରୀ ପରାଯେ ଦିଶିଲା।
ଋଷିଙ୍କର ପାଶରେ ହେଲା ପରବେଶ
ଦେଖିଣ ମହାମୁନି ମନରେ ହରଷ।
ନଉକେଶୀ ସଙ୍ଗରେ ଶୃଙ୍ଗାର ମେଳକଲେ
ଯୋଗବଳେ ଜାଣିଣ ବୀର୍ଯ୍ୟକୁ ଟାଳିଲେ।
ବୀର୍ଯ୍ୟ ଟଳନ୍ତେଣ ଗର୍ଭରେ ପ୍ରବେଶ
ଆଶକତେ ନଉକେଶୀ ଛାଡ଼ିଲା ମୁହାଁସ।
ପୁତ୍ର ଗୋଟିଏ ତକ୍ଷଣେ ପ୍ରସବ କଲା ନାରୀ
ଦେଖିଣ ପରମ ତୋଷ ହେଲେ ତପଚାରୀ।
ବିଭୀଷଣ ନାମ ତାକୁ ଜାଣି ମୁନି ଦେଲେ
ତିନିବର୍ଷ ଛଡ଼ମାସଦୋହୀତା ତିନିପୁତ୍ର ହେଲେ।
ଛଡ଼ ମାସରେ ଦିନେ ହୁଅଇ ରଜବତୀ
ଶୁଦ୍ଧ ସ୍ନାନ ଦିନ ମୁନି କରନ୍ତି ସୁରତି।
ଦଶଦିନେ ଗର୍ଭ ପ୍ରସବ ସେହୁ କରେ
ଏମନ୍ତେ ଚତୁର୍ଥ ଗର୍ଭ ହୋଇଲା ତାହାରେ।
ପ୍ରଥମରେ ରାବଣ ଦ୍ୱିତୀୟେ କୁମ୍ଭକର୍ଣ୍ଣ
ତୃତୀୟେ ସୂର୍ପଲେଖା ଚତୁର୍ଥେ ବିଭୀଷଣ।
ଦିନୁଦିନ ପୋଏ ଯେ ବଢ଼ିଲେ ଚନ୍ଦ୍ରଜିଣି
ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କର ରିପୁହେଲା ଜାଣି ।
ଚାରିବେଦ ପଢ଼ା ପଢ଼ନ୍ତି ତିନି ପୋଏ
ପ୍ରତିପାଳନ୍ତି ତାଙ୍କୁ ଯେ ନଉକେଶୀ ମାୟେ।
ଦଶଗ୍ରୀବଙ୍କୁ କୋଳରେ ଧରିଣ ଜନନୀ
ଦେଖିକରି ଆନନ୍ଦ ସୁମାଳି ନନ୍ଦିନୀ।
ଏକ ମୁଖେ ସର୍ବେ ମିଳି କରନ୍ତି ଆହାର
ଗର୍ଭ ପୂରିବାରେ ତହିଁ ସନ୍ତୋଷ କୁମର।
ଜ୍ୟେଷ୍ଠ ସପତଣୀ ଯେ କୁବେରର ମାତା
ଭରଦ୍ୱାଜଙ୍କର ଏ ଅଟଇ ଦୁହିତା ।
ତାଙ୍କ ସଙ୍ଗତରେ ସେ ପ୍ରୀତି ବଢ଼ାଇଲେ
ଏକକୁ ଆରେକ ହିଂସାକାରୀ ସେ ନୋହିଲେ।
ପୁତ୍ର ଜାତ କରି ସେ ବିଶ୍ରବା ମହାମୁନି
ନଉକେଶୀକି ବୋଇଲେ ଶୁଣ ଗୋ କାମିନୀ।
ତୁହି ଯେ ଅସୁରୁଣୀ ଅଶଉଚ ମୋତେ
ବରଣ ମାଳା ଦେଇ ବରଣ କଲୁ ଚିତ୍ତେ।
ତୋହର ମନରେ ଗୋ ଯେବଣ ମାନସିକ
ସେ ଫଳ ପ୍ରାପତ ଗୋ ହୋଇଲା ତୋତେଦେଖ।
ଏବେ ଆଉ ଶୃଙ୍ଗାର ନକରିବୁ ଇଚ୍ଛା
କଲେ ଭସ୍ମ ହେବୁଟି କହିଲି ତୋତେ ବାଞ୍ଛା।
ଏତେ ବୋଲି ମୁନି ପାଣି ମନ୍ତ୍ରି ଦେଲେ
ପିଅନ୍ତେ ନଉକେଶୀ ନପୁଂସକ ହୋଇଲେ।
ମତ୍ତଗର୍ବ ତାର ଯେ ଭାଗିଲା ତତକ୍ଷଣ
ବୃଦ୍ଧନାରୀ ପରାୟେ ହେଲା ତନୁ ଜାଣ।
ସେଠାରୁ ବିଶ୍ରବା ଯେ ମନରେ ବିଚାରିଲେ
ଏକଥା ଅଭୂକ୍ଷଣ ହୋଇଲା ବୋଇଲେ।
ଅସୁରୀ ସଙ୍ଗରେ ମୁଁ ଯେ କଲି ରତିରସ
ବିଚାରିଲେ ଏ କଥା ଅଟଇ ବଡ଼ ଦୋଷ।
ଋଷି ଋଷୀ ସଙ୍ଗରେ ଏବେ କରିବା ରମଣ
ସେ ଶାସ୍ତି ପାଇବା ନା ଆରଜନ୍ମେ ପୁଣ।
ଆପଣାର ଉତ୍ତର ଜାତି ଭୋଗ କଲେ
ଏ ଦେହରେ ନରକ ଦରଶନ କଲେ।
ସମାନ ଲୋକର ଦୋହୀତାକୁ ଯେ ବିହରି
ତେବେ ସେ ବୈକୁଣ୍ଠ ପ୍ରାପତ ସଙ୍ଗେସରି।
ଅଶଉଚ ଲୋକର ଦୋହୀତା ହରିଲେ
ବସୁନ୍ଧରୀ ତାହାକୁ ଛାଡ଼ି ଯାଇ ଭଲେ।
ଧର୍ମ ଶାସ୍ତ୍ର ପଢ଼ି ମୁନି ଜାଣିଲେ ଯେ ତାହା
ଯୋଗେଣ ଅସୁରୀକି ମୁହିଁ କରି ସ୍ନେହା।
ମୋଠାରେ ନଉକେଶୀ ମିଳିଲାକ ଆସି
ରୂପ ଗୁଣ ଦେଖିଣ ମୁଁ ମନରେ ହେଲିତୋଷି।
ପୂର୍ବର ଭବିଷ୍ୟ ଅଛି ଯେବଣ କଥା
ପୁତ୍ରେକ ଉପୁଜିବାରୁ ତା ନାମ ଦଶମଥା।
ବିଷ୍ଣୁଙ୍କ ଦ୍ୱାରପାଳ ପୂର୍ବରୁ ଶାପ ଘେନି
ଅସୁର ରୂପେ ଜାତ ହେଲେ ଭାଇବେନି।
ଭଗ୍ନୀ ସୂପଲେଖୀ ସାକ୍ଷାତେ ଚର୍ଚ୍ଚୀକାଇ
ଦେଖିଣ ମନରେ ଯେ ଭାଳିଲେ ତପୀ ସାଇଁ।

ଏ ଦୁଇପୁତ୍ର ଯେ କୀର୍ତ୍ତି ଅରଜିବେ
ଚଉଦ ଭୁବନରେ କଥା ଗୁହାଇବେ ।
ଏହାଙ୍କର ଜନ୍ମ କର୍ମ ପୂର୍ବରୁ ଅଛି ଜାଣ
ବ୍ରହ୍ମା ରୁଦ୍ର ସହିତେ ହେବେ ଯେ ଗର୍ଜଣ ।
ଏତେ ବୋଲି ମୁନି ଯେ ଚିତ୍ତରେ ବିଚାରି
ପ୍ରଥମେ କଶ୍ୟପ ଋଷି ଯାଙ୍କୁ ଜାତକରି ।
ଯେତେବେଳେ ଋଷି ଯେ ଯାଙ୍କୁ ଜାତକଲେ
ମନରେ ଭାବିଲେ ସେ ଅଗ୍ନିରେ ଝାସଦେଲେ ।
ଯେଉଁ ରୂପ ତାଙ୍କର ନିଜର ପୁଣି ଥିଲା
ଅଗ୍ନିରେ ପଶିଲେ ସେ ରୂପ ହଜିଲା ।
ଏରୂପେ ସାତଥର ଅସୁର ଜାତ କଲେ
ସାତଥର ଅଗ୍ନିରେ ପଶି ନିଷ୍କଳଙ୍କ ହେଲେ ।
ଏବେ ମୋର ବୀର୍ଯ୍ୟରେ ଅସୁର ହେଲେଜାତ
ଏବେ ଅଣ୍ଡ ମୋର ହେଲା ଅପବିତ୍ର ।
ଏମନ୍ତ ବିଚାର ଯେ ବିଶ୍ରବା ଋଷି କଲେ
ମୁଁ ଯେ ହରିଲି ଋଷି ଦୋହୀତା ବିଚାରିଲେ ।
ଏତେକ ଅକୀର୍ତ୍ତି ଯେ ହୋଇଲା ମୋହର
କେବଣ ପ୍ରକାରେ ମୁଁ ପୂଜିବି ବୈଶ୍ୱାନର ।
ଏମନ୍ତ ବିଚାରିଲେ ଆସନ କରି ବସି
ଜଠର ଅଗ୍ନି ଭିତରେ ପଶିଲେ ବ୍ରହ୍ମଋଷି ।
ପରମ ଯୋଗବଳେ ପୁଣିହିଁ ତନୁ ପାଇ
ବିଶ୍ରବା ଋଷି ବୋଲି ନାମ ତା ବୋଲାଇ ।
ଏଣୁ ସେ ବିଶ୍ରବା ଋଷି ଆନ ତନୁ ଧରି
ସେ ଅଣ୍ଡ ଶରୀରୁ ଗଲା ଯେ ତାହାଙ୍କରି ।
ତପ କରିବାରୁ ପାପ ତାପ ତାର ଗଲା
ପିତାର ନାମ ତାର ବିଖ୍ୟାତ ପୁଣ ହେଲା ।
ପୌଲସ୍ତୀ ନାମ ତାର ହୋଇଲା ଯୁଗତେ
ଅଜା ପୌଲସ୍ତୀ ତାଙ୍କର ଅଟନ୍ତି ଯୁଗତେ ।
ଏମନ୍ତେ ପୁଣି ତାଙ୍କର କେତେ ଦିନ ଗଲେ
ପୁତ୍ରଙ୍କୁ ବିଶ୍ରବା ଯେ ବ୍ରତ କରାଇଲେ ।
ଯଜ୍ଞ ପବିତ୍ର ଯେ ତାଙ୍କର କନ୍ଧେ ଦେଇ
ସେଠାରୁ ସନ୍ତୋଷ ଯେ ବିଶ୍ରବା ଋଷି ହୋଇ ।
ବେଦ ପଢ଼ାଇ ତାଙ୍କୁ ମନ୍ତ୍ର ଶିକ୍ଷା ଦେଲେ
ନାନାଦି ବିଦ୍ୟାରେ ସେ ଅଭ୍ୟାସ କରାଇଲେ ।
ଆପଣେ ପୁତ୍ରଙ୍କୁ ଯେ ଘେନି ତପକରି
ଦିନେ ଦିନେ ପୋଏ ତପସ୍ୟା ଆଚରି ।

ଏଣୁ ସେ ପୁତ୍ରମାନେ ହେଲେ ବଳବାନ
ବହୁ ଅନ୍ୟାୟ କଲେ କୁମ୍ଭକର୍ଣ୍ଣ ଦଶାନନ ।
ରାକ୍ଷସ ପ୍ରକୃତି ଧରି ଶୂକର ମାଂସ ଖାନ୍ତି
ପିତା ତିଆରିବା ବୋଲ ସେ ନ କରନ୍ତି ।
ତପୀମାନଙ୍କୁ ସେ ଯେ ଉପଦର୍ପ କଲେ
ଅତି ପ୍ରବଳେ ସେ ଋଷିଙ୍କି ଖାଇଲେ ।
ବ୍ରହ୍ମହତ୍ୟା କଲେ ଅସୁର ଦୁରାଚାର
ଧର୍ମ ଶାସ୍ତ୍ର ତେଜିଣ ପାପରେ ବେହାର ।
ବିଭୀଷଣ ମହାତମା ପାପକୁ ଭୟେକଲା
ପିତାର ସଙ୍ଗରେ ସେ ତପ ଆଚରିଲା ।
ଧର୍ମରେ ପରିପୂର୍ଣ୍ଣ ହୋଇଲା ଯେ ସାନ
ଦୁଷ୍ଟପଣ କଲେ ଯେ ରାବଣ କୁମ୍ଭକର୍ଣ୍ଣ ।
ସୁବର୍ଣ୍ଣର ଗିରିବର ଅତି ଯେ ଅଝର
ଅଗମ୍ୟ ବିପିନ ଦିବସରେ ଅନ୍ଧକାର ।
ପୁଣ୍ୟସ୍ଥାନ ଦେଖିଣ ତପୀମାନେ ଥିଲେ
ଦଶଗ୍ରୀବ କୁମ୍ଭକର୍ଣ୍ଣ ଡରେ ପଳାଇଲେ ।
କନ୍ଦରେ ଋଷି ସୁତ ନ ଦେଖି ଭାଇବେନି
ମଦମାଂସ ଭକ୍ଷିବାରେ ବୁଲନ୍ତି ଭାଇବେନି ।
ସିନ୍ଧୁପାରି ହୋଇଣ ଜମ୍ବୁଦ୍ୱୀପ ଯାନ୍ତି
ଜପି ତପି ଯେ ପଡ଼ଇ ତାକୁ ମାରି ଖାନ୍ତି ।
ଏଥୁ ଅନନ୍ତରେ କେତେ କାଳ ଗଲା
ଏକ ଦିନକରେ ବଇଶ୍ରବଣ ବିଜେ କଲା ।
ସୁବଳୟା ପର୍ବତରେ ଭେଟିଲା ଯାଇଁ ତାତ
ଆରୋହି ଥିଲା ଯେ ପୁଷ୍ପକ ନାମେ ରଥ ।
ନବରତନ ମଣ୍ଡିଣ ଅଛଇଁ ସେ ଯାନ
ସାରଥି ବିହୀନ ଗଗନେ ଉଡ଼ଇ ବିମାନ ।
ବିମାନୁ ଓହ୍ଲାଇ ମିଳେ ପିତାଙ୍କ ପାଶର
ନମସ୍କାର କଲା ସେ ପିତାର ପୟର ।
ନିଜ ଜନନୀକି ସେ ଓଳଗି ହେଲା ପୁଣି
ମାତା ବୋଇଲେ ବାବୁରେ ଶୁଣ ଦକ୍ଷମଣି ।
ମୋର ସପତଣୀ ଏ ସୁମାଳୀ ଦୋହିତା
ତାହାଙ୍କୁ ରଖିଲେ ଯେ ଦେଖ ତୋରପିତା ।
ଏହାଠାରୁ ଜାତ ତିନି ପୁତ୍ର ଏକ ଝିଅ
ଏ ତୋର ସାବତ ମାତା ଯାକୁ ମାନ୍ୟହୁଅ ।
ଶୁଣିଣ ବଇଶ୍ରବଣ ନମସ୍କାର କଲା
କଥାମାନ ପଚାରି ସନ୍ତାପିତ ହେଲା ।

ଦଶଗ୍ରୀବକୁ ଚାହିଁ ବୋଲଇ ନଉକେଶୀ
ଏ ତୋହର ଜ୍ୟେଷ୍ଠ ଭାଇ ନମସ୍କାର ହୁଅସି ।
ଶୁଣିଣ ଦଶାନନ ବୋଲେ କୋପକରି
ଏ କିମ୍ପା ବଡ଼ଭାଇ ଲୋ ହୋଇବ ମୋହରି ।
ସୋଦର ହୋଇଲେ କରନ୍ତା ମୋତେ ଭାବ
ମୁହିଁ ବନେ ବୁଲଇଁ ଏ କରେ ଏଡ଼େ ଭୋଗ ।
ଏହି ରତ୍ନ ଆଭରଣ ମୁହିଁ ଯେ ଶୂନ୍ୟ କାୟେ
ଖୁଞ୍ଚ ଖଣ୍ଡା ମାଡ଼ିଣ ମୁଁ ଗମନ କରୁଥାଏଁ ।
ଏ ରଥ ଚଢ଼ିଣ ଗଗନ ମାର୍ଗରେ ଆସଇ
ଏହାର ହୃଦରେ ମୋତେ ଦୟା ନ ବସଇ ।
ଏବେ ନମସ୍କାର ମୁଁ ହୋଇବି ତାକୁ ଯେବେ
ଏ ବିମାନ ଗୋଟି ଭାଇ ଦେବକି ମୋତେ ଏବେ ।
ଶୁଣିଣ ରାବଣକୁ କୁବେର କୋପକରି
ପୁଣିହିଁ ବୋଲଇ ଶୁଣ ଆହେ ଦଶଗିରି ।
ଏ ଦେବ ବିମାନ ଯେ ତୋତେ ନ ଯୋଗାଇ
ଦିଗପାଳ ହୋଇଲେ ଏଥିରେ ବସଇ ।
ଏତେ କହିଣ ଚାଳି ଦେଲା ସେ ବିମାନ
ଆକାଶ ମାର୍ଗରେ ଶୂନ୍ୟେ ଉଡ଼େ ଦେବଯାନ ।
ସୁବର୍ଣ୍ଣର ଘଣ୍ଟି ଯେ ଘାଘୁଡ଼ି ସ୍ୱର ବାଜେ
ଅଷ୍ଟରତ୍ନେ ସକଳ ଦର୍ପଣ ବିରାଜେ ।
ଫରହର ଉଡ଼ଇ ଯେ ନେତର ଚିରାଳ
ଚଉକତି ଲମ୍ବଇ ମୁକ୍ତା ମାଳ ମାଳ ।
ଦେବାଙ୍ଗ ପତନୀରେ ମଣ୍ଡଣି ଅଛି ରଥ
କୁବେର ଯାନ୍ତେଣ ଚାହିଁଲା ଦଶମାଥ ।
ହିଂସା ମନେ ଧରି ସେ ଅନାଇଁ ରହିଲା
କୁବେର ଶିରୀ ଦେଖିଣ କାତର ହୋଇଲା ।
ବୁକୁ ତାର ଦୁକୁ ଦୁକୁ ଖର ଯେ ନିଃଶ୍ୱାସ
ଦେହ ଛାଡ଼ି ଉଡ଼ି ଯେହ୍ନେ ଯାଅଇ ସାହସ ।
ରାଗରେ ସେହି ଯେ ଥନ ଥନ କଲା ଆଖି
କିଜାଣି ସେହୁ ଯେ ଅଟେ ନିରିମାଖୀ ।
ମୁଖ ଶୁଖାଇଣ ଯେ ହୋଇଲା ନିସତ
ଅଳପ ହୋଇ ହସିଣ ହେଲା ମୁରୁଛିତ ।
ଚାହୁଁ ଚାହୁଁ ଅଦୃଶ୍ୟ ହେଲା ଦେବଯାନ
ମାତାକୋଳେ ବସିଣ କାନ୍ଦେ ଦଶାନନ ।
ଜନନୀ ବୋଇଲା କିପାଁଇ ବାବୁ କାନ୍ଦୁ
କର୍ମ ପ୍ରାଣୀଙ୍କର ଅଟଇଟି ନିଜବନ୍ଧୁ ।
ମାତା ଉଦ୍ଧାରଣଟି ଧର୍ମ ଏକା ସିନା
ତୁହି ଏବେ ବଳାରେ ଜପକର କିନା ।
ତୋର ଜ୍ୟେଷ୍ଠ ଭାବରେ କୁବେର ଅଟଇ
ବ୍ରହ୍ମାଙ୍କୁ ଧ୍ୟାନ କରି ସେ ଅନେକ ଧନପାଇ ।
ସେହି ତପ କରି ସେ ଚଢ଼ିଲା ପୁଷ୍ପକ
ଏବେ ତପ କରିରେ ଭବୁସି ହୁଅ ଲୋକ ।
ଏକା ବାପରୁ ତୁମ୍ଭେରେ ଅଟ ଚାରିପୁଅ
ଯେ ଯାହା କର୍ମରେ ବିହି ଲେଖିଛି ତାହା କହ ।
ଭରଦ୍ୱାଜଙ୍କର ଝିଅ କେବଣ ତପ କଲା
ତାର ପୁତ୍ର ଗୋଟିଏ ଦେବତା ହୋଇଲା ।
ମୁହିଁ ଚଣ୍ଡାଳୁଣୀରେ ସେହି ଋଷିର ନାରୀ
ତିନି ପୁତ୍ର ଉପୁଜାଇ ମୁଁ ହେଲି ବନଚାରୀ ।
ମୋ କର୍ମରେ ଯାହା ଅଛି ଭୁଞ୍ଜିବଇଁ ତାହା
ମାତାର ବାଣୀ ଶୁଣି ବୋଲେ ବିଂଶବାହା ।
ଶୁଣ ତୁ ଜନନୀ ଲୋ ମୁଁ କରିବି ତପ
ଶୁଣି କୋଳେ ନେଇଣ ବସାଇଲେ ବାପ ।
ମୁଖରେ ଚୁମ୍ବନ ଦେଇ ବୋଇଲେରେ ବାବୁ
କୁବେର ସମ୍ପଦ ତୋହର ସିନା ସବୁ ।
ଏକା ପିତା ତୁମ୍ଭର ମାତା ତୋ ଅନ୍ୟାନ୍ୟ
ଆଉ କଥାମାନରେ କେବଳ ନୋହେ ପୁଣ ।
ତୁ ତାହାର ଅର୍ଥରେ ଅଟୁ ଅଧିକାରୀ
ସେ ଲଙ୍କା କଟକ କି ନୋହେ ଯେ ତୋହରି ।
ମାଇକା ଅଜା ତୋହର ସେଥିରେ ପୁଣିଥିଲା
ବାସୁଦେବଙ୍କର ସଙ୍ଗେ ଖଣ୍ଡିଆଳି ହେଲା ।
ସେ ଯିବାରୁ କୁବେର ସେଥିରେ ରାଜାଅଛି
କିମ୍ପାଇଁ କ୍ରୋଧ ହେଉରେ ନୌକେଶୀରବସି ।
ମୋହର ଅର୍ଜିବାରରେ ଅଟଇ ରତ୍ନମହୀ
ତୁହି ସାଧକଲେରେ ଲଙ୍କା ଭୋଗ ହୋଇ ।
ରାଜ୍ୟ ଭାଇ ବାହୁରେ ସହିବା ବଡ଼ ଦୁଃଖ
ରାଜାଠାରେ ସମସ୍ତେ ହୁଅନ୍ତି ବଇଧୃତ ।
ସୁକୁମାର ଦେହକୁ ଗଞ୍ଜିବୁ କାହିଁ ପାଇଁ
ତୋତେ ଅବା କେବଣ ସମ୍ପତ୍ତି ଭୋଗ ନାହିଁ ।
ମୁଁ କେମନ୍ତେ ମୂର୍ଚ୍ଛିବିରେ ବନକୁ ତୋତେପେଶି
କ୍ଷଣେ ଛାଡ଼ି ତୋତେରେ ନପାରେ ନୌକେଶୀ ।
ଦେହଥିଲେ ତୋରରେ କରିବୁ କେତେପୁଣ୍ୟ
କୁମାର ବୟସ ତୋର ହୋଇବରେ ଶୂନ୍ୟ ।

ପିତାର ବଚନ ଶୁଣି ରାବଣ ମନ ତୋଷ
ଏଥୁ ଅନନ୍ତରେ ଯେ ଗଲା ଦିନ ଦଶ ।
ସେଠାରୁ ବାହାରିଲା କୁମ୍ଭକର୍ଣ୍ଣ ବୀର
ଯାଇଣ ଉଠିଲା ଯେ ସୁବଳୟା ଗିରି ପର ।
ପୃଥ୍ୱୀକି ଚାହିଁ ଆକାଶକୁ ଦେଲା ଦୃଷ୍ଟି
ଏତେ ବୋଲି ଭାଳିଣ ଗଗନେ ଯାଇଁ ଉଠି ।
ବିଜୁଳୀ ଝଟକ ଜାଣି ସ୍ୱର୍ଗ ପୁରକୁ ଯାଇଁ
ଗଗନର ପୁରେ ସେ ଯାଇଁଣ ମିଳଇ ।
ଦେଖିଲା ଅମରାବତୀ କଟକ ବିତପନ୍ନ
ବାରି ନ ପାରିଲା ପୁର ମନ ତାର ଛନ୍ନ ।
ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି ହେଲେକ ଏକରାଶି
ମଣିଗଣ କିରଣ ଝଟକ ପ୍ରକାଶି ।
ଆଗେଣ ଦେଖିଲା ନନ୍ଦନ ବନ ଗୋଟା
ଦେଖିକରି ପ୍ରଶଂସଇ ବିଶ୍ରବାର ବେଟା ।
ସାଧୁରେ ବାସବ ତୋହର ତୋଟା ପୁଣ
ତୁହି ପୁଣ କଶ୍ୟପ ଋଷିର ଅଟୁ ସୁନ ।
ଶତେକ ଅଶ୍ୱମେଧ ଯାଗ ତୁହି କଲୁ
ସତ୍ୟ କୃତ୍ୟ ନାମ ଯେ ଇନ୍ଦ୍ର ବୋଲାଇଲୁ ।
ଏପୁରେ ତୁହି ଭାଗ୍ୟରେ ଅଛ ସୁରପତି
ଆମ୍ଭେ ଅଟୁ ବାବୁରେ ପୌଲସ୍ତୀର ନାତି ।
ତପକଲେ ସ୍ୱର୍ଗରେ ଭୋଗ କରି ପାରି
ପିତାର ବୋଲେ ଆମ୍ଭେ ଏଡ଼େ ଯଶ ଛାଡ଼ି ।
ଏତେ କହି ନନ୍ଦନ ବନରେ ପଶିଲା
କଦଳୀ ବନକୁ ହସ୍ତୀ ଯେମନ୍ତେ ବିଧ୍ୱଂସିଲା ।
ଫେରି ଫେରି ଚାଲନ୍ତେ ମାରି ବାହାଳେଡ଼ା
କେବଣ ବୃକ୍ଷ ଧରି ଓଟାରି ଖାଏ କଡ଼ା ।
କାହିଁରେ ବାହାଦଣ୍ଡ ମାରଇ ଆଉଜାଇ
ଗୋଇଠା ମାରିଣ ତାକୁ ଭାଙ୍ଗି ସେ ପକାଇ ।
ପିଠିକି ଆଉଯାଇ ଫିଙ୍ଗି ଦିଅଇ ତାହା
କେବଣ ବୃକ୍ଷରେ କଚାଡ଼େ ବେଢ଼ି ବାହା ।
କେଉଁ ବୃକ୍ଷରୁ ଡାଳ ସେ ଭାଙ୍ଗିଣ ପକାଇ
ମାଡ଼ି ଉଠନ୍ତେ କେଉଁ ବୃକ୍ଷ ତୁଳା ହୋଇ ।
ଫଳି ଫୁଟିବାର ବୃକ୍ଷ ବହୁତ ଉପାଡ଼ଇ
ଏକର ଉପରେ ଆରେକ କଚାଡ଼ଇ ।
ଅମୃତ ସମାନ ଫଳ ଲୋଟଇ ଧରଣୀ
ସୁଗନ୍ଧରେ ପୁଷ୍ପମାନ ହେଲେ ଏଣିତେଣି ।
ଲହୁଲୀ ବୃକ୍ଷମାନେ ଯେ ସେଥିରେ ପନ୍ତୀ ପନ୍ତୀ
ଫଳିଲାର ବୃକ୍ଷମାନ ନାଶ ଯାଉଛନ୍ତି ।
ମହା ମହା ତରୁ ଯେ ହେଲେ ତହିଁ ଚୂର
ମଉଷଧି ବନସ୍ତକୁ କଲା ନାରଖାର ।
ରକ୍ଷା ଲୋକ ଦେଖି ଯେ ଧାଇଁଲେ ସମସ୍ତ
ନେଇଣ ପହୁଡ଼ିଲେ ତୀକ୍ଷ୍ଣ ଭାଲୀକୋନ୍ତ ।
ତାହା ସହି ଦୈତ୍ୟ ଧାଇଁଲାକ ରାଗେ
ଗନ୍ଧର୍ବ ବଳଙ୍କୁ ସେ ଓଗାଳିଲା ଆଗେ ।
କରେ ଧରି ଆଣି ଗର୍ଭକୁ ଦିଏ ଗିଳି
ବିକଟାଳ ରଡ଼ି ଯେ ଛାଡ଼େ ମହାବଳି ।
ବାର ବରଷ ବୟସ ଅଟେ ସେ ଅସୁର
ଗନ୍ଧର୍ବ ବଳକୁ ସେ କଲା ନାରଖାର ।
ଯେତେକ ଉବୁରିଲେ ପଳାଇଣ ଗଲେ
ଇନ୍ଦ୍ରଙ୍କର ଆଗରେ ଯାଇଁଣ ଜଣାଇଲେ ।
ଭୋଦେବ ନୈକେଶୀର ନନ୍ଦନ ଯେ ଆସି
ନନ୍ଦନ ବନକୁ ତୋର ପକାଇଲା ଧ୍ୱଂସି ।
ଅସୁରୀ ନନ୍ଦନ ଯେ ବ୍ରାହ୍ମଣ ସ୍ୱରୂପୀ
ତୋଟାରେ ପଶିଲା ସେ ହୋଇ ମହାକୋପୀ ।
ବନସ୍ତ ଭାଙ୍ଗନ୍ତେ ଯେ ଆମ୍ଭେ ଯୁଦ୍ଧକଲୁଁ
ଛେଲ ଚକ୍ର ଗଦା ଯେ ଶକତି ମାଇଲୁଁ ।
ଅସ୍ତ୍ର ବଞ୍ଚାଇଣ ସେ ଘୋର ରଡ଼ିଦେଲା
ଗନ୍ଧର୍ବ ବଳଧରି ଗର୍ଭକୁ କ୍ଷେପିଲା ।
ଶୁଣି ସୁର ରାଜା ଐରାବତ ସଜକରି
ସଂଗ୍ରାମକୁ ଧାଇଁଲା କରେ ବଜ୍ରଧରି ।
ଯେବଣ ଶିରେ ବୃତ୍ତା ଅସୁରକୁ ମାରି
ଯେଉଁ ଅସ୍ତ୍ରେ ସର୍ବ ଦଇତ୍ୟ ନାଶକରି ।
ଯେ ଅସ୍ତ୍ରମାନ ସବୁ ବାଛିଣ ଧଇଲା
ଆପଣାର ଅସ୍ତରେ ନେଇଣ ଠୁଳକଲା ।
ବଳରାମ ଦାସ ମୁଁ କିଙ୍କର ରୂପେ ଥିଲି
କୁମ୍ଭକର୍ଣ୍ଣକୁ ଦେଖଇ ମୁଁ ସେଠାରୁ ପଳାଇଲି ।
ନାରାୟଣ ପାଦେ ମୁଁ ଯେ ପଶିଲି ଶରଣ
ଶରଣ ରଖିଲେ କ୍ଷୀର ସାୟେର ବାସୀ ପୁଣ ।
ଏଥୁ ଅନନ୍ତରେ ଶୁଣ ହେ ଚାପଧାରୀ
ଗରୁଡ଼ା ଶରକୁ ଇନ୍ଦ୍ର ପିଟିଲା ଖର କରି ।
ଏବେ ସେହି ଅସ୍ତ୍ର ସେ ମାଇଲା ବେଗ କରି
କିଛିହିଁ ନୋହିଲା ଶର ଆସିଲା ଫେରିକରି ।

ସଙ୍ଗରେ ତ୍ରୀଦଶ ବଳ ଘେନିଣ ସେ
ଗନ୍ଧର୍ବ ବିଦ୍ୟାଧର ପିଟନ୍ତି ଗଦା ରୋଷେ ।
ମାର ମାର ବୋଲି ଶୁଭିଲାକ ଧ୍ୱନି
ଆନନ୍ଦରେ ସମର ଦେଖିଲେ ସୁରମୁନି ।
ଏଥୁ ଅନନ୍ତରେ କୁମ୍ଭକର୍ଣ୍ଣ ବୀର
ମତ୍ତ ଗର୍ବରେ ସେ ଚାଲଇ ଧୀର ଧୀର ।
ଦୂରରୁ ଦେଖି ଇନ୍ଦ୍ର କୋପେ ଡାକ ଦେଲେ
କାହିଁ ତୁ ଯିବୁ ଆଜି ବୋଲିଣ ବୋଇଲେ ।
ଆରମ୍ଭ ଲଗାଇ ସେ ହସ୍ତୀକି ଦେଲା ଚାଳି
ପର୍ବତ ସମାନେ ବଜ୍ର ଧରିଣ ଅଛି ତୋଳି ।
ପବନରୁ ବେଗେ ଯେ ଧାଏଁ ମତ୍ତଗଜ
ଦେଖିଣ ଧାଇଁଲା ଦଶଗ୍ରୀବର ଅନୁଜ ।
ଏସନକ ସମୟରେ ଶଚୀର ବିଳାସ
ଐରାବତ କଲେ ନେଇ କୁମ୍ଭକର୍ଣ୍ଣ ପାଶ ।
ବୋଇଲେ ଚଣ୍ଡାଳରେ ମୋର ପରଜାଙ୍କୁ ଖାଉ
ଏଡ଼େ ଦୁରାତ୍ମା ତୁରେ କେବଣ ପୁରେ ରହୁ ।
ନନ୍ଦନ ବନ ମୋର ଦେବଙ୍କ ଆଶ୍ରମ
ଅମର ମୌଷଧି ଅଛି ଫଳମୂଳ ମାନ ।
ଏହା କେବଣ ଅର୍ଥରେ ଭାଙ୍ଗିଲୁ ଚଣ୍ଡାଳ
ନିଶ୍ଚୟ ପୁରିଲା ତୋର ଜାଣିଥାଅ କାଳ ।
ଏତେ ବୋଲି ବଜ୍ର ଯେ ମୋର ସୁରରାଣ
ଆଜ ତୋର ମୁହିଁ ନେବିରେ ପରାଣ ।
କୁମ୍ଭକର୍ଣ୍ଣ ମସ୍ତକରେ ମାଇଲା ପୁଣ ନେଇ
ସହିଲା ବହାବୀର ଆଗଭର ହୋଇ ।
ମୁଣ୍ଡରେ ବାଜି ଅସ୍ତ୍ର ଗଲାକ ଉପୁଡ଼ି
ରାଗରେ କୁମ୍ଭକର୍ଣ୍ଣ ଛାଡ଼େ ଘୋର ରଡ଼ି ।
ଐରାବତ ଦନ୍ତ ଧରିଣ ଉପାଡ଼ିଲା
କପାଳର ଉପରେ ନେଇଣ ପିଟିଲା ।
ରକତେ ଜର ଜର ଦିଶେ ତା ବଦନ
ବ୍ୟଥା ପାଇଣ ହସ୍ତୀ କରଇ ଗର୍ଜନ ।
ସେହି ହସ୍ତୀ ଦନ୍ତ ଧରିଣ ଇନ୍ଦ୍ରକୁ ବେଗେପିଟି
ମୋହ ହୋଇ ଶଚୀ ସାଇଁ ହସ୍ତୀର କନ୍ଧେଲୋଟି ।
ଦେଖିଣ ପଳାଇଲେ ଗନ୍ଧର୍ବ ସକଳ
ସେଠାରୁ କୁମ୍ଭକର୍ଣ୍ଣ ଗଲା ମର୍ତ୍ତ୍ୟପୁର ।
କ୍ଷଣକରେ ଚେତନା ପାଇଲା ସୁରପତି
ବାହୁଡ଼ି ଗଲା ସେ ବିସ୍ମୟେ କରି ମତି ।

ବାର୍ତ୍ତା ପାଇଣ ଯେ ଅଇଲେ ପିତାମହ
ଦେଖିଣ ବଜ୍ରଧରି କାନ୍ଦି ଉଠାଇ କୋହ ।
ଭୋ ପିତା କିଞ୍ଚିତ ଦଇତରେ ମୁଁ ହେଲି ଗଞ୍ଜି
ଐରାବତ ମାରିଣ ନନ୍ଦନ ବନ ଭାଞ୍ଜି ।
ଶୁଣିଣ ବେଦପତି ବୋଇଲେ ତୁ ଶୁଣସି
ମୋ ଆଗେ ଭାଳୁ କିମ୍ପା କଶ୍ୟପର ବଂଶି ।
ଯେ ତୋତେ ମାଇଲା ସେ ବିଶ୍ରବାର ଶିଷ୍ୟ
ବିଷ୍ଣୁର ଦ୍ୱାରପାଳ ସେ ଅଟଇ ବିଶେଷ ।
ହିରଣ୍ୟ ହିରଣାକ୍ଷ ଅପୂର୍ବ ମୁରତି
ପ୍ରଥମେ ଜାତ ହୋଇ ମନ୍ଥିଲେକ ପୃଥ୍ୱୀ ।
କେତେବେଳେ ପୁଣି ବାସୁଦେବ ହସ୍ତେ
ଦ୍ୱିତୀୟ ଅବତାରେ ମଲେ ସେ ସାକ୍ଷାତେ ।
ଚଉଦ ଗଣ୍ଡା ଯୁଗ ସେ ଲଭିବେ ସୁଖଶିରୀ
ବାସୁଦେବ ନ ମାଇଲେ ସେ ଆନରେ ନମରି ।
ଆଜୁଁ ବିକଳ ତୁ ନୁହ ସୁରରାଯେ
ଏତେ କହି ବ୍ରହ୍ମା ଯେ ନିଜ ପୁରେ ଯାଏ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣହେ ଦେବକାଶୀ
ଐରାବତ ଦନ୍ତ କୁମ୍ଭକର୍ଣ୍ଣ ଉପାଡ଼େ ଆସି ।
ସେ କଥା ରାମ ଆଗେ ଅଗସ୍ତୀ କହିଲେଟିକି
ଶୁଣିଣ ରଘୁନାଥ କିସ ବୋଇଲେ କି ।
ସେକଥା ମୋର ଆଗେ କହ କାଶୀନାଥ
ଗୁପତ କଥା ମୋତେ ହେଲା ଯେ ଅଦୃଶ୍ୟ ।
ଈଶ୍ୱର ବୋଇଲେ ଗୋ ଶୁଣ ଶାକମ୍ଭରୀ
ସେହିକଥା ଅଗସ୍ତିଙ୍କି ଶ୍ରୀରାମ ପଚାରି ।
ଶ୍ରୀରାମ ପଚାରିଲେ ଅଗସ୍ତୀ ମୁଖ ଚାହିଁ
ଐରାବତର ଦୁଇଦନ୍ତ ଉପୁଡ଼ଇ ।
ସେ ହସ୍ତୀର କେତେ ଦନ୍ତ କହ ମୁନିବର
ଅଗସ୍ତୀ ବୋଲନ୍ତି ତାର ଚଉଦନ୍ତ ସାର ।
ସୁରାସୁରୀ ଯେତେବେଳେ ଭାଗ୍ୟରଥି ଆଣି
ସପତ ସାଗରରେ ପୂର୍ଣ୍ଣ କଲେ ପାଣି ।
ତେତେବେଳେ ଐରାବତ ମେରୁରେ ଦନ୍ତମାରି
ତିନି ଦନ୍ତ ଉପୁଡ଼ିଲା ଦନ୍ତେ ଭଗ୍ନକରି ।
ତିନି ଦନ୍ତ ଥିଲା ଯେ ଆଦ୍ୟରୁ ମୂକ ହୋଇ
ଭଗ୍ନ ଦନ୍ତ ଅର୍ଦ୍ଧେକ ବାହାରକୁ ଦିଶୁଥାଇ ।
ଏବେ କୁମ୍ଭକର୍ଣ୍ଣ ଉପାଡ଼ିଲା ଦନ୍ତେ
ସେ ଦନ୍ତ କଅଁଳିଲା ଅସୁର ଆସନ୍ତେ ।

ରାମ ବୋଇଲେ ସେ ନନ୍ଦନ ବନ ପୁଣ
ସେ ବନକୁ ରୋପିଲେ କି ହୋଇଲା ତହିଁଲୀନ ।
ଅଗସ୍ତୀ ବୋଇଲେ କୁମ୍ଭକର୍ଣ୍ଣ ଆସିବାରୁ
ସେ ବନକୁ ଯତନ କଲେ ଇନ୍ଦ୍ରଗୁରୁ ।
ଭଙ୍ଗା ତୁଟା ଯାହାଥିଲା ବାହାର କରିଦେଲେ
ଯେଝା ସ୍ଥାନେ ମୂଳମାନ ନେଇ ଲଗାଇଲେ ।
ଗଙ୍ଗାରୁ ଜଳ ଦିଅନ୍ତେ ପଲ୍ଲବିଲା ସେ ବନ
ଶୁଣିଣ ରାମଚନ୍ଦ୍ର ଆନନ୍ଦ କଲେ ମନ ।
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ଅଗସ୍ତୀ କହିଲେ ରାମ ଆଗରେ ବିସ୍ତାରି ।
ଏଥୁ ଅନନ୍ତରେ ଯେ ବୋଲନ୍ତି ଅଗସ୍ତୀ
ଏକ ମନେ ଶୁଣ ହେ ଜାନକୀର ପତି ।
ନନ୍ଦନବନ ଭାଙ୍ଗିଲା କୁମ୍ଭକର୍ଣ୍ଣ ବୀର
ମର୍ତ୍ତ୍ୟ ପୁରକୁ ସେ ଅଇଲା ଧାତିକାର ।
ସୁବଳ ପର୍ବତର ଶିଖରେ ସେ ମିଳି
ଦେବ ନଦୀରେ ପଶି ସେ ଶରୀର ପଖାଳି ।
ଘଡ଼ିଏ ବିଳମ୍ବ କରି ମିଳିଲାକ ଘରେ
ସ୍ୱର୍ଗପୁର କଥା କହେ ରାବଣ ଆଗରେ ।
ଶୁଣିଣ ଦଶଗ୍ରୀବ ହେଲା ଯେ ସନ୍ତୋଷ
ଏଥୁ ଅନନ୍ତରେ ଯେ ଶୁଣ ଦିବ୍ୟରସ ।
ଯେଉଁଦିନ କୁମ୍ଭକର୍ଣ୍ଣ ସ୍ୱର୍ଗପୁର ଗଲା
ସେଦିନ ରାବଣ ଯେ ପାତାଳେ ପଶିଲା ।
ସୁବଳ ଗିରିରେ ସେ ଅଛଇ ବିମ୍ବର
ଦେଖିଲା ବିମ୍ବର ସେ ପଶିଲା ଭିତର ।
ଯାନ୍ତେଣ ପାତାଳ ପୁରରେ ପରବେଶ
ପୁରେକ ଦେଖଇଲା ସେ ନଉକେଶୀ ଶିଷ୍ୟ ।
ରାକ୍ଷସ ବଳ ସେଥବରେ କଳଣା ନଯାଇ
ରଥ ଗଜ ଅଶ୍ୱ ଯେ ସେଥିରେ ସଜହୋଇ ।
ଦେଖିଣ ଦଶାନନ ପଚାରେ ପୁଣ ତହିଁ
ତୁମ୍ଭର କିସ ନାମ ଯେ ଉତ୍ପତ୍ତି ହେଲ କାହିଁ ।
କିପାଇଁ ଚତୁରାଙ୍ଗ ବଳ ସଜକର
ଶୁଣ ଦଶଗ୍ରୀବକୁ ଚାହିଁଲେ ନିଶାଚର ।
ଅପୂର୍ବ ଦେଖିଣ ସେ କହନ୍ତି ବାରତା
ଯାହା ତୁ ପଚାରିଲୁ ଶୁଣରେ ଦଶ ମଥା ।
ବିଷ୍ଣୁ ଦେବତାକୁ ଆମ୍ଭେ ସର୍ବଦା ଯେ ଡରି
ଶ୍ରୀହରିର ଭୟେ ଆମ୍ଭେ ଶହସ୍ର ନଧରି ।
ପୁଣି ଦଶକନ୍ଧ ଯେ ପଚାରେ ତାଙ୍କୁ ରହି
ନାରାୟଣ ଦେବତା ଅଛି ପୁଣ କାହିଁ ।
ଦୈତ୍ୟେ ବୋଇଲେ ହରିର ବୈକୁଣ୍ଠପୁରେ ଘର
କ୍ଷୀର ସାୟେର ଭିତରେ ଶୟନ ତାଙ୍କର ।
ଦଶାନନ ବୋଲେ ସେ ଏବେ କି ଆସିଲଇଁ
ଅସୁରେ ବୋଇଲେ ତାକୁ ଦେଖା ଏବେ ନାହିଁ ।
ହସଇ ନଉକେଶୀର ତନୟ ଏହା ଶୁଣି
କିପାଇଁ ତୁମ୍ଭେମାନେ ନପାର ତାକୁ ଜିଣି ।
ଚକ୍ଷୁରେ ନଦେଖି ତୁମ୍ଭେ ଥାଠ ସଜକର
ଶୁଣିଣ ଉଚ୍ଚସ୍ୱରେ ବୋଲନ୍ତି ଅସୁର ।
ତୁହୋ ଦଶାନନ ନଜାଣୁ ଶ୍ରୀହରିର ମାୟା
କାଠର ଭିତରୁ ସେ ବାହାର କଲା କାୟା ।
ହିରଣ୍ୟ କେଡ଼େ ଦୈତ୍ୟ ତାକୁ ବିଦାରିଲା
ଅଦଭୂତରେ ସେ ସ୍ତମ୍ଭରୁ ବାହାରିଲା ।
ଆମ୍ଭ ଅସୁରଙ୍କର ନୃପତି ସୁମାଳୀ
ଏହାର ଦୁଇଭାଇଙ୍କି ମାଇଲେ ଦ୍ୱନ୍ଦ୍ୱ କରି ।
ତ୍ରୀପୁରେ ପ୍ରତିଜ୍ଞାବନ୍ତ ଅଟନ୍ତି ବେନିଭାଇ
ସ୍ୱର୍ଗରେ ଯୁଝିବେ ବୋଲି ଗଲେକ ନିଘାଇ ।
ଦେବଙ୍କର ଠାକୁର ଯେ ଅଟନ୍ତି ନାରାୟଣ
ଗରୁଡ଼ ଚଢ଼ି ଆସି କଲେ ମହାରଣ ।
ମାଳି ସୁମାଳିଙ୍କି ସେ ଚକ୍ରରେ ଛିଣ୍ଡାଇଲେ
ଆବର ଶକ୍ତି ମାଲ୍ୟବନ୍ତକୁ ମାଇଲେ ।
ସୁମାଳୀ ପଳାଇଲା ପଛଘୁଞ୍ଚା ଦେଇ
ଦୟା କରି ବାହୁଡ଼ିଲେ କମଳାର ସାଇଁ ।
ସଇନ୍ୟବଳ ଘେନି ପଳାଏ ସୁମାଳୀ
ଲଙ୍କା ଗଡ଼ରେ ପ୍ରବେଶ ହେଲା ଆସିକରି ।
ଲଙ୍କା ସମ୍ପଦ ସୁମାଳୀ ଛାଡ଼ି ପଳାଇଲା
ଶ୍ରୀହରିର ଭୟେ ତହିଁ ରହି ନପାରିଲା ।
ଏବେ ବାହୁଡ଼ି ରାଜ୍ୟକୁ ମନ ସେ କରଇ
ସୁମାଳୀ ଦୈତ୍ୟ ଦିନେ ଦେଖିବାକୁ ଯାଇ ।
ସଙ୍ଗରେ ଦୋହୀତା ଯେ ତାହାର ଗୋଡ଼ାଇ
ତାକୁ ନେଇ ବିଶ୍ରବା ଋଷିଙ୍କି ସେ ଦେଇ ।
ଶାପ ଦେବା ଡରେ ସେ ଛାମୁକୁ ନଇଲା
ଲଙ୍କାଗଡ଼ ଦେଖି ସେ ଅଲଗେ ରହିଲା ।
ସେଠାରୁ ଦୋହିତାକୁ କହିଣ ଛାଡ଼ିଦେଲା
ଭାବୁସୀ ହୋଇ ଦୋହିତା ଋଷି ସଙ୍ଗେ ପ୍ରୀତିକଲା ।

ତାହାକୁ ସପକ୍ଷ ଯେ ହେଲେ ଋଷି ପୁଣି
ବାରତା ପାଇଲୁଁ ନୃପତିଠାରୁ ଶୁଣି ।
ତିନିପୁତ୍ର ଦୁହିତା ଏ ହୋଇଲେ ତାହାର
ବନସ୍ତରେ ଅଛନ୍ତି ସେ ପିତାଙ୍କ ସଙ୍ଗର ।
କୁବେର ଜ୍ୟେଷ୍ଠ ଭାଇ ଅଟଇ ତାଙ୍କର
ଋଷି ଦେବାରୁ ଭୋଗ କଲେ ଲଙ୍କାପୁର ।
ସାବତ ଭାଇ ବୋଲି ତାହାକୁ ଲେଚ୍ଛିଲା
ଆପେ ଭଲେ ଥିବ ବୋଲି ମନେ ବିଚାରିଲା ।
ସେ ପୋଏ ତପକରି ପାରିବେ ପୁଣ ଯେବେ
ଲଙ୍କାର ପୁରେ ଯାଇ ରହିପାରୁଁ ତେବେ ।
ମାତାର ଅଂଶେ କୁମର ସେ ପୁର ତାଙ୍କରି
ବଳେ ସେ କୁମରକୁ ଅଛଇଁ ଆଦରି ।
ତୁହୋ କୁମରମଣି ପଚାରିଲୁ ଯାହା
ମୂଳ ବାଦୀ ଆମ୍ଭର ଅଟନ୍ତି ଚଉବାହା ।
ତାହାର ଭୟରେ ଆମ୍ଭେ ଏଥେ ଲୁଚିଥାଉଁ
ପାତାଳୁ ବାହାର ହୋଇ ମଞ୍ଚକୁ ନଯାଉଁ ।
ଶୁଣିଣ ଦଶଗ୍ରୀବ ଆନନ୍ଦ ହୋଇଲା
ମୁହିଁ ନଉକେଶୀର ତନୟେ ବୋଇଲା ।
ସୁମାଳୀ କଥା ମୋତେ କହିଛନ୍ତି ଜନନୀ
କାହିଁଛନ୍ତି ଅଜା ଯେ ମୁହିଁ ଯିବି ଚିହ୍ନି ।
ଶୁଣିଣ ଦଇତ୍ୟେ ଯେ ଧାଇଁଲା ଅତିବେଗେ
ଯାଇଁଣ ଜଣାଇଲା ସୁମାଳୀ ଦୈତ୍ୟ ଆଗେ ।
ନଉକେଶୀ ତନୟେ ଯେ ବିଶ୍ରବାର ସୁତ
ଦିଶଇ ବଦନ ତାର ଅଟେ ବିଂଶ ନେତ୍ର ।
ବୁଲିଣ ଆସିଣ ସେ ପଶିଲା ଏହି ପୁରେ
ବାରତା ପଚାରିବାରୁ ମିଳିଲା ଆଗରେ ।
ଆମ୍ଭେ କହିଲୁଁ ତାକୁ କୁଳର ବିଧାନ
ଶୁଣି କରି ସନ୍ତୋଷ ହେଲା ଦଶାନନ ।
ବୋଇଲା ଆଜ ମୁଁ ସେ ଅଜାକୁ ଦେଖିବି
ମାତା କହିବା ସମ୍ବାଦ ମୁଁ କହି ଶୁଣାଇବି ।
ଶୁଣି ସିଂହାସନରୁ ଉଠେ ସେ ଅସୁର
ଏସନ ସମୟେ ସେଠାରେ ରହିଛି ଦଶଶିର ।
କେଉଁଠାରେ ଅଛି ବୋଲି ଆରତେ ଧାଇଁଲା
ଯାଇଁଣ ଦଶଗ୍ରୀବର ଛାମୁରେ ମିଳିଲା ।
କୋଳରେ ଧରିଣ ତାକୁ ମୁଖରେ ଚୁମ୍ବଦେଇ
କେଉଁଠାରୁ ଅଇଲୁ ତୁ ବୋଲିଣ ପଚାରଇ ।
ଦଶାନନ କହଇ ମୁଁ ବିଶ୍ରବାର ସୁତ
ନଉକେଶୀ ଗର୍ଭରୁ ମୁଁ ହୋଇଛି ସମ୍ଭୁତ ।
ଶୁଣିକରି ସୁମାଳୀ ପୁଣି କୋଳକରି
ତୁ ମୋହର ଦୋହିତାର ତନୟେ ବୋଲିଭାଳି ।
ଘରକୁ ନେଇ ସେ ଗଉରବ କଲା
ଦେଖିଣ ଅସୁରୀ ଅଇଲେ ତାକୁ ପରା ।
ସୁମାଳୀର ନଉକେଶୀ ଯେ ଅଟଇ ଦୋହିତା
ନାତିକି କୋଳେ ଧରିଆଇ ଚୁମ୍ବନଦେଇଶ୍ରୋତା ।
ବୋଇଲେ ବାବୁରେ ଆମ୍ଭେ ଲଙ୍କାଗଡ଼ରେ ଥିଲୁଁ
ବାସୁଦେବଙ୍କ ଡରରେ ସେଥିରୁ ପଳାଇଲୁଁ ।
ଅନେକ କଷ୍ଟରେ ଆମ୍ଭେ ପାତାଳ ଅଛୁଁଲୁଚି
ଏପୁର ଆମ୍ଭର ଯେ ମନକୁ ନରୁଚି ।
ତୋର ଭାଇ କୁବେର ସାବତ ଗୁଣ ବହି
ସେ ରାଜାପଣ କରି ପାଳଇ ଲଙ୍କା ମହୀ ।
ତୁମ୍ଭେ ସେ ବନରେ ବାପଙ୍କ ସଙ୍ଗେ ଥାଅ
ନିର୍ଝର ପାଣି ପିଇ କନ୍ଦମୂଳ ଖାଅ ।
ଯେ ଯାହାର କର୍ମରେ ନୋହେ ଆନକରି
କୁବେରଙ୍କ ରାଜ୍ୟରେ ଅର୍ଜିଲେ ଏଡ଼େଶିରୀ ।
ତୁହି ତପ କରିରେ ହୁଅ ଲଙ୍କପତି
ତେବେ ଯାଇଁ ଆମ୍ଭରରେ ଫିଟିବ ଦୁର୍ଗତି ।
ଏଥିରୁ ବାହା ହୋଇତ ଲଙ୍କାଗଡ଼ ଯିବୁ
ତୋତେ ଆଦର କଲେରେ ସେଥିରେ ରହିବୁ ।
ଶୁଣି ଦଶଗ୍ରୀବ ଯେ ହସିଣ ବୋଇଲା
ତୁମ୍ଭର ଯେବେ ମୋଠାରେ ଶରଧା ହୋଇଲା ।
ମୁହିଁ ଜପ କରିଣ ଘେନିବି ଲଙ୍କାପୁର
ସୁବର୍ଣ୍ଣ ଘର ଭୋଗ ଯେ କରିବେ ଅସୁର ।
ଏତେ କହି ଅସୁର ଉଠିଲା ତଡ଼ତି
ଯିବି ବୋଲି ଉଦବେଗ କଲା ତାର ମତି ।
ସୁମାଳି ବୋଇଲା ଯେ ଭୋଜନ ଏଥିକର
ଏହିକିରେ ତୁମ୍ଭର ନୁହଇ ନିଜଘର ।
ଦଶାନନ ବୋଲେ ମୋତେ ଲୋଡ଼ିଲେ ପିଅର
ଶୁଣ ଅଜା ଛନ୍ନ ଛନ୍ନ ମନହୁଏ ମୋର ।
ଯିବି ମୁହିଁ ବେଗେ ହୋଇ ନପାରିବି ରହି
ପୁଣିହିଁ ଆସିବି କହି ବେଗ୍ରରେ ଚଳିଯାଇ ।
ସେଦିନ ବିଭୀଷଣ ଯେ ସ୍ୱର୍ଗକୁ ଯାଇଥିଲା
ଦକ୍ଷଙ୍କର ପୁରେ ଶଙ୍କର ସଙ୍ଗରେ ମିଳିଲା ।

ସେଠାବରେ ଦକ୍ଷଗଣେ ଗୋଡ଼ାଇ ତାକୁ ମାରି
କାହିଁର ତୁ ଅସୁରରେ ପଶିଲୁ ଦେବପୁରୀ ।
ଆହୁରି ଦଇତେ ଅଛନ୍ତି କିରେ ମହୀ
ମାର ମାର ବୋଲିଣ ଧାଇଁଲେ ବୋବିଦେଇ ।
ବିଭୀଷଣ ବୁଦ୍ଧିବଳେ ଅଇଲା ପଳାଇ
ବାହୁଡ଼ି ଅଇଲା ସେ ମନରେ କୋପହୋଇ ।
ସୁବଳୟା ପର୍ବତରେ ପ୍ରବେଶ ହୋଇଲା
ଦଶଗ୍ରୀବର ଆଗରେ ସମସ୍ତ କହିଲା ।
ଏସନକ ସମୟେ ଅଇଲା କୁମ୍ଭକର୍ଣ୍ଣ
ସ୍ୱର୍ଗପୁର କଥାମାନ ଶୁଣିଲା ଦଶାନନ ।
ସୂର୍ପଲେଖୀ ସହିତେ ବସିଣ ବିଚାରିଲେ
କି ବୁଦ୍ଧି କରିବା ବୋଲି ମନରେ ବିଚାରିଲେ ।
ତପସ୍ୟା ନକଲେ ଆମ୍ଭେ ନୋହୁଁ ପୁଣ ସୁଖୀ
କୁବେରର ସମ୍ପଦ ଯେ ନପାଉଁ ଆମ୍ଭେ ଦେଖି ।
ଏତେକ ଭାଳିଣ ଯେ ରଜନୀ ପୁହାଇଲେ
ତିନିଭାଇ ନମସ୍କାର ପିତାକୁ ଯାଇଁକଲେ ।
ବିଶ୍ରବା ବିଚାରନ୍ତି ହୃଦୟ କମଳେ
କରିବେ ଅନର୍ଥ ଏ ପୃଥିବୀ ମଣ୍ଡଳେ ।
ଜଗତ ଦହିବେ ମାରିବେ ତପଚାରୀ
ଏତେବୋଲି ଉଠିଣେ ସେ ତିହ୍ନିଙ୍କି କୋଳ କରି ।
ଧର୍ମବାଟ ଦେଖାଇ ସେ ଅନେକ କହିଲେ
ଯାଅ ବାବୁ ବେଗେ ତପ କରରେ ବୋଇଲେ ।
ତାମସ ବେଭାରରେ ମନରେ ନ ଧର
ଏମନ୍ତ ବଚନ ଯେ ବୋଇଲେ ମୁନିବର ।
ଏତେ ବୋଲି ଥନ ଥନ କଲେ ବେନି ଆଖି
ଆଉ ମୁଁ ସୁଖୀ ହେବିରେ କାହାର ମୁଖ ଦେଖି ।
ସ୍ନେହଭରେ କୋଳକରି ଭିଡ଼େ ପୁଣି ପୁଣି
ମୁର୍ଦ୍ଧନୀ ଆରୋପଣ କଲେକ ଯନ୍ତ୍ର ଗୁଣି ।
ଯାଅ ବାବୁ ବୋଲିଣ ଅଇଲେ ପାଛୋଟି
ଆଗରେ ଚାଲିଗଲେ ଯେ ପୁତ୍ର ତିନିଗୋଟି ।
ଥୋକାଏ ଦୂରରେ ତାଙ୍କୁ ଛାଡ଼ି ଦେଲେ
ନଉକେଶୀକି ଅନେକ ବାଗେ ତିଆରିଲେ ।
ନୌକେଶୀ ସୂର୍ପଲେଖୀ କି ଘେନିଣ ଭୁଞ୍ଜଇ
ପୁତ୍ରକଥା ଯେଉଁଦିନ ମନରେ ପଡ଼ଇ ।
ନନ୍ଦନଙ୍କୁ ସୁମରିଣ ବିକଳ କରେ ମନ
ଋଷିଙ୍କ ବୋଧରେ ନୌକେଶୀର ସ୍ଥିର ମନ ।

ଏଥୁଅନନ୍ତରେ ତୁମ୍ଭେ ଶୁଣ ରଘୁନାନ
ଦଶଗ୍ରୀବ ତିନିଭାଇଙ୍କର ଯେ ବିଧାନ ।
ଦଶଗ୍ରୀବ ସଙ୍ଗରେ ଅଛନ୍ତି ଭାଇ ବେନି
କପିଳାସେ ତପ କଲେ ଅଭିମାନ ଘେନି ।
ସମୁଦ୍ରପାରି ହୋଇଣ ଜମ୍ବୁଦ୍ୱୀପ ଗଲେ
ଭ୍ରଥ ଖଣ୍ଡ ଉତ୍କଳ ଦେଶରେ ମିଳିଲେ ।
ବିରଜା ନାମରେ ଯେ ଅଛି ଏକ କ୍ଷେତ୍ର
ବ୍ରହ୍ମାଙ୍କର ନାଭିସ୍ଥାନ ଅଟଇ ପବିତ୍ର ।
ଗୋକର୍ଣ୍ଣ ତୀର୍ଥ ବୋଲିଣ ଅଛି ଏକ କୁଣ୍ଡ
ସେଥିରେ ସ୍ନାନ କଲେ ନ ଲାଗେ ଯମଦଣ୍ଡ ।
ସେ ତୀର୍ଥେ ମିଳିଲେ ଦଶଗ୍ରୀବ ତିନିଭାଇ
ସେଠାରେ ତପ କଲେ ପୂର୍ବହେତୁ ପାଇ ।
ଦିବସେ ଉପବାସ ରାତିରେ ଫଳ ଖାନ୍ତି
ଜଗତ ପିତାମହଙ୍କୁ ଲୟେ କରିଥାନ୍ତି ।
କୁମ୍ଭକର୍ଣ୍ଣ ମହାତ୍ମା କଠୋର ତପ କଲା
ଗ୍ରୀଷମ କାଳରେ ପଞ୍ଚଅଗ୍ନିକି ସ୍ଥାପିଲା ।
ବରଷାକାଳେ ତିନ୍ତଇ ହରଷ ମନେ ଧରି
ହୃଦପଦ୍ମ ମଧ୍ୟରେ ମନ୍ତ୍ରକୁ ସୁମରି ।
ମାଘମାସେ ଜଳରେ ପଶିଣ ତପ କରି
କାୟା କଦର୍ଥୀଣ ଅଭିମାନ ହୃଦେ ଧରି ।
ବାରମାସଯାକ ଯେ ହେଲା ଉଜାଗର
ଫଳମୂଳ ଛାଡ଼ିଣ ଭକ୍ଷଣ କଲା ନୀର ।
ଏମନ୍ତ ତପ କଲେ ସହସ୍ରେ ବରଷ
କଠାର ତପ କଲା ବିଶ୍ରବାର ଶିଷ୍ୟ ।
ବିଭୀଷଣ ତପ ଯେ ଅତିହିଁ ଅଗୋଚର
ମନ ଚିତ୍ତ ପ୍ରକୃତି ଏକାନ୍ତ କଲା ବୀର ।
ଏକପାଦେ ଠିଆ ହୋଇ ବ୍ରହ୍ମାଙ୍କୁ ଧ୍ୟାନ କରି
ଅଜପା ଜପଇ ଯେ ଧର୍ମକୁ ଲୟେ କରି ।
ଯେମନ୍ତେ ସେହି ସେ ସହସ୍ରେ ବର୍ଷଯାଏ
ପ୍ରାଣ ରଖିବା ପାଇଁ ଯେ ଉଦକ ସେ ପିଏ ।
ପୁଣି ପାଞ୍ଚଶହସ୍ର ଜପଇ ଦିବ୍ୟ ଜ୍ଞାନ
ଊର୍ଦ୍ଧ୍ୱବାହୁ ତପ କରେ ବିଶ୍ରବା ନନ୍ଦନ ।
ସ୍ୱର୍ଗର ଦେବତାଏ ପୁଷ୍ପବୃଷ୍ଟି କଲେ
ସାଧୁ ତୋର ତପରେ ବୋଲିଣ ବୋଇଲେ ।
ଏଥୁଅନନ୍ତରେ ସେ ଦଶଗ୍ରୀବ ବୀର
ତପକଲା ସେଥିରେ ଅତିହିଁ ଅଗୋଚର ।

ଶୁଷ୍କକାଠ ଅଣାଇଁ ଅଗ୍ନି ଯେ ଲଗାଇ
ଶସ୍ତ୍ର ଧରି ଆପଣା ଶରୀର କାଟଇ ।
ଅଗ୍ନିରେ ପକାଏ ତାକୁ ନେଇ ପୁଣ
ମାଂସ ଯାଇ ତାର ଅସ୍ଥି ରହେ ଜାଣ ।
ଏକାକ୍ଷର ମନ୍ତ୍ର ପଢ଼ିଣ ତପ କରେ
ତାହାର ତପ ଦେଖି ଡରିଲେ ଦିଗପାଳେ ।
ଦେବତାଏ ଡରିଲେ ଡରିଲେ ନବଗ୍ରହ
ଚନ୍ଦ୍ର, ସୂର୍ଯ୍ୟ ଦେଖିଣ ମନରେ କଲେ ଭୟ ।
ଏହିପ୍ରାୟେ ଶହସ୍ରେ ବରଷ ତପ କରି
ଦେବତାଏ ବିଚାରି ମିଳିଲେ ବ୍ରହ୍ମାପୁରୀ ।
ବେଦବର ଛାମୁରେ ସକଳ ଦେବଗଣ
ବୋଇଲେ ବିଧାତା ଆମ୍ଭର ସରିଲା ବଡ଼ପଣ ।
ଯୋଗବଳେ ବେଦବରକୁ ଦୃଶ୍ୟ ହେଲା ପୁଣି
ପରମହଂସ ଚଢ଼ି ବାହାର ତତକ୍ଷଣି ।
ବିରଜାମଣ୍ଡଳରେ ହେଲେକ ପ୍ରବେଶ
ଦେଖିଲେ ତପ କରନ୍ତି ସେଥିରେ ରାକ୍ଷସ ।
ପ୍ରବେଶ ହେଲେ ଯାଇଁ ଦଶଗ୍ରୀବ ପାଶେ
ବେଦବର ତପ ଦେଖି ହୋଇଲେ ହରଷେ ।
ଚତୁର୍ମୁଖ ଆସିବାରୁ ଦଶମୁଖା ଅସୁରର
କଅଁଳି ଆସିଲା ତାର ସର୍ବାଙ୍ଗ ଶରୀର ।
ଶରୀର କଅଁଳିବାରୁ ଦେଖିଲା ଦଶଶିର
ବସିବା ଠାବରୁ ସେ ଉଠିଲା ଧାଡିକାର ।
ବେଦବର ଚରଣେ କଲାକ ନମସ୍କାର
କରଯୋଡ଼ି ବଚନ ସେ କହଇ ସୁସ୍ୱର ।
ପ୍ରସନ୍ନ ମୋତେ ଯେବେ ହେଲୁ କୁଶଧର
ଯେଉଁ ବର ମୁଁ ମାଗିବି କରିବୁ ସୀଉକାର ।
ବ୍ରହ୍ମା ବୋଇଲେ ଶୁଣରେ ପୌଲସ୍ତିର ନାତି
ଅମର ବର ତୋତେ ନୁହଇ ଯୁଗତୀ ।
ଅସୁର ଯୋନି ତୁହି ପାଇଲୁ ଆରେ ବଳା
ସୁମାଳୀ ଦୈତ୍ୟ ତୋର ଅଟଇ ଅଜା ପରା ।
ତେଣୁ ଦଇତ୍ୟ ତନୁ ତୁ ପାଇଲୁ ଦଶଶିର
ଅମର ବର ଛାଡ଼ିଲେ ମାଗ ମୋତେ ବର ।
ଶୁଣି ଦଶକନ୍ଧ ଯେ ବୋଲଇ ବଚନ
ଦିଅ ମୋତେ ବର ହେ ଚତୁର ବଦନ ।
ଛପନଗଣ୍ଡା ଯୁଗକୁ ଆୟୁଷ ହେଉ ମୋର
ଏ ତିନିଭୁବନରେ ମୁଁ ହେବି ବଳୀୟାର ।
ଜଗତ ଜିଣିବି ମୁଁ ନିଜ ଭୁଜବଳେ
ସମରେ ସମ ମୋତେ ନୋହିବେ ଦିଗପାଳେ ।
କାହାରି ହାତରେ ମୋତେ ନୋହିବ ଯେ ମୃତ୍ୟୁ
ଏ ବଚନ ଶୁଣିଣ ଯେ ବୋଇଲେ କୁଶକେତୁ ।
ଯାହା ତୁ ମାଗିଲୁ ବଳାରେ ହେଉ ତୋତେଅସ୍ତୁ
ଆବର କଥାଏ ଶୁଣରେ ପୂର୍ବହେତୁ ।
ବ୍ରହ୍ମାଣ୍ଡ ଠାକୁର ଯେ ଅଟନ୍ତି ମୁରାରୀ
ସେହି ମନକଲେ ପାରନ୍ତି ତୋତେ ମାରି ।
ସେହି ପୁଣି ଦେବରୂପେ ନ ମାରିବେ
ମାନବ ତନୁ ଧରି ମାରିବେ ବାସୁଦେବେ ।
କେତେବେଳେ ଅନାୟାସରେ ନ ମାରି
ତାହାର ଘରଣୀ ଯେବେ ଚୋରାଇବୁ ଦଶଗିରି ।
ତେବେ ତୁହି ଶ୍ରୀହରିଙ୍କ ହାତରେ ନାଶଯିବୁ
ଆନମତେ ତୁହି ଯେ ନିଧନ ନୋହିବୁ ।
ଯେ ବ୍ରହ୍ମଶରେ ତୋତେ ମାରିବ ଦଶକନ୍ଧ
ଆନମତେ ତୋହର ନାହିଁ ଆଉ ମନ୍ଦ ।
ବ୍ରହ୍ମଶରରେ ପୁଣି କାଟିଲେ ନ ମରିବୁ
ବୁକୁ ଫୋଡ଼ଇହେଲେରେ ଜୀବନ ହାରିବୁ ।
ଶିର କମଳ ଦେଇ ମନାଇଲୁ ମୋତେ
ପ୍ରସନ୍ନେ ଅଭୟବର ସମର୍ପିଲି ତୋତେ ।
ଶ୍ରୀରାମର ଭାରିଯା ସୀତା ତୁ ନ ରହିବୁ
ମୋର ବୋଲ ବଳାରେ ଯେବେ ତୁ ନ କରିବୁ ।
ସୀତାକୁ ହରିଲେ ଆମ୍ଭେ ନ ପାରୁଁ ଯେ ରଖି
କେବେ ତୁ ଲୋଭ ନ କରିବୁ ରୂପଗୁଣ ଦେଖି ।
ରାବଣ ବୋଇଲା ମୁଁ ଯେ ନ ହରିବି ସୀତା
ତୁମ୍ଭର ରାଣ ଦେଉଛି ଜଗତର ପିତା ।
ଶୁଣିଣ ଆନନ୍ଦ ଯେ ପ୍ରସନ୍ନେ ବେଦପତି
ଦଶଗ୍ରୀବକୁ ନେଇଣ ଦେଲେକ ଶକତି ।
ଏ ସହସ୍ର ବଳାରେ ଭୁଜରେ ଧରିଥିବୁ
ଅଷ୍ଟାଙ୍ଗବେଳେ ବଳାରେ ବେଳେକ ମାରିବୁ ।
ଏହାକୁ ମାରିଲେ ନ ବର୍ତ୍ତିବେ ସୁରାସୁର
ଏଣୁକରି ଏକଘନୀ ନାମଟି ଏହାର ।
ବ୍ରହ୍ମା, ରୁଦ୍ର, ଇନ୍ଦ୍ର ହେଲେରେ ପ୍ରାଣେ ମରି
ମୋ ମନ ଆନନ୍ଦେ ତୋତେ ଦେଲି ଦଶଗିରି ।
ଏତେ ବୋଲି ମନ୍ତ୍ର କହିଲେ ତା କର୍ଣ୍ଣରେ
ବ୍ରହ୍ମଶକ୍ତି ଚଳଇ ଯେବଣ ବିଧାନରେ ।

ଶୁଣିଣ ଦଶକନ୍ଧ ମନ୍ତ୍ର ହେତୁ କଲା
ପୁଣି ସେ ପିତାମହ ପ୍ରସନ୍ନ ତାକୁ ହେଲା ।
ବୋଇଲେ ପରୀକ୍ଷକୁ କରରେ ଦଶଗିରି
ଶିର କାଟି ଅଗ୍ନିରେ ପକା ତୁ ବେଗ କରି ।
ଗୋଟି ଗୋଟି କରି ଅଗ୍ନିରେ ଦିଅପୋଡ଼ି
ମୋ ଆଗେ ସଙ୍କେତ ତୁ ବୁଝରେ ଦଶଗିରି ।
ଶୁଣିକରି ରାବଣ ଆପଣା ଶିର କାଟି
ଅଗ୍ନିରେ ମୁଣ୍ଡ ପୋଡ଼ି ଲଲାଟ ତାର ଦେଖି ।
ସୀତାଙ୍କୁ ହରିଲେ ତୁ ପାଇବୁ ମରଣ
ନୋହିଲେ ଆନରୂପେ ନ ମରୁ ତୁ ଜାଣ ।
ସେହି ମୁଣ୍ଡ ପକାଇଣ ଆରମୁଣ୍ଡ ଦେଖି
ସେଥିରେ ଲେଖାଅଛି ଦେଖେ ବିଂଶଆଖି ।
ଜନକର ଦୋହିତା ନାମ ଅଟେ ସୀତା
ତାଙ୍କୁ ହରିଲେ ମରିବୁ ବିଶ୍ରବାର ସୁତା ।
ଆରମୁଣ୍ଡ କାଟି ଯେ ପକାଏ ଅଗ୍ନିରେ
ଦେଖିଲା ଜାନକୀ କମଳା ସ୍ୱରୂପରେ ।
ଜନକ ଋଷି ଘରେ ଜାତ ହେବେ ପୁଣି
ତାଙ୍କୁ ହରିଲେ ରାବଣ ମରିବ ନିଶ୍ଚେଁ ଜାଣି ।
ଚତୁର୍ଥ ମୁଣ୍ଡକୁ ସେ କାଟିଲା ତତକ୍ଷଣ
ବଇଦେହୀ ହରିଲେ ମରିବ ରାବଣ ।
ପଞ୍ଚମ ମୁଣ୍ଡ କାଟି ଅଗ୍ନିରେ ସେ ଭରି
ସେଥିରେ ଦେଖେ ଜାନକୀ ହରିଲେ ନିଶ୍ଚେ ମରି ।
ଡାହାଣ ପାଖରୁ ସେ ପାଞ୍ଚମୁଣ୍ଡ କାଟି
ଦେଖନ୍ତେ ମନ ତାର ହେଲା ଯେ ତ୍ରିପୁଟି ।
ବାମ ପାଖରୁ ମୁଣ୍ଡ ଚାରିଗୋଟି କାଟି
ଅଗ୍ନିରେ ଭରନ୍ତେ ସେ ଅକ୍ଷର ଉକୁଟି ।
ବାମ କରେ ମୁଣ୍ଡକୁ ଧରିଣ ଦେଖିଲା
ରାମ ଘରଣୀ ହରିଲେ ମରିବୁ ଲେଖାଥିଲା ।
ସେ ମୁଣ୍ଡ ଥୋଇଣ ଆରେକ ମୁଣ୍ଡ ଧରି
ସେ ମୁଣ୍ଡକୁ ଦେଖିଲା ବିଚିତ୍ର ଗତି କରି ।
ଦଶରଥ କୁମର ହେବେ ଚାପଧାରୀ
ତାହାର ଭାରିଯାକୁ ରାବଣ ଯେବେ ହରି ।
ଅବଶ୍ୟ ଚାପଧାରୀ ମାରିବେ ରାବଣ
ସୁବଂଶ ମାରିଣ କରିବେ ନିଶୋଧନ ।
ପୁଣି ଆର ମୁଣ୍ଡ ଦେଖଇ ଧରି କରି
ଦଶରଥ ବୋହୂ ହରିଲେ ମରିବ ଦଶଗିରି ।
ସେ ମୁଣ୍ଡ ଛାଡ଼ଇଣ ଧରଇ ଆର ମୁଣ୍ଡ
ତହିଁରେ ଦେଖିଲା ଅକ୍ଷର ଅଛଇ ଗୁଣ୍ଡ ।
କଉଶଲ୍ୟା ନନ୍ଦନ ଯେ ଅଟନ୍ତି ରଘୁନାଥ
ରାବଣ କୁମ୍ଭକର୍ଣ୍ଣ କରିବେ ସେ ହତ ।
ଚଉଦ ବରଷ ଯେ ବନକୁ ସେ ଯିବେ
ରାମ ଘରଣୀ ହରିଲେ ରାବଣ ମରିବେ ।
ନୋହିଲେ ଦଶକନ୍ଧ ନୋହେ ପୁଣ ନାଶ
ଏମାନ ଦେଖି ରାବଣ ହୋଇଲା ହରଷ
ଏକ ମୁଣ୍ଡ ରହିଲା ନବ ମୁଣ୍ଡ ପୋଡ଼ି
ଦେଖିଣ ରାବଣ ଯେ ମନରେ ହେଲା ଭାଳି ।
ଦେଖିଣ ଚତୁର୍ମୁଖ ମନରେ ବିଚାରିଲେ
ନବ ମୁଣ୍ଡ କଅଁଳୁ ବୋଲିଣ ବୋଇଲେ ।
ପୂର୍ବର ସମାନରେ ହେଉ ଶିର ପୁଣ
ବେଦବର କହିଲେ ଏମନ୍ତ ବୋଲିଣ ।
ପିତାମହ ବୋଲରେ ଲାଗେ ଦଶ ମୁଣ୍ଡ
ପୁଣ ଦନୁଜ କନ୍ଧ ଦିଶେ ପରଚଣ୍ଡ ।
ସେଠାରୁ ବେଦବର ବେଗେ ଚଳିଗଲେ
ବିଭୀଷଣ ଆଗରେ ଯାଇଣ ଉଭା ହେଲେ ।
ସେଠାବରୁ ବେଦବର ବିଭୀଷଣକୁ ଚାହିଁ
ବର ମାଗ ବୋଇଲେ ସାବିତ୍ରୀର ସାଇଁ ।
ବିଭୀଷଣ କହଇ ଯୋଡ଼ିଣ ବେନି କର
ଯେବେ ତୁମ୍ଭେ ପ୍ରସନ୍ନ ହେଲ ହେ କୁଶଧର ।
ଧର୍ମରେ ରହିବି ବର ମୋତେ ଦେବ
ନାରାୟଣ ଦେବତା ମୋ ସେବା ଘେନିବ ।
ନୋହିବି ବିମନା ମୁଁ ଦେବତାଙ୍କଠାରେ
ଜୀବଜନ୍ତୁ କେହି ନୋହିବେ ଦୁଃଖୀ ମୋରେ ।
ସମସ୍ତଙ୍କଠାରେ ଭାବ ରହିବ ମୋହର
ଚନ୍ଦ୍ର, ସୂର୍ଯ୍ୟ ଥିବାଯାଏ ହୋଇବ ଅମର ।
ତିନିପୁରର ସାର ଯେ ମୋତେ ହେବ ଭୋଗ
ଏହି ଦେହେ ନାରାୟଣ ପାଦେ ସେବା ଥିବ ।
ଏମନ୍ତ ବୋଲିଣ ଯେ ବିଭୀଷଣ କହି
ଏ ବର ମାଗଇ ମୁହିଁ ଆନରେ କାର୍ଯ୍ୟ ନାହିଁ ।
ଶୁଣିଣ ପ୍ରଶଂସା କଲେ ସାବିତ୍ରୀର ସାଇଁ
ଭଲଯୋଗେ ବିଶ୍ରବା ତୋତେ ଜନ୍ମକଲେ ମହୀ ।
ହେଉ ଏବେ ବଳାରେ ତୋର ମନୋବାଞ୍ଛା
ଆପଣେ ବ୍ରହ୍ମା ଦେଲେ ଏସନେକ ଦୀକ୍ଷା ।

ବର ଦେଇ ବେଦବର ସେଠାରୁ ଚଳିଗଲେ
କୁମ୍ଭକର୍ଣ୍ଣ ଆଗରେ ଯାଇଣ ମିଳିଲେ ।
କୁମ୍ଭକର୍ଣ୍ଣକୁ ବୋଇଲେ ବେଦବର ଚାହିଁ
ଅନେକ ତପେଣ ଯେ ଦହିଲୁ ତୋର ଦେହୀ ।
ପ୍ରସନ୍ନ ହୋଇଲୁଁ ଆମ୍ଭେ ମାଗି ଘେନ ବର
ଏହାଶୁଣି ଦେବତାଏ ଯୋଡ଼ିଲେ ବେନି କର ।
ଭୋ ଦେବ ଅନୀତି ହେ ନ କର ଗୋସାଇଁ
ଏହାକୁ ବର ଦେଲେ କାହାକୁ ଯଶ ନାହିଁ ।
ବର ନ ପାଉ ନନ୍ଦନବନ ଏ ଭାଙ୍ଗଇ
ସୁର ନର ମୁନିଙ୍କି ଏ ଧରିଣ ଭକ୍ଷଇ ।
ଏହାକୁ ବର ନ ଦିଅ କର ହେ ଗୁପତ
ଏ କଥା କଲେ ସ୍ୱର୍ଗ ଯେ ଛାଡ଼ିବୁଁ ନିୟତ ।
ଅସୁରଭକ୍ ମାୟାରେ ଦେବତା ହେଲୁଁ ମୋହି
ଏହାକୁ ବର ଦେଲେ ଦେବତା ହେଲୁଁ ଦହି ।
ଏହାକୁ ବର ଦେଲେ ତୁ ଆମ୍ଭର ଶାପ ନେବୁ
ୟା ପୁରେ ଆମ୍ଭେ ରହିଲେ ତୁ ଆମ୍ଭସଙ୍ଗେଥିବୁ ।
ଦେବଙ୍କର ବିକଳ ଶୁଣିଣ ବେଦପତି
ତତକ୍ଷଣେ ସୁମରଣା କଲେକ ସରସ୍ୱତୀ ।
ଆସିଣ ବୃଦ୍ଧମାତା ମିଳିଲେ ଛାମୁର
କିସ ଆଜ୍ଞା ହେଉ ମୋତେ ବୋଲନ୍ତି ଧାତିକାର ।
ଧାତା ବୋଇଲେ ତୁମ୍ଭେ କୁମ୍ଭକର୍ଣ୍ଣ କଣ୍ଠେ ବସ ।
ସୁବୁଦ୍ଧି ବୁଦ୍ଧି ତାର ହୃଦରେ ପ୍ରକାଶ
ଦେଖ ଏ ତିନିପୁର ଅସ୍ଥିମୟେ ପୁଣ ।
ମାଂସ ଭକ୍ଷି ଅସ୍ଥି ରଖିଛି ଏହୁ ଦୈତ୍ୟ ପୁଣ ।
ସ୍ୱର୍ଗରୁ ଚାରିବିଶ୍ୱା ମର୍ତ୍ତ୍ୟରୁ ଦଶଭାଗ
ପାତାଳରୁ ତିନିଭାଗ କଲାକ ଅସ୍ଥି ଯୋଗ ।
ବାର ବରଷ ଦିନରେ ଏତେ କୃତ୍ୟ କଲା
ଏବେ ତପ କରଇ ବିଶ୍ୱବାର ବଳା ।
ନିର୍ଭୟେ ବର ପାଇ ଖାଇବ ସକଳ
ଏହାର ପେଟ ଅଟଇ ବଡ଼ବା ଅନଳ ।
ଗୋ ବ୍ରାହ୍ମଣ ଦୟା ଏ କଲା ଋଷି ପୁଣ
ସ୍ୱର୍ଗପୁରେ ଦେବତାଙ୍କୁ କରେ ଭକ୍ଷପାନ ।
ପାତାଳେ ପଶିଣ ଏ ନାଗଲୋକ ଖାଇ
ଚଉଦଗଣ୍ଡା ଯୁଗରେ ନାଶ ଯିବ ଏହି ।
ଶୁଣିଣ ସରସ୍ୱତୀ ହସ ହସ ହେଲେ
କୁମ୍ଭକର୍ଣ୍ଣ ହୃଦରେ ଯାଇଁଣ ପଶିଲେ ।

ଏସନେକ ସମୟେ ବୋଇଲେ ପିତାମହ
କି ବର ମାଗିବୁରେ ତୁ କୁମ୍ଭକର୍ଣ୍ଣ କହ ।
ଶୁଣିଣ କୁମ୍ଭକର୍ଣ୍ଣ ଯେ କହଇ କରଯୋଡ଼ି
ବୋଲେ ସୃଷ୍ଟି ମୁହିଁ ନ ପାରଇଁ ଦୁଃଖେପଡ଼ି ।
ଦେହଥିବାଯାକ ନିଦ୍ରା ବଡ଼ ସୁଖ
ଆଉ କଥାମାନଙ୍କୁ ମଣଇଁ ମୁହିଁ ଦୁଃଖ ।
ଏବେ ତୁ ପ୍ରସନ୍ନ ହୋଇଲୁ ଗୋସାଇଁ
ଦିଅ ବର ମୋତେ ମୁଁ ନିଶ୍ଚିନ୍ତେ ନିଦ୍ରାଯାଇ ।
ନିଦ୍ରାର ବିହୁନେ ମୋତେ ନ ରୁଚଇ ଆନ
ଅସ୍ତୁ ହେଉ ବୋଇଲେ ଚତୁର ବଦନ ।
ବରଷକରେ ଥରେ ତୁ ନିଦ୍ରାରୁ ଉଠିବୁ
ସେଦିନ ସୁଖରେ ତୁ ଆହାର ଭକ୍ଷିବୁ ।
ସହସ୍ରେ ସ୍ତିରୀ ସେଦିନ କରିବୁ ରମଣ
ମନ ତ୍ରିପୁତି କରି ନିଦ୍ରା ତୁ ଯିବୁ ପୁଣ ।
ଯେତେ ସ୍ତିରୀ ଥିବେ ତୋର ପାକାସ୍ୱରଶରେ
ଶୁଦ୍ଧ ସ୍ନାନ କରିବେ ସେହି ଯେ ଦିନରେ ।
ତାଙ୍କଠାରେ ରମଣ କରିବୁ ପୁତ୍ରମଣି
ପୁଣି ଉଠିଲାବେଳକୁ ହୋଇଥିବ ସହସ୍ରେ ପୁତ୍ର ଜାଣି ।
ଏମନ୍ତେ ଲକ୍ଷେ କୁମର ହୋଇବେ ତୋହର
ନବସସ୍ର ନାତି ଯେ ସେଥିରୁ ଜାତ ତୋର ।
କଣ୍ଟ ନ ପୂରୁଁ ଉଠିବୁ ତୁ ଯେବଣ ଦିନ
ଉତ୍ତରକୁ ମସ୍ତକ କରି ଶୋଇ ଯେ ଥିବୁ ପୁଣ ।
ନିଶ୍ଚୟେ ପ୍ରାଣ ତୋର ହେବରେ ନିହତ
ମୋହର ବଚନ ବଳାରେ ନୋହିବ ବିଅର୍ଥ ।
ଲକ୍ଷେ ନାରୀଙ୍କି ପୁତ୍ରରେ ତୁ ହୋଇବୁ ବିଭା
ମଲାବେଳେ ପୁତ୍ରନାତି ସଙ୍ଗେ ଘେନି ତୁ ଯା ।
ଗୋଟିଏ କୁମର ତୋର ଶେଷକୁ ରହିବ
ଘରଣୀ ଝିଅ ବୋହୂ ସଙ୍ଗରେ ଯିବେ ସର୍ବ ।
ବର ପାଇ କୁମ୍ଭକର୍ଣ୍ଣ ମନରେ ବିଚାରଇ
ଘୋର ତପକଲି ମୁଁ ଯେ ସୁଖ ଭୋଗ ପାଇ ।
ଏତେବଡ଼ ମନ୍ଦକୃତ୍ୟ କଲି ମୁଁ କେଜାଣି
ଏହେର୍ଣ୍ଣେକ ନଜାଣିଲି ମୁହିଁ ଛନ୍ଦ ପୁଣି ।
ଘୋର ତପ କଲି ମୁଁ ସୁଖ ଭୋଗ ପାଇଁ
ଦୟାକଲେ ମୋତେ ସାବିତ୍ରୀର ସାଇଁ ।
କାଳେଣ ଏ ବର ଯେ ହେଲା ପରାପତ
ମୋର ଜନ୍ମବେଳେ ଯାହା ଲିହିଛି କର୍ମେତ ।

ଏମନ୍ତ ବିଚାରି ଯେ ମନକୁ କଲା ଶାନ୍ତି
ସେଠାରୁ ବେଦବର ସୁରଗଣେ ଯାନ୍ତି ।
ଯେ ଯାହାର ପୁରରେ ହେଲେ ପରବେଶ
ଶ୍ରୀଜଗନ୍ନାଥ ଶରଣ ମୁଁ ବଳରାମ ଦାସ ।
କହନ୍ତି ଅଗସ୍ତି ଯେ ଶୁଣ ରାମରାୟେ
ଏଥୁଅନନ୍ତରେ ବିଚିତ୍ର କଥା ହୋଏ ।
ସେଠାରୁ ଦେବତାଏ ନିଜପୁରେ ଗଲେ
ବିଶର୍ବା ପୋଏ ତପ ସେଠାରୁ ସିଦ୍ଧ କଲେ ।
ଆନନ୍ଦରେ ତିନିଭାଇ ଆସିଲେ ବରପାଇ
ତମାଳ ବିପୀନରେ ମିଳିଲେ ପୁଣ ଯାଇ ।
ବିଭୀଷଣକୁ ବୋଇଲେ ତୁ ପାତାଳକୁ ଯାଅଯା
ସୁମାଳୀ ଦଇତ୍ୟ ଯେ ଅଟନ୍ତି ଆମ୍ଭଅଜା ।
ତାହାଙ୍କୁ କହିଣ ତୁ ଥାଟ ଘେନିଆସ
ତେବେ ସେ ବିଳସିବା ଆମ୍ଭେ ଲଙ୍କଦେଶ ।
ଶୁଣିଣ ବିଭୀଷଣ ଗଲା ଅତିବେଗେ
ବିମ୍ବରେ ପଶି ପାତାଳେ ପଶିଲା ସରାଗେ ।
ସୁମାଳୀ ଦଇତ୍ୟର ପୁରରେ ପ୍ରବେଶ
ସେ ପୁର ରାକ୍ଷସ ଦେଖି ମନରେ ସନ୍ତୋଷ ।
ସୁମାଳୀ ଦଇତ୍ୟର ଆଗରେ ମିଳିଲା
ଅଜାକୁ ଦେଖିଣ ସେ ଓଳଗି ମେଲାଇଲା ।
ବୋଲେ ଦଶଗ୍ରୀବର ମୁଁ ଅଟଇ ସାନଭାଇ
ବିଶର୍ବାଋଷି ଔରଷେ ନଉକେଶୀର ତନୟି ।
ନାମ ବିଭୀଷଣ କୁମ୍ଭକର୍ଣ୍ଣର ସାନୁଜ
ତପରେ ତୋଷିଲି ମୁଁ ଚତୁର ବଦନ ।
ଜଗତରେ ଅଜୟେ ହୁଅସି ବୋଇଲା
ପ୍ରସନ୍ନ ହୋଇଣ ବିଧାତା ବରଦେଲା ।
ବର ପାଇଣ ଆମ୍ଭେ ଅଇଲୁଁ ତିନିଭାଇ
ଦଶଗ୍ରୀବ ମୋତେ ଯେ ଦେଲା ପଠିଆଇ ।
ଜମ୍ବୁଦ୍ୱୀପ ଭୁଥ ଖଣ୍ଡରେ ରହିଛନ୍ତି
ତୁମ୍ଭେ ବଳଦେଲେ ଲଙ୍କାକୁ ମଁ ଯାନ୍ତି ।
ଶୁଣି ସୁମାଳୀ ଦୈତ୍ୟ ବେଗେ ହେଲା ସଜ
ବିଭୀଷଣକୁ କୋଳେ ଧରେ ଅସୁରରାଜ ।
ମୁଖରେ ଚୁମ୍ବ ଦେଇ ସେ ଗଉରବ କଲା
ଅନେକ ଆଶ୍ୱାସନା କରିଣ କହିଲା ।
ଚତୁରଙ୍ଗ ବଳ ସଙ୍ଗତରେ ସେ ଆସେ
ବିଭୀଷଣ ସହିତେ ସୁମାଳୀ ବଳମିଶେ ।

ପାତାଳୁଁ ବାହାର ହୋଇ ଜମ୍ବୁଦ୍ୱୀପକୁ ଗଲେ
ତମାଳ ବନରେ ରାବଣକୁ ସେ ଦେଖିଲେ ।
ରଥରୁ ଓହ୍ଲାଇ ସେ ସୁମାଳୀ ଦଇତ୍ୟ
ରାବଣକୁ ଯାଇଁଣ ସେ କଲା କୋଳାଗ୍ରତ ।
ବୋଇଲା ବାପ ଆରେ ଧନ୍ୟ ମୋର ପୁନ୍ୟ
ମାନ ଉଦ୍ଧରିଲୁ ରେ ଦୋହିତା ନନ୍ଦନ ।
ବ୍ରହ୍ମା ଯେବେ ତୋତେ ରେ ଅଭୟବର ଦେଲା
ମୋ ବଂଶରେ ଭାଗ୍ୟରେ ଏବେଟି ଦିଶିଲା ।
ଶ୍ରୀହରିଙ୍କ ବାଣେ ମୋର ଦୁଇଭାଇ ମଲେ
ଚତୁରାଙ୍ଗ ବଳ ଯେ ମୋହର ନାଶଗଲେ ।
ବିକଳେ ପଳାଇ ମୁଁ ପାତାଳେ ଅଛି ଲୁଚି
ଲଙ୍କାକୁ ଛାଡ଼ିଣ ଯେ ଅଇଲି ପୁଣ ଘୁଞ୍ଚି ।
ଏବେ ସେ କଟକରେ କୁବେର ଅଛି ରହି
ବଳରେ ଆବୋରି ଘେନିଲା ମୋର ତହିଁ ।
ତୁଏବେ ବାବୁ ଯାଇରେ ସେଥିରେ ରାଜ୍ୟ କର
ମାତୃକୁଳକୁଳ ରାଜ୍ୟରେ ଅଟଇ ତୋହର ।
ମୁହିଁ ସୈନ୍ୟ ଘେନିରେ ତୋର ସଙ୍ଗେ ଥିବି
ଦେବଙ୍କୁ ଦୁର୍ଲ୍ଲଭରେ ସଂଗ୍ରାମ କରିବି ।
ଅଜାଙ୍କର ମୁଖରୁ ଏମନ୍ତ ବାଣୀ ଶୁଣି
ଦଶଗ୍ରୀବ ହରଷ ଯେ ହେଲା ମନେ ପୁଣି ।
ମୋହର ଜ୍ୟେଷ୍ଠ ଭାଇ ଯେ ଅଟଇ କୁବେର
କେମନ୍ତେ ଘେନିବି ମୁଁ ତାର ଥିଲା ପୁର ।
ଏକା ବାପରୁ ଜାତ ହେଲୁଁ ଆମ୍ଭେ ପୁତ୍ର ଚାରି
ମାତା ସିନା ବେଗଳ ଯେ ଅଟନ୍ତି ଆମ୍ଭରି ।
ପରର ସମ୍ପତ୍ତି ଘେନନ୍ତି ଯେ ବଳେ
ସୋଦର ପ୍ରୀତି ଛଡ଼ାଇବି ମୁଁ କେମନ୍ତରେ ।
ସୁମାଳୀ ବୋଇଲେରେ ଶୁଣ ଦଶକନ୍ଧ
ସୋଦରଠାରେ ସିନାରେ ଉପୁଜେ ପୁଣି ଦ୍ୱନ୍ଦ୍ୱ ।
କଶ୍ୟପ ଋଷିଙ୍କର ଯେ ଅଟନ୍ତି ବେନିନାରୀ
ଅଦିତିଙ୍କ ଗର୍ଭରୁ ଯେ ଦେବେ ଅବତରି ।
ହେତୀର ତନୟେ ଯେ ଅଟନ୍ତି ଅସୁର
ସାବତ ଜନନୀ ଅଟେ ଏକଇ ପିଅର ।
ତେଡ଼େ ତେଡ଼େ ଲୋକ ନଜାଣି ଦ୍ୱନ୍ଦ୍ୱକଲେ
ସ୍ନେହ ଛାଡ଼ିଣ ସେ କରେ ଶସ୍ତ୍ରଧରେ ।
ଦେବେ ଅସୁରେ ଯେ ହେଲେ ମରାମରି
ଯୋଗରେ ରାକ୍ଷସବଳ ହୋଇଲେ ସଂହାରି ।

ସୋଦର ବୋଲିଣ ସେ ଧର୍ମକୁ ନଡ଼ରି
ବଡ଼ ବଡ଼ ଲୋକେ ଅନ୍ୟାୟ ପୁଣକରି ।
ଆବର କଥାଏ ଶୁଣରେ ଦଶକନ୍ଧ
କଦ୍ରୁ ବିନତା ତ ସେହି କଲେ ଦ୍ୱନ୍ଦ୍ୱ ।
ସେହି ଯେ କଶ୍ୟପ ଋଷିଭ୍‌କର ନାରୀ
ବିନତା ନନ୍ଦନ ଗରୁଡ଼ ପକ୍ଷୀଧରି ।
ଏକ ପିତାଠାରୁ ସେ ବେନି କୁମର
ଦୁଇ ମାତାଠାରୁ ଜାତ ପିତା ଏକା ତାଙ୍କର ।
ଅହନ୍ତା ବହିଣ ଯେ ସେହି କଳିକଲେ
ଗରୁଡ଼ ହାତରେ ସେହି ପୁଣ ମଲେ ।
ସୁଖ ଯେ ସମ୍ପଦ ଯୁବତୀ ବେଶଧନ
ଏକଥାକୁ ଶରଧା ନକରେ ଯେଉଁଜନ ।
ପାପ ପୁଣ୍ୟ ବୋଲିଣ ଭୟେ ନ କରନ୍ତି
ଲାଭଅର୍ଥେ ଲୋଭି ଯେ ମନରେ ଧରନ୍ତି ।
କିମ୍ପାଇ ଦଶାନନ ତୁ ମନରେ ବିଚାରୁ
କୁବେରକୁ ଓପ୍ରୋଧ କେବଣ ଗୁଣେ କରୁ ।
ସେ ତୋର ଜ୍ୟେଷ୍ଠ ଭାଇ ଅଟଇ ଯୁଗତେ
ଆତଯାତ ହୋଇଣ ବସଇ ଦେବରଥେ ।
ଦକ୍ଷ ଯେ ଗନ୍ଧର୍ବ କିନ୍ନର ବିଧ୍ୟାଧରୀ
ବିବିଧ ଭୋଗରେ ସେ ଲଙ୍କା ଭୋଗକରି ।
ତୁମ୍ଭେ ବନବାସୀ ଏବେ କର୍ମର ବିପାକେ
ଦିନବଞ୍ଚ ତୁମ୍ଭେରେ କନ୍ଦମୂଳ ପାକେ ।
ଏବେ ତପକରି ପାଇଲ ଯେ ବର
ପ୍ରାପତ ହେବାନିଧିରେ କିମ୍ପା ହେଳା କଲ ।
ସର୍ବଦା ଶରୀରେ କିରେ ବଳ ପୁଣ ଥାଇ
କିଛିଦିନ ଗଲେ ବଳ ବପୁ ସରିଯାଇ ।
ଆମ୍ଭେ ସେହି ଲଙ୍କାରେ ରାଜ୍ୟ କରୁଥିଲୁଁ
ବିଶ୍ୱକର୍ମାକୁ ଡକାଇ ନବର ଗଢ଼ାଇଲୁଁ ।
ଅସମୟ କାଳରେ ପକାଇ ଅଇଲୁ
ପାତାଳପୁରେ ଯାଇ ଆମ୍ଭେରେ ଲୁଚିଲୁଁ ।
ଶ୍ରଦ୍ଧାକଲେ ପୁଣରେ ପାଇବ ଆଉ କାହିଁ
କିମ୍ପା ଏସନ ବିଚାରୁ ବିଶ୍ରବା ତନୟି ।
ଅମୃତ ଭୁଞ୍ଜିବାକୁରେ ଶୁଚିମନ୍ତ କାହୁଁ
ଚାଲ ଏବେ ଯିବାଲଙ୍କା ଅନୁକୂଳ ହେଉ ।
ମୁଁ ଯାହା ବୋଲୁଛଇରେ ସେକଥା ନ ଘେନ
ଅଜାର ବଚନ ଶୁଣି ବଚନ ଶୁଣି ବୋଲେ ଦଶାନନ ।

ସୁମାଳୀ ଦୈତ୍ୟ ତନୟେ ସେହି ଯେ ପ୍ରଶସ୍ତ
ତାର ସଙ୍ଗେ ଭାଳିଲା ଯେ ବିଶର୍ବାର ସୁତ ।
ଶୁଣିକରି ମାତୁଳ ଅଜା ବେନିକହି
ଲଙ୍କାଡ଼େ ମାଡ଼ି ବସିବା ଆମ୍ଭେ ଯାଇଁ ।
ତୋହର ବିଚାରକୁରେ କେମନ୍ତ ଯାଗାଇ
କୁବେର ଆମ୍ଭର ଯେ ଅଟଇ ଜ୍ୟେଷ୍ଠ ଭାଇ ।
ଘେନିଲେ ଆମ୍ଭେ ଘେନି ପାରିବାଟିକି ଦେଶ
ନିପୁଣ ତିନିପୁରେ ଆମ୍ଭଙ୍କୁ ହେବ ହାସ୍ୟ ।
ଏତେ କର୍ମ ଯେବେରେ କରିବ ଶଯ୍ୟାଛାଡ଼ି
ଏକାବେଳକେ ଯେବେରେ ମାଡ଼ିବସି ପାରି ।
ତେବେ ସେ ଆମ୍ଭର ଯେ ଅଟଇ ବଡ଼ପଣ
କୁବେରର ଅଛନ୍ତି ଅନେକ ଦକ୍ଷଗଣ ।
ଦଶଗ୍ରୀବ ବଚନରେ ବୋଲଇ ପ୍ରଶସ୍ତ
ତୁ କିମ୍ପା ଏମନ୍ତ ଯେ ବିଚାରୁ ବିଂଶହସ୍ତ ।
ବେଦବର ବୋଲେ ତୁରେ ଜିଣିବୁ ସକଳ
ସେକଥା ମାୟା ନୋହେ ବିଶ୍ରବାର ବାଳ ।
ସେଥିରେ ଥିବୁଁ ଆମ୍ଭେ ରଥ ଗଜ ଘେନି
ଯେତେକେ କ୍ଷତ୍ରି ମୋହର ଅସୁର ସଇନି ।
ବିଷ୍ଣୁଙ୍କୁ ସିନା ଆମ୍ଭେ ମନରେ ଶଙ୍କାକରି
ଚଉଦ ଭୁବନରେ ଆଉ କାହାକୁ ନଡ଼ରି ।
ଶୁଣିଣ ଦଶଗ୍ରୀବ ମନରେ କଲେ ଇଚ୍ଛା
ଥାଟ ସଜକର ବୋଲି ଦେଲେ ସେ ଯେ ଦୀକ୍ଷା ।
ଯେ ଯାହାର ଆୟୁଧ ଘେନିଣ ସଜ ହୋନ୍ତି
ଦଶକନ୍ଧ ତିନିଭାଇ ରଥରେ ବସନ୍ତି ।
ସୁମାଳୀ ଅଙ୍କପନ ପ୍ରଶସ୍ତ ଧୂମ୍ରାକ୍ଷ
ଯେ ଯାହାର ବାହାନ ଚଢ଼ିଣ ବାହାରେକ ।
ସିନ୍ଧୁପାରି ହୋଇଣ ଯେ ଲଙ୍କାରେ ମିଳନ୍ତି
ବାହାରେ ପଦାରେ ସେ ଯାଇଣ ଠୁଳ ହୋନ୍ତି ।
ବିଶର୍ବା ଋଷିଙ୍କର ଛାମୁକୁ ନ ଗଲେ
ଓପ୍ରୋଧ ବସିବ ଯେ ବୋଲିଣ ବୋଇଲେ ।
ଲଙ୍କାକୁ ବାହାର ଯେ ସେ ରୁହାଇ ଥାଟ
ବୁଦ୍ଧି ଏକ ଭାବିଲା ଯେ ବିଶ୍ରବାର ଚାଟ ।
ବୋଇଲା ଆଗେ ମୁଁ ନ କରିବି ସମର
ବୁଝିବା ତାଙ୍କର ଯେ କେବଣ ବେଭାର ।
ପ୍ରୀତି କରିଣ ଆମ୍ଭେ ମାଗିବାକ ଦେଶ
ଲୋଭରେ ନଦେଲେ ଆମ୍ଭେ କରିବା ଅମରୀଷ ।

ଏସନେକ ବୋଲିଣ ପ୍ରଶସ୍ତକୁ ପେଶି
ମାତୁଳ ବ୍ୟଗ୍ରରେ ତୁ କୁବେରକୁ କହସି ।
ସେ ମୋର ଜ୍ୟେଷ୍ଠ ଭାଇ ମୁଁ ତାର କନିଷ୍ଠ
ବନବାସ କରି ମୁଁ ପାଇଲି କେତେ କଷ୍ଟ ।
ରହିବାକୁ ସ୍ଥାନ ମୋର ଆଉ ନାହିଁ କିଛି
ଲଙ୍କା ବିଧ୍ୱଂସିବାକୁ ମନରେ ମୋର ଅଛି ।
ସେ ଯେ ଧନପତି କୁବେରକୁ କହି
ପୁଣ୍ୟ କରିବାକୁ ଦିଗପାଳ ସେ ଅଟଇ ।
ତାର ମନକଲେ ଅନେକ ଠାବ ଅଛି
ଲଙ୍କାରେ ଭୁବନ ସେ ତେଜିଯାଇ ଲେଛି ।
ମୁହିଁତ ସାନ ତାର ସମ୍ଭାଳିବ ମୋତେ ଭାଇ
ମୁହିଁ ସୁସ୍ଥ ହେଲେ କି ତୋହର ସୁସ୍ଥ ନୋହି ।
ଏସନେକ ବାଗେ କହିବୁ ତାଙ୍କ ଆଗେ
କଟକ ନ ଛାଡ଼ିବ ସେ ଯେବେ ଏବେ ବାଗେ ।
ପଛେ ଯାଇଁ ବୋଲିବୁ ମୋର ବାପ ମହୀ
ଝୀଆଣିଆ ଅଂଶରେ ଦଶଗ୍ରୀବର ହୋଇ ।
ସ୍ୱଭାବେ ଦଶଗ୍ରୀବର ତୋଠାରେ ଅର୍ଜିତ
ବାପ ଅର୍ଥବିତ୍ତ ବାଣ୍ଟି ସିନା ଯେ ଭୁଞ୍ଜିତ ।
ରାବଣ, କୁମ୍ଭକର୍ଣ୍ଣ, ବିଭୀଷଣ ତିନି
ତାଙ୍କୁ ନ ଦେଇ ଭୋଗ କରୁ ତୁ ମେଦିନୀ ।
ଯେତେ ସମୟ ତୁରେ ଏଥିରେ କଳୁଘର
ସେତିକି ସମୟ ଯେ ରହିବ ଦଶଶିର ।
ଭଲରେ ନଛାଡ଼ିଲେ ହୋଇବ ନିଶ୍ଚେ ଯୁଦ୍ଧ
ବିଶର୍ବା ସୁତଙ୍କ ସଙ୍ଗେ ନୁହତୁ ବିରୋଧ ।
ଏସନେକ ବୋଲିଣ ଜଣାଅ ତୁ ଯାଇ
ଭଲରେ ଯେବେ ସେ କଟକ ନ ଛାଡ଼ଇ ।
ନୋହିଲେ ଧର୍ମ ଛାଡ଼ିବ କରିବି ସମର
କହ ତୁମ୍ଭେ ମାତୁଳ କୁବେର ଛାମୁର ।
ଦଶଗ୍ରୀବ ବଚନେ ତା ମଉଳା ଚଳିଗଲା
ସୁବର୍ଣ୍ଣମୟ ଲଙ୍କାରେ ଯାଇଣ ମିଳିଲା ।
ଦେଖିଲା କୁବେର ଯେ ଆସ୍ଥାନ କରିଛି ।
ପ୍ରଶସ୍ତକୁ ଦୂରକୁ ଦେଖିଣ ସେ ଯେ ପୁଛି ।
କେଉଁଠାରୁ ଅଇଲୁରେ କେବଣ ଦେଶେ ଘର
ରାକ୍ଷସ ତନୁତ ଅଟଇରେ ତୋର ।
ପ୍ରଶସ୍ତ ବୋଇଲା ମୁଁ ଯେ ସୁମାଳୀର ସୁତ
ବିଶର୍ବାର ଘରଣୀ ନଉକେଶୀର ଭ୍ରାଥ ।
ଦଶଗ୍ରୀବ ମୋହର ଭଗ୍ନୀକୁ ତନଯେ
ଯତନରେ ତୋହର ପାଶକୁ ପଠିଆଏ ।
ତପ କରିଣ ସେ ଯେ ପାଇଲା ପୁଣି ବର
ପ୍ରସନ୍ନ ହୋଇଣ ତାକୁ କୁଶଧର ଦେଲେ ବର ।
ଜଗତ ଜିଣିବ ସେ ନିଜ ଭୁଜବଳେ
କେହି ତାକୁ ସାମର୍ଥ୍ୟ ନୋହିବେ ରବିତଳେ ।
ଏସନ ବୋଲି ଆଜ୍ଞା ଦେଲେ ବେଦପତି
ଶୁଣିଣ ଦଶକନ୍ଧ ପରମ ତୋଷ ମତି ।
କୁମ୍ଭକର୍ଣ୍ଣ ବିଭୀଷଣ ସହିତେ ବର ପାଏ
ତୋହର ତହିଁକି ମୋତେ ସେ ପଠିଆଏ ।
ଗଡ଼ର ବାହାରେ ଯେ ଅଛନ୍ତି ଭାଇ ତିନି
ସଙ୍ଗେ ଚତୁରଙ୍ଗ ବଳ ଅନେକ ସଇନି ।
ମୋତେ ବୋଇଲେ ମୋର ଭାଇର ଆଗେ କହ
ମୋତେ ଠାବ ନାହିଁ ଯେ ରଖିବାକୁ ଦେହ ।
ସେ ବୋଲେ ଲଙ୍କାଗଡ଼ ଛାଡ଼ିଣ ମୋତେ ଯାଉ
ଅନ୍ୟ ଠାବରେ ସେ କଟକ କରି ରହୁ ।
ଦଶଗ୍ରୀବ ଯେତେ ପ୍ରକାରେ କହିଥିଲା
କୁବେରର ଆଗରେ ପ୍ରଶସ୍ତ କହିଲା ।
ଶୁଣି ଧନପତିର ନସ୍ତୁରେ ବାକ୍ୟ କିଛି
ବିସ୍ମୟେ ହୋଇଣ ଯେ ସ୍ତବ୍ଧ ହୋଇ ବସି ।
ଘଡ଼ିକରେ ସମ୍ବାଦ ସେହି ପୁଣ କରି
ବୋଇଲା ପିତାଙ୍କୁ ମୁଁ ଆସଇ ପଚାରି ।
ତୁ ଏବେ ପ୍ରଶସ୍ତ ହୋ ଏଠାରେ ରହସି
ମୋର ଆସିବା ଯାଏ କାହିଁ ନ ଯାଅସି ।
ଏତେବୋଲି ପ୍ରଶସ୍ତକୁ ସେ ବସାଇ
ପୁଷ୍ପକ ଆରୋହି ଚଳେ ନିଧି ସାଇଁ ।
ସୁବଳୟ ପର୍ବତରେ ପ୍ରବେଶ ହୋଇଲା
ବିମାନରୁ ଓହ୍ଲାଇ ପିତାର ପାଶେ ଗଲା ।
ନମସ୍କାର କରିଣ କହିଲା ବାରତା
ଦଶାନନ, କୁମ୍ଭକର୍ଣ୍ଣ, ବିଭୀଷଣ ତିନି ସୁତା ।
ତପକରିବାକୁ ଯେ ଯାଇଣ ଥିଲେ ପୂର୍ବେ
ଲଙ୍କାଗଡ଼ ମଗାଇ ସେ ପଠାଇଛନ୍ତି ଏବେ ।
ପ୍ରଶସ୍ତ ନାମେ ସେ ସୁମାଳୀର ସୁତ
ସେ ମୋତେ ଉତପାତ କହିଲା ବହୁତ ।
ଶୁଣିକରି ବିଶର୍ବା ଯୋଗବଳ କରି
ଜାଣିଲେ ଶତେକ ଯୁଗ କୁବେରର ସରି ।

ଚଉଦଦଗଣ୍ଡା ଭୋଗ କରିବ ରାବଣ
ମତେ ଅପକ୍ଷାତ ଦେଇ ମାରିବ ସେ ପୁଣ।
ବୋଇଲେ କୁବେରରେ ମୋର ବୋଲ ଶୁଣ
ସେ ପୁର ତେଜ୍ୟାକରି ଯାଅ ତୁ ବହନ।
ଶତେ ଯୁଗ ବଳାରେ ସମ୍ପୂର୍ଣ୍ଣ ହୋଇଲା
ସେ ଅସୁର ଭୂମି ଦୈତ୍ୟକୁ ଭୋଗ ହେଲା।
ବହୁତ ଅନ୍ୟାୟ ଯେ କରିବ ରାବଣ
ନାରାୟଣ ଜନ୍ମ ହୋଇ ମାରିବେ ତାକୁ ପୁଣ।
ସ୍ୱଭାବେ ଦଶକନ୍ଧ ତୋର ସାବତ ଭାଇ
ଆବର ବିଶେଷରେ ଦୁଷ୍ଟ ତନୁ ବହି।
ନେଉ ସେ ଲଙ୍କାଗଡ଼ ଛାଡ଼ିକରି ଆସ
ମୁହିଁ ତୋତେ ଦେବି ଏହି ସ୍ୱର୍ଗବାସ।
କପିଳାସ କନ୍ଦରକୁ ଏବେ ବଳା ଚଳ
ପୁଷ୍ପକ ବନ ଫଳରେ ବିପୀନ ଗହଳ।
ଈଶ୍ୱରଙ୍କୁ କୁମରରେ କରିବୁ ଦରଶନ
ସେଠାରୁ ଚଳିଯିବୁ ଅଳଙ୍କାବନ ପୁଣ ।
ଅଳକାପୁରେ ଯାଇ କର ତୁରେ ଘର
ସେ ସ୍ଥାନ ଉତ୍ତମରେ ଅଟେ ତୋତେ ସାର।
ଦେବଙ୍କ ଆସନରେ ସକଳଗୁଣେ ସରି
ଅମରାବତୀ ପୁର ଯହିଁକି ପଟାନ୍ତରି ।
ପିତାଙ୍କ ବଚନେ କୁବେର ସନମତ କଲା
ନିଶ୍ଚୟେ ଲଙ୍କାଗଡ଼ ମୁଁ ଛାଡ଼ି ବୋଇଲା।
ପିତା, ମାତା, ଭ୍ରାତା ତିନିଙ୍କି ନମସ୍କାର କରି
ନଉକେଶୀ ଚରଣେ ଓଳଗେ ବେଗକରି।
ସୁମାଳି ଦୋହିତା ତା ପୁତ୍ରଙ୍କୁ କୋଳକଲା
ମୁଖରେ ଚୁମ୍ବଦେଇ ଶରୀର ଆଉଁସିଲା।
ବୋଇଲା ଆରେ ବାବୁ ନଧର ମୋର ଦୋଷ
ସାନୁଜ ତୋର ସିନାରେ ଅଟେ ଦଶଈଶ।
ମୁହିଁ ଏବେ ତାହାକୁରେ ତିଆରିବି ଯାଇ
ଲଙ୍କାରେ ନରହିବରେ ମୁଁ ଦେବି ବାହୁଡ଼ାଇ।
କୁବେର ବୋଇଲା ନକରିବ ସେ ତୋରବୋଲ
ତିନିପୁରେ ପ୍ରତାପୀ ସେ ହେବ ଲଙ୍କମଲ୍ଲ ।
ଯେବଣ ଦିନରେ ତୋତେ ବ୍ରହ୍ମା ବରଦେଲା
ମୁହିଁ ତାହା ଶୁଣିଛିରେ ବିଧାତା କହିଗଲା।
ନଉକେଶୀ ବୋଲେ ତୁରେ ନଧର ବିମନ
ମୁହିଁ ଯାଇ ପ୍ରବୋଧିବି ଦଶଈ ବଦନ।

ବଇଶ୍ରବଣ ବୋଇଲେ ଶୁଣ ଗୋ ଜନନୀ
ସେ ପୁତ୍ର ଦୁଷ୍ଟ ତୋର ନଘେନେ କଥାପୁଣି।
ପିତାଙ୍କୁ କହିବାରୁ ପିତା ତାକୁ ତଡ଼ି
ମୋତେ ବୋଇଲେ ସେ ପୁରୁ ଯାଅ ତୁ ବାହାରି।
ତୋହର ବୋଲ ଏବେ ଲୋ ନ ରଖିବ ପୁଣ
କାଳେ ଲଜ୍ଜା ପାଇବୁ ତୁହିଟି ଗଲେ ଜାଣ।
ଥରକେ ପିତାର ପାଶେ ଆସିଣ ଥିଲି ମୁହିଁ
ତୁ ବୋଇଲୁ ଭାଇକି ଓଳଗ ବେଗେ ଯାଇ।
ତୋହର ବଚନ ସେ ନମାନିଲା ପୁଣ
ନମସ୍କାର ନୋହିଲା ମୋତେ ସେ ଦଶାନନ।
ଏ ବଚନ ଶୁଣି କରି ଜନନୀ ତୋଷ ହେଲା
ବୋଇଲା ମୁହିଁ ଥରେ ପଚାରଇରେ ବଳା।
ଏତେ ବୋଲି ସଙ୍ଗରେ ସୁପଲେକ୍ଷୀକି ଘେନି
ଅନ୍ତରୀକ୍ଷେ ଚଳିଲା ବିଶ୍ରବା କାମିନୀ।
ନିଜ ପିତା ପାଶରେ ହେଲା ନମସ୍କାର
ଏଥୁ ଅନନ୍ତରେ ବିଶର୍ବା କୁମର।
ମୁନି ବୋଇଲେ ପୁତ୍ରରେ ନ ବିଚାର କିଛି
ଯଦ୍ୟପି ନଉକେଶୀ ବୋଧିଣ ଯାଉଛି।
ତାହାର ବୋଲ ଯଦି ନକରେ ବିଂଶକର
ସ୍ୱଭାବରେ ପ୍ରକୃତି ତା ଅଟଇ ଅସୁର।
ତୁ ଏବେ କପିଳାସ କନ୍ଦରକୁ ଚଳ
ମୋର ବୋଲ କରିରେ କିଛିହିଁ ନଭାଳ।
ଅସୁର ଭୋଗ ଏବେରେ ହେବ ଲଙ୍କଦେଶ
ପୂର୍ବର କଥା ବାବୁରେ ଅଛଇ ଭବିଷ୍ୟ।
ଏଠାରୁ ଆମ୍ଭେ ଭୂମି ଛାଡ଼ି କରି ଯିବୁଁ
ବିଲଙ୍କା ରଷି ସଙ୍ଗେ ତପ ଆରୋହିବୁଁ।
ନଉକେଶୀ ଗଲା ଯେ ନ ଆସଇ ଆଉ
ଦୋହିତାକୁ ସଙ୍ଗେ ଘେନି ପୁତ୍ର ସଙ୍ଗେ ଥାଉ।
ଯାଅରେ କୁବେର ତୁ କପିଳାସ ଗିରି
ଆଜଠାରୁ ବିବାଦୀ ତୋର ଅଟଇ ଦଶଗିରି।
ତୋରସଙ୍ଗେ କଳି ଯେ କରିବ ମହାବଳି
ଏତେବୋଲି ତପକରେ ବିଶ୍ରବା ତପଶାଳି।
ସ୍ରୁପ ସ୍ରୁଜ ଧେନୁ ବସା କୁଶ ମନ୍ତ୍ର ପୋଥି
ସ୍ୱାହା ପ୍ରୋକ୍ଷଣୀ ଘୃତ ସିଦ୍ଧା ଯେ ପ୍ରଭୃତି।
କୃଷ୍ଣାଜିନଛାଲ ଯେ ଦୋହରା ହୁତାଶନ
ଖଣନ୍ତି କମଣ୍ଡଳ ବିବିଧ ଦ୍ରବ୍ୟମାନ।

ଭରଦ୍ୱାଜଙ୍କର ଦୋହିତା ସଙ୍ଗେ ଘେନି
ବିଲଙ୍କା ପଶ୍ଚିମକୁ ଚଳିଲେ ମହାମୁନି ।
ଋଷିଙ୍କର ମେଳରେ ହେଲେ ପରବେଶ
ସେଠାରେ ତପକରେ ପୌଲସ୍ତିର ଶିଷ୍ୟ ।
ପିତାର ଚଳନ୍ତେ ଯେ କୁବେର ମନେ ଭାଳି
ପୁଷ୍ପକ ରଥ ଚଢ଼ିଣ ସେଠାରୁ ବେଗେ ଚଳି ।
ଲଙ୍କାଗଡ଼ ଭୁବନରେ ହେଲେ ପରବେଶ
ଶ୍ରୀ ଜଗନ୍ନାଥ ଶରଣ ମୁଁ ବଳରାମ ଦାସ ।
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
ଶ୍ରୀରାମର ଆଗେ ହୋ କହିଲେ ଅଗସ୍ତି ।
ମୁହିଁ ଯେ ସେକଥା ତୁମ୍ଭ ଆଗରେ କହି
ଯେଉଁ ନାମ ଶୁଣନ୍ତେ ପାତକ ହୋଏ ଦହି ।
ଏଥୁ ଅନନ୍ତରେ ଯେ କୁବେର ଚଳିଗଲା
ଲଙ୍କାଗଡ଼ରେ ଯାଇଁ ପ୍ରବେଶ ହୋଇଲା ।
ନବରେ ମିଳିଣ ଯେ ଆସ୍ଥାନେ ବିଜେକରି
ପ୍ରଶସ୍ତଙ୍କୁ ଚାହିଁଣ ଯେ ବଚନ ପଚାରି ।
ଶୁଣରେ ମାତୁଳ ତୁ ମୋହର ବାଣୀ
ଯହିଁର ଅର୍ଥେ ତୋତେ ପେଶେ ବିଂଶପାଣି ।
ସେକଥା ହେଲା ସିଦ୍ଧ ଜଣାଅ ଦଶାନନ
ସୁଖେ ସେ ଭୋଗକରୁ ଏ ଲଙ୍କା ଭୁବନ ।
ଯହିଁ ତହିଁରେ ମୁହିଁ କରିବିରେ ଠାବ
ସାନଭାଇ ମୋରରେ ଅଟେ ଦଶଗ୍ରୀବ ।
ମୁହିଁ ଯେବେ ତାକୁରେ ନଦେବି ଲଙ୍କାଟଇ
ଜନଙ୍କ ମୁଖରେ ମୁଁ ପାଇବି ଅପକୀର୍ତ୍ତିଟି ।
ବିଶ୍ରବା ଋଷିଙ୍କର ସେ ଅଟନ୍ତି ନିଜପୁତ୍ର
ଏ ପୁରେ ରହିବାର ସେ ମିଳଇ ଯୁଗତ ।
ସ୍ୱଭାବରେ ମାଇକା ଅଂଶରେ ଭାଗ ଅଛି
ଯେବେ ଶରଧା କଲା ନଉକେଶୀର ବସି ।
ହୋଉ ସେ ନୃପତି ରହୁ ଲଙ୍କା ପୁରେ
ମୁହିଁ ରହିବି ଯାଇଁ କପିଳାସ କନ୍ଦରେ ।
ତୁ ଯାଇ ମାତୁଳ ହୋ ଜଣାଅ ଦଶଗିରି
ଏତେ ବୋଲି କୁବେର ବଚନ କହେ ତାରି ।
ବୋଇଲା ପ୍ରତ୍ୟକ୍ଷରେ ଦେଖରେ ଏବେ ପୁଣ
ଏତେ ବୋଲି ଧେଣ୍ଟୁରା ଫେରାଏ ରାଜ୍ୟେଣ ।
ରଥ ଗଜ ଅଶ୍ୱ ପାଦାତି ସକଳ
ନଗ୍ର ଛାଡ଼ିବା ଶୁଣି ସମସ୍ତେ ବିକଳ ।
ଯେ ଯାହାର ପଦାର୍ଥ ସକଳ ସଜକଲେ
ପୁଷ୍ପକ ଯାନ ପରେ ସମସ୍ତେ ଥୋଇଲେ ।
ରାଜାର ଭଣ୍ଡାର ଯେ ରାଣୀ ମହାଦେଇ
ଅମାତ୍ୟଗଣଙ୍କ ପଦାର୍ଥ ଯଶ ହୋଇ ।
ଦକ୍ଷ, କିନ୍ନର, ବିଦ୍ୟାଧର, ଗନ୍ଧର୍ବେ ଯେ ପୂରି
ଚତୁରଙ୍ଗ ବଳ ଯେ ସମସ୍ତେ ବିଜେକରି ।
ଦଣ୍ଡ ସିଂହାସନ ଯେ ଚାମର ତ୍ରାସ ଛତ୍ର
ଦେବାଙ୍ଗ ଆଭରଣ ଅଳଙ୍କାର ଯେ ବସ୍ତ୍ର ।
ସମସ୍ତଙ୍କୁ ବସାଇ ସକଳ ଦ୍ରବ୍ୟ ଭଲେ
ଏକା ବିମାନରେ ସକଳ ଠୁଳ କଲେ ।
ବିମାନେ ବସାଇ ଯେ ଗଗନେ ଚଳିଗଲା
ପ୍ରଶସ୍ତ ଦେଖୁ ଦେଖୁ ଲଙ୍କା ଯେ ତେଜ୍ୟାକଲା ।
କପିଳାସ କନ୍ଦରେ ହେଲା ପରବେଶ
ହର ପାର୍ବତୀ ଛାମୁରେ ମିଳିଲା ଯେ ହରଷ ।
ସଦାଶିବ ଚରଣରେ କଲା ନମସ୍କାର
ପାର୍ବତୀଙ୍କ ଚରଣେ ବିନୟେ କୁମର ।
ସଦାଶିବ ବୋଇଲେ ଶୁଣରେ ଧନପତି
ପିତା ତୋର ବିଶର୍ବାରେ ଅର୍ଜିଲା କୀରତି ।
ଶୂନ୍ୟ ଗର୍ଭରୁ ଜାତ ହୋଇଲାକ ପୁଣ
ଅବିଚାରେ ଅସୁରୁଣୀ ସଙ୍ଗରେ ରମଣ ।
ଅସୁରୁଣୀଠାରୁ ଯେ ଅସୁରେ ଜାତହେଲେ
ତପ କରିବାରୁ ବିଧାତା ବର ଦେଲେ ।
ତିନିପୁର ଚଉଦ ଭୁବନେ ହେବ ସାର
ଦେବତାଙ୍କୁ ନେଇଣ ଖଟୀଲା ପାଦତଳ ।
ଏସନେକ ଯଶ ତୋର ପିତା ଅରଜିଲା
ଯୁଗ ଯୁଗକୁ କଥା ପୁରାଣେ ରହିଲା ।
ଏବେ ତୋତେ ବାହାର କଲା ସେ ଲଙ୍କାରୁ
ସତ୍ୟଯୁଗ ରାଜୁସି ପୂରିଲା ଏହିଠାରୁ ।
ଏତେବୋଲି ସଦାଶିବ ବିଶ୍ୱକର୍ମା ରାଇ
ଅଳକାପୁର ଏକ ଯେ ଭୁବନ ତିଆରଇ ।
ବାରସ୍ୱତୀ ଭୁବନ ତୋଳିଲା ଏକ ରାତ୍ରରେ
କୁବେର ଯେ ବିଜେକଲା ସେହି ଭୁବନରେ ।
ଗଣ୍ଡୁକୀ ନଦୀ ନାମରେ ରମ୍ୟକ ଯେ ସ୍ଥାନ
ସେଠାରେ ରାଜ୍ୟ କଲା ବିଶର୍ବା ନନ୍ଦନ
କୁବେର ଯେତେବେଳେ ଛାଡ଼ିଲାକ ଦେଶ
ସୁରଗଣମାନେ ଯେ ପାଇଲେ ମନେ ତ୍ରାସ ।

ବୋଇଲେ ଅନ୍ୟାୟ ଯେ ଅର୍ଜିବ ଦଶଗିରି
ନିଶ୍ଚୟେ ଘେନିବ ଏ ଆମ୍ଭର ସ୍ୱର୍ଗପୁରୀ ।
ଏଥୁ ଅନନ୍ତରେ ଯେ ଶୁଣ ଦାଶରଥି
ଯେତେବେଳେ କୁବେର ଛାଡ଼ିଲାକ ପୃଥ୍ୱୀ ।
ତୁଚ୍ଛା ହୋଇଲା ଯେ ସୁବର୍ଣ୍ଣ ନାମେ ଦେଶ
ଦେଖିଣ ବାହୁଡ଼ିଲା ଯେ ସୁମାଳିର ଶିଷ୍ୟ ।
ଦଶଗ୍ରୀବ ଆଗରେ ସେ କହିଲା ପୁଣଯାଇ
ଲଙ୍କା ଛାଡ଼ି କୁବେର ଗଲା ଆଡ଼ ହୋଇ ।
ତୋର ବୋଲିବାରେ ମୁଁ ଯାଇ ଯେ କହିଲି
ହାନି ଅପଚୟେ ଦେଖାଇ ବୋଇଲି ।
ଶୁଣି ପରମ ତୋଷ ହେଲା ଧନେଶ୍ୱର
ବୋଇଲେ ମୋର କନିଷ୍ଠ ଅଟଇ ଦଶଶିର ।
ସୁଖରେ ଭୋଗ ସେ କରୁ ଲଙ୍କପୁରୀ
ମୁହିଁ ଯାଇଣ ରହିବି କପିଳାସ ଗିରି ।
ପିତାକୁ ପଚାରିଣ ସେ ବାହୁଡ଼ି ଅଇଲା
ମୋତେ ରାଇଣ ଯେ ତହୁଁ ବହୁତ କହିଲା ।
ବୋଇଲା ଦଶାନନ ଏହିକ୍ଷଣି ଆସୁ
ଶୁଭ ଅନୁକୂଳେ ଯେ କଟକ ମାଡ଼ିବସୁ ।
ଏସନେକ ବୋଲିଣ ସକଳ ସଜକରି
ମୋର ଥାଉଁ ଥାଉଁ ଗଲା ସେ ଅପସରି ।
ଦଶାନନ ବୋଇଲେ ସେ କେଉଁ ରୂପେଗଲା
ପ୍ରଶସ୍ତ ବୋଇଲେ ସେ ଆକାଶେ ଗମିଲା ।
ଦଶାନନ ବୋଇଲା ସେ ଆକାଶେ କେନ୍ହେଯାଇ
ପ୍ରଶସ୍ତ ବୋଇଲା ସେ ପୁଷ୍ପେକ ଅଛିପାଇ ।
ଦଶାନନ ବୋଇଲେ ସେ ଏକାକୀ ଗଲା ପୁଣ
ପ୍ରଶସ୍ତ ବୋଇଲେ ସମରାଜ୍ୟ ନେଲା ଜାଣ ।
ଦଶଗ୍ରୀବ ବୋଇଲା ଏତ ଅସମ୍ଭବ ହୋଇ
ବାସ୍ତରୀ କୋଟି ଘର ଲଙ୍କାରେ ଅଟଇ ।
ଏକା ବିମାନେ କେମନ୍ତେ କଲେ ସେ ଗମନ
ଏକଥା ବୁଝାଇ କହ ସୁମାଳୀ ନନ୍ଦନ ।
ପ୍ରଶସ୍ତ ବୋଇଲା ତୁ ଯେ ଶୁଣ ମୋରଠାରୁ
ସେ ପୁଷ୍ପକ ବିମାନ ଯେ ମେରୁଠାରୁ ମେରୁ ।
ଗିରିଙ୍କର ମଧ୍ୟରେ ଅଟେ ମେରୁ ପୁଣ
ଦେବଙ୍କର ମଧ୍ୟରେ ମେରୁ ଅଟଇ ନାରାୟଣ ।
ଅସୁରଙ୍କର ମେରୁ ଅଟନ୍ତି ବଳିରାଜା
ମନୁଷ୍ୟଙ୍କର ମେରୁ ଅଟନ୍ତି ସର୍ବରାଜା ।
ପକ୍ଷୀଙ୍କର ମେରୁ ଯେ ଗରୁଡ଼ ନାମବହି
ସର୍ପବର ମେରୁ ଯେ ଅନନ୍ତ ନାମେ ଅହୀ ।
ଜୀବମାନଙ୍କର ମେରୁ ଅଟଇ ଯେ ସିଂହ
ବୃକ୍ଷଙ୍କର ମେରୁଟି କଳପ ବଟ ନାମହ ।
ପୁଷ୍ପଙ୍କର ମେରୁ ଯେ ଅମଳାଣ ପାରିଜାତ
ଗୋରୁଙ୍କର ମେରୁ ଯେ କାମଧେନୁ ସତ ।
ଦିବସରେ ମେରୁ ଯେ ଅଟନ୍ତି ଦିନମଣି
ରାତ୍ରକାଳେ ମେରୁ ଅଟେ ଚନ୍ଦ୍ରମା ଯେ ପୁଣି ।
ଜୀବ ପବନ ମେରୁ ଶରୀରର ଅଟଇ
ଶୁଣିକରି ଦଶାନନ ସନ୍ତୋଷ ମନ ହୋଇ ।
ପ୍ରଶସ୍ତ ବୋଇଲେ ସେ ଯାନ କଥାଶୁଣ
ଚଉଦ ପୁର ଅଟଇ ସେ ଯାନ ଗୋଟି ଜାଣ ।
ଚଉଦ ଭୁବନ ତିନିପୁର ନବଖଣ୍ଡ
ସେ ଯାନରେ ବସିଲେ ତେଜିବେ ବ୍ରହ୍ମାଣ୍ଡ ।
ସମସ୍ତଙ୍କୁ ସେଥିରେ ବସାଇ କୁବେର
ଶୂନ୍ୟରେ ଚଳିଗଲା ଅଳକା ନାମେ ପୁର ।
ଜିଭକୁ କାମୋଡ଼ିଲା ଶୁଣି ଦଶାନନ
ବୋଇଲା କୁବେରରେ ଜୀବନ ତୋର ଧନ୍ୟ ।
କେବଣ ତପରେ ଯେ ପାଇଲୁ ଏହିବର
ସମରାଜ୍ୟ ଘେନି ଯେ ଚଳେ ରଥତୋର ।
ଏସନେକ ସମୟରେ ନଉକେଶୀ ମିଳି
ସଙ୍ଗରେ ସୂର୍ପଲେଖୀ ନାମରେ ଦୁଲାଳୀ ।
ମାତାକୁ ଦେଖି ରାବଣ ନମସ୍କାର କଲା
ଜନନୀକି ଦେଖିଣ ମନରେ ସୁଖୀ ହେଲା ।
କୁମ୍ଭକର୍ଣ୍ଣ, ବିଭୀଷଣ ଉଠିଲେ ଭାଇ ବେନି
ଯହୁଁ ସେ ସନ୍ନିଧରେ ଦେଖିଲେ ଜନନୀ ।
ଓଳଗ ମେଲାଇଣ ପୁଚ୍ଛିଲେ ବାରତା
କୁଶଳେ ଅଛନ୍ତି ନା ଆମ୍ଭର ନିଜ ପିତା ।
ନଉକେଶୀ ବୋଇଲେରେ ନକଲ ତୁମ୍ଭ ଭଲ
ଲଙ୍କାକୁ କିମ୍ପା ତୁମ୍ଭେ କୁବେରକୁ ମାଗିଲ ।
ସେହି ଜ୍ୟେଷ୍ଠ ଭାଇ ପରା ଅଟଇ ତୁମ୍ଭର
ତାହାର ସୁଖକିରେ ନୁହଇ ଆମ୍ଭର ।
ସେ କଥାକୁ ଅବିଗୁଣ ପାଇଲେ ତୁମ୍ଭ ପିତା
କୁବେରକୁ ବୋଇଲେ ତୁ ତେଜରେ ଲଙ୍କାକଥା ।
ମୁହିଁ ଦେଇଥିଲିରେ ତୋତେ ଦଣ୍ଡକରି
ମୋତେ ନମାନି ଯେବେରେ ରହୁ ଦଶଗିରି ।

ଛପନ ଗଣ୍ଡାକୁ ସେ ଆୟୁଷ ଅଛି ପାଇ
ମୋହର ବଚନ ତାର ତିନିଭାଗ ଯାଇ ।
ଲଙ୍କାଗଡ଼ରୁ ତାକୁ ଭାଗେ ହେଉ ଭୋଗ
ଏତେ କହି ପିତା ତୋର ହେଲେ ବଡ଼ରାଗ ।
ଦଶକନ୍ଧ ବୋଇଲା ନଜାଣୁ କିଲୋ ମାଆ
ବେଦବର ପ୍ରସନ୍ନରେ ବରଦେଲେ ଯାହା ।
ତିନିପୁର ସାଧିବି ମୁଁ ନିଜ ଭୁଜ ବଳେ
କ୍ଷତ୍ରି ସମ ମୋତେ କେହି ନୋହିବେ ରବିତଳେ ।
ତ୍ରୀଦଶ ଦେବେ ଯେ ଥାଇ ବରଦେଲେ
ଜଗତେ ତୁ ଅଜୟ ହୁଅସି ବୋଇଲେ ।
ଏଡ଼େ ସମ୍ପଦ ମୁଁ ପାଇଲି ତପକରି
କେଉଁଠାରେ ରହିବି କହିବୁ ବିଚାରି ।
ପିତାମହ ରାଜ୍ୟ ଯେ ଅଟଇ ମୋହରି
ଛାଡ଼ିଗଲେ ସେ ଯେ ସ୍ନେହ ଭାବଧରି ।
କହିବାରୁ କୁବେରକୁ ଅଳକାପୁର ଦେଲା
ଅପ୍ରମାଦେ ଲଙ୍କା ଯେ ମୋହର ହୋଇଲା ।
ଯହୁଁ ଦଶକନ୍ଧ ରାୟେ କହିଲା ଏମାନ
ଜନନୀ ବୋଇଲେ ମୁଁ ଯେ ଯାଉଛି ନିଜସ୍ଥାନ ।
ରାବଣ ବୋଇଲେ ତୋତେ ବିଶର୍ବା ଋର୍ଷି କହି
ଆଉ ବେଳେ ତୋର ଦେହ ନଛୁଇଁ ।
ଏତେ କହି ମୁନି ଯେ ପବିତ୍ର କଲେ ଅଙ୍ଗ
ଅଗ୍ନିରେ ପଶିଣ ଛାଡ଼ିଲେ ପାପଅଙ୍ଗ ।
ସ୍ୱାମୀ ସେ ସିନା ନାୟିକା ତୋର ଅଛି
ଆଉ କଥା ମାନ ମୁରୁଛିଲେଣି ରଷି ।
ଏବେ ଲଙ୍କାଗଡ଼ ନେବାରୁ ମୁଁ ପୁଣ
ଅବିଗୁଣ ପାଇଣ ଗଲେ ପିତା ଜାଣ ।
ବିଲଙ୍କା ନାମେ ପୁର ସେଥିରେ ବିଜେକଲେ
ନିଜ ସ୍ଥାନେ ଛାଡ଼ିଣ ରଷି ଚଳିଗଲେ ।
ତୁ ଏବେ ଜନନୀ ଲଙ୍କା ଭୁବନ ଭୋଗକର
ମୁହିଁ ଯାଇ ଖଟିବି ବିଶର୍ବା ମୁନିବର ।
ପ୍ରଶସ୍ତ ବୋଇଲା ଯେ ଭଗ୍ନିର ମୁଖ ଚାହିଁ
ବିଶ୍ରବା ରଷି ଗୋ ସୁବଳୟାରେ ନାହିଁ ।
କୁବେର ଆଗରେ କହିଲେ ତୋର ଭ୍ରଥା
ବୋଇଲେ ଦଶଗ୍ରୀବକୁ ଆଦରି ରହୁମାତା ।
ଆମ୍ଭେ ତପ କରିବୁଁ ବିଲଙ୍କା ଶୁଦ୍ଧ ସ୍ଥାନେ
ଏତେବୋଲି ଅନ୍ତରୀକ୍ଷେ ଚଳିଲେ ମୁନିଧ୍ୟାନେ ।
ସଙ୍ଗରେ ଭରଦ୍ୱାଜ ଦୋହିତା ଚଳିଗଲେ
ଆମ୍ଭର ଆଗରେ ତାହା କୁବେର କହିଲେ ।
ରାମର ମୁଖୁ ଏସନ ବାଣୀ ଶୁଣି
ବିସ୍ମୟେ ହୋଇଣ ଯେ ବସିଲା ତରୁଣୀ ।
ପିତା ଯେ ସୁମାଳୀ ବହୁତ ତିଆରିଲା
ଯେଉଁଠାକୁ ରଷିଗଲେ ଅଗ୍ରାହିଜ୍ୟ ତୋତେପରା
ବିଲଙ୍କା ଦେଶର ପଶ୍ଚିମ ଭାଗରେ
ବନସ୍ତେ ଅଛି ବାର ଯୁଣ ଯେ ବିସ୍ତାରେ ।
ଗଗନ ୬୫ି ସେଠାରେ ବେଳେ ତପକଲା
ତାହାର ବୀର୍ଯ୍ୟରୁ ସାୟେ ମନୁ ଜାତହେଲା ।
ଅସୁରଙ୍କର ଉତ୍ପାତ ହେବାରୁ ସେ ରଷି
ବୋଇଲେ ଏ ବନରେ ଦୈତ୍ୟ ଯେବେ ପଶି ।
ଭସ୍ମ ହୋଇବେ ସେ ଯେ ନ ରହିବେ କେହି
ଜାଣିଣ ଦୈତ୍ୟବଳ ସେ ସ୍ଥାନେ ନଯାଇ ।
ସେ ସ୍ଥାନକୁ ଗଲେ ରଷି ମନରେ ତୋଷହୋଇ
ବିଚାରେ ନଉକେଶା ତେଜିଲେ ମୋତେସାଇଁ ।
ମନରେ ଭାଳିଣ ସେ ରୋଦନ ପୁଣି କଲେ
ଦଶାନନ କହିବାରୁ ପ୍ରବୋଧ ହୋଇଲେ ।
ଏଥୁ ଅନନ୍ତରେ ଶୁଣିବା ରାମ ରାହୁ
ପ୍ରଶସ୍ତକୁ ଚାହିଁଣ ବୋଲେ ବିଂଶବାହୁ ।
ଦିଅ ଆଜ୍ଞା ତୁରେ ବଳ ଯାନ୍ତୁ ବେଗହୋଇ
ଶୁଭ ଅନୁକୂଳେ ଯେ ପଶିବା ଲଙ୍କ ଭୂଇଁ ।
ଦଶଗ୍ରୀବ ବଚନରେ ଚତୁରଙ୍ଗ ବଳ
ଚାଲଚାଲ ବୋଲିଣ ଯେ ଶୁଭିଲା ଚହଳ ।
ତିନି ପୁତ୍ର ଦୋହିତା ଜନନୀ ସହିତେ
ଭାଳେଣୀ ଭାଳନ୍ତି ସେ ଚଢ଼ି ଏକ ରଥେ ।
ଏଥୁ ଅନନ୍ତରେ ଯେ ଚଳେ ସମଦଣ୍ଡ
ବାଦ୍ୟ, ଭେରୀ ବାଜନ୍ତେ କମ୍ପଇ ବ୍ରହ୍ମାଣ୍ଡ ।
ସ୍ୱର୍ଗରେ ଦେବତାଏ କରନ୍ତି ଭାଳେଣି
ନିଶ୍ଚୟେ ଉପଦ୍ରବ କରିବ ବିଂଶ ପାଣି ।
ଦୈତ୍ୟବଳ ଆସିଣ ସର୍ବେ ହେଲେ ରୁଣ୍ଡ
ପୁଣି ସମୟେକ ଦୁଃଖ ପାଇବ ବ୍ରହ୍ମାଣ୍ଡେ ।
ଏସନେକ ବିଚାର କରନ୍ତି ସୁରଗଣ
ଏଥୁ ଅନନ୍ତରେ ହେ ରାମଚନ୍ଦ୍ର ଶୁଣ ।
ଲଙ୍କାଗଡ଼ରେ ପ୍ରବେଶ ହେଲା ଦଶଗିରି
ସେ ଲଙ୍କା ଗଡ଼ରେ ଅସୁର ବଳ ପୂରି ।

ଦେଖିଲେ ଅପୂର୍ବ ଯେ ସୁବର୍ଣ୍ଣମୟେ ଦେଶ
କୁବେରକୁ ପ୍ରଶଂସା କରେ ଦଶାଈଶ ।
ଘରେ ଘରେ ଆବୋରି ରହିଲେ ସର୍ବଜନ
ରାଜ ନବରେ ପ୍ରବେଶ ହେଲା ଦଶାନନ ।
ସୁମାଳୀ ଯେ ରହିଲା ଅନୁରୂପ ସ୍ଥାନ
ଲଙ୍କାରେ ବିହରନ୍ତି ଅସୁର ସୈନ୍ୟ ମାନ ।
ଶୁଭରେ ନକ୍ଷତ୍ର ଯେ ଗଣାଇ ବାର ତିଥି
ଦଶଗ୍ରୀବ ଅଭିଷେକ ହେଲା ଲଙ୍କ ପୃଥ୍ୱୀ ।
ଯୁବ ରାଜା ପଣରେ ଧରାଇଲା ଛତ୍ର
ଏମନ୍ତେ ସୁମରି ଅଇଲେ କୁଳଗୋତ୍ର ।
ଏମନ୍ତେ କେତେ ହେଁ କାଳ ବହିଗଲା
ମୟେ ଦୈତ୍ୟଆସି ଲଙ୍କାରେ ପ୍ରବେଶ ହୋଇଲା ।
ସଙ୍ଗତରେ ଦୋହିତା ତାର ଅଛନ୍ତି ରୂପବନ୍ତୀ
ସୁର ନର ମୁନି ଯେ ଦେଖଇଲେ ମୋହଯାନ୍ତି ।
କରେ ଗଦା ଘେନିଣ ଯେ ଭ୍ରମଇ ଅସୁର
ଯୋଗେଣ ତାହାକୁ ଯେ ଭେଟେ ଦଶଶିର ।
କନ୍ୟାକୁ ଦେଖିଣ ମଦନେ ବଶ ହୋଇ
ଦଇତ୍ୟର ଆଗରେ ପଚାରେ ପୁଣ ଯାଇଁ ।
ଭୋ ମହାତମା ତୁ ଯେ କେବଣ ଦେଶୁ ଆଏ
କିସ ନାମ ତୋର କିଏ ସେ ବାପମାୟେ ।
କେବଣ ଦୈତ୍ୟ ତୁରେ କେବଣ କାର୍ଯ୍ୟେ ବୁଲୁ
କେବଣ କାର୍ଯ୍ୟରେ ତୁ ଲଙ୍କାକୁ ଅଇଲୁ ।
ଦଶଗ୍ରୀବ ବଚନରେ ବୋଲେ ସେ ଅସୁର
ମୟ ଦୈତ୍ୟ ନାମ ଯେ ଅଟଇ ମୋହର ।
ମୋହର ଭାରିଜା ନାମ ଅଟେ ହେମବନ୍ତୀ
ଗର୍ଭେକ ପ୍ରସବିଲା ହୋଇଲା ଦୋହିତୀ ।
କାଳେକ ସେ ଦୋହିତା ନବଯୁବା ହେଲା
କନକ ଚମ୍ପା ପ୍ରାୟେ ତା ରୂପ ଦିଶିଲା ।
ମର୍ତ୍ତ୍ୟପୁର, ସ୍ୱର୍ଗପୁର, ପାତାଳ ଯେ ତିନି
ସଉରଭ୍ୟ ରାଜା ଅଟେ କାହାକୁ ନମାନି ।
ଯେନାମଣି ପାଟଣାରେ ଗଡ଼ ସେହୁକରି
ତାହାକୁ ବିଭା ଦେଲି ଦୋହିତା ମୋହରି ।
କାଳେଣ ସେ ଦୋହୀତା ଲଭିଲା ସୁଖଶିରୀ
ଆହୁରି କଥାଏ ହୋ ଶୁଣ ଦଶଗିରି ।
ସହସ୍ରେ ବରଷ ଯେ ସେଠାରୁ ବହିଗଲା
ହେମବନ୍ତୀ ମୋହର ପୁଣି ଗର୍ଭବାସ ହେଲା ।
ତାର ଉଦରୁ ପୁଣ ଜନ୍ମିଲା ଦୋହିତା
ଶୋଭା ସୁନ୍ଦର ପଣରେ ସେ ହେଲା ଜଗଜିତା ।
ମନ୍ଦୋଦରୀ ନାମ ଯେ ଦେଲି ମୁଁ ତାହାର
ତିନି ଦୋହିତା ଯହୁଁ ଜନ୍ମ ହେଲେ ମୋର ।
ସିଂହକଟୀ ଜିଣି ମଝା ଦିଶଇ ତାହାର
ତେଣୁ ସୁନ୍ଦର ଅଟେ ଦୋହିତା କଳେବର ।
ତିନିପୁରେ ଏହାକୁ ନାହିଁ ସମସରି
ଏଣୁ ଏହାର ନାମ ଅଟଇ ମନ୍ଦୋଦରୀ ।
ଏହା ଅନୁରୂପରେ ବର ନ ପାଇଲି ମୁହିଁ
ସୁନ୍ଦର ପଣେ ଏହାକୁ ସମସରି ନାହିଁ ।
ତେଣୁ ମୁଁ ପୃଥ୍ୱୀ ଯେ ବୁଲିଲି ସମସରି
ମର୍ତ୍ତ୍ୟପୁର, ପାତାଳ, ସ୍ୱର୍ଗ ଆଦିକରି ।
କିଷ୍କିନ୍ଧ୍ୟା କଟକେ ପ୍ରବେଶ ଆସି ହୋଇ
ବାଳିକି ବରିବି ବୋଲି ମନରେ ଭାଳଇ ।
ନାରଦ କହିଲେ ମୋତେ ଲଙ୍କାଗଡ଼େ ଯାଅ
ବିଶର୍ବା ଋଷିଙ୍କର ଅଛନ୍ତି ତିନିପୁଅ ।
ନଉକେଶୀ ଜ୍ୟେଷ୍ଠ ନନ୍ଦନ ଅଟଇ ରାବଣ
ଦୋହୀତା ବିଭାକର ତାହାକୁ ତୁ ପୁଣ ।
ନାରଦଙ୍କ ବଚନରେ ଏ ପୁରକୁ ଆସି
ଶୁଭ ଯୋଗେ ଭେଟ ହେଲି ତୁମ୍ଭେ ଅଛ ବସି ।
ଶୁଣିଣ ଦଶଗ୍ରୀବ ସେ ବୋଲଇ ବଚନ
ଏ କନ୍ୟା ଗୋଟି ମୋତେ କରସି ପ୍ରଦାନ ।
ମୁହିଁଟି ଦଶାନନ ବିଶ୍ରବାଙ୍କର ସୁତ
ସୁମାଳୀ ଦୋହିତାର ଗର୍ଭରୁ ସମ୍ଭୁତ ।
ବ୍ରହ୍ମାଙ୍କୁ ତୋଷିଣ ମୁଁ ଯେ ପାଇଅଛି ବର
ଅଭିଷେକ ଆସି ମୁଁ ହେଲି ଲଙ୍କପୁର ।
ଦିଅ କନ୍ୟା ମୋତେ ପ୍ରାପତ ଯୋଗଅଛି
କହିବାର ବାଗରେ ନ ଦିଶେ ମନ୍ଦପଣ
ମୟେ ଦୈତ୍ୟ ହୃଦରେ କଲେ ବିଚାରଣ ।
କେତେକାଳ ଆଉ ବୁଲିବି ମାୟା ଘେନି
ଏବେ ବୁଲିଣ ମୁଁ ଯେ ଦେଖିଲି ମେଦିନୀ ।
ଏହିତ ବିଶର୍ବା ଋଷି କୁଳରେ ହୋଇଛି ସମ୍ଭୁତ
ରୂପ ଗୁଣେ ସୁନ୍ଦର ଦଶଶିର ଏହାରତ ।
ଦେବି ବୋଲି କନ୍ୟା ଯେ ସନମତ କଲା
ତକ୍ଷଣେ ଦଶାନନ ନଗ୍ର ମଣ୍ଡାଇଲା ।

ବିଭାର ବିଧାନ ମାନ ସଞ୍ଚେ ସର୍ବରାୟେ
ବୀରବେଶ ହୋଇଲେ ବିଶର୍ବା ତନୟେ ।
ମନ୍ଦୋଦରୀ କନ୍ୟାକୁ ସୁବେଶ ବେଗେ କରି
ମୟେ ଦୈତ୍ୟ ଯାଇଣ ଦଶଗିରିକି ସେ ବରି ।
ଏକଥା ଜାଣିକରି ବିଶର୍ବା ଅଇଲେ
ପୁତ୍ରବଧୂ ଦେଖିଣ ଆନନ୍ଦ ହୋଇଲେ ।
ମୟେ ଦଇତ୍ୟର ଯେତେ ଦ୍ରବ୍ୟଥିଲା
ବିଶ୍ରବା ଋଷିଙ୍କି ସେ ନେଇ ସମର୍ପିଲା ।
ସୁମାଳି ତାହା ଯେ ପୂର୍ବରୁ ପୀରତି
ସର୍ବ ଶୁଭ ହେଲା ଅଇଲେ ମହାଯତି ।
ପିତାଙ୍କୁ ଦେଖି ପୁତ୍ରେ ନମସ୍କାର କଲେ
ନଉକେଶୀ ସୂର୍ପଲେଖୀ ସହିତେ ଅଇଲେ ।
ମୁନିଙ୍କ ଚରଣରେ ଓଳଗି ଶୋଇଲେ
ଆମ୍ଭଙ୍କୁ ନିରାଶ କିମ୍ପା କର ଯେ ବୋଇଲେ ।
ଏଥୁ ଅନନ୍ତରେ ଯେ ଶୁଣ ରଘୁସାଇଁ
ଗୋତ୍ରମାନ ପୁଛା ପୁଛି ହୋଇଲେକ ତହିଁ ।
ଜଉତିଷ ଜଣାଇଲା ଶୁଭ ଅନୁକୂଳ
ଶୁଭେଣ ବେଦୀକି ଆସେ ବିଶ୍ରବାର ବାଳ ।
ଆପଣେ ବିଶର୍ବା ଯେ ଆଚାର୍ଯ୍ୟ ହୋଇଲେ
ଶଙ୍ଖରେ ପାଣି ଘେନି ମୟେ ଦୈତ୍ୟ ଦେଲେ ।
ଯଉତୁକ କରିଣ ଏକ ଶକତିଏ ଦେଲା
ବୋଇଲେ ସନ୍ତୋଷେ ଦେଲି ବିଶର୍ବାର ବଳା ।
ବୋଇଲେ ଏ ସହସ୍ର ଯାହାକୁରେ ମାରି
ଦେବ ଯେ ଦାନବ ହେଲେ ନିଶ୍ଚେଁ ପ୍ରାଣହାରି ।
ଏତେ କହିଣ ସେ ସମର୍ପିଲେ ଶର
ଏଥୁ ଅନନ୍ତରେ ଯେ ବିଶ୍ରବା ମୁନିବର ।
ରାବଣ ଦକ୍ଷିଣ ଭୁଜ ମନ୍ଦୋଦରୀ କର
ବାକ୍ୟ ପଢ଼ି କୁଶରେ ବାନ୍ଧିଲେ ମୁନିବର ।
ହୁଳହୁଳି ଶବଦ ଲଙ୍କାର ନାରୀ ଦେଲେ
ପିଉଳା ବାନ୍ଧି ହସ୍ତଗଣ୍ଠି ଫିଟାଇଲେ ।
ବର କନ୍ୟା ଦୁହେଁ ଯେ ଗଲେ ନିଜବାସ
ମୟଦତ୍ୟ ମନ ଯେ ହୋଇଲା ହରଷ ।
ନଉକେଶୀକି ବୋଇଲେ କଲ୍ୟାଣ ହୁଅସି
ଏତେ କହି ଲଙ୍କାରୁ ଗଲେ ମହାଋଷି ।
ଏଥୁ ଅନନ୍ତରେ ଗୋ ଶୁଣ ହେମବନ୍ତୀ
ଶ୍ରୀରାମଙ୍କ ଆଗେ ଏହା କହିଲେ ଅଗସ୍ତୀ ।

ଯେତେବେଳେ ଦଶଗ୍ରୀବ ମନ୍ଦୋଦରୀକି ପାଇ
ତାହାକୁ କୋଳେ ଧରି ଅଭିଷେକ ହୋଇ ।
କୁମ୍ଭକର୍ଣ୍ଣକୁ ବିଭା କରାଇ ତ ମନ
ଏକଇ ରାକ୍ଷସର ନାମ ଅଟେ ଅୟ ବିଲୋଚନ ।
ସେ ଅସୁର ଘର ଅଟେ ହିରଣ୍ୟ ଗର୍ଭପୁରେ
ପ୍ରବେଶ ହୋଇଲା ଆସି ସେହି ଲଙ୍କାପୁରେ ।
ବୀଡ଼ୋଜା ନାମେ ତାର ଅଟଇ ଦୋହିତା
ରୂପରେ ପଟାନ୍ତର ସ୍ୱର୍ଗର ବନୀତା ।
ଅୟ ବିଲୋଚନ ଆସି କୁମ୍ଭକର୍ଣ୍ଣକୁ ବରି
ଅତି ସମ୍ଭର୍ବରେ ସେ ବିଭା ବିଧି କରି ।
ରାବଣ ବେଦୀରେ ବସି ତାକୁ ବିଭା କଲା
ଏଥୁ ଅନନ୍ତରେ ଶୁଣ ଦଶରଥ ବଳା ।
ଅୟ ବିଲୋଚନର ସେ ଭ୍ରାଥ ଅଟେ ଲକ୍ଷେ
ଲକ୍ଷେ ଦୋହିତା ସମର୍ପିଲେ କୁମ୍ଭକର୍ଣ୍ଣକୁ ସେ ।
ସମର୍ପି ଦେଇଣ ଅସୁରଗଣ ଗଲେ
ହିରଣ୍ୟ ଗର୍ଭପୁରେ ପ୍ରବେଶ ଯାଇଁ ହେଲେ ।
ମରାଳ ଦେଶର ଯେ ଅଟଇ ଦିବାସୁର
ବିଷ୍ଣ ସଭା ବୋଲିଣ ଅଟେ ତା କୁମର ।
ତାହାର ଦୋହିତା ଯେ ଶତେକ ଅଟେ ବାଳୀ
ଜ୍ୟେଷ୍ଠ ଦୋହିତା ନାମ ଅଟଇ ତାହାରି ।
ସୁନାମା ନାମରେ ଅଟେ ସେ କନ୍ୟା ନାମ
ଉପମା ଅନୁପମା ଗୋତ୍ର ସେ ଉପାମ ।
ଏମନ୍ତେ ଶତେ ନାରୀ ଘେନି ସେ ଅସୁର
ଲଙ୍କାରେ ପ୍ରବେଶ ହୋଇଲେ ସତ୍ୱର ।
ବିଭୀଷଣକୁ ବିଭାକଲା ମନରେ ସେ ଭାଳି
ଶତେ କନ୍ୟା ଦେଇଣ ବିଷ୍ଣୁ ଗର୍ଭକୁଗଲା ଚଳି ।
ରାବଣ ମନ୍ଦୋଦରୀ କୁମ୍ଭକର୍ଣ୍ଣ ବୀଡ଼ୋଜା
ସୁନାମା ନାମେ କନ୍ୟା ବିଭୀଷଣର ଭାରିଜା ।
ପ୍ରଥମରେ ବିଭା ଯେ ହୋଇଲା ଏ ତିନି
ଏ ଦୁହିଁଙ୍କର ଲକ୍ଷେ ଶତେକ କାମିନୀ ।
ରାବଣ ପ୍ରତାପ ଦେଖିଣ ତିନିପୁରେ
ଗରିଷ୍ଠ ଦାନବେ ଆଣି ଦୋହୀତା ସମର୍ପିଲେ ।
ଦଶାନନର ତିନିକୋଟି ପଞ୍ଚାଶ ସହସ୍ରନାରୀ
ମନ୍ଦୋଦରୀ ସେଥିରେ ଅଟଇ ମନୋହାରୀ ।
କେତେକାଳ ରାବଣ ରମିଲା ତାର ତୁଲେ
ରୂପ ଅନୁରୂପେ କନ୍ୟା ସମ ଅଟେ ତାରେ ।

ସେ ସୁନ୍ଦରୀ ଗର୍ଭରୁ ପ୍ରଥମେ ଦୋହିତାଏ ଜାତ
ପଦ୍ମାବତୀ ନାମ ଯେ ତାହାର ବିଦିତ ।
ଦ୍ୱିତୀୟ ଗର୍ଭ ତାର ଯେ ହୋଇଲା ସମ୍ଭୂତ
ସେ ଗର୍ଭୁ ଜାତ ହୋଇଲା ତାର ଏକପୁତ୍ର ।
ଜନମ ହୋଇ ବଳା କୋପରେ ଗର୍ଜଇତ
ଗର୍ଜନ ତର୍ଜନ କରନ୍ତେ କମ୍ପିଲେ ଲଙ୍କାଲୋକ ।
ମୟ ଭୁବନରେ ଯେ ପଡ଼ିଲା ଚମକ
ମେଘ ଘଡ଼ ଘଡ଼ି ଜାଣି ଶୁଭେ କି ଧମକ ।
ତେଣୁ କରି ତାର ନାମ ଦେଲେ ମେଘନାଦ
ରଡ଼ି ଶୁଣି ସ୍ୱର୍ଗପୁରେ ଦେବତା ସ୍ତବ୍ଧ ।
ବାପ ତାର ବ୍ରହ୍ମମୁନି ମାତା ଦଇତୁଣୀ
ଚଉରାଶି ଧରିଣ ସେ ପୁତ୍ର ଜାତ ପୁଣି ।
ଦିନକୁ ଦିନ ବଳା ବଢ଼ିଲା ଘନ ଘନ
ତେଜ ଦିଶିଲା ଦିଗପାଳଙ୍କ ସମାନ ।
ବିଭାକାଳେ ମୟେ ଦୈତ୍ୟ ଯେଉଁ ଅସ୍ତ୍ରଦେଲେ
ସେହି ଅସ୍ତ୍ର ବାପ ପୁଅକୁ ସମର୍ପିଲେ ।
ଏଥୁ ଅନନ୍ତରେ ଯେ କୁମ୍ଭକର୍ଣ୍ଣ ବୀର
କରଯୋଡ଼ି ବୋଇଲେ ଶୁଣ ହେ ଦଶଶିର ।
ମୋତେ ଯାହା ବ୍ରହ୍ମା ଅଛନ୍ତି ବର ଦେଇ
ନିଶ୍ଚିନ୍ତ ହୋଇଣ ମୁହିଁ ଥିବି ସୁସ୍ଥେ ଶୋଇ ।
ଦିଅ ମୋତେ ତୁମ୍ଭେ ହେ ବିଚିତ୍ର ମନ୍ଦିର
ତୁମ୍ଭେ ଶୁଭରେ ରାଜ୍ୟକର ହେ ଲଙ୍କାପୁର ।
ଶୁଣିଣ ଦଶାନନ ବିଶ୍ୱକର୍ମା ଡକାଇ
ଆଜ୍ଞା ଦେଲେ ମନ୍ଦିର ତୋଳ ବେଗେ ଯାଇ ।
ସୁବର୍ଣ୍ଣରେ ନିର୍ମାଣ ହୋଇବ ମହାଶୋଭା
କୁମ୍ଭକର୍ଣ୍ଣ ଶୋଇବ ପୁରେ କର ନିର୍ଭା ।
ଆଜ୍ଞା ମାନି ବିଶ୍ୱକର୍ମା ଘର ନିର୍ଭାଇଲା
ନବରତ୍ନ ପୁରେକ ସେଥିରେ ରଚିଲା ।
ବାର ଯୁଣ ଉଚ୍ଚ ଦଶ ଯୁଣ ଓସାର
ସୁବର୍ଣ୍ଣରେ ନିର୍ମାଣ ବାରସ୍ୱତୀ ପୁର ।
ଘରରେ ମଣ୍ଡଣି କଲେ ନେତ ପାଟ ନେଇ
ନାନା ବର୍ଣ୍ଣରେ ଚିତ୍ର ବିଚିତ୍ର କରାଇ ।
ପୁଷ୍ପ ଚାମର ଆବର ବିବିଧ ପତନୀ
ବିଞ୍ଚଣୀ ଆଲଟ ଯେ ନାନା ବର୍ଣ୍ଣରେ ପୁଣି ।
ଟେରା ମଶ ହେରି ଯେ ଆବର ଚନ୍ଦ୍ରାତପ
ଛଡ଼ ଋତୁ ବହିବାରେ ଯେମନ୍ତ ସ୍ୱରୂପ ।

ସେହି ମନ୍ଦିରରେ ଦିବ୍ୟ ପଲଙ୍କ ସଜାଇଲେ
ସୁବେଶ ହୋଇଣ କୁମ୍ଭକର୍ଣ୍ଣ ନିଦ୍ରାଗଲେ ।
ପାଶରେ ଖଟିଛନ୍ତି ଦାସୀ ପରିବାରୀ
ଲକ୍ଷେକ କାମିନୀ ଚାମର ଘେନି ଢାଳି ।
ବ୍ରହ୍ମାଙ୍କ ବଚନେ ନିଦ୍ରାଗଲା କୁମ୍ଭକର୍ଣ୍ଣ
ଏଥୁ ଅନନ୍ତରେ ରାଜା ଦଶାନନ ।
ଅକଣ୍ଟକି ରାଜ୍ୟ ଯେ କଲେ ଲଙ୍କାପୁର
ସଙ୍ଗରେ ରହିଲେ ତାର ଅନେକ ଅସୁର ।
ସମୁଦ୍ର ପାର ହୋଇଣ ଜମ୍ବୁ ଦ୍ୱୀପକୁ ଯାନ୍ତି
ଋଷି, ଗୋରୁ, ବ୍ରାହ୍ମଣ ପରଜା ଧରି ଖାନ୍ତି ।
ପରଧନ, ପର ଯୁବତୀ ଧରି ହରି
ଅନ୍ୟାୟ ବହୁତ କରେ ଅସୁର ଦଶଗିରି ।
ଧର୍ମ ପଦକୁ ତେଜିଲେ ଅର୍ଜିଲେ ଆଗପାପ
ଦୟା ଉପେକ୍ଷୀଣ ସେ ଦେଖାଇଲେ ଧାପ ।
ଦେବେ ଭୟ କଲେ ଯେ ସ୍ୱର୍ଗପୁରେ ଥାଇ
ଅତି ଉତପାତ ଯେ ହେଲେ ଲଙ୍କସାଇଁ ।
ଯହୁଁ ସେ ବୋବାଳି ପଡ଼ିଲା ଦଶଦିଗେ
ଧର୍ମକୁ ଛାଡ଼ଇ ଫୁକାର ଶୁଭେ ଭୂମିଭାଗେ ।
ଦଶଗ୍ରୀବ ଦୁଷ୍ଟପଣ ଶୁଣିଲେ କୁବେର
ଡିଆରିବାକୁ ତାପାଶକୁ ପେଶିଲେ ଏକଚାର ।
ସେ ଚାର ଆସି ଲଙ୍କାରେ ହେଲେ ପରବେଶ
ତାକୁ ଦେଖି ପଚାରିଲେ ନଉକେଶୀର ଶିଷ୍ୟ ।
ଦୂତ ବୋଇଲେ ମୁଁ କୁବେର ପାଶରୁ ଆଏ
ତୁମ୍ଭ ହୀନକର୍ମ ଶୁଣି ତୁମ୍ଭ ଭାଇ ହେ ପଠିଆଏ ।
ଶୁଣିକରି ଦଶାନନ ଆସ୍ଥାନୁ ଉଠିଲା
ଦୂତକୁ ପାଛୋଟି ପହଣ୍ଡ ଦଶ ଗଲା ।
କୋଳକରି ଆଣି ସେ ବସାଇଲା କତି
କି କି କହିଛନ୍ତି ଭ୍ରାଥ କହହେ ତଡ଼ତି ।
ଦୂତ ବୋଲେ ସକଳ ବାରତା ବେ ଭଲ
ଦୁଇଭାଇ ତୁମ୍ଭେ କେବଣ ତପକଲ ।
ସେହି ହେଲେ ଦିଗପାଳ ତୁମ୍ଭେଲଙ୍କା ଅଧିପତି
ଦେବଙ୍କର ସମାନରେ ଅର୍ଜିଲ ବିଭୂତି ।
ଏ ସମ୍ପଦ ତୁମ୍ଭର ନିଶ୍ଚଳେ ଯେବେ ରହି
ତେସନକ ସଂଜାତେ ପାଳୁଥିବ ମହୀ ।
ତପ କରିଣ ତୁମ୍ଭେ ଅର୍ଜିଲ ଯେବେ ଶିରୀ
ପାପ ଆଚରିଲେ ହେ ଅଚ୍ଛକେ ଯିବମରି ।

ତୁମ୍ଭେ ହେ ଦଶଗ୍ରୀବ ଶୁଣ ମୋ ବଚନ
ଯେବଣ କାରଣେ ମୋତେ ପେଶିଲେ ରାଜନ ।
ତୁମ୍ଭ ଭାଇ କୁବେର ପେଶିଛନ୍ତି ମୋତେ
ଯିସ କାରଣେ ଆସିଛି ଶୁଣ ହେ ସୁଚିତ୍ତେ ।
ଯେତେବେଳେ ତୁମ୍ଭେ ବାହିଲ ଲଙ୍କଦେଶ
କୁବେର ତେତେବେଳେ ଗଲେ କପିଳାସ ।
ଗଣ୍ଡୁକୀ ନଦୀ ତୀରରେ ରଞ୍ଜିଲେ ସେ ପୁର
ଅଳକା ନାମେ ପୁର ଯେ ହୋଇଲା ତାହାର ।
ଗଜ ଅଶ୍ୱରଥ ଯେ ଅନେକ ପାଦାନ୍ତୀ
ଦକ୍ଷ ବିଦ୍ୟାଧରୀ ଗଣ ନୃତ୍ୟ ଯେ କରନ୍ତି ।
ଦିନେକ କୁବେର ଏକାମ୍ବର ବନେଗଲା
ନିର୍ଝର ଘୋର ଗିରି କନ୍ଦରେ ଦେଖିଲା ।
ପୁଷ୍ପଫଳ ସର୍ବେ ଅଟନ୍ତି ତରୁବର
ବାବୁ ସେ ରମ୍ୟସ୍ଥାନ କପିଳାସ ପୁର ।
ଦେଖିଣ ପ୍ରଶଂସଇ ବିଶ୍ରବା କୁମର
ଶୁଦ୍ଧ ତରୁ ଉପମା ଯେ ଅଟେ ପବିତ୍ରର ।
ଏତେ ବିଚାରିଣ ତକ୍ଷଣେ ଚଳିଗଲା
ହର ପାର୍ବତୀଙ୍କ ଏକାନ୍ତ ସ୍ଥାନରେ ମିଳିଲା ।
ଶିବଙ୍କ ଯାନୁପରେ ବସିଛନ୍ତି ମହାସ୍ୱତୀ
ବେନିଭୁଜେ ପଞ୍ଚାନନ କୋଳାଗ୍ରତ କରିଛନ୍ତି ।
ଯଉବନ ଭାରି ଯେ ଲାଗିଅଛି ହୃଦୟରେ
ହର ଚୁମ୍ବନ ଦ୍ୟନ୍ତି ଗଉରୀଙ୍କ ବଦନରେ ।
କଟୀଭାଗ ପର୍ଯ୍ୟନ୍ତ ଫିଟିଣ ଅଛି ଅମ୍ବ
କାମକ୍ରିୟା ଘାଏ ପୀଡ଼ିତ ତ୍ରୟ ନେତ୍ର ।
ଶକ୍ତି ଶିଳା ପରେ ବିଜେ ମହେଶ୍ୱର
ଏହି ସମୟରେ ମିଳିଲେ କୁବେର ।
ପାରିଜାତର ବନ ଗହଳ ତରୁ ଅଛି
ଧୀର ଧୀର ହୋଇଣ ପବନ ବହୁଛି ।
ଗ୍ରୀଷମକୁ ଶୀତଳ ଅଟେ ସେହୁସ୍ଥାନ
ପଶିତ ଭାର୍ଜନ ନୁହନ୍ତି ଭିନ୍ନଜନ ।
ନଜାଣି କୁବେର ଅଜ୍ଞାନ ପଣେ ଗଲା
ଦୂରରୁ ଦେଖି ଭୟକରି ପଳାଇ ଅଇଲା ।
ପାର୍ବତୀ ଦେଖିଲେ ଯେ ଈଶ୍ୱର କୋଳେଥାଇ
ଉଠିଣ ଉଭା ଯେ ହେଲେ ଲଜ୍ଜାପାଇ ।
ପାର୍ବତୀ ପଚାରନ୍ତି ଏ କାହାର ଲୋକ
କୁବେର ଏହି ବୋଲି କହିଲେ ତ୍ରିଅମ୍ବେକ ।
ପାର୍ବତୀ ବୋଇଲେ ଆସିଛି କାହିଁ ପାଇଁ
ତାହାର କି ଜ୍ଞାନ ଗୋଚର ମେଳ ନାହିଁ ।
ହର ବୋଇଲେ ସେ ଦର୍ଶନେ ଆସିଥିଲା
ଦେଖିକରି ସେ ଯେ କ୍ଷଣେ ନ ରହିଲା ।
ଉମା ବୋଇଲେ ତାର ଫୁଟୁ ବେନି ଆଖି
ଏକାନ୍ତ ଶୟନରେ ମିଳିଲା କିମ୍ପା ଏଥି ।
ଶୁଣିଣ ସଦାଶିବ ମଉନ ହୋଇଲେ
କୁବେରର ସମ୍ପଦ ସରିଲା ବୋଇଲେ ।
ଏଥୁ ଅନନ୍ତରେ ବଇଶ୍ରବଣ ରାୟେ
ଉଦବେଗରେ ସେ ଅଳକା ପୁର ଯାଏ ।
ନଗ୍ରରେ ପ୍ରବେଶ ହୁଅନ୍ତେ ଚକ୍ଷୁ ଫୁଟି
ତକ୍ଷଣେ ଜ୍ଞାନ ଗୋଚର ବୁଦ୍ଧି ଗଲା ତୁଟି ।
ସପତ ନିଧି ଆସିଣ ପଚାରିଲେ କଥା
କୁବେର କହିଲେ ହୃଦୟର ବ୍ୟଥା ।
ଆନ ଅବିଗୁଣ କିଛି ମୋର ନାହିଁ
ମୋ ନେତ୍ରକୁ ଅଦୃଶ୍ୟ ହେଲା କାହିଁ ପାଇଁ ।
ଏକ ମାତ୍ରକ ମୁହିଁ କପିଳାସ ଯାଇଥିଲି
ହର ପାର୍ବତୀଙ୍କର ଏକାନ୍ତ ଦେଖିଲି ।
କୋପରେ ପାର୍ବତୀ ଯେ ଦେଖିଲେ ମୋତେଦୂରେ
ଭୟରେ ବାହୁଡ଼ି ମୁଁ ଅଇଲି ନିଜପୁରେ ।
ନଗ୍ରରେ ପ୍ରବେଶ ହୁଅନ୍ତେ ଚକ୍ଷୁଗଲା
ଶୁଣିଣ ଶଙ୍ଖ ନାମେ ନିଧି ହେତୁ କଲା ।
ବୋଇଲେ କୁବେର କହିଲୁ ଯାହା ସତ
ପାର୍ବତୀଙ୍କ କୋପ ତୋତେ ହେଲା ପରାପତ ।
ଏବେ ଆନକଥା ସେ କିଛି ନ ବିଚାର
ସେବାରେ ଈଶ୍ୱରଙ୍କ ନାରୀଙ୍କି ତୁ ବର ।
ଈଶ୍ୱର ପାର୍ବତୀ ଯେବେ ପ୍ରସନ୍ନ ତୋତେହୋଇ
ତେବେ ସୁସ୍ଥ ହୋଇବ ତୋହର ଯେ ଦେହୀ ।
ଶୁଣିଣ ନିଧିପତି ହେତୁ ମତି କଲା
ଗଙ୍ଗାର କୂଳରେ ଯାଇଣ ତପକଲା ।
ମନ ବଚନ ନୟନର ଯେ ପ୍ରକୃତି
ଏକତ୍ର କରି ରୁଦ୍ରଙ୍କୁ ଧ୍ୟାନକରେ ଧନପତି ।
ନିଆହାରୀ ହୋଇଣ ରଖେ ତାର ଦେହୀ
ଅଭିମାନ ହୋଇଣ ଅଛି ଦୁଃଖ ସହି ।
ଏମନ୍ତେ ଅଶୀ ବରଷ ତହିଁରେ ବହିଗଲା
ପ୍ରସନ୍ନ ହୋଇଣ ତାକୁ ଶଙ୍କର ବରଦେଲା ।

ବୋଇଲେ କୁବେର ତୁରେ ହୋଇଲୁ ତ୍ରିପୁତି
କିପାଇଁ ତପ ତୁରେ କରୁ ନିଧିପତି ।
ଶୁଣି ବଇଶ୍ରବଣ ଯୋଡ଼େ ବେନିକର
ଭୋଦେବ ଦୁଇଜଣ ଅନୁଗ୍ରହ କର ।
ମୋହର ଲୋଚନ ଅଦୃଶ୍ୟ କିସ ଅର୍ଥେ
ମୋତେ ଏବେ କାରଣ କରି ବିଶ୍ୱନାଥେ ।
ହର ବୋଇଲେ ଯେ ପାର୍ବତୀ କୋପହେଲେ
ତୋହର ଚକ୍ଷୁକୁ ଏବେ ଦିଶୁରେ ବୋଇଲେ ।
ଯାଅ ଯା ତୋର ଚକ୍ଷୁକୁ ଦିଶୁ ପୂର୍ବମତେ
ବର ପାଇ କୁବେର ଯେ ଚାହିଁଲା ଉସତେ ।
ପ୍ରତ୍ୟକ୍ଷରେ ଦେଖିଲା ସେ ବିଜୟ ସଦାଶିବ
ବୃଷଭ ବାହନେ ଚଢ଼ିଛନ୍ତି ସେହୁ ଦେବ ।
ମହାଦେବଙ୍କୁ ଚାହିଁ ଆନନ୍ଦ କୁବେର
ଈଶ୍ୱର ଚରଣରେ ବିନୟ ମୋହର ।
ଶଙ୍କର ବୋଇଲେ ତୋତେ ହେଉରେ କଲ୍ୟାଣ
କଥାଏ କହିବା ତୋତେ ଏକମନେ ଶୁଣ ।
ଦଶାନନ ତୋର ଯେ ଅଟଇ ସାନଭାଇ
ତାହାର ଭଲେ ଥିଲେ କି ତୋତେ ନ ଯୋଗାଇ ।
ତୁ ତାହାର ପିତା ଯେ ଅଟୁ ଧନେଶ୍ୱର
କିପାଇଁ ନ ତିଆରୁ ଭାଇକି ତୋହର ।
ଦେବେ ଏଥର ତାକୁ ଚିନ୍ତିବେଟି ମନ୍ଦ
ଭଲ ବିଚାର କିମ୍ପା ନ କରେ ଦଶକନ୍ଧ ।
ଅନ୍ୟାୟ ଉପଦର୍ପ ସେ କରୁଛି ଅକାରଣେ
ନିକଟରେ ନାଶଯିବ ସେହୁ ରାମରାଣେ ।
ତୁହି ଏବେ ତାକୁରେ ପଠିଆଅ କହି
ଅଳପକେ ନାଶଯିବ କହିଲିଟି ମୁହିଁ ।
ସଦାଶିବ ବଚନରେ କୁବେର ତୋଷ ହୋଇ
ସଦାଶିବଙ୍କୁ ଅନେକ କାର୍ପୁଣ୍ୟ ସେ ହୋଇ ।
ଏତେକହି ସଦାଶିବ ବିଜେ କରି ଗଲେ
ଚକ୍ଷୁଦାନ ପାଇଣ କୁବେର ଅଇଲେ ।
ଅଳକା ନାମେ ପୁରେ ହେଲେ ପରବେଶ
ଦୂତକୁ ଏକାନ୍ତେ ହକାରିଲେ ପାଶ ।
ବୋଇଲେ ଏହିକ୍ଷଣି ତୁ ଲଙ୍କାଗଡ଼ ଯିବୁ
ଭାଇକି ମୋହର ତୁହି ସମ୍ବାଦ କହିବୁ ।
ଭଲଛାଡ଼ି କିପାଁ ସେ ମନ୍ଦ ବାଟରେ ଚାଲଇ
ଋଷିର ପୁତ୍ର ହୋଇ ସେ ଅଧର୍ମ କରଇ ।

ଏତେ ଶୁଣି ଦୂତ ଯାଇ ସମସ୍ତ କହିଲା
କୁବେର ଯେତେକ ସମ୍ବାଦ ଦେଇଥିଲା ।
ଶୁଣିଣ ଦଶଗ୍ରୀବ କମ୍ପିଲାକ ରାଗେ
ହିତ କହିବାରୁ ସେ ବୁଝେ ବଇରାଗେ
ଓଷ୍ଠ ଦନ୍ତ ଚାପିଣ ତରାଟିଲା ଆଖି
ବିଭୀଷଣ ପ୍ରଭୃତି ଡରିଲେ ତାହା ଦେଖି ।
ଦୂତକୁ ଗହିଣ ଯେ ବୋଲେ ଦଶଗିରି
କପଟରେ ଆସିଛ ମୋତେ ଭେଦାରେ ଦେଲାପରି
ଅନେକ କଥା ମୋତେତୁ ଦେଖାଇ କହିଲୁ
ପୁତ୍ର ଭାରିଜାରୁ ତୁ ଅଧିକ ହୋଇଲୁ ।
ନାନା ପରକାରେ ତିଆରିଲୁ ବସି
କପଟ କଥାମାନ ଜାଣିଲି ତୋର ଆସି ।
ତୋର ଜୀବନକୁରେ ଘେନିବି ମୁହିଁ ଆଜ
ତୋତେତ ପେଶିଦେଲା ଅଳକାପୁର ରାଜ ।
ତାହାକୁ ଏବେ ଯାଇଁଣ କରିବି ମୁଁ ନାଶ
ମୋହର ଛାମୁରେ ପୁରୁଷାର୍ଥ କହି ବସ ।
ଈଶ୍ୱର ତୁମ୍ଭଙ୍କୁରେ ସାହା କି ହେଲା ବୋଲି
କେତେ ବଡ଼ିମା ପଣରେ କହୁଅଛୁ ପେଲି ।
ଲଙ୍କା ଛାଡ଼ି କପିଳାସରେ ରହିଲା ସେ ଯେଣୁ
ସେ ଦିନୁ ମୋହରଠାରେ ଅହନ୍ତା କଲା ତେଣୁ
ତାହାକୁ ମୁହିଁ ଯାଇ କରିବି ବିନାଶ
ମୋର ମନ ତେବେରେ ହୋଇବ ସନ୍ତୋଷ
ବଡ଼ପଣେ ତାର ପଠାଇ ଅଛି କହି
ଏମନ୍ତ କହିଲେ କିରେ ଛାଡ଼ି ଦେବି ମୁହିଁ ।
ତୁଛା ନଗ୍ର ଛାଡ଼ିଣ ସବୁ ଘେନିଗଲା
ସେମାନେ ପାରଗଲା କି ପରାଯେ ମଣିଲା ।
ସେ ବଡ଼ଭାଇ ବୋଲି ମୁଁ ଏବେ ସହିଥିଲି
ଏବେ ନ ସହିବି ଆଉ ଅଭାବ ପାଇଲି ।
ଦଶାନନ କୋପ ବଚନ ଶୁଣି ଗହର
କୁବେରର ଦୂତ ଯେ କହଇ ଉତ୍ତର ।
ବୋଇଲା ଦଶଗ୍ରୀବ ହୋଇଲୁ କିରେ ବାଇ
ବଇଶ୍ରବଣ ତୋର ଅଟେ ଜ୍ୟେଷ୍ଠଭାଇ ।
ତୋହର ବୋଲରେ ସେ ଲଙ୍କା ଛାଡ଼ିଗଲା
ତାହାର ମନେ ତୋତେ ନାହିଁରେ ମନ୍ଦକଲା ।
ତୋର ନାମ ସବୁଠାରେ ପଡ଼ିଲେ ପରଶଂସି
ତୋତେ ଅବିଗୁଣ ତାର ମନରେ ପଶି ।

ଆମ୍ଭେ ଶୁଣିଲାର ଅଛି ଅନେକ ଯେ ବଳ
ତୋତେ ପ୍ରଶଂସା କରଇ ଅନେକ ଧନେଶ୍ୱର
ସୁଖରେ ପେଶିଛି ମୋତେ ତିଆରିବା ପାଇଁ
ହିତକଥା କିମ୍ପା ତୁ ନ ବୁଝୁ ଲଙ୍କସାଇଁ ।
ଏବେ ଜଣାଗଲା ତୋର ନ ଜାଣିମା ପଣ
ତୁହି କହୁ ଅଛୁରେ ଈଶ୍ୱର ପ୍ରମାଣ ।
ତୋତେ ବର ଯେଉଁ ବେଦବର ଦେଇଥିଲା
ଈଶ୍ୱରଙ୍କ ଚରଣେ ଖଟିଣ ବଡ଼ ହେଲା ।
ତାର ବରକୁ ସଙ୍ଖାଳି କରିଅଛୁ ତୁହି
ଦୁଷ୍ଟପଣ କରି କେତେ ଅସୁର ଗଲେ କାହିଁ ।
ଶଙ୍ଖାସୁର ହିରଣ୍ୟ କଶିପୁ କେତେ ଦୈତ୍ୟ
ଜଳନ୍ଧର ସୁଗୁଣଗୁଣତ୍ରି ଗୁଣନହୂଲେଶ୍ୱରଜାଣ
ଲନ୍ଧର ସୁଗୁଣଗୁଣତ୍ରି ଗୁଣନହୂ ଲେଶ୍ୱରଜାଣ
ବୈରୋଚନବଳିକବେରିସୁବେଶନନ୍ଦମୁଖାପୁଣ
ମହିଁଷାସୁର ସୁର ମୃତ୍ୟୁସୁର ପୁର
କୁଚିତ ଅକୁଚିତ ସହିଣୀ ଅସହଣୀ ନାମେବୀର
ଏତେ ଅସୁର ଗଲେ ସତ୍ୟ ଯୁଗରେ ଜାଣି
ସେମାନଙ୍କ ପ୍ରାୟେ ତୁହି ଜନ୍ମିଅଛୁ ପୁଣି ।
ତୁହି ସେହି ରୂପରେ ହେଉଛୁ ଉତୁକଳ
ନିଶ୍ଚେଁ ତୁ ନାଶଯିବୁ କହିଲି ତୋତେ ମୂଳ ।
ଶୁଣିଣ ସିଂହାସନରୁ ଉଠିଲା ରାବଣ
କ୍ରୋଧରେ ଜର ଜର ଅଟେ ଦେହ ପୁଣ ।
ଛୁରୀଖଣ୍ଡା ଯାହାର ହାତେ ଦେଇଥିଲା
କୋପରେ ତାର ତହୁଁ ଛଡ଼ାଇଣ ନେଲା ।
ଆପଣେ ରୋଷଭରେ ମାଇଲାକ ତୋଳି
ଭାଙ୍ଗିଲା ଶହସ୍ର ତାର ଗଲାକ ହୁଗୁଳି ।
ଦେଖିଣ ଦକ୍ଷବୀର ନାତେକ ପ୍ରହାରିଲା
ବିଶ୍ରବାର ବଳା ଭୂମିରେ ପଡ଼ିଲା ।
ବୁକୁରେ ଗୋଡ଼ ନେଇ ଦେଲା ଦକ୍ଷବୀର
ଦୁଇ ମୁଥ ପ୍ରହାରିଲା ହୃଦରେ ତାହାର ।
ରାବଣେଶ୍ୱର ଉଠିଣ ଦକ୍ଷକୁ ଧଇଲା
ଖଡ଼ଗ ଧରିଣ ସେ ବକ୍ଷକୁ ପ୍ରହରିଲା ।
ଛିଡ଼ିଲାକ ମୁଣ୍ଡ ତାର ପଡ଼ିଲାକ ତଳେ
ପିଣ୍ଡରୁ ପ୍ରାଣ ତାହାର ବାହାର ତତକାଳେ ।
ମୁଣ୍ଡ ଛିଡ଼ନ୍ତେ ତାହାର ରକତ ବାହାର
ଦୁଇଖଣ୍ଡ ହୋଇ ପଡ଼ିଲା ଦକ୍ଷବୀର ।

ଭ୍ରାତକୁ ମାରି ରାବଣ ସିଂହାସନରେ ବସି
ଦୂତ ମନେ ସୁମରି କପିଳାସ ବାସୀ ।
ଈଶ୍ୱର ସୁମରିବାରୁ ପିଣ୍ଡ ମୁଣ୍ଡ ଅନ୍ତର୍ଦ୍ଧାନ
ଈଶ୍ୱର ଉମା ଦେଖି ହେଲେ କୋପମନ ।
ଜୀବନ୍ନ୍ୟାସ କରିଣ ତାହାକୁ ଜୀଆଇଲେ
ଏପୁରେ ରହ ବୋଲି ତାକୁ ଆଜ୍ଞା ଦେଲେ ।
ଏଥୁ ଅନନ୍ତରେ ଶୁଣ ଦଶରଥ ବାଳ
ସୈନ୍ୟଙ୍କୁ ଗହିଁ ଭାଳେ ବିଶ୍ରବା ଦୁଲାଳ ।
ଆବର ତୁମ୍ଭେମାନେ କିସ କିସ ଭାଳ
ଏହିକ୍ଷଣି ସଜ ହୋଇବ ସକଳ
କପିଳାସ କନ୍ଦରକୁ କରିବା ଗମନ
କୁବେରକୁ ଜିଣିଣ ଆଣିବା ବିମାନ ।
ତେବେ ସେ ପ୍ରତାପୀ ଲଙ୍କେଶ୍ୱର ମୁଁ ବୋଲାଇ
ଶୁକ ସାରଣ ମହୋଦର ପ୍ରଶସ୍ତ ହକରାଇ ।
ବିଭୀଷଣ ରହିଲେ କଟକ ରକ୍ଷାକରି
ସୁମାଳୀ କହିଲା ଅନେକ ତିଆରି ।
ବନଗିରି କନ୍ଦର ଅନେକ ଜିଣିଗଲେ
କପିଳାସ କନ୍ଦରେ ପ୍ରବେଶ ହୋଇଲେ ।
ନିଶାଣର ଘାୟେ କମ୍ପେ ତିନିପୁର
ଅଳକାପୁରେ ଥାଇ ଜାଣିଲା କୁବେର ।
ଚରର ଜଣାଇଲା ଶୁଣ ନିଧିପତି
ଦଶଗ୍ରୀବ ଏବେ ଯେ କଲାକ ଅନୀତି ।
ଯେବେଣ ଚରକୁ ଯେ ପେଶିଲୁ ତାର ହିତେ
ନ ବୁଝିଣ ଅସୁର କୋପ କଲାଚିତ୍ତେ ।
ଖଣ୍ଡା ଘେନିଣ ଯେ କାଟିଲା ତାର ମୁଣ୍ଡ
ତାକୁ ମାରି ତୋର ପୁରେ ସାଜି ଆସିଛି ଦଣ୍ଡ
ରାକ୍ଷସ ବଳ ଏବେ ଯେ କଳଣା ନ ଯାଇ
କପିଳାସ କନ୍ଦରେ ଉଠେ ତୋର ଭାଇ ।
ଏହିକ୍ଷଣି ଅନର୍ଥ କରିବ ପୁରେ ପଶି
ଶୁଣିଲା ଧନପତି ସିଂହାସନରେ ବସି ।
ମନେ ବିଚାରିଲା ମରିବ ମୋର ଭାଇ
ଏମନ୍ତ ଅନ୍ୟାୟ କଲେକ ପାର ଯାଇ ।
ଏସନକ ବିଚାରି ରାଏ ଦକ୍ଷରାଣ
ଶୁଣିଣ ଦକ୍ଷଗଣ ଅଇଲେ ତତକ୍ଷଣ ।
ବୋଇଲେ ଅସୁରକୁ ଉଠାଇ ନ ଦିଅ କଦାଣ୍ଟିତେ
କରିବ ସମର ଭାଜିବେ ସେ ଯେମନ୍ତେ ।

ଧନପତିଙ୍କ ଆଜ୍ଞାରେ ଦକ୍ଷଗଣ ସଜ
ଏହି ସମୟରେ ମିଳିଲେ ଦନୁଜ ।
ଦକ୍ଷଗଣ ବୋଇଲେ ଶୁଣରେ ଦଶଗିରି
ଏମନ୍ତେ ଅନ୍ୟାୟ କଲେ ତୁଟଇଟି ଶିରୀ ।
କୁବେର ତୋହର ଯେ ଅଟେ ନିଜ ଭ୍ରାତ
ତିଆରିବା ନିମନ୍ତେ ତୋଠାରୁ ପଶେ ଦୂତ ।
ସେ କଥା ନ ଜାଣି ମାଇଲୁ ଦୁଷ୍ଟପଣେ
ଏ ସ୍ଥାନକୁ ତୁ ଅଇଲୁ କେବଣ କାରଣେ ।
ଏ ଦେବ ଆଶ୍ରମ ଯେ ସପତ ନିଧି ସ୍ଥାନ
ଏଥିରେ ଉପଦ୍ରବ ନ କର ଦଶାନନ ।
ସମର କଲେ ପୁଣି ତୋତେ ଜୟ ନାହିଁ
ଜ୍ୟେଷ୍ଠ ଭ୍ରାତକୁ ଜିଣିଲେ ପଉରୁଷ କାହିଁ ।
ଯାଅ ଯା ବାହୁଡ଼ିରେ ଆମ୍ଭର ବୋଲ ଘେନି
ଏ ଘାନ୍ତି ସମର କଲେ ପାଇବୁଟି ହାନି ।
ଶୁଣିଣ ଦଶକନ୍ଧ କୋପେ ଥର ହର
ଖଡ଼ଗ ଝମକାଇ କହେ ସେ ଉତ୍ତର ।
ବୋଇଲା ବେଗ୍ରରେ ପଳାଅ ପ୍ରାଣ ଘେନି
ଏହିକ୍ଷଣି ଶିର ପକାଇବି ହାଣି ।
ଲଙ୍କାରୁ ସର୍ବଦ୍ରବ୍ୟରେ ବଳେ ଆଣିଅଛ
ପରଦ୍ରବ୍ୟ ସାଇତି ବୋଲାଉଅଛ ଦକ୍ଷ ।
ଏତେ ବୋଲି ଅସୁରଙ୍କୁ ଚ୍ଚହିଁଣ ଆଜ୍ଞାଦେଲା
ନଗର ଉଜାଡ଼ିଣ ମାରରେ ବୋଇଲା ।
ଶୁଣିଣ ଦୈତ୍ୟବଳ ଧାଇଁଲେ କୋପଭରେ
ଆୟୁଧ ପିଟିଲେ ନେଇ ଦକ୍ଷଙ୍କ ଉପରେ ।
କୁବେରର ସଇନି ମାଇଲେ ଶସ୍ତ୍ର ଘେନି
ପରିତାଳେ ମାଇଲେ ଉଠିଲା ବହନି ।
ରଥକୁ ରଥ ଯେ ଗଜକୁ ଗଜ ମାରି
ରାଉତେ ରାଉତେ ପଦାନ୍ତି ପାୟେକରୀ ।
ଚତୁରଙ୍ଗବଳ ଯେ ସମରେ ଗରୁ ଟାଣ
ମନ୍ତ୍ରୀଙ୍କର ତୁଲରେ ମନ୍ତ୍ରୀ କରନ୍ତି ରଣ
ବହିଲା ରକ୍ତନଦୀ ରଣରଙ୍ଗ ଭୂଇଁ
ମଡ଼ାମାନେ ପଡ଼ିଲେ କୁଢ଼ କୁଢ଼ ହୋଇ ।
ଦଶାନନର ବଳ ଭାଜିଲେ ମହାଯୁଦ୍ଧେ
ପୁଣିହିଁ ଲେଉଟିଲେ କ୍ଷଣକର ମଧ୍ୟେ ।
ଦେଖିଣ ଆଗସରି ଆବୋରି ବିଂଶକର
ଯୁବାବେଳେ ତାହାର ଯେ ପ୍ରଥମେ ସମର ।
ମୃଗପଲରେ ଯେହ୍ନେ ପଳାସଇ ବ୍ୟାଘ୍ର
ତେସନକ ସଦଭାବେ ଦକ୍ଷଙ୍କର ଯୋଗ ।
ଅନେକ ଦକ୍ଷ ସୈନ୍ୟ ଯେ ଲୋଟିଲେ ଧରଣୀ
ମହାଘୋର ସମର କରେ ବିଂଶପାଣି ।
ଲଙ୍କପତି ଅଙ୍ଗ କ୍ରୋଧରେ ଜର୍ଜର
କୁବେରର ସଇନିଙ୍କି ମାଇଲା ତୀକ୍ଷଣ ଶର ।
ରାଗେଣ ବିଂଶବାହୁ ଅନେକ ଯୁଦ୍ଧ କଲା
କୁବେରର ଆଗେ ଯାଇଁ ଡଗରା ଜଣାଇଲା ।
କାଳ ଦେବତା ରାୟେ ଦଶାନନ ବୀର
ଭୋ ଦେବ ଧନପତି ହେଲା ବିଷମ ସମର ।
ଶୁଣି ବଇଶ୍ରବଣ ପୁଣି ଆଟ ପେଶି
ଚ୍ଚରିସହସ୍ର ବଳ ଯେ ମିଳିଲେକ ଆସି ।
ଦେଖିଣ ଓଗାଳେ ନଉକେଶରୀ ବସି
ସେଠାରେ ସୈନ୍ୟବଳ ହୋଇଲେକ ଧ୍ୱଂସି ।
ଦେଖିକରି ଲଙ୍କପତି ଗଦାଏ ମାଇଲା
ଚ୍ଚରିସସ୍ର ଦକ୍ଷଙ୍କର ଜୀବନ ହରାଇଲା ।
ଦେଖିଣ ଦେବତାଏ ବିସ୍ମୟ ହୋଇଲେ
ବାବୁରେ ଦଶମାଥ ବୋଲିଣ ବୋଇଲେ ।
ଯେତେବେଳେ ପଡ଼ିଲେ ଚ୍ଚରିସହସ୍ର ଦକ୍ଷ
ଆବର ସୈନ୍ୟମାନେ ପଡ଼ିଲେ ସମସ୍ତ ।
ବିଷମ ରଣ ଦେଖି ଭାଜିତ ମନକଲେ
ଅସୁର ପିଠିଆଇ ଗୋଡ଼ାଇ ମାଇଲେ ।
ମହୋଦର ସହସ୍ର ଦକ୍ଷ ପ୍ରାଣ ହାରି
ସମସ୍ତ ସୈନ୍ୟ ମାଇଲା ସଂଗ୍ରାମେ ସଂହାରି ।
କୋପଭର ହୋଇଣ ଗଦାଏ ସେହୁ ପିଟି
ଧୂମ୍ରାକ୍ଷ ମଣିଭଦ୍ର ହେଲେ ପିଟାପିଟି ।
ପ୍ରହରେକ ପରିଯନ୍ତେ ରହି ସେ ଯୁଦ୍ଧ କଲେ
ମୁଣ୍ଡକୁ ଦେଖାଇ ସେ ଗୋଡ଼କୁ ମାଇଲେ ।
ଧାଇଁ କରି ପଟନ୍ତେ ପଡ଼େ ଧୂମ୍ରାକ୍ଷତ
ଦେଖି ଓଗାଳିଲେ ନଉକେଶୀର ସୁତ ।
ଧୂମ୍ରାକ୍ଷ ଉଠିଲା ଚେତନା ଗତି ଫାଇ
କରେ ଶସ୍ତ୍ର ଧରି ଯେ ଦକ୍ଷକୁ ମାରଇ ।
ଦଶାନନକୁ ଦେଖି ଯେ ମଣିଭଦ୍ର ବୀର
କୋପରେ ଗୋଡ଼ାଇ ଯେ ଅଛି ଦଶ ଶିର ।
ରାଜାର ନବରରେ ଯେ ପଶିଲା ପୁଣ ଯାଇ
ତାହାର ପଛରେ ଯେ ପଶିଲା ଲଙ୍କସାଇଁ ।

ଚନ୍ଦ୍ର, ସୂର୍ଯ୍ୟ ଅଛନ୍ତି ଯେ କୁବେରର ଦ୍ୱାର
ଦଶାନନଙ୍କୁ ଦେଖି ତେଜ ଅନର୍ଗଳ ।
କୋପରେ ଦଶଗ୍ରୀବ ତ୍ରୋଣା ଖମ୍ଭ କାଟି
ଚନ୍ଦ୍ର, ସୂର୍ଯ୍ୟଙ୍କୁ ସେ ପକାଇଲା ଛାଟି ।
ଦେଖିଣ ଦ୍ୱାରପାଳ ଦୁହେଁ ପଳାଇଲେ
କୁବେର ଛାମୁରେ ଯାଇଣ ଜଣାଇଲେ ।
ତୁମ୍ଭ ନବରେ ପଶିଲା ଦଶାନନ ରାୟେ
ଭୋ ଦେବ ଧନପତି କର ତୁ ଉପାୟେ ।
ଶୁଣିକରି ତରସ୍ତ ହେଲେ ଧନପତି
ମଣିଭଦ୍ର ବୋଲେ ତୁମ୍ଭେ କିପାଇଁ କର ଭୀତି ।
ଦକ୍ଷଙ୍କର ମଧ୍ୟରେ ତୁ ବୋଲାଉ ବଳିୟାର
ସଦାଶିବ ଥିଲେରେ ତୋର କାହାକୁ ଡର ।
ଏ କି ଦଶଗ୍ରୀବ ଏହାର ଅଟେ କେତେ ବଳ
ତୋତେ ସେ ସମାନ ନୁହନ୍ତି ଦିଗପାଳ ।
ତୋହର ପରା ବୀରରେ ଦଶାନନକୁ ଡରି
ଆପଣା ମନରେ କିମ୍ପା ବିଚ୍ଚର ନ କରି ।
ମଣିଭଦ୍ରା ବୋଇଲା ମୁଁ ଅଇଲି ତୋର ଅର୍ଥେ
ମୋର ବାଣ କେବେ ନୁହନ୍ତି ବିଅର୍ଥେ ।
ଯୁଦ୍ଧ କଲେ ଅବଶ୍ୟ ମାରିବି ଦଶାନନ
ସୋଦର ଭାଇ ତୋହର ଅଟଇ ରାବଣ ।
କାଳେ କୋପ ପୁଣରେ କରନ୍ତୁ ଧନପତି
ମୁଁ ଏହା କହିବାକୁ ଅଇଲି ତୋର କତି ।
କୁବେର ବୋଇଲା କିରେ ହୋଇଲୁକି ବାଇ
ସେ ଯେବେ ମୋହରରେ ଅଟଇ ସାନଭାଇ ।
ଲଙ୍କାଗଡ଼ ନେଲା ଯେ ଦୂତକୁ ମାଇଲା
ଆବର ବିଶେଷେ ସେ ଏଥିକି ଅଇଲା ।
ଦକ୍ଷଗଣ ମୋରରେ ମାଇଲା ଅପାର
ଅଳକା ଭୁବନ ଯେ କଲେ ନାରଖାର ।
ଯେତେ ଭାଇ ହେଲେ କିରେ ଏତେଦୂର କରି
ସୋଦର ଭାଇ ମୋର ଯେ ଅଟଇ ବଇରୀ ।
ଯାଅ ବେଗେ ମାରରେ ନାହିଁ ମୋର ଛଳ
ତୋତେ ଅନୁକୂଳରେ ହେଉ ଧର୍ମବଳ ।
ଦୁଷ୍ଟ ଲୋକକୁ ମାଇଲେ ସେଥିରେ ନାହିଁଦୋଷ
ସ୍ୱର୍ଗପୁରେ ଶୁଭିବରେ ସାଧୁ ସାଧୁ ଘୋଷ ।
କୁବେରର ମୁଖରୁ ଏସନେକ ଉତ୍ତର
ଶୁଣିଣ କୋପାନଳ ମଣିଭଦ୍ର ବୀର ।
କରେଣ ଶସ୍ତ୍ର ଧରିଣ ମାଇଲା ସରାଗେ
ଭୟରେ କେହି ଯେ ନ ରହେ ତାର ଆଗେ ।
ପଛରେ ଗୋଡ଼ାଇ ଅଛନ୍ତି ସୈନ୍ୟବଳ
ସ୍ୱର୍ଗରେ ଥାଇଣ ଯେ ଦେଖନ୍ତି ଦିଗପାଳ ।
ବିଚ୍ଚର କରନ୍ତି ସର୍ବ ଦେବଗଣ
ମଣିଭଦ୍ର ବୀର ଯେ କଲାକ ମହାରଣ ।
ଦେବେଣ ଅଜୟେ ଯେ ଅଟନ୍ତି ଦକ୍ଷପତି
ଅସୁରଙ୍କର ଏହିକ୍ଷଣି ସରିବ ବିଭୂତି ।
ଏହାର ମୁଖେ କି ଭାର୍ଜନ ଲଙ୍କସାଇଁ
ତିନିପୁରେ ଯାହାକୁ କ୍ଷତ୍ରୀ ସମ ନାହିଁ ।
ଏତେ ବୋଲି ଦେବେ ଯେ ପୁଷ୍ପବୃଷ୍ଟି କଲେ
ଦଶାନନ ପ୍ରାଣ ହର ତୁ ବୋଇଲେ ।
ତେବେ ସ୍ୱର୍ଗପୁରରେ ସୁସ୍ଥରେ ଆମ୍ଭେ ଥାଇ
ତୋର ଥାଉଁ ଥାଉଁରେ ଏଡ଼େକ ଦୁଃଖ ପାଇ
ମଣିଭଦ୍ର ଯାଆନ୍ତେ ଦେଖିଲା ଦଶଗିରି
କୋପରେ ଧାଇଁଲା ସେ ଶୀଘ୍ର ଗଡ଼ିକରି ।
ବଜ୍ର ସମ ଗଦା ଯେ ପହୁଡ଼ିଲା ନେଇ
ମଣିଭଦ୍ର ମୁଣ୍ଡରେ ପଡ଼ିଲା ଶସ୍ତ୍ର ଯାଇଁ ।
ଘାୟେଣ ଘୁମାଇଲା ତେଡ଼େ ଦକ୍ଷ ବୀର
ଭୂମିରେ ପଡ଼ିଲା ଯେ ହୋଇ ଥରହର ।
ରନ୍ନେ ଜଡ଼ିଲା ମୁଣ୍ଡ ଭୂମିରେ ଲୋଟିଲା
ଧରଣୀରେ ପଡ଼ିଣ ଅଚେତା ହୋଇଲା ।
ଦେଖିଣ ସୁରଲୋକେ କରନ୍ତି ଭାଳେଣି
ବୋଇଲେ ବିଚିତ୍ର ତ ହେଲା ଯୁଦ୍ଧ ମଣି ।
ଦକ୍ଷର ସୈନ୍ୟମାନେ ପଳାଇଣ ଗଲେ
କୁବେରର ଆଗରେ ସେ ବାରତା ଜଣାଇଲେ
ଭୋ ଦେବ ମଣି ଭଦ୍ର ପଡ଼ିଲାକ ରଣେ
ଚତୁରାଙ୍ଗ ବଳ ତୋର ପଳାଇଲେ କେଣେ ।
ଶୁଣିକରି କୁବେର ହୋଇଲା ସ୍ତବ୍ଧ
ମନେ ବିଚ୍ଚରିଲା ମୁଁ କରିବି କିମ୍ପା ଦ୍ୱନ୍ଦ୍ୱ ।
ବ୍ରହ୍ମାଙ୍କର ବରରେ ଅଜୟ ଦଶଗିରି
ଏହିକ୍ଷଣି ଜୀବନ ଘେନିବ ମୋହରି ।
ଦୁଷ୍ଟଜନମାନଙ୍କୁ ଗୁଟୁ ଯେବେ କହି
ତେବେ ସେ ବସଇ ଦୟା ତାର ଦେହୀ ।
ଏତେକହି କୁବେର ଶଙ୍ଖନିଧି ପଦ୍ମନିଧି
ଦୁଇନିଧି ସଙ୍ଗେ ଧରି ଘେନିଗଲେ ବୋଧି ।

ମଣିଭଦ୍ର ମାରିଣ ଆସେ ଲଙ୍କାରାୟେ
ଏସନେକ ସମୟେ କୁବେର ଯାଇଁ ହୋଏ ।
ଆଗରେ ଦୁଇନିଧି ପଛରେ ଧନପତି
ଲାଜରେ ବଇଶ୍ରବଣ ଆସେ ମଥା ପୋତି ।
କୋପଭର ହୋଇ ଯେ ଆସେ ଦଶାନନ
ଦୁଇନିଧି ବୋଇଲେ ବଚନ ଏବେ ଶୁଣ ।
ଏ ତୋହର ଭାଇ ଅଟଇ ଦିଗପାଳ
ଏହାକୁ ତୁ ଘଞ୍ଚାଳ ନ କର ଲଙ୍କ ମଲ୍ଲ ।
ଏକା ବାପରୁ ତୁମ୍ଭେ ତ ହୋଇଅଛ ଜାତ
ବିଶ୍ରବା ମହାରଷି ତୁମ୍ଭର ଅଟେ ତାତ ।
ମାତା ସିନା ବେଗଳ ଅଟେ ଦୁହିଁଙ୍କରି
ଆପଣା ସୋଦରକୁ କେ ମନ୍ଦ ଚିନ୍ତା କରି ।
ଦେବେ ଦାନବେ ଯେ କଶ୍ୟପଙ୍କର ସୁତ
ଦିତି, ଅଦିତି ଯେ ଏହାଙ୍କର ମାତ ।
ବଇମାତୃ ମନରେ ଅହନ୍ତା ବହିଲେ
ଧର୍ମକୁ ଛାଡ଼ିଣ ସେ ପାପ ଆଚରିଲେ ।
ତୁ ଏବେ ଏକମନେ ଶୁଣ ଦଶାନନ
ସୋଦର ଭାଇ ସଙ୍ଗରେ କିସ ବାଦ ଜାଣ ।
ତାସଙ୍ଗେ ବାଦକଲେରେ ତୋତେ ହୋ ଏହାନି
ବାହୁଡ଼ିଯାଅ ବେଗେ ଆମ୍ଭର ବୋଲ ଘେନି ।
ନିଧିଙ୍କର ବୋଲକୁ ନ ଘେନେ ଅସୁର
ବୋଲେ ନିଶ୍ଚେଁ ମାରିବି ଭାଇକି ତୋହର ।
ଏକ ମୁଥକରେ ମୁଁ କରିବି ନିଶ୍ଚେଁ ନାଶ
ଏତେ ବୋଲି କ୍ରୋଧରେ ବିଶ୍ରବାର ଶିଷ୍ୟ ।
ଶଙ୍ଖନିଧି ପଦ୍ମନିଧିଙ୍କି ନ ମାନିଲା
ବଇଶ୍ରବଣକୁ ସେ ମାରିଣ ଧାଇଁଲା ।
ଦେଖିଣ କୁବେର ଆୟୁଧ କରେ ଧରି
ଦୁଇଭାଇ ଅନାଅନି ହୋଇ ଯୁଦ୍ଧ କରି ।
ବ୍ରହ୍ମାର ବର ପାଇ ଦୁଇ ବୀରେ ମତ୍ତ
ବିଷମ ସମର ସେ କଲେକ ତୁରିତ ।
ଦୁହିଁଙ୍କି ପ୍ରାପତ ଯେ ଅଟନ୍ତି ବ୍ରହ୍ମଶର
ତୁହାଇ ମରାମରି ଦୁହେଁ ଅର୍ଗଳ ।
ବାରୁଣା ଅସ୍ତ୍ରେ ଶସ୍ତ୍ରକୁ ନିବାରି ପକାଇଲେ
କୁହୁଡ଼ି ପ୍ରାୟେ ଶର ଦୁଆଡ଼େ ପଡ଼େ ପରେ ।
ବେଳକୁବେଳ ସମର ଲାଗିଲା ମହାରୋଳ
ଆକାଶରେ ଥାଇଣ ଦେଖନ୍ତି ଦିଗପାଳ ।

ଧର୍ମ ଯୁଦ୍ଧରେ ଯହୁଁ ନୋହିଲା ହାର ଜିଣ
ତହୁଁ ଦୁଇଭାଇ କଲେ ମାୟା ରଣ ।
କ୍ଷଣେ ଦୃଶ୍ୟ ହୁଅନ୍ତି କ୍ଷଣକେ ଅଦୃଶ୍ୟ
ଦୁଇକୁଳ ମଧ୍ୟରୁ ମନରେ ବଡ଼ ପ୍ରାସ ।
ଅନେକ ଅଗ୍ନିଶର କଲେକ ଧନପତି
ପ୍ରଳୟ କାଳେ ଯେହ୍ନେ ମେଘ ବରଷନ୍ତି ।
ବ୍ରହ୍ମଶର ଧରି ମାରଇ କୁବେର
ଦଶଗ୍ରୀବ ମୋହ ଗଲା ରଥର ଉପର ।
କ୍ଷଣକରେ ଚେତନା ପାଏ ଦଶାନନ
ପୁଣି ସେ ବ୍ରହ୍ମଶର କଲା ଆରୋପଣ ।
ଦିବ୍ୟଅସ୍ତ୍ରେ ବଇଶ୍ରବଣ ନିବାରି
ଦେଖିକରି ଅସୁର ମନରେ କ୍ରୋଧକରି ।
ଅଗ୍ନିଶର ଅନେକ କଲେ ଆରୋପଣ
ବାବଲ ଶରେ ଛେଦିଲେ ଧନପତି ଜାଣ ।
ସେହି ଶର ବସାଇ ବିନ୍ଧେ ଧନପତି
ରାବଣର ନବଶିର ପକାଇଲା କାଟି ।
ତଳେ ନ ପଡ଼ୁଁ ଶିର ବେକରେ ଲାଗିଲା
ଦେଖିଣ ଦଶଗ୍ରୀବ ହସିଣ ବୋଇଲା ।
ନିଶ୍ଚୟେ ପ୍ରାଣ ତୋର ଗଲାରେ ଆଜ ପଣ
ଶୁଣିଣ ଧନପତି ମାରେ ତାକୁ ବାଣ ।
ସେ ବାଣରେ ଦଶଗ୍ରୀବର ମଉଳି ତୁଟିଲା
ତଳରେ ନ ପଡ଼ୁଁ ଶିର ବେଗରେ ଲାଗିଲା ।
ଦେଖିଣ ଧନପତି ପେଶେ ବ୍ରହ୍ମଶର
ପୁଣିହିଁ କାଟିଲା ଦଶକନ୍ଧ ଯେ ତାହାର ।
ଆଖି ପିଛଡ଼ାକେ ଲାଗିଲା କନ୍ଧେ ଯାଇ
ତିନିଥର ମଉଳି କୁବେର କାଟଇ ।
ସେଠାରୁ ଦଶଗ୍ରୀବ ପଳାଇଣ ଗଲା
ପାତାଳପୁରେ ଯାଇ ପ୍ରବେଶ ହୋଇଲା ।
ଧବଳ ଜ୍ୟୋତିପୁର ସେଠାରେ ଦେଖିଣ
ରହିଲା ସେଠାରେ ଯେ ବିଶ୍ରବା ନନ୍ଦନ ।
କୁବେର ଜାଣିଣ ସେଠାରେ ପରବେଶ
ଦୁହିଁଙ୍କର ସମର ହୋଇଲା ବିଶେଷ ।
ସେଠାରେ କୁବେର କାଟିଲା ଦଶଶିର
ପଡ଼ନ୍ତେ ଧରଣୀରେ ଲାଗିଲା ବେକର ।
ପୁଣିହିଁ ବାବଲରେ କାଟଇ କନ୍ଧ ତାର
ତଳେ ନ ପଡ଼ୁଁ ଶିର ଲାଗିଲା ସତ୍ୱର ।

ଏଥୁ ଅନନ୍ତରେ ଶୁଣ ରାମରାଣ
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳେ ଯୁଦ୍ଧ କଲେ ବୁଲିଣ ।
ଜ୍ଞାନ ହାରିଣ ଯେ ପଡ଼ିଲା କୁବେର
ଦେଖିକରି ଦେବତାଏ କମ୍ପିଲେ ଥରହର ।
କପିଳାସ କନ୍ଦରେ ରୁଧିର ବହେ ଧାରା
ଦକ୍ଷଙ୍କର ମାଂସ କର୍ଦ୍ଦନ ହୋଇଲା ।
କୁବେରର ନିଚେଷ୍ଟ ଦେଖି ସପତନାମେ ନିଧି
ଦଶକନ୍ଧକୁ ଅନେକ କହିଲେ ପ୍ରବୋଧି ।
ଭଲ କଲୁ ବାବୁରେ ସୋଦର ବଧ କଲୁ
ମହାତ୍ମା ପୁରୁଷ ହୋଇ ଅକୀର୍ତ୍ତି ଅର୍ଜିଲୁ ।
ଭାଇ ମାରିଣ ଏଥିରେ କେ ଅର୍ଜିଛି ଯଶ
ଜଗତର ଲୋକେ ତୋତେ ବୋଲିବେଟି କିସ
ପୌଲସ୍ତି ବିଶ୍ରବା ଶୁଣିଲେ ହେବେ ରୋଷ
ତାହାଙ୍କୁ ବଳି ବାବୁ ନୁହନ୍ତି ଚତୁର୍ମୁ ।
କୁବେର ଯେବେ ତାଙ୍କର ହୋଇଲେଣି ନାଶ
ତୁମ୍ଭ ତିନିଭାଇଙ୍କି କରିବେ ଧୂଳି ପାଂଶ ।
ବିଧାତା ପୁରୁଷ ଯେ ନ ରଖିବେ ଆଉ
ସେମାନେ କ୍ରୋଧ ହେଲେ ରହିବ କେ ତହୁଁ ।
କେତେଠାରୁ ତୋତେ ସେ ରଖିନାହାନ୍ତି ପୁଣ
ଏବେ ତାଙ୍କଠାରେ ହେଲା ତୋ ଅବିଗୁଣ ।
ରାବଣ ବୋଲେ ମୋତେ ପୁଷ୍ପକଯାନ ଦିଅ
ସମ୍ଭାବନା କରି ତୁମ୍ଭେ କୁବେରକୁ ନିଅ ।
ନିଧିମାନେ ଯାଇଣ ରଥ ଆଣି ଦେଲେ
ନବରତ୍ନେ ଜଡ଼ିଲା ରଥ ତାକୁ ଦେଲେ ।
ସମାଧାନ ହୋଇଣ ବାହୁଡ଼େ ଲଙ୍କପତି
ପୁଷ୍ପକ ଯାନେ ବସି ହେଲା ତୋଷମତି ।
ବାବୁ ସେ ରଘୁବର ଦେବ ରଥ ସାଧୁ
ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି ସେ ରଥେ ବିରଧୁ ।
ବ୍ରହ୍ମଜାତି ହୀରାରେ ପ୍ରତିମା କମମାନ
ଶତେ ପୁର ପରିଯନ୍ତେ କମ୍ପେ ଅନୁମାନ ।
ନବରତ୍ନେ ପିତୁଳା କଲା ସେ ନିରନ୍ତର
ସେଥିରେ ବିଜେକଲା ଯାଇଁଣ ଦଶଶିର ।
ସୈନ୍ୟ ସହିତେ ରଥପରେ ବସେ ଆସି
ବାହୁଡ଼ି ଲଙ୍କାକୁ ଦଶଗିରି ଯେ ଆସି ।
ନିଜ ପୁରେ ଯାଇଣ ହେଲା ପରବେଶ
ଶ୍ରୀ ଜଗନ୍ନାଥ ଶରଣ ମୁଁ ବଳରାମ ଦାସ ।

ଯହୁଁ ସେ ରାବଣ ବୀର ଲଙ୍କାଗଡ଼ ଗଲା
କୁବେର ମହାତ୍ମା ମୋହେଣ ପଡ଼ିଥିଲା ।
ବ୍ରହ୍ମା ସହିତରେ ଯେଅଇଲେ ସୁରଗଣ
ଔଷଧି ଦେଇଣ ଯେ ରଖିବେ ତାର ପ୍ରାଣ ।
ଔଷଧି ଦେଇ ମଣି ଭଦ୍ରାକୁ ଜୀଆଇଲେ
ଦକ୍ଷ ଗନ୍ଧର୍ବଗଣ ସକଳେ ଉଠିଲେ ।
ଅମୃତ ଭୋଜନ କରି ନିଜପୁର ଗଲେ
ସଦାଶିବ କହନ୍ତି ଯେ ପାର୍ବତୀଙ୍କ ଆଗରେ ।
ସେଠାରୁ ଦେବଗଣ ସୁମରେ ପ୍ରେତଗଣ
ବାଆନ କୋଟି ପିଶ୍ଚଶୁଣୀ ଆସି ମିଳେ ପୁଣ
ସକଳ ଦେବତାକୁ ମାନ୍ୟଧର୍ମ କଲେ
ବ୍ରହ୍ମାଙ୍କର ଚରଣେ ଯାଇଣ ପଡ଼ିଲେ ।
କିମ୍ପାଇଁ ଆମ୍ଭଙ୍କୁ ରାଇଲ ବେଦବର
ବିଧାତା ବୋଇଲେ ତୁମ୍ଭେ ଶୁଣ ମୋ ଉତ୍ତର ।
ରଣ ଭୂମିରେ ତୁମ୍ଭେ ରକ୍ତ ମାଂସ ଖାଅ
ଅସୁରଙ୍କୁ ଭସ୍ମ କରି ନିଜପୁରେ ଯାଅ ।
ଶୁଣିଣ ପିଶ୍ଚଶୁଣିଏ ବହନ ଚଳିଗଲେ
ରକ୍ତ ମାଂସ ଖାଇଣ ଅସୁର ଭକ୍ଷିଲେ ।
ନଦୀରେ ପଶିଣ ସର୍ବେ କଲେକ ସ୍ନାହାନ
ନିଜ ପୁରେ ପ୍ରବେଶ ହେଲେ ଯାଇ ପୁଣ ।
ବେଦବର ବୋଇଲେ ହୋ ବଇଶ୍ରବଣ ଶୁଣ
ଭଲ କହିଲେ ଦୁଷ୍ଟେ ପାଆନ୍ତି ଅବିଗୁଣ ।
ଭଲ କହିବାରୁ ପୁଣି ଏତେ ଦଶା ହେଲା
ଆଉଦିନେ ଏକଥା ନ ବିଚ୍ଚର ଭଲା ।
କୁବେରବୋଇଲେ ମୋତେ କହିଲେ ସଦାଶିବ
ବେଦବର ବୋଇଲେ କହିଲେ କିସହେବ ।
ଏହାଶୁଣି ଦେବେ ଯେ ନିଜପୁର ଗଲେ
ଏଥୁ ଅନନ୍ତରେ କଥା ଶୁଣ ରାମ ଭଲେ ।
କରରେ ଜଳ ତିଳ ଘେନିଣ ଧନପତି
ରାବଣକୁ ଶାପ ସେ ତୋଳିଣ ଦିଅନ୍ତି ।
ମୁହିଁ ତୋର ସୋଦରରେ କଲୁ ଏଡ଼େ କୃତ୍ୟ
ମରିବାର କାଳେ ତୋତେ ଛାଡୁନ୍ତରେ ଭ୍ରାତ
ପୁତ୍ର, ନାତି, ଜୁଆଇଁ ତୋର ଗୋଟିଏ ନରହିବେ
କାହାରି ମୁହଁ ନଚ୍ଚହିଁ ମରିବୁ ଦୁଷ୍ଟ ଏବେ ।
ତୋର ଘରଣୀଯାକ ସାନଭାଇରେ ନେବେଦିନ
ଏତେ କହି ଶାପ ଦେଲା ବଇ ଯେ ଶ୍ରବଣ ।

ଶୁଣିଣ ବେଦବ୍ରହ୍ମା ଆନନ୍ଦ ହୋଇଲେ
ବୋଇଲେ ଏଶାପ ତାକୁ ପ୍ରାପତ ହେଉବେଳେ
ଏଥୁ ଅନନ୍ତରେ ଗୋ ପାର୍ବତୀ ଶୁଣ ତୁହି
ଶ୍ରୀରାମଙ୍କ ଆଗେ ଏହା ଅଗସ୍ତି ଯେ କହି ।
ଅଗସ୍ତିଙ୍କି ଚାହିଁଣ ପଚାରନ୍ତି ଶ୍ରୀରାମ
ଆଉ କିସ କଲା ସେ ବିଶ୍ରବା ନନ୍ଦନ ।
କହନ୍ତି ଅଗସ୍ତି ଯେ ଶ୍ରୀରାମ ଆଗେ କଥା
ଶୁଣ ହେ ଚାପଧାରୀ ରାବଣ ବ୍ୟବସ୍ଥା ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ହେ ରାମରାହୁ
କୁବେରକୁ ପରାଜିତ କରି ବିଂଶବାହୁ ।
ପୁଷ୍ପକ ଯାନକୁ ସେହୁ ଆରୋହଣ କଲା
ମନେ ବିଚାରଇ ମୋର ଜୀବନ ଧନ୍ୟ ପରା ।
ଯଦ୍ୟପି କ୍ଷତ୍ରି ଯେ ହେବେ ମହାବଳି
ଯାନ ବିହୁନେ ମୁଁ ନ ପାରଇ ଚଳି ।
ସାହୁଙ୍କ ଠାରୁ କରଜ ଖାତକେ କରନ୍ତି
କଷ୍ଟବେଳେ ମାଗିଲେ ବୋଲ ନ ଘେନନ୍ତି ।
ଏଣୁ ସେ ଦେବେ ଦେଖିଲେ ମୋତେ ଲୁଚି
ଯେ ଯାହାର ବିମାନ ଘେନିଥାନ୍ତି ବାଛି ।
କୁବେରକୁ ପୁଷ୍ପକ ଯେ ଦେଇଥିଲେ ବ୍ରହ୍ମା
ଦଶାନନ ବୀର ତାହା ଜାଣି ନେଲା କିନା ।
ଯେହୁ ଯେତେ କ୍ଷତ୍ରି ତେତେ ତାର ଯାନ
ବସିବାରୁ ଆନନ୍ଦ ହେଲା ଦଶାନନ ।
ଏମନ୍ତେ ସେ ଲଙ୍କା ରାଜ୍ୟ କରୁଥାନ୍ତେ
ପୁଷ୍ପକ ଆରୋହନ୍ତେ ମନ୍ଦୋଦରୀ କାନ୍ତେ ।
ଏମନ୍ତେ ଛଡ଼ଗଣ୍ଡା ଯୁଗ ବହିଗଲା
ଲଙ୍କାଗଡ଼େ ରାବଣ ନିଶ୍ଚିନ୍ତେ ରାଜ୍ୟ କଲା ।
ସୁମାଳି ଦୈତ୍ୟ ଦିନେ ଡକାଇ ରାବଣ
ବୋଇଲା ନିଶ୍ଚିନ୍ତ କିରେ ହେଲୁ ଦଶାନନ ।
କୁବେରକୁ ଜିଣିଲୁ ଜଣାଗଲା କ୍ଷତ୍ରିପଣ
ଦଶଦିଗପାଳଙ୍କର ଏକଇ ବଳ ଜାଣ ।
ଇନ୍ଦ୍ରକୁ ଜିଣିଲେ ତ୍ରିଦଶ ଦେବ ସାଧ
ନାଶକରକୁ ଜିଣିଲେ ହୁଅନ୍ତା ନିରୋଗ ।
ସଦାଶିବ ଜିଣିଲେ ନାରାୟଣ ସଙ୍ଗେ ସରି
ଶୁଣିଣ ଦଶଗ୍ରୀବ ମନରେ ତାର ଭାଳି ।
କଥାଏ ମୋର ମନେ ପଡ଼ିଲାକ ପୁଣ
ବିଚାରେ ସଦାଶିବ ପୁର ମୁଁ କରିବି ଦହନ ।

କପିଳାସ କନ୍ଦରକୁ ଧ୍ୱଂସିବାକୁ ଗଲା
କାର୍ତ୍ତିକେଶ୍ୱରଙ୍କର ପାଶରେ ମିଳିଲା ।
ଅପୂର୍ବ ମନୋହର ଅପୂର୍ବ ଗଚ୍ଛବନ
ସେଠାରେ ପର୍ବତ ଅଟେ ସୁବର୍ଣ୍ଣର କର୍ଣ୍ଣ ।
ବସୁଧାରୁ ହୀରା ଯେ ପ୍ରାୟେ ଜାତ ହୋନ୍ତି
ଅଷ୍ଟାଙ୍ଗ ଧାତୁ ସେଠାରୁ ହେଲେ ଉତପତ୍ତି ।
ଦଶକନ୍ଧ ବନ ବୋଲି ସେ ବନର ନାମ
ପାର୍ବତୀଙ୍କ ଘେନି କ୍ରୀଡ଼ା କଲେ ଈଶ୍ୱର ପୁଣ ।
ଅପୂର୍ବ ବୃକ୍ଷ ସେଥିରେ ଫଳ ମୂଳ ଭାରି
ଭାଷନ୍ତି କୋକିଳ ଯେ ଡାହୁକ ଶୁକ ସାରୀ ।
ସଦା ବସନ୍ତ ଯେ କରେ ତହିଁ ବସା
ସେ ବନେ ରହିଲେ ଯେ ନାଶେ କ୍ଷୁଧାତୃଷା ।
ଭୂଷଣ୍ଡ ବୋଲି କାକ ନାମ ଯେ ତାହାର
ତପୀ ଜପୀମାନେ ସେ ବନୁ ବାହାର ।
ତହିଁରେ ପ୍ରବେଶ ବିଶ୍ରବାର ନାନ
ସେ ପର୍ବତକୁ ଯେ ଯାଇତ କଲା ମନ ।
ବିମାନ ଚଳିଗଲା ହେଲା ସ୍ତମ୍ଭୀଭୂତ
ଯାଅ ଯା ବୋଇଲେ ନଉକେଶୀ ସୁତ ।
ତଥାପି ରଘୁବର ତିଳେ ନ ଚଳିଲା
ମନରେ ବିସ୍ମୟ ଦଶାନନ ଯେ ଭାଳିଲା ।
କିମ୍ପାଇଁ ବିମାନ ରହିଲା ମୋର ଏଥ
ସୁମରିଲେ ମୋର ମନେ ଚଳେ ଯେବଣ ରଥ
ସେ ବନରେ ବୁଲିଣ ସେ କ୍ରୀଡ଼ା ଯେ କରଇ
ତାକୁ ଦେଖି କରିଣ ଦଶାନନ ରାଇ ।
ବଳରାମ ଦାସ ମୁଁ ଯେ ସେଠାବରେ ଥିଲି
ଦଶାନନକୁ ଦେଖିଣ ସଦାଶିବଙ୍କୁ ସେବିଲି ।
ଏଥୁ ଅନନ୍ତରେ ଯେ ରାମଚନ୍ଦ୍ର ପୁଣ
ପାର୍ବତୀ ଆଗେ ଯାହା କହିଲେ ଈଶାନ୍ୟ ।
ସେ କଥାକୁ ଯୋଗବଳେ ଜାଣେ ମୁହିଁ ଭଲେ
ତୁମ୍ଭର ଆଗରେ ମୁଁ କହିଲି ଭାବଭୋଳେ ।
ଦଶଗ୍ରୀବ ଦେଖିଣ ଯେ ମାରୀଚ ରାଇଲା
ତକ୍ଷଣେ ତାଡ଼କୀ ସୁତ ଆସିଣ ମିଳିଲା ।
ମାରିଚକି ରାଇଣ ବୋଲେ ଦଶାନନ
ଏ ସ୍ଥାନରେ ମୋର ଯାନ ନ ଚଳେ କିମ୍ପା ପୁଣ
ସ୍ତମ୍ଭୀଭୂତ ହୋଇ କିମ୍ପା ରହିଲା ମୋର ଯାନ
ମାରୀଚ ବୋଇଲା ତ ରେ ଶୁଣ ଦଶାନନ ।

କୁବେରର ପୁରେ ଥିଲା ଏହି ବିମାନ ତ
ତୋରଠାକୁ ଯିବାରୁ ଏ ଲଜ୍ଯାରେ ସ୍ତମ୍ଭୀଭୂତ ।
ବିରୁଛି ଆଗେ ଦେବଙ୍କ ଆଳେ ଥିଲି
ଅସୁରକୁ ମୁଁ ନୋହିଲି ନିତ୍ତନ ହୋଇଲି ।
ଅଳକାପୁର ଯିବାକୁ ତାର ମନନାହିଁ
ବଇଶ୍ରବଣକୁ ଦେଖିଲେ ମଥା ସେ ପୋତିବଇଁ
ମହତ୍ତ୍ୱ ପ୍ରାଣୀଙ୍କର ଏମନ୍ତ ବୃତ୍ତାନ୍ତ
ଏ ପୁଷ୍ପକ ବିମାନ ଧର୍ମରେ ଆତଯାତ ।
ପୂର୍ବେ ତାର ପାଶେ ଥିଲି ସେହୁ ବିରିଲା
ଏବେ ମୁଁ କେମନ୍ତେ ଯିବି ମନରେ ସେ ହେଲା
ଯେତେବେଳେ ପୁଷ୍ପକ ଯାନକୁ ମାଗିଲୁ
କୁବେର ହତଜ୍ଞାନ ତୁ ଗଦାମାଡ଼ ଦେଲୁ ।
ସପତ ନିଧି ଜାଣି ତୋତେ ଯାନ ଆଣିଦେଲେ
ଆସିଲା ବେଳେ ଯାନକୁ ମଣାଇ କହିଲେ ।
ବୋଇଲେ ଯାନ ତୁରେ ରାବଣ ସଙ୍ଗେ ଯିବୁ
କେବେ ବାହୁଡ଼ି ଅଳକାପୁର ନ ଆସିବୁ ।
ଯେତେବେଳେ ରାବଣ ହେବ ପ୍ରାଣେ ନାଶ
ତେତେବେଳେ ଏ ପୁରକୁ ଆସିବୁ ଅବଶ୍ୟ ।
ଏହା ଶୁଣି ଯାନ ତୋର ବୋଲେ ଚଳି
ଏ ପୁରକୁ ଆସିବାକୁ ମନା ଯେ ତାହାରି ।
ଦଶାନନ ବୋଇଲେରେ ମାରୀଚ ଏବେ ଶୁଣ
ତୋର କୁଳ ଗୋତ୍ର ତୁ କହ ମୋ ଆଗେଣ ।
ମାରୀଚ ବୋଇଲା ମୁଁ ଯେ ତାଡ଼କୀର ସୁତ
ଏ ବନରେ କ୍ରୀଡ଼ା ରସେ ହେଲି ଉପଗତ ।
ଏସନେକ ସମୟରେ ଯେ ପୁରୁଷେକ ଆସି
ବୋଇଲେ ଦଶାନନରେ ବାହୁଡ଼ି ଯାଅସି ।
ଏହି କପିଳାସ ସେ ଈଶ୍ୱରଙ୍କର ସ୍ଥାନ
ପାର୍ବତୀଙ୍କି ଘେନି ସେ ଯେ ବିଳସନ୍ତି ପଞ୍ଚାନନ ।
ଦେବଙ୍କର ଉପରେ ଅଟନ୍ତି ମହାଦେବ
ସେ ବିଶ୍ୱନାଥଙ୍କର ଏକାନ୍ତ ଏକଠାବ ।
ଚଉଦ କୋଟି ରୁଦ୍ର ଯେ ତ୍ରିଶୂଳ ଘେନିବୁଲି
ନୀଳାମ୍ବର ନାଥ କରନ୍ତି ସେଥି କେଳି ।
ଦେବେ ଦାନବେ ଯେ କିନ୍ନର ଦକ୍ଷଗଣ
ପଶି ନ ପାରନ୍ତି ଏହୁ ସ୍ଥାନରେ ସେହୁଜାଣ ।
ଉପରେ ଉଡ଼ି ନ ପାରନ୍ତି ପକ୍ଷୀମାନ
ରୁଦ୍ର ଦେବଙ୍କର ଅଟେ ଏ ଗୋପ୍ୟସ୍ଥାନ ।

ଯାହାର କୋପକଲେ ଜଗତ ନାଶ ଯାଇ
ବ୍ରହ୍ମା, ବିଷ୍ଣୁ ତାହାଙ୍କ ଆଜ୍ଞାରେ ରହିଥାଇ ।
ଶୁଣିଣ ଦଶାନନ ଅଳପ ହୋଇ ହସି
ବୋଲଇ ଯାହା ତୁରେ ବୋଇଲୁ ତପସ୍ୱୀ ।
ମୁଁ ଜାଣଇଁ ତାହାକୁରେ ଘେନିଆସ ଯାଇ
ଭିକ୍ଷାପାଇଁ ଈଶ୍ୱରରେ ଜଗତ ବୁଲଇ ।
ତାହାର କଥା ତୁରେ ବଡ଼ କରି କହୁ
ମିଛରେ ବୋଲ ତୁମ୍ଭେରେ ସଂସାରର ପ୍ରଭୁ ।
କରରେ ଖଡ଼ଗ ଧରି ପର୍ବତକୁ ଉଠି
ନନ୍ଦୀକେଶ୍ୱର କୋପରେ ଉଭାହେଲେ ସେଠି ।
ବକ୍ର ବଦନ ତାର କରରେ ଅଛି ଶୂଳ
ଦେଖି କରି ଉପହାସ୍ୟ କରେ ଲଙ୍କପାଳ ।
ଏ କିସ ଭବିଷ୍ୟରେ ବାନର ରୂପ ଧରି
ଏଡ଼େ ଅଲାଜୁକ ତୁରେ ଅଇଲୁ କି କରି ।
ଶୁଣି ନନ୍ଦୀକେଶରୀ କୋପରେ ଶାପ ଦେଲା
ନର ବାନରଙ୍କ ହସ୍ତେ ମର ତୁ ବୋଇଲା ।
ଏଡ଼େ ଗର୍ବ ତୋରରେ ତୁ ଉପହାସ କରୁ
ମାନବଙ୍କ ହସ୍ତରେ ତୋର ମୃତ୍ୟୁ ପୁରୁ ।
ଶାପ ଦିଅନ୍ତେ ଦଶକନ୍ଧ ଯେ କଲା ଭୟେ
ନନ୍ଦୀକି ରହିଁଣ ଯେ ବୋଲେ ଲଙ୍କରାୟେ ।
ତୁ ଯେ ବିମାନ ମୋର ନ ଦେଲୁ ଏଥେଯାଇ
ବୋଇଲୁ ଜଗତ ଈଶ୍ୱର ଏଥେ ଥାଇ ।
ଆଜ ହର ପାର୍ବତୀ କରିବି ମୁଁ ନାଶ
ଗଦା ପିଟି ଧୂଳିସାତ୍ କରିବି କପିଳାସ ।
ଅଥବା ସମୁଦ୍ରରେ ପକାଇବି ନେଇ
ଧୂମ୍ର କରି ଦେବି ମୁଁ ଅଗ୍ନି ଜାଳି ଦେଇ ।
ନୋହିଲେ ଲଙ୍କାରେ ଥୋଇବି ଗିରିବର
ଏ ରମ୍ୟ ସ୍ଥାନଟିରେ ହୋଇବ ମୋହର ।
ଏତେ କହି ପର୍ବତ ଧଇଲା ବିଂଶ ଭୁଜେ
ହିଆଭର ଦେଇ ଯେ ଉପାଡ଼େ ଲଙ୍କରାଜେ ।
ମନ ପବନରେ ଏକ କରିଣ ଯେ ତୋଳି
ଥର ହର ହୋଇ ଯେ କମ୍ପିଲା ମହୀଆଳି ।
ଘଡ଼ଘଡ଼ି ପ୍ରକାରେ ସେ ହୋଇଲା ଶବଦ
ଶୁଣିଣ ଅସୁର ରାଜେ ହୋଇଲା ସ୍ତବଧ୍ ।
ମଡ଼ମଡ଼ ଶବଦରେ ଉପୁଜିଲା ଗିରି
ଅଚ୍ୟୁତ ହୋଇଲା କି ସଂସାରରୁ ଶିରୀ ।

ରୁଦ୍ରଦେବ ସହିତେ ଆବର ହେମବନ୍ତୀ
ନନ୍ଦୀ ଭୃକୁଟୀ ସହିତେ କାର୍ତ୍ତିକ ଗଣପତି ।
ତପୀ ଜପୀ ସିଦ୍ଧ ସାଧୁ ଯୋଗୀଜନମାନେ
ଚଉଦ କୋଟି ଶିବଗଣ ଅଛନ୍ତି ସେ ସ୍ଥାନେ ।
ଅନନ୍ତ ଯୋଗେଶ୍ୱର ଚଉଦ କୋଟି ସିଦ୍ଧ
ସାଧକ ଯୋଗୀଗଣ ଅଠର କୋଟି ସିଦ୍ଧ ।
ଅନନ୍ତ ଋଷି ଦୁର୍ଗା ଅନନ୍ତ ଯୋଗେଯୋଗୀ
ଜ୍ଞାନବନ୍ତମାନେ ଯୋଗୀ କାମ ଭୋଗୀ ।
ଗଙ୍ଗା ସହିତେ ଯେ ବାସୁକୀ ନାମେ ଅହୀ
ତିଳ ମନ୍ଦା ପ୍ରମାଣେ ବହିଅଛି ମହୀ ।
ବନଜନ୍ତୁ ସହିତେ ଯେ ଗିରି କପିଳାସ
ଉପାଡ଼ିଣ ଟୋଳିଲା ବିଶ୍ରବାର ଶିଷ୍ୟ ।
ମାତାର ସ୍ତନ ନେଇ କାଟି ପକାଇଲା
ଦୃପୀଷ୍ଟ ଲଙ୍କେଶ୍ୱର ଏଡ଼େ କର୍ମ କଲା ।
ଯେତେକ ଅସୁର ଏ ପୃଥ୍ୱୀରେ ଜନ୍ମିଥିଲେ
ଏଡ଼େ ଦପଦର୍ପ କେହି କରି ସେ ନଥିଲେ ।
କୁବେରକୁ ଜିଣି ଯେ ପୁଷ୍ପକ ରଥ ଚଢ଼ି
ଆବର କପିଳାସକୁ ସେହି ସେ ଉପାଡ଼ି ।
ଦେଖି ତ୍ରାସ ପାଇଲେ ସ୍ୱର୍ଗେ ଦେବଗଣ
ଆଶ୍ଚର୍ଯ୍ୟ ହୋଇଣ ଯେ ଦେଖନ୍ତି ବୀରପଣ ।
ଯେତେବେଳେ ଦଶାନନ ଟୋଳିଲାକ ଗିରି
ତକ୍ଷଣେ ଶିବଙ୍କର ହରିଲାକ ଶିରୀ ।
ଅନ୍ନପୂର୍ଣ୍ଣା ଅଟନ୍ତି ଗୋ ସେହି ସେ ପାର୍ବତୀ
ମୁକ୍ତି ଦାତା ପୁରୁଷ ଅଟନ୍ତି ଶୂଳପତି ।
ପର୍ବତକୁ ଉପାଡ଼ି ଆସିଲା ଦଶାନନ
ସର୍ବଜ୍ଞ ପୁରୁଷ ବୋଲି ଜାଣିଲେ ତ୍ରିଲୋଚନ ।
ନନ୍ଦୀ ଜଣାଇଲା ଏ ଯେ ଲଙ୍କାର ଦଇତ
ପୌଲସ୍ତୀର ନାତି ଏ ଯେ ବିଶ୍ରବାର ସୁତ ।
କୁବେରକୁ ଜିଣି ଏ ପୁଷ୍ପକ ଯାନ ନେଲା
ଏବେ କପିଳାସ ପର୍ବତ ଯେ ଉପାଡ଼ିଲା ।
ଶୁଣିଣ ଶୂଳପାଣି ଯେ ପ୍ରଜ୍ୱଳିତ କୋପି
ମନ ଆକର୍ଷଣ ଷୋଳ କମଳ ଯେ ଚପି ।
ବାମ ଚରଣ କନିଷ୍ଠ ଅଙ୍ଗୁଳିରେ ଚପି
ଧୀର କରି ସଦାଶିବ ତଳକୁ ଦେଲେ ଯାପି ।
ମହାଯୋଗ ଆଶ୍ରମ ସୁମରଣା କଲେ
କ୍ରୋଧରେ ଜରଜର ତନୁ କମ୍ପାଇଲେ ।
ବିଶ୍ୱ ସଂସାର ଗୋଟି ଯେ ଗର୍ଭେ ଅଛି ଧରି
ସେ ପୁରୁଷ କୋପକଲା ମନରେ ବିଚାରି ।
ଯହୁଁ ସେ ପର୍ବତକୁ ଚପି ସଦାଶିବ
ଗରୁ ପାଇ ଆରତ ହୋଇଲା ଦଶଗ୍ରୀବ ।
ମହାଦେବ ଭୟରେ ସେ ନ ପାଇଲା ରହି
ସମ୍ଭାଳି ନ ପାରିଲା ସେ ପଡ଼ିଲାକ ଶୋଇ ।
ଉପରେ ତାର ମାଡ଼ି ବସିଲା ଗରିବର
ଗର୍ବରେ ରାବଣ ଯେ ପଡ଼ିଲାକ ଗିରିତଳ ।
ବ୍ୟଥା ପାଇଲା ଯେ ବିଶ୍ରବା ସୁତ ପୁଣି
ରଡିଏ ଛାଡ଼ିଲା ଯେ ପୂରିଲା ମେଦିନୀ ।
କ୍ରୋଧରେ ସଦାଶିବ ତ୍ରିଶୂଳ ନେଇ ଥୋଇ
ଯେସନେକ ମେରୁଗିରି କନ୍ଦର ଭାରି ହୋଇ ।
ତଳେ ଶୋଇଣ ରାବଣ କରୁଅଛି ରଡ଼ି
ସଦାଶିବ ବୋଇଲେ ଦୈତ୍ୟଙ୍କୁ ମାର ବେଢ଼ି
ଶୁଣି ନନ୍ଦୀ, ଭୃକୁଟୀ, କାର୍ତ୍ତିକ, ଗଣେଶ
ଚଉଦ କୋଟି ଶିବଙ୍କୁ ଘେନିଣ କଲେ ତ୍ରାସ ।
ଚଉପାଶେ ବେଢ଼ି ସେ ମାରନ୍ତି ଅସୁର
ରାତ୍ର ଦିବସରେ ମଲେ ବହୁ ଦୈତ୍ୟବଳ ।
ପଞ୍ଚାଶ କୋଟି ଯେ ଅସୁର ବଳ ମଲେ
କପିଳାସ କନ୍ଦର ଯେ ରୁଧିର ନଦୀ କଲେ ।
କୋଡ଼ିଏ କୋଟି ଦୈତ୍ୟ ଯେ ଗଲେକ ପଳାଇ
ଲଙ୍କାଗଡ଼ ଭିତରେ ପଶିଲେକ ଯାଇଁ ।
ବୋଇଲେ ରାବଣ ଯେ କପିଳାସ ଟୋଳି
ଜାଣିଣ ସଦାଶିବ କ୍ରୋଧରେ ପ୍ରଜ୍ୱଳି ।
ପର୍ବତକୁ ଚପନ୍ତେ ସେ ବସିଲାକ ମାଡ଼ି
ପ୍ରାଣର ବିକଳେ ରାବଣ ଛାଡ଼େ ସିଂହରଡ଼ି ।
ଶୁଣିଣ ଅସୁର ଯେ ସକଳେ ଭୟକରେ
ଏଥୁଅନ୍ତେ ରାମଚନ୍ଦ୍ର କଥା ଶୁଣ ଭଲେ ।
ଅସୁରେ ଯିବାରୁ ଯେ ଶିବଗଣେ ପୁଣ
ରଣ ଛାଡ଼ି ନଦୀରେ କଲେକ ସ୍ନାହାନ ।
ସଦାଶିବ ଆଗେ ଯାଇ କହିଲେ ସକଳ
ପୀଚ୍ଛଶଙ୍କୁ ସୁମରଣା କଲେ ଦିଗାମ୍ବର ।
ବାଆନ କୋଟି ପୀଚ୍ଛଶ କ୍ଷଣକେ ଅଇଲେ
ରକତ ମାଂସ ଖାଇ ସେ ତୁପତ ହୋଇଲେ
ନଦୀରେ ପଶିଣ ସେ କଲେ ସ୍ନାନ ଯାଇ
ନିଜପୁରେ ପ୍ରବେଶ ହୋଇଲେ ବେଗେ ଯାଇଁ ।

ଶିବଗଣେ ଯେତେକ ମୋହେ ପଡ଼ିଥିଲେ
ଗଉରୀ ନନ୍ଦନ ପିତା ଆଗରେ କହିଲେ ।
ସଞ୍ଜୀବନୀ ମନ୍ତ୍ର ସୁମରଣା କଲେ ମହେଶ୍ୱର
ଜୀବପାଇ ସକଳେ ଉଠିଲେ ସତ୍ୱର ।
ସ୍ନାହାନ କରିଣ ସେ ଦେବ ତ୍ରିପୁରାରୀ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଋପଧାରୀ ।
ଗଉରୀଙ୍କୁ ସଦାଶିବ କହିଲେ ସେଠାରେ
କୁଙ୍କୁମ ଲାଗି ଆଜ ହୋଇବା ଏଠାରେ ।
ଶୁଣିଣ ଗଉରୀ ସର୍ବ ଶିବଗଣ ଘେନି
ସଦାଶିବଙ୍କ ଅଙ୍ଗରେ କୁଙ୍କୁମ ବୋଳେ ପୁଣି ।
କୁଙ୍କୁମ ଶୁଖନ୍ତେ ସହସ୍ରେ ବର୍ଷ ପୂରିଗଲା
ତଳରେ ରାବଣେଶ୍ୱର ପଡ଼ିଣ ରହିଲା ।
ପ୍ରତିଦିନ ରଡ଼ି ଛାଡ଼େ ସେହୁ ପୁଣ
ଶତେକ ବର୍ଷରେ ଜାଣେ ବିଶ୍ରବା ଋଷି ଜାଣ ।
ତରସ୍ତ ହୋଇଣ ଋଷି ବେଗେ ଚଳିଆସି
କପିଳାସ କନ୍ଦରେ ମିଳିଲେ ମହାଋଷି ।
ନନ୍ଦୀକି ପଚ୍ଚାରିଲେ ସଦାଶିବଙ୍କ କଥା
ନନ୍ଦୀ ବୋଇଲେ ତୁମ୍ଭେ ନୋହିବ ଏବେଦେଖା
କୁଙ୍କୁମ ଲାଗି ହୋଇଛନ୍ତି ଦେବରାୟେ
ସହସ୍ରେ ବର୍ଷ ଗଲେ ତାଙ୍କୁ ଭେଟ ପାଏ ।
ମହଋଷି ବୋଇଲେ ହୋ ଶୁଭେ କିସ ରଡ଼ି
ନନ୍ଦି ବୋଇଲେ ସେ ଲଙ୍କାର ଦୈତ୍ୟପଡ଼ି ।
ଦଶାନନ ଅଟେ ଅସୁର ମହାବଳୀ
ଈଶ୍ୱରଙ୍କ ସଙ୍ଗକୁ ସେ ଆସେ କଳି କରି ।
କ୍ରୋଧରେ ଦଇତ୍ୟ କପିଳାସ ଉପାଡ଼ିଲା
ଟୋଳନ୍ତେ ଗିରିବର ମାଡ଼ିଣ ବସିଲା ।
ତାହା ଶୁଣି ମୁନି ଆସନ କଲେ ଦୃଢ଼
ଜପରେ ସୁମରଣା କଲେ ଯୋଗାରୂଢ଼ ।
ଏଥୁ ଅନନ୍ତରେ ଶୁଣ ଦାଶରଥି
ଅନେକ ବ୍ୟାକୁଳ ହେଲେ ସେ ଲଙ୍କପତି ।
ଶୁଣି କରି ପଉଲସ୍ତୀ କପିଳାସରେ ମିଳି
ସଦାଶିବଙ୍କୁ ନ ଦେଖି ଋଷି ମନେ ଭାଳି ।
ତପ କଲେ ଋଷି ବସି ସେ ଗିରିରେ
ଯୋଗ ଲୟ କଲେ ସେ ଈଶ୍ୱର ପାଦତଳେ ।
ଏମନ୍ତେ ନବଶତ ବରଷ ବହିଗଲା
ପରମହଂସ ଚଢ଼ି ବିଧାତା ବିଜେ କଲା ।
କପିଳାସ କନ୍ଦରେ ହେଲେ ପରବେଶ
ଜାଣିଣ ପଦ୍ମଯୋନି ସ୍ତୁତି କଲେ ବିଶେଷ ।
ଚତୁର୍ମୁଖ ଶତେ ବରଷ ସ୍ତୁତି କଲେ
ତେବେ ସେ ସଦାଶିବଙ୍କୁ ଯାଇଣ ଦେଖିଲେ ।
ପଉଲସ୍ତୀ ବିଶ୍ରବା ମିଳିଲେକ ପୁଣ
କରଯୋଡ଼ି ସ୍ତୁତି କରନ୍ତି ତିନିଜଣ ।
ବେଦବରଙ୍କୁ ଋହିଁଣ ବୋଲନ୍ତି ପଞ୍ଚାନନ
କେଉଁ କାର୍ଯ୍ୟେ ବିଜେ କଲେ ଚତୁର ବଦନ ।
ବେଦବର ବୋଇଲେ ତୁମ୍ଭ ଦର୍ଶନ ନିମନ୍ତେ
ଆହୁରି ଅଛି କଥାଏ ମୁଁ କହିବାକୁ ତୋତେ ।
ବିଶ୍ରବା ନନ୍ଦନ ପରା ଅଟେ ଦଶଶିର ।
ତୋରଠାରେ ମତ୍ତଗର୍ବ ହୋଇଲା ତାହାର ।
ସେ ଦୋଷରୁ ଶାସ୍ତି ଅନେକ ପାଇଲା
ତାର ଠାରୁ କୋପ ଛାଡ଼ି ତ୍ରୟି ନେତ୍ର ଏରା ।
ଈଶ୍ୱର ବୋଇଲେ ସେ ଅନ୍ୟାୟ କରେ ବଡ଼
ଏଡ଼େ ଦୁଷ୍ଟ ଥିଲେ କି ସଂସାର ହେବ ସ୍ଥିର ।
ବେଦବର ବୋଇଲେ ଶୁଣ ତୁମ୍ଭେ ହର
ତୁମ୍ଭର ହସ୍ତରେ ପୁଣ ମୃତ୍ୟୁ ନାହିଁ ତାର ।
ଛପନ ଗଣ୍ଡା ଯୁଗକୁ ସେ ପାଇଅଛି ବର
ତିନି ଭାଗ କ୍ଷୟେ କଲା ବିଶ୍ରବା ମୁନିବର ।
ଈଶ୍ୱର ବୋଇଲେ କିମ୍ପାଇଁ ପିତା ଶାପ ଦେଲା
ଚତୁର୍ମୁଖ ବୋଇଲେ ତା ବୋଲ ନ ମାନିଲା
ଈଶ୍ୱର ବୋଇଲେ ସେ କାହାର ହସ୍ତେ ମରି
ବେଦବର ବୋଲେ ତାକୁ ନାରାୟଣ ମାରି ।
ଈଶ୍ୱର ବୋଇଲେ କିମ୍ପା ଅନ୍ୟରେ ନୋହେବଧି
ଚତୁର୍ମୁଖ ବୋଇଲେ ଶୁଣ ତହିଁର ଯେ ବିଧି ।
ବିଷ୍ଣୁଙ୍କ ଦ୍ୱାରପାଳ ବିଷ୍ଣୁଙ୍କ ହସ୍ତେ ଲୀନ
ଚଉଦ ଗଣ୍ଡା ଯୁଗରେ ମୃତ୍ୟୁ ହେବ ପୁଣ ।
ନାରାୟଣ ଅବତାର ମାନବରେ ହେବେ
କମଳାଙ୍କୁ ବିଭା ହୋଇ ବନରେ ବୁଲିବେ ।
ସ୍ନେହକାରୀ ହୋଇଥିବ ଜାନକୀ ତାଙ୍କର
ତୁମ୍ଭେ ତାଙ୍କ ସଙ୍ଗେ ଅବତାର ହେବ ହର ।
ଯେତେବେଳେ ଜାନକୀକି ରାବଣ ଘେନିଯିବ
ସେତେବେଳେ ନାରାୟଣ ବାଣରେ ନାଶଯିବ ।
ଈଶ୍ୱର ବୋଇଲେ ସେମାନେ ଥାଉ ତେତେକାଳ
ଏ ପର୍ବତ ତଳେ ଯେ ପଡ଼ିଥାଉ ବୀର ।

ଚତୁର୍ମୁଖ ବୋଇଲେ ଯେ ଛାଡ଼ିଦିଅ ତାକୁ
ଜାନକୀ ହରିଲେ ସିନା ତୁଟିବ ବଳ ବପୁ ।
ଈଶ୍ୱର ବୋଇଲେ ତାକୁ ଯେବେ ଛାଡ଼ି ଦେବି
ତୁମ୍ଭ ତିହ୍ନିଙ୍କ ଠାରୁ ମୁଁ ସଙ୍କେତ ପାଇଥିବି ।
ଚତୁର୍ମୁଖ ବୋଲେ କିସ ହେ ଗୋସାଇଁ
ଈଶ୍ୱର ବୋଇଲେ ତୁମ୍ଭେ ପ୍ରମାଣ କର ରହି ।
ଯୋଗୀନ୍ଦ୍ର ବୋଇଲେ ଯେତେବେଳେ ନାରାୟଣ
ମାରିବାକୁ ବିଚାର କରିବେ ସେ ମନ ।
ତେତେକାଳ ତୁମ୍ଭେ କେହି ନୋହିବ ତାର ସାଥି
ଏ କଥାକୁ ସତ୍ୟକରି କହ ହେ ବେଦପତି ।
ଚତୁର୍ମୁଖ ଦିଗପାଳ ପଞ୍ଚଜନେ ଜାଣ
ମଲାବେଳେ ଆମ୍ଭେମାନେ ହରଷ ହେବୁ ପୁଣ ।
ଶୁଣିକରି ସଦାଶିବ ସନ୍ତୋଷ ହୋଇଲେ
ବାମପାଦ କନିଷ୍ଠ ଅଙ୍ଗୁଳି ଛାଡ଼ି ଦେଲେ ।
ସେତେବେଳେ ଉଶ୍ୱାସ ପାଇଲା ରାବଣ
ପର୍ବତ ତଳରୁ ବେଗେ ବାହାର ହେଲା ଜାଣ
ଦେଖିଲା ପୁଷ୍ପକ ଯାନ ଅଛଇ ଯେ ରହି
ଶୁକ ସାରଣେ ଛନ୍ତି ନାହାନ୍ତି ଆଉ କେହି ।
ରାବଣ ବୋଲେ ମୋର ସୈନ୍ୟ କେଣେ ଗଲେ
ମନ୍ତ୍ରୀ ଦୁହେଁ ବୋଇଲେ ଏଠାରେ ହତହେଲେ ।
ଦଶଗ୍ରୀବ ବୋଲେ କେ ମାଇଲା ସୈନ୍ୟଙ୍କୁ
ମନ୍ତ୍ରୀ ବୋଲେ ଶିବଙ୍କ ତନୁଜଙ୍କ ହେତୁ ।
ଦଶାନନ ବୋଲେ କିପାଇଁ ସେ ନାଶ କଲେ
ସରଦାର ହୋଇ ମୁଁ ରହିଲି ଗିରିତଳେ ।
ଦୁଇମନ୍ତ୍ରୀ ବୋଲେ ତୁମ୍ଭ ନିଉନ ଦେଖିଣ
ସଦାଶିବଙ୍କ ପୁତ୍ରସଙ୍ଗେ ତୋ ସୈନ୍ୟକଲେ ରଣ
ବାଆନେ କୋଟି ମଲେ ଦୈତ୍ୟ ଗଣ ପୁଣି
କୋଡ଼ିଏ କୋଟି ତୋର ପଳାଇଗଲେ ଜାଣି ।
ଶୁଣି କରି ରାବଣ ଚଢ଼େ ଗିରିବରେ
ସଦାଶିବଙ୍କ ଛାମୁରେ ସେ ମିଳେ ତତକାଳେ ।
ଦେଖିଲା ସଦାଶିବ କରିଛନ୍ତି ବିଜେ
ଦୁଇ ଯତୀ ଅଛନ୍ତି ତାହାଙ୍କର ଆଗେ ।
ଚତୁର ବଦନ ପୁଣି ଅଛନ୍ତି ତାଙ୍କ ଆଗେ
ଦେଖି ବିଭୋଳ ହେମ ଦଶଗ୍ରୀବ ଅଙ୍ଗେ ।
ଚାରିଜଣଙ୍କୁ ଦେଖିଣ ସେ ନମସ୍କାର କଲା
ଶତେବାର ପର୍ଯ୍ୟନ୍ତେ ପ୍ରାୟେ ପଡ଼ି ଶୋଇଲା ।
ସେତେବେଳେ ସନ୍ତୋଷ ହେଲେ ସଦାଶିବ
ବୋଇଲେରେ ଦଶାନନ ତୋ ମୁଖେ ନାହିଁ ଲାଜ ।
ପ୍ରସନ୍ନ ହୋଇଲି ଏବେ ମାଗ ତୁହି ବର
ରାବଣ ବୋଇଲେ ମୋତେ କର ହେ ପ୍ରତିକାର ।
ବରଷକରେ ଥରେ ତୁମ୍ଭେ ଯିବ ମୋର ପୁର
ଶୁଣିଣ ଈଶ୍ୱର ତାକୁ କଲେ ଅଙ୍ଗୀକାର ।
ଦୁଇ ତାତ ବୋଇଲେରେ ଦଶାନନ ଶୁଣ
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଅଟନ୍ତି ଏକ ପୁଣ ।
ଏହାଙ୍କ ସଙ୍ଗେ ତୁହି କଳି ନ କରିବୁ
ବିମନା ହୋଇଲେ ନିଶ୍ଚେ ପରାଣ ହାରିବୁ ।
ଏହା କହି ଦୁଇ ଋଷି ନିଜ ସ୍ଥାନେ ଗଲେ
ଦଶାନନକୁ ଚାହିଁଣ ବେଦବର ବୋଲେ ।
ତୋର ପାଇଁ ଆମ୍ଭେ ଆସିଥିଲୁଁ ରେ ଏପୁର
ଏତେକହି ବେଦବର ଚଳିଲେ ସତ୍ୱର ।
ସଦାଶିବଙ୍କ ବର ପାଇ ଦଶାନନ ଗଲା
ପୁଷ୍ପକ ଯାନ ପରେ ଯାଇଁଣ ବସିଲା ।
ଲଙ୍କାଗଡ଼ରେ ସେ ହେଲା ପରବେଶ
ଏଥୁ ଅନନ୍ତରେ ରାମ ଶୁଣ ଦିବ୍ୟରସ ।
କପିଳାସ କନ୍ଦରୁ ଆସିଲା ରାବଣ
ମତ୍ତଗର୍ବ ମନରେ ହେଲା ବଳବାନ ।
ପୁଷ୍ପକ ରଥରେ ଚଢ଼ି ନାନାଦେଶ ଯାଇ
ଚତୁରଙ୍ଗ ବଳ ସେ ସଙ୍ଗରେ ଘେନିଥାଇ ।
ସକଳ ନୃପତିଙ୍କର ହରିଲା ସେ ଦର୍ପ
ଗରୁଡ଼ ଦେଖି ଯେହ୍ନେ ଗର୍ଜନ୍ତି କାଳସର୍ପ ।
କୁବେରକୁ ଜିଣି ସେ ପୁଷ୍ପକ ଯାନ ନେଲା
କପିଳାସ ପର୍ବତକୁ ସେ ହେଳେ ଉପାଡ଼ିଲା ।
ଚାରି ଦିଗରେ କଥା ଶୁଭିଲା ତାର ଆସି
ନୃପତିଗଣ ମାନେ ଭୟ କଲେ ତ୍ରାସି ।
ଅସୁର ବଳ ଯହୁଁ ହେଲେ ବର୍ଦ୍ଧମାନ
ଭୟ କରି ସମସ୍ତେ ହୋଇଲେ ନିଉନ ।
ଏଥୁ ଅନନ୍ତରେ ଯେ ଦଶାନନ ରାୟେ
ପୁଷ୍ପକ ଯାନରେ ବସି ଭ୍ରମିବାକୁ ଯାଏ ।
ଯାନ୍ତେଣ କନ୍ୟାଏ ଯେ ଦେଖିଲା ସେ ବାଟେ
ଦକ୍ଷିଣେ ଲବଣ ସିନ୍ଧୁ ଉତ୍ତରର ତଟେ ।
ତପ କରୁଥିଲା ଏକ ସୁନ୍ଦରୀ ସେଠାରେ
ତ୍ରୈଲୋକ୍ୟ ପଟାନ୍ତର ନାହିଁ ତାକୁ ଭଲେ ।

ଶୁଦ୍ଧ ସୁବର୍ଣ୍ଣ ପ୍ରାୟେ ତାର ତେଜଜାଣି
ମୁଖ ବିକାଶଇ ଶରଦ ଇନ୍ଦୁ ଜିଣି ।
କୁରଙ୍ଗୀ ନୟନୀ ଯେ ତିଳ ଫୁଲ ନାସା
ଚାଚର କେଶ ଗଭା ଜାଣି ତାର ଖୋଷା ।
ମଝା ସିଂହ କଟୀ ଯେ ଯଉବନରେ ଭାରି
ସର୍ବ କୁସୁମାରୀ ଯେ ଲହୁଲୀ ସୁନ୍ଦରୀ ।
ବୃଣାଳ କଟୀ ତାର ସୁଲଳିତ ଯାନୁ
ପାଦତଳ ଅଙ୍ଗ ଅଳତା ଲାଗି ତନୁ ।
ଭୁଜ ଯୁଗଳ ତାର ସୁବର୍ଣ୍ଣ ପଦ୍ମ ନାଡ଼
ଦିଶଇ ଅଙ୍ଗୁଷ୍ଠିମାନ ଯେସନ ଚମ୍ପାକଢ଼ ।
ଜାତି କୁସୁମର ପାଖୁଡ଼ା ଜାଣି ଲଖ
ଅଳପେ ହସନ୍ତେ ମାଧୁର୍ଯ୍ୟ ତାର ଦେଖ ।
ଅଶୋକ କଢ଼ି ଜାଣି ଚରଣ ଅଙ୍ଗୁଳି
ଲଖର ସାଦୃଶ୍ୟ କି ମୁକୁତାର ମାଳୀ ।
ଲଭୀ ତାର ଗଭୀର ପଦ୍ମପତ୍ର ଜାଣି ପେଟ
ଆଗକୁ ସୁନ୍ଦର ପଛକୁ ମୁରାଟ ।
ପିନ୍ଧି ଅଛି ସୁନ୍ଦରୀ ରଙ୍ଗ ପାଟଶାଢ଼ୀ
ଦୁଇ ଭୁଜେ ଲାଗିଛି ରତ୍ନମୟେ ଚୁଡ଼ୀ ।
ଶ୍ରବଣରେ କାପ କଣ୍ଠେ ରତ୍ନହାର
କଟୀରେ ରତ୍ନ ମେଖଳା ଚରଣେ ନୂପୁର ।
ବାହୁରେ ବୀଦ ତାଡ଼ ଶିଙ୍କୁଳି କଙ୍କଣ
ନାକର ଗୁଣା ଦିଶେ ସୂର୍ଯ୍ୟର କିରଣ ।
ଅଙ୍ଗୁଷ୍ଠି ମାନଙ୍କରେ ବିବିଧ ନାମେ ମୁଦୀ
ମୁକୁତା ସିମନ୍ତନୀ ପର୍ବତକୁ ବହେ ନଦୀ ।
ବନ୍ଧୂଲୀ ପୁଷ୍ପ ପରାୟେ ଦିଶେ ତାର ଅଧର
ଧନ୍ୟ ଧନ୍ୟ ମହିମା ଯେ ତ୍ରୈଲୋକ ସୁନ୍ଦର ।
ବଜ୍ର ଅରୁଣ ଯେ ଜ୍ୟୋତି ପରା ଦିଶି
ଅଳକା ବେଢ଼ାଇଣ ଅଛି ସୁଖେ ବସି ।
ରାହୁ ଓଗାଳଇ କି ପୂର୍ଣ୍ଣୀମାର ଶଶୀ
ତେସନ ପ୍ରାୟେ ଯେ ଦିଶେ ଶଭ୍ରକେଶୀ ।
ବକ୍ର କରି ଯାହାକୁ ସେ ଚାହାଁଇ ଚାହାଣୀ
ଜ୍ଞାନ ହାରିଣ ସେହୁ ପଡ଼ଇ ଧରଣୀ ।
ତାହାର ହସିଲେ ଜୀଇବେ ମୃତ୍ୟୁଜନ
ନିଷ୍କଳଙ୍କ ଚନ୍ଦ୍ରମା ପ୍ରାୟେକ ବଦନ ।
ଭ୍ରୂଲତା ଯୁଗଳ ଜାଣ ସୁଖ ସୀମା
ସୁନ୍ଦର କପୋଳେ ତାର ଦିଶେ ଉପମା ।
ଶ୍ରୀ କର୍ପୂର ଗୁଣ୍ଡୀ ସେ ଦେହରେ ଅଛି ଘଷି
ଏକ ଆସନରେ ମୁଣ୍ଡପରେ ବସି ।
ବାସୁଦେବଙ୍କୁ ଧ୍ୟାନ ସେ କରେ ପଞ୍ଚାମ୍ନାରେ
ଭୟ ନକରଇ ଚିତ୍ତେ ତେଡ଼େ ବନଘୋରେ ।
ଅନେକ କାଳରୁ ଯେ ରହିଅଛି ତହିଁ
ଶରଦ ଚାନ୍ଦମୁହିଁ ତଳକୁ ମଥାଦେଇ ।
ନାରାୟଣଙ୍କ ନାମ ସୁମରୁ ଅଛି ବାଳୀ
ମନ ବଚନରେ ସେ ଭାଳେ ବନମାଳୀ ।
ଏସନେକ ସମୟେ ପୁଷ୍ପକ ଯାନ ଯାଇ
ଗଗନ ମାର୍ଗେ ଗମଇ ମନ୍ଦୋଦରୀ ସାଇଁ ।
ତଳକୁ ଚାହିଁଣ ଦୃଷ୍ଟ ପୁଣ ସେହି ଦେଲା
ସୁନ୍ଦରୀ ରୂପ ନେତ୍ରେ ଦେଖି ମୂର୍ଚ୍ଛି ନପାରିଲା ।
ହୃଦରେ ବିଚାରିଲା ସାଧୁରେ ସୁନ୍ଦରୀ
ତିନି ଭୁବନେ ତୋତେ ଗୋ ନାହିଁ ପଟାନ୍ତରୀ
ଏତେ ବିଚାରି ରଥ ସେ କଲା ଭୂମିତଳେ
ଓହ୍ଲାଇଣ କନ୍ୟାର କତିକି ଗଲାବେଳେ ।
ରାବଣ ପଚାରିଲା ଶୁଣ ତୁରେ ବାଳୀ
କେବଣ କାରଣେ ତୁ ଆସିଛୁ ବନ ଫେରି ।
ରୂପ ଯଉବନରେ ଜଗତ ମୋହିପାରୁ
ଏକାନ୍ତ ଆଶ୍ରମରେ କିମ୍ପା ତୁ ତପକରୁ ।
କେ ତୋହର ପିଅର କେ ତୋହାର ମାତା
କେବଣ ପୁରୁଷର ତୁ ଅଟୁରେ ବନିତା ।
କିସ ଅର୍ଥେ ତପ କରୁ ତୁହି ଏଥେ ଆସି
ମୋର ପ୍ରାଣ ରଖ ତୁ ହସିରେ ପ୍ରିୟସୀ ।
ଭଲ କରି ନୟନେ ଚାହାଁ ଗୋ ନିରେଖି
କାମ ଦେବ ବାଣରେ ମୁଁ ହେଲି ନିରିମାକ୍ଷି ।
ତୋହର ଅଧରକୁ ଚୁମ୍ବିବି ଏଥେ ଥାଇଁ
ଲଙ୍କା ଗଡ଼ରେ ମୋର ରାଜ୍ୟତୁ କର ଯାଇଁ ।
ଜାନୁରେ ଜାନୁ ଛନ୍ଦିଣ କରିବି ସୁରତି
ତେବେ ସେ ମନ ମୋର ହେବ ଧୀର ମତି ।
ଉଠ ଉଠ ସଖୀ ତୁ ଗୋ ନକର ବିଳମ୍ବ
ତୋତେ ଦେଖିବାରୁ ଭାଜୁଛି ମୋର ଦମ୍ଭ ।
ସର୍ବ ସୁଲକ୍ଷଣୀ ଅଟୁ ତୁଲୋ ନାରୀ
ତୋର ରୂପ ଦେଖି ମନୁ ମୁରୁଛି ନପାରି ।
ଯୁବତୀ ଶିରୋମଣି ତୁ ଅମୂଲ୍ୟ ପ୍ରତିମା
ଅତି ଯତନରେ ତୋତେ ଗଢ଼ିଲା ବିଶ୍ୱକର୍ମା ।

ସୁଯୋଗ ଶୁଭବେଳେ ଭେଟିଲି ତୋତେ ସଖୀ
ଦୟା କିମ୍ପା ନକର କାକୁସ୍ଥ ମୋର ଦେଖି ।
ଶୁଣିଲା ସୁନ୍ଦରୀ ଯେ ଦଶାନନର ବାଣୀ
ଡରରେ ଥରହର କମ୍ପେ ସେ ତରୁଣୀ ।
ହେଠ ମାଥ ହୋଇଣ ସେ ବୋଲଇ ବଚନ
ଯାହାତୁ ପଚ୍ଚରିଲୁରେ ଶୁଣ ଦଶାନନ ।
କୁଶ ଧ୍ୱଜ ମୁନିଙ୍କର ଅଟେ ମୁଁ ଦୋହିତା
ବେଦମତୀ ବୋଲି ନାମ ଦେଲେ ମୋର ପିତା ।
ବେଦ ଧ୍ୟାନ କଲାବେଳେ ମୁହିଁ ହେଲି ଜାତ
ତେଣୁ ବେଦମତୀ ନାମ ଦେଲେ ମୋର ତାତ
ବର ନ ମିଳିଲେ ରୂପ ଗୁଣେ ମୋହରି
କାହାକୁ ଦେବେ ବୋଲି ପିତା ମୋ ମନେଭାଳି ।
ଦେବ, ଦକ୍ଷ, ବିଦ୍ୟାଧର, କିନ୍ନର, ଗନ୍ଧର୍ବ
ମୋତେ ଦେଖି ଉପଗତ ହେଲେ ବୀର ସର୍ବ ।
ଚଉଦଭୁବନରେ ମୋତେ ନୋହିଲେ କେ ସରି
ମୋର ମୁଖ ଚାହିଁଣ ପିଅର ପଚ୍ଚରି ।
ଏକ କନ୍ୟା ସମାନରେ ବ୍ରହ୍ମାଣ୍ଡେ ସମ ନାହିଁ
ହେମବନ୍ତ ଦୋହିତା ପାର୍ବତୀ ଅଯେ ଏହି ।
ମହାଲକ୍ଷ୍ମୀ ପଟାନ୍ତର ଅଟେ ଏ ସୁନ୍ଦରୀ
ବିଷ୍ଣୁ ଦେବତା ଭ୍ରଥା ପଣରେ ଯାକୁ ସରି ।
ଅଭାଜନ ଲୋକକୁ କିମ୍ପା ମୁଁ ଏହାକୁ ଦେବି
ନାରାୟଣ ଭେଟ ଯାଏ ଯାକୁ ମୁଁ ଥୋଇଥିବି ।
ଏତେ ବୋଲି ବର ଯେ ବାହୁଡ଼ାଇ ଦେଲେ
ମୋତେ ଏଠାବରେ ମେଢ଼ରେ ଥୋଇଲେ ।
ଯହୁଁ ପିତା ମୋତେ ବିଭା ନକଲେ କାହାକୁ
ସମସ୍ତେ ଅହନ୍ତା କଲେ ମୋହର ପିତାଙ୍କୁ ।
କୁମ୍ଭକା ନାମରେ ଏକଇ ଅସୁର ଅଇଲା
ରାତ୍ର କାଳରେ ମୋର ପିତାକୁ ମାରିଗଲା ।
ମାତା ମୋର ପ୍ରାଣ ଯେ ହାରିଲେ ପିତାପାଇଁ
ପିତାଙ୍କର ନିମନ୍ତେ ମୋର ମାତାକୁ ଅଗ୍ନିଖାଇ
ମୁହିଁ ଏକାହୋଇଣ ରହିଅଛି ଏଥ
ମନରେ ଧ୍ୟାନ ମୁଁ କରଇ ବିଶ୍ୱନାଥ ।
ପିତାଙ୍କର ମୁଖରୁ ଅଛି ମୁଁ ଯାହା ଶୁଣି
ବର କରି ବରିବି ମୁଁ ଶଙ୍ଖଚକ୍ର ପାଣି ।
ଆନବରରେ ମୋହର ତ କିଛି କାର୍ଯ୍ୟନାହିଁ
ଜପ କରୁଅଛି ମୁଁ ନାରାୟଣଙ୍କୁ ଚାହିଁ ।

ଅଠର ଯୁଗ ମୋର ଏହି ରୂପେ ଗଲା
ମୋତେ ପଚ୍ଚରନ୍ତା କେହି ଯେ ନୋହିଲା ।
ଧ୍ୟାନରେ ଜାଣିଲି ମୁଁ ତୁ ବିଶ୍ରବାର ସୁତ
ନଉକେଶୀ ରାକ୍ଷସୁଣୀ ଗର୍ଭରୁ ସମ୍ଭୁତ ।
ଯାଅଯା ଏଥୁ କ୍ଷଣେ ନରହ ଦଶଗ୍ରୀବ
ନାରାୟଣ ଧ୍ୟାନ ମୋର ଅନ୍ତର ହୋଇବ ।
ଶୁଣିଣ ଦଶଗ୍ରୀବ ବଚନ ବୋଇଲା
ଲୋଭରେ ବେଦମତୀ ନିକଟକୁ ଗଲା ।
ବୋଇଲା ସୁନ୍ଦରୀ ତୁ ଜଗତ ମୋହିନୀ
କୋକିଳ ଭାଷିଣୀ ମତ୍ତଗଜର ଗାମିନୀ ।
ଉଠି ଗାଢ଼େ ଆଲିଙ୍ଗନ କର ମୋତେ ଏବେ
କାମ ଭରେ ତନୁ କମ୍ପେ ମୋର ହାଦେ ।
କୃଷ୍ଣ କୃଷ୍ଣ ବୋଲି ଯାକୁ ତପ କରୁ ବାଳୀ
ମୋହର ଏକ ହସ୍ତକୁ ସେହି ନୋହେ ସରି ।
ମୋର ନାମ ଦଶଗିରି ଆବର ବିଂଶବାହୁ
ଲଙ୍କାଗଡ଼ ଠାକୁ ମୁଁ ଅସୁରଙ୍କ ରାହୁ ।
ତିନିପୁରେ ମୋତେ କେ ସରି ସମନାହିଁ
ତୁ ସୁଖୀ ମୋହର ହୁଅସିରେ ସହୀ ।
ତୋତେ ଦେଖି ସଖୀରେ ମୁହିଁ ହେଲି ବଶ
ନିଷ୍କଳଙ୍କ ଚନ୍ଦ୍ରମା ତୁ ନକରି ନିରାଶ ।
ତୋ ଦେହ ସାଦୃଶ୍ୟେ ମୁଁ ଅଳଙ୍କାର ଦେବି
ଭୃତ୍ୟଗଣ ପ୍ରାୟେ ମୁଁ ସେବା କରୁଥିବି ।
ଆସ ଆସ ବିଳମ୍ବ ତୁ ନ କରରେ ସଖି
ମଦନର ଶରରେ ମୋହର ଅଙ୍ଗ ଦୁଃଖୀ ।
ଶୁଣିଣ ବେଦମତୀ କୋପେଣ ବୋଇଲା
ଜାଣିଲି ତୋର ମୃତ୍ୟୁ ନିକଟ ହୋଇଲା ।
ବିଷ୍ଣୁଙ୍କର ମହିମା ତୁ କର୍ଣ୍ଣରେ ନାହୁଁ ଶୁଣି
ଅନନ୍ତ କୋଟି ବ୍ରହ୍ମାଣ୍ଡ ଠାକୁର ଚକ୍ରପାଣି ।
ଉତପତ୍ତି, ସ୍ଥିତି, ପ୍ରଳୟର କରତା
ଯାହାଙ୍କ ନାଭିରୁ ଜନ୍ମ ହୋଇଲେ ବିଧାତା ।
ତମ ଗୁଣରୁ ରୁଦ୍ର ସେ ହେଲେ ଉତପତ୍ତି
ପ୍ରକୃତିରୁ ଜାତ ହୋଇଲେ ଭଗବତୀ ।
ଆକାଶେ ଶିର ଯାଇ ପାତାଳେ ପୟର
ଦଶଦିଗ ପୂରିଅଛି ଯାହାର କଳେବର ।
ଚନ୍ଦ୍ର, ସୂର୍ଯ୍ୟ ଯାର ନୟନ ପବନ ନିଃଶ୍ୱାସ
ଗରୁଡ଼ ଗମନ ଅଟେ ଶ୍ରୀବତ୍ସ ପୀତବସ୍ତ୍ର ।

କଉସ୍ତୁଭ ହାର ଯେ କୀରିଟ କୁଣ୍ଡଳ
ଯେହୁ ଭିଆଇଲେ ରେ ଦଶଦିଗ ପାଳ ।
ସେ ପ୍ରଭୁଙ୍କୁ ବୋଲୁଛୁ ତୁ ଅସ୍ତୁକାର ବାଣୀ
ଜାଣିଲି ବଡ଼ ନଷ୍ଟ ତୁହୋ ବିଂଶପାଣି ।
ସଚରାଚର ଯାହାର ଗର୍ଭେ ପୂରି ଅଛି
ସବୁଠାରୁ ବଡ଼ ଯେ ଅଟନ୍ତି ଶ୍ରୀବସି ।
ଅନନ୍ତ ମୁରତି ଅନନ୍ତ ନାମ ଯାର
ସେ ଦେବଙ୍କୁ ଦୁର୍ଲ୍ଲଭ ଯେ ମାନବେ ଅଗୋଚର
ତୁ ବୋଲୁ ମୋହର ହାଥକୁ ସେ ନୋହେ ସରି
ଏମନ୍ତ ବୁଦ୍ଧି ଅଟେ ମତ୍ତଗର୍ବ ପରି ।
ଶୁଣିଣ ଦଶଗ୍ରୀବ ଧଇଲା ଯାଇଁ କୋପେ
ବେଦମତୀକି କୋପକଲା ଯାଇଁ ଧାପେ ।
ଦଶ ଦିଗପାଳେ ଉଚ୍ଚେ ଡାକ ଦେଲେ
ନିଶ୍ଚେ ରାବଣ ତୁ ମରିବୁ ବୋଇଲେ ।
ଅତ୍ରାସ ହୋଇଥିଲେ ଶରଦ ଚନ୍ଦ୍ରମୁଖୀ
ବ୍ୟାଧକି ବନ୍ଧନ କଲା ଋତକ କୋଇଲି କି ।
କୋପାନଳେ ସୁନ୍ଦରୀ ବୋଲଇ ମୋତେ ଛାଡ଼
ଲୋଭ ତୁ ଆଚରିଲେ ଅମଡ଼ା ନମାଡ଼
ଏ କିସ ସ୍ୱଭାବରେ ଅଟଇ ତୋହର
ଋଷି ପୁତ୍ର ହୋଇ ତୁରେ କରୁ ଅବେଭାର ।
ଏତେକରେ ଦେହ ମୋର ପାଇଲାଣି ତ୍ରାସ
ଏହିକ୍ଷଣି ଉଡ଼ିଣ ଯିବଟି ସାହସ ।
ଛାଡ଼ ତୁରେ ରାବଣ କହୁଛିରେ ତୋତେ
ମୋ ଦେହ ବିଷ୍ଣୁଙ୍କର ନ ଯୋଗାଇ ତୋତେ ।
ଶୁଣିଣ ଦଶାନନ ଛାଡ଼ିଣ ଉଭା ହୋଇ
ସନମତ କଲା ସେ ମନକୁ ଗରଜାଇ ।
ଯେତେବେଳେ ରାବଣ ସତୀର ଛାଡ଼େ କର
ବେଦମତୀ ସୁମରିଲେ ଦଶ ଦିଗପାଳ ।
ଧର୍ମକୁ ସାକ୍ଷୀ କରି ରାବଣକୁ ବୋଇଲେ
ତୁହି ମରିବାରରେ ନିକଟ ଆସି ହେଲେ ।
ଗଣୁଥାଅ ତୁହି ଦିନରେ ରାବଣ
ଆଜୁଁ ବତିଶ ବରଷେ ହୋଇବ ମରଣ ।
ମୋ ଦେହ ପବିତ୍ର ତୁ ଛୁଇଁଲୁରେ ଅସୁର
ଆଉ କିମ୍ପା ରଖିବି ଏ ମୋର ଶରୀର ।
ନ ଧରିବି ଅଙ୍ଗ ମୁଁ ଅଗ୍ନିରେ ଝାସ ଦେବି
ଏହିକ୍ଷଣି ଯିବି ମୁଁ କ୍ଷଣେ ନ ରହିବି ।

ବିଷ୍ଣୁର ସେବା ମୋରରେ ଖଣ୍ଡିଲୁ ପାପିଷ୍ଠ
ସତୀଙ୍କି ଛୁଇଁବାକୁ ଭାଜନ କିରେ ଦୁଷ୍ଟ ।
ମୁହିଁ ତୋତେରେ ଶାପ ଦେଉଅଛି ଏବେ
ବେଦମତୀ ବଚନକୁ ଡରିଲା ଦଶଗ୍ରୀବେ ।
ମୁହିଁ ଯେବେ ସତୀରେ ବାସୁଦେବଙ୍କ ଦାସୀ
ଅଯୋନିରେ ଜାତ ହୋଇ ମୁନି କୁଳେ ଆସି ।
ତୋହର ଜୀବନରେ ହାରିବି ନିଶ୍ଚୟେ
ମୋର ଯୋଗୁଁ ନାଶ ତୁ ଯିବୁ ଲଙ୍କରାୟେ ।
ନାରାୟଣ ଘରଣୀ ହୋଇ ତୋତେ ମୁଁ ମରାଇବି
ପୁତ୍ର, ନାତି, ଜ୍ୱାଇଁ ତୋର ଗୋଟିଏ ନରଖିବି ।
ଚଉରାଶୀ ନର୍କରେ ପଡ଼ିବୁ ତୁ ପୁଣ
ଯମ ରାଜାଙ୍କ ଶୋଣିତ କରିବୁ ଭୋଜନ ।
ଅଠର ଯୁଗ ଗଲେତୁ ଜନମ ଲଭିବୁ
ନାରାୟଣଙ୍କ ବଇରୀ ସେ କାଳେ ହୋଇବୁ ।
ନାରାୟଣ ତୋର ଶିର ଚକ୍ରରେ କରି ଛେଦ
ତେବେ ତୁ ମୁକତି ହେବୁ ଦଶଗ୍ରୀବ ।
ଦ୍ୱାରପାଳ ହୋଇ ବିଷ୍ଣୁ ପୁରରେ ରହିବୁ
ମୋର ଯୋଗୁଁ ତୁରେ ଅଳ୍ପକେ ମରିବୁ ।
ଏତେ ବୋଲି ଦେବୀ ବିଷ୍ଣୁଙ୍କୁ ସୁମରିଲେ
ମାନ ଅଗ୍ନି ଘେନି ସେ ଶରୀର ଦହିଲେ ।
ଦେଖିଣ ପଳାଇଲା ଅସୁର ଦଶଗିରି
ମନରେ ବିଋରିଲା ସରିଲା ମୋର ଶିରୀ ।
ଏଥୁ ଅନନ୍ତରେ ରାମଚନ୍ଦ୍ର ଶୁଣ ଭଲା
ଯହୁଁ ସେ ବେଦମତୀ ଅଗ୍ନିରେ ଝାସ ଦେଲା ।
ସାଧୁ ସାଧୁ ବୋଲିଣ ଦେବେ ଡାକ ଦେଲେ
ସୁରଗଣ ମିଳିଣ ପୁଷ୍ପ ବୃଷ୍ଟି କଲେ ।
ମନରେ ବିଋରିଲେ କାର୍ଯ୍ୟ ହେଲା ସିଦ୍ଧ
ବେଦମତୀ ଯୋଗୁଁ ଯେ ରାବଣ ହେବ ବଧ ।
ଏଥୁ ଅନନ୍ତରେ ଶୁଣ ରାମଚନ୍ଦ୍ର ରାୟେ
ବେଦମତୀ କନ୍ୟା ଦେହ ଛାଡ଼ିଲେକ କୋହେ ।
ଏଥୁ ଅନନ୍ତରେ ରାମଚନ୍ଦ୍ର କହି
ଅଗସ୍ତି ମହା ମୁନିଙ୍କୁ କରଯୋଡ଼ି ଜଣାଇଁ ।
ବୋଇଲେ ଭୋ ମୁନି ବେଦମତୀ କଥା କହ
ଦେହ ଛାଡ଼ିଣ ସେ କାହାର ହେଲେ ପ୍ରିୟ ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ଦାଶରଥି
ବେଦମତୀ ଦେହ ଛାଡ଼ି ଗଲାକ ଝଟତି ।

ଝଟକ ବିଜୁଳୀ ପ୍ରାୟେ ଶୂନ୍ୟରେ ଚଳିଗଲା
ବିଷ୍ଣୁର ଶୟନଠାରେ ଯାଇଣ ମିଳିଲା ।
ରୋଦନ କଲେ଼ ଯାଇଁ ଚରଣ ତଳରେ
ଚେତି କରି ନାରାୟଣ ଉଠିଲେ ସତ୍ୱରେ ।
ବୋଇଲେ କିପାଇଁ ତୁ ରୋଦନ କରୁ ପୁଣି
ବେଦମତୀ ବୋଇଲା ଶୁଣହେ ଚକ୍ରପାଣି ।
ତୁମ୍ଭର ଦାସୀ ହେବାକୁ କରୁଥିଲି ତପ
ମୋହର ପିତା ମୋତେ ଦେଲେ ମନ୍ତ୍ର ଜପ ।
ଅଠର ଯୁଗ ହେଲା ବସି ମୁଁ ତପକଲି
ତୁମ୍ଭଙ୍କୁ ମୁଁ ନେତ୍ରରେ ଦିନେ ନ ଦେଖିଲି ।
ବିଶର୍ବା ଋଷି ସୁତ ଅଟେ ଯେ ରାବଣ
ମୋର ତପସ୍ଥାନେ ମିଳିଲା ଯାଇ ପୁଣ ।
ମୋତେ ହରିବ ବୋଲି ତପ ଭଗ୍ନକଲା
ଚଣ୍ଡାଳ ଅସୁର ଯାଇଁ ମୋତେ ଆକର୍ଷିଲା ।
ସେ ଦୋଷରୁ ମୋର ପିଣ୍ଡ ଅଗ୍ନିରେ ଦହିଲି
ତୁମ୍ଭର ଚରଣେ ଆସି ନିବେଦନ କଲି ।
ନାରାୟଣ ବୋଲନ୍ତି ତାକୁ କରିବା ପ୍ରାଣେନାଶ
ତୋହର ଯୋଗୁଁ ତାହାର ବଂଶ ହେବ ନାଶ
ସପ୍ତମ ଅବତାର ହେବ ନିକଟରେ
ତୋର ଯୋଗୁଁ ନାଶହେବ ଦଶାନନ ବୀରେ ।
ଏମନ୍ତ ବୋଲିଣ ଯେ କୋଳେ ଦେବ ଧରି
ମୁଖରେ ଚୁମ୍ବନ ଦେଇ ମନକୁ ବୋଧକରି ।
ସୁରତି ରସରେ ମୋହିଲେ ତାଙ୍କମନ
କମଳାଙ୍କୁ ବୋଇଲେ ସମ୍ଭାଳ ତୋ ଶରୀରେଣ
କମଳା ବୋଇଲେ ଦେବ କଥାଏ ମାଗିବି
ଅନେକ କାଳରୁ ମୁଁ ହୋଇଛି ଅଭାଗୀ ।
ମୋର ଅଂଶେ ଜାତ ଯେ ପଦ୍ମିନୀ ଅଟଇ
ସପ୍ତମ ଅବତାରେ ଏକାଏ ଖଟଇ ।
ନାରାୟଣ ବୋଇଲେ ତୁ ହୁଅ ଏକ ଅଙ୍ଗ
ଯାହା ବିଘ୍ନରୁ ସେକଥା ନୋହିବ କେବେ ଭଙ୍ଗ
ସେଠାରୁ ବେଦମତୀ କମଳା ଦୁଇଜଣ
କମଳାଙ୍କ ଅଙ୍ଗେ ବେଦମତୀ ମିଶିଲେ ତକ୍ଷଣ ।
ସେହି ବେଦମତୀ ଜନକ ଉଦ୍‌ଯୋଗରେ
ଜନମ ଲଭିଲେ ସୀତୟାଙ୍କ ରୂପରେ ।
ଏଥୁ ଅନନ୍ତରେ ଶୁଣ ରାମରାୟେ
ଜନକ ମହାଋଷି ଯାଗ ଆରମ୍ଭ କଏ ।

ସନ୍ତାନ ନୋହିବାରୁ ଜନକ ମହର୍ଷିର
ଅନେକ ଋଷି କହିଲେ ଜନକ ଆଗର ।
ବୋଇଲେ ଯାଗକଲେ ସନ୍ତାନ ତୋର ହେବ
ଅଥବା ବାସୁଦେବ କି କମଳା ଜାତହେବ ।
ସର୍ବ ଋଷିଙ୍କର ବୋଲ ମାନିଲେ ଜନକ
ମହାଯାଗ କରିବାକୁ ହେଲେ ସେ ଉତ୍ସୁକ ।
ସକଳ ସାମଗ୍ରୀମାନ କଲେ ସେହୁଠୁଳ
ସକଳ ଋଷିଙ୍କି ଲୋଡ଼ିଲେ ମୁନିବର ।
ଲକ୍ଷେ ରାଜାଙ୍କୁ ସେ ଡକାଇ ଅଣାଇଲେ
ହାଟବାଟ ହଟାରୀ ବଜାରୀ ବସାଇଲେ ।
ଏଥୁ ଅନନ୍ତରେ ଶୁଣ ଦାଶରଥୀ
ବେଦମତୀ କମଳା ରୂପରେ ହେଲେ ସ୍ଥିତି ।
ବୋଇଲେ ତୁମ୍ଭେ ଯାଇଁ ଜନକ ଯାଗରେ
ଜନ୍ମ ହୋଇବ ତୁମ୍ଭେ ଅଯୋନି ସମ୍ଭୂତରେ ।
ତୁମ୍ଭ ଅଂଶେ ଦୁଇ ଜନକ ଭାଇ କୋଳେ
ତିନିହେଁ ଏକ ଅଂଶୀ ହେବ ଯେ ସେଠାରେ ।
ଆମ୍ଭେ ଜାତ ହେବୁଁ ଯେ ଦଶରଥ ଘରେ
ମୋଠାରୁ ଦୁଇ ଅଂଶହେବେ ଯେ ସେଠାରେ ।
ଶଙ୍ଖଚକ୍ର ଦୁହେଁ ହେବେ ଦୁଇ ଅଂଶ
ଅସୁର ମାରିବାକୁ ଜନ୍ମିବୁ ମନୁଷ୍ୟ ।
ଅନନ୍ତ ମୋହର ସଙ୍ଗେ ଯିବେଟି ନିୟତ
ଚତୁର୍ଦ୍ଧା ମୁରତି ତେଣୁ ହେବୁଁ ଯେ ସମ୍ଭୂତ ।
ଜନକଙ୍କୁ ପ୍ରାପତ ପାର୍ବତୀ ହୋଇବେ
ତୁମ୍ଭରି ଯୋଗରୁ ଋଷି ଧନୁ ସମ୍ପାଦିବେ ।
ଶିବଧନୁ ଭାଙ୍ଗି ମୁଁ ତୋତେ ହେବି ବିଭା
ତୋର ତିନିଭଗ୍ନୀ ମୋର ତିନିଭାଇଙ୍କି ଶୋଭା
ଏତେ ବାଗେ ବାସୁଦେବ କମଳାଙ୍କୁ କହି
କମଳା ବୋଇଲେ ତୁମ୍ଭେ ଶୁଣ ହେ ଭାବଗ୍ରାହୀ ।
ଆମ୍ଭେ ଯେବେ ସେଠାରେ ହେବୁଁ ପରବେଶ
କେତେ କାଳେ ତୁମ୍ଭେ ଯିବ କହିବ ସନ୍ଦେଶ ।
ବାସୁଦେବ ବୋଲେ ତୁମ୍ଭେ ଏହିକ୍ଷଣି ଯିବ
ଋଷିଙ୍କ ଯାଗଶାଳାରେ ମଞ୍ଜୁଷରେ ଥିବ ।
ଲଙ୍ଗଳରେ ଶୋଧ କଲେ ହୋଇବ ବାହାର
ଛଡ଼ମାସ ବହିଯିବ ରହିବ ସେପାର ।
ଆମ୍ଭେ ଯିବୁଁ ଏହିକ୍ଷଣି ଅନନ୍ତ ସଙ୍ଗେ ଘେନି
ଅଯୋଧ୍ୟାରେ ରାଜା ସେ ଯେ ନାରଦ ମୁନି ।

କଉଶଲ୍ୟା, କୈକେୟୀ, ସୁମିତ୍ରା କୋଳେ ପୁଣି
ଏତିନି ତାହାଙ୍କର ଅଟନ୍ତି ଜ୍ୟେଷ୍ଠରାଣୀ ।
ଆଜଠାରୁ ତେରମାସେ ଆମ୍ଭେ ହେବୁଁ ଜନ୍ମ
ଶୁଣିକରି କମଳା ସନ୍ତୋଷ କଲେ ମନ ।
ସରସ୍ୱତୀ ବୃଦ୍ଧ ମାତା ଡାକିଣ ଚଞ୍ଚଳା
ବୋଇଲେ ପୁର ମୋର ରଖିବୁ ଅବଳା ।
ଏତେକହି ସାୟେର ଦୁଲଣୀ ଚଳିଗଲେ
ଜନକର ଯାଗଶାଳେ ଯାଇଁଣ ରହିଲେ ।
ସେଠାରୁ ସେ ନାରାୟଣ ଅନନ୍ତ ସଙ୍ଗେଘେନି
ଦଶରଥ ଯାଗଶାଳେ ପ୍ରବେଶ ହେଲେ ପୁଣି ।
ଏଥୁ ଅନନ୍ତରେ ଯେ ଶୁଣ ଦାଶରଥି
ସେଠାରୁ ଦଶଗ୍ରୀବ ଚଳିଲା ତଡ଼ତି ।
ଜନକ ଯେ ରଷି ରାଜା ନିମନ୍ତ୍ରାଟି କଲେ
ସକଳ ରଷି ଆସି ସେଠାରେ ମେଳହେଲେ ।
ରଷିମାନେ ସେଠାରେ ରାବଣ ଚିନ୍ତାକଲେ
ଗୋରୁ ବ୍ରାହ୍ମଣ ପରଜା ଖାଇଲା ବୋଇଲେ ।
ମୁନିମାନେ ବସିଣ କରନ୍ତି ବିଚାର
କେବଣ ମତେ ବଧ ହେବ ନିଶାଚର ।
ଏହି ସମୟରେ ଯେ ବେଦବର ଆସି
ଜନକ ରାଜାଙ୍କୁ ସେ ଏକାନ୍ତରେ ପୁଛି ।
ଛଡ଼ରସେ ବେଞ୍ଜନ କରି ଗୋ ମୃଗାକ୍ଷୀ
ଏତେ ବୋଲି ରାବଣ ମନରେ ହେଲା ସୁଖୀ ।
ମନ୍ଦୋଦରୀ ବୋଲେ ତୁମ୍ଭେ ଶୁଣ ରାଜେଶ୍ୱର
ଅନେକ ଅଧର୍ମ ତ ହେଉଛି ପ୍ରଚାର ।
ରଷିମାନେ ଯତୀମାନେ ହୁଅନ୍ତି ନା ଦୋଷୀ
ଧର୍ମକୁ ଅକୀଦା କରି ତପବଳେ ଧ୍ୱଂସି ।
ଦେବତା ବ୍ରାହ୍ମଣଠାରେ କରି ଯେବେ ଧର୍ମ
ଧର୍ମକୁ ଲଙ୍ଘିବା ପ୍ରାୟେ କର ସେହୁ କର୍ମ ।
ଧର୍ମରେ ଆତଯାତ ଯେ ହୁଅନ୍ତି ମେଦିନୀ
ସବୁଦିନେ ଦେବତା ଧର୍ମରେ ବଞ୍ଚେ ପୁଣି ।
ପରଜା ବଞ୍ଚନ୍ତି ଧର୍ମ ଆଶ୍ରେ ପୁଣି
ଅଧର୍ମୀ ରାଜାମାନେ ନର୍କେ ଯାନ୍ତି ପୁଣି ।
ଅଚଳନ୍ତି ଚଳନ୍ତି ଧର୍ମରେ ଆତଯାତ
ଉଡ଼ନ୍ତା ବୁଡ଼ନ୍ତା ଧର୍ମରେ ନିୟତ ।
ଯେତେବେଳେ ଅଧର୍ମ କରନ୍ତି ଏମାନେ
କାଳ ପୁରୁଷ ତାକୁ ନାଶଇ ଜୀବନେ ।
ଦୈତ୍ୟବଳ ତୁମ୍ଭେ ହେ ସବୁଦିନେ ନଷ୍ଟ
ନାରାୟଣଠାରେ ହିଂସା କର ହେ ପାପିଷ୍ଠ ।
ଅଧର୍ମ କଲେ ଅଳ୍ପଦିନେ ନାଶ ହୋଇ
ଧର୍ମ ଥିଲା ପ୍ରାଣୀ ନିଶ୍ଚଳେ ବଞ୍ଚଇ ।
ମୋର ପିତା ମୟେ ଦୈତ୍ୟ ଦେବରେ ଭରତି
କାଳଯୁଗେ ଅମର ସେ ହୋଇ ରହିଛନ୍ତି ।
ପ୍ରହଲାଦ ନାରାୟଣେ ଭଗତି ଭାବ ହେଲା
ସ୍ୱଦେହ ଘେନି କରି ସେ ସ୍ୱର୍ଗରେ ରହିଲା ।
ବଳି ହେଲା ଦାନୀ ରହିଲା ତଳ ପୁରେ
ନାରାୟଣ ଦର୍ଶନ କରେ ନିରନ୍ତରେ ।
ରାବଣ ବୋଇଲା ମୋର ଜନ୍ମର ନକ୍ଷତ୍ର
ତିଆରି କହିଲେ ମୋର କ୍ରୋଧ ହୁଏ ଜାତ ।
ସେ କଥାମାନ ତୋର ମନରୁ ଏବେ ଛାଡ଼
ଆଉଥରେ ତିଆରିଲେ ମୃତ୍ୟୁ ଲୋ ନିକର ।
ଏମନ୍ତ ବଚନ ଯହୁଁ ରାବଣ କହିଲା
ଶୁଣିଣ ମନ୍ଦୋଦରୀ ମନରେ ଭୟ କଲା ।
ରାବଣର ହସ୍ତ ଧରିଣ ମନ୍ଦୋଦରୀ
ଧର୍ମ କଥା ତୁମ୍ଭେ ଶୁଣ ହେ ଦଶଗିରି ।
ଗୋରୁ, ମଇଁଷି ଦେଖ ଅଛନ୍ତି ପୃଥ୍ୱୀରେ
ଶତେ ଧେନୁରେ ବୃଷଭ ଅଛନ୍ତି ଗୋଟିକରେ ।
ତୁମ୍ଭେତ ଅନ୍ୟାୟ ଅର୍ଜୁଛ ଲଙ୍କପତି
ଭଲ କହିଲେ ମୋତେ ମାରୁଅଛ ନିତି ।
ଏଥୁ ଅନନ୍ତରେ ହେ ଶୁଣ ଋପଧାରୀ
ରାବଣ ଗଲା ମନ୍ଦୋଦରୀକି କହିକରି ।
ମନ୍ଦୋଦରୀ ମନରେ ବିମନ ଯେ ହେଲା
ସ୍ୱାମୀ କାର୍ଯ୍ୟ କରିବି ମନରେ ବିଚାରିଲା ।
ଅନ୍ତଃପୁର ମଧ୍ୟକୁ ତାକୁ ଘେନିଗଲା
ଏହି ସମୟରେ କଥା ନାରଦ ଜାଣିଲା ।
ଅନ୍ତଃପୁର ମଧ୍ୟରେ ମିଳେ ମହାମୁନି
ମୁନିଙ୍କି ଦେଖି ଉଠେ ମନ୍ଦୋଦରୀ ପୁଣି ।
ମୁନିଙ୍କି ଦେଖିଣ ସେ ଯୋଡ଼େ ବେନିକର
କଲ୍ୟାଣ କରିଣ ଯେ ବୋଲନ୍ତି ମୁନିବର ।
ନାରଦ ବୋଇଲେ ତୋର ଏହୁ ପୁଣି କିସ
କେଉଁଠାରୁ ଆଣିଅଛୁ ଦରପୋଡ଼ା ମାଂସ ।
ମନ୍ଦୋଦରୀ ବୋଲେ ଏହା ଆଣିଛି ଲଙ୍କପତି
ଛଡ଼ରସେ ଭୋଜନ କରିବ ତାରମତି ।

ନାରଦ ବୋଇଲେ ଏହା ନକର ଗୋ ମାଂସ
ସ୍ୱାମୀକି ତୋରପଛେ ଭୁଞ୍ଜାଅ ଆନମାଂସ ।
ଏହାକୁ ନେଇଣ ତୁ ସମୁଦ୍ରରେ ଭର
ଏ ମାଂସ ଭକ୍ଷିଲେ ନିଶ୍ଚେ ମରିବ ଦଶଶିର ।
ମୁନି କହିବାରୁ ରାଣୀ ହୋଇଲା ସନ୍ତୋଷ
ଛଡ଼ରସ ପ୍ରକାରେ ରାନ୍ଧିଲା ଅନ୍ୟ ମାଂସ ।
ସୁବର୍ଣ୍ଣ ମଞ୍ଜୁଷରେ ଶବକୁ ପୂରାଇଲା
ଉପରେ ଢାଙ୍କୁଣୀ ପାଟ ଛାଏଣି କଲା ।
ସମୁଦ୍ରେ ମେଲିଦେଲା ମୁନିଙ୍କ ବଚନେ
ଦେଖି ମୁନି ବୋଇଲେ ଶୁଣ ଗୋ ସାବଧାନେ ।
ବୋଇଲେ ମନ୍ଦୋଦରୀ ଲୋ କଥାଏ କରିବୁ
ବିଭୀଷଣଠାରେ ତୁ ଭବୁସୀ ହୋଇବୁ ।
ବତିଶ ବରଷେ ରାବଣ ହେବ ନାଶ
ବେଦମତୀ ଶାପରେ ବଂଶ ତା ଧୂଳି ପାଂଶ ।
ଯେତେବେଳେ ଏ ସୀତା ଲଙ୍କାକୁ ଆସିବେ
ତେତେବେଳେ ନାରାୟଣ ରାବଣ ନାଶିବେ ।
ତୋତେ ସତୀରେ ଗଣି ବିଭୀଷଣକୁ ଦେବେ
ପଞ୍ଚ କନ୍ୟାଙ୍କ ସଙ୍ଗେ ଗଣିତା କରାଇବେ ।
ଶୁଣିକରି ମନ୍ଦୋଦରୀ ମନରେ ହେଲା ତୋଷ
ସେପୁରୁଁ ନାରଦ ଗଲେ ଯେ ବିଶେଷ ।
ଏଥୁ ଅନନ୍ତରେ ଶୁଣ ରଘୁସାଇଁ
ସମୁଦ୍ର ଭିତରେ ସେ ମଞ୍ଜୁଷ ଭାସଇ ।
ବରୁଣଙ୍କୁ କହିଲେ ନାରଦଋଷି ପୁଣି
ସାଗରରେ ଭାସୁଅଛି ସ୍ୱୟଂ କମଳିଣୀ ।
ରାବଣ ମାରିବାକୁ ଜାତହେଲେ ସେହି
ଏମନ୍ତ ବୋଲିଣ ଯେ ନାରଦ ମୁନି କହି ।
ଶୁଣ ହେ ରାମଚନ୍ଦ୍ର ସୀତା ତୁମ୍ଭର ରାଣୀ
ଜଗତ ଜନନୀ ସେ ପ୍ରତ୍ୟକ୍ଷେ କମଳିଣୀ ।
ଶୁଣିଣ ବରୁଣ ହକାରି ମନ୍ତ୍ରୀବର
ମଞ୍ଜୁଷକୁ ଲଗାନେଇ ଜମ୍ବୁଦ୍ୱୀପ ଦକ୍ଷିଣକୂଳର ।
ସେଠାରୁ ନାରଦମୁନି ବହନ ଚଳିଗଲେ
ଶୁଣିଣ ମନ୍ତ୍ରୀବର ବାହାର ବେଗେ ହେଲେ ।
ଦେଖିଣ ମନ୍ତ୍ରୀବର ଲହରୀରେ ଘେନିଗଲା
ଜମ୍ବୁଦ୍ୱୀପ ଦକ୍ଷିଣ କୂଳରେ ଲଗାଇଲା ।
ରାବଣ ଦେଖିବ ବୋଲିଣ ରହି ମନେ ଭୟେ
ମାୟା ପୁରୁଷକୁ କହି ସେଠାରୁ ଘେନିଯାଏ ।
ଜନକ ଯାଗଶାଳ ଭୂମିର ଭିତରେ
ମାୟା ପୁରୁଷ ପୋତିଲେ ମଞ୍ଜୁଷ ସେଠାରେ ।
ଧରଣୀ ଭିତରେ ସେ ମଞ୍ଜୁଷ ରହିଲା
ଜାଣିଣ ବିଧାତା ସେଠାରେ ମିଳିଲା ।
ସେ ପୋଡ଼ା ମାଂସେସକୁ ଯତ୍ନେ ତିଆରିଲା
ଅତି ଯତନରେ କମଳା ରୂପକଲା ।
କମଳାର ସ୍ୱରୂପ ସୀତା ହେଲେ ପୁଣ
ସେଠାରୁ ବିଧାତା ଗଲେ ନିଜ ସ୍ଥାନ ।
ସିନ୍ଧୁର ଦୁଲଣୀ ପୃଥ୍ୱୀ ମଧ୍ୟରେ ଅଛି
ମହାଯୋଗ ନିଦ୍ରା ଯେ ଯାଇଛି କମଳାକ୍ଷୀ ।
ଏଥୁ ଅନନ୍ତରେ ଯେ ଶୁଣ ରାମରାଣ
ଦଶରଥ ଘରେ ଜନମ ତୁମ୍ଭେ ପୁଣ ।
ଋଷି ଶୃଙ୍ଗ ଚରୁରୁ ଘରିହେ ଜାତହେଲ
ସେଦିନ ମନର ହୁଲାସୁର ପାଇଲ ।
ସେଠାରୁ ଛଡ଼ମାସ ଦିନ ବହିଗଲା
ଜନକ ଋଷି ପୁଣି ଯାଗ ଆରମ୍ଭିଲା ।
ଭୂମି ଶୋଧିବାକୁ ସେ ହୋଇଲେ ବାହାର
ପ୍ରାପତ ହେଲେ ସୀତା ପୂର୍ବର ଭାଗ୍ୟଫଳ ।
ଫାଳର ମୁନେ ଯହୁଁ ଲାଗିଲା ମଞ୍ଜୁଷ
ଜନକ ପଚାରିଲେ ଅଛି ଏଥି କିସ ।
ଖୋଳି କାଢ଼ିଲେ ସୁବର୍ଣ୍ଣ ମଞ୍ଜୁଷ ଦେଖି ଭାଙ୍ଗି
ମଞ୍ଜୁଷ ଭିତରେ ଦେଖିଲେ କୋମଳାଙ୍ଗୀ ।
ଶୁକଳ ପକ୍ଷରେ ଯେହ୍ନେ ପୂର୍ଣ୍ଣମୀ ଦିନ ଦିଶି
ଦେଖିଣ ଆନନ୍ଦ ହେଲେ ସକଳ ମହଋଷି ।
ଯାଗର ଫଳ ଯେ ଜନକ ଋଷି ପାଇ
ସେହି ଦୁଲାଳୀକି ଘରକୁ ଘେନି ଯାଇ ।
ଫାଳର ମୁନରେ ଯେ ଉକୁଟି ବନୀତା
ତେଣୁକରି ତାର ନାମ ଋଷି ଦେଲେ ସୀତା ।
ଶୁଣିକରି ରାମଚନ୍ଦ୍ର ନମସ୍କାର କଲେ
ଭୋ ମୁନି ଏ ଉତ୍ତାରୁ କିସ ହେଲା ଭଲେ ।
ଏଥୁ ଅନନ୍ତରେ ଯେ ପାର୍ବତୀ ପଚାରନ୍ତି
ପୁଣି ସେ ରାବଣ ଯେ କଲେ କିସ ରୀତି ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ଶ୍ରୀରାମଙ୍କ ଆଗେ ଏହା ଅଗସ୍ତୀ କହନ୍ତି ।
ଏଥୁ ଅନନ୍ତରେ ପୌଲସ୍ତୀଙ୍କ ନାତି
ବଳମାନେ ବହୁତ ଅନ୍ୟାୟ କରନ୍ତି ।

ବଳରେ ଉତ୍କୃଷ୍ଟ ସେ ବହୁ ଅନ୍ୟାୟ କଲା
ପୁଷ୍ପକ ଆରୋହୀ ସେ ଜଗତ ବୁଲିଲା ।
ଦିନେକ ମରୁତ ଦେବତାଙ୍କୁ ଭେଟି
ସବୁ ଦେବତାଏ ସେଠାରେ ପୁଣ ଗୋଷ୍ଠୀ ।
ଯାଗ କରଇ ସେ ମରୁତ ନୃପବର
ଏସନକ ସମୟେ ମିଳିଲା ଦଶଶିର ।
ବୃହସ୍ପତିଙ୍କର ଭାଇ ସନାତନ ଋଷି
ଯାଗରେ ଆଚାର୍ଯ୍ୟ ସେ ହୋଇଛନ୍ତି ବସି ।
ପୁଷ୍ପକ ରଥ ଯେ ଦେଖି ଦେବଗଣ
ମନରେ ବିଚାରିଲେ ଆସୁଛି ରାବଣ ।
କରିବ ଅନର୍ଥ ବୋଲି ଆଡ଼ ହୋଇଗଲେ
ଥୋକେ ଋଷି ସେଠାରୁ ଯାଇ ନ ପାରିଲେ ।
ଏସନକ ସମୟେ ମିଳି ପୌଲସ୍ତରୀ ନାତି
କରରେ ଧରିଛନ୍ତି ସେ ପ୍ରଚଣ୍ଡ ଶକତି ।
ମରୁତକୁ ଚାହିଁଣ ସେ ବୋଇଲେ ବଚନ
ମୋହର ତୁଲେ ଯୁଦ୍ଧ କର ହେ ରାଜନ ।
ଯୁଦ୍ଧ ଦେଇ ତ୍ରିପୁତି କର ମୋର ଦେହୀ
ମୁହିଁ ଆସିଅଛି ଯୁଦ୍ଧ ମାଗିବାର ପାଇଁ ।
ତୁମ୍ଭେ ମହାରାଜା ଶୁଣି ମୁହିଁତ ଅଇଲି
ମନରେ ବିଚାରିଲା ମୁଁ ସମର ପାଇଲି ।
ତୁ ମୋତେ ନିରାଶ ହୋ ନକର ମରୁତ
ଯତନେ ଆସିଛି ମୁଁ ସମର କରିତ ।
ଶୁଣିଣ ନୃପବର ରାବଣେ ପଚାରି
କେବଣ ଦେଶରୁ ତୁ ଅଇଲୁ ଦଶଗିରି ।
କେବଣ ନାମ ତୋହର ଅଟୁ କାହା ସୁତ
କିଏ ସେ ଅଟଇ ତୋର ଗର୍ଭଧାରୀ ମାତ ।
ଏତେବେଳ ଅବା କାହୁଁ ପାଇଲୁରେ ତୁହି
ପୃଥିବୀ ବୁଲି ସଂଗ୍ରାମ ଲୋଡୁଅଛୁ ଯହିଁ ।
ରାବଣ ବୋଇଲା ମୁଁ ବିଶ୍ରବାର ସୁତ
ନଉକେଶୀ ଦଇତୁଣୀ ଗର୍ଭରୁ ସମ୍ଭୁତ ।
ଲଙ୍କାଗଡ଼ ରାଜା ମୁଁ ମୋ ନାମ ରାବଣ
ଚାରିଦିଗେ ବିଖ୍ୟାତ ମୋର ବଡ଼ପଣ ।
କୁବେରକୁ ଜିଣିଣ ପୁଷ୍ପକ ଯାନ ନେଲି
କଇଲାସ କନ୍ଦର ମୁଁ ହେଳେ ଉପାଡ଼ିଲି ।
ଏବେ ତୋତେ ଭେଟିଲି ଯୁଦ୍ଧ ମୋତେ ଦେସି
ଶୁଣିଣ ମରୁତ ରାଜା ବୋଇଲେ କହସି ।

କୁବେର ତୋହର ଯେ ଅଟେ ଜ୍ୟେଷ୍ଠ ଭାଇ
ତା ସଙ୍ଗେ ସମର କଲୁ କେଡ଼େ ଯଶ ହୋଇ ।
ସେହି ପରା ତୋହର ଅଟଇ ଜ୍ୟେଷ୍ଠ ଭ୍ରାତ
ବିଶ୍ରବା ସମାନରେ ଅଟେ ସେହୁ ତାତ ।
ତେଣୁ ତାକୁ ଜିଣିଣ ତୁ ବଡ଼ ପଣ ବହୁ
ଏ ତୋହର ନ ଜାଣିବା ପଣରେ ସେ ରହୁ ।
ବିଶର୍ବା ଋଷିଙ୍କର ଅଟ ତୁମ୍ଭେ ସୁତ
ରାକ୍ଷସୁଣୀ ଗର୍ଭରୁ ତୁହି ହେଲୁ ଜାତ ।
ତେଣୁକରି ତୁ ଯେ ଜଗତ ଜିଣି ପାରୁ
କୁବେରଙ୍କୁ ଜିଣି ବୋଲାଉ ହନ୍ତକାରୁ ।
ଏବେତ ଆସିଛୁରେ ଯୁଝିତ ମନେ କରି
ଜଗତେ ଜାଣିଛନ୍ତି ଅଟୁ ଦଶଗିରି ।
ହୋମ ଶାନ୍ତି ହେଉ କ୍ଷଣେ ତୁରେ ବସ
ଝାଳ ତୋର ଗଳୁଛିରେ ଖର ନିଶ୍ୱାସ ।
କ୍ଷଣେ ସୁସ୍ଥ ହୋଇଣ ମୋ ସଙ୍ଗେ କର ଯୁଦ୍ଧ
ନିଶ୍ଚୟେ ସମର ମୁଁ ଦେବି ତୋତେ ଆଜ ।
ମରୁତ୍ତର ମନ୍ତ୍ରୀ ଯେ ଅଟଇ ସମ୍ଭୁତ
ସେ ରାଜା ସଙ୍ଗେ ବିଶ୍ୱାସ ହେଲା ଯେ ଏକାନ୍ତ ।
କିମ୍ପା ତୁ ସମର କରିବୁ ନୃପବର
ସଂଗ୍ରାମ କାଳ ଯେ ନୋହେଟି ତୋହର ।
ଏବଡ଼ ଦୁଷ୍ଟ ଯେ ଅଟେ ଦଶଗିରି
ଦେଖିଲେ ଟିକି ଦେବତା ପଳାବନ୍ତି ଡରି ।
ପ୍ରୀତି କରିଣ ଏବେ ପଠାଇବା ଯାକୁ
ଦଶଦିଗପାଳେ ଯେ ଡରନ୍ତି ଯାହାକୁ ।
ମନ୍ତ୍ରୀର ବଚନକୁ ମରୁତ ସରାଗେ ।
ରାବଣକୁ ଆରାଧନା କଲା ବିଧି ଭାବେ ।
ପ୍ରୀତି କଥା କହିଣ ଗଉରବ କଲା
ମୁଁ ତୋତେ ସମର୍ଥରେ ନୁହଇ ବୋଇଲା ।
ତୁ ମହାକ୍ଷତ୍ରୀ କଇଲାସକୁ ତୋଳିଲୁ
ପୁଷ୍ପକ ଯାନ ଚଢ଼ି ତ୍ରିଭୁବନ ବୁଲୁ ।
ପ୍ରସନ୍ନ ହୋଇଣ ତୋତେ ବିଧାତା ବରଦେଲା
କୁବେର ଯାହାକୁ ସେ ସମରେ ହାରିଲା ।
ମୁଁ ତୋତେ ସମରେ ନ ପାରିବି ବୋଲି
ଏତେକହି ତୋତେ ମୁଁ ବିନୟୀ ହୋଇଲି ।
ମୁହିଁ ଯେ ମନୁଷ୍ୟରେ ଧର୍ମ ପରାୟଣ
ତୋହର ସଙ୍ଗରେ କି କରିପାରେ ରଣ ।

ତ୍ରିପୁଟି ହୋଇଣ ତୁ ବାହୁଡ଼ି ଯାଅଯା
ତୋହର ସମାନେ ତୁ ଲୋଡ଼ ଯା ଆନ ରାଜା ।
ଏତେକହି ଅଳଙ୍କାର ମନ ଆଣି ଦେଲା
ଉପହାର ପାଇ ରାବଣ ବୋଧ ହେଲା ।
ଯିବାରବେଳେ ଯେ ବଢ଼ାଇଦିଏ ହାଥ
ଋଷିଙ୍କି ଧରିଣ ଆଣି ଖାଏ ଦଶମାଥ ।
ମରୁତ ରାଜାର ସେ ନ କଲାକ ବୋଲ
ତପୀମାନଙ୍କୁ ଖାଇ ବାହୁଡ଼େ ଲଙ୍କ ମଲ ।
ରାଜାମାନଙ୍କୁ ଜିଣି ଯେ ଚଳଇ ରାବଣ
ପୁଷ୍ପକ ଚଢ଼ି ସେ ଗର୍ବରେ ଗଲା ପୁଣ ।
ସମସ୍ତ ରାଜାମାନଙ୍କର କଟକରେ ପଶି
ଦେଶ ଉଜାଡ଼ିଣ ମନରେ ହେଲା ତୋଷି ।
ଅନ୍ତଃପୁର ମଧ୍ୟରେ ଥାନ୍ତି ନୃପଗଣ
ଏମନ୍ତ ସମୟେ ତହିଁ ପ୍ରବେଶ ରାବଣ ।
ରଥରୁ ଓହ୍ଲାଇଣ ପଶେ ଅନ୍ତଃପୁରେ
ରାଜାଙ୍କୁ ଦେଖି ଯୁଦ୍ଧ ସେ ମାଗଇ ସତ୍ୱରେ ।
ଯୁଦ୍ଧ ନ ଦେଲେ ତୋତେ କରିବି ପ୍ରାଣେ ବଧ
ଏତେ ବୋଲି ଗର୍ଜନ କରେ ଦଶକନ୍ଧ ।
ମୁହିଁ ଦଶାନନ ରାକ୍ଷସବଳ ପତି
କୁବେରକୁ ଜିଣିଣ ମୁଁ ଆଣିଛି ବିଭୂତି ।
କପିଳାସ ପର୍ବତ ମୁଁ ହେଳେ ଉପାଡ଼ିଲି
ମରୁତ ରାଜାକୁ ମୁଁ ଯୁଦ୍ଧରେ ଜିଣିଲି ।
ଅକଣ୍ଟକ ଲଙ୍କାରାଜ୍ୟ ମୁଁ ଭୋଗ କରଇ
ଯେ ବୋଲେ ମୁଁ କ୍ଷତ୍ରିତାକୁ ମୁଁ ନ ସହଇ ।
ଶୁଣିଣ ନୃପଗଣ ହୋଇଲେ ତରସ୍ତ
ସାବଧାନେ ରାବଣ ଛାମୁରେ ଉପଗତ ।
ଆମ୍ଭେ ତୋତେ ଅମାନ୍ୟ ନୋହୁଁ ଲଙ୍କସାଇଁ
ତୁମ୍ଭ ସଙ୍ଗରେ ଯୁଦ୍ଧ କରିବୁଁ କିମ୍ପାଇଁ ।
ଶୁଣିଣ ଦଶଗ୍ରୀବ ବାହୁଡ଼ିଲା ତୋଷେ
ପୁଷ୍ପକ ଚଢ଼ି ସେ ଗମଇ ନାନାଦେଶେ ।
ଏମନ୍ତେ ସମସ୍ତ ରାଜାଙ୍କୁ ସାଧି କଲା
ଭ୍ରମିଣ ଆସନ୍ତେ ସେ ଅଯୋଧ୍ୟା ମିଳିଲା ।
ତୁମ୍ଭର ଉପର ବଂଶେ ବୟାଳିଶି ପୁରୁଷେ
ଅରଣ୍ୟକ ରାଜା ଯେ ବିଦିତ ଏ ଦେଶେ ।
ସମରେ ଅଜୟେ ଅଗମ୍ୟ ତାର ସୈନ୍ୟ
ତେଣୁ ସେ ନୃପତି ନାମ ଅଟଇ ଅରନ୍ୟ ।
ତିନିପୁରେ ତାକୁ ଯେ ସରିସମ ନାହିଁ
ଧାର୍ମିକପଣ ଦେଖି ପ୍ରଶଂସା କରେ ବହି ।
ତାହାର ବୀରପଣ ଶୁଣିଣ ରାବଣ
ଅଯୋଧ୍ୟାରେ ପଶି ସେ ମାଗେ ତାକୁ ରଣ ।
ଶୁଣିଣ ଅରନ୍ୟ ରାୟେ ସାଜିଲେକ ବଳ
ଦଶଗ୍ରୀବଙ୍କ ସଙ୍ଗେ କଲେ ରଣଗୋଳ ।
କୋପରେ ଦଶମାଥ ଦିବ୍ୟ ଅସ୍ତ୍ର କରି
ସେ ଶରକୁ ଅରନ୍ୟ ପକାଏ ନିବାରି ।
ବ୍ରହ୍ମାଙ୍କର ବର ପାଇ ଦଇତ୍ୟ ମହାବୀର
ବିଷମ ସମର ଜାଣେ ଅଟେ ହନ୍ତକାର ।
ମହାଯୁଦ୍ଧେ ସଂହାରିଲା ଅରନ୍ୟକ ସୈନ୍ୟ
କୋପରେ ସମର କରେ ରାଜା ଯେ ଅରଣ୍ୟ ।
ରଣଗୋଳ ଧନ୍ଦୋଳ ବାଜିଲା ଦୁହିଁଙ୍କରି
କୋପରେ ଲଙ୍କପତି ଅସୁରା ଶର ମାରି ।
ରାବଣର ନାରାଚରେ ପଡ଼ିଲେ ଅରନ୍ୟ
ପୁଣି ଚେତନା ପାଇଲା ଅରଣ୍ୟ ରାଜନ ।
ଦଶଗ୍ରୀବକୁ ଚହିଁଣ କୋପେ ଶାପ ଦେଲା
ମୋର ବଂଶ ହାତରେ ତୁ ମରିବୁ ବୋଇଲା ।
ଅଧର୍ମ ଯୁଦ୍ଧ କଲୁରେ ବ୍ରହ୍ମ ଅସ୍ତ୍ର ଘେନି
ଦେବଙ୍କର ଅସ୍ତ୍ରକୁ ମନୁଷ୍ୟେ ମାରୁ ଆଣି ।
ତୋହର ଭଲପଣ ନୁହେଁ ଲଙ୍କେଶ୍ୱର
ଆଉଥରେ ବନ୍ଧା ହେବୁ ମୋ ବଂଶ ହାତର ।
ତୃତୀୟ ଥରରେ ହେବୁ ତୁହି ପ୍ରାଣେ ନାଶ
ଏତେ ବୋଲି ଜୀବନ ଛାଡ଼େ ନରଈଶ ।
ପାର୍ଥିବ ଦେହ ତାର ଲୋଟିଲେ ଧରଣୀ
ରଣ ଯାଗରେ ସ୍ୱର୍ଗେ ଚଳେ ନୃପମଣି ।
ଅଗସ୍ତି ବୋଲନ୍ତି ଯେ ଶୁଣ ରଘୁନାଥ
ଯହୁଁ ସେ ପ୍ରବଳ ହେଲାକ ଦଶମାଥ ।
ପାପ କରିଣ ସେ ଧର୍ମ ଝିଙ୍ଗାସିଲା
ବ୍ରହ୍ମାଙ୍କର ବରେ ସେ ଯେ ପ୍ରବଳ ହୋଇଲା ।
ନ୍ୟାୟବନ୍ତ ରାଜାମାନେ ଛାଡ଼ିଲେ ନିତ୍ୟକର୍ମ
ତାହାଙ୍କୁ ରଖନ୍ତା ନୋହିଲା ପୁଣି ଧର୍ମ ।
ଜଗତ ସଂସାର ଲୋକେ ନିରେଖି ହୋଇଲେ
ଦେବେ ଡରିଣ ଏଣେତେଣେ ପଳାଇଲେ ।
ଦିଗପାଳେ ଡରି ପଳାଇ ପୁଣ ଯାନ୍ତି
ଯାକୁ ବ୍ରହ୍ମା ଈଶ୍ୱର ବର ଦେଇଛନ୍ତି ।

ନାରାୟଣ ପୁରୁଷଙ୍କୁ ସମସ୍ତେ ବାଟ ଚହିଁ
ତେଣୁ ଅନାସ୍ତ ହୋଇଲା ସପ୍ତଦ୍ୱୀପ ମହୀ ।
ରାଜାଗଣେ ଥାଇଣ ଯେ କରିବେ ଆଉକିସ
ପ୍ରୀତି ହୋଇଣ ରକ୍ଷାକଲେ ଆପଣାର ବଂଶ ।
ଶୁଣିକରି ରାମଚନ୍ଦ୍ର ହେଲେ ଯେ ନୃପତି
କରଯୋଡ଼ି ହସିଣ କହନ୍ତି ରଘୁପତି ।
କହ ମୁନି ମୋତେ ଏଥୁ ଉତ୍ତାରେ ଯେ କଥା
ପୁଣି ଆନ କିସ ହେଲା ଯେ ସେହି ବାରତା ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ମନ ଦେଇ
ତୋର ଉପର ବଂଶେ ମାନଧାତା ନାମହୋଇ ।
ପୁରୁଷ ଗର୍ଭରୁ ସେ ହେଲେ ଉତପତ୍ତି
ତେଣୁ ମାନଧାତା ନାମ ହେଲା ଚକ୍ରବର୍ତ୍ତୀ ।
ସପ୍ତବାର ପର୍ଯ୍ୟନ୍ତେ ସେ ତିନିପୁର ବୁଲି
ଧାର୍ମିକଙ୍କୁ ରଖି ସେ ଯେ ଦୁଷ୍ଟଙ୍କୁ ନିବାରି ।
ଦେବ, ଋଷି, ବ୍ରାହ୍ମଣ, ସନ୍ଥଙ୍କୁ ସେ ନମାରି
ଆଉମାନଙ୍କୁ ଶତ୍ରୁପରି ମନରେ ତାହାରି ।
ଏମନ୍ତେ ପାଞ୍ଚ ସହସ୍ର ପଞ୍ଚସ୍ତରୀ ବର୍ଷ ବହିଗଲା
ଦେବତାଙ୍କର ସଙ୍ଗେ ଯାଇ ମେଳ ହେଲା
ସୁଧର୍ମା ସଭାରେ ଯାଇ ବସେ ଦିନେ ଦିନେ
ଦେବତାଏ ତାହାକୁ ପ୍ରସନ୍ନ ହୋନ୍ତି ମନେ ।
ଏକଦିନେ ରାବଣ ଅଯୋଧ୍ୟାକୁ ଆସି
ଶୀତଳ ଗିରିପରେ ବିମାନରେ ବସି ।
ଡଗରା ଦେଖି ମାନଧାତା ଆଗେ କହିଲା
ତୁମ୍ଭର ପୁରକୁ ଏବେ ରାବଣ ଅଇଲା ।
ଶୁଣି କରି ମାନଧାତା ଧରେ ଗଦାବର
ପ୍ରବେଶ ହେଲା ଯାଇଁ ଶୀତଳ ଗିରିପର ।
ଦେଖି କରି ରାବଣ ଧଇଲେ ମୁଦ୍‌ଗର
ଦୁହିଁଙ୍କର ସମର ଯେ ହେଲା ଗିରିପର ।
ଗଦା ମୁଦ୍‌ଗର ପିଟାପିଟି ସେ ହୋଇଲେ
ସାତଦିନ ପର୍ଯ୍ୟନ୍ତେ ସମର ସେହୁକଲେ ।
ମାନଧାତା ପିଟିଲା ମୁଣ୍ଡକୁ ଗଦାବର
ଦଶମୁଣ୍ଡ ଛେଚିଣ କଲା ନାରଖାର ।
ଛେଚା ମୁଣ୍ଡ ତାର ଯେ ସୁନ୍ଦର ହୋଇଲା
ଦେଖିଣ ମାନଧାତା ଗଦା ପ୍ରହାରିଲା ।
ଦୁଇ ଜାନୁ ତାର ଭାଙ୍ଗିଲା ଗଦାଘାତେ
ଢଳିକରି ଅସୁର ପଡ଼ିଲା ଭୂମିଗତେ ।
ଦେଖିଣ ମାନଧାତା ବାନ୍ଧେ ଯତ୍ନକରି
ଗିରି ଉପାଡ଼ିଣ ତାର ଉପରେଣ ଭରି ।
ଜିଣିଣ ମାନଧାତା ନିଜ ପୁର ଗଲା
ବନ୍ଧନେ ରାବଣ ଗିରି ତଳରେ ରହିଲା ।
ଶତେ ବର୍ଷ ପର୍ଯ୍ୟନ୍ତେ ରହିଲା ସେହିଠାରେ
ବିଶର୍ବା ମିଳିଲେ ମାନଧାତାର ଛାମୁରେ ।
ବୋଇଲେ ମାନଧାତା ରାବଣ ଦିଅ ଛାଡ଼ି
ଅନେକ କଦର୍ଥନା ପାଇଲା ଦଶଗିରି ।
ମାନଧାତା ବୋଇଲା ମୋ ପିତାଙ୍କୁ ବଧକଲା
ଏବେ ମୋର ସଙ୍ଗେ ଲାଗିତ ଅଇଲା ।
ଦୁଷ୍ଟଜନ ଅଟେ ଏ ଦଶାନନ ବୀର
ଏହାକୁ ମାଇଲେ ପୃଥ୍ୱୀ ହୋଇବାକୁ ସ୍ଥିର ।
ବିଶର୍ବା ବୋଇଲେ ସେ ତୋ ହସ୍ତରେ ନ ମରଇ
ତୋହର ବଂଶେ ଜାତ ହୋଇବେ ଭାବଗ୍ରାହୀ ।
ତେତେବେଳେ ନାଶ ଯେ ହୋଇବ ରାବଣ
ଶୁଣିକରି ମାନଧାତା ବୋଲନ୍ତି ବଚନ ।
ଅସୁରୁଣୀ ଠାରେ ଚିତ୍ତ କେମନ୍ତେ ବଳିଲା
ବ୍ରହ୍ମମୁନି ହୋଇ ଅନ୍ୟାୟ ତୁମ୍ଭର ହେଲା ।
ବିଶ୍ରବା ବୋଇଲେ ତୁ ଶୁଣ ଚକ୍ରବର୍ତ୍ତୀ
ବିଧାତା ଲେଖନ କଥା କେପେ ନୋହେପୋଛି
ଦୁଷ୍ଟଙ୍କୁ ମାରିବା ପାଇଁ ନାରାୟଣ ଜାତ
ବାସୁଦେବ ବ୍ୟତ୍ରକେ ନୁହଇ ଆନେ ହତ ।
ମାନଧାତା ବୋଇଲେ ଯେବେ ମରିବ ସେହି
ଏହି ରୂପେ ଥାଉ ବନ୍ଧନରେ ରହି ।
ବିଶର୍ବା ବୋଇଲେ କିମ୍ପା ବନ୍ଧନ କରିଥିବୁ
ଅଳପ ଦିନରେ ସେ ମରିବରେ ବାବୁ ।
ଶୁଣିକରି ମାନଧାତା ବେଗ୍ରରେ ଉଠିଲା
ତାର ଉପରୁ ପର୍ବତ ବାହାର କରିଦେଲା ।
ଦୁଇ ଚରଣ ଧରି ଦେଲେକ ଫୋପାଡ଼ି
ଲଙ୍କାର ଉତ୍ତର ଦ୍ୱାରେ ପଡ଼େ ଦଶଗିରି ।
ସାତଦିନ, ସାତରାତ୍ର ଏଥିରେ ବହିଗଲା
ତେବେ ସେ ଚେତନା ଯେ ରାବଣ ପାଇଲା ।
ଶୁଣିକରି ରାମ ମନରେ ହେଲେ ତୋଷ
ବୋଇଲେ ମୁନିବର କହ କଥା ରସ ।
ପର୍ଶୁରାମ ହୋଇଣ ହେଲେ ସେହୁ ସାର
ତିନିପୁର ଦୁଷ୍ଟଙ୍କୁ କଲେକ ନିବାର ।

ଅସୁରକୁ କିମ୍ପାଇଁ ନକରେ ନିଧନ
କେଉଁ ଗୁଣେ ଓପ୍ରୋଧ କରେ ଋଷିପୁଣ ।
ଅଗସ୍ତି ବୋଇଲେ ରାମ ଏକମନେ ଶୁଣ
ତିନିପୁର ସାଧିକଲା ଯମଦଗ୍ନି ନାନ ।
ଦୁଷ୍ଟ ମାରି ସନ୍ଥକୁ ରଖଇ ସେ ପୁଣି
ଏମନ୍ତେ ବଇରୀ ସାଧି ରଖିଲା ଧରଣୀ ।
ଏକଦିନେ ରାବଣ ଅଇଲା ଜମ୍ବୁଦ୍ୱୀପ
ଏକାମ୍ବର ବନରେ ଦେଖେ ବିପରୀତ ।
ଷ୍ଫଟିକ ପର୍ବତ ପରେ ବିଜେ ପର୍ଶୁରାମ
ଅନେକ ଋଷି ଅଛନ୍ତି ତାଙ୍କର ଆଶ୍ରମ ।
ଦେଖିଣ ରାବଣ ଯେ ପୁଷ୍ପକ ଆରୋହିଲା
ଷ୍ଫଟିକ ଗିରିପରେ ପ୍ରବେଶ ହୋଇଲା ।
ଯାନରୁ ଓହ୍ଲାଇ ସେ ଧଇଲା ଋଷିଙ୍କି
ଦେଖିଲେ ପର୍ଶୁରାମ ଦଶଶିର ଗୋଟି ।
କୁଠାର ଧରି ବୀର ଉଠିଲେ ତଡ଼ତି
ବିଂଶ ଭୁଜ ତାର କାଟିଲେ ଝଟତି ।
ଲଣ୍ଡା ବୃକ୍ଷ ପ୍ରାୟେ ଯେ ଦିଶିଲା ରାବଣ
ପୁଣି ଛେଦିଲେ ତାର ନାସା ଯେ ଶ୍ରବଣ ।
କାଖରେ ଯାକି ତାକୁ ସମୁଦ୍ରକୁ ନେଲେ
ବୁଲାଇ କରି ତାକୁ ସାଗରେ ଫିଙ୍ଗିଦେଲେ ।
ଲବଣ ସମୁଦ୍ରରେ ପଡ଼ିଲା ସେ ଯାଇ
ଲୁଣି ପାଣି ଲାଗନ୍ତେ ବ୍ୟାକୁଳ ତାରଦେହୀ ।
ନାସା ଶ୍ରବଣ ହାତ କଅଁଳି ଅଇଲା
ଚେତା ପାଇ ରାବଣ ସମୁଦ୍ରେ ଛିଡ଼ାହେଲା ।
ପୁଷ୍ପକ ବିମାନକୁ ସେ ସୁମରିଲା ପୁଣି
ତତକ୍ଷଣେ ଯାନ ଆସି ହୋଇଲା ଆଗେଣ ।
ରଥ ଚଢ଼ିଣ ସେ ଲଙ୍କା ପୁରକୁ ଅଇଲା
ସେହିଦିନୁ ପର୍ଶୁରାମ ପାଖକୁ ନ ଗଲା ।
ଅପଚୟେ କଥା କାହାରି ଆଗରେ ନକହି
ଜିଣିଲାର କଥା ସେ ପ୍ରକାଶ କରଇ ।
ରାମ ପଚାରିଲେ ତାକୁ ନ ମାରନ୍ତି କିମ୍ପା
ଅଗସ୍ତି ବୋଲେ ତା ମୃତ୍ୟୁ କା'ହାତେ ନାହିଁଲେଖା
ପୂର୍ବରେ ଲେଖନ ତା'ର ନମରି କାହାହାତେ
ତୁମ୍ଭ ହସ୍ତେ ମରିବାକୁ ତାହାର ନିୟତେ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ହେ ମୁନିଶ୍ରେଷ୍ଠ
ସେଠାରୁ ରାବଣ କଲା କେବଣ କୃତ୍ୟ ।

କହନ୍ତି ମହାମୁନି ଏଥୁ ଅନନ୍ତରେ
ପୁଣି ଆନ କଥାଏ ଶୁଣ ହେ ରଘୁବୀରେ ।
କାର୍ତ୍ତିକେଶ୍ୱର ବୋଲିଣ ଏକଇ ନୃପରାୟେ
ତାହାଠାରୁ ଜାତହେଲା ଏକଇ ତନୟେ ।
ସେ ତନୟ ଚେତା ହେଲା ନବ ଦିବସରେ
ତପକଲା ଗନ୍ଧମାର୍ଦନ ଯେ ପର୍ବତରେ ।
ସହସ୍ରେ ବରଷ ପର୍ଯ୍ୟନ୍ତେ ତପକଲା
ସେଠାରେ ବ୍ରହ୍ମାରୁଦ୍ର ମିଳେ ଯାଇଁ ପରା ।
ପ୍ରସନ୍ନ ହୋଇଣ ବର ତାହାକୁ ଦେଲେ
ବଳବନ୍ତ ପଣେ କେହୁ ନ ଜିଣୁ ବୋଇଲେ ।
ଶୁଣିଣ କାର୍ତ୍ତିକେଶ୍ୱର ପୁତ୍ର ତାଙ୍କୁ କହି
ଅମରବର ମୋତେ ଦିଅ ହେ ଉମାସାଇଁ ।
ଈଶ୍ୱର ବୋଇଲେ ତୁ ଯେ ମାନବେ ଅବତାର
ଅମରବର ତୋତେ ନୋହେ ମହୀଧର ।
ଦୁତୀ ନାରାୟଣ ହସ୍ତେ ତୁହି ହେବୁ ନାଶ
ଏତେ କହି ବ୍ରହ୍ମାରୁଦ୍ର ଗଲେ ନିଜ ବାସ ।
ବ୍ରହ୍ମାରୁଦ୍ର ବରରେ ସେ ହେଲେ ବର୍ଦ୍ଧମାନ
ଦୁଷ୍ଟବଳଙ୍କୁ ନାଶି ସନ୍ଥ ପାଳେ ପୁଣ ।
ବିଖ୍ୟାତ ହେଲା ରାଜା ତିନିଭୁବନ ମଧ୍ୟେ
ଗଣିତା ନୋହିବେ ତାକୁ ସୁର ସିଦ୍ଧ ଯୁଦ୍ଧେ ।
ଯହିଁକି ମନ ତହିଁ ଚଳେ ସେ ନୃପତି
ଧର୍ମ ବିଚାରିଣ ପାଳଇ ପ୍ରଜା ପୃଥ୍ୱୀ ।
ସେ ରାଜା ଏକ ଦିନେ ନର୍ମଦା କୂଳେ ଗଲା
ସହସ୍ରେ କନ୍ୟା ଘେନି ଜଳକ୍ରୀଡ଼ା କଲା ।
ସହସ୍ରେ ଭୁଜରେ ସେ ଓଗାଳିଲା ନଦୀ
ବାହୁଡ଼ିଣ ସୋହତୀ ଉପରକୁ ଭେଦି ।
ରାବଣ ଯେ ମାହେଶ୍ୱରୀ ନିକଟକୁ ଗଲା
ନର୍ମଦା ଜଳେ ପଶିଣ ସ୍ନାହାନ ସେହୁ କଲା ।
ଶୀତଳ ଯୋଗାଡ଼ ଯେ ବିବିଧ ଦ୍ରବ୍ୟମାନ
ଆପଣେ ଉଠିଣ ନୃତ୍ୟକରେ ଦଶାନନ ।
ମହ୍ଲାର ରାଗରେ ପୁଣି ଗାଇଲାକ ଗୀତ
ପୁଷ୍ପ ବୃଷ୍ଟି ସେଥିରେ କଲାକ ବହୁତ ।
ଆପେ ପଶିଣ ଯେ ବିପିନ ଯୂର କଲା
ରଘୁନାଥଙ୍କ ଆଗରେ ଅଗସ୍ତୀ କହିଲା ।
ପାର୍ବତୀ ବୋଇଲେ ପୁଣି କିସ କଲା ଦୈତ୍ୟ
ଈଶ୍ୱର ବୋଇଲେ ତୁ ଗୋ ଶୁଣ ଦେଇ ଚିତ୍ତ ।

ରାବଣ ଯେ କୂଳରେ ଶଙ୍କର ପୂଜୁଥିଲା
ନର୍ମଦା କୂଳକୁ ବୋଲି ନଦୀ ବଢ଼ିଗଲା ।
ନଦୀର ଉତ୍‌କ୍ରମରେ ଉଛୁଳି ପଡ଼ଇ
ଦେଖିକରି ଆଶ୍ଚର୍ଯ୍ୟ ହେଲା ଲଙ୍କସାଇଁ ।
ମନ୍ତ୍ରିଙ୍କି ଗ୍ଭହିଁଣ ସେ ପଗ୍ଭରେ ବଚନ
କେବଣ କଥା ଏତେ କହରେ ବହନ ।
ଏହି ନଦୀ ପୂର୍ବୁ ପଶ୍ଚିମେ ବହୁଥିଲା
ଏବେ ଉଜାଣି କିମ୍ପା ସେ ଲେଉଟି ବହିଲା ।
ବଢ଼ିଲା ନଦୀ ପ୍ରାୟେ ଭାଙ୍ଗୁଛି ଅତଡ଼ା
କଉତୁକ ହୋଇଣ ମାରୁଛି ଲହଡ଼ା ।
କେବଣ କାରଣ ସେ ଜାଣି ଆସ ଏଥ
ଶୁଣି ଶୁକ ସାରଣେ ଚଳିଲେ ତୁରିତ ।
ନଦୀର କୂଳେ କୂଳେ ଫୁଲ ବନେ ଗଲେ
କୋଶକରେ ସହସ୍ରାର୍ଜୁନ ଦେଖିଲେ ।
ହାତରେ ହାତ ଛନ୍ଦି ଅଛି ବାଡ଼ ଦେଇ
ସହସ୍ରେ ବନିତା ରାଜା କୋଳରେ ବସାଇ ।
ତେଣୁ ସେ ଲେଉଟି ଯେ ବହିଲାକ ପାଣି
ଶୁକ ସାରଣେ ଯେ ଧାଇଁଲେ ତାହା ଜାଣି ।
ରାବଣ ଆଗରେ ଯାଇ କହିଲେ କଥାମାନ
ଶୁଣିଣ କୋପଭର ହେଲା ଦଶାନନ ।
ସହସ୍ରାର୍ଜୁନକୁ ସେ ଭେଟିଲାକ ଯାଇଁ
ଆସ ହୋ ନୃପତି ବୋଇଲା କୂଳେ ଥାଇଁ ।
ମୁହିଁ ଦଶଗ୍ରୀବ ଯେ ବିଶ୍ରବା ଋଷି ସୁତ
ହେଲେ ଉପାଡ଼ିଲି ମୁଁ ଯେ କଇଲାସ ପର୍ବତ ।
ଏ ପୃଥ୍ୱୀ ରାଜାଙ୍କୁ ମୁଁ ଜିଣିଲି ବଳେ ଧରି
ମରୁତ ସହିତେ ମୋତେ କେହି ନୋହେ ସରି
ଅଯୋଧ୍ୟାରେ ଅରନ୍ୟ ନୃପତି ନାଶ କଲି
କୁବେରକୁ ଜିଣିଣ ପୁଷ୍ପକ ଆଣିଲି ।
ରବି ତଳରେ ମୋତେ କେ କ୍ଷତ୍ରୀ ନାହିଁ ସରି ।
ତୋହଠାକୁ ଆସିଛି ସମର ମୁହିଁ କରି ।
ସକଳ ରାଜାଙ୍କର ବର୍ଗ ମୁହିଁ ଜିଣି
ରାବଣର ବଚନେ ବୋଇଲେ ରାୟେ ବାଣୀ ।
ସହସ୍ରାର୍ଜୁନର ମନ୍ତ୍ରୀମାନେ ଶୁଣି
ପରିଘାଇ କଥା ଯେ କହୁଛନ୍ତି ପୁଣି ।
ବୋଇଲେ ଲଙ୍କପତିରେ ପଠାରି ରହକାଳ
ଏହିକି ଅଟଇ ତୋର ଯୁଝିବାର ବେଳ ।

ଜଳକ୍ରୀଡ଼ା କରୁଛନ୍ତି ଆମ୍ଭ ନୃପରାୟେ
ବାହୁଡ଼ି ଯାଅ ଯା ତୁମ୍ଭେ ବିଶର୍ବା ତନୟେ ।
ଶୁଣିଣ ଦଶାନନ ନ ଘେନେ ପ୍ରବୋଧ
ମନ୍ତ୍ରୀଙ୍କର ସଙ୍ଗରେ ଆରମ୍ଭ କଲା ଯୁଦ୍ଧ ।
ଦୁଇ ବଳଙ୍କର ଯେ ଲାଗିଲା ହଣାହଣି
ଦିଗପାଳ ସମାନେ କ୍ଷତ୍ରୀ ବିଂଶପାଣି ।
ସହସ୍ରା ଅର୍ଜ୍ଜୁନ ଥାଟ ଭାଜି ପୁଣି ରଣେ
ଦେଖି ସେହୁ ନୃପତି ଧାଏଁ ତତକ୍ଷଣେ ।
ଯୁବତୀମାନଙ୍କୁ ସେ ନବରକୁ ପଠିଆଇ
ରଥ ଚଢ଼ି ନାରୀମାନେ ନିଜ ଆଳେ ଯାଇ ।
ଗ୍ଭର ଜଣାନ୍ତେ ସେ ଆପଣେ ଆସଇ
ରାବଣର ଆଗରେ ପ୍ରବେଶ ଆସି ସେହି ।
ଭାଜିଣ ସୈନ୍ୟମାନେ ପଳାଇଣ ଥିଲେ
ନୃପତିଙ୍କି ଦେଖିଣ ସେ ଲେଉଟି ଅଇଲେ ।
ମାର ମାର ଡାକ ଯେ ଡାକନ୍ତି ଅବିଚ୍ଛିନ୍ନେ
ପିଠିଆଇ ଗୋଡ଼ାଇ ଯେ ଥିଲା ଦଶାନନେ ।
ସହସ୍ରାର୍ଜ୍ଜୁନ ଯେ ଧାଇଁଲା ଶସ୍ତ୍ର ଘେନି
ରହି ଯୁଦ୍ଧ କଲା ଯେ ଦିଶଇ ମୂର୍ଦ୍ଧନୀ ।
ଦୁଇ ରାଜାଙ୍କର ଯେ ବାଜିଲା ରଣଗୋଳ
ଆକାଶେ ଥାଇ ଦେଖନ୍ତି ଦେବେ ଯେ ସକଳ ।
ଦେବେ ବିଗ୍ଭରନ୍ତି, ରାବଣେଶ୍ୱର ମରୁ
ଦେବତାମାନଙ୍କର ପରମ କଷ୍ଟ ସରୁ ।
ସାମାନ୍ୟ ନୁହଁଇ ଯେ ସହସ୍ରା ଅର୍ଜ୍ଜୁନ
ଅରଣ୍ୟ ରାଜା ପରାୟେ ମଣିଛି ଦଶାନନ ।
ଏସନେକ ବିଗ୍ଭର କରନ୍ତି ରହି ସୁର
କହନ୍ତି ଅଗସ୍ତୀ ଯେ ଶୁଣନ୍ତି ରଘୁବୀର ।
ପରିଘାଇ ସମର ଯେ କଲେ ବେନିରାୟେ
ସହସ୍ରାର୍ଜ୍ଜୁନ ଯେ ବିଦ୍ୟା ଅସ୍ତ୍ର କିଏ ।
ରାବଣ ବିଂଶଭୁଜେ ମାରଇ ଶକତି
ପରିଘାଇ ଯୁଝୁଛନ୍ତି ଅସୁର କୁଳପତି ।
ଅସ୍ତ୍ର କଲେ ଯହୁଁ ସହସ୍ରାର୍ଜ୍ଜୁନ
ରାବଣ ପ୍ରତିଶର କଲାକ ସେ ପୁଣ ।
ଦୁହେଁ ଯେ ସମଯୋଦ୍ଧା ହାର ଜିତି ନାହିଁ
ଘୋର ସମରେ ପଡ଼େ ଲଙ୍କାଗଡ଼ ସାଇଁ ।
କ୍ଷଣକରେ ଅଦୃଶ୍ୟ ପୁଣି ସେ ହୁଅନ୍ତି
ନିର୍ଘାତ ଶବଦ କି ଶୁଭେ ଶସ୍ତ୍ର ଜ୍ୟୋତି ।

ବାଣ ବରଷଣେ କି ଅନ୍ଧାର କରନ୍ତି
ନାନାଦି ଯୋଦ୍ଧାମାନେ ଯେ ଯୁଦ୍ଧ କରୁଛନ୍ତି ।
ନିର୍ଘାତ ଶବଦ କରେ ସେହୁ ଶସ୍ତ୍ରମାନ
ଦୁହିଁଙ୍କର ଦେହ ଯେ ରୋଧିରେ ବିତପନ ।
ହାକିଣ ବିନ୍ଧାବିନ୍ଧି ଡାକିଣ ମରାମରି
ବେଳକୁ ବେଳ ଦୁହେଁ ଅପୂର୍ବ ଯୁଦ୍ଧ କରି ।
ଦୁହିଁଙ୍କର ଥାଟରେ ବାଜିଲା ସମର
ଦୁଇକ୍ଷତ୍ରୀ ହନ୍ତକାରୁ ବ୍ରହ୍ମାଣ୍ଡେ ବଳିୟାର ।
ଦୁଇବୀରେ ଯହୁଁ ନୋହିଲେ ହାରଜିଣ
କୋପରେ ଗଦା ବୁଲାଇ ଧଇଲା ରାବଣ ।
ଦେଖିଣ ସହସ୍ରାର୍ଜ୍ଜୁନ ଆଗସରି
ଲଙ୍କପତି ଗଦାକୁ ପ୍ରତିତୁଲ୍ୟ କରି ।
ଦୁଇଶସ୍ତ୍ର ବାଜିଣ ଯେ ଉଠିଲା ଅନଳ
ଘଡ଼ିଏ ପର୍ଯ୍ୟନ୍ତେ ଲାଗିଲା ଗଦାଗୋଳ ।
ରାବଣ ରାଗରେ ପିଟିଲା ଉରେଇଁ
ସହସ୍ରାର୍ଜ୍ଜୁନ ସମ୍ଭାଳେ ଦଗାନେଇ ।
ଦଶାନନ ଶର ଯେ ଅଟଇ ଫୁରୁଣା
ସହସ୍ରାର୍ଜ୍ଜୁନ ଶର ନୋହିଲାକ ଜିଣା ।
ଗଦାରେ ଗଦା ବାଜି ହେଲା ବେନିଖଣ୍ଡ
ଦେଖିକରି ରାବଣ ପକାଏ ପ୍ରଚଣ୍ଡ ।
ଛିଦ୍ରପାଇ ସେ ସହସ୍ରାର୍ଜ୍ଜୁନ ବେଗେମାରି
ମାହେଶ୍ୱରୀ କଟକକୁ ସେ ଘେନିଗଲା ଧରି ।
ରଥରେ ପକାଇଣ ବାନ୍ଧି ଘେନିଗଲା
ନିଜପୁରେ ନେଇଣ ବନ୍ଦୀରେ ରଖିଲା ।
ଲୋକେ ଜଗାଇଣ ଯେ ରଖିଲେ ଯତ୍ନକରି
ନୃପତିକି ଗଉରବ କଲେ ମାହେଶ୍ୱରୀ ।
ଯେତେବେଳେ ରାବଣ ଯେ ପଡ଼ିଲା ବନ୍ଧନ
ସ୍ୱର୍ଗରେ ଥାଇ ଆନନ୍ଦ ହେଲେ ଦେବଗଣ ।
ଦୁନ୍ଦୁଭି ବଜାଇ ସେ ପୁଷ୍ପ ବୃଷ୍ଟି କଲେ
ଆଜଠାରୁ ଦୁଃଖ ଯେ ସରିଲା ବୋଇଲେ ।
ଏଥୁ ଅନନ୍ତରେ ଯେ ସହସ୍ରାର୍ଜ୍ଜୁନ
ଆପଣା ସୈନ୍ୟଙ୍କୁ ବୋଲେ ଦୈତ୍ୟଙ୍କୁ ମାରପୁଣ ।
ଶୁଣିଣ ତାର ବଳ ଦୈତ୍ୟଙ୍କୁ ନାଶ କଲେ
ରୁଧିର ନଦୀ ଯେ ସେଠାରେ ବୁହାଇଲେ ।
ଥୋକେ ଦୈତ୍ୟବଳ ପଳାଇ ସେଥୁଁଗଲେ
ଲଙ୍କାରେ ଯାଇଁଣ ସେ ପ୍ରବେଶ ହୋଇଲେ ।

ଅଗସ୍ତି ବୋଇଲେ ହେ ରାମଚନ୍ଦ୍ର ଶୁଣ
ସହସ୍ରାର୍ଜ୍ଜୁନ ରାବଣକୁ ବାନ୍ଧିନେଲା ପୁଣ ।
ନିଜପୁରେ ନେଇଣ ଅନେକ ମାଡ଼ ମାରି
ଶିର ଛେଦିବ ବୋଲି କଟାରୀ କରେ ଧରି ।
ବେକେ ବାଜିଣ ଖଡ଼ଗ ଉପୁଡ଼ି ପଡ଼ଇ
ଶକତି ତାହାଠାରେ ନ ଭେଦିଲା ତହିଁ ।
କୋପେ ନୃପବର ଅଣାଏ ମୟେ ମତ୍ତ
ଯେଉଁ ମତ୍ତଗଜ କୁବଳୟା ସଂଜାତ ।
ଗଜର ହସ୍ତରେ ମରାଏ ପୁଣ ନେଇ
ପେଟରେ ବିକଳେ ଲଙ୍କପତି ଦିଏ ଖାଇ ।
ସେଥିରେ ନ ମଲା ଯେ ମନ୍ଦୋଦରୀ ସାଇଁ
ବେକେ ପଥର ବାନ୍ଧି ସେ ସମୁଦ୍ରେ ବୁଡ଼ାଇ ।
କେବେହେଁ ମୃତ୍ୟୁ ଯେ ନପାଏ ଲଙ୍କସାଇଁ
ଅନେକ ପ୍ରକାରେ ତାକୁ ମାଡ଼ ଯେ ମରାଇ ।
ଏହା ଦେଖି ଆଶ୍ଚର୍ଯ୍ୟ ହେଲା ସହସ୍ରାର୍ଜ୍ଜୁନ
ବାହୁଡାଇ ନବରେ ରଖିଲା ନେଇ ପୁଣ ।
ବାନ୍ଧିକରି ତାକୁ ଯେ ଥୋଇଲା ଯତ୍ନ କରି
ବେଦବର ଜାଣିଲେ ମନରେ ବିଚାରି ।
ଏମନ୍ତେ ସହସ୍ରେ ବରଷ ବହିଗଲା
ରାଣୀମାନଙ୍କ ଉଚ୍ଛିଷ୍ଟ ଲଙ୍କପତି ଯେ ଭୁଞ୍ଜିଲା ।
ନ ଖାଇଲା ପଦାର୍ଥ ଦିଅନ୍ତି ତାକୁ ନେଇ
ପେଟର ବିକଳେ ତାହା ଦଶାନନ ଦିଏ ଖାଇ ।
ବେଦବର ସୁମରଣା କଲେ ପୌଲସ୍ତୀଙ୍କି
ତତକ୍ଷଣେ ମୁନି ମିଳିଲେ ଯଶୋବନ୍ତୀ ।
ବେଦବର ବୋଇଲେ ହେ ଦେଖିକରି ଯାଅ
ତୋ ନାତିକି ବାନ୍ଧିଛିରେ କାର୍ତ୍ତିକେଶ୍ୱର ପୁଅ ।
ତାହାକୁ ସହସ୍ରାର୍ଜ୍ଜୁନ ମାରଇ ବିକୋଡି
ତାହାର ଘରଣୀ ଉଚିଷ୍ଟ ବଏ ନିତି ।
ତୁ ଯାଇଣ ତାକୁ ଛଡ଼ାଇ ଘେନିଆସ
ରାଜା ପଣ କରିଥିଲା ପାଉଥିବ ପ୍ରାସ ।
ପୌଲସ୍ତୀ ବୋଇଲେ ଦେବ ଅଟେ ବଡ଼ ଦୁଷ୍ଟ
ମାରୁ ସେ ପାପିଷ୍ଠକୁ ଆସିଲେ ନାହିଁ ଯଶ ।
ବେଦବର ବୋଇଲେ ତୁମ୍ଭେ ଥରେ ଯାଅ
ଆଉ ଥରେ ଦୋଷ କଲେ ମରୁ ସେ ତନୟ ।
ଶୁଣିଣ ପଉଲସ୍ତୀ ବ୍ରହ୍ମାଙ୍କ ବଚନ
ମର୍ତ୍ତ୍ୟପୁରେ ଶୀଘ୍ରେଦେବ କରନ୍ତି ଗମନ ।

ମନ ପବନ ଯୋଗେ ଶୂନ୍ୟରେ ଚଳିଗଲେ
ନିମିଷକେ ମାହେଶ୍ୱରୀ କଟକେ ମିଳିଲେ ।
ସହସ୍ରାର୍ଜ୍ଜୁନ ଯେ ଅଛି ଆସନ କରି
ସେଠାରେ ପରବେଶ ହେଲେ ତପଚାରୀ ।
ଦେଖିଣ ନୃପବର ଆସନୁ ଉଠିଗଲା
ନମସ୍କାର କରିଣ ବସିତ ଠାବ ଦେଲା ।
କୁଶଳ ପୁଛା ପୁଛି ହେଲେ ବେନିଜନ
କରଯୋଡ଼ି ପଚାରଇ ସହସ୍ରାର୍ଜ୍ଜୁନ ।
ଆଜତ ସୁଫଳ ହେଲା ମୋର ପୁରୀ
ମୋର ପୁରେ ପ୍ରବେଶ ପୌଲସ୍ତି ତପଚାରୀ ।
କେବଣ ଅର୍ଥେ ମୁନି କଲ ତ ଗମନ
ଋଷି ବୋଇଲେ ଶୁଣ ହେ ସହସ୍ରାର୍ଜ୍ଜୁନ ।
ଲଙ୍କାର ରାବଣ ଯେ ଆମ୍ଭର ହୋଏ ନାତି
ତାହାକୁ ଧରିଣ ତୁ ରଖିଛୁ ନୃପତି ।
ତା ଦୋଷ କ୍ଷମା କରି ରାବଣ ମୋତେ ଦିଅ
ଯାବତ କାଳକୁ ତୁ କଥା ରଖିଥାଅ ।
ସେ ଅବା ଦୋଷ କଲା ତୁମ୍ଭଙ୍କୁ ନ ଜାଣି
ସେ ଅପରାଧ ମୁଁ ମାଗୁଛି ତୋତେ ପୁଣି ।
ଛାଡ଼ ତୁ ଦଶାନନନ ମୋର ବୋଲ କର
ବ୍ରହ୍ମାଙ୍କର ବରେ ସେ ଅଟଇ ଅମର ।
ଯେତେ କଷ୍ଟ ଦେଲୁ ତୁ ତାର ହେଲା କିସ
କର୍ମର ଅବଳେ ସେ ପାଇଲା ଅମରୀଶ ।
ତୋହର ହାତରେ ଯେ ତାର ମୃତ୍ୟୁ ନାହିଁ
ଦେବବର ପେଶିଛନ୍ତି ରାବଣକୁ ନେବାପାଇଁ ।
ଯେବେ ମୋର ବୋଲେ ନ ଛାଡ଼ିବୁ ଲଙ୍କଈଶ
ନାତିର ଛଳେ ମୁଁ କରିବି ଧୂଳି ପାଂସ ।
ମାହେଶ୍ୱରୀ କଟକ ମୁଁ ଦହିବି କୋପାନଳେ
ଏତେ ବୋଲି ମୁନି ଯେ କହିଲେ ରାଜାରେ ।
ପୌଲସ୍ତୀଙ୍କ ନିରାଶ ବଚନ ରାଜା ଶୁଣି
କରଯୋଡ଼ି ସହସ୍ରାର୍ଜ୍ଜୁନ କହେ ବାଣୀ ।
ଭୋ ମୁନି ରାବଣ ଯେ ଅଟେ ବଡ଼ ଦୁଷ୍ଟ
ଋଷି ବ୍ରାହ୍ମଣଙ୍କୁ କଲା ଏହୁ ନଷ୍ଟ ।
ଏହାର ଅନୀତି ତ କଳଣା ନ ଯାଇ
ନର୍ମଦା ଜଳରେ ପଶି କ୍ରୀଡ଼ା ମୁଁ କରଇ ।
ଏହାର ତହିଁକି ମୁଁ ଯତନେ ନ ଗଲି
ମୋହର ସୁଖରେ ମୁଁ କ୍ରୀଡ଼ା କରୁଥିଲି ।
ସେହି ଆସି ମୋତେ ଡାକିଲାକ ବଳେ
ଚତୁରଙ୍ଗ ବଳ ମୋର ନାଶିଲାକ ହେଳେ ।
ସୈନ୍ୟ ହତ ଦେଖିଣ ସମର ମୁଁ ଯେ କଲି
ମୋର ଧର୍ମବଳେ ମୁଁ ରାବଣକୁ ଧଇଲି ।
ଅନେକ ପ୍ରକାରେ ମୁଁ ମାରିତ କଲି ଇଛା
କେଭେ ସେ ନ ମରଇ ନୈକେଶୀର ବତ୍ସା ।
ବିଚାରିଲି ପଛେ ଏ ନବରେ ପଡ଼ିଥାଉ
ଛାଡ଼ି ଦେଲେ ଜଗତ ଏ ନ ରଖିବ ଆଉ ।
ସହସ୍ରେ ବରଷ ହେଲା ଏ ଯେ ଅଛି ବନ୍ଦି
ପ୍ରତିଦିନ ଦାସୀଏ ଉଚ୍ଛିଷ୍ଟ ଦ୍ୟନ୍ତି ଛନ୍ଦି ।
ଦାସୀଙ୍କ ଉଚ୍ଛିଷ୍ଟରେ ଜୀବନ ଅଛି ଧରି
ଅତି ଅଲାଜୁକ ଏ ଅସୁର ଦଣ୍ଡଧାରୀ ।
ତୁମ୍ଭେ ଯେବେ ମୋତେ ମାଗିଲ ଆସି ଏବେ
ମୋହର ମନେ ତାକୁ ଦୟା ନାହିଁ କେଭେ ।
ମଲେ ମରୁ ପଛେ ଜୀଇଲେ ଜୀଇଥାଉ
ଏତେ ବୋଲି ବଚନ ସେ କହିଲେକ ଯହୁଁ ।
ଏହୁ ବନ୍ଦୀର ଥିଲେ ଜଗତ ହୋଏ ଶାନ୍ତି
ତୁମ୍ଭେ ଯେବେ ମୁକୁଳାଇ ନେବ ହେ ପୌଲସ୍ତୀ
କଥାଏ କହିବି କରିବ ଯେବେ ସତ୍ୟ
ଆଉଥରେ ୟାକୁ ନ କରିବ ମୁକୁଳିତ ।
ଏହାର ସକାଶେ ଯେବେ ଆସିବ ମର୍ତ୍ତ୍ୟପୁର
ଅଧର୍ମରେ ଗ୍ରାହୀର୍ଯ୍ୟ ହେବଟି ମୁନିବର ।
ତପକଲା ସୁକୃତ ତୁମ୍ଭର କ୍ଷୟେ ଯିବ
ସପ୍ତ ଜନ୍ମ ପରିଯନ୍ତେ ଅସୁର ଜନ୍ମ ହେବ ।
ଏଡ଼େ ଦୁଷ୍ଟଜନକୁ ଅବଶ୍ୟତ ମାରି
ଆଉ ବେଳେ ଏହାକୁ ଦୟା ଯେ ନ କରି ।
ଶୁଣିଣ ମୁନିବର ପରମ ତୋଷ ହେଲେ
ତୋହର କଥା ନିଶ୍ଚେ ପାଳିବି ବୋଇଲେ ।
ଶୁଣିକରି ନୃପତି ପରମ ତୋଷ ହୋଇ
ମୁନିଙ୍କର ଚରଣେ ନମିଲେକ ଯାଇ ।
ଦଶାନନକୁ ଛାଡ଼ିଲେ ନିଅ ତୁମ୍ଭେ ନାତି
ତୁମ୍ଭେ ଦେବତାଏ ସିନା କର ହେ ଅନୀତି ।
ଏତେ ବୋଲି ଭଣ୍ଡାରୁ ଆଣିଲା ଲଙ୍କସାଇଁ
ଘେନିଣ ଆସିଲା ସେ ବନ୍ଧନ ତାର ଫେଇ ।
ପୌଲସ୍ତୀ ମୁନିଙ୍କ ଛାମୁରେ ନେଇ ଦେଲା
ଭୋ ମୁନି ତୋର ନାତିକି ନିଅ ହୋ ବୋଇଲା ।

ଏବେ ତିଆର ଯାକୁ ଯେ ନକରୁ ଦୁଷ୍ଟପଣ
ଅନ୍ୟାୟ ଆଶ୍ରମେ କିମ୍ପା କରେ ଏଡ଼େ ଜଣ ।
ତପକରିଣ ଏ ଯେ ପାଇଲା ଏଡ଼େ ଶିରୀ
ଏବେ କିପାଁ ଲୋକଙ୍କୁ ମାରଇ ଦଶଗିରି ।
ତୁହି ନ ତିଆରିଲେ ବିଶ୍ରବାର ସୁତ
ଭଲ ପଣ କଲେ ସିନା ଜଗତେ ବିଖ୍ୟାତ ।
ତିନିପୁରେ ବିଶୁଦ୍ଧ ଯେ ଦିଶଇ ମୂର୍ଦ୍ଧନୀ
ମାତା ଗୁଣ ଘେନି ଅସୁର ହେଲା ପୁଣି ।
ଦେବଶାସ୍ତ୍ରେ ନିର୍ଜିତା ଅଟେ ବିଦ୍ୟମାନ
ସେ କଥା ଜାଣୁ ଜାଣୁ କରେ କଥା ଆନ ।
ଏଠାରୁ ହେ ମହାମୁନି ଘେନି ଯାକୁ ଆସି
ଯେମନ୍ତେ ସୁଜନ ପଣେ ଲୋକେ ପରଶଂସି ।
ସେ କଥା ନ କରିଲେ ବିଶର୍ବାର ସୁତ
ଅନୀତି ଆଚରିଲେ ଅଳପେ ହେବହତ ।
ଏତେ ବୋଲି ରାବଣଙ୍କୁ ଆଣି କରି
ସମଦରଶୀ କରି କହଇ ପୁର ସରି ।
ଯାଅତୁ ଲଙ୍କପତିରେ ନିଜରାଜ୍ୟ ଦେଖ
ପୌଲସ୍ତୀ ଆସିଣ ସିନା ରଖିଲେ ତୋରମୁଖ
ଅସୁରୁଣୀ ଯେବେ ତୋ ମାତା ନୋହିଥାନ୍ତା
ଏଡ଼େ ଦୁଷ୍ଟପଣ ତୋ କାହୁଁ ଜାତହୋନ୍ତା ।
ତୋହ ସକାଶରୁ ପିତା ତୋର ଯଶ ନେଲେ
ତିନିପୁର ମଧ୍ୟରେ ନିନ୍ଦା ବିକାଶିଲେ ।
ଆଉବେଳେ ଦୁଷ୍ଟପଣ ନକରିବୁ ତୁହି
ଅଳପକେ ନାଶଯିବୁ ନ ରହିବ ଦେହୀ ।
ଯାଇତ ଇଚ୍ଛୁକ ମନ ହେଲା ଦଶାନନ
ମନରେ ସୁମରିଲା ପୁଷ୍ପକ ବିମାନ ।
ତତକ୍ଷଣେ ଯାନ ଯେ ହେଲା ଉପଗତ
ସେଥିରେ ଆସିଛନ୍ତି ସଇନ୍ୟ ବହୁତ ।
ଯେତେବେଳେ ରାବଣ ପଡ଼ିଲା ବନ୍ଧନ
ଅନାସ୍ତ ହୋଇଲେ ତାର ଚତୁରଙ୍ଗ ସୈନ୍ୟ ।
ବାକି ଯେତେକ ଥିଲେ ବସିଲେ ଯାଇଁ ରଥ
ପବନ ବେଗରେ ଉଡ଼େ ଦୈବରଥ ।
ସହସ୍ରାର୍ଜ୍ଜୁନ ତାକୁ ଧରି ମନକଲା
ରାବଣଙ୍କୁ ରଖିବାରୁ ସେ ରଥକୁ ନ ଗ୍ରହିଁଲା ।
ବିଚ୍ଛରିଲା ମୂଳ ଛେଦିଲେ ବୃକ୍ଷ ସରି
ଦୈତ୍ୟଙ୍କର ସରଦାର ଅଟେ ଦଶଗିରି ।
ମୂଳରୁ ମାଇଲେ ସିନା ସରିଯାଏସବୁ
ପଳାଇଲା ଲୋକଙ୍କୁ କିପାଁ ଗୋଡ଼ାଇ ମାରିବୁ ।
ଏତେ କହି ରାବଣଙ୍କୁ ଧରି ଘେନିଗଲା
ପୁଷ୍ପକ ବିମାନ ସେଠାରୁ ଚଳିଗଲା ।
ଶୁକ, ସାରଣ ଦୁହେଁ ଅଟନ୍ତି ବୁଦ୍ଧିବନ୍ତ
ସେ ବୋଇଲେ ନ ମରିବ ବିଶର୍ବାର ସୁତ ।
ଯଦ୍ୟପି ଧରିନେଲା ସହସ୍ରାର୍ଜ୍ଜୁନ
ଉପାୟେ କରି ପୁଣ ଆସିବ ଦଶାନନ ।
ବ୍ରହ୍ମା, ପୌଲସ୍ତୀ ଯାହାଙ୍କୁ ଅଟନ୍ତି ସାହା ପକ୍ଷ
ମୁକୁଳି ଆସିବତ ବିଶ୍ରବାର ବସ୍ଥ ।
ବହୁତ ମାୟା ଜାଣଇ ମନ୍ଦୋଦରୀ କାନ୍ତ
ପୌଲସ୍ତୀ ଅଟନ୍ତି ତାହାର ବଡ଼ତାତ ।
ସାନ ନୁହଁଇ ଯେ ଲଙ୍କାଗଡ଼ ରାଜ
ଉପାୟ କରି ଆସିବ ବିଶ୍ରବା ତନୁଜ ।
ଏତେକହି ପୁଷ୍ପକ ଯାନ ଘେନିଗଲା
ଲଙ୍କାଗଡ଼ରେ ସେ ଯାଇଣ ରହିଲା ।
ସହସ୍ରେ ବର୍ଷ ବନ୍ଦୀରେ ରହିଲା ଲଙ୍କସାଇଁ ।
ସୁମରିଲା ମାତ୍ରକେ ବିମାନ ତାରହୋଇ ।
ବଡ଼ତାତଙ୍କୁ ସେ ସହସ୍ରେ ପ୍ରଳମ୍ବିତ ହୋଇ
ମୁନିଙ୍କି ସହସ୍ରାର୍ଜ୍ଜୁନ ଧନ ଦେଇ ।
ସେଠାରୁ ଦଶାନନ ପୁଷ୍ପକ ଚଢ଼ିଲା
ଆନନ୍ଦ ହୋଇଣ ସେ ମୁନିଙ୍କି ପ୍ରଶଂସିଲା ।
ପୌଲସ୍ତୀ ମହାମୁନି ସ୍ୱର୍ଗପୁର ଗଲେ
ମୁକୁଳାଇ ଦେଲି ବୋଲି ବ୍ରହ୍ମାଙ୍କୁ କହିଲେ ।
ବୋଇଲେ ସହସ୍ରାର୍ଜ୍ଜୁନ ବହୁତ ନିନ୍ଦା କଲା
ଦୁଷ୍ଟ ଲୋକଙ୍କୁ କିମ୍ପା ଖଲାସ ଦିଆଗଲା ।
ସଂସାର କରିବାର ବିଧାତାର ସିନା
ସେ ଯେବେ ଅଧର୍ମରେ ପ୍ରବେଶ ହେଲା କିନା
ଦଶଗ୍ରୀବ ସକାଶରୁ ବହୁତ ଦୁଃଖ ହେବ
ଅସୁର ପୁରରେ ଦେବଙ୍କ ସଙ୍ଗରେ ରହିବ ।
ବାସୁଦେବଙ୍କୁ ସୁମରିଲେ ତାତ ନୋହିବ କ୍ଷୀନ୍ନ
ସମସ୍ତଙ୍କ ଅଭିମାନ ସହିବ ବେଦବ୍ରହ୍ମ ।
ମୋତେ ବୋଇଲେ ସେ ନୃପତି କୁଳମଣି
ବୋଇଲା ଆଉଥରେ ନ ଆସହେ ମହାମୁନି ।
ଦୁଷ୍ଟ ଅସୁରକୁ ମୁକୁଳାଇ ନେଲ
ତୁମ୍ଭର ଉପକାର ଏହାକୁ ଅଟେ ଶଲ ।

ଆଉଥରେ ଯେବେ ରାବଣ କଥାରେ ଆସିବ
ତାହାର ବଦଳରେ ତୁମ୍ଭେ ଅସୁର ହୋଇବ ।
ଏତେ କହି ପଉଳସ୍ତୀ ନିଜପୁରେ ଗଲେ
ଲଙ୍କାରେ ରାବଣ ମିଳିଲା ଯାଇ ଭଲେ ।
ଯେତେବେଳେ ଗଲା ଲଙ୍କାଗଡ଼ ରାଜା
ଆଗରେ ବାଜିଲା ତାର ଦୁନ୍ଦୁଭୀର ବାଜା ।
ଦେଖିଣ ହସିଲେ ମାହେଶ୍ୱରୀ ପୁର ଲୋକେ
ସାନ ନୁହେଁ ବୋଲି ବିଚାର କଲେ ଥୋକେ ।
ନିର୍ଲ୍ଲଜ୍ଜ ଲୋକ ଏହି ସଲଜ୍ଜ ନୁହଇ
ସହସ୍ରେ ବରଷ ହେଲା ବନ୍ଦୀରେ ଥିଲା ଏହି ।
ଦାସୀଙ୍କର ଉଚ୍ଛିଷ୍ଟ ଖାଏ ପ୍ରତିଦିନ
ଖଲାସ ହେବାରୁ ତାର ଚାତୁରୀ କଥାଶୁଣ ।
କେ ବୋଲେ କପିଳାସ ପର୍ବତ ଉପାଡ଼ିଲା
କେ ବୋଲଇ କୁବେରକୁ ସଂଗ୍ରାମେ ଜିଣିଲା ।
ଦେବତାଏ ଡରନ୍ତି ଯାର ମୁଖ ଦେଖି
ତ୍ରୈଲୋକ୍ୟର ବୀର ଅଟେ ମନ୍ଦୋଦରୀ ପତି ।
ଅଗ୍ନିରେ ନ ପୋଡ଼ଇ ଖଡ଼ଗେ ନ ଛିଡ଼ଇ
ଜଳରେ ନ ବୁଡ଼ଇ ପବନେ ନ ଉଡ଼ଇ ।
ପ୍ରସନ୍ନ ହୋଇଣ ଯାକୁ ବ୍ରହ୍ମା ବର ଦେଲା
ତେଣୁ ଏ ସକଳ ରାଜାଗଣଙ୍କୁ ଜିଣିଲା ।
କ୍ଷତ୍ରୀଙ୍କି ଦେଖିଲେ ଏ କରେ ଗରଜନ
ସାନ ଲୋକ ଏହୁ ଯେ ନୁହେଁଟି ରାବଣ ।
ଏମନ୍ତ ବିଚାର ଯେ କରନ୍ତି ନରନାରୀ
ଏଥୁ ଅନନ୍ତରେ ରାୟେ ଦଶଶିରି ।
ସେଠାରୁ କେତେହେଁକ ଦିନ ବହିଗଲା
ପୁଣି ସେ ଦେବଙ୍କର ସଙ୍ଗରେ ଲାଗିଲା ।
ଲଙ୍କାରେ ବିଜେକଲା ବିଶ୍ରବାର ସୁତ
ନଗ୍ରରେ ଉତ୍ସବ ସେ କଲାକ ବହୁତ ।
ବିମାନରୁ ଓହ୍ଲାଇ ଭିତର ପୁରଗଲା
ଅଭିମାନେ କଥା ସେ କାହାକୁ ନ କହିଲା ।
ଯେତେକ ସୈନ୍ୟ ସଙ୍ଗରେ ଯାଇଥିଲେ ତାର
ସଭିଙ୍କି ମନାକଲା ଲଙ୍କାର ମହୀପାଳ ।
ଅବେଭାର କଥା ବୋଲି ଗୁପତେ କରାଇଲା
ଆଗହୁଁ ଲଙ୍କାରେ ଖବର ହୋଇଥିଲା ।
ବିଭୀଷଣ କହଇ ଶୁକ, ସାରଣେ ଚାହିଁ
ଗୁପତ କଥାକି ଆଜକୁ ଅଛି ରହି ।
ଜମ୍ବୁଦ୍ୱୀପ ମଧ୍ୟରେ ଯେତେକ ଲୋକଛନ୍ତି
ଚନ୍ଦ୍ର, ସୂର୍ଯ୍ୟଙ୍କ ଠାରେ କଳଙ୍କ ଲାଗନ୍ତି ।
ସେହିପ୍ରାୟେ ଏ ପୃଥ୍ୱୀରେ ହାର ଜିଣିବାର
ଏହାଠାରେ ସେକଥାକୁ ଦୋଷ ଯେ ନଧର ।
ଅସଲ ନିନ୍ଦାକଥା ଏହାର ଯେ ଅଛି
ନିଶ୍ଚେଁ ଏହା ମୃତ୍ୟୁ ଏହା ହାତରେ ଲେଖିଛି ।
ଜାଣୁ ଜାଣୁ ଯଦି ଖାଇବ ଏହୁ ବିଷ
ନିଶ୍ଚୟେ କୁଳ ଏହାର ହେବ ଧୂଳି ପାଂସ ।
ଏଥୁ ଅନନ୍ତରେ ରାୟେ ଦଶାନନ
ସଭା କରି ବସିଅଛି ଲଙ୍କାର ଆସ୍ଥାନ ।
ମନ୍ତ୍ରୀ ଅମାନାତ୍ୟ ଚତୁରଙ୍ଗ ସୈନ୍ୟ
ସମ୍ପର୍ବରେ ବସିଛି ରାବଣ ଆସ୍ଥାନ ।
ଶୁକ, ସାରଣଙ୍କୁ ପଚାରେ ପୁଣ ରାୟେ
ନବଖଣ୍ଡ ମେଦିନୀ ମୁଁ ସାଧିଲି ଏକାଏ ।
ମୋର ତହୁଁ ବଳୀୟାର କେହୁ ଅଛି ଆନ
କେବଣ ରାଜା ମୋତେ ସମରେ ବଳି ପୁଣ ।
ଶୁଣିଣ ଦୁଇମନ୍ତ୍ରୀ ଯୋଡ଼ନ୍ତି ବେନି କର
ତୁମ୍ଭେ ଯାହା ପଚାରିଲ ଶୁଣ ସେ ବେଭାର ।
ତୁମ୍ଭର ସମାନେ ଏଥି ନାହିଁ ବଳୀୟାର
ଏକା ଜଣେ ଅଛି ଯେ କିସ୍କିନ୍ଧ୍ୟା ଈଶ୍ୱର ।
ବାଳି ବୋଲି ରାଜନ ଯେ ବାନର ଅଧିପତି
ଦିନକରେ ବୁଲି ପାରେ ସପତ ଦ୍ୱୀପ ପୃଥ୍ୱୀ ।
ଇନ୍ଦ୍ରଙ୍କର ବୀର୍ଯ୍ୟରେ ସେ ହୋଇଲା ସମ୍ଭୁତ
ଖଡ଼ଦ ନାମରେ ତାର ଅଟଇ ନିଜତାତ ।
ଗଉତମ ଋଷିଙ୍କର ବର ପରସାଦେ
ଜମ୍ବୁଦ୍ୱୀପ ବୁଲି ସେ ସାଧେ ଅପ୍ରମାଦେ ।
ଅକଣ୍ଟକ ରାଜ୍ୟ ସେ କରେ ଘୋର ବନେ
କୀରତି ବିସ୍ତାର ତାର ଚଉଦ ଭୁବନେ ।
ସେହି ସଂଗ୍ରାମ କରି ପାରେ ତୁମ୍ଭ ଭଲେ
ଅନ୍ୟ କେ ଭାର୍ଜନ ଅଛି ତୁମ୍ଭଙ୍କୁ ମହୀରେ ।
ଶୁଣି କରି ରାବଣ ଆସ୍ଥାନୁ ଉଠିଲା
ପୁଷ୍ପକ ଯାନ ପରେ ଯାଇଣ ବସିଲା ।
ଚତୁରଙ୍ଗ ବଳରୁ କିଛି ନେଲା ସଙ୍ଗେ
ସେଦିନ ବାହାର ସେ ହେଲା ରଣରଙ୍ଗେ ।
ଆକାଶରେ ଚଳିଲା ପୁଷ୍ପକ ନାମେ ଯାନ
କିସ୍କିନ୍ଧ୍ୟା ନଗ୍ରରେ ପ୍ରବେଶ ତତକ୍ଷଣ ।

ଭୂମି ଉପରେ ନେଇ କଲା ରଘୁବର
ଦେଖିଣ ଆଶ୍ଚର୍ଯ୍ୟ ସେ କିଷ୍କିନ୍ଧ୍ୟା ବାନର ।
ବାଳିର ମନ୍ତ୍ରୀ ଯେ ମିଳିଲେକ ଆସି
ତାହାକୁ ଦଶଗ୍ରୀବ କହିଲାକ ତ୍ରାସି ।
ତୁମ୍ଭେ ଅମାତ୍ୟେ କି ନଜାଣ ହେ ମୋତେ
ମୁହିଁ ଦଶଗ୍ରୀବ ବିଦିତ ଏ ଜଗତେ ।
ପୃଥ୍ୱୀର ରାଜାଙ୍କୁ ମୁଁ ଜିଣିଲି ଭୁଜ ବଳେ
ବାଳିର ପ୍ରତାପ ମୁଁ ଶୁଣିଲି କର୍ଣ୍ଣରେ ।
ସମର ମାଗିବାକୁ ମୁଁ ଆସିଛି ବିମାନେ
କେଣେ ଅଛି ନୃପତି ଦେଖାଅ ବହନେ ।
ରଣରେ ରଣରଙ୍କା ହୋଇଅଛି ମୁହିଁ
ତାର ସଙ୍ଗେ ରଣ କଲେ ମୋର ମନଶାନ୍ତିହୋଇ ।
ରାବଣ ବାଣୀ ଶୁଣି ବୋଲନ୍ତି ଅମାତ୍ୟେ
ତୁ ଯାହା ବୋଇଲୁ ବିଶ୍ରବା ଋଷି ସୁତେ ।
ବାଳି ରାଜା ମହିମା କି ଶୁଣିଲା ତୋର ନାହିଁ
ତିନିପୁରେ ପ୍ରତାପୀ କପିକୁଳ ସାଇଁ ।
ରଜନୀ ପ୍ରଭାତରୁ ଚଳେ କପି ସାଇଁ
ସନ୍ଧ୍ୟା ସାରି ଆସେ ଖଡ଼ୁଦ ତନୟୀ ।
ପୂର୍ବର ସମୁଦ୍ରରେ କରଇ ତର୍ପଣ
ପଶ୍ଚିମ ସମୁଦ୍ରକୁ ଚଳେ କପିରାଣ ।
ସୂର୍ଯ୍ୟ ଦେବତା ଉଦେ ହୋନ୍ତି ତେତେବେଳେ
ତର୍ପଣ କରି ସେଠାରୁ ଆସେ ତତକାଳେ ।
ତହୁଁ ଦକ୍ଷିଣକୁ ଚଳେ ନୃପସାଇଁ
ଦେବ ପିତୃ ଅର୍ଥରେ ଜଳଦାନ ଦେଇ ।
ଉତ୍ତର ଦିଗକୁ ସେ କରଇ ଗମନ
ସେଠାରେ ସାରନ୍ତି ସନ୍ଧ୍ୟା ତର୍ପଣ ବିଧାନ ।
ବାଳୀ ବୀରକିଷ୍କିନ୍ଧ୍ୟାରେ ପ୍ରବେଶ ତେତେବେଳେ
ଘଡ଼ିଏ ବେଳ ହୋଇଥାଏଟି ସେତେବେଳେ ।
ଘଡ଼ିକରେ ଋରି ସମୁଦ୍ରେ ବୁଲଇ
ସେ ବାଳି ରାଜାକି ତୋତେ ବଳରେ ଲେଖଇ ।
ସେଠାରୁ ଆସି ସେ ନିଜପୁରେ ରହେ
ବଳରେ ବଡ଼ ପର୍ବତ ଉପାଡ଼ି ଫିଙ୍ଗି ଦିଏ ।
ଗିରି ପଡ଼ିଲା ବେଳେ ପାତଇ ମୂର୍ଦ୍ଧନୀ
ଗିରି ପଡ଼ି ଚୂନା ହୋଏ ବାଳି ବଳରେ ପୁଣି ।
ଏ ପୃଥ୍ୱୀ ରାଜାଙ୍କୁ ସେ ଜିଣିଛି ଭୁଜବଳେ
କ୍ଷତ୍ରୀ ସମ ତାକୁ ନାହିଁ କେ ରବିତଳେ ।

ବାଳିର ବଳ ଅଟେ ଦେବଙ୍କୁ ଅଗୋଚର
ମୁଣ୍ଡ ମାରି ପର୍ବତ ସେ କରି ପାରେ ଚୁର ।
ଋଲନ୍ତେ ମେଦିନୀ ଯେ ଟଳମଳ କମ୍ପେ
ଆକାଶକୁ ସେ କ୍ଷତ୍ରୀ ଶତେ ଯୋଜନ ଧାପେ ।
ଏତେ ବଳ ବହିଛି ଯେ କିଷ୍କିନ୍ଧ୍ୟାର ପତି
ତାହା ତୁଲେ କିମ୍ପା ତୁ ଯେ ହୋଇବୁ ଅପ୍ରୀତି
ଦକ୍ଷିଣ ତଟକୁରେ ଯାଇଅଛି ଏବେ
ତହିଁକି ଚଳ ତୁରେ ସମର କରୁ ଯେବେ ।
ଶୁଣିଣ ରାବଣ କୋପରେ ଥରହର
କାଳସର୍ପ ଜାଣିଣ ଉଭାରି ଦଶଶିର ।
ଗର୍ଜ୍ଜିଣ ବୋଇଲା ନ ଜାଣୁ କିରେ ମୋତେ
ବାଳିର ମହିମାକୁରେ କହ ତୁମ୍ଭେ କେତେ ।
ତାଠାରୁ ସହସ୍ର ଗୁଣେ ଅଟେ ମୋର ବଳ
କ୍ଷତ୍ରୀ ସମ ମୋତେରେ ନାହାନ୍ତି ରବିତଳ ।
କପିଳାସ ପର୍ବତ ମୁଁ ଉପାଡ଼ିଲି ହେଳେ
କୁବେରକୁ ଜିଣି ମୁଁ ଯାନ ଆଣିଲି ବଳେ ।
ମରୁତ ରାଜା ନ ପାରି କରେ ସନମାନ
ଅଯୋଧ୍ୟାରେ ମୁଁ ମାଇଲି ଅରନ୍ୟ ରାଜନ ।
ସକଳ ରାଜାଙ୍କୁ ମୁଁ ଅଇଲି ପୁଣ ଜିଣି
ଏ ମହୀମଣ୍ଡଳେ ମୋତେ ସମ କେ ଅଛି ପୁଣି ।
ବାନର ବାଳି ଯେବେ ପଡ଼ିବ ମୋରେ ଭେଟ
ତେବେ ସିନା ଜାଣିବା ଉତ୍ତମ କନେଷ୍ଟ ।
ରାବଣ ପ୍ରତିଜ୍ଞା ଶୁଣି କହିଲେ ମନ୍ତ୍ରୀବର
ଶତେ ମୁଖା ରାବଣ ଆସିଲା ଏହିଠାର ।
ମୋହର ହସ୍ତେ ମୁଥେ ଖାଇ ସେ ପଳାଇଲା ।
କିଛିଦିନେ ସହସ୍ରମୁଖା ରାବଣ ଅଇଲା ।
ତାକୁ ଦେଖି ବାଳିରାଜା ମାଇଲା ଋପୋଡ଼ା
ପଳାଇଣ ଗଲା ସେ ନରହି ଏଠାରେ ।
ସହସ୍ରାର୍ଜ୍ଜୁନ ରାଜା ଏଥିକି ଅଇଲା
ଗିରି ଉପାଡ଼ନ୍ତେ ସେ ଦେଖି ପଳାଇଲା ।
ପର୍ଶୁରାମ କ୍ଷତ୍ରୀ ଯେ ଅଇଲେ ଏକା ବେଳେ
ବାଳି ତାକୁ ଦେଖି ବୋଲେ ଛେଦ ସପ୍ତଶାଳେ ।
ଛେଦି ନ ପାରିଣ ସେହୁ ଫେରି ଗଲେ
ଶୁଣସିରେ ରାବଣ ବାଳି ବଳ ତୁରେ ।
ଶୁଣିଣ କ୍ରୋଧ ଯେ ହେଲା ଦଶଶିର
ଡରିଣ ମନ୍ତ୍ରୀ ଗଣେ କହିଲେ ସଧୀର ।

ବୋଇଲେ ଦଶଗ୍ରୀବ ନ କରତୁ କ୍ରୋଧଭର
ନୃପତିଙ୍କ ସଙ୍ଗରେ ସିନା ବିବାଦ ତୋହର ।
ତୋର ଯେବେ ଯୁଝିବାକୁ ମନରେ ଅଛିପୁଣ
ଦକ୍ଷିଣ ସମୁଦ୍ରକୁ କର ତୁ ଗମନ ।
ସନ୍ଧ୍ୟା କରୁ ଅଛି ଯେ ବାଳି ମହାରାଜା
ବେଗ୍ରରେ ତୁହି ଯାଅ ଲଙ୍କା ଗଡ଼ ରାଜା ।
ଶୁଣିଣ ଦଶଗ୍ରୀବ ପୁଷ୍ପକ ଆରୋହିଲା
ଦକ୍ଷିଣ ଦିଗକୁ ବେଗ୍ରରେ ଚଳିଗଲା ।
ସମୁଦ୍ରର କୂଳେ ଦେଖେ ବାଳି ରାଜା
ସନ୍ଧ୍ୟା କରୁଅଛି ସେ ଖଡ଼ଦ ତନୁଜା ।
ରାବଣ ବିମାନ କଲା ନେଇ ତଳେ
ବିଚ୍ଚରିଲା ଧରିବି ତର୍ପଣର ବେଳେ ।
ଏତେ ଭାଳି ସେ ଯେ ପିଠିକତିକି ଗଲା
ଯାଇଁ ସେ ବିଂଶଭୁଜେ ଆକର୍ଷି ଧଇଲା ।
ଜାଣି କରି ବାଳି ପଛକୁ ଦେଲା ହାତ
ବାମଭୁଜ କାଖତଳେ ଯାକିଲା ଦଶମାଥ ।
ଯାବେ ପଡ଼ି ଲଙ୍କପତି ନ ପାରଇ ଚଳି
ସନ୍ଧ୍ୟା ତର୍ପଣ ସାରିଣ ଅଇଲା ବେଗେ ବାଳି ।
ଦକ୍ଷିଣ ସମୁଦ୍ରରୁ ପୂର୍ବ ସମୁଦ୍ରେ ଯାଇ
ସ୍ନାନ ସନ୍ଧ୍ୟା ତର୍ପଣ ବେଗେ ସେ ବଢ଼ାଇ ।
ପୂର୍ବଦିଗୁଁ ଫେରିଣ ଉତ୍ତର ଦିଗେ ଗଲା
ନିତ୍ୟକର୍ମ ସାରିଣ ସନ୍ଧ୍ୟା ବଢ଼ାଇଲା ।
ପଶ୍ଚିମ ସମୁଦ୍ରରେ ପ୍ରବେଶ ହୋଇଲା
ନିତ୍ୟକର୍ମ ସାରି କିଷ୍କିନ୍ଧ୍ୟା ନଗ୍ରରେ ମିଳିଲା ।
ବାହୁଡ଼ି ଅନ୍ତଃପୁରେ ବାଳି ପରବେଶ
ଲୁଗା ପାଲଟନ୍ତେ ପଡ଼ିଲା ବିଶର୍ବାର ଶିଷ୍ୟ ।
ରାବଣକୁ ଚ୍ଛହିଁଣ କୋପରେ ବୋଇଲା
କିମ୍ପାଇଁ ଦଶାନନ ଏହା ତୁ କଲୁ ଭଲା ।
ଲାଜରେ ଲଙ୍କପତି ନ ଦିଏ ଉତ୍ତର
ବାଳିକି ପ୍ରଶଂସା କରଇ ବିଂଶକର ।
ବୋଇଲା କ୍ଷତ୍ରିଙ୍କର ଅଟୁ ଶିରୋମଣି
ମନ କଲେ ଜିଣି ପାରିବୁ ଶୂଳପାଣି ।
କପିଳାସ ପର୍ବତକୁ ଉପାଡ଼ିଲି କରେ
ତୁହି ମୋତେ ଯାକିଲୁ କାଖର ଭିତରେ ।
ଆଝୁଁ ବାନରେଶ୍ୱର ହେ ଅଟ ମୋରମିତ
ଯେ ତୋତେ ପୀରତିରେ ସମରେ ଅଟେହିତ ।

ଶୁଣିଣ ବାନରେଶ୍ୱର ସନ୍ତୋଷ ହୋଇଲା
ଅନେକ ଗଉରବ ସେ ରାବଣକୁ କଲା ।
ପ୍ରୀତି କରିଣ ସେ ରୁହାଇଲା ମାସେ
ଛଡ଼ାଛଡ଼ି ନୋହିଲେ ସେ ରାତ୍ରହିଁ ଦିବସେ ।
ରାବଣ ବୋଇଲା ତୁମ୍ଭେ ଶୁଣ ହେ ବାଳିରାୟେ
ଆଜକୁ ତିରିଶିଦିନ ମୁଁ ଲଙ୍କା ଛାଡ଼ି ଆଏ ।
ତୁମ୍ଭର ଭାବରେ ମୁଁ ରହିଲି ଏତେଦିନ
ଏବେ ମୋତେ ବିଦାଦିଅ କିଷ୍କିନ୍ଧ୍ୟା ରାଜନ ।
ମୁଁ ଯାଉଛି ନିଜ ଦେଶ ବହୁତ ଅଛି କାର୍ଯ୍ୟ
ଶୁଣି କରି ଆନନ୍ଦ ହେଲେ ବାଳିରାଜ ।
ସିଂହାସନୁ ଉଠିଣ ରାବଣକୁ କୋଳକଲା
ଅନେକ ବିଧିମତେ ଅଳଙ୍କାର ଦେଲା ।
ବୋଲେ ଭୋ ରାଜନ ଅସୁର କୁଳ ପତି
ମୋର ଭାଗ୍ୟବଳେ ତୋତେ ପାଇଲି ପୀରତି
ତୁ ମୋତେ ସ୍ନେହଭାବରେ ସଙ୍ଖୋଳା କରିବୁ
କିଷ୍କିନ୍ଧ୍ୟା ଲଙ୍କାକୁ ତୁ ଏକହିଁ ମଣିବୁ ।
ଶୁଣିକରି ରାବଣ ହୋଇଲା ଯେ ତୋଷ
ପୁଷ୍ପକ ଯାନ ସୁମରେ ବିଶର୍ବାର ଶିଷ୍ୟ ।
ତତକ୍ଷଣେ ବିମାନ ମିଳିଲାକ ଆଗେ
ତହିଁପରେ ବିଜେକରେ ବିଶର୍ବା ତନୁଜେ ।
ଯେଉଁଦିନ ରାବଣ ବାଳି ଠାରୁ ଗଲା
ଯାଆନ୍ତେଣ ନାରଦଙ୍କୁ ବାଟରେ ଭେଟିଲା ।
ଅନ୍ତରୀକ୍ଷେ ଥାଇ ଭେଟେ ମହାମୁନି
ଦେଖି ନମସ୍କାର କରେ ଦିଶଇ ମୂର୍ଦ୍ଧୁନୀ ।
ନାରଦ ବୋଇଲେ ତୁରେ କିମ୍ପା ବୁଲୁପୃଥ୍ୱୀ
ତୋତେ କ୍ଷତ୍ରିସମ ନାହାନ୍ତି କେ ଏଥି ।
ବୀରଙ୍କର ପରେ ଅଟୁ ତୁ ଶିରୋମଣି
ଜଗତ ନାଶ କିମ୍ପାରେ କରୁ ବିଂଶପାଣି ।
ଏଥିରେ କିସ ଯଶ ହେବ ଲଙ୍କରାୟେ
ମୁହିଁ ତୋତେ କହଇଁ ଯେ ଗୁପତ କଥାଏ ।
ଜଗତେ ବଳିୟାର ଅଟେ ଜନ୍ତୁପତି
ଯମକୁ ଜିଣିଲେ ହାଦେ ସମସ୍ତେ ସାଧ ହୋନ୍ତି ।
ଦେବେ ବଶ୍ୟାବର୍ତ୍ତୀ ହେବେ ତୋତେଯେବେ
ସେକାଳେ ଦଶଶିର ସୁମରି ମୋତେତେବେ ।
ଯମ ରାଜାକୁ ଜିଣିଲେ ଆନରେ କାର୍ଯ୍ୟନାହିଁ
ଶୁଣିଣ ପରମ ତୋଷ ହେଲେ ଲଙ୍କସାଇଁ ।

ମନରେ ବିଚାରଇ ନଯିବି ଆଉ ଲଙ୍କା
ମୋର ବୀରପଣ ଅଟେ ରଣରଙ୍କା ।
ଯମକୁ ମାଇଲେ ଯେ ରହିବ ବଡ଼ପଣ
ଏତେ କହି ଦକ୍ଷିଣକୁ ଗଲାକ ରାବଣ ।
ନାରଦ ମହାମୁନି ଅନ୍ତର୍ଦ୍ଧାନେ ଗଲେ
ଶ୍ରୀରାମଙ୍କ ଆଗେ ଏହା ଅଗସ୍ତି କହିଲେ ।
ଶୁଣ ଗୋ ଶାକମ୍ଭରୀ ମୁଁ କହଇ ତୋତେ
ବିଶ୍ରବା ସୁତ କଥା ପଚାରିଲୁ ମୋତେ ।
ଏଥୁ ଅନନ୍ତରେ ଯେ ଦଶଗ୍ରୀବ ରାୟେ
ଦକ୍ଷିଣ ଦିଗେ କଟକାଇ କରି ଯାଏ ।
ବ୍ରହ୍ମାଏ ଜାଣିଲେ ଯୋଗବଳରେ ପୁଣି
ମନେ ମନେ ଭାଳେଣି କଲେ ପଦ୍ମଯୋନି
ମନେ ବିଚାରିଲେ ଯମ ଯେବେ ହେବେ ନାଶ
ମୃତ୍ୟୁ ସଂସାର କେହୁ କରିବେ ଆତଯାତ ।
ଉତପତ୍ତି, ସ୍ଥିତି, ପ୍ରଳୟ ନୋହିବ
ଏକକୁ ଆରେକ ଯେ କିମ୍ପା ବଶ ହେବ ।
ଏତେ କହି ନାରଦଙ୍କୁ କତିକି ହକାରି
ପ୍ରବୋଧ କରିଣ କହେ କୁଶଧାରୀ ।
ବୋଇଲେ ପୁତ୍ରମଣିରେ ଏହିକ୍ଷଣି ଯିବୁ
ସଞ୍ଜିବନୀ ପୁରେ ଯମକୁ କହିବୁ ।
ଲଙ୍କାର ଦଇତ୍ୟ ଅଟେ ଦଶଗିରି
ରାବଣ ଯାଉଛି ଯେ ସଞ୍ଜିବନୀ ପୁରୀ ।
ସମର କରିବାକୁ ଉଦବେଗ ହୋଇ
ପୁଷ୍ପକ ଆରୋହୀ ଯେ ଚଳେ ଲଙ୍କସାଇଁ ।
ଯମରାଜାକୁ କହିବୁ ସମର ନ କରୁ
ରାବଣ ସଙ୍ଗେ ପ୍ରୀତି କରିବ ସେଠାରୁ ।
ସେ ଦୁଷ୍ଟ ରାକ୍ଷସ କେବେହେଁ ନ ମରି
ତ୍ରିଦଶ ଦେବତାଙ୍କୁ ଜିଣିବ ବଳେ ଧରି ।
ତାହାର ସଙ୍ଗେ ରଣ କଲେ ଯଶ ନାହିଁ
ମୋହର ବୋଇଲା ବୋଲି ଯମକୁ କହଯାଇଁ ।
ବ୍ରହ୍ମାର ଆଜ୍ଞାରେ ନାରଦ ଚଳିଗଲେ
ସଞ୍ଜୀବନୀ ପୁରେ ଯାଇଣ ମିଳିଲେ ।
ଦେଖିଣ ଜନ୍ତୁପତି ସିଂହାସନ ଛାଡ଼ି
ନାରଦ ମହାମୁନିଙ୍କ ପାଦତଳେ ପଡ଼ି ।
ସୁବର୍ଣ୍ଣ ସିଂହାସନେ ବସାଇ ପୂଜା କଲା
କିମର୍ଥେ ଆଗମନ ବୋଲିଣ ବୋଇଲା ।
ନାରଦ ବୋଇଲେ ମୋତେ ବ୍ରହ୍ମା ଦେଲେପେଶି
ରାବଣ ତୋର ତୁଳେ ଯୁଝିବାକୁ ଆସି ।
ଏସନ ସମୟରେ ମିଳେ ଦଶଗିରି
ନାରଦ ଅନ୍ତର୍ଦ୍ଧାନ ହେଲେ ଦେଖିକରି ।
ବିଶ୍ରବା ନନ୍ଦନ ସଞ୍ଜିବନୀ ପୁରେ ପଶି
ହୀରାମାନଙ୍କୁ କହିଲା ରାଜାକୁ କହସି ।
ଆଜ ମୁଁ ପାପୀମାନଙ୍କୁ ଉଦ୍ଧାର କରିବି
ନିଶ୍ଚୟେ ଯମରାଜାକୁ ପ୍ରାଣରେ ମାରିବି ।
ଏତେବୋଲି ସେଠାରୁ ଚଳେ ସେ ଅସୁର
ଘନ ଘନ ଚଳେ ପୁଷ୍ପକ ରହୁବରୁ ।
ଦୂରରୁ ଯମକୁ ବୋଇଲେକ ଚାହିଁ
ଆଜ ତୋର ପ୍ରାଣରେ ଘେନିବଇଁ ମୁହିଁ ।
ଏତେବୋଲି ରାଗେ ଶର ବୃଷ୍ଟି କଲା
କୋପରେ ଜନ୍ତୁପତି ମଇଁଷୀ ଚଢ଼ିଲା ।
ଦୁଇକୂଳରେ ଯେ ବାଜେ ରଣଗୋଳ
ଯମ ରାଜାକୁ ପିଠି ହେଲା ଶରବାଡ଼ ।
ନିଜ ସଇନ୍ୟ ଘେନି ଯୁଝେ ଯମରାଜା
ବାଜଇ ଟମକ ନିଶାଣ ଭେରୀ ବାଜା ।
ରାବଣ ମନ୍ତ୍ରୀମାନେ ପୁଷ୍ପକ ରଥେ ଥିଲେ
ବିଷମ ଗୋଳ ଦେଖି ସେ ଓହ୍ଲାଇ ପକାଇଲେ ।
ଏକାକେ ରାବଣ ରହେ ଶସ୍ତ୍ର ଧରି
ଜନ୍ତୁପତି ତା' ଆଗରେ ଅଛି ମିଳି ।
ଦୁହେଁ ଯୁଦ୍ଧ କଲେ ଦିବ୍ୟ ଅସ୍ତ୍ର ଘେନି
ପୃଥିବୀ କମ୍ପିଲା ଡରିଲେ ସୁରମୁନି ।
ବଳରେ ଅସଂଖ୍ୟ ରଣ ହେଲା ଟାଣ
ମାରନ୍ତି ଶରମାନ ମୁଷ୍ଟି କରି ଟାଣ ।
ଦୁହେଁ ସମକ୍ଷତ୍ରୀ ଯେ ନୁହନ୍ତି କେହିସାନ
ଏକକୁ ଆରକେ ଅଟନ୍ତି ସମ ପୁଣ ।
କୋପରେ ଜନ୍ତୁପତି ମାଇଲା ଶକତି
ହୃଦରେ ବାଜି ବ୍ୟଥା ପାଏ ଲଙ୍କପତି ।
ରାବଣ ମୁଦୁଗର ପିଟିଲାକ ନେଇ
ଅଙ୍ଗରେ ବାଜି ବ୍ୟଥା ପାଏ ଜନ୍ତୁସାଇଁ ।
ବେଳକୁ ବେଳ ଯୁଦ୍ଧ ହେଲା ଅପ୍ରମିତ
ଯମର ସଙ୍ଗେ ଦୈତ୍ୟ ଯୁଝିଲା ବହୁତ ।
କାଳ ବିନାଶ ଶତ୍ରୁ ଯେ ଦେବତାଙ୍କର ସଙ୍ଗେ
ଯୁଦ୍ଧ କରୁଅଛନ୍ତି ମହା ରଣରଙ୍ଗେ ।

ଅବିଶ୍ରାମ ଯୁଦ୍ଧ ନ ରହନ୍ତି କ୍ଷଣେ
ବେଦବର ସହିତରେ ଦେଖନ୍ତି ସୁରଗଣେ ।
ଏମନ୍ତ ସତର ଦିନ ସତର ରାତି ଯୁଦ୍ଧ
କେହି କାହାକୁ ଯେ ନ କରନ୍ତି ବଧ ।
ବିଂଶ ଭୁଜରେ ଧନୁ ଧରି ଦଶଗିରି
ଶ୍ରାବଣ ବରଷା ଜାଣି ଶରମାନ ମାରି ।
ତୀକ୍ଷ୍ଣ ନାରାଜ ଯେ ଅଟେ ତୀକ୍ଷ୍ଣମୁନା
ବାଛି କରି କାଣ୍ଡ ଯେ ବିନ୍ଧନ୍ତି ଗରିକନା ।
ମୃତ୍ୟୁ ଦେବତା ଅଙ୍ଗରେ ବାଜିଲାକ ଯାଇ
ଜ୍ଞାନ ହରାଏ ଧନୁଶରକୁ ପକାଇ ।
ପୁଣି ଦଶଗ୍ରୀବ ଯେ ପେଶେ ଦଶଶର
ଯାଇଣ ପଡ଼ିଲା ସେ ସାରଥି ଉପର ।
ଅଶ୍ୱ ଚଳାଇବାର ଛାଡ଼ି ତଳେ ଲୋଟି
ପୁଣି ଲକ୍ଷେ ନାରାଜ ବିନ୍ଧଇ ରାବଣଟି ।
ଯମରାଜାଙ୍କ ଦେହେ ସେ ବାଣ ବାଜିଲେ
ଯିବାର ବେଳେ ବାଣମାନ ଗରଜିଲେ ।
ଯମ ମୃତ୍ୟୁଦେବତା ସାରଥି ତିନିଜଣ
ରାବଣର ବାଣେ ସେ ହେଲେ ରଣଭଣ ।
ଖଳ ଖଳ ଶରୀରୁଁ ବହଇ ରକତ
ମୃତ୍ୟୁଦେବ ବୋଇଲେ ଶୁଣ ଆଦିତ୍ୟ ସୁତ ।
ମୋତେ ପେଶିଲେ ମୁଁ ରାବଣ ମାରଇ
ତ୍ରିଦଶ ଦେବଙ୍କର ମୁଁ କଷ୍ଟ ସାରଇ ।
ଏହା ତହୁଁ ବଡ଼ ବଡ଼ ଦଇତ୍ୟେ ଯେ ଥିଲେ
କେ ଅବା ମୋଠାରେ ପ୍ରାଭବ ନ ପାଇଲେ ।
ଦକ୍ଷ, କିନ୍ନର ଯେ ନାନାଦି ସିଦ୍ଧଜନ
ମୋତେ ବଶ ନାହିଁ ବାବୁ କେ ଅବା ଭାର୍ଜନ ।
ବିଶ୍ରବାର ତନୟ ଯେ ଅଟେ ଲଙ୍କପତି
ସ୍ୱର୍ଗପୁରେ ପଶିଣ ସେ କରଇ ଅନୀତି ।
ସାମାନ୍ୟ ଭରସା କି ବୋଲିବା ଏହାର
କୁବେର ପରାୟେତ ବୁଝିଲା ଦଶଶିର ।
ମୃତ୍ୟୁଦେବଙ୍କ ବଚନେ ବୋଲେ ଯମରାଣ
ସାମାନ୍ୟ କ୍ଷତ୍ରୀ ଏ ଯେ ନୁହଇ ରାବଣ ।
ତୁହି ରହିଥାଅ ମୁହିଁ ମାରଇ ଏହାକୁହିଁ
ତିନି ଭୁବନରେ ଏ ଉତ୍ପାତ କରଇ ।
ଏତେ ବୋଲି କାଳଦଣ୍ଡ ଧରେ ଜନ୍ତୁପତି
ରାବଣ କୋପଭରେ ଧଇଲା ଶକତି ।
ସୁରଗଣେ କମ୍ପିଲେ ଭୟରେ ଥରହର
ଦୁହିଁଙ୍କର ମଧ୍ୟରେ ପ୍ରବେଶ କୁଶଧର ।
ଯମକୁ ବୋଇଲା ତୁରେ କାଳଦଣ୍ଡ ଛାଡ଼
ସହସ୍ରଙ୍କ ଉପରେ ଅଟେ ବଡ଼ ଗାଢ଼ ।
ମୁହିଁ ଏହା ନିର୍ଭା କରିଅଛି ଯତ୍ନ କରି
ଏହାକୁ ପେଶିଲେ ପୁଣ ସୁରାସୁରେ ମରି ।
ରାବଣକୁ ବର ଯେ ଦେଇଣ ଅଛି ମୁହିଁ
ଦେବ ଦାନବ ହାତରେ ତାକୁ ମୃତ୍ୟୁ ନାହିଁ ।
ଯଦି ତୁ କାଳଦଣ୍ଡରେ ମାରିବୁ ରାବଣେ
ବିଅର୍ଥ ହୋଇବରେ ମୋହର ବଚନେ ।
ଦଇତ ନ ମଲେ ତ ମୋର ଏଣେ ହାନି
ଦେବତାଏ ମାୟାବୋଲି ବୋଲିବେ ମୋତେ ପୁଣି
ଛାଡ଼ ଛାଡ଼ ଆୟୁଧ ତୁ ନ କର ରୋଷ
ଏ ଲଙ୍କାପତି ହାଦେ ସାଧୁ ଯେ ତ୍ରିଦଶ ।
ଶୁଣିଣ ଜନ୍ତୁପତି ବୋଲନ୍ତି ବଚନ
ଅଧର୍ମରେ ହାଜିର ତୁମ୍ଭେ ହେଉଛ ପିତା ଜାଣ ।
ଚଉଦ ଭୁବନର ଜନ୍ତୁଙ୍କୁ ଦୁଃଖ ଦେଇ
କେତେ ସୁଖ ଅରଜିବୁ କହହେ ପିତା ତୁହି ।
ଆମ୍ଭମାନଙ୍କୁ ଯେବେ ଦେବ ହେ କଷଣ
ଆମ୍ଭର ସଙ୍ଗରେ ପାଅ ହେ ଦୁଃଖ ପୁଣ ।
ଅସୁର ବୋଲରେ ରହି ଦିନ ତୋର ଯାଉ
ତ୍ରିଦଶ ଦେବଙ୍କୁ ଏ ନ ମାନେ ବିଂଶବାହୁ ।
ମାରିବାର ବେଳେ ତୁମ୍ଭେ ମନାକରୁଅଛ ପୁଣ
ତୁମ୍ଭ ବଚନ ମାନୁ ଏହି ଦଶାନନ ।
ଶୁଣିଣ ଯମରାଜା ସଂହରେ କାଳଦଣ୍ଡ
ବ୍ରହ୍ମାଙ୍କୁ ବୋଇଲା ଯେ ପାଇଣ ବିଖଣ୍ଡ ।
ତୁ ଯେ ପିତାମହ ନ ଜାଣିବା ପଣକଲୁ
ଏଡ଼େ ଦୁଷ୍ଟକୁ କିମ୍ପା ଅଭୟେ ବର ଦେଲୁ ।
ଆବର ବୋଇଲୁ ଯେ ନ ମରିବୁ ରଣେ
ପୁଣି ତୁ ବୋଇଲୁ ମରିବୁ ବ୍ରହ୍ମବାଣେ ।
କାହାର ହସ୍ତରେ ଏ ହେବ ପୁଣି ହତ
ତୋର ନାରାଜେ ଏହାକୁ କରିବ କେହୁ ହତ ।
ଶୁଣିଣ ପିତାମହ ମନେ ମନେ ହସି
ଯମ ରାଜାକୁ ବୋଇଲେ ଶୁଣ ତୁ ଜନ୍ତୁପତି ।
ବାସୁଦେବ ଏ ଦୁଷ୍ଟକୁ ନିଶ୍ଚୟେ ମାରିବେ
ଅନେକ ଅସୁର ଘରି ରାବଣ ଏ ଯିବେ ।

ଏତେ କହି ବିଧାତା ରାବଣ ପାଶେ ଗଲେ
ହସ ହସ ହୋଇଣ ବଚନ କହିଲେ ।
ରାବଣକୁ ବୋଇଲେ ତୁ ବାହୁଡ଼ି ଯାଅସି
ମୁହିଁ ଆସିବାରୁ ତୁ ପ୍ରାଣ ପାଇଲୁସି ।
କାଳଦଣ୍ଡ ପାଶକୁ କି ତୁହିରେ ସାମର୍ଥ
ଯେଉଁ କାଳପାଶେ ନାଶ ଯାଆନ୍ତି ତ୍ରିଦଶ ।
ଶକତିକି ସମ୍ଭାଳି ତୁହି ଏଥୁଁ ଯା ଯା
ତୋତେ ସମରେ ଏବେ ହାରେ ଜନ୍ତୁରାଜା ।
ବ୍ରହ୍ମାଙ୍କ ବଚନ ଶୁଣି ରାବଣ ହେଲା ତୋଷ
ଆୟୁଧ ସମ୍ଭାଳିଲା ଯେ ବିଶ୍ରବାର ଶିଷ୍ୟ ।
ରଣଜୟ ଶଙ୍ଖ ଧରି ବାଇଲା ଆପଣେ
ତେବେ ସେ କଡିକି ଅଇଲେ ମନ୍ତ୍ରୀଗଣେ ।
ବ୍ରହ୍ମାଙ୍କୁ ନମସ୍କାର କରିଣ ଦଶଶିର
ଯମକୁ ଜିଣି ସେ ବାହୁଡ଼େ ଲଙ୍କାପୁର ।
ଅମନାତ୍ୟ ମନ୍ତ୍ରୀ ଯେ ପୁଷ୍ପକ ଯାନେଛନ୍ତି
ନିଜ ପୁରେ ଦୈତ୍ୟ ପ୍ରବେଶ ହୁଅନ୍ତି ।
ଯମକୁ ଜିଣିଲା ବୋଲି ନଗ୍ରେ ଉତ୍ସବ କଲେ
ଶୁଣିଣ ଅସୁରେ ଯେ ମୃତ୍ୟୁକୁ ନ ଡରିଲେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ରଘୁନାଥ
ଦିନେକ ପୁଷ୍ପକ ଯେ ଆରୋହେ ଦଶମାଥ ।
ମନ୍ତ୍ରୀକି ବୋଇଲା ଚଳ ପାତାଳକୁ ଯିବା
ତହିଁରେ କ୍ଷତ୍ରୀ ଦେଖିଲେ ସମର କରିବା ।
ଏତେ ବୋଲି ବିମାନେ ବସିଣ ଚଳିଗଲା
ବାସୁକୀ ରାଜାର କଟକେ ମିଳିଲା ।
ଦେଖିଲା ସେ ପୁରେ ଅତି ରମ୍ୟ ସ୍ଥାନ
ଜାଣିଣ ପଟାନ୍ତର ଶୁଦ୍ଧ ଯେ ସୁବର୍ଣ୍ଣ ।
ବାସୁକୀ ନୃପତିର ଛାମୁରେ ଯାଇଁ ମିଳି
ତିଳ ମନ୍ଦା ପ୍ରମାଣରେ ବହେ ମହୀଆଳି ।
ସହସ୍ରେ ବଦନ ଯେ ଦୁଇ ସସ୍ର ଜିଭ
ତାହାକୁ ଚହିଁଣ ଯେ ବୋଲେ ଦଶଗ୍ରୀବ ।
ଆହୋ ନାଗରାଜା ଶୁଣ ମୋର ବାଣୀ
ମୁହିଁ ଦେଖ ରାବଣ ଲଙ୍କାର ନୃପମଣି ।
ସଂଗ୍ରାମ କରିବାକୁ ଆସିଛି ତୋର ସଙ୍ଗେ
ଶୁଣି ବାସୁକୀ ରାଜା ହୋଏ ଯେ ବିଭଙ୍ଗେ ।
ପୁଣି ସେ ବାସୁକୀ ରାଜା ମନେ ବିଚାରିଲା
କପିଳାସ ଉପାଡ଼ିଲା ଏହାର ବଳେ ପରା ।
କୁବେରକୁ ଜିଣି ଯେ ପୁଷ୍ପକ ଯାନ ନେଲା
ଏବେ ଯାଇ ସ୍ୱର୍ଗରେ ଯମକୁ ଜିଣିଲା ।
ବ୍ରହ୍ମାଙ୍କର ବରେ ଏ ହୋଇଅଛି ମତ୍ତା
ଏହାକୁ ସମରେ ମୁଁ ଯେ ନୋହିବି ଶକତା ।
ତ୍ରିଦଶ ଦେବତାଙ୍କୁ ଏ ଜିଣିଲାକ ଧରି
ଯୁଦ୍ଧ କଲେ ମୁଁ ଯେ ନୋହିବି ସମସରି ।
ପ୍ରତାପ କାଳ ଏହାର ହୋଇଅଛି ଏବେ
ରାଗେଣ ସମର ମୁଁ କରିବଇଁ ଯେବେ ।
ନିଶ୍ଚୟେ ମୁଁ ହାରିବି ମୋତେ ନାହିଁ ଯଶ
ପ୍ରବୋଧି ପଠାଇଦେବି ବିଶ୍ରବାର ଶିଷ୍ୟ ।
ଏତେ ବୋଲିଣ ସେ ରାବଣକୁ କହି
ଶୁଣ ହେ ଦଶଗ୍ରୀବ ବିଶ୍ରବା ତନୟୀ ।
ଭୋ ଲଙ୍କପତି ତୁମ୍ଭେ ଅଇଲ ନଜାଣି
ମୋତେ କେମନ୍ତେ ଡାକୁଛ ସମରକୁ ପୁଣି ।
କପିଳାସ ପର୍ବତ ଉପାଡ଼ିଲା କାଳେ
ମୁହିଁ ଦ୍ୱାର ହୋଇଥିଲି ହରଙ୍କ ବକ୍ଷସ୍ଥଳେ ।
ସେହି ଠାବରୁ ଟୋଳି ଯେ ଧଇଲୁ ରାୟେ ମୋତେ
ଏବେ ମୁହିଁ ସମର କରିବି କେମନ୍ତେ ।
ସେଠାରେ ବଳ ମୋର କି ଜାଣି ନାହୁଁ ରାୟେ
ଶୁଖିଲା ପତ୍ର ଯେହ୍ନେ ଉଡ଼େ ଅଳ୍ପ ବାୟେ ।
ସଦାଶିବ ଅଙ୍ଗେ ଆମ୍ଭେ ତେସନେକ ହେଲୁଁ
ପୂର୍ବର ଭାଗ୍ୟରେ ସିନା ଜୀବନ ପାଇଲୁଁ ।
ଏତେ ତୋତେ ହାରିଲି ଜାଣିଥାଅ ମୋତେ
ଆଜଠାରୁ ଅନୁଗ୍ରହ କରିଥାଅ ମୋତେ ।
ଏତେ ବୋଲିଣ ସେ ଧନ ବସ୍ତ୍ର ଦେଲା
ନାନାଦି ଅଳଙ୍କାର ରାବଣେ ସମର୍ପିଲା ।
ପ୍ରବୋଧ ହୋଇଣ ତହୁଁ ବାହୁଡ଼େ ଦଶଶିର
ବୋଲନ୍ତି ଅଗସ୍ତୀ ଶୁଣ ହେ ରଘୁବୀର ।
ବାସୁକୀର ପୁର ଯେ ଲେଉଟି ଲଙ୍କରାୟେ
ସଂଗ୍ରାମ କରିବ ବୋଲି କ୍ଷତ୍ରିଙ୍କି ଲୋଡ଼ିଯାଏ ।
ଗମନ୍ତେ ମଣିପୁରେ ପ୍ରବେଶ ଯାଇ ହେଲା
ନିର୍ବାତ କପଟର ଛାମୁରେ ମିଳିଲା ।
ଚତୁରାଙ୍ଗ ବଳ ତାର କଳଣା ନ ଯାଏ
ରାବଣ ନିର୍ବାତ କପଟ ଭେଟହୋଏ ।
ଲଙ୍କପତି ବୋଲେ ନିର୍ବାତକପଟ ତୁ ଶୁଣ
ମୋର ସଙ୍ଗରେ ଏବେ କର ତୁହି ରଣ ।

ପୃଥିବୀ ବୁଲିଣ ମୁଁ ଆସୁଅଛି ଖୋଜି
ସବୁ କ୍ଷତ୍ରୀମାନେ ପଳାଇଗଲେ ଭାଜି ।
ତୁ ସଂଗ୍ରାମ ଦେଇଣ ମୋର ପ୍ରାଣ ରଖ
ମୁହିଁତ ରାବଣରେ ବିଶ୍ରବାର ବସ୍ତ୍ର ।
ଶୁଣି ନିର୍ବାତ କପଚ ମନରେ କୋପକଲା
ଦଶଗ୍ରୀବର ସଙ୍ଗରେ ସମର ଆରମ୍ଭିଲା ।
ଦୁହେଁ କାମରୂପୀ ଯେ ଅଟନ୍ତି ଅସୁର
ବେଳକୁ ବେଳ ସମର କଲେ ମହାଘୋର ।
ଦିବ୍ୟ ଅସ୍ତ୍ର କରିଣ ସମର ଦୁହେଁ କଲେ
କେହି କାହାକୁ ଯେ ଜିଣି ନ ପାରିଲେ ।
ମଧ୍ୟସ୍ଥ ହୋଇଣ ଯେ ଦେଖିଲେ ସଇନି
ଦୁଇ ଦୈତ୍ୟ ବୀର ଯେ ହେଲେ ଅନାଅନି ।
ଅନେକ ପ୍ରକାରେ ସେ ମାୟାଯୁଦ୍ଧ କଲେ
ମୂଷଳ ପ୍ରମାଣେ ନାରାଜ ବିନ୍ଧିଲେ ।
କ୍ଷଣେ ନ ରହନ୍ତି ଯେ ଅବିଶ୍ରାମ ଯୁଦ୍ଧ
ସ୍ୱର୍ଗରେ ଥାଇଣ ଦେଖନ୍ତି ବିବୁଧ ।
ଦୁହିଁଙ୍କର ସମର କାଣ୍ଡରେ ଘାଉଆ
ରୋଧିର ବାହାର ଯେ ବେନିଙ୍କର ହିଆ ।
ଖର ନିଶ୍ୱାସ କ୍ରୋଧରେ ଥରହର
ଆଖି ପିଛଡ଼ାକେ ପଡ଼େ ଆସି ଶର ।
ରାତ୍ର ଦିବସରେ ନୋହେ ଅବିଶ୍ରାମ
ସ୍ୱର୍ଗରେ ଦୁର୍ଲ୍ଲଭ ମଞ୍ଚରେ ଅନୁପମ ।
ଏହି ମତି ବରଷେ ବାଜେ ରଣ ଗୋଳ
ପରିଘାଇ ସମର କରନ୍ତି ବେଳୁଁ ବେଳ ।
ରାବଣ ବିଚରେ ଏଠାରେ ନାହିଁ ଜୟେ
ସେଠାରୁ ରଥ ଘେନି ପଳାଏ ଲଙ୍କରାୟେ ।
ନିର୍ବାତ କପଚ ଗୋଡ଼ାଏ ପଛକତି
ରାବଣ ବିମାନ ଶୂନ୍ୟରେ ଯାଏ ଘୋଟି ।
ଯାନ୍ତେଣ ଦେଖେ ସେ ଗୋ ଧେନୁଙ୍କୁ ଆଗର
କି ଅବା ପୃଥ୍ୱୀ ଦେବୀ ବହିଛି ଅଳଙ୍କାର ।
କେହୁ କଳା ଶ୍ୟାମଳା ଶଙ୍ଖବର୍ଣ୍ଣ ଦିଶି
କେହୁ ନେଳି କେହୁ ସୁରଙ୍ଗ ବର୍ଣ୍ଣ ଦିଶି ।
ନାନାବର୍ଣ୍ଣରେ ଗୋରୁ ଚରନ୍ତି ଗୋଧନ
ଦେଖିଣ ପରମ ତୋଷ ବିଶ୍ରବା ନନ୍ଦନ ।
ରକ୍ଷା ଲୋକମାନଙ୍କୁ ପଚାରିଲା ଦେଖି
କାହାର ଗୋଧନ ତୁମ୍ଭେ ଚରାଉଅଛ ରଖି ।

ଲୋକେ ବୋଇଲେ ବରୁଣ ଦେବଙ୍କର ଗୋରୁ
ଏ ବନରେ ସର୍ବଦାରେ ଚରନ୍ତି ଏଥିଫେରୁ ।
ଶୁଣିଣ ଦଶଗ୍ରୀବ ଯେ ସୁରଭୀଙ୍କି ଚାହିଁ
ଓଳଗି ମେଲାଇଣ ଚଳେ ଲଙ୍କସାଇଁ ।
ମନ୍ତ୍ରୀକି ବୋଇଲେ ଚାଲ ବରୁଣ ପୁର ଯିବା
ଅନେକ ଧନରତ୍ନ ସେଠାରୁ ଆଣିବା ।
ଏତେ ବୋଲିଣ ଯେ ଗମେ ସିନ୍ଧୁ ମଧ୍ୟେ
ଦେଖିଣ ଚମତ୍କାର ହେବେ ସୁର ସିଦ୍ଧେ ।
ମନୁ ବେଗ୍ରେ ରଥ ଚଳେ ଘନ ଘନ
ଯାଇଣ ମିଳିଲା ସେ ବରୁଣ ଭୁବନ ।
ଆସ୍ଥାନ କରି ବସିଛନ୍ତି ଜଳେଶ୍ୱର
ଏସନକ ସମୟେ ମିଳିଲା ଦଶଶିର ।
ବରୁଣକୁ ଚାହିଁଣ ବୋଲେ ସେ ଦଇତ୍ୟ
ମୁହିଁ ସେ ରାବଣରେ ବିଶ୍ରବାର ସୁତ ।
ସମର କରିବାକୁ ଆସିଛି ତୋର ତୁଳେ
କ୍ଷତ୍ରୀ ନ ପାଇଲି ମୁଁ ବୁଲିଲି ବ୍ରହ୍ମାଣ୍ଡରେ ।
ଯମ କୁବେର ଯେ ମରୁତେ ନାମେ ରାଜା
ସେ ମୋତେ ହାରିଣ ସମରେ କଲେ ପୂଜା ।
କ୍ଷତ୍ରୀ ସମ ମୋତେ ଯେ ନୋହିଲେ ପୁଣ କେହି
ରଣ କରିବାକୁ ଯେ ଆରତ ମୋର ଦେହୀ ।
ଅନେକ ଆଶା କରି ମୁଁ ପଶିଲି ମହାଜଳେ
ତୁ ମୋର ମନମୋହସମର ଦେଇବେଳେ ।
ଶୁଣିଣ ସିନ୍ଧୁ ରାଜା କୋପେ ପ୍ରଜ୍ୱଳିତ
ଆଜ୍ଞା ପ୍ରମାଣେ ଯେ ସୈନ୍ୟ ମିଳିଲେତ ।
ବୋଇଲା ବେଗେରେ ଅସୁରକୁ ମାର
ସହସ୍ରେ ମାଲ ବେଗେ ରଥ ସଜକର ।
ତକ୍ଷଣେ ସାରଥୀ ଯେ ଆଣିଲା ବିମାନ
ଯେବଣ ରଥେ ଯୋଚି ଅଛି ସହସ୍ର ଯାନ ।
ସୁବର୍ଣ୍ଣମୟେ ରଥ ନବରତ୍ନେ କମ
କିଜାଣି ବିଦିତ ଚନ୍ଦ୍ର, ସୂର୍ଯ୍ୟ ସମ ।
ଏମନ୍ତେ ଯତନ ଯେ ସେ ରଥ ଦିଶଇ
ବଳରାମ ଦାସ ରାମ ଚରଣେ ଖଟଇ ।
କମଳା ଯେ ଅଟନ୍ତି ବରୁଣ ଦୋହୀତା
ତାଙ୍କର ସକାଶେ ମୋର କାହିଁରେ ନାହିଁଚିନ୍ତା
ଏଥୁ ଅନନ୍ତରେ ଯେ ପାର୍ବତୀ କହେ ପୁଣ
ଏଠାରୁ କିସ ହେଲା କହ ମୋ ଆଗେଣ ।

ରାମଚନ୍ଦ୍ରଙ୍କ ଆଗରେ ଅଗସ୍ତି କିସ କହି
ଶୁଣିବାକୁ ମୋର ମନ ଶ୍ରୋତା ଯେ ଅଟଇ ।
ଈଶ୍ୱର ବୋଲନ୍ତି ପାର୍ବତୀ ଆଗେ ପୁଣ
କହନ୍ତି ଅଗସ୍ତି କଥା ଶୁଣନ୍ତି ରାମରାଣ ।
ରଥପରେ ବିଜେ ଯେ କଲେ ଜଳସାଇଁ
କରେ ଶସ୍ତ୍ରଧରିଣ ରାବଣ ମୁଖ ଚାହିଁ ।
ବୋଇଲେ ଦଇତ୍‌ରେ ଏଡ଼େକ ଅଜ୍ଞାନ
ମୋ ସଙ୍ଗରେ କେହ୍ନେରେ ଯୁଝିବୁ ଦଶାନନ ।
ମୁହିଁ ଜଳପତି ସପତ ସିନ୍ଧୁ ରାୟେ
ମୁହିଁ ମନକଲେ ପୃଥିବୀ ପ୍ରଳୟ ହୋଏ ।
ତ୍ରୈଲୋକ୍ୟର ସମ୍ପଦ ଅଛି ମୋର ତହିଁ
ମୋତେ ଆଶ୍ରେ କରିଛନ୍ତି ତ୍ରୈଲୋକ୍ୟର ସାଇଁ ।
କମଳାର ପିତା ମୁଁ ଶ୍ରୀହରିଙ୍କ ଶ୍ୱଶୁର
ମୋହର ପ୍ରତିଜ୍ଞା କିରେ ନ ଜାଣୁ ଅସୁର ।
ଗଙ୍ଗା, ଯମୁନା ମୋର ଅଟନ୍ତି ପାଟରାଣୀ
ଯମ ମୋର ଶଳା ଯେ ଶ୍ୱଶୁର ଦିନମଣି ।
ଅରକ୍ଷିତ ଦୁଃଖୀଙ୍କି ମୁହିଁ ଦୟା କରି
ମୋହର କୋପରେ ଦୁଷ୍ଟ ଦ୍ରପିଷ୍ଟ ଯାନ୍ତିମାରି ।
ଚନ୍ଦ୍ର, ସୂର୍ଯ୍ୟ ଜାତ ହେଲେ ମୋର ତହୁଁ
ଏ ପୁଷ୍ପକ ଯାନ ତୁରେ ପାଇଲୁ କାହୁଁ ।
କଉସ୍ତୁଭ ମଣି ଯେ ଅମଳାଣ ବାସ
ପାରିଜାତକ ପୁଷ୍ପ ଉଚ୍ଚୈଶ୍ରବା ଅଶ୍ୱ ।
ଐରାବତ ଗଜରେ ଲକ୍ଷ୍ମୀଧର ଶିରୀ
ବିଷ ଅମୃତ ମଦିରା ଅଷ୍ଟ ଅପସରୀ ।
ନାନାଦି ବିଦ୍ୟା ଯେ ନାନାଦି ଶାସ୍ତ୍ରମାନ
ବିବିଧ ମଉଷଧି ଯେ ଯାବତ ବିଧାନ ।
ମୋହଠାରୁ ସିନା ହୋଇଛି ସବୁଜାତ
ମୁହିଁ ଯେ ମୋହ ଫାଶୀ ବାନ୍ଧଇ ଜଗତ ।
ଛପନ କୋଟି ଜୀବ ମୋରେ ହୋନ୍ତି ବଶ
ମୁହିଁ ଯେ ଜନ୍ତୁଙ୍କର ପରମ ପୁରୁଷ ।
ଜଳହିଁ ନଥିଲେ ନବର୍ତ୍ତନ୍ତି ପ୍ରାଣୀ
ଜଳ ଅଧିପତି ମୁଁ ଅଟେ ଶିରୋମଣି ।
ମୁହିଁ ସିନା ଅମୃତ ସମସ୍ତଙ୍କୁ ଦିଅଇ
ମୁହିଁ ସେ ନାନା ପଦାର୍ଥରେ ରସ ଦେଇ ।
ମୋର ତହୁଁ ବଳିୟାର କିଏ ସେ ଅଛି ଆନ
ମୋର ସଙ୍ଗେ ଯୁଝିବୁ ତୁହୋ ଦଶାନନ ।
ଆଜ ତୋର ଜୀବନ ଘେନିବଇଁରେ ମୁହିଁ
ଏ ପୁଷ୍ପକ ଯାନ ମୁଁ କୁବେରରେ ଦେବିନେଇ ।
ଏସନେକ ବୋଲି ଯେ ଜଳଧି ନୃପବର
କ୍ରୋଧରେ ଜରଜର ଶରୀର ତାହାର ।
ରାମ ବୋଇଲେ ମୁନି ବଚନ ମୋର ଶୁଣ
ଗଙ୍ଗା ଯେ ଯମୁନା କେହୁ ଅଟନ୍ତି ବେନିପୁଣ ।
କେମନ୍ତେ ବରୁଣର ଅଟନ୍ତି ପାଟରାଣୀ
ସେକଥା ନିର୍ଣ୍ଣୟ କରି କହହେ ମୁନିପୁଣି ।
ଶ୍ରୀରାମ ବଚନେ କହନ୍ତି କୁମ୍ଭ ସୁତ
କଶ୍ୟପଙ୍କର ଦୁଇ ଭାରିଜା ସମ୍ଭୁତ ।
ହେତୀ, ପ୍ରହେତୀ ଯେ ନାମେ ଦୁଇ ନାରୀ
କଶ୍ୟପ ଋଷିଙ୍କର ଅଟନ୍ତି ମନୋହାରୀ ।
ଆଗେ ଜାତ ତାଙ୍କଠାରୁ ହେଲେ ରବିଜାଣ
ପଛେ ଜାତ ହେଲେ ଚନ୍ଦ୍ରମାଟି ପୁଣ ।
ସେ ଦୁଇପୁତ୍ରେ ଉଦେ ରାତ୍ର ଦିବସ କଲେ
ପ୍ରଜାପତିଙ୍କ ଠାରୁ ସର୍ବ ଦୋହିତା ଜନ୍ମିଲେ ।
ଚନ୍ଦ୍ରଙ୍କୁ ସତାଇଶ ରବିଙ୍କି ଦେଲେ ଦୁଇ
ଛାୟା, ମାୟା, ଦୁଇକନ୍ୟା ରବି ବିଭା ହୋଇ ।
ସେ ଦୁଇ କନ୍ୟାଠାରୁ ଗଙ୍ଗା, ଯମୁନା ଜାତହେଲେ
ସେ ଦୁଇକନ୍ୟାଙ୍କୁ ରବି ସଦାଶିବଙ୍କୁ ଦେଲେ ।
କେତେକାଳ ଅନ୍ତରେ ବଳିରାଜା ହେଲା
ବାମନ ରୂପେ ବାସୁଦେବ ଦାନ ମାଗିଗଲା ।
ସେତେବେଳେ ବଳିରାଜା ସୁରାସୁରୀ ଘେନି
ଚରଣ ଧୁଅନ୍ତେ ନଖରେ ଲୁଚି ଦୁହେଁ ପୁଣି ।
ସେଠାରୁ ସଦାଶିବ ନ ପାଇଲେ ତାଙ୍କୁ
ପ୍ରଜାପତି ଜାଣିଣ ପାର୍ବତୀ ଦେଲେ ତାଙ୍କୁ ।
ପାର୍ବତୀ ଦେଖି ହର ସନ୍ତୋଷ ହୋଇଲେ
ଗଙ୍ଗା, ଯମୁନାଙ୍କ କଥଶ ମନରୁ ପାଶୋରିଲେ ।
ସେଠାରୁ କେତେକାଳ ଗଲା ପୁଣ ବହି
ସମୁଦ୍ରେ ସ୍ନାନ କରି ଗଲେ କୁମ୍ଭ ଦେହୀ ।
ଓପ୍ରୋଧ ଛାଡ଼ିଣ ସାହେର ମାରେ ପୁଣ
ପିତାଙ୍କ ମରଣ ଦେଖି ମୋ ଦେହ କ୍ରୋଧଜାଣ
ଚଳୁକରି ମନ୍ତ୍ରରେ ପିଇଲି ସାତସିନ୍ଧୁ
ଜଳପତି ଦେଖିଣ ଭାଳେ ଇଷ୍ଟବନ୍ଧୁ ।
ନବଗଣ୍ଡା ଯୁଗଯାଏ ସାଗର ନ ରହିଲେ
ସଗର ରାଜାର ପୁତ୍ର ସାଗର ଖୋଳାଇଲେ ।

ସେ ପୁତ୍ରମାନେ କପିଳ ମୁନିରେ ଦୋଷୀହେଲେ
ମହାମୁନି ଶାପଦ୍ୟନ୍ତେ ଦହିର୍ଯ୍ୟ ହୋଇଲେ ।
ଦେବେ ବିଚ୍ଛରି ଭାଗ୍ୟରଥୀଙ୍କି ଜାତକଲେ
ତୋହର ବଂଶରେ ଭାଗ୍ୟରଥୀ ଜାତହେଲେ ।
ବଂଶ ଉଦ୍ଧାରିବାପାଇଁ ଭାଗ୍ୟରଥୀ ଗଲେ
ବାସୁଦେବଙ୍କ ଚରଣେ ବହୁତ ସେବାକଲେ ।
ବରଣମାଳା ଗଙ୍ଗା ଯମୁନାଠାରୁ ନେଲା
ବରୁଣଙ୍କ ଗଳାରେ ନେଇ ପୁଣ ଦେଲା ।
ଦିନମଣି ଆସିଣ ବିଭାକଲେ ପୁଣ
ସେହିଦିନୁ ବରୁଣ ରାଜାର ରାଣୀ ଜାଣ ।
ସାତଦିନେ ସପତ ସିନ୍ଧୁ ହେଲା ତୁଲ
ଶୁଣିଣ ଶ୍ରୀରାମ ସନ୍ତୋଷ କଲେ ମନ ।
ରାମ ପଚ୍ଛରନ୍ତି ବରୁଣ ରାବଣ କିସକଲେ
ସେକଥା ମୋର ଆଗେ କହ ମୁନିବରେ ।
ଶ୍ରୀରାମଙ୍କ ବଚନେ କହନ୍ତି ଅଗସ୍ତି
ଏକ ମନ ହୋଇ ଶୁଣ କହୁଛି ଦାଶରଥି ।
ଏତେ କହି ବରୁଣ ପେଶେ ତୀକ୍ଷ୍ଣଶର
ହସିଣ ଛେଦିଲେ ତାହା ଦଶାନନ ବୀର ।
ବୋଇଲା ବରୁଣ ତୁରେ ଅଟୁ ବଡ଼କ୍ଷତ୍ରୀ
ତୋହର ପ୍ରସାଦେ ନାଶ ଯାଇରେ ଧରିତ୍ରି ।
ତୁ ଯେବେ ନ ଥାନ୍ତୁରେ ପ୍ରଳୟ କିମ୍ପାହୋନ୍ତା
ସଂସାର କଉତୁକ କିମ୍ପାଇଁ ଭାଗୁଥାନ୍ତା ।
ତୋହର ନଥିଲେ କିମ୍ପା ରହନ୍ତା ସିନ୍ଧୁଜଳ ।
ଦେବେ, ଅସୁରେ କିମ୍ପା କରନ୍ତେ ପୁଣିଗୋଳ
ତୁ ଯେବେ ନାରାୟଣଙ୍କୁ ନ ଦିଅନ୍ତୁ ଠାବ
କିମ୍ପା ଏଡ଼େ ଅନ୍ୟାୟ କରନ୍ତେ ପଦ୍ମନାଭ ।
ତୋ ସକାଶେ ପୃଥ୍ୱୀ ଯେ ହେଲା ଖଣ୍ଡ ଖଣ୍ଡ
ତୋହର ସକାଶରେ ଭାଗଇ ବ୍ରହ୍ମାଣ୍ଡ ।
ତୋହର ଯୋଗୁଁ ସଂସାରେ ନିତ୍ୟ ଦୁଃଖପାଇ
ତୋତେ ସଂହାରି ମୁହିଁ ରଖିବି ଯେ ମହୀ ।
କଥା ହୋନ୍ତେ ସମର କରନ୍ତି ବେନିଜଣ
ବେଳୁଁ ବେଳ ସମର ହୋଇଲାକ ଟାଣ ।
ଦୁହେଁ ଦିବ୍ୟ ଅସ୍ତ୍ର ଯେ ଘେନି ଯୁଦ୍ଧକଲେ
ଏକକୁ ଆରେକ କେହି ଜିଣି ନ ପାରିଲେ ।
ଅନେକ ମାୟା ଯୁଦ୍ଧ କଲାକ ରାବଣ
ଶ୍ରାବଣ ବରଷା ଜାଣି ବିନ୍ଧିଲାକ ବାଣ ।
କ୍ଷଣକରେ ଅଦୃଶ୍ୟ କ୍ଷଣକେ ହୋନ୍ତି ଦୃଶ୍ୟ
ବ୍ରହ୍ମାବରେ ବଳିଷ୍ଠ ବିଶର୍ବାର ଶିଷ୍ୟ ।
ଓହୋବଳ ସୈନ୍ୟ ଯେ ସମର ମହାଘୋର
ବ୍ରହ୍ମାଣ୍ଡ ପୁରୁଅଛି ଯେ ମୁଖରାବ ଗୋଳ ।
ଦଇତ୍ୟେ ପ୍ରବଳ ଯେ ରିଝାଇ ଯୁଦ୍ଧକଲେ
ବରୁଣର ସଇନ୍ୟ ସମରେ ପିଠିଦେଲେ ।
ଗୋଡ଼ାଇଣ ରାକ୍ଷସେ ମାଇଲେ ବିକୋଟି
କନ୍ଧଛିଡ଼ି ଶିର ଯେ ପଡ଼ିଲା ଧରିତ୍ରୀ ।
ଝର ଝର ହୋଇଣ ଯେ ବହଇ ରକତ
ସଇନ୍ୟ ହତ ଦେଖି ବରୁଣ ଭାଳେ ଚିତ୍ତ ।
ଏଡ଼େ ବଡ଼ପଣ ଯେ ଗଲା ମୋର ନାଶ
ତ୍ରିଦଶ ଦେବତା ଯେ ମୋତେ ବୋଲିବେଟିକିସ
ରାବଣ ନିଲକ୍ଷଣ ଯେ ଜିଣିଲାକ ମୋତେ
କ୍ଷତ୍ରୀଙ୍କର ମୁଖ ମୁଁ ଚାହିଁ ବି କେମନ୍ତେ ।
ଏତେବୋଲି ରାଗେ ସେ ଶର ବୃଷ୍ଟିକଲା
ପୁଷ୍ପକ ଯାନକୁ ନାରାଜେ ଲୁଚ୍ଛଇଲା ।
ନିର୍ଘାତ ଶବଦ ଜାଣ ପଡୁଅଛି କାଣ୍ଡ
ଦୁହିଁଙ୍କର ଶରୀର ରକତେ ଖଣ୍ଡ ଖଣ୍ଡ ।
ଅସୁର ବଳଙ୍କୁ ଯେ ମାଇଲା ବିକୋଟି
ଛାଡ଼ିଣ ରାକ୍ଷସ ବଳ ପଳାଇଲେ ଧାତି ।
ରକତ ନଦୀ ଗୋଟା ସେଠାରେ ବୁହାଇଲେ
କୋଟି କୋଟି କବନ୍ଧ ସେଠାରେ ନାଚିଲେ ।
ଦେଖିଲା ରାବଣର ନାହାନ୍ତି ନିଜ ସୈନ୍ୟ
ପୁଷ୍ପକ ବିମାନରେ ସେ ପୁର ଛାଡ଼ି ପୁଣ ।
ଉପର ପୁରରେ ଯାଇଣ ବିଜେକଲ ।
ଧନୁ ଶର ଧରିଣ ସେ ସିଂହରଡ଼ି ଦେଲା ।
ପୁଷ୍ପକ ରଥ ଯେ ଶତେପୁର ଜାଣ
ଯହିଁକି ମନ ତହିଁକି ଚଳଇ ବିମାନ ।
ସମ୍ମୁଖରେ ଯୁଦ୍ଧ ଯେ ବାଜିଲା ଦୁହିଁଙ୍କରି
ହାଙ୍କଣ ବିନ୍ଧାବିନ୍ଧି ଡାକିଣ ମରାମରି ।
ଲକ୍ଷେ ଲକ୍ଷେ ଶର ଯେ ବିନ୍ଧନ୍ତି ଏକାବେଳେ
କେହି କାହାକୁ ଯେ ବିନ୍ଧନ୍ତି ନ ଘୁଞ୍ଚନ୍ତି ତିଳେ ।
କେହୁ ଅଗ୍ନିଶର ପେଶେ କେହୁ ପେଶେ ପାଣି
ମେଘାଶର କେହୁ ପବନେ ପେଶନ୍ତି ଜାଣି ।
ନାଗଫାଶ ଶରକୁ ଗରୁଡ଼ଶର ଯେ ପେଶନ୍ତି
ପର୍ବତାଶରକୁ କେ ବଜ୍ର ବାଣରେ ନାଶନ୍ତି ।

କେ ତିମିର ଆଚ୍ଛାଦନ୍ତେ କେ ଚନ୍ଦ୍ର ଉଦେକରି
ଅନ୍ୟାଅନ୍ୟି ଶର ଯେ ବାଜେ ଦୁହିଁଙ୍କରି ।
ରାବଣର ତେଜ ଯେ ବେଳକୁ ବେଳ ଆନ
ପକ୍ଷୀ ପ୍ରାୟେ ଉଡ଼େ ପୁଷ୍ପକ ବିମାନ ।
ବରୁଣ ଦେବତା ଯେ ମନେ ମନେ ଭାଳି
ବିଚାରେ ଦଶଗ୍ରୀବ ଅଟେ ମହାବଳି ।
ବାପ ତା ବ୍ରହ୍ମଋଷି ମାତା ଦଇତୁଣୀ
ବିଷ୍ଣୁ ଦ୍ୱାରପାଳ ବୋଲି ଆଗେ ଥିଲିଜାଣି ।
ବ୍ରହ୍ମାର ବରରେ ଏ ବଳରେ ଅପ୍ରମିତ
କୁବେରକୁ ଜିଣିଣ ଆସିଲା ଦେବରଥ ।
କପିଳାସ ପର୍ବତକୁ ଉପାଡ଼ିଲା ହେଳେ
ଯମ ଦେବତାକୁ ଯେ ଜିଣିଲା ଭୁଜବଳେ ।
ସକଳ ରାଜାମାନେ ସମରେ ହାରିଲେ
ଧନବସ୍ତ୍ର ଅଳଙ୍କାର ଦେଇଣ ବୋଧିଲେ ।
ଏହାରେ ବଡ଼କରି ସମର କରିବା
ସକଳ ସୁରଗଣଙ୍କୁ ଜିଣିବ ଦଶଗ୍ରୀବା ।
ମୁହିଁ ଏବେ ଏହାକୁ ନୋହିବି ରଣେ ସରି
ଦୁଇମାସ ମୋର ସଙ୍ଗେ ଯୁଝେ ଦଶଗିରି ।
ଅନେକ ସୈନ୍ୟ ମୋର ସେ ପକାଇଲା ମାରି
ତାହାର ସୈନ୍ୟ ମୁଁ ଯେ ପକାଇଲି ଦଳି ।
ପ୍ରୀତି କରିଣ ବାହୁଡ଼ାଇ ଦେଲେ ଦେବି
କିମ୍ବା ମୁଁ ଅକାରଣେ ପ୍ରାଭବ ପାଇବି ।
ଏତେକହି ସମର ଛାଡ଼େ ଜଳେଶ୍ୱର
ରାବଣକୁ ବୋଇଲା କରିଣ ମଧୁର ।
ଶୁଣରେ ଦଶଗ୍ରୀବ ତୁ ମୋହର ବାଣୀ
କ୍ଷତ୍ରିଙ୍କର ସିଂହ ତୁରେ ଅଟୁ ବିଂଶପାଣି ।
ବୋଇଲା ଜଳପତି ମୁଁ ତୋତେ ହୋଇଲିବଶ
ପ୍ରାଣରେ ବଧ ମୁଁ କରନ୍ତି ଅବଶ୍ୟ ।
ଚାଟୁ କରି କହି ଯେ ପ୍ରବୋଧିଲୁ ମୋତେ
ଆଉ କେମନ୍ତେ ସଂଗ୍ରାମ କରିବି ତୋ ସଙ୍ଗତେ
ଯିବି ମୁହିଁ ବାହୁଡ଼ିଣ ମୋର କଥା ଶୁଣ
କନକ ଦଣ୍ଡ ତୋର ମୋ ଛାମୁକୁ ଆଣ ।
ମୁହିଁ ସେ ଦଣ୍ଡକୁ ଲଙ୍କାଗଡ଼କୁ ନେବି
ରାଜ ଅଭିଷେକ କାଳରେ ଧରାଇବି ।
କୁବେର ଦେଲେ ମୋତେ ପୁଷ୍ପକ ବିମାନ
କନକ ଦଣ୍ଡ ଦିଅ ବରୁଣ ରାଜନ ।
ତୋର ମୋର ପ୍ରୀତି ସର୍ବଦା କାଳେ ଥାଉ
ମୁହିଁ ତୋତେ କିଛି ଯେ ମାଗୁନାହିଁ ଆଉ ।
ଶୁଣିଣ ଜଳପତି ବିଚାର କଲା ମନେ
କନକଦଣ୍ଡ ମୁଁ ଯେ ଦେବଇଁ କେସନେ ।
ନଦେଲେ ପୁଣି ଏ କରିବି ଅନର୍ଥ
ମିଛରେ ଗଞ୍ଜି ହେବାର କେବଣ ପୁରୁଷାର୍ଥ ।
ସେ ଦେବଙ୍କ ଆୟ କେବେହେଁ ନୋହେ ନାଶ
ଅବଶ୍ୟ ରାବଣତ ପ୍ରାଣରେ ହେବନାଶ ।
ଯେବେ ଦେବି ତାକୁ ଆଣିବଇଁ ପଛେ
ଏହିକ୍ଷଣି ଅରଷ୍ଟୀ ମେଣ୍ଟିବା ପ୍ରତ୍ୟକ୍ଷେ ।
ଏତେ ବିଚାରି ଭଣ୍ଡାରୁ ଅଣାଇଲା ଦଣ୍ଡ
କିଜାଣି ଦିଶଇ ସେ ମଧ୍ୟାହ୍ନ ମାର୍ତ୍ତଣ୍ଡ ।
ଟେକିଣ ଜଳପତି ରାବଣ ହାତେ ଦେଲା
ଦେବଙ୍କର ଏ ପଦାର୍ଥ ବୋଲିଣ ବୋଇଲା ।
ଟେକିଣ ଧଇଲେ ବରଷଇ ରତ୍ନ
ଭୋ ଲଙ୍କପତି ତୁ ଥୋଇବୁ ଯାକୁ ଯତ୍ନ ।
ହୀରା ମାଣିକ୍ୟ ଯେ ଟେକିଲେ ଖସଇ
ନୀଳା ମୁକୁତା ମନକଲେ ଝଡ଼ଇ ।
ଅଭିଷେକ କାଳେ ଯେବେ ଶିରରେ ଛତ୍ରଧରି
କନକଦଣ୍ଡ ଟେକିଲେ ଅଷ୍ଟରତ୍ନ ଝଡ଼ି ।
ବରଷକରେ ଥରେ ସେ ଅଭିଷେକ କାଳେ
ଏଦଣ୍ଡ ଟେକାଇବୁ ତୋର ଶିରପରେ ।
ନିଅହୋ ଦଶଗ୍ରୀବ ଅମୂଲ୍ୟ ପଦାର୍ଥ
ଏତେକହି ଦଣ୍ଡ ସମର୍ପିଲେ ତାର ହସ୍ତ ।
ଘେନିଣ ବରୁଣ ଆପେ ଟେକିଲା ତାର ଶିରେ
ବାହୁଡାଇ ଦେଲା ପ୍ରଶସ୍ତ ହସ୍ତରେ ।
ଜୟ ଶଙ୍ଖ ବଜାଇ ବାହୁଡ଼ାଏ ରଥ
ସମୁଦ୍ରରୁ ବାହାର ହେଲା ଦଶମାଥ ।
କେତୁପୁର ସ୍ୱର୍ଗରେ ପ୍ରବେଶ ହେଲା ପୁଣ
ଦେଖିଲା କେତୁଗ୍ରହ ବସିଛି ଆସନ ।
ରାବଣ ବୋଇଲା ବାଣୀ କେତୁ ଶୁଣ ପୁଣି
ମୋ ସଙ୍ଗେ ରଣ ତୁ କର ଏହିକ୍ଷଣି ।
କେତୁ ବୋଇଲେ ମୁଁ ଯେ ନକରିବି ରଣ
ରଣକଲେ ମୁଁ ତୋତେ ହାରିବି ରାବଣ ।
କେତୁଠାରୁ ଶୁଣି ରାବଣ ଫେରିଗଲା
ମଙ୍ଗଳ ଗ୍ରହପୁରେ ପ୍ରବେଶ ହୋଇଲା ।

ମଙ୍ଗଳକୁ ଦେଖିଲା ନବର ସିଂହଦ୍ୱାରେ
ବୋଇଲା ମୁଁ ଦଶଗ୍ରୀବ ଅଇଲି ତୋରପୁରେ
ମୋତେ ତୁ ରଣ ଦେଲେ ମୁଁ ହୋଇବି ତୁପତି
ମଙ୍ଗଳ ବୋଇଲା ମୁଁ ହୋଇଛି ଆଶକତି ।
ତୋତେ ମୁଁ ନପାରିବି ନକରିବି ରଣ
ଶୁଣିକରି ରାବଣ ଫେରିଲା ତତକ୍ଷଣ ।
ବୁଧଗ୍ରହ ପାଶରେ ହେଲା ପରବେଶ
ଡରିଣ ବୁଧ ରାଜା ମିଳେ ରାବଣ ପାଶ ।
ବୋଇଲା କେଣିକି ଅଇଲୁ ବୀରବର
ତୁମ୍ଭନାମ ଗୋଟି ତ ଜଗତେ ବିସ୍ତାର ।
ଏପୃଥ୍ୱିରେ ରାଜାଙ୍କୁ ତୁ ଜିଣିଲୁ ଦୈତ୍ୟବଳ
ତାଙ୍କୁ ଜିଣି ତୁମ୍ଭେ ଏବେ ରୁହାଇଲୁ କାଳ ।
ମୋ ଦୁଃଖ ଦେଖିବାକୁ କି ଏଥକୁ ଅଇଲୁ
ମୋଠାରେ ସୁଖଥିଲାକୁ ମୋତେ ସଙ୍ଖୋଳିଲୁ ।
ଶୁଣିକରି ରାବଣ ମନରେ ତୋଷ ହେଲା
ଅଶ୍ୱିନୀ କୁମାରଙ୍କର ପୁରରେ ମିଳିଲା ।
ଅଶ୍ୱିନୀ କୁମାର କରେ ପୁଷ୍ପମାଳା ଧରି
ଦଶଗ୍ରୀବକୁ ଭେଟିଲେ ସିଂହଦ୍ୱାରେ ତାରି ।
ଫୁଲଘେନି ସେଠାରୁ ରାବଣ ଫେରିଗଲା
ଅଷ୍ଟବସୁ ଦେବତାଙ୍କ ଆଗରେ ମିଳିଲା ।
ଦେଖିକରି ଅଷ୍ଟବସୁ ଉଠିଲେ ବହନ
ସୁକଲ୍ୟାଣ କଲେ ରାବଣ ଛାମୁରେଣ ।
ସନମାନ ପାଇଣ ରାବଣ ତହୁଁ ଗଲା
ଶୁକ୍ରଗ୍ରହ ପାଶେ ସେ ପ୍ରବେଶ ହେଲା ।
ବୋଇଲାରେ ଦେବମନ୍ତ୍ରୀ ଯୁଦ୍ଧ ଆସିକର
ନୋହିଲେ ତୋତେ ବାନ୍ଧି ନେବି ଲଙ୍କାପୁର ।
ଶୁକ୍ରବୋଇଲେ ତୋ ସଙ୍ଗକୁ ମୁହିଁ କି ଦ୍ୱନ୍ଦ୍ୱକାରୀ
ଶୁଣିଣ ଦଶଗ୍ରୀବ ସେଠାରୁ ଗଲା ଫେରି ।
ସେହିଠାରୁ ହରଷରେ ପୁଣ ଚଳିଗଲା
ସ୍ୱୟମ୍ଭର ଦୈତ୍ୟପୁରେ ପ୍ରବେଶ ହୋଇଲା ।
ଦେଖିଲା ଯେ ସ୍ୱୟମ୍ଭର ଆଖଡ଼ାଘରେ ଅଛି
ସିଂହଦ୍ୱାରେ ତାର ଯେ ପୁତ୍ରେକ ବସିଛି ।
ରାବଣ ବୋଲେ ତୋ ପିତା କେଉଁଠାରେ ଅଛି
ତାର ସଙ୍ଗେ ରଣ କରିବାକୁ ମୁଁ ଆସିଛି ।
ସେ ବୋଇଲା ଯୁଦ୍ଧ ଯେବେ କରିବ ରାବଣ
ତାର ଗଦାଅଛି ଦେଖାଏ ଦୁଆରେଣ ।
ଏ ଗଦାକୁ ଯେବେ ତୁରେ ଟୋଳି ଧରିପାରୁ
ତେବେ ସେ ତୋତେ ହାରିବ ହେବୁ ମହାମେରୁ ।
ଶୁଣିଣ ରାବଣେଶ୍ୱର ରଥରୁ ଓହ୍ଲାଇଲା
ବିଂଶଭୁଜେ ସେ ଗଦାକୁ ଟେକିଣ ଟୋଳିଲା ।
ଟେକି ନ ପାରିଲା ଗଦା ବସିଲାକ ମାଡ଼ି
ବିକଳରେ ରାବଣ ଛାଡ଼ିଣ ସିଂହରଡ଼ି ।
ସତାଇଶି ଦିନଯାଏ ସେ ଦ୍ୱାରେ ରୋଦଇ
ସ୍ୱୟମ୍ଭର ଦୈତ୍ୟଆସି ପ୍ରବେଶ ହେଲା ତହିଁ ।
ବିକଳ ଦେଖିଣ ତାର ହୃଦରୁ ଗଦାକାଢ଼ି
ଉଠିଣ ରଥପରେ ବସିଲା ଦଶଗିରି ।
କଥା ନକହି ତାକୁ ବେଗ୍ରେ ଚଳିଗଲା
ବାଟରେ ତା ମନ୍ତ୍ରୀକି ବଚନ କହିଲା ।
ବୋଇଲାରେ ଗଦାତାର ଏଡେକ ପ୍ରବଳ
ଛୁଇଁଲା ମାତ୍ରକେ ମାଡ଼ିବସେ ମୋ ହୃଦର ।
ସ୍ୱୟମ୍ଭର ମୋର ସଙ୍ଗେ ଦ୍ୱନ୍ଦ୍ୱ ନକରିଲା
ସେ ଗଦାରେ ମାରିଲେ ମୋ ଜୀବନ ଯାନ୍ତା ପରା ।
କପିଳାସ ଗିରିକି ସେ ଶତେଗୁଣ ଭାରି
ଧର୍ମରେ ମୁଁ ସେଠାରୁ ଅଇଲି ଉବୁରି ।
ଏମନ୍ତେ ବିଚରି ଦଶଗ୍ରୀବ ଯାଏ ଚଳି
ସିନ୍ଧୁର ଭିତରେ ଦେଖେ ଧବଳଛତ୍ର ପୁରୀ ।
ମନ୍ତ୍ରୀକି ବୋଇଲା ଏ କିସ ପୁଣି ଦିଶି
ଶୁକ, ସାରଣ ବୋଇଲେ ଏ ଧବଳ ପୁରଗୋଟି ।
ରାବଣ ବୋଲେ ଏଥିରେ କିଏ କରିଛି ଘର
ମନ୍ତ୍ରୀ ଦୁହେଁ ବୋଇଲେ ଏ ଧରଣୀଙ୍କର ପୁର ।
ରାବଣ ବୋଇଲା ତାର ଅଛି କିରେ କେହି
ଶୁକ, ସାରଣ ବୋଇଲେ ତା ପୁତ୍ର ଅଛଇ ।
ରାବଣ ବୋଇଲା ତାର ପୁତ୍ର ନାମ କିସ
ମନ୍ତ୍ରୀ ବୋଇଲେ ତୁହୋ ଶୁଣ ଦଶଇଶ ।
ନାରକା ନାମରେ ତାର ପୁତ୍ରେକ ଜାତ ହୋଇ
ଗର୍ଭରୁ ପଡ଼ନ୍ତେ ସେ ଶୂନ୍ୟରେ ଉଡ଼ଇ ।
ଉଡ଼ିବାର ବେଳେ ଉଡ଼ଙ୍ଗ ଶୂନ୍ୟରେ ଉଡୁଥିଲା
କ୍ଷୁଧାର ବିକଳେ ସେ ତାକୁ ଗାଳିଦେଲା ।
ଧରଣୀ ଜାଣିଣ ଚଳେ ତଳପୁର
ନାଗରାଜା ଆଗରେ ରୋଦଇ ମହାଘୋର ।
ନାଗରାଜା ବୋଲେ କିମ୍ପାଇ ତୁହି ରୋଦୁ
ଧରଣୀ ବୋଇଲେ ମୋତେ ରକ୍ଷାକର ବାବୁ ।

କେତେକଷ୍ଟ ଜାତକଲି ଏକଇ କୁମର
ତାକୁ ଗିଳି ଦେଲା ଯାଇ ଉଡ଼ଙ୍ଗ ତୋହର ।
ଦାନ ଦେଇ ମୋତେ ରଖହେ ନାଗରାଜା
ନାଗରାଜା ବୋଇଲେ ତୁ କାହାରି ଭାରିଜା ।
ଧରଣୀ ବୋଇଲେ ମୁଁ ମଧୁକୈଟଭ ଦୁହିତା
ମୋହର ନାମ ଧରଣୀ ଦେଇଥିଲେ ପିତା ।
ଅନନ୍ତ ଶୟନ କରିଥିଲେ ନରହରି
କର୍ଣ୍ଣରୁ ଯେ କର୍ଣ୍ଣଗୁଆ ପଡ଼ିଲାକ ଟଳି ।
ଜଳରେ ପଡ଼ନ୍ତେ ସେ ହୋଇଲା ଦଇତ୍ୟ
କମଳାଙ୍କୁ ଦେଖି ଲୋଭ କରେ ଅନ୍ତର୍ଗତ ।
ହରିବ ବୋଲିଣ ତାଙ୍କ ପାଶକୁ ସେ ଗଲା
ଦେଖିଣ କମଳା ପଦ୍ମ ନାଭକୁ କହିଲା ।
ଶୁଣିବାରୁ ପଦ୍ମନାଭ ତାକୁ କଲେ ହତ
ତାହାକୁ ମନ୍ଥି ଦେଲେ କୁରାଳ ସଂଜାତ ।
ଶେଷାଂଶରେ ଧରଣୀ କଲେକ ଶ୍ରୀହରି
ଚଉଦ ଭୁବନ ନବଖଣ୍ଡ ମେଦିନୀ କରି ।
ସପତ ଦ୍ୱୀପ ସାତସାଗର ସେଥିକଲେ
ପଞ୍ଚାଶ କୋଟି ବସୁନ୍ଧରୀ ମାଂସ ହେଲା ଭଲେ ।
ସେ ମଧୁକୈଟଭଙ୍କର ବୀର୍ଯ୍ୟ ଉଛୁଳିଥିଲା
ସେଥିରୁ ମୋ ଶରୀର ଗୋଟି ଉପୁଜିଲା ।
ନବଯୁବା ହେବାରୁ ମୁଁ କାମରେ ଆରତ
ନିଧି ବୋଲି ପ୍ରହେତୀ ଠାରୁ ଜାତ ହେଲା ପୁତ୍ର
ସେ ପୁତ୍ର ଅସୁର ଅଂଶ ହୋଇଲାକ ପୁଣ
ସେହି ମୋତେ ବିଭାହେଲା ନାଗରାଜା ଶୁଣ ।
ତାର ଆଡ଼େ ଗର୍ଭେକ ଯେ ମୋହର ହୋଇଲା
ସେହିପୁତ୍ର ନାମ ମୁଁ ନାରକା ଦେଲି ପରା ।
ସେ ପୁତ୍ରକୁ ଉଡ଼ଙ୍ଗ ତୋର ଗିଳିଲା ପୁଣି
ନାଗରାଜା ସୁମରିଲେ ଉଡ଼ଙ୍ଗକୁ ଜାଣି ।
ଆସିଣ ଉଡ଼ଙ୍ଗ ନାଗରାଜା ପାଶେ ମିଳି
ନାଗରାଜା ବୋଲେ ତୁ ଦୈତ୍ୟକୁ ଉଦୁଗାରି ।
ତକ୍ଷଣେ ଉଡ଼ଙ୍ଗ ଯେ ଦୈତ୍ୟକୁ ଉଦ୍‌ଗାରିଲା
ଉଠିଣ ନାରକାସୁର କର ଯେ ଯୋଡ଼ିଲା ।
ବାସୁକୀ ବୋଇଲେ ତୁରେ ଅଜାମର ହୁଅ
ଦେବଦାନବରେ ତୁ କେଭେ ନୁହ କ୍ଷୟ ।
ବାସୁଦେବ ହସ୍ତେ ତୁରେ ମରିବୁ କେବଳ
ସରସ୍ୱତୀ ଜାତ ହେବେ ମଞ୍ଚମଣ୍ଡଳର ।
ବାସୁଦେବ ଜାତହେବେ ମାନବ ରୂପଧରି
ନନ୍ଦୀଘୋଷେ ସାରଥି ଶତ୍ରାଜିତର ଦୁଲାଳୀ ।
ତେତେବେଳେ ଚକ୍ରରେ ଛେଦିବେ ତୋରଶିର
ଅନ୍ୟଲୋକେ ତୋତେକେ ନୋହିବେ ବଳିୟାର
ରାବଣ ବୋଇଲା ନିଧିଶ୍ୱର କେଣେ ଗଲା
ମନ୍ତ୍ରୀଦୁହେଁ ବୋଇଲେ ସେ ଶିବଙ୍କ ହାଥେମଲା ।
ତ୍ରୀପୁରାସୁର ପୁଣି ଶିବ ସଙ୍ଗରେ ଯୁଝି
ତାର ସଙ୍ଗେ ନିଧିଶ୍ୱର ଯାଇଣ ଥିଲା ଯୁଝି ।
ଶୁଣିଣ ରାବଣେଶ୍ୱର ମନରେ ତୋଷ ହେଲା
ଏଠାବରେ ଯଶ ନାହିଁ ବୋଲିଣ ବାହୁଡ଼ିଲା ।
ଲଙ୍କାଗଡ଼ ଭିତରେ ପ୍ରବେଶ ଦଶାନନ
ସଭାକରି କହିଲା ସେ ଆପଣା ଜିଣାମାନ ।
ମନ୍ତ୍ରୀ ଅମାନାତ୍ୟ ତୁମ୍ଭେ ବନ୍ଧୁମାନେ ଅଛ
ମୁହିଁ ରାବଣ ଦେଖ ନବକେଶରୀ ବସ୍ତ ।
ବରୁଣକୁ ଜିଣି କନକ ଦଣ୍ଡ ଆଣିଲଇଁ
ଯେବଣ ପଦାର୍ଥକୁ ଭାର୍ଜନ ନୁହନ୍ତି ଶଚୀସାଇଁ ।
ଶୁଣି କରି ସମସ୍ତେ ସାଧୁ ସାଧୁ କଲେ
ସେ କନକ ଦଣ୍ଡ ନେଇ ଭଣ୍ଡାରେ ରଖାଇଲେ ।
ଶୁଣି ରାବଣ କହେ ଦୈତ୍ୟଙ୍କର ଆଗେ
ଦଶଦିଗପାଳଙ୍କୁ ମୁଁ ଜିଣିଲି ଯାଇ ସ୍ୱର୍ଗେ ।
ଶୁଣି ଦୈତ୍ୟବଳ ସନ୍ତୋଷ ପୁଣ ହେଲେ
ଆମ୍ଭର କୁଳକୁ ଉଦ୍ଧରିଲୁ ବୋଇଲେ ।
ଅଗସ୍ତି ବୋଇଲେ ହେ ରାମଚନ୍ଦ୍ର ଶୁଣ
ତିନିପୁରେ ବିଖ୍ୟାତ ଯେ ହୋଇଲା ରାବଣ ।
ଅବିକ୍ଷଣେ ସମର ଲୋଡ଼େ ଯହିଁ ତହିଁ
ଦିନେକ ଗଲା ସେହି ପୁଷ୍ପକ ଆରୋହୀ ।
ସଙ୍ଗରେ ମଉଳା ତାର ଅଛଇଁ ପ୍ରଶସ୍ତ
ପାତାଳ ପୁରକୁ ପୁଣି ଚଳେ ବିଂଶହସ୍ତ ।
ପୁରେକ ଦେଖିଲା ତହିଁ ଅତି ରମ୍ୟସ୍ଥାନ
ଦର୍ପଣ କାନ୍ତି ଜାଣି ବିରାଜେ ଛନ୍ନ ଛନ୍ନ ।
ଅଷ୍ଟରତ୍ନେ ନିବାଡ଼ିଲା ଅଛଇଁ ସେ ପୁର
ଅପୂର୍ବ ଦ୍ରବ୍ୟ ଲୋଡ଼ିଲେ ପାଆନ୍ତି ସେଠାର ।
ମେଢ଼ ମଣ୍ଡପ ଯେ ଦେଉଳ ପନ୍ତି ପନ୍ତି
ବିବିଧ ଚଉବସ୍ତ୍ର ପାତାଙ୍ଗ ଉଡ଼ନ୍ତି ।
ମଉଳା ପ୍ରଶସ୍ତକୁ ରାବଣ ପଚାରି
ବାସୁଦେବଙ୍କର ଏ ଅଟେ ଚଉପୁରୀ ।

ପୂର୍ବରେ ବାସୁଦେବ ଏ ପୁରେ ରହିଥିଲେ
କାହାକୁ ଦେଇ ଏ ପୁର ସେ ଏଠାରୁ ଗଲେ ।
ସେ କଥା ନ ଜାଣଇଁ ଶୁଣିଲା ନାହିଁ ମୋରେ
ଶୁଣିକରି ରାବଣ ବୋଲଇ ସୁସ୍ୱରେ ।
କିଏ ଏ ପୁରେ ଠାକୁର ପଚାରି ଆସ ଯାଇ
ଏମନ୍ତ ବୋଲି ରାବଣ ବଚନ କହଇ ।
ମଉଳା ପ୍ରଶସ୍ତକୁ ରାବଣ ପଚାରି
ରଥୁଁ ଓହ୍ଲାଇ ପ୍ରଶସ୍ତ ଯେ ବେଗ ହୋଇ ଚଳି
ନଗ୍ରରେ ପଶିଣ ସେ ବୁଲେ ଚଉକତି
କାହିଁରେ ନ ଦେଖିଲା ସେପୁର ନୃପତି ।
ରାବଣର ଆଗରେ ଜଣାଏ ପ୍ରଶସ୍ତ
କେମନ୍ତେ ବାହୁଡ଼ି ଯିବା ନ ପାଇଣ ତଥ୍ୟ ।
ବିଶେଷେ ରାବଣେଶ୍ୱର ରାଜାଏ ଅଟଇ
ତିନିପୁରେ ପ୍ରତାପୀ ବାହୁବଳେ ସେହି ।
କେମନ୍ତେ ତାର ଆଜ୍ଞା ମେଣ୍ଟିବଇ ମୁହିଁ
ସବୁଠାକୁ ଅସୁରେ ପାରନ୍ତି ସିନା ଯାଇ ।
ସୁମାଳିର ପୁତ୍ର ଭ୍ରମନ୍ତେ ସେ ପୁର
ଆଗରେ ଦେଖିଲାକ ସେ ଅଛି ଏକ ଦ୍ୱାର ।
ସେ ଦ୍ୱାରେ ପଶିଲା ସେ ଜାଣିବାର ପାଇଁ
ତହିଁରେ ଦେଖେ ପରଜା କେହି ନାହିଁ ।
ପୁଣିହିଁ ଦ୍ୱାରକେ ସେ ଦେଖିଣ ପଶିଲା
ସେ ଦ୍ୱାରେ ପଞ୍ଚମୁଖ ରୂପ ସେ ଦେଖିଲା ।
ପଚାରିଲା ଏ ପୁରେ ଅଛି କିଏ ପୁରି
ସେ ବୋଇଲା ମୋତେ ଯେ ଜଣା ନାହିଁ ପୁଣି ।
ଆର ଦ୍ୱାରେ ପଚାର ସେ କଥାର ସନ୍ଦେଶ
ସେଠାରୁ ପ୍ରଶସ୍ତ ଯେ ଚଳିଲେ ତୁରିତ ।
ଆରଦ୍ୱାରେ ପ୍ରବେଶ ହେଲା ଯାଇ କରି
ବଜ୍ରଧରି ଏକ ପୁରୁଷେ ବାହାରି ।
ପ୍ରଶସ୍ତ ଯାଇ କରି ସେ ଦ୍ୱାରେ ହୋଇଲା
ଦ୍ୱାରପାଳକୁ ସେଠାରେ ବଚନ କହିଲା ।
କିଏ ଏ ପୁରରେ କହ ହେ ଠାକୁର
ସେ ବୋଇଲେ ଆରଦ୍ୱାରେ ପଚାର ଯାଇଁବୀର
ତିନିଦ୍ୱାରେ ପ୍ରବେଶ ହୋଇଲା ପ୍ରଶସ୍ତ
ସେହି ଦ୍ୱାରେ ଦେଖିଲା ବିଜୟେ ଚତୁର୍ମୁଖ ।
ପଚାରିଲା ଏପୁରେ କିଏ ସେ ଅଛି ପୁଣ
ସେ ବୋଇଲେ ଆରଦ୍ୱାରେ ଚଳ ଦୈତ୍ୟରାଣ

ତାହାର ବଚନରେ ପ୍ରଶସ୍ତ ଚଳିଗଲା
ଚତୁର୍ଥ ଦୁଆରେ ସେ ପ୍ରବେଶ ହୋଇଲା ।
ସେଠାରେ ଦେଖିଲା ଯାଉଁଳି ଦ୍ୱାର ପୁଣ
ଦୁଇ ଦ୍ୱାରେ ଦୁଇ କାଳ ଅଛନ୍ତି ଜଗିଣ ।
ସେମାନଙ୍କୁ ପଚାରନ୍ତେ ସେମାନେ କହିଲେ
ଆର ଦ୍ୱାରେ ପଚାର ବୋଲିଣ ବୋଇଲେ ।
ପଞ୍ଚମ ଦ୍ୱାରକୁ ଚଳେ ସୁମାଳିର ସୁତ
ଦେଖିଲା ଭଇରବୀ ବସିଛି ଦୁଆରେତ ।
ପ୍ରଶସ୍ତକୁ ଦେଖିଣ ଭଇରବୀ କହି
କେଉଁଠାରୁ ଅଇଲ ଦୈତ୍ୟ ଏବେ ତୁହି ।
ସେ ବୋଇଲା ପାତାଳପୁରରେ ମୋର ଘର
ସୁମାଳି ଦଇତ୍ୟର ମୁଁ ଅଟଇ କୁମର ।
ଲଙ୍କାର ରାବଣ ଯେ ବିଶର୍ବାର ବାଳ
ବ୍ରହ୍ମାଙ୍କର ବରେ ସେ ଜିଣେ ତିନିପୁର ।
ପାତାଳ ପୁରକୁ ସେ ବୀର ବିଜେକଲା
ପ୍ରଥମରେ ଆସିଣ ଏପୁର ଦେଖିଲା ।
ମୋତେ ଭେଦିଲା ସେ ଜାଣିବାର ପାଇଁ
ଏ ପୁରେ କିଏ ଠାକୁର ବୁଝି ଆସ ଯାଇଁ ।
ଭଇରୀବୀ ବୋଲେ ତାର ଅଇଲୁ ଯେବେ ଦୈତ୍ୟ
ଆଉ ଦ୍ୱାରେ ପଚାର ତୁ ଜାଣିବୁ ସେ ତଥ୍ୟ ।
ସେଠାରୁ ଯେ ସୁମାଳି କୁମର ଚଳିଗଲା
ଛଡ଼ ଦ୍ୱାରେ ଯାଇଁଣ ପ୍ରବେଶ ହୋଇଲା ।
ଦେଖିଲା ସେ ଦ୍ୱାରେ ଚନ୍ଦ୍ର, ସୂର୍ଯ୍ୟ ବେନି
ତାଙ୍କୁ ଦେଖି ପଚାରିଲା ଅସୁର ଯେ ପୁଣି ।
ଏହି ପୁରେ କିଏ ରାଜା କହ ବେନିଜନ
ସେ ବୋଇଲେ ଆର ଦ୍ୱାରେ ପଚାର ଯାଇଣ ।
ସେଠାବରୁ ପ୍ରଶସ୍ତ ବେଗେ ଚଳିଗଲା
ସପତମ ଦ୍ୱାରରେ ଯାଇଣ ମିଳିଲା ।
ଜନ ପରଜା ଆଉ ନ ଦେଖିଲା ତହିଁ
ସପତପୁର ପ୍ରଶସ୍ତ ଦେଖିଣ ଚଳଇ ।
ରାବଣ ବାହାର ଦ୍ୱାରେ ରହିଥିଲା
ଶୁଣିଣ ପୁଷ୍ପକ ଯାନରୁ ଓହ୍ଲାଇଲା ।
ପ୍ରଶସ୍ତ ପଛେ ପଛେ କରଇ ଗମନ
ସେ ସପତଦ୍ୱାରେ ହେଲା ଯାଇ ପୁଣ ।
ଦେଖିଲା ସେ ଦୁଆରେ ବାମନ ରୂପ ଗୋଟି
ବ୍ରହ୍ମାଣ୍ଡ ପୂରିଛି ତେଜରେ ତାଙ୍କୁ ଘୋଟି ।

ରାବଣଙ୍କୁ ରହିଁଣ ବୋଲେ ସେହୁ ପୁଣ
ଆସ ଆସ ଅସୁରରେ ମୋ ସଙ୍ଗେ କର ରଣ ।
ଦଶଗ୍ରୀବ ବୋଇଲା ତୁ ମୋତେ ନୋହୁ ସରି
ଯମ, ବରୁଣ ଦଶ ଦିଗପାଳ ଜିଣିଲି ଧରି ।
ଶୁଣିକରି ବାମନ ହାସ୍ୟ ରସ କଲେ
କେତେ ତୋର ବଳ ବୋଲି ତାକୁ ପଗ୍ଭରିଲେ ।
ସେ ବୋଇଲା ବିଧାତା ଯେ ମୋତେ ବରଦେଲା
ଏତେ ସେତେ ବଳ ବୋଲି କଳଣା ନଗଲା ।
ବାମନ ବୋଇଲେ ତୁରେ ଅସୁର ଏବେ ଶୁଣ
ପଞ୍ଚାଶ କୋଟି ବଳ ମଧୁ କୈଟଭର ପୁଣ ।
ତାହାକୁ ଅନନ୍ତ ଏକ ହସ୍ତେ ମାରି
ତାହାର ମୂର୍ଦ୍ଧନୀରେ ଧରଣୀ ଅବତରି ।
ସେ ଧରଣୀ ଉପରେ ତୁ କରିଅଛୁ ଘର
ସେ ଧରଣୀ ପରେ ଥାଇ ଗୁମାନ କରୁ ବଡ଼ ।
ତୁ ବୋଇଲୁ ସ୍ୱର୍ଗପୁର ପାତାଳ ଜିଣିଲି
ମୋହର ସମାନେ ବୀର କାହିଁରେ ନ ଦେଖିଲି
ଯେତେବେଳେ ପ୍ରଳୟରେ ହେଲା ସପ୍ତପୁର
ସେତେବେଳେ ନାରାୟଣ ବଟପୁଟେ ଘର ।
ତେତେବେଳେ ଜାତ ହେଲା କଟକମ୍ପା ବୀର
ଆଣ୍ଠୁଏ ପାଣି ତାକୁ ହେଲା ପ୍ରଳୟର ଜଳ ।
ତାହାକୁ ପୁଣି ତହିଁ ମାଇଲେ ଗଦାଧର
ତାହାର ମାଂସରେ ଧରଣୀ ତିନିପୁର ।
ରାବଣ ବୋଇଲେ ଯେବେ ଯେବେକ ପ୍ରମାଣ
କେଉଁ ବଟ ପରେ ସେ ଯେ କଲେକ ଶୟନ
ପ୍ରଳୟରେ ଯେବେ ସର୍ବେ ହୋନ୍ତି ନାଶ
ସେ ବଟ କେମନ୍ତେ ରହିଲା ପୁଣି ଶେଷ ।
ବାମନ ବୋଇଲେ ସପ୍ତପୁର ନାଶଗଲା
ବଟ ପତ୍ର ଗୋଟିକରେ ଶ୍ରୀହରି ରହିଲା ।
ସେ ବଟର ନାମ ଶୁଣ ପଦ୍ମବଟ ସେହି
ସେ ଗଛ ପତ୍ର ଉପରେ ଅନନ୍ତ ରହଇ ।
କାରୁଣ୍ୟ ଜଳଧି ଯେତେ ବଢ଼ଇ ତହିଁ ଜାଣ
ତେତେ ବଢ଼ିଯାଏ ପଦ୍ମବଟର ପ୍ରମାଣ ।
ରାବଣ ବୋଇଲେ ଯେବେ ପ୍ରଳୟ ସେହୁକଲେ
କେଉଁଠାରୁ ସେ ଜଳକୁ ଜାତ ସେହୁ କଲେ ।
ବାମନ ବୋଇଲେ ନିଜ ମନରୁ ଜାତକଲେ
ଶୋଷେକ ମନ୍ତ୍ର ପଢ଼ିଣ ଜଳକୁ ଶୁଖାଇଲେ ।
ଧରଣୀକି ନାଶ କରି କଲେକ ଧରଣୀ
ସୁରସିଦ୍ଧ ସକଳ ଯେ ନାଶଗଲେ ପୁଣି ।
ନାଭିରୁ ପଦ୍ମପୁଷ୍ପ ପୁଷ୍କର ହେଲା
ସେଥିରୁ ବିଧାତା ପୁରୁଷ ଜାତ ହେଲା ।
ପୂର୍ବପରି ସପ୍ତପୁର କଲେ ସେ ଭିଆଣ
ତେତେବେଳେ ନାରାୟଣ ଅନନ୍ତ ଶୟନ ।
ରାବଣ ବୋଇଲେ ଏକା ନାରାୟଣ ଥିଲେ
ଏତେ ଜୀବ ନ ଥିଲେ କେମନ୍ତେ ହୋଇଲେ ।
ବାମନ ବୋଇଲେ ସେ ଗର୍ଭେ ସଂହରିଲେ
ପୁଣି ବିଧାତା ଜୀବ ସଞ୍ଚରିଲା ବଳେ ।
ଜଳ ପବନକୁ ଆଗେ ବିଧାତା କଲେ ଜାତ
ଜୀବ ପରମ ଦେଲେ ବିଧାତା ପୁରୁଷତ ।
ପରମ ପୁରୁଷ ଜାତ ପବନ ଠାବରୁ
ଜଳରୁ ଜାତ ଶ୍ରୀ ଜୀବ ମହାମେରୁ ।
ରାବଣ ବୋଲେ ପଣ୍ଡ ମୂର୍ଦ୍ଧୁନୀ କାହୁଁ ହେଲା
ବାମନ ବୋଇଲେ ବୀର୍ଯ୍ୟ ନାରାୟଣ ଦେଲା ।
ସେ ବୀର୍ଯ୍ୟ ବାଣ୍ଟିଣ ଜାତ କଲେ ବିଧାତା
ସେ ବୀର୍ଯ୍ୟରୁ ସମ୍ଭବିଲେ ସକଳ ଦେବତା ।
ଦେବ ବୀର୍ଯ୍ୟରୁ ହେଲେ ମାନବ ଅସୁର
ଈଶ୍ୱର ବୀର୍ଯ୍ୟରୁ ଜାତ ହେଲେ ନାଗବଳ ।
ନାଗଠାରୁ ରାଜାବଳ ହୋଇଲେ ସମ୍ଭୁତ
ମାନବଙ୍କ ଠାରୁ ଜାତ ସକଳ ପଶୁତ ।
ଶୁଣିଣ ରାବଣ ଯେ ପରମ ତୋଷ ହେଲା
ବାଟ ଛାଡ଼ିବୁ କି ଯୁଦ୍ଧ କରିବୁ ବୋଇଲା ।
ତୁ କେବଣ ପୁରୁଷ କହ ମୋର ଆଗେ
ସେ ବୋଇଲେ ବାସୁଦେବ ବାମନ ମୁଁ ଏବେ
ରାବଣ ବୋଇଲା ଯେବେ ତୁ ଅଟେ ନାରାୟଣ
ଏ ସ୍ଥାନରେ ତୋର କିମ୍ପା ବିଶ୍ରାମଟି ପୁଣ ।
ବାମନ ବୋଇଲେ ବଳି ଅଛି ଯେ ଏଥିରେ
ତାହାକୁ ଜଗି ମୁଁ ଅଛି ଏ ସ୍ଥାନରେ ।
ରାବଣ ବୋଇଲା କିମ୍ପା ତାକୁ ତୁ ଜଗି ରହୁ
ବାମନ ବୋଇଲେ ଭକ୍ତ ଅଟନ୍ତି ଯେ ସେହୁ ।
ବାମନ ବାସୁଦେବଙ୍କୁ ଦେଖେ ଯେତେବେଳେ
ବର ମାଗ ବୋଲିଣ ବଳିକି କହିଲେ ।
ସେ ବୋଇଲେ ବର ମୋତେ ଦେବ ଏକକଥା
ଏହି ରୂପେ ପ୍ରସନ୍ନ ମୁଁ ପ୍ରତିଦିନରେ ଶ୍ରୋତା ।

ସେ ବର ପ୍ରାପତ ହେଉ ବୋଲିଣ ବୋଇଲେ
କଉମୋଦୀ ଗଦା ଧରି ଦ୍ୱାରରେ ରହିଲେ ।
ରାବଣ ବୋଇଲେ ଯେବେ ତୋହସ୍ତେ ମୃତ୍ୟୁମୋର
ମୋର ସଙ୍ଗେ ଯୁଦ୍ଧ କରି ମୋତେ ତୁହି ମାର ।
ବାମନ ବୋଇଲେ ତୋର ମୋରେ ମୃତ୍ୟୁନାହିଁ
ରଘୁ ରାମ ଅବତାର ହେବେ ତୋର ପାଇଁ ।
କୋଦଣ୍ଡ ଧରିଣ ତୋତେ କରିବେ ସେହୁ ନାଶ
ଚିହ୍ନା ନ ଦେବାରୁ ତାଙ୍କଠାରେ ହେବୁ ନାଶ ।
ଏତେ ବୋଲି ରାବଣଙ୍କୁ ଦ୍ୱାର ଛାଡ଼ି ଦେଲେ
କଉମୋଦୀ ଗଦାଧରି ସେଠାରୁ ଆଡ଼େ ହେଲେ ।
ବିଶ୍ରବା ନନ୍ଦନ ଯେ ପଶିଲା ସେ ପୁରେ
ଯାଇଣ ଉଠିଲା ସେ ମାଣିକ୍ୟ ଜଗତୀରେ ।
ଅପୂର୍ବ ଘଟଣ ଯେ ଦେଖିଣ ପରଶଂସି
ବହ୍ନି ଜାତି ସିଂହାସନରେ ବଳି ରାଜା ବସି ।
ନେତର ପାଟ ପତନୀ ମୁକୁତା ମଣି ଝରା
ବସିଲା ଆସନ ଯେ ବ୍ରହ୍ମଜାତି ହୀରା ।
ସମ୍ଭବ ହୋଇଣ ଯେ ବସିଛି ଚକ୍ରବର୍ତ୍ତୀ
ରାବଣକୁ ଚହିଁଣ ରାଇଲା ସେ କତି ।
ଆସ ଆସ ବୋଲି ଯେ ବସାଏ ପାଖରେ
ଦରହାସ ବଚନ ଯେ ପଚରେ ମହୀପାଳେ ।
ମୁଁ ତୋତେ ଜାଣଇଁ ତୁରେ ବିଶ୍ରବାର ସୁତ
ସୁମାଳୀ ଦୋହୀତା ନୈକେଶୀର ଗର୍ଭୁ ଜାତ ।
ତୁହି ଏଥକୁରେ ଆସିଛୁ କାହିଁପାଇଁ
ହସିକରି ବୋଲଇ ଯେ ମନ୍ଦୋଦରୀ ସାଇଁ ।
ପୁଷ୍ପକ ରଥ ଚଢ଼ିଣ ମୁଁ ଭ୍ରମି ଅଇଲି
ତୋର ପୁର ଦେଖିଣ ମୁଁ ମୁକତ ହୋଇଲି ।
ତୋତେ ନାରାୟଣରେ ପାତାଳେ ଚପିଲା
ସେ କଥାକୁ ଶୁଣି ମୋର ଶରୀର କମ୍ପିଲା ।
ତେଣୁ ମୁଁ ସୁମରି ଅଇଲି ମହାରାଜା
ବନ୍ଧନରୁ ମୁକୁଳାଇ କରିବି ତୋତେ ପୂଜା ।
ବଳି ବୋଇଲା ତୁ କିରେ ବାତୁଳ ପୁରୁଷ
ଦ୍ୱାରେ ଦେଖିଲୁଟିକି ବାମନ ପୁରୁଷ ।
ସେହିଟି ନାରାୟଣରେ ସଂସାର କରତା
ତାକୁ ଆନ କିଏରେ ଅଛଇ ଶକତା ।
ରାବଣ ବୋଇଲା ସେ ଅଟେ ବଡ଼ ଜଣ
ମୋତେ ସକଳ କଥା କହିଲା ବୁଝାଇଣ ।
ସେ ବୋଇଲେ ରଘୁରାମ ତୋତେ ଯେ ମାରିବେ
ତୋତେ ମାରିବାକୁ ବାସୁଦେବ ଜନ୍ମ ହେବେ ।
ମୋତେ ବୋଲେ ସମର କର ଦଶଶିର
ମୁହିଁ ତାକୁ ବୋଲଇ ସରି ନୋହୁ ମୋର ଆଗର ।
ହସିଣ ଦ୍ୱାର ମୋତେ ଛାଡ଼ିଲା ଅପସରି
ଆପଣେ ନ ଆସି ଦ୍ୱାରେ ସେ ବିହରି ।
ବଳି ବୋଇଲା ସେ ଯେ ଅଟେ ନାରାୟଣ
ଶଙ୍ଖ ଚକ୍ରଧର ସେ କମଳା ରମଣ ।
ଅପାର ମହିମା ସେ ଅନନ୍ତ ମୁରତି
ଅନନ୍ତ କୋଟି ନାଥ ସେ ଠାକୁର ଶିରୀପତି ।
ମତ୍ସ୍ୟ, କୂର୍ମ, ବରାହ, ନୃସିଂହ ହୋନ୍ତି ସେହି
ପୃଥ୍ୱୀଭାରା ଉଶ୍ୱାସିଲେ ଦଶଅବତାର ହୋଇ ।
ଅସୁରେ ଅନ୍ୟାୟ ଯହୁଁ କରନ୍ତି ବହୁତ
ରାଜାଗଣେ ଦୁଷ୍ଟପଣେ ପରଜା ନୋହେ ସୁସ୍ଥ ।
ଦେବତାଏ ଅଧର୍ମରେ ନ ପାଳନ୍ତି ସୃଷ୍ଟି
ମତ୍ତଗର୍ବ ହୋଇ ସୁର ରାଜାଙ୍କୁ ନ ମାନନ୍ତି ।
ମୁହିଁ ଯହୁଁ ଅନ୍ୟାୟ କଲି ହେ ବହୁତ
ବାମନ ମୁରତି ସ୍ୱାମୀ ଧଇଲେ ଅଚ୍ୟୁତ ।
ପ୍ରାଣରେ ନ ମାରି ମୋତେ ଚପିଲେ ପାତାଳ
ମୋତେ ଏଥିରେ ରଖି ସେ ହେଲେ ଦ୍ୱାରପାଳ ।
ତୁ କେମନ୍ତେ ରାବଣରେ ମୁକୁଳାଇବୁ ମୋତେ
ମୁହିଁ କେମନ୍ତେ ତୋତେରେ କହିଦେବି ଏଥେ ।
ତୁ ଏବେ ଏଥୁଁ ବେଗେ ଯାଅରେ ଦଶଶିର
ବିଷ୍ଣୁର ମହିମା ତ ଅତି ଅଗୋଚର ।
ପୁଣି ଦଶାନନ ବଳିକି ପଚରଇ
କିମ୍ପାଇ ନାରାୟଣଙ୍କୁ ନ ଜିଣିବି ମୁହିଁ ।
କେତେ ବଳ ଅଟଇ ଯେ ଶ୍ରୀହରିର ପୁଣ
ସେ କଥା ସଞ୍ଚପି ମୋତେ କହ ହେ ରାଜନ ।
ଶୁଣିଣ ବଳି ରାୟେ ବଚନ କହଇ
କଳିତ ନୁହଇ ବଳ ଶୁଣ ହେ ଦଶଗ୍ରୀବ ତୁହି ।
ମୋର ବଂଶରେ କଶ୍ୟପ ହିରଣ୍ୟ ନାଶକଲା
ପ୍ରହଲାଦ ସୁମରନ୍ତେ ଶରଣ ରଖିଲା ।
ମୋର ପିତା ବଇଲୋଚନ ମାରେ ବୀର
କପିଳାସ ଯାଇ ସେ ସେବିଲେ ଦିଗମ୍ବର ।
ପ୍ରସନ୍ନ ହୋଇଣ କାଶୀ ତାକୁ ବର ଦେଲେ
ଚିରକାଳ ଅମର ହୁଅରେ ବୋଇଲେ ।

ପୁଣି ବୋଇଲେ ତୋତେ ମୃତ୍ୟୁ ହେବରେ ଜାଣ
ତୋହର ଘରଣୀ ହସ୍ତେ ମରିବୁ ତୁହି ଜାଣ ।
ଏତେ ବୋଲି ମସ୍ତକ ଶିରରେ ଦେଲେ ପୁଣି
ଜୀବକୁ ରଖି ତାକୁ କୋମଳ କହେ ବାଣୀ ।
ସର୍ବାଙ୍ଗରେ ବିଭୂତି ବୋଳିଣ ବଜ୍ରକଲେ
ସେ ସ୍ଥାନ ଗୋଟି ପୁଣି ଅଭେଦ ରଖିଲେ ।
ତାହା ପାଶୋରିଣ ପିତା ଅନ୍ୟାୟ ପୁଣ କଲେ
ନଉଯୁଗ ଯାଏ ତିନିପୁରକୁ ଜିଣିଲେ ।
ନୀଳାବତୀ ରୂପଧରି ଜାତ ହେଲେ ହରି
କୋମଦସୁର ଅସୁର ବୀର୍ଯ୍ୟରୁ ଅବତରି ।
କାଳେଣ ସେ କନ୍ୟାକୁ ପିତା ମୋ ବିଭା ହେଲା
ସେହି କନ୍ୟା ଗର୍ଭରୁ ମୋତେ ସେ ଜାତକଲା ।
ମୁହିଁ ଜନ୍ମ ଲଭିଣ ହେଲି ଛଡ଼ମାସ
ସ୍ନେହରେ ମାତା ମୋତେ ପାଳିଲେ ବିଶେଷ ।
ଏକ ଦିନେ ପିତା ମୋର ବସିଲେ ପୁଣ ଆସି
ମାତାକୁ ବୋଇଲେ ମୋର କେଶ ଶାମଳସି ।
ପିତାର ବୋଲେ ମାତା କେଶ ଶାମଳିଲା
ଦନ୍ତାଗ୍ରେ ମୋ ପିତାର କେଶ ଆମଞ୍ଛିଲା ।
ଦେଖିଲା କେଶର ଭିତରେ ଏକ ଜୀବ
ପଦ୍ମବଳୀ ଜୀବକୁ ସେ କରୁଅଛି ଭୋଗ ।
ଦନ୍ତର ଅଗ୍ରରେ ଲଖ ଘେନିଣ ଠଣା ମାରି
ପିତାର ପିଣ୍ଡରୁ ପ୍ରାଣ ଗଲାକ ବାହାରି ।
ସେହିଠାରେ ଧରଣୀରେ ପିଣ୍ଡ ପଡ଼େ ତାର
କେଡ଼େ ଅପଯଶ ଅର୍ଜିଛି ମାତା ମୋର ।
ଦେଖି କରି ଜନନୀ ମୋ ହାହାକାର କଲା
ପିତାର ସଙ୍ଗତରେ ସେହୁ ଚଳିଗଲା ।
ସଦାଶିବ କହିଲେ ପୂର୍ବର ସେ କଥା
ତେଣୁ କିର ବିଖ୍ୟାତ ହେଲା ସେ ବ୍ୟବସ୍ଥା ।
ଜ୍ଞାନବନ୍ତ ହେବାରୁ ମୁଁ ମନରେ ବିଚାରିଲି
କପିଳାସରେ ମୁଁ ଅନେକ ତପକଲି ।
ଈଶ୍ୱର ବୋଇଲେ ତୁରେ ହୋଇବୁ ଅମର
ବିଷ୍ଣୁଠାରେ ଭକତି ତୁ କରରେ କୁମର ।
ବିଷ୍ଣୁ ତୋର ଦ୍ୱାରପାଳ ହୋଇଣ ରହିବେ
ପ୍ରତିଦିନ ପ୍ରସନ୍ନ ତୁ କରିବୁ ବାସୁଦେବେ ।
ଏତେ କହି ସଦାଶିବ ମୋତେ ତୋଳି ଦେଲେ
ଏ ପଶାକାଠି ତିନିଖଣ୍ଡି ରଖ ତୁ ବୋଇଲେ ।

ଏକାରେ ଯେତେବେଳେ ତୋଳିବୁ ତିନିକାଠି
ତେବେ ତାର ଶରୀର ଅସୁର ଅଂଶରୁ ପାଲଟି ।
ସେ ପଶାକାଠି କି ମୁଁ ଆଣିଲି ତାଙ୍କ ବୋଲେ
ପଚାରିଲି ପଶାକାଠି କେଉଁଠାରୁ ଉପୁଜିଲେ ।
ସେ ବୋଇଲେ ମଧୁ କୈଟଭର ଅଙ୍ଗୁଷ୍ଠି
ଦଶ ଅଙ୍ଗୁଷ୍ଠିକି ଦଶ କାଠି କଲା ସୃଷ୍ଟି ।
ସତ୍ୟଯୁଗେ ଚାରିଖଣ୍ଡି ଦେବରାଜା ନେଲେ
ତିନିଖଣ୍ଡି କାଠି ସେଥିରୁ ରଖିଛୁଁ ଆମ୍ଭେ ଭଲେ ।
ସେ କାଠି ତିନିଖଣ୍ଡିକି ତୋତେ ଆମ୍ଭେ ଦେଲୁ
ଖେଳିବାକୁ ତୋତେ ଏହା ଆମ୍ଭେ ସମର୍ପିଲୁ ।
ତାଙ୍କଠାରୁ ଶୁଣିଣ ମୁଁ ବହନ ଅଇଲି
ଚଉଦ ଭୁବନରେ ମୁଁ ସୁରଙ୍କୁ ଜିଣିଲି ।
ତେଣୁ କରି ଦାନୀ ମୁଁ ହୋଇଲି ବିଚାରି
ସକଳ ଦେବ ଦାନ ମାଗିଲେ ଆସିକରି ।
ସେ ଦେବଙ୍କୁ ଦେଇଥିଲି ମୁହିଁ ସ୍ୱର୍ଗପୁର
ନାରାୟଣଙ୍କୁ ଦାନ ମୁଁ ଦେଲି ତିନିପୁର ।
ବାମନ ବାସୁଦେବ ଯେ ମୋତେ ଦୟାକଲେ
ଏ ପୁରରେ ରଖି ମୋତେ ଦ୍ୱାର ନିରୋଧିଲେ ।
ଆସ ଆସ ଦଶଗ୍ରୀବ ଖେଳିବାରେ ପଶା
ନାରାୟଣ ଜିଣିବାକୁ ତୋହର ଭରସା ।
ଏତେ କହି ସେ କାଠିକି ଅଣାଏ ବହନ
ଖେଳ ରସ କଲେ ତହିଁ ବଳି ଯେ ରାବଣ ।
ଖେଳ ମଧ୍ୟୁଁ ଏକଖଣ୍ଡି କାଠି ଗଡ଼ିଗଲା
ଚିକଣ ପୀଢ଼ରେ ଯାଇ ଯତନେ ପଡ଼ିଲା ।
ବଳିରାଜା ବୋଇଲେରେ ଦଶଗ୍ରୀବ ଶୁଣ
ପଶାକାଠି ଖଣ୍ଡିକରେ ଆଣ ତୁ ବହନ ।
ଶୁଣିଣ ଦଶଗ୍ରୀବ ବହନ ଉଠିଗଲା
ପଶାକାଠି ତୋଳନ୍ତେ ସେ ତୋଳି ନ ପାରିଲା ।
ଶତେଥର ପରିଯନ୍ତେ ତୋଳି ନ ପାରିଲା
ସେଠାରୁ ରାବଣ ବାହୁଡ଼ି ଅଇଲା ।
ବଳି ପାଶେ ବସିଲା ସେ ହୋଇଣ ବିମନ
ବୋଲେ ଏଡ଼େକ ଭାରି ଅଟେ ଏହୁ କାଠି ପୁଣ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ହେ ଶ୍ରୀରାମ
ପାର୍ବତୀଙ୍କ ଆଗେ ଏହା କହେ ପଞ୍ଚାନନ ।
ସେହି ବଳି ପୁରରୁ ଯେ ଏକ ନାରୀ ପୁଣ
ଘଟେ ଘେନି ପାଣି ପାଇଁ ଗଲାକ ବହନ ।

ତିନି କୁମ୍ଭେ ଜଳଭରି ଆଣିଲାକ ସେହୁ
ମସ୍ତକେ ଏକ ରଖି ଦୁଇ ହସ୍ତେ ଆଣେ ସେହୁ ।
ଡାହାଣ ହସ୍ତରେ କୁମ୍ଭେ ଧରିଛି ଓହଳାଇ
ଜଳ ଘେନି ସେହି ବାଟେ ଆସେ ନାରୀ ତହିଁ ।
ଗର୍ଭେ ନବମାସ ତାର ଚଡ଼ଭଡ଼ ପେଟ
ଧୀରେ ଧୀରେ ଚଳେ ନାରୀ ହୋଇଣ ମୁରାଟ ।
ଦେଖିଣ ବଳିରାଜା ଇଙ୍ଗାର ତାକୁ ଦେଲେ
ଅତି ଶୀଘ୍ରେ କାଠି ଦିଅ ବୋଲିଣ ବୋଇଲେ ।
ଇଙ୍ଗାରକୁ ବାରି ନାରୀ ଋହିଁଲାକ ପୁଣ
ସ୍ତମ୍ଭୀଭୂତ ହୋଇ ନାରୀ ରହିଲାକ ପୁଣ ।
ବାମ ଗୋଡ଼ ଅଙ୍ଗୁଳିରେ ଯାପି ସେ ଧଇଲା
ଉପରକୁ ଅନାଇଁ ସେ ଫୋପଡ଼ାଇ ଦେଲା ।
ରାବଣ ଯାନରେ ବାଜି ମଧରେ ପଡ଼ିଲା
ଅଚେତାରେ ରାବଣ ଢାଳିଣ ପଡ଼ିଲା ।
ଅଜ୍ଞାନ ହୋଇଣ ରାବଣ ତହିଁରେ ପଡ଼ିଲା
କେତେକ ସମୟରେ ଚେତା ସେ ପାଇଲା ।
ବୋଇଲା ମୋର ଗର୍ବ ତ ଏଠାରେ ସରିଲା
ଏତେ ବିଋରି ରାବଣ ବଳିକି ଋହିଁଲା ।
ବଳିରାଜା ବୋଇଲେ ତୁ ଶୁଣରେ ଦଶଶିର
ବିଷ୍ଣୁଙ୍କର ମହିମା ଅତି ଅଗୋଚର ।
ତୁ ଏବେ ଏଥିରୁ ଯାଅରେ ରାବଣ
ବାମନ କୋପ ହେବେଟି ଉଛୁର ଦେଖି ପୁଣ ।
ବଳିଠାରୁ ଶୁଣି ଦଶଗ୍ରୀବ ଯେ ବାହାର
ଯେଉଁ ବାଟେ ଆସିଥିଲା ସେ ବାଟେ ବିଜେ ତାର
ଯିବା ବେଳେ ଦ୍ୱାରେ ଦେଖେ ଯେବଣ ପୁରୁଷ
ଆସିଲା ବେଳକୁ ତାରେ ହୋଇଲେ ଅଦୃଶ୍ୟ ।
ସେହି ଦ୍ୱାରେ କଉମୋଦୀ ଗଦାଥିଲେ ଥୋଇ
ସେ ଗଦାକୁ ଦଶଗ୍ରୀବ ଦେଖିଲାକ ତହିଁ ।
ବୋଲେ ଏ ବାସୁଦେବର ଅଟେ ଯେ ଆୟୁଧ
ଅତି ବେଗ୍ରେ ତୋଳିଲା ଆପଣା ବିଂଶଭୁଜ ।
ଟେକନ୍ତେ ଗଦାକୁ ନ ଉଠେ ପୁଣ ତଳୁ
ଯେସନେକ ଅଚଳ ଅଟେ ମହାମେରୁ ।
ଦ୍ୱିତୀୟ ଥର ତୋଳନ୍ତେ ଲଙ୍କାର ଅଧିପତି
ଦଶମୁଖେ ରୋଧିର କଲାକ ସେ ବାନ୍ତି ।
ଅଚେଷ୍ଟ ହୋଇଣ ଯେ ପଡ଼େ ସେ ଭୂମିର
କେତେବେଳ ଉତ୍ତାରୁ ଚେତା ତା ଶରୀର ।

ଜ୍ଞାନ ହୋନ୍ତେ ସେଠାରୁ ଯେ ପଳାଏ ଦଶଶିର
ବୋଲେ ଏ ପୁରେ ଥିଲେ ଯଶ ନାହିଁ ମୋର ।
ସପ୍ତପୁର ସପ୍ତଦ୍ୱାର ତେଜେ ଦଶାନନ
ଯାଇ ଆରୋହେ ସେ ପୁଷ୍ପକ ବିମାନ ।
ପ୍ରଶସ୍ତ ମନ୍ତ୍ରୀର ଆଗେ ଯାଇଣ କହିଲା
ସେଠାରୁ ଯାନ ଚଢ଼ିଣ ବହନ ହୋଇଗଲା ।
ପାତାଳ ଭୁବନରେ ଗମେ ପୁରେ ପୁର
ଯାନ୍ତେଣ ଦେଖିଲା ସେ ଏକଇ ଗିରିବର ।
ଦିବ୍ୟ ପୁରୁଷେତ ଅପକ୍ଷରୀ ଏ ଘେନି
ସୁଖେ ଭୋଗ କରୁ ଯେ ଅଛଇ କାମିନୀ ।
ରାବଣ ବୋଲଇ ତୁରେ ଶୁଣ ମହାତମା
ସଂସାରୁ ବାହାର କି ତୋହର ଗାରିମା ।
ଲଗଜ ନ ମାଡ଼ଇ ଲୋ ବାହାରେ ଘେନି ବସି
ରମଣୀର ଶରଧା ତୋର ବାଟରେ ଦେସି ।
ଏକାନ୍ତ ସ୍ଥାନ ଦେଖି ଲୋକ କେ ନଥାଇ
ତେବେ ସେ ରମଣରେ ତ୍ରିପ୍ତତି ଉପୁଜଇ ।
ନିଗମ ବୋଲିଣ ଯେବଣ ହିଁ ଠାବ
ଲୋକେ ଦେଖିଲେ କଥା ଯାଏ ଆନଭାବ ।
ଆରେକ ନଗ୍ର ଯେ ଥିବାକୁ ପୁଣ ନାହିଁ
ଜନ ପଦ ହାଦେ ନ ଥିବେକ କେହି ।
ନିର୍ଭୟ ହୋଇଣ ଯେବଣ ଠାରେ ଲୁଚି
ତହିଁରେ ଶୋକ କଲେ ଉପୁଜଇ ବାଛି ।
ଯତନେ ନିର୍ବାଣ କରିବା ଯେଉଁ ପୁର
ଜନ ଗମନ ହେଲେ ଉପୁଜେ ବିକାର ।
ରମବଣ ଠାବକୁ ନିଷେଧ କଲା ଲୋକ
ଆବର କଥାଏ ଅଛି ଏକ ଏକ ।
ତୁହି କି ସ୍ୱଭାବରେ ଶୃଙ୍ଗାର ରତିକରି
ଲାଭ ହାନି କଥା ବିଋର ନ କରି ।
ଏମନ୍ତ କଥାରେ କି ରତି ସୁଖ ପାଇ
ଲୋକ ନଥିଲା ସ୍ଥାନରେ ଭାବ ଉପୁଜଇ ।
ନିର୍ଲଜ୍ଜ ହୋଇଲେ ନ ଉପୁଜେ ପୁଣି ରସ
ନିଦ୍ରୋହୀ ହୋନ୍ତି ପୁଣି ଯେ ସ୍ତିରୀ ପୁରୁଷ ।
ନିରୋଳ ହୋଇଲେ ସିନା ରମଣ ସୁଖ ପାଇ
ଏ ସ୍ଥାନରେ ସୁରତି କରି ନ ଯୋଗାଇ ।
ରାବଣର ବଚନକୁ ଶୁଣିଣ ପୁରୁଷ
ଶୃଙ୍ଗାର ଛାଡ଼ିକରି ହେଲା ସେ ହରଷ ।

ମନରେ ବିଚାରେ ଏ ଲଙ୍କାର ଅଧିପତି
ଦୁଷ୍ଟ ପ୍ରକୃତି ତାର ଅଟେ ଏ ଯୁବତୀ ।
ପ୍ରୀତି କରିଣ ମୁଁ ଯେ କହିବି କଥାଏ
ବୋଧ ଘେନି ଯାଉ ଏ ଅସୁର କୁଳରାୟେ ।
ଦୁଷ୍ଟ ଲୋକକୁ ଯେବେ ପ୍ରୀତି ଉପୁଜାଇ
ତେବେଟି ଆପଣାକୁ ବଡ଼ଟି ବୋଲାଇ ।
ଏତେକ ତାହାକୁ ଯେ ସମାସ୍ୟା ପୁଣ ଦେଲା
ଶୁଣ ତୁରେ ଦଶାନନ ବୋଲିଣ ବୋଇଲା ।
ସ୍ତିରୀକି ବଶ କେହୁ ନୋହିବ ସଂସାରେ
ସ୍ତିରୀ ଯେ ସୁରତି ଦାତା ଅଟନ୍ତି ବେଭାରେ ।
ସ୍ତିରୀ ସିନା କୁଟୁମ୍ବୀରେ ସ୍ତିରୀ ସେ ବାନ୍ଧବୀ
ସ୍ତିରୀ ଯେ ପୁରୁଷଙ୍କର ଅଟନ୍ତି ସାଧବୀ ।
ସ୍ତିରୀକି କେବଣ ପୁରୁଷ ଏବେ ନ ରସିଲା
ସେ କଥା ଏବେ ଶୁଣରେ ନଉକେଶୀର ବଳା
ବିଶ୍ୱାମିତ୍ର ଗୁରୁ ଯେ ତପରେ ଗୁରୁତର
ମେନକାକୁ ଦେଖିଣ ସେ ହୋଇଲେ କାତର ।
ସପ୍ତ ମହା ଋଷିଙ୍କର ଭାରିଜାକୁ ଦେଖି
ଅଗ୍ନି ବଶ ହୋଇଲେ ଧଇର୍ଯ୍ୟ ଉପେକ୍ଷି ।
ସ୍ତିରୀ ଲୋଭରେ ମଂଷାସୁର ନାଶଗଲା
କେବଣ ପୁରୁଷ ଏଥିରେ ସ୍ତିରୀଙ୍କି ନ ରସିଲା
ସ୍ତିରୀ ନ ଥିଲେ ବାବୁରେ ନୁହଇ ଯେ ଘର
ସ୍ତିରୀ ସିନା ଅଟନ୍ତି ପୁରୁଷଙ୍କୁ ଅଳଙ୍କାର ।
ଗଉତମଙ୍କ ଭାରିଯା ଅହଲ୍ୟା ସୁନ୍ଦରୀ
କପଟେ ଭୋଗ ତାଙ୍କୁ କଲେ ବଜ୍ରଧାରୀ ।
ବୃହସ୍ପତି ଦେବଗୁରୁ ସ୍ୱର୍ଗର ଦ୍ୱିଜବର
ତାର ନାମେ ସୁନ୍ଦରୀ ଅଛନ୍ତି ତାଙ୍କର ।
ଚନ୍ଦ୍ର ଦେବ ଦେଖି ତାକୁ ବଳେ ଭୋଗ କଲେ
ଗୁରୁ ପତ୍ନୀ ବୋଲି ସେ ଶାପକୁ ନ ଡରିଲେ ।
ତୁ କିମ୍ବା ରାବଣରେ ଏମନ୍ତ କଥା କହୁ
ସ୍ତିରୀଙ୍କ ବିଷୟରେ ତୁ ଏଡ଼େ ଗର୍ବ ବହୁ ।
କାଳେ ତୁହି ପୁଣି ଯେ ନ ପାରୁ ମୂରୁଛି
ସ୍ତିରୀ ହରଣରେ ତୋତେ ପ୍ରମାଦଟି ଅଛି ।
ସ୍ତିରୀଙ୍କି ନ ରମିଲେ ଜନ୍ମର ସୁଖ କାହିଁ
ସ୍ତିରୀ ରତ୍ନଠାରୁ ଯେ ସଂସାରେ ରତ୍ନ ନାହିଁ ।
ସ୍ତିରୀ ସିନା ଭଲ ସ୍ତିରୀ ହୁଅଇ ସୁଖ ଭୋଗ
କେ ଅବା ସ୍ତିରୀଙ୍କି ରେ ନ କରନ୍ତି ଭୋଗ ।

ସ୍ତିରୀଙ୍କର ଅଧରେ ଅମୃତ ଅଛି ପୂରି
ସ୍ତିରୀଙ୍କର ମୁଖ ତ ଚନ୍ଦ୍ର ସମାନେ ସରି ।
ସ୍ତିରୀଙ୍କ ନୟନରେ ଅଛି ପଞ୍ଚବାଣ
ଦେଖିଲେ ପୁରୁଷଙ୍କର ସରଇ ବଡ଼ ପଣ ।
ସ୍ତିରୀଙ୍କର ଯଉବନ ସ୍ୱାଦୁ ଦିବ୍ୟ ଫଳ
ସେ ଫଳ ଖାଇଲେ ମିଠା ଦେହକୁ ଶୀତଳ ।
ସ୍ତିରୀ ତ ପୁରଷଙ୍କର ଅଟନ୍ତି ଅଧିପତି
ସ୍ତିରୀଙ୍କର ପ୍ରସାଦରେ ରହନ୍ତି ସନ୍ତତି ।
ସକଳ ଠାରୁ ବ୍ରହ୍ମ ଅଟଇ ପୁର ସାର
ସ୍ତିରୀ ବୋଲି ପଦାର୍ଥେକ କଲାକ ତତ୍ପର ।
ସିଂହଙ୍କର ମଝା ଯେ ମତ୍ତଗଜର ଗତି
କୂରଙ୍ଗୀ ନୟନୀ କଲା ଦନ୍ତ ଡାଳିମ୍ବ ମଞ୍ଜିପାନ୍ତୀ
ଅରୁଣ ଅଧର କଲା ତିଳ ଯେ ଫୁଲ ନାସା
ଛଚର କେଶ କୃଷ୍ଣାଜିନର ସାଦୃଶ ।
ଭୃଲତା ମଦନ ଧନୁ କର୍ଣ୍ଣ ମୋହ ଫାଶୀ
ଶ୍ରୀଫଳକୁ ବେନି କଲା ଅମୃତ ବିଶେଷି ।
ନବରତ୍ନ କାନ୍ତି ଯେ ଅମୂଲ୍ୟ ପ୍ରତିମା
ଅତି ଯତନରେ ଯେ ସଞ୍ଚିଲେ ବେଦ ବ୍ରହ୍ମା ।
ପ୍ରମଦା ବୋଲିଣ ସ୍ତିରୀଙ୍କର ନାମ ଦେଲା
ଦେଖିଲେ ପର ସୁସ୍ତିରୀ ମନରେ ଲୋଭ ହେଲା ।
ଅତି ଯତନରେ ତାକୁ ନାମ ଦେଲା ବାମା
ବିଚାରିଣ ନାମକୁ ଥୋଇଲା ବିଶ୍ୱକର୍ମା ।
ଯହୁଁ ସେ ଯୁବା ହୋନ୍ତି ଯୁବତୀ ନାମ ତେଣେ
ବଲ୍ଲଭୀ ନାମ ଗୋଟିକି ଧାତା ବୋଲେ ଏଣେ ।
ଏଣୁ ସେ ପ୍ରାଣର ଅଟନ୍ତି ବଲ୍ଲଭୀ
ତେଣୁ ତାର ନାମ ଅଟେ ସଉଭୋଗୀ ।
ତାହାଙ୍କ ଗର୍ଭରୁ ତୁମ୍ଭେ ହେଲ ଜାତ
କୁଟୁମ୍ବୀ ବୋଲି ନାମ ଦେଲେ ଦଇବତ ।
ଅଙ୍ଗରସ ସଉରଭେ ଶୁଭ୍ରକେସୀ ସେ ବୋଲାଇ
ଯଶବନ୍ତ ପଣ ହେଲେ ସୀତା ନାମ ହୋଇ ।
ତାର ହୃଦେ ଦୟା ଥିଲେ ଧର୍ମ କରେ ପାରି
ତେଣୁ ସେ ଧର୍ମ ଅଂଶେ ବୋଲାଉ ଥାନ୍ତି ନାରୀ
ହାସ୍ୟ କରି କହିଲେ ଯେ ଦେବେ ବଶ ହୋନ୍ତି
ଛପନ କୋଟି ଜୀବେ ସ୍ତିରୀ ବଶ୍ୟ ଯାନ୍ତି ।
ବଳରେ ଜିଣିବାରୁ ଅବଳା ନାମ ବହି
ସ୍ତରୀଙ୍କି କାଳେ କାଳେ ସୁପକ୍ଷ ହୋନ୍ତି ମହୀ ।

ସ୍ତିରୀ ଦେଖ ସଂସାରରେ ଅଟନ୍ତି ସାର ଦ୍ରବ୍ୟ
ସ୍ତିରୀଠାରୁ ବଡ଼ ନାହିଁ ସଂସାରେ ଯେ ଭାବ ।
ମୁହିଁ ଦେଖ ମେରୁଧର ଅଟଇ ଯେ ପୃଥ୍ୱୀ
ମୋର ତହୁଁ ଧର୍ମ ବାଳୀ ଏ ସେ ଅଛି ପୃଥ୍ୱୀ ।
ମୁହିଁ ଦେଖ ସ୍ତିରୀକି ଯେ ଏଡ଼େ ବଡ଼ ବଶ୍ୟ
ନୋହେ କି ଆନେ ଆନେ ବୋଲାଏ ଦଶାଈଶ ।
ହସି କରି ରାବଣ ବିମାନ ଘେନି ଗଲା
ବାଟରେ ଯାଉଁଯାଉଁ ପୁରକ ଦେଖିଲା ।
ପାର୍ବତୀ ବୋଇଲେ ତୁମ୍ଭେ କହ ପଞ୍ଚାନନ
ସେ ସ୍ତିରୀ ପୁରୁଷ ଏବେ କିଏ ଅଟେ ପୁଣ ।
ଈଶ୍ୱର ବୋଇଲେ ସେ ଅଟନ୍ତି ମେରୁଗିରି
ମେରୁ ଗୋଟି ପୁରୁଷ ଶୁଣ ତୁ ହେତୁ କରି ।
ଗିରି ଗୋଟି ବିରୀଜା ଅଟନ୍ତି ସେହୁ ନାରୀ
ତେଣୁ କରି ବିଧାତା କଲେ ହେଁ ମେରୁଗିରି ।
ଅଠର କୋଟି ପର୍ବତ ମେରୁ ସଙ୍ଗରେ ରହି
କନ୍ଦର ଅଠର କୋଟି ତାଙ୍କ ସଙ୍ଗେ ରହି ।
ପର୍ବତ ଗୋଟିକୁ ଯେ କନ୍ଦର ଗୋଟିଏ
ସ୍ତିରୀ ପୁରୁଷର ଭାବ ଏଥିରେ ଶୁଣ ତୁ ଏ ।
ଯେଉଁ ପୁରୁଷ ଯେଉଁ ସ୍ତିରୀ ରମଣ ହେଲାବାଟେ
ଯାହାକୁ ରାବଣେଶ୍ୱର ଦେଖିଲା ନେତ୍ରପୁଟେ ।
ଶୋଭା ଗିରି ଶୋଭା ନାମ କନ୍ଦର ଅଟଇ
ତାଙ୍କ ସଙ୍ଗେ କଥା ହେଲେ ବିଶ୍ରବା ତନୟୀ ।
ରାମ ପଚ୍ଛରନ୍ତି ମୁନି ସେଠାରୁ କିସ ହେଲା
ସେ କଥା ବୁଝାଇ କହ କୁମ୍ଭ ଋଷି ବଳା ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ରଘୁପଧାରୀ
ସେଠାବରୁ ରାବଣ ଗଲା ବିଜେ କରି ।
ବାଟରେ ଯାଉଁ ଯାଉଁ ପୁରେକ ଦେଖିଲା
କେଉଁ ପୁର ଏ ବୋଲିଣ ପ୍ରଶସ୍ତେ ପଚ୍ଛରିଲା ।
ବାଜଣାର ଶବଦରେ ସେ ରଥ ଚଳିଯାଇ
ତରୁଣ ବସନ୍ତ ରାଗେ ବାଜଣା ବାଜଇ ।
ଦିବ୍ୟ ବିଳାସିଣୀ ଯେ ଅଛନ୍ତି ତାର ପାଶ
ନେତ ପାଟ ଚାମର ଯେ ବିବିଧ ବର୍ଣ୍ଣେ ପୁଷ୍ପ ।
ରତ୍ନ ଅଳଙ୍କାର ଯେ ଆଲମ୍ଭ ପାଟ ଛତ୍ର
ଦେଖି ମନେ ବିଚାରଇ ବିଶ୍ରବାର ସୁତ ।
କେବଣ ପୁରୁଷ ଏହୁ ଜାଣିବା କେମନ୍ତେ
ଏତେ କହି ପୁଷ୍ପକ ରଥ ବାହେ ସେ ତୁରିତେ ।
ଯାନ୍ତେଣ ଦେଖିଲା ସେ ବ୍ରହ୍ମ ଋଷି ମାନ
ତାହାଙ୍କୁ ବାରତା ଯେ ପୁଚ୍ଛେ ଦଶାନନ ।
ରଥ ଚଢ଼ିଣ ଯେ ସମ୍ପଦ ଦେଖାଏ
କହ ହେ ମହାମୁନି ଏ କେବଣ ଦେଶୁଁ ଆଏ ।
ରାବଣର ବଚନରେ ପର୍ବତ ମହାମୁନି
ବୋଇଲେ ନିଷ୍ପାପୀ ଅଟେ ସେହୁ ମୁନି ପୁଣି ।
ପୁଣ୍ୟ କଲା ଲୋକ ଯେ ଏମନ୍ତ ପୁରି ହୋନ୍ତି
ତପ ଅନୁରୂପରେ ସେ ସୁଖ ଭୋଗ ପାନ୍ତି ।
ରାବଣ ବୋଇଲା ଯାଇ ପଚ୍ଛରି ଆସ ସାଧ
ମୋହର ସଙ୍ଗରେ ଏବେ କରିବ ସେହୁ ଯୁଦ୍ଧ ।
ଋଷି ବୋଇଲେ କିମ୍ପା ଯୁଝିବ ତୋର ସଙ୍ଗେ
ସେ ମହାପୁରୁଷ ଯେ ପାପ ନାହିଁ ଅଙ୍ଗେ ।
ହିଂସା ଥିଲେ ସିନା ସେ ଆବୋରନ୍ତା ବାଦ
ସେ ଲୋକର ସଙ୍ଗରେ ତୁ ନ କର କିଛି ଦ୍ୱନ୍ଦ୍ୱ ।
ଶୁଣିଣ ରାବଣେଶ୍ୱର ବେଗରେ ଚଳିଗଲା
ଜୟଶଙ୍ଖ ବଜାଇ ସେ ଲଙ୍କାରେ ମିଳିଲା ।
ଯେତେବେଳେ ରାବଣଯେ ଗଲା ନିଜପୁର
ଧର୍ମବନ୍ତ ମୁନି ଯେ ରହିଲେ ନିଶାଣର ।
ଅଗସ୍ତି ବୋଇଲେ ତୁମ୍ଭେ ରାମଚନ୍ଦ୍ର ଶୁଣ
ଦିନେକ ପୁଷ୍ପକ ଯେ ଆରୋହେ ରାବଣ ।
ସଙ୍ଗରେ ମଉଳା ଯେ ମନ୍ତ୍ରୀଟି ପ୍ରଶସ୍ତ
ଲଙ୍କାଗଡ଼ରୁ ବାହାର ହେଲେ ବିଂଶହସ୍ତ ।
ବନ ପର୍ବତ ଦେଶ ବୁଲେ ଦଶଗ୍ରୀବ
ସପତପୁର ଭିତରେ ପୁରେକ ଦେଖେ ଠାବ ।
ଦଶସହସ୍ର ଯୋଜନ ସେ ଅଟେ ଆୟତନ
ଅପୂର୍ବ ସୁନ୍ଦର ସେଥିରେ ନରନାରୀମାନ ।
ଚମ୍ପାବର୍ଣ୍ଣ ପ୍ରାୟେ ସେଥିରେ ଦିଶନ୍ତି ପୁରୁଷ
ତହିଁ ଯାଇ ପ୍ରବେଶ ହେଲା ଦଶାଈଶ ।
କୁହୁକ ବର୍ଣ୍ଣ ପରାୟ ଦିଶେ କିଛି ଦୂରେ
ତେଜ ବିକାଶିଲା ଯେ ତଥିର ଉପରେ ।
ଶିଶିର ଝର ଝର ବରଷେ ପୁଣ ତହିଁ
ଦେବ ଦାନବ ସେଥିରେ ପ୍ରଶସ୍ତ କେହି ନାହିଁ ।
ପ୍ରଶସ୍ତ ମନ୍ତ୍ରୀ ବୋଲେ ଶୁଣ ହେ ଲଙ୍କରାୟେ
ମୋର ମନକୁ ଏବେ ଲାଗୁଛି ବଡ଼ ଭୟେ ।
ଏ ଭୁବନ ଗୋଟି ପୁଣ ମାୟା ଯେ ଅଟଇ
ଶୁଦ୍ଧ ସ୍ଫଟୀକର କିରଣ ଝଟକଇ ।

ଏପୁର ତେଜିକରି ଯିବା ଆମ୍ଭେ ରାୟେ
ଶୀତେ ଥରେ ହର କମ୍ପେ ମୋହର ଯେ କାୟେ ।
ରାବଣ ବୋଇଲେ ତୁମ୍ଭେ ଶୁଣ ହେ ମାତୁଳ
କେବଣ କାରଣେ ତୁମ୍ଭେ ହୁଅ ହେ ବିକଳ ।
ଚନ୍ଦ୍ରଙ୍କର ଭୁବନ ଯେ ଜାଣିଲଇଁ ମୁହିଁ
ଯତନରେ ସଂଗ୍ରାମ କରି ତ ଅଇଲଇଁ ।
ପ୍ରଶସ୍ତ ବୋଇଲେ ମୁଁ ଯେ ନ ପାରଇ ରହି
ବେଳେ ବେଳେ ହେମରେ ଯାଡ଼େ ମୋରଦେହୀ ।
ଶୁଣିଣ ରାବଣେଶ୍ୱର ରଥରୁ ଓହ୍ଲାଇଲା
କରରେ ଧନୁ ଧରି ଶୀଘ୍ରରେ ଚଳିଗଲା ।
ଚନ୍ଦ୍ର ଦେବତାଙ୍କୁ ସେ ମାରିତ ବିଷ୍ପରି
ଘନ ଘନ ବାଣ ଯେ ମାରେ ଦଶଗିରି ।
ଯାଜୁଲ୍ୟମାନ ହୋଇଣ ଚଳିଯାଏ ଅସ୍ତ୍ର
ଚନ୍ଦ୍ରର ଭୁବନରେ ପଡ଼େ ମହା ତ୍ରାଶ ।
ନିର୍ଘାତ ଜାଣିକରି ଶବଦ କରନ୍ତି
ନଗ୍ରପୁର ପାଟଣା ସକଳ ଉଡ଼ାନ୍ତି ।
ପଥର ଶିଳା ବରଷେ ଦଶ ଦିଶ
ଚନ୍ଦ୍ର ଦେବତା ଯେ ମନରେ ପାଏ ତ୍ରାଶ ।
ଜାଣିଣ ପିତାମହ ଅଇଲେ ଉଦବେଗ
ଆସିକରି ମିଳିଲେ ସେ ରାବଣର ଆଗ ।
ଦେଖିଣ ନମସ୍କାର କଲେ ଲଙ୍କପତି
ସୁକଲ୍ୟାଣ କଲେ ପ୍ରସନ୍ନ ହୋଇ ମତି ।
ରାବଣଙ୍କୁ ବୋଇଲେ ତୁ ଚନ୍ଦ୍ରକୁ ନ ମାର
ମହତ ଲୋକଙ୍କୁ ଯେ ପୀଡ଼ା ତୁ ନ କର ।
ଜଗତର ହିତକାରୀ ଅମୃତ ପୁରୁଷ
ଏହାଙ୍କୁ ଦଶଗ୍ରୀବ ନ କର ତୁରେ ନାଶ ।
ମୁହିଁ ତୋତେ ମନ୍ତ୍ରେକ କହଇ ଏବେ ଆସ
ଯେବଣ ଠାବରେ ତୋତେ ଅଛିଟି ଏବେ ଯଶ ।
ସେଠାରେ ମନ୍ତ୍ର ପଢ଼ିବୁ ଅସୁର କୁଳ ରାୟେ
ସକଳ ଭୁବନ ତୁ କରିବୁଟି ଜୟେ ।
ଯଶଶ୍ରୀ ଆୟୁଷ ଯେ ବଢ଼ିବ ତୋହର
ଏମନ୍ତ ପ୍ରତାପରେ ଜିଣିବୁ ତିନିପୁର ।
କ୍ଷତ୍ରୀ ହୋଇ ତିନିପୁରେ ନୋହିବ କେ ସରି
ସପତପୁରେ ଯଶ ତୁ କରିବୁ ଦଶଗିରି ।
ଏତେ ବୋଲି ମନ୍ତ୍ର ଯେ କହିଲେ ତାର କର୍ଣ୍ଣେ
ଯହିଁକି ଯିବାକୁ ଯେବଣ ବିଧାନେ ।
ଏ ମନ୍ତ୍ର ପୁରୁଷ ଏ ଅଷ୍ଟ ଉତ୍ତମ ନାମ
ମନ୍ତ୍ରଙ୍କର ମଧ୍ୟରେ ଏ ଅଟେ ମୋକ୍ଷପାନ ।
ସାମ ବେଦରୁ ସାଇତି ଅଛି ବାଛି
ଚନ୍ଦ୍ରବୋଲି ଏହିତ ମନରେ ଭାବୁଛି ।
ଅତି ପ୍ରସନ୍ନରେ ସମର୍ପିଲେ ବିହି
ସାରସ୍ୱତ ମନ୍ତ୍ର ଯେ ରାବଣକୁ କହି ।
ଶୁଣିବା ମାତ୍ରକେ ତାହା ରାବଣ ହେତୁକଲା
ବେଦବର ଆଗେ ମନ୍ତ୍ର ପରୀକ୍ଷା କରାଇଲା ।
ଶୁଣିଣ ପ୍ରସନ୍ନ ଯେ ହେଲେ କୁଶଧର
ଜିଣସି ତିନିପୁର ସକଳ ସୁର ନର ।
ବର ଦେଇଣ ଧାତା ଅନ୍ତର୍ଦ୍ଧାନରେ ଗଲେ
ଚନ୍ଦ୍ରଙ୍କଠାରୁ ତାପ ଛାଡ଼ି ରାବଣେଶ୍ୱରରେ ।
ପୁଷ୍ପକ ଯାନ ଯେ ଚଳେ ଘନ ଘନ
ପଶ୍ଚିମ ସମୁଦ୍ରକୁ ଚଳେ ଦଶାନନ ।
ସିନ୍ଧୁର କୂଳରେ ସେ ମିଳିଲେ ପୁଣ ଯାଇ
ଦିବ୍ୟ ଭୁବନ ସେଥିରେ ଦେଖେ ଲଙ୍କସାଇଁ ।
ନବରତ୍ନେ ନିର୍ମାଣ ହୋଇଛି ଏକପୁର
ମହାତ୍ମା ପୁରୁଷ ଯେ ବସିଛି ପଲ୍ୟଙ୍କର ।
ତାହାଙ୍କୁ ରାବଣ ଯେ ବୋଇଲାକ ଚହିଁ
ମୋର ସଙ୍ଗରେ ତୁ ଯୁଝ ଯୋଦ୍ଧା ହୋଇ ।
ମୁହିଁ ତୋତେ ସଂଗ୍ରାମରେ ଜିଣିବିରେ ଆଜ
ରାବଣ ନାମ ମୋର ଅସୁର କୁଳ ରାଜ ।
ଲଙ୍କାର ଠାକୁର ମୁଁ ଯେ ବିଶ୍ରବାର ସୁତ
ନଉକେଶୀ ରାକ୍ଷାସୁଣୀ ଗର୍ଭରୁ ସମ୍ଭୁତ ।
ବ୍ରହ୍ମାଙ୍କର ବରେ ମୁଁ ଯେ ସାଧିଲି ଜଗତ
ବିଶ୍ରବା ଋଷି ପୁଣି ମୋହର ଅଟେ ତାତ ।
ବଳର ପ୍ରାକର୍ମେ ମୁଁ ସାଧିଲି ତିନିପୁର
ବରୁଣ, କୁବେର, ଚନ୍ଦ୍ର, ବାସୁକୀ ସହିତର ।
କେହି ମୋତେ ସଂଗ୍ରାମେ ନୋହିଲେ ପୁଣ ସରି
ହେଳେଣ ଉପାଡ଼ିଲୁ କପିଳାସ ଗିରି ।
ସଂଗ୍ରାମରେ ତୋଷ କେଭେ ନୋହେ ମୋରମନ
ବୁଲି ଆସୁଅଛି ମୁଁ ସକଳ ଭୁବନ ।
ଯୋଗେଣ ଭେଟ ମୁଁ ଆଜ ପାଇଲି ତୋତେ
ଉଠି ସଜ ହୁଅ ସଂଗ୍ରାମ ଦିଅ ମୋତେ ।
ଶୁଣିଣ ମହାତମା କୋପମନ କଲା
ଦଶଗ୍ରୀବ ରାଜାଙ୍କୁ ଚକ୍ରେକ ମାଇଲା ।

ରାବଣର ହୃଦରେ ପଡ଼ିଲା ମହାଶସ୍ତ୍ର
ବ୍ୟଥା ପାଇଲାକ ତେଣେ ବିଶର୍ବାର ସୁତ ।
ବୁକୁରେ ବାଜି ଅସ୍ତ୍ର ଥୋକାଏ ବହିଗଲା
ଭ୍ରାନ୍ତି କରି ରାବଣ ସେଠାରୁ ଫେରିଲା ।
ପାର୍ବତୀ ବୋଇଲେ ଦେବ କଥାଏ ଯେ ଶୁଣ
ପ୍ରତିଦିନ ଚନ୍ଦ୍ର ତ ଆକାଶେ ଉଦେ ପୁଣ ।
ରାବଣ ଗଲା ଦିନ କିମ୍ପାଇଁ ପୁରେ ଥିଲେ
ସେଦିନ ଆକାଶରେ ଉଦୟେ ନୋହିଲେ ।
ଈଶ୍ୱର ବୋଇଲେ ସେଦିନ ଚନ୍ଦ୍ର କ୍ଷୟେ
ସେଥି ଆକାଶରେ ଉଦୟେ ନୋହିଲେ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ସେଠାରୁ ରାବଣ ଲେଉଟି ଯାଏ ଧାତି ।
ସେ ପୁରୁଷ ହାତେ ଚକ୍ର ମିଳିଲାକ ଯାଇଁ
ବୋଲନ୍ତି ଅଗସ୍ତି ତୁମ୍ଭେ ଶୁଣ ରଘୁସାଇଁ ।
ରାବଣର ହୃଦରେ ଯହୁଁ ଚକ୍ର ବାଜି
ବ୍ୟଥା ପାଇ ଦଇତ୍ୟ ପଡ଼େ ଗଳଗାଜି ।
ନିଚ୍ରେଷ୍ଟ ହୋଇଣ ଯେ ପଡ଼େ ଭୂମିତଳେ
ମହାତ୍ମା ପୁରୁଷ ଯାଇ ପଶିଲା ପାତାଳେ ।
କ୍ଷଣକେ ଚେତନା ଯେ ପାଏ ରାୟେ ଉଠି
ମନ୍ତ୍ରୀକି ଚାହିଁଣ ସେ କରେ କୋପ ଦୃଷ୍ଟି ।
ବୋଇଲା ସେ ପୁରୁଷ କେଣିକି ଏବେ ଗଲା
ଆବର କିମ୍ପା ମୋର ଛାମୁରେ ନ ମିଳିଲା ।
ପ୍ରଶସ୍ତ ବୋଇଲା ସେ ଯେ ପାତାଳେ ପଶିଲା
ଶୁଣିକରି ରାବଣ ମହାକୋପ କଲା ।
ଯେଉଁ ବାଟରେ ସେ ପାତାଳକୁ ଗଲା
ସେହିବାଟେ ରାବଣ ଯେ ପାତାଳେ ପଶିଲା ।
ଦେଖିଲାକ ଦିବ୍ୟ ଭୁବନ ବିତପନ
କାରୁଣ୍ୟ ପୁରୁଷ ଦେଖେ ଶୁଦ୍ଧ ଯେ ସୁବର୍ଣ୍ଣ ।
ମଧ୍ୟାହ୍ନ ସୂର୍ଯ୍ୟ ପ୍ରାୟେ ତେଜ ତାର ଦିଶି
ସେ ପୁର ଅମୂଲ୍ୟ ଯେ ତେଜରେ ପରକାଶି ।
ମଣିମୟ ସିଂହାସନେ ଅଛନ୍ତି ଦେବହରି
ଶଙ୍ଖ ଚକ୍ର ଗଦା ଯେ ପଦ୍ମ କରେ ଧରି ।
ପୀତବସନ ଯେ ଶ୍ରୀଅଙ୍ଗେ ଶୋଭାବନ
ମୁକୁଟ କୁଣ୍ଡଳ ଯେ କୌସ୍ତୁଭ ଆବରଣ ।
ପ୍ରସନ୍ନ ବଦନ ଯେ ରାଜୀବ ଲୋଚନ
ସର୍ବାଙ୍ଗେ କସ୍ତୁରୀ ଦିଶେ କୁଙ୍କୁମର ବର୍ଣ୍ଣ ।
ବୀଦ ମୁଦି ତାଡ ଯେ ବାହୁଟି କଙ୍କଣ
ହାର ନୂପୁର ଯେ ବିବିଧ ଆଭରଣ ।
ପଦ୍ମରାଗ ମାଣିକ୍ୟରେ ମଣ୍ଡପ ଶୋହଇ
ବିଜେ କରିଛନ୍ତି ଦିବ୍ୟରୂପ ହୋଇ ।
ତିନି କୋଟି ଶ୍ୱେତ ଚାମର ପାଶେ ପଡ଼ି
ଦାସ ଦାସୀମାନେ ଅଛନ୍ତି ପଟୁଆରି ।
ଦିବ୍ୟ ପଲଙ୍କରେ ଅଛନ୍ତି ସ୍ୱାମୀ ଶୋଇ
ଅଚିନ୍ତା ପୁରୁଷ ସେ ଚିନ୍ତା ତାଙ୍କର ନାହିଁ ।
ଦିବ୍ୟ ପଲଙ୍କରେ ଶେଯାଇ ଅଛି ଶେଯ
ତହିଁପରେ ଶୟନ କରିଛନ୍ତି ଦେବରାଜ ।
ଏକ ସ୍ତିରୀଏ, ଯେ ଜଗତ ମୋହିନୀ
ଶ୍ରୀହରିର ପାଦକୁ ମଞ୍ଚାଳେ କାମିନୀ ।
ଏସନେକ ସମୟରେ ମିଳିଲା ରାବଣ
ଦେଖିଲା ବାସୁଦେବର ଆଶ୍ରମ ବଡ଼ପଣ ।
ନିଶ୍ଚିନ୍ତ ହୋଇଣ ଅଛନ୍ତି ସ୍ୱାମୀ ଶୋଇ
ଚିନ୍ତା ବୋଲି ତାଙ୍କର କାହାଠାରେ ନାହିଁ ।
ମହାଲକ୍ଷ୍ମୀ ଶ୍ରୀହରିର ଚାପନ୍ତି ଚରଣ
ଦେଖିଣ କାମଭର ଯେ ହୋଇଲା ରାବଣ ।
ମନେ ବିଚାରିଲା ଜନ ବା ଏଥି ନାହିଁ
ଏହାକୁ ପ୍ରିୟବତୀ କରିବି ମୁଁ ନେଇ ।
ସର୍ବାଙ୍ଗ ସୁନ୍ଦରୀ ସେ ଅମୂଲ୍ୟ ପ୍ରତିମା
କେତେକାଳ ବସିଣ ଗଢ଼ିଲା ବିଶ୍ୱକର୍ମା ।
କୋପେଣ ଅଇଲି ଯେ ପ୍ରାପତ ମୋତେ ଅଛି
ଏତେବୋଲି ନିକଟକୁ ଗଲା ବିଶ୍ରବାର ବତ୍ସି ।
ନେବି ବୋଲିଣ ଯହୁଁ ସେ କଲାକ ବିଚାର
ନିଦ୍ରାତେଜି ଦେବ ଚାହିଁଲେ ଚକ୍ରଧର ।
ଚାହିଁବାର ମାତ୍ରକେ ରାବଣ ପଡ଼ିଗଲା
ବାସୁଦେବର ତେଜ ଦ୍ରୋସନା ଲାଗିଲା ।
ଶରୀରେ ତାହାର କିଛିହିଁ ଜ୍ଞାନ ନାହିଁ
ଉଠିଆସି ଟୋଳି ଧଇଲେ ଲକ୍ଷ୍ମୀସାଇଁ ।
ଜ୍ଞାନପାଇ ଦଶଗ୍ରୀବ ଉଠିଲାକ ଯହୁଁ
ଶ୍ରୀହରି ସମାସ୍ୟା ଯେ କରନ୍ତି ତାକୁ ତହୁଁ ।
ବୋଇଲେ ଏଠାବରେ ତୋତେ ନାହିଁ ମୃତ୍ୟୁ
ଏତେବୋଲି ଚକ୍ରଧର କହିଲେ ତାକୁ ତତୁ ।
ଅଭୟବର ତୋତେ ଦେଇଛି କୁଶ କେତୁ
ତୋତେ ବର ଦେବାଫଳ ଅଙ୍ଗରେ ଭୋଗନ୍ତୁ ।

ତୋଠାରୁ ପ୍ରାଭବ ପାଇ ମୋତେ ସେ ସୁମରୁ
ତେବେ ଯାଇଁ ଦୈତ୍ୟବୀର ମୋର ହସ୍ତେ ମରୁ ।
ଶୁଣିକରି ରାବଣ ଉଠେ ଶାନ୍ତି ହୋଇ
ବାସୁଦେବଙ୍କୁ ଚାହିଁ ତୁରିତେ କଥା କହି ।
ଭୋ ମହାତମା ତୁ କେବଣ ପୁରୁଷ
ତୋତେ ପଟାନ୍ତର ନାହାନ୍ତି ତ୍ରୀଦଶ ।
ତୋରପରା ପୁରୁଷ ଦେଖିଲା ମୋର ନାହିଁ
ହସି ନାରାୟଣ ବୋଲେ ଦୈତ୍ୟକୁ ଚାହିଁ ।
ତୁ ମୋତେ ଜାଣିବାରେ ତୋର କିସ କାର୍ଯ୍ୟ
ମୋର ନାମ ଶୁଣି ତୋର ନ ରହେ ଧଇର୍ଯ୍ୟ ।
ଯାଅଯା ବେଗେ ଏଠାରୁ ତୁ ହୋ ଲଙ୍କସାଇଁ
ରାବଣ ବୋଇଲା ମୁଁ ବ୍ରହ୍ମାର ବର ପାଇ ।
ତ୍ରୈଲୋକ୍ୟରେ ଆଜ ଯେ ମରଣ ମୋତେ ନାହିଁ
ଏତେ ବୋଲି ରାବଣ ଯେ ବଚନ କହଇ ।
ଯଦ୍ୟପି ବ୍ରହ୍ମା ମୋତେ ଦେଇଅଛି ବର
ତୋହପ୍ରାୟେ ପୃଥ୍ୱୀରେ ମୁଁ ନ ଦେଖିଲି ବୀର ।
ଶୁଣିଣ ଶ୍ରୀରାମ ଯେ ବଦନ୍ତି ଅଗସ୍ତି
ଚଉଦ ଭୁବନ ଯେ ସପତଦ୍ୱୀପା ପୃଥ୍ୱୀ ।
ଚଉଦ ଭୁବନରେ ବନଗିରି ପୂରି
ନର, ସୁର, ଅସୁର, ଗନ୍ଧର୍ବ ଆଦି କରି ।
ଅପସରୀ କିନ୍ନରୀ ଯେ ବିଦ୍ୟାଧରୀ ତୁଲେ
ଛପନ କୋଟି ଜୀବଜନ୍ତୁ ଯେ ସକଳେ ।
ଯେବଣ ପୁରୁଷ ସେ ଗର୍ଭରେ ଛନ୍ତି ଥୋଇ
କରତା ପୁରୁଷ ଉଦାର ମତ ହୋଇ ।
ରାବଣ ତାହାଙ୍କୁ ଯେ ଦେଖିଣ ପ୍ରଶଂସି
ଅଗସ୍ତିଙ୍କ ବଚନେ ରାମଚନ୍ଦ୍ର ହସି ।
କରଯୋଡ଼ିଣ ଯେ କହନ୍ତି ରଘୁରାଣ
ଭୋ ମହାମୁନି ଅଟେ କେବଣ କାରଣ ।
ଅଗସ୍ତି ବୋଇଲେ ଯାହା ପ୍ରଥମେ ଦେଖିଲା
ପାତାଳୁ ସେ ପୁରୁଷ ଆସିଣ ବସିଥିଲା ।
ରାମ ବୋଇଲେ ଶୟନ କଲେ କାହିଁପାଇଁ
ଅଗସ୍ତି ବୋଇଲେ ରମଣେ ଶ୍ରଦ୍ଧା ହୋଇ ।
କମଳିଣୀ ସଙ୍ଗରେ ହୋଇବାରୁ ସଙ୍ଗ
ଏ ସମୟେ ଆସିଣ ମିଳିଲେ ଅଭଙ୍ଗ ।
କରଯୋଡ଼ି କହିଲା ନୋହିବ ନୀଳାରସ
ଅଯୋଗେ ଉଠିଲେ ଯୋଗ ହେଉ ଯେ ପରାପତ ।
ଶ୍ରୀହରି ବୋଇଲେ ତୁହି ଶୁଣରେ ଅଭଙ୍ଗ
କେତେବେଳ ଯାଏ ମୋତେ ଅଛଇ ଦୁର୍ଯ୍ୟୋଗ ।
ଅଭଙ୍ଗ ବୋଇଲା ଦେବ ଅଳପ ପୁଣି ଅଛି
ମଞ୍ଚପୁରକୁ ବିଜେ କର ହେ ଶ୍ରୀବତ୍ସ ।
ଅଯୋଗତକ ଦେବ କରିବ ଯେ ଭୋଗ
ଦ୍ୱାରପାଳ ଦୈତ୍ୟରୂପ ହୋଇଣ ଭେଟିବ ।
ଏତେକହି ଅଭଙ୍ଗ ଯେ ଅନ୍ତର୍ଦ୍ଧାନେ ଗଲା
ଶୁଣି ବାସୁଦେବ ମଞ୍ଚପୁରକୁ ଅଇଲା ।
ବଇଦୁର୍ଯ୍ୟ ମଣ୍ଡପରେ ବସିଲେ ପ୍ରଭୁଯାଇ
ଏହି ସମୟରେ ରାବଣ ଭେଟ ହୋଇ ।
ନୀଳନ୍ଦୀ ପୁଷ୍ପ ପ୍ରାୟେ ରାବଣ ଦେଖି ବର୍ଣ୍ଣ
ସେ ବାସୁଦେବର ରାମ ସହସ୍ରେ ଲୋଚନ ।
ଯେବଣ ପୁରୁଷକୁ ପାତାଳେ ଦେଖିଲା
ଦିବ୍ୟପୁରେ ଯେବଣ ପୁରୁଷ ଶୋଇଥିଲା ।
ସେହିଟି ଅନନ୍ତ ପୁରୁଷ ଦେବହରି
ଦେବତାମାନେ ତାଙ୍କୁ ଥାନ୍ତି ସେବାକରି ।
ତାଙ୍କ କତିରେ ଅଛି ଆରେକ ପୁରୁଷ
ଅପୂର୍ବ ପୁରୁଷ ସେ ଅଟେ ଆଦିହଂସ ।
ଶୁଣିଣ ରଘୁନାଥ ତୃପତି ହୋଇଲେ
ଏଥୁ ଅନନ୍ତରେ କଥା କହସି ବୋଇଲେ ।
ରାବଣ ଯେ ପାତାଳ ପୁରରେ ପଶିଥିଲା
ସେଠାରୁ ରାବଣ ଆସି କେବଣ କୃତ୍ୟକଲା ।
ଅଗସ୍ତି ବୋଇଲେ ଶୁଣ କୋଦଣ୍ଡ ଧାରଣ
ବାସୁଦେବଙ୍କ ଛାମୁରୁ ବାହୁଡ଼େ ରାବଣ ।
ଭୟମନ କରି ସେ ବେଗେ ବାହାରିଲା
ପାତାଳୁଁ ବାହାର ହୋଇ ମଞ୍ଚରେ ମିଳିଲା ।
ମନ୍ତ୍ରୀମାନଙ୍କ ଆଗରେ କହେ ଯେ ରାବଣ
ଆରୋହଣ କଲା ସେ ପୁଷ୍ପକ ବିମାନ ।
ସେଠାରୁ ନୃପତିଙ୍କ ପୁରକୁ ଚଳିଗଲା
ନଗ୍ରେ ପଶି ରାଜାଙ୍କର ଦୋହିତା ଆଣିଲା ।
ଅନେକ ନୃପତିଙ୍କର ଯୁବତୀ ବହୁତ
ପୁଷ୍ପକ ରଥେ ଆଣିଣ ବସାଏ ଦଇତ୍ୟ ।
ଗଗନ ମାର୍ଗରେ ରଥ ଗଲା ତାର ଚଳି
ରାଜାମାନେ ବିକଳେ ନାରାୟଣଙ୍କୁ ସୁମରି ।
ଦଇତ୍ୟ ଯୁବତୀ ନେଲା ଖାଇବାର ପାଇଁ
ଏମନ୍ତେ ବିଚାର ରାଜା ମନେ କ୍ରୋଧ ହୋଇ ।

ରାଜାଙ୍କର ବିକଳ ଦେଖିଣ ସ୍ତିରୀମାନେ
ଆହା ଆହା ସ୍ୱାମୀ ବୋଲି କରନ୍ତି ରୋଦନେ ।
ଅନାସ୍ତ ହୋଇଣ ସେ କୋପରେ ଶାପଦେଲେ
ପରସ୍ତିରୀ ହରଣେ ମର ତୁ ବୋଇଲେ ।
ଏସନେକ ସମୟରେ ମିଳେ ସୂର୍ପଲେଖ
ଗଗନ ମାର୍ଗରେ ରଥ ଚଳନ୍ତେଣ ଦେଖି ।
ରାବଣ ବୋଇଲା ତୁ ଯେ ଅଇଲୁ କିସପାଇଁ
ସୂର୍ପଲେଖୀ ବୋଲେ ନାଶଗଲେ ମୋର ସାଇଁ ।
କେଳକେତୁ ଦଇତ୍ୟର ସଙ୍ଗରେ ସେ ଥିଲା
ଦଶସହସ୍ର ବଳ ଘେନିଣ ସେ ଗଲା ।
ଗନ୍ଧର୍ବ ତାକୁ ଆସି ରାତ୍ରରେ ମାଇଲା
ଅନେକ ଯୁଦ୍ଧ କରି ଜିଣି ନପାରିଲା ।
ଭଲ ଭଲ ରାକ୍ଷସ ତା ସଙ୍ଗରେ ମଲେ
ଗନ୍ଧର୍ବେ ଗୋଳକରି ରାତ୍ରରେ ନାଶକଲେ ।
ମୋହର ସ୍ୱାମୀ ହାଦେ ହୋଇଲା ନିଧନ
ତୋତେ କହିବି ବୋଲି ଆସିଛି ଦଶାନନ ।
ତୁ କିମ୍ପା ପରସ୍ତିରୀ ହରୁ ଲଙ୍କସାଇଁ
ଏ କଥା ତୋତେ କେଭେ ତହିଁ ନ ଯୋଗାଇ ।
ଧର୍ମରେ ସିନା ଧାତା ହେଲେ ପିତାମହ-
ଧର୍ମ ବିହୁନେ ଆନ ନାହିଁଟି ସନ୍ଦେହ ।
ଧର୍ମ ଯେ ପ୍ରାଣୀଙ୍କି ସର୍ବଦା ଅଟେ ସାହା
ପାପୀ ଲୋକେ ସୁଖ ନପାନ୍ତି ବିଂଶବାହା ।
ଧର୍ମରେ ଚନ୍ଦ୍ର, ସୂର୍ଯ୍ୟ ଅନ୍ଧାର ଆଲୁଅ କରି
ଧର୍ମରେ ବସୁନ୍ଧରୀ ଜଗତ ଅଛି ଧରି ।
ତୁହୋ ମହାରାଜା ଧର୍ମ କିମ୍ପା ଛାଡୁ
ଜ୍ଞାନବନ୍ତ ପୁରୁଷ ଅମଡ଼ା କିମ୍ପା ମାଡୁ ।
ଛାଡ଼ ଛାଡ଼ ଯୁବତୀଙ୍କି ନଯାଅ ତାଙ୍କ ପାଶ
ଭଗ୍ନୀର ବୋଲେ ତାଙ୍କୁ ଛାଡ଼େ ଦଶଈଶ ।
ଭୋ ଭ୍ରାତ ତୁମ୍ଭେ ମୋର ବୋଲକର ଏବେ
ଅସନ୍ଥ ଲୋକର ବୁଦ୍ଧି ନରକଟି ତୁମ୍ଭେ ।
ପାପୀ ଲୋକମାନଙ୍କୁ ନ ସହେଟି ମହୀ
ପାପୀ ଲୋକମାନଙ୍କୁ କଥା ଯେ ନକହି ।
ସର୍ବଦା ସୁଖୀ ଯେ ନୋହେ ପାପୀ ଲୋକ
ଆଗରେ ସୁଖୀ ହୋଇ ପଛେ ପଡ଼ନ୍ତି ନର୍କ ।
ଧର୍ମବନ୍ତ ଲୋକ ଯେ ସବୁଦିନରେ ସୁଖୀ
ଧର୍ମବନ୍ତ ଲୋକକୁ ଦେବତାସଙ୍ଗେ ଲେଖି ।
ଧର୍ମକୁ ନ ଛାଡ଼ ଯେ ମହାରାଜା ହୋଇ
ଲୋଭକଲେ ପ୍ରାଣୀ ଯେ କେବେହେଁ ସୁଖୀନୋହି ।
ଶାନ୍ତି ପଣେ ଥିଲେ ହୋ ଦୁଇ ଲୋକଜିଣି ।
ସର୍ବଦା ଶାନ୍ତିରେ ଥିଲେ ଅଟନ୍ତି ପୁଣ୍ୟପ୍ରାଣୀ ।
ବ୍ରହ୍ମାଙ୍କର ନାତି ତୁ ବିଶ୍ରବାର ସୁତ
ବେଦ ବେଦାନ୍ତଙ୍କର ଆଚ୍ଛର ନ୍ୟାୟବନ୍ତ ।
ମାତାର ଗୁଣେ ତୁରେ ରାକ୍ଷସ ହୋଇଲୁ
ଚଉଦ ଭୁବନରେ ଅଖ୍ୟାତି ତୁ ପାଇଲୁ ।
ଦେବତାଏ ସର୍ବଦା ଚିନ୍ତନ୍ତି ତୋତେ ମନ୍ଦ
ସଦାକାଳେ ଅସୁରଙ୍କ ବଇରୀଟି ଗୋବିନ୍ଦ ।
ବାସୁଦେବଙ୍କୁ ଭୟ ତୁ କର ହୋ ନୃପତି
ଯେବେ ତୁ ସର୍ବଦା ଏ କୁଳେ ଥିବୁ ବର୍ତ୍ତି ।
ପାପ ଆଚରିଲେ ଯେ ଅବଶ୍ୟ ହେବୁ ହତ
ପାପରେ ପ୍ରାଣୀଙ୍କର ଛାଡ଼େ ଯତ ସତ ।
ଯେବଣ ପ୍ରାଣୀଙ୍କରେ ପଡ଼ଇ ଦୁର୍ଗତି
ସେ ଯେବେ ଆଶ୍ରେ କରଇ ବାସୁଦେବ ମୂର୍ତ୍ତି ।
ଗର୍ଭରେ ଅଷ୍ଟମାସ ହେଲେ ପୁଣ ପୁଣି
ଅଳପେ ହତ ହୋଏ ପୁରାଣର ଏ ବାଣୀ ।
ଯେ ଅବା ଚିତ୍ତ ସୁଖେ ଉଚ୍ଚାର କରେ ଧର୍ମ
ତାଠାରେ ଦୟା ବଡ଼ ବାସୁଦେବର ପୁଣ ।
ତୁରେ ଦୈତ୍ୟରାୟେ ଜଗତର ବଇରୀ
ଲୋଭ କରି କିମ୍ପାରେ ହରୁ ପରନାରୀ ।
ମୋର ବୋଲ କରରେ ଛାଡ଼ ତୁ ଏହାନ୍ତ
ଶୁଣିଣ ପ୍ରବୋଧ ହେଲା ମନ୍ଦୋଦରୀ କାନ୍ତ ।
ଭଗ୍ନୀର ବୋଲେ ଯୁବତୀମାନଙ୍କୁ ଉପେକ୍ଷି
ବାହୁଡ଼ି ଲଙ୍କାଗଡ଼କୁ ଗଲା ସୂର୍ପଲେଖୀ ।
ଶୁଣନ୍ତି ପାର୍ବତୀ ଯେ କହନ୍ତି ସଦାଶିବ
ଏଥୁ ଅନନ୍ତରେ ଯେ ରାବଣ ଦଶଗ୍ରୀବ ।
ପାର୍ବତୀ ବୋଇଲେ ଶୁଣ ତ୍ରିପୁରାରୀ
କଥାଏ ରହିଲା ମୋତେ କହିବ ଫେଡ଼ିକରି ।
ପାତାଳ ବଇକୁଣ୍ଠରୁ ଅଇଲା ରାବଣ
ନାରାୟଣ କିସ କଲେ ସେ ଉତ୍ତାରୁ ପୁଣ ।
ଈଶ୍ୱର ବୋଇଲେ ତୁ ଶୁଣ ଶଶୀମୁଖୀ
ଦୁର୍ଯ୍ୟୋଗ ସରିଲା ତାର ସୁଯୋଗ ହେଲା ଆସି ।
କମଳାଙ୍ଗ ସଙ୍ଗରେ କଲେ ସେ ପ୍ରୀତିଭାବ
ନାନା ଶୃତିରେ ରମଣ କଲେ ବାସୁଦେବ ।

ପଦ୍ମିନୀ ତୋଷହେଲେ ନାରାୟଣ ତୋଷ
ଶୟନରେ ବିଜେକଲେ କମଳା ବିଳାସ ।
ଏଥୁ ଅନନ୍ତରେ କଥା ଶୁଣ ଭଗବତୀ
ରାବଣ ଯେ ଛାଡ଼ିଲା ନୃପତିଙ୍କ ଯୁବତୀ ।
ପୁଷ୍ପକ ବିମାନ ଯେ ବାହେ ଅନ୍ତରାଳେ
ଯାଇଣ ମିଳିଲା ସେ ପଶ୍ଚିମ ସିନ୍ଧୁ କୂଳେ ।
ପାର୍ବତୀ ବୋଲେ ତୁମ୍ଭେ ଶୁଣ ହେ ପଞ୍ଚାନନ
ନୃପତିମାନଙ୍କ ନାରୀ କିସ କଲେ ପୁଣ ।
ଈଶ୍ୱର ବୋଇଲେ ସେ ଯେ ଯାହାପୁରେ ଗଲେ
ପିତା ମାତା ଗୁରସ୍ତ ମନ ରମ୍ୟକଲେ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ଈଶ୍ୱର ବୋଇଲେ ସେକଥା ଶୁଣ ଭଲା ।
ଶ୍ରୀରାମଚନ୍ଦ୍ର ଆଗରେ ଯାହା ଅଗସ୍ତି ଋଷିକହି
ପଶ୍ଚିମ ଭାଗରେ ରାବଣେଶ୍ୱର ମିଳଇ ।
ମଧୁବନ ଭିତରେ ହେଲା ପରବେଶ
ଦେଖିଣ ନରଲୋକେ ପାଇଲେ ମନେତ୍ରାସ ।
ରାବଣ ଅଇଲା ବୋଲି ଜାଣିଲେ ସକଳେ
ରାଜାଙ୍କର ଛାମୁରେ ଯାଇଁଣ କହିଲେ ।
ଶୁଣିଣ ନୃପବର ଅନ୍ତର୍ଦ୍ଧାନରେ ଗଲା
ନିଜର ରମଣୀ ଆଗରେ କହିଲା ।
ଶୁଣ ଗୋ କୁମ୍ଭଲେଖୀ ଅପୂର୍ବ ଯେ କଥା
ଲଙ୍କାରୁ ତୋର ଭାଇ ନୃପତି ଦଶମଥା ।
ପୁଷ୍ପକ ବିମାନ ସେ ଆରୋହିଣ ଆୟେ
ଦେଖିଣ ପରଜାମାନେ ତାକୁ କଲେ ଭୟେ ।
ତୁ ଯାଇଁ ବୋଧକରି ବାହୁଡ଼ି ଏଥୁଁ ଯାଉ
ମୋତେ ଅନୁଗ୍ରହ କରୁ ବିଂଶ ବାହୁ ।
ଶୁଣିକରି କୁମ୍ଭଲେଖୀ ବିକ୍ରମେ ଆକାଶେ
ଯାଇ କରି ମିଳିଲା ସେ ଦଶାନନ ପାଶେ ।
ନମସ୍କାର କରିଣ ବୋଲେ ସେ ବଚନ
ଶୁଣ ଭାଇ ମୋରରେ ଲଙ୍କାର ଦଶାନନ ।
ମୁହିଁ ତୋର ଜନନୀ ଭଗ୍ନୀର ତନୟୀ
ପୁଷ୍ପ ଉତ୍କୁଟ ଯେ ଅଟେ ମୋର ଆଇ ।
ମଥୁରା ପୁର ରାଜାକୁ ମୋତେ ବିଭାକଲେ
ମଧୁ ଦଇତ୍ୟକୁ ସେ କନ୍ୟାଦାନ ଦେଲେ ।
ସେଠାରୁ ମୋର ପୁତ୍ର ହୋଇଲା ରାବଣ
ସମୁଦ୍ରକୁ ସେବାକରି ପାଇଲା ବଡ଼ପଣ ।

ତେଣୁକରି ତାକୁ ଲବଣ ନାମ ଦେଲି
ମୋ ଭ୍ରଥା ସଙ୍ଗେ ମଧୁବନରେ ରହିଲି ।
ତୁ ଏବେ ବଡ଼ ଯେ ହୋଇଲୁ ଲଙ୍କେଶ୍ୱର
ଦେବଙ୍କୁ ପୋଷିବାର ଯଥାର୍ଥ ବେଭାର ।
ଅଇଶ୍ୱର୍ଯ୍ୟ ଭୋଗ କରନ୍ତି ଯେଉଁ ପ୍ରାଣୀ
ବନ୍ଧୁ କୁଟୁମ୍ବ ନ ପୋଷିଲେ ହୁଏ ଧର୍ମହାନି ।
ବନ୍ଧୁ କୁଟୁମ୍ବ ଲେଛି ଯେ ଆନଧର୍ମ କରେ
ମଲେ ସେ ନର୍କକୁ ଯାଇ କୃମି ତା ଦେହରେ ।
ସବୁ ପୁଣ୍ୟ ଠୁଳ ହୋଏ ବନ୍ଧୁ କୁଟୁମ୍ବ ମୂଳ
ବନ୍ଧୁ କୁଟୁମ୍ବ ନ ପୋଷିଲେ ନାଶଯାଏ କୁଳ ।
ସ୍ୱଭାବେ ଭ୍ରଥା ମୋର ବର୍ତ୍ତିବ ତୋରହିତେ
ତୋର ପୀରତି ସେ ନ ଛାଡ଼େ କଦାଚିତେ ।
ତୁମ୍ଭେ ଏହାକୁ କୋପ ଯେ ନ କର ଲଙ୍କସାଇଁ
ଏହାକୁ ମାରିବାରେ ପ୍ରୟୋଜନ ନାହିଁ ।
ସ୍ୱାମୀକି ମୋହର ବେଳେ ରକ୍ଷାକର
ମୋର ପ୍ରବୋଧ ଘେନି ଏବେ ତୁ ଅପସର ।
ଶୁଣିଣ ଦଶଗ୍ରୀବ ଯେ ବାହୁଡ଼ାଏ ରଥ
ଉତ୍ତର ଅଭିମୁଖେ ଚଳେ ଦଶମାଥ ।
ନିରନ୍ତରେ ସୈନ୍ୟ ରଥରେ ବସିଥାନ୍ତି
ବିବିଧ ଛନ୍ଦରେ ଦାଉଣ୍ଡୀ ବଜାନ୍ତି ।
ଥୋକେ ବେଳ ଉଭାରେ ରବିଅସ୍ତ ହେଲେ
ଜଗତଯାକରେ ତିମିର ଆଚ୍ଛାଦିଲେ ।
ଦିଗ ବୁଲିଣ ଯେ ଫୁଟିଲେ ପୁଣି ଲୋକେ
ଭୟଛାଡ଼ି ଦଶଗ୍ରୀବକୁ ଜଣାବନ୍ତି ଥୋକେ ।
ଭୋଦେବ ଲଙ୍କାରୁ ହେ ଅଇଲୁଁ ଯେଉଁଦିନ
ସେହି ଦିନଠାରୁ ଆମ୍ଭେ ବସିଛୁଁ ବିମାନ ।
ଚଉଦ ଭୁବନ ଯେ ବୁଲିଲୁ ସାତପୁର
ପୃଥ୍ୱୀ ବୁଲିବାକୁ ତୋ ସଙ୍ଗେ ଶରଧା ଆମ୍ଭର ।
ସ୍ୱଭାବେ ରଜନୀ ହେ ଆଚ୍ଛାଦେ ପୁଣି ଆସି
ଦଶଦିଗ ଅନ୍ଧାର ଯେ କିଛିହିଁ ନଦିଶି ।
ବିଶ୍ରାମକୁ ଯୋଗାଇଲେ ରହିବା ନା ଏଥ
କପିଳାସ ପର୍ବତ ତଳ ଶୁଣ ହେ ଦଶମାଥ ।
ସ୍ୱର୍ଗକୁ ଏ ମଞ୍ଚ ମଞ୍ଚକୁଇଁ ଦିବ୍ୟସ୍ଥାନ
ଏଥିରେ ରହିଥାନ୍ତି ଯେ ଦିଗପାଳମାନ ।
ଶୁଣି ଲଙ୍କପତି ଯେ ହୋଇଲେ ତୃପତି
କପିଳାସ ତଳେ ରଥ କଲା ନେଇ ସ୍ଥିତି ।

ଭୂମିଗତ ହେବାରୁ ରଥରୁ ଓହ୍ଲାଏ ପୁଣିସୈନ୍ୟ
ପାଞ୍ଚକୋଶ ମାଡ଼ିଣ ରହିଲେ ସୈନ୍ୟଜାଣ ।
ସମରର ଶ୍ରମରେ ନିଦ୍ରା ଆକର୍ଷିଲା
ଶୁତିଲେ ଅସୁରବଳ ଭୟ ଉପେକ୍ଷିଲା ।
ରାବଣେଶ୍ୱର ଏକା ଯେ ବିମାନେ ଅଛି ବସି
ମହୀଯୁଗ ପୁରୁଷ ସେ କାଳକୁ ଅଛି ଗ୍ରାସି ।
ଲଙ୍କାର ରାବଣ ଅପକୀର୍ତ୍ତି ଅର୍ଜି
ଚଞ୍ଚଳ ପ୍ରକୃତି ସେହି ଅଛି ଭଜି ।
ପର ସ୍ଥାନେ ରହିବାରୁ ଶଙ୍କା ତାର ମନେ
ସ୍ୱଭାବେ ଭାଇର ଭୂଇଁ କୁବେର ଆୟତନେ ।
ତେଣୁ ଆମ୍ଭାକୁ ତାର କେଭେ ନାହିଁ ସୁସ୍ଥ
ସୈନ୍ୟର ବୋଲେ ସିନା ରହେ ସେ ସ୍ଥାନ୍ତ ।
ଯଦ୍ୟପି ରହିଲା ସେ ଜାଗ୍ରତ ହେଲା ନିଶି
ପରସ୍ଥାନେ ଉଜାଗରେ ପ୍ରମାଦ ନ ପଶି ।
ସେ କଥା ଜାଣେ ଯେ ମନ୍ଦୋଦରୀ ସାଇଁ
ରତ୍ନ ପଲଙ୍କରେ ସେ ନିଶ୍ଚିନ୍ତେ ବସଇ ।
ଦଶଦିଗପାଳକୁ ସେ ଚାହେଁ ଘନ ଘନ
ଚଞ୍ଚଳ ପ୍ରକୃତି କରେ ଅନୁଆନ ।
ଦକ୍ଷିଣା ପବନ ଯେ ବହେ ଧୀର ଧୀର
ପରମ ତୋଷ ଚିତ୍ତ ଦଶାନନ ବୀର ।
ଜ୍ୟେଷ୍ଠ ମାସ କାଳ ଯେ ଗ୍ରୀଷ୍ମର ଋତୁ
ଗୁଳୁଗୁଳି ଘାତରେ ବହେ ଦେହରୁ ଧାତୁ ।
ଅନ୍ଧାର ରଜନୀ ଯେ ନୋହେ ଶୁକ୍ଳପକ୍ଷ
ରଥରେ ବସିଅଛି ଯେ ବିଶ୍ରବାର ବତ୍ସ ।
ନିବିଡ଼ ରଜନୀ ଯେ ଆଚ୍ଛାଦେ ଘନ ଘନ
ନିଦ୍ରାରେ ଅଚେଷ୍ଟ ଯେ ହେଲେ ସର୍ବଜନ ।
ଏହି ସମୟରେ ସେ ସାତଘଡ଼ି ରାତି
ଗଗନରେ ବିକାଶିଲେ ଶରଦ ଚନ୍ଦ୍ର ଜ୍ୟୋତି
ଦଶ ଦିଗପାଳେ ଯେ ହେଲେ ଅକାରଣେ
ଝଟ ଝଟ ବିରାଜେ କିରଣ ତତକ୍ଷଣେ ।
ଦେଖିଣ ଦଶାନନ ହୃଦରେ ବିଚାରି
ଚନ୍ଦ୍ର କି ଉଇଁଲେ ଅମାବାସ୍ୟା ତିମିରୀ ।
ଏସନେକ ବୋଲି ଦଶଦିଗକୁ ଦୃଷ୍ଟି ଦେଲା
ଗଗନ ମାର୍ଗରେ ଉର୍ଦ୍ଧ୍ୱକୁ ଦୃଷ୍ଟି ଦେଲା ।
ଦେଖିଲେ ବିମାନ ଯେ ଆକାଶମାର୍ଗେ ଉଠି
ଦିବ୍ୟ ବିଳାସିଣୀ ତାର ଆଗେ ଖଟି ।

ବିମାନ ସୁନ୍ଦର ନବରତ୍ନରେ ଭୃକୁଟି
ନାନା ବର୍ଣ୍ଣରେ ଉଡ଼େ ଚୀରାଳମାନଟି ।
ଦିବ୍ୟ ବର୍ଣ୍ଣ ଚୀରାଳ ଯେ ସୁବର୍ଣ୍ଣ କଳଶ
ଆଲମ୍ବ ବିମଳ ନେତ ଉଡ଼େ ଚାରିପାଶ ।
ସେ ବିମାନେ ବିଜୟେ କରିଛି ଏକାବାଳୀ
ରସାଣ ସୁବର୍ଣ୍ଣ ପରି ଦିଶଇ ଦେହଝଳି ।
ଶୋଭା ଶରଦଚନ୍ଦ୍ରମା ପରାୟେ ବଦନ
ନୀଳନ୍ଦୀ ଦଳ ପରାୟେ ସୁନ୍ଦର ନୟନ ।
ସୁସଞ୍ଚ ନାସା ତାର ଭ୍ରୂଲତା ଅତିବକ୍ର ।
ଯାହାକୁ ଦେଖି ପ୍ରଶଂସା କରେ ଦେବଶକ୍ର ।
ହସି କଥା କହିଲେ ଜୀଇବେ ମୃତ୍ୟୁପ୍ରାଣୀ
ଋଷି ଯୋଗ ଭଗ୍ନ ହେବ ଦେଖିଲେ ଚାହାଁଣୀ ।
ମୁଖ ଚନ୍ଦ୍ର ସୁନ୍ଦର ଚକୋର ବେନି ଡ଼ୋଳା
କୃଷ୍ଣ ଭ୍ରମର ଜିଣି ସୁନ୍ଦର ଦିଶେ କଳା ।
ଅତିଯତ୍ନେ କବେରୀ ଯେ ନିର୍ମାଣିଛି ବାଳୀ
ଉପରେ ବେଢ଼ାଇ ଅଛି ପାରିଜାତକ ମାଳି ।
ମସ୍ତକର ପରେ ତାର ମୁକୁତା କାଳି ଶୋଭା
ନାନା ଜାତି ସୁବାସ କୁସୁମେ କେଶ ଗଭା ।
କପୋଳେ ଚିତ୍ର କସ୍ତୁରୀ ଗୋରଚନା ଚିତା
ତିଳ ଫୁଲ ଜିଣିଣ ନାସିକା ସୁଶୋଭିତା ।
ନିନ୍ଦାକରେ କାର୍ତ୍ତିକ ପୁଞ୍ଜା କୁସୁମ ବସଣୀ
ତାଟଙ୍କ ସୁନ୍ଦର ଚନ୍ଦ୍ର ପାଶେ ଦିନମଣି ।
ଶୋଭା ସୁନ୍ଦର ଅଧର ଡାଳିମ୍ବ ଫୁଲ ଜ୍ୟୋତି
ଦନ୍ତମାନେ ସୁନ୍ଦର କି ଅବା ଗଜମୋତି ।
କଣ୍ଠରେ ତାର ହାର ବିବିଧ ଅଳଙ୍କାର
ସର୍ବାଙ୍ଗରେ ଘଷିଛି ଚନ୍ଦନ ଘନସାର ।
ବାଛି ପିନ୍ଧିଅଛି ବାଳୀ ଦିବ୍ୟ ରଙ୍ଗଶାଢ଼ୀ
ଅମଳାଣ ବସ୍ତ୍ର ଯେ ଉପରେ ଉହାଡ଼ି ।
ଅତିଅନ୍ତ ନିବିଡ଼ ରସାଳ ବକ୍ଷ ସ୍ଥଳ
କପାଳ ଉଚ୍ଚ କୁଚଘଞ୍ଚ ଉରଜ ଯୁଗଳ ।
ସୁବର୍ଣ୍ଣ କୁମ୍ଭରେ କି ନୀଳାର ଢାଙ୍କୁଣୀ
ଜାଣି ପଟାନ୍ତର ଦିଶେ ଅମୀୟ ଆରଣୀ ।
ତଥିପରେ ଶୋଭାବନ ମର୍କତ ପଦକ
ଦେଖି ମହାଯୋଗୀ ମନ ହୋଇଥାଏ ଦକ ।
ଭୁଜେ ତାଡ଼ ବାହୁଟି କଙ୍କଣ ବିଦମାଳି
ଜ୍ୟୋତି ନିନ୍ଦାକରେ ତାର ବିଜୁଳିର ଝଳି ।

ଅଳଙ୍କାର ଶରୀରୁ ନୁହଇ ବାରି ତାର
ଧନ୍ୟ ଧନ୍ୟ ସୁନ୍ଦରୀ ସେ ଅପସରା ସାର ।
ବୃଷାଳି ବକ୍ଷସ୍ଥଳ ଯେ ଘଟିତ କାଞ୍ଚି ମାଳେ
ସୁବର୍ଣ୍ଣ ଘଣ୍ଟି ଘାଗୁଡ଼ି ଶବଦ ବିରୋଳେ ।
ଜଘନ ପରିଯନ୍ତ ଲୁଚଇ ମୋତି ଝରା
ପବନରେ ଅଞ୍ଚଳ ଉଡ଼ଇ ଫରହରା ।
ବେନି ଚରଣରେ ତାର ନୂପୁର ଧ୍ୱନିକରେ
ଧନ୍ୟ ଧନ୍ୟ ସୁନ୍ଦରୀ ସେ ବିଦିତ ସଂସାରେ ।
ମଦନେ ଉନ୍ମତ ସେ ଗରବେ ବଡ଼ାଇ
ଆକାଶ ମାର୍ଗେ ବାଳୀ ଗମନ କରି ଯାଇ ।
ରୂପ ଯଉବନେ ପୂର୍ଣ୍ଣ ଅତ୍ୟନ୍ତ ସୁନ୍ଦରୀ
ନାହିଁ ନାହିଁ ନାହିଁ ତାକୁ ତିନିପୁରେ ସରି ।
ଉଦବେଗ ମନରେ ସେ ଚଳଇ ଉର୍ଦ୍ଧ୍ୱଗତି
ମଦନ ଶରେ ଆତୁର ହୋଇଛି ଯୁବତୀ ।
ଅଭିସାରିକା ନାୟିକା ଏମାନଙ୍କୁ ବୋଲି
ନିଜପତି ପାଇଁ ସେ ଆସଇ ମହୀ ବୁଲି ।
ଶରୀର ତେଜ ତାର ବିନାଶ ହେଲା ଯହୁଁ
ଦଶଦିଗ ଅନ୍ଧାର ଯେ ଦୂର ହେଲା ତହୁଁ ।
ଦେଖିଣ ମନେ ଆଶ୍ଚର୍ଯ୍ୟ ହୋଇଲା ରାବଣ
ମନେ ବିଚାରଇ ଏହୁ କେବଣ କାରଣ ।
ନିଶ୍ଚୟ କରି ଚିହ୍ନିଲା ଅଟଇ ଯୁବତୀ
ଦେଖି ପ୍ରଶଂସା କରଇ ମନ୍ଦୋଦରୀ ପତି ।
ଧନ୍ୟ ଧନ୍ୟ ସୁନ୍ଦରୀ ମହିମା ତୋର ଧନ୍ୟ
ଶରୀର ତେଜେ ହତ ହୋଇଲା ଯାମିନୀ ।
ଯେତେକ ଯୁବତୀଏ ଅଛନ୍ତି ତିନିପୁରେ
କେହି ସମ ନାହିଁ ତୋତେ ବ୍ରହ୍ମାଣ୍ଡ ଭିତରେ ।
ଅପୂର୍ବ ସୁନ୍ଦରୀ ଆଜ ନୟନେ ଦେଖିଲି
ନୟନ ବହିବାର ଯେ ଧନ୍ୟ ମୁହିଁ କଲି ।
ଏ ସୁନ୍ଦରୀ ସଙ୍ଗରେ କରିବ ଯେହୁ ରତି
ବଇକୁଣ୍ଠେ ବସିବେ ସେ ପାଇବ ସୁଗତି ।
ହୃଦଭିଡ଼ି ଯାହାକୁ ଏ ଦେବ ଆଲିଙ୍ଗନ
ଏ ମହୀମଣ୍ଡଳେ ତାର ଜୀବନ ଅଟେ ଧନ୍ୟ ।
ଅଧରେ ଚୁମ୍ବ ଦେଇ ଯେ ମର୍ଦ୍ଦିବ କୁଚଭାର
ଏଡ଼େ ଭାଗ୍ୟ ଜଗତରେ ହୋଇବ କାହାର ।
ସର୍ବ ସୁଲକ୍ଷଣୀ ଏହୁ ଅମୂଲ୍ୟ ପ୍ରତିମା
କେତେଲୋକ ବସି ନିର୍ମାଣିଲା ବିଶ୍ୱକର୍ମା ।

ଦେଖିଲେ ମୁରୁଛି ପାରିବ କେ ଏମନ୍ତ
ମୁଁ ଏବେ କାମଶରେ ହୋଇଲି ଅଚେତ ।
ବଳେ ଧରି ଯୁବତୀକି ରମିବି ମୁଁ ଆଜ
ଏତେ ବୋଲି ଗଗନେ କ୍ଷେପିଲା ଲଙ୍କରାଜ ।
ପୂର୍ଣ୍ଣମୀ ଚନ୍ଦ୍ରକୁ ଯେହ୍ନେ ଗରାସିଲା ରାହୁ
ରମ୍ଭା ବିମାନରେ ଯାଇ ବିଜୟେ ବିଂଶବାହୁ ।
କାମେ ବଶହୋଇ ବଡ଼ପଣ ସେ ଛାଡ଼ିଲା
ରମ୍ଭା ବେନିକର ବେନିକରେ ସେ ଧଇଲା ।
ଅତି ବିନୟେ କହଇ ବିକଳିତ ହୋଇ
ମୁଁ ଗୋ ଦଶାନନ ଲଙ୍କା କଟକର ସାଇଁ ।
କଇଳାସ କନ୍ଦରେ ମୁଁ ଥିଲି ରଥ ଘେନି
ତୋହର ତେଜରେ ନାଶ ହୋଇଲା ଯାମିନୀ ।
ସହସ୍ରେ ଚନ୍ଦ୍ର ଉଦୟ ହେଲେକି ଏକାବେଳେ
ଏ ତୋହର ତେଜ ବିକାଶିଲା ରାତ୍ରକାଳେ ।
ତୋ ରୂପ ଦେଖି ଆରତ ହୋଇଲି ସଙ୍ଗାତ
ଛାଡ଼ି କରି ଅଇଲି ମୁଁ ପୁଷ୍ପକ ନାମେ ରଥ ।
ତୋତେ ଦେଖି ସଖୀ କାମେ ଅଧଉର୍ଯ୍ୟ ହେଲି
ଶରଣ ରଖ ସଖୀରେ ତୋଠାକୁ ଅଇଲି ।
ମୁହିଁ ସେ ଲଙ୍କାଗଡ଼ ଠାକୁର ବିଂଶପାଣି
ତୁ ମୋତେ ନିରାଶ ନକର ଆରେ ତରୁଣୀ ।
ତୁ ସଖୀ ସାକ୍ଷାତେ ମୋତେ ଲକ୍ଷ୍ମୀପରି ଦିଶୁ
ପୂର୍ଣ୍ଣଚନ୍ଦ୍ରମା ନିହିତ ବିମାନେ ବସି ଆସୁ ।
ଯେ ତୋହର ସଙ୍ଗେ ସଖୀ ବଞ୍ଚିବ ଏକରାତି
ଯୁବାପଣ ମଧରେ ତାର ରହିବ କୀରତି ।
ଏ ତୋହର ଅଧର ଚୁମ୍ବିତ ମୋର ମନ
ସ୍ତନ ବେନି ମଞ୍ଚାଳ କରିବି କରେ ଧନ୍ୟ ।
ବିଂଶଭୁଜେ ଭିଡ଼ି ତୋତେ ଧରିବଇଁ କୋଳେ
ତୋହର ସଙ୍ଗେ ମଜ୍ଜିବି ରମଣ ରସ ଭୋଳେ ।
ଏମନ୍ତେ ରାବଣ ବାଣୀ ଶୁଣିଣ ସୁନ୍ଦରୀ
କରବେନି ଯୋଡ଼ିଣ କହଇ ଧୀର କରି ।
ଭୋ ପିତା ମୁହିଁ ତୋର ପୁତୁରାର ନାରୀ
ରମ୍ଭା ନାମ ମୋହର ଅମର ଅପସରୀ ।
କୁବେର ପୁତ୍ର ସଙ୍ଗେ ପୀରତି ଅଟେ ମୋର
କହୁଛି ଶୁଣ ତୋତେ ଲଙ୍କାର ଈଶ୍ୱର ।
ତାଙ୍କର କୁମର ନଳ ମୋହର ମନହରେ
ସେ ମୋର ସ୍ୱାମୀ ଅଟଇ ଶୁଣ ଅସୁରେଶ୍ୱରେ ।

ସେହିଟି ମୋର ପତି ମୁଁ ତାର ଘରଣୀ
ପ୍ରସନ୍ନେ ସମର୍ପି ମୋତେ ଦେଇଛି ବଜ୍ରପାଣି ।
ତୁମ୍ଭେ ମୋତେ କେମନ୍ତେ ଯେ କରିବ ରମଣ
ମୁହିଁ ଅଟଇ ତୁମ୍ଭର କୁଳବଧୂ ପୁଣ ।
ଛୁଇଁଲ ମୋତେ ତୁମ୍ଭେ ହେଲା ବଡ଼ ଦୋଷ
ଛାଡ଼ ମୋର ହସ୍ତ ମୁଁ ଯିବିମୋ ସ୍ୱାମୀପାଶ ।
ବେଶ ହୋଇ ବାଟଚାହିଁ ବସିଥିବେ ମୋତେ
କେବଣ ଦୁର୍ଯୋଗେ ତୁମ୍ଭେ ଭେଟ ପଡ଼ିଲ ଏଥେ ।
ଅସୁର ହେଲାକୁ ତୁମ୍ଭେ କରିବ ଅଧର୍ମ
ବଧୂଙ୍କ ସଙ୍ଗେ ଶଶୁରେ କି କରନ୍ତି ରମଣ ।
ଧର୍ମରେ ହାନି ହେବରେ ମୃତ୍ୟୁ ତୋ ନଗଦ
ସୋଦର ଭାଇ ତୋରରେ କୁବେର ସମ୍ପଦ ।
ତାହାର ପୁତ୍ର କିରେ ନୋହେ ତୋର ପୁତ୍ର
ତାହାର ବଧୂ ହେଲେରେ ତୋର କି ନୋହେ ଗୋତ୍ର ।
ଏମନ୍ତ ବୋଲିଣ ରମ୍ଭା କହଇ ବଚନ
ସେ କଥା କର୍ଣ୍ଣେ ନଶୁଣି ଅସୁର ରାଜନ ।
ରମ୍ଭା ବୋଇଲା ତୁରେ ନୃପତି ଏବେଶୁଣ
ଉଛୁର ହେଉଛି ମୋତେ କୋପକରିବେପୁଣ ।
ଅଳ୍ପକେ ଝଞ୍ଜିକା ମୋତେ ନକର ନୃପତି
ଯିବି ମୁଁ ଛାଡ଼ି ଦିଅ ନୁହଇ ତୁମ୍ଭ ଗତି ।
କାମରେ ଆରତ ହୋଇ ମୋ ସ୍ୱାମୀଥିବେ ବସି
ସାତଘଡ଼ି ରାତିଟି ହେଲା ଯେ ପୁଣ ଆସି ।
ଏତେବୋଲି ଭୁଜ ଯେ ଛଡ଼ାଏ ତାର ବାଳୀ
କୋପରେ ରାବଣ ହେ ଉଠିଲା ପ୍ରଜ୍ୱଳି ।
ଯାଇ ଅପସରୀର ଧଇଲା ପୁଣି ଭୁଜ
ବୋଇଲା ବଡପଣ ଲୋ ଜାଣିଲି ତୋରଆଜ ।
ତୁମ୍ଭେ ସୁଲକ୍ଷଣୀ ଲୋ କାହାରି ପୁଣ ନୁହ
ଯେହୁ ଧନ ଦିଅଇ ତାର ମାତ୍ର ହୁଅ ।
କେଡ଼େ ଲୋକ ତୋତେ ଲୋ ରମଣକଲେମହୀ
କୁବେରପୁତ୍ର ନଳ ତୋତେ କେଉଁଦିନ ବିଭାହୋଇ
ଜାଣୁଟିକି ବେଳେ ଲୋ ମେନକା ହୋଇଗଲୁ
ବିଶ୍ୱାମିତ୍ର ମନ ମୋହିତ ନ ପାରିଲୁ ।
ସେ ତୋତେ ଶାପ ଦେଇ ପାଷାଣ ତନୁକଲା
ବ୍ରହ୍ମାର ବୋଲେ ତୋତେ ସେ ନିଜଦେହ ଦେଲା
ସେହି ରମ୍ଭା ନାରୀ ତୁ ନୋହୁକି ସୁନ୍ଦରୀ
ଏବେ କିମ୍ପା ଗାଢ଼ପଣ କରୁ ଲୋ ଦୁଷ୍ଟନାରୀ ।
ମୁହିଁ ଲଙ୍କପତି ଅସୁରଙ୍କର ଈଶ୍ୱର
ମଦନ ଆରତେ ମୁଁ ଧଇଲି ତୋର କର ।
ମତ୍ତଗର୍ବ ପଣରେ ନାହିଁ ତୁହି କରୁ
ଯେତେମାନ ଲୋକ ତୁ ବିଚାର ନକରୁ ।
ରମ୍ଭା ନାରୀ ବୋଲଇ ମୁଁ ନୁହଇ ଚତୁରୀ
ଇନ୍ଦ୍ର ଯେ ଅଧିପତି ଅଟନ୍ତି ମୋହରି ।
ସେ ଯାହାକୁ ପ୍ରସନ୍ନ ହୋଇଣ ସମର୍ପଇ
ଚଣ୍ଡାଳ ହୋଇଲେ ସେ ଅଟଇ ମୋରସାଇଁ ।
ଅଷ୍ଟ ଅପସରୀ ଆମ୍ଭେ ଉପୁଜିଲୁଁ ସିନ୍ଧୁଁ
ନାରାୟଣଙ୍କ ଭାରିଯା ଅଟନ୍ତି ଆମ୍ଭ ବନ୍ଧୁ ।
ତାହାର କର୍ମରେ ଭୋଗ ତ୍ରୈଲୋକ୍ୟ କମଳିନୀ
ଆମ୍ଭର ଦୋଷରୁ ଆମ୍ଭେ ହେଲୁଁ ନଷ୍ଟାୟଣୀ ।
ଯାହା ସେ ବିଧାତାରେ କରିଛି ଭିଆଣ
ଉତ୍ତମ କୁଳେ ଦୋଚାରୀ ହୋଇ ଜନ୍ମହେଲୁଁ ପୁଣ ।
ଆଗେ ଯାହା ଅର୍ଜି ପଛେ ତାହା ପାଇ
ଏବେ ଭାଳିଲେ କିରେ ଭଲକଥା ପାଇ ।
ଯଦ୍ୟପି ସୁରନର ଆମ୍ଭେ ଅଟୁଁ ବେଶ୍ୟା
ଆମ୍ଭେ ଆମ୍ଭ ସୁଖରେ କାହାକୁ ନକରୁଁ ଆଶା
ଦେବଇନ୍ଦ୍ର ଯାହାକୁ ସମର୍ପି ଦେଇଥାଇ
ଆମ୍ଭର ଅଙ୍ଗ ସେ ଭୋଗହିଁ କରଇ ।
କୁବେରଙ୍କ ପୁତ୍ର ନଳ ମୋର ପତି
ଇନ୍ଦ୍ରଙ୍କର ଆଜ୍ଞାରେ ମୁଁ ତାର ବଶ୍ୟାବୃତ୍ତି ।
ସେ ମୋହର ସ୍ୱାମୀ ଯେ ପିଣ୍ଡର ଅଧିକାରୀ
ତା ବିନୁ ଚିତ୍ତ ମୋର ନବଳେ କାହାରି ।
ବିଶେଷେ କୁବେର ତୋର ଅଟେ ଜ୍ୟେଷ୍ଠଭାଇ
ତାଙ୍କର ତନୟେ ତୋର ପୁତୁରା ଅଟଇ ।
ସେ ମୋହର ପତି ମୁଁ ତାଙ୍କର ଅଟେ ପତ୍ନୀ
କିମ୍ପାଇଁ ଗୁରୁ ହୋଇ କରୁଛୁ ଅନୀତି ।
ଛାଡ଼ ଛାଡ଼ ଯିବି ହେ କଟାଳ ନକର
ଏତେ ବୋଲି ଛଡ଼ାଏ ରାବଣର କର ।
ଲାଜପାଇ ରାବଣ କୋପ ସେ ଗରୁ କଲା
ବିଂଶଭୁଜେ ରମ୍ଭାକୁ ସେ ଆକର୍ଷି ଧଇଲା ।
ବସ୍ତ୍ରକୁ ଫେଡ଼ିଣ ପାଡ଼େ ରଥ ପରେ
କପିଳାସ ପର୍ବତ ଉପାଡ଼େ ଯେଉଁବଳେ ।
ସ୍ତିରୀ ମାତ୍ର ସେ ଅଟଇ ତାର କେତେପ୍ରାଣ
ଭୁଜରେ ଭୁଜକୁ ଛନ୍ଦେ ଧରିଣ ରାବଣ ।

ସ୍ତନ ମଞ୍ଜାଳି ଯେ ମୁଖରେ ଚୁମ୍ବ ଦେଲା
ବଳରେ ରମ୍ଭା ସୁନ୍ଦରୀକି ରମଣ ଭୋଗକଲା ।
ରମଣରେ ସୁନ୍ଦରୀ ଯେ ଅଜ୍ଞାନ ହୋଇଲା
ନିଃଶ୍ୱାସ ମାତ୍ରକ ତା ଶରୀରେ ରହିଲା ।
ଦାସୀଜନେ ଭୟରେ ଯେ ନକହନ୍ତି କଥା
ବିବିଧ ପ୍ରକାରେ ଯେ ରମିଲା ଦଶମଥା ।
ଦଣ୍ଡଛତ୍ରଗଣ କଲା ବକ୍ଷସ୍ଥଳ ବେନି
ଯଉବନ ବିଦାରିଲା ତୀକ୍ଷ୍ଣଶର ଘେନି ।
ଗାଢ଼େ ଆଲିଙ୍ଗନ କରେ ଘନ ଘନ
ଶରୀରରୁ ଶ୍ରମଝାଳ ବହେ ଛନ ଛନ ।
ଅହନ୍ତା କରିଣ ମନେ ରମେ ଅତିରାଗେ
କେହି ତୋଳିବାକୁ ନରହେ ତାରଆଗେ ।
ଅମୃତ ଭାଣ୍ଡ ଯେହ୍ନେ ଚୂର୍ଣ୍ଣକରେ ରାହୁ
ଅପସରୀର ବଳ ଯେ ଭାଙ୍ଗେ ବିଂଶବାହୁ ।
ଲବଣୀକି ମଞ୍ଜାରୀ ଯେମନ୍ତେ କରଇ ଭୋଜନ
ରମ୍ଭାକୁ ତେସନେ ତହୁଁ କଲା ଦଶାନନ ।
ମହୁଫେଣା ବ୍ୟାଧ ଯେହ୍ନେ କରେ ନାରଖାର
ନିରୁତା ଦୁଧ ମଣ୍ଡୁକୀ ଯେହ୍ନେ କରଇ ଆହାର ।
ପାଚିଲା ଆମ୍ବକୁ ଯେହ୍ନେ କୁଆ ହାଣେ ଥଣ୍ଟେ
ପୂର୍ଣ୍ଣମୀର ଚାନ୍ଦ ଯେହ୍ନେ କଳାମେଘେ ଲୁଚେ ।
ପାଚିଲା ତାଳ ଯେହ୍ନେ ପାଚିଲେ ତଳେପଡ଼ି
ଭୋକିଲାର ବ୍ୟାଘ୍ର ଯେହ୍ନେ ଶାଳୁଁ ଖାଏ ଧରି ।
ଫୁଟିଲା ପଦ୍ମକୁ ଯେହ୍ନେ ଚିଲଝାମ୍ପ ଦେଇ
ସାରୀକି ଦେଖି ଯେହ୍ନେ ସଞ୍ଚାଣ ଆକର୍ଷଇ ।
ଶ୍ୱାନ ଯେସନେ ଭୁଞ୍ଜଇ କ୍ଷିରୀ ସରା
ଅସୁର ହସ୍ତେ ମନ୍ଥନ ହେଲା ଅପସରା ।
ଝାଳରେ କର୍ଦ୍ଦନ ଯେ ମଦନେ ମାଦରସ
ବହଇ ଘନ ଘନ ଖର ନିଶ୍ୱଆସ ।
ସେ ରମ୍ଭା ସୁନ୍ଦରୀ ଯେ ପଦ୍ମିନୀ ଅଂଶ ଜାତି
ଲାବଣ୍ୟ ପୁରୁଷର ତାର ମେଳ ମତି ।
ବଳେ ଧରି ଅସୁର ଅନେକ ଦୁଃଖ ଦେଲା
ସୁରତି ପ୍ରୀତି ସୁଖ ତାହାର ସରିଲା ।
ରତି ସାରି ଅସୁର ତକ୍ଷଣେ ବାହୁଡ଼େ
କପିଳାସ କନ୍ଦର ତଳରେ ରଥ ଚଢ଼େ ।
ଏଥୁ ଅନନ୍ତରେ ଶ୍ରୀରାମ ପଚ୍ଚରି
ସେଠାରୁ କିସ ହେଲା କହ ତପଚ୍ଚରୀ ।

ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ଚାପଧାରୀ
ପାର୍ବତୀ ଆଗରେ ଏହା ଶଙ୍କର ଉଚ୍ଚାରି ।
ବୋଇଲେ ଯୁଗନାରୀ ତୁମ୍ଭେ ଆଗେ ଶୁଣ
ଅସୁରୁଣୀ ଏ କାଳରେ କରନ୍ତି ଗମନ ।
ବିଚ୍ଚରିଲେ ଶୂନ୍ୟରେ ରଥ ଶୀଘ୍ରେ ଯାଏ
ଯାନରେ ବିଜେ ତାଙ୍କ ମନ ଉଦବେଗ ହୋଏ ।
ଈଶ୍ୱର ବୋଇଲେ ସେ ଯାନରେ ବସିକରି
ତିନିପୁରେ ପଶନ୍ତି ସେ ରାକ୍ଷସଙ୍କର ନାରୀ ।
ଦଇବ ଯେତେବେଳେ ତାଙ୍କୁ ଜାତ କଲା
ସୁର ଅସୁର ବୋଲି ନାମ ତାଙ୍କର ଦେଲା ।
ଦେବଙ୍କୁ ଦେବଯାନ ଅସୁରଙ୍କୁ ମେଲା ରଥ
ଦେବୀଙ୍କି ଭୂଷଣ ଯାନ ରାକ୍ଷସୀଙ୍କି ମନରଥ ।
ନରଙ୍କୁ ହସ୍ତୀ ଗଣ୍ଡା ଅଶ୍ୱ ସୁଖାସନ
ଏମନ୍ତ ପ୍ରକାରେ ବିହି କଲାକ ଭୂଷଣ ।
ଯେ ଯାହା ଯାନରେ ବେଳରେ ବାମନ
ଯୁଗନାରୀ ଶୁଣିଣ ତ୍ରିପୁତି କଲେ ମନ ।
ଏଥୁ ଅନନ୍ତରେ ରମ୍ଭା ଅପସରୀ
ଅଜ୍ଞାନରେ ପଡ଼ିଗଲାକ ସୁନ୍ଦରୀ ।
ରାବଣ ଯିବାର ଦେଖିଣ ସଖୀଗଣ
ଆସିଣ ସୁନ୍ଦରୀକି ବେଢ଼ିଲେ ତତକ୍ଷଣ ।
ତୋଳି ଧରିଣ ଯେ ପିନ୍ଧାଇ ତାକୁ ବାସ ।
ମୁଖରେ ପାଣି ସିଞ୍ଚି କରନ୍ତି ଉଶ୍ୱାସ ।
କେତେ ସମୟରେ ସୁନ୍ଦରୀ ଦେହରେ ସାହସ
କୁରଙ୍ଗୀ ନୟନୀ ଯେ ଚ୍ଚହେଁ ଦଶଦିଶ ।
ଅସାଷ୍ଟମ ହୋଇଣ ବୋଇଲାକ ଚ୍ଚହିଁ
ଯାହା ମୋହ କର୍ମରେ ଲିହିଅଛି ବିହି ।
ଆନକୁ ବୋଇଲେ ହେବ ପୁଣି କିସ
ଚ୍ଚଲ ଆମ୍ଭେ ଏଥୁ ଯିବା କୁବେରଙ୍କ ପାଶ ।
ଏତେ ବୋଲି ବିମାନ ବାହେ ଅନ୍ତରାଳ
ଧୀରେ ଧୀରେ ଯାଇଣ ମିଳେ ଭୁବନର ।
କପିଳାସ ପର୍ବତ ଗଣ୍ଡୁକୀ ନଦୀ କୂଳେ
ଅକାମିକା ନାମରେ ଅଛି ଦିବ୍ୟପୁରେ ।
ସପତନିଧି ପତି ଯେ କୁବେର ପାଶେ ଥାନ୍ତି
ରାତ୍ର ଅର୍ଦ୍ଧଠାରେ ସୁନ୍ଦରୀ ଯାଇ ହୋନ୍ତି ।
ନଳ କୁବେରଙ୍କର ମନ୍ଦିରରେ ମିଳି
ଦେଖିଣ ଉଚ୍ଚସ୍ୱରେ କଲାକ ବୋବାଳି ।

ଭୋ ସ୍ୱାମୀ ଅନାସ୍ତ ଯେ ସ୍ତିରୀ ଅଟେ ମୁହିଁ
ଏତେ ବୋଲି ଜ୍ଞାନ ସେ ହାରିଲାକ ତହିଁ ।
ବେଶ ହୋଇଣ ଦକ୍ଷପତି ଆସିଥିଲା
ରମ୍ଭାକୁ ଦେଖିଣ ଧାଇଁଣ କୋଳକଲା ।
ସଖୀ ସଙ୍ଗାତ ବୋଲି ଧରେ ତାର ଓଷ୍ଠ
କିମ୍ପାଇଁ ପ୍ରିୟବତୀ ପାଇଛି ଏତେ କଷ୍ଟ ।
କି ଦଣ୍ଡ ହେଲା ଲୋ କି କଲା ପୁଣ କାହିଁ
ଅପସରୀ ବୋଇଲେ ଯେ ଭ୍ରଥାର ମୁଖ ଚାହିଁ ।
ବିମାନ ଚଢ଼ିଣ ଆସନ୍ତେ ତୁମ୍ଭ ପାଶ
ବାଟରେ ଭେଟିଲା ମୋତେ ନଉକେଶୀ ଶିଷ୍ୟ
ତୁମ୍ଭର ରମଣୀ ବୋଲି ଜାଣିଲାକ ଯହୁଁ
ବଳରେ ଆକର୍ଷି ମୋତେ ଧଇଲାକ ତହୁଁ ।
ଯେତେ ପ୍ରବୋଧ କଲି ନକଲା କେଭେ ବୋଲ
ଧର୍ମ ଛଡ଼ା ହୋଇଲା ଧଇଲା ଲଙ୍କମଲ୍ଲ ।
ଦେଖ ସ୍ତନ ମୋର ନଖରେ ବିଦାରିଛି
ଗଣ୍ଡ ଯୁଗଳ ଦେଖ ଦନ୍ତରେ ବିଦାରିଛି ।
ଚେରର କେଶ ଯୋଡ଼ା ଝିଙ୍କିଲାକ ରାୟେ
ଭୁଜରେ ଭୁଜ ଭିଡ଼ିଣ ଭାଙ୍ଗିଅଛି କାୟେ ।
ଚନ୍ଦନ ଗଛକୁ ଯେହ୍ନେ ଦଂଶେ କାଳସର୍ପ
ସେହିରୂପେ ମୋତେ ସେ ଘୋଟିଲାକ ଦର୍ପ ।
ଆପଣା ହସ୍ତେ ମୋର ବସ୍ତ୍ର ପକାଇଲା ଫେଇ
ଜ୍ଞାନ ହାରି ପଡ଼ିଲି ମୁଁ ଆଶକତ ହୋଇ ।
ଅସୁର ଚେଷ୍ଟା ଜଣାତ ନଥିଲା ମୋତେ
ଭୟରେ ଥରହର ମୁଁ ଡରିଲି ପଞ୍ଚଭୂତେ ।
ସୁରତି ସାରି ସେହୁ ନିଜପୁର ଗଲା
ତୁମ୍ଭେ ଥାଉଁ ଥାଉଁ ମୋତେ ଏମନ୍ତ ରୀତିକଲା ।
ତୁମ୍ଭେ ମୋର ମାନକୁ ଉଦ୍ଧାରି ପାର ଯେବେ
ତୁମ୍ଭର ରମଣୀ ମୁଁ ହେବି ଦେଖିଲେ ଯେ ।
ନୋହିଲେ ଅନଳ ମୁଁ ଜାଳିଣ ପଶିବି
ନ ରଖିବି ଶରୀର ଏହିକ୍ଷଣି ଧ୍ୱଂସିହେବି ।
ଶୁଣିକରି ନଳ କୁବେର ଥରହର
ରମ୍ଭାକୁ ଛାଡ଼ିଣ ଉଠେ ବେଗେ ନଳ ।
ପିତା ପୁତ୍ର ଦୁହେଁ ହେଲେ ସେ ବ୍ୟାକୁଳ
କୁଶହସ୍ତ ହୋଇଣ ଘେନିଲେ ସେ ଜଳ ।
ବୋଇଲେ ରାବଣରେ ମୋର ଶାପ ଘେନ
ତିନିବେଳ ତୋତେ ମୁହିଁରେ କରିଛି ସମ୍ଭାଳଣ
ବେଳେ ନ ସମ୍ଭାଳିଲୁ ଜନନୀ କହିବାରୁ
ନମସ୍କାର ନୋହିଲୁ ତୁ ମତ୍ତ ଗର୍ବରୁ ।
ଦ୍ୱିତୀୟଥର ଲଙ୍କାକୁ ମୋରଠାରୁ ନେଲୁ
ତୃତୀୟଥର ଆସି ତୁ ଏ ପୁରେ ଯୁଦ୍ଧ କଲୁ ।
ଚତୁର୍ଥ ଥରରେ ତୁ ହରିଲୁ ବଧୂ ମୋର
ଏଥିରେ ସକାଶେ କ୍ରୋଧ ହେଲା ମୋ ହୃଦର ।
ଏବେ ବୋଲୁଅଛି ମୋହର ଶାପ ଘେନ
ପରସ୍ତିରୀ କେଭେ ନ ହରିବୁ ଦଶାନନ ।
ଯେବେ ଅବା ଲୋଭରେ ମେଣ୍ଟିବୁ ଶାପ ଗୋଟି
ଶତେ ଖଣ୍ଡ ହୋଇ ତୋ ମୂର୍ଦ୍ଧ୍ନୀ ଯିବ ଫାଟି ।
ପରସ୍ତିରୀ ହରିଲେ ତୁ ପ୍ରାଣେ ନାଶ ଯିବୁ
ଜୀବନ ଧରିଣ ତୁରେ କ୍ଷଣେ ନ ବଞ୍ଚିବୁ ।
ଏତେ ବୋଲି କୁବେର ମନରେ ବାଞ୍ଛାକଲା
ମନ୍ତ୍ର ଫୁଙ୍କି ଜଳ ହସ୍ତରୁ ପକାଇଲା ।
ନଳ ଶାପ ଦେଲେ ରାବଣକୁ ପୁଣ
ବୋଇଲେ ତୋର ବଂଶରେ ଆଉଁ ହୋନ୍ତୁଲୀନ
ପୁତ୍ର, ଦୋହିତା, ବଧୂମାନେ ତୋର ପୁଣି
ତୋର ଆଗେ ଭସ୍ମ ହୋନ୍ତୁ ଦେଖ ତୁ ନୃପମଣି
ମଲେ ତୁ ନରକରେ ହୁଅ ପରବେଶ
ଯମ ଷୋଳ ଯୁଗ ପର୍ଯ୍ୟନ୍ତେ ଗଞ୍ଜୁ ତୋର ମାଂସ ।
ଏତେ କହି ନଳ ଯେ ଛାଡ଼ିଲେ ହାଥୁଁ ଜଳ
ଭୂମିରେ ପଡ଼ନ୍ତେ ସେ ହେଲା ଅଗ୍ନିଶର ।
ବେଦବର ଜାଣିକରି ସେ ଶର ଘେନିଗଲା
ନିଜ ଭଣ୍ଡାରରେ ନେଇଣ ସାଇତିଲା ।
ସେ ଶର ପର୍ଶୁରାମଙ୍କୁ ଦେଲେକ ବେଳରେ
ପର୍ଶୁରାମ ସମର୍ପିଲେ ବିଶ୍ୱାମିତ୍ରଠାରେ ।
ସେ ଶରକୁ ବିଶ୍ୱାମିତ୍ର ଯତନେ ରଖିଲେ
ଯାଗକଲା ବେଳେ ସଉମିତ୍ରୀଙ୍କି ସମର୍ପିଲେ ।
ସଉମିତ୍ରୀ ଶରରେ ରାବଣ ବଂଶମାରି
ବଦନ୍ତି ଅଗସ୍ତି ମୁନି ଶୁଣ ଚାପଧାରୀ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ଅଗସ୍ତି ମହାମୁନି ରାମଙ୍କୁ କି କହିଲା ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଶାକମ୍ଭରୀ
ରାବଣର ଦର୍ପକୁ ଯେ ପିତା ପୁତ୍ରେ ହରି ।
ଶାପ ଦେଇ ପିତା ପୁତ୍ରେ ସନ୍ତୋଷ ହୋଇଲେ
ଦୁଷ୍ଟ ଦୈତ୍ୟ ଗୋଟାର ଦର୍ପକୁ ଭାଙ୍ଗିଲେ ।

ରମ୍ଭାର ଆନନ୍ଦ ମନ ଦୁଃଖ ଛାଡ଼ିଲାକ ପୁଣ
ସ୍ୱର୍ଗରେ କୁସୁମ ବୃଷ୍ଟି କଲେ ଦେବଗଣ ।
ଅପସରୀ ମାନେ ଯେ ହୁଳହୁଳି ଦେଲେ
ରାବଣର ଦର୍ପ ନାଶ ଯାଉ ସେ ବୋଇଲେ ।
ବ୍ରହ୍ମାହିଁ ଏକଥା ଶୁଣିଣ ହସିଲେ
ସୀତାଙ୍କୁ ହରିବ ବୋଲିଣ ମନେ ଭାଳୁଥିଲେ ।
ଏବେ ବିଚାରିଲେ ସେ ହୋଇଲାକ ଭଲ
ଆଉଁ ପରସ୍ତିରୀ ନ ହରିବ ଲଙ୍କମଲ୍ଲ ।
କମଳା ଅରଷ୍ଟି ରମ୍ଭା ଉପରେ ଗଲା
ଭଲା ନଳ କୁବେର ବିଚାରି ଶାପ ଦେଲା ।
ଏତେ ବୋଲି ଧାତା ଯେ ହୋଇଲେ ହରଷ
ଏଥୁ ଅନନ୍ତରେ ଯେ ବିଶ୍ରବାର ଶିଷ୍ୟ ।
କୁବେର ନଳ ଶାପ ଦେଲେ ବୋଲି ଜାଣି
ପଞ୍ଚଆତ୍ମା ଭିତରେ ଡରେ ବିଂଶପାଣି ।
ମନରେ ବିଚାରଇ ମୁହିଁ ଯିବି ନାଶ
ପରସ୍ତିରୀ ହରଣ ତ ମୋତେ ହେବ ଦୋଷ ।
ପୋତୁ ମୋର ପାପ ମନ ମୁଁ ନହରିବି ପରସ୍ତିରୀ
ତେବେ ସିନା ରକ୍ଷା ହେବ ଏ ମୋହର ଶିରୀ ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ରାମରାଣ
ପରସ୍ତିରୀ ହରିବାକୁ ଡରିଲା ରାବଣ ।
ସେ ଦିନ ରଜନୀରେ ବିଶ୍ରାମ ସେ କଲା
ପ୍ରଭାତରୁ ଥାଟ ଘେନିଣ ଚଳିଗଲା ।
ନିଜ ଲଙ୍କାଗଡ଼ରେ ହେଲା ପରବେଶ
ଶ୍ରୀ ଜଗନ୍ନାଥ ଶରଣ ମୁଁ ବଳରାମ ଦାସ ।
ଶଙ୍କର ମହାଦେବ ପାର୍ବତୀ ଅଗ୍ରେ କହି
ଯେଉଁ ନାମ ଶୁଣନ୍ତେ କଳୁଷ ନାଶ ଯାଇ ।
ଏଥୁ ଅନନ୍ତରେ ଯେ ପାର୍ବତୀ ଦେବୀ ପୁଣ
ପଚାରନ୍ତି ଈଶ୍ୱରଙ୍କୁ କହନ୍ତି ପଞ୍ଚାନନ ।
ପାର୍ବତୀ ବୋଇଲେ ସେ ଯେ ରମ୍ଭା ନାରୀ ପୁଣ
ରାବଣ ହରିଲା ତ ଧର୍ମରେ ହାନୀ ଜାଣ ।
ପିତା ହରିବାରୁ ପୁତ୍ର ତାକୁ କି ରମିଲା
କେମନ୍ତେ ପ୍ରକାର ରମ୍ଭା ନଳକୁ ଦେହ ଦେଲା
ଈଶ୍ୱର ବୋଇଲେ ଶାପ ଦେବାରୁ ଦୁଇଜଣ
ସନ୍ତୋଷ ହୋଇଲେ ସ୍ୱର୍ଗପୁର ବେଶ୍ୟା ଜାଣ ।
ଦାସୀକି ଡାକିଣ ବେଗେ ସୁବେଶ ପୁଣି ହେଲା
ବେଶ ହୋଇ ନଳ ପାଶେ ପ୍ରବେଶ ପୁଣି ହେଲା
ବୋଇଲେ ମୋର ସ୍ୱାମୀ ମନକର ତୋଷ
ମୋତେ ଘେନି କର ଏବେ ଅଭିଳାଷ ।
ନଳ ବୋଇଲା ତୁରେ ଶୁଣ ଗୋ ସୁନ୍ଦରୀ
ପିତା ଯେବେ ହରିଲେ ତୁ ହେଲୁ ମାତା ସରି
ମାତା ହରଣ ଦୋଷ ଯେ ଲାଗିବ ମୋଠାରେ
ତୁ ଯାଇ ପଚାର ଗୋ ଇନ୍ଦ୍ରଙ୍କ ଆଗରେ ।
ରମ୍ଭାନାରୀବୋଲେ ମୁଁ ଜାତିରେ ଅଟେ ବେଶ୍ୟା
ବାରଣ ନାହିଁ ମୋତେ ଯେହୁ କରେ ଆଶା ।
ନଳ ବୋଇଲେ ମୁଁ ପ୍ରତ୍ୟକ୍ଷ ଜାଣିବି
ଦେବ କୁଳେ ଜନମି ମୁଁ ଅଲଘି ନୋହିବି ।
ଯେବେ ଏ ଶରୀର ତୋର ହୋଇବ ପୁଣି ଆନ
ତେବେ ମୁଁ ରମିବି ତୋତେ କହିଲି ପ୍ରମାଣ ।
ଶୁଣିଣ ରମ୍ଭା ନାରୀ ସ୍ୱର୍ଗକୁ ଚଳିଗଲା
ବାରସ୍ୱତି ଭୁବନେ ପ୍ରବେଶ ଯାଇଁ ହେଲା ।
ଅନେକ କାରୁଣ୍ୟ ଯେ କଲା ଦ୍ୱାରେ ରହି
ଶୁଣିଣ ଶଚୀ ନାଥ ଅଇଲେ ବେଗ ହୋଇ ।
ବୋଇଲେ କିମ୍ପାଇ ତୁ କରୁଛୁ ରୋଦନ
ରମ୍ଭା ବୋଲେ ବଳେ ମୋତେ ହରିଲା ରାବଣ
ସେ ଦୋଷରୁ ନଳ ମୋତେ ନକଲେ ତାଙ୍କପାଶ
ବୋଇଲେ ମୋତେ ହେବ ମାତୃ ହରଣ ଦୋଷ
ସୁର ରାୟେ ବୋଇଲେ ତୁ ବେଗ ହୋଇ ଚଳ
ପ୍ରୟାଗ ତୀର୍ଥରେ ଯାଇଁ ବେଗ ହୋଇ ମିଳ ।
ଏ ଶରୀର ତ୍ୟାଗ କରି ଆନ ରୂପ ଧର
ଗତୁଁ ଶତେ ଗୁଣେ ତୁ ହୋଇବୁ ସୁନ୍ଦର ।
ନୂତନ ବୟସଟି ହୋଇବ ତୋହର
ଦେଖି ମୁନିମାନଙ୍କର ତପ ହେବ ଦୂର ।
ପ୍ରୟାଗ ତୀର୍ଥରେ ତୁହି ଦିଅ ବେଗେ ଝାସ
ଯେବେ ନଳ ଠାରେ ତୋହର ଅଛି ଆଶ ।
ଶୁଣିଣ ରମ୍ଭା ନାରୀ ବେଗ୍ରରେ ଚଳିଗଲା
ପ୍ରୟାଗ ତୀର୍ଥରେ ଯାଇଁ ପ୍ରବେଶ ହୋଇଲା ।
ବାଞ୍ଛା ବଟ ତଳରେ ପ୍ରବେଶ ହେଲା ନାରୀ
ବୋଲେ ଗତୁଁ ଶତେଗୁଣେ ମୁଁ ହୋଇବି ସୁନ୍ଦରୀ ।
ଏ ରୂପ ମୋର ଯେ ଅଛି ଅନ୍ତର ହୋଇବ
ବାରଙ୍ଗନା ରୂପ ମୋଠାରେ ପ୍ରକାଶିବ ।
ଏତେ କହି ଗଙ୍ଗାରେ ଝାସ ଦେଲା ନାରୀ
ସେ ରୂପ ତେଜ୍ୟା କରି ମାନସିକ ରୂପଧରି ।

ଯାନର ଉପରେ ଯାଇଣ ବିଜେ କଲା
ଖାଣ୍ଡବ ବନରୁ ସେ ପୁଷ୍ପ ତୋଳି ନେଲା ।
ସଖିଙ୍କି ଘେନିଣ କପିଳାସରେ ପରବେଶ
ଭୂଷଣ ହୋଇଣ ସେ ମୋହିଲା ତ୍ରିଦଶ ।
ନଳର ଆଗରେ ସେ ହେଲା ପରବେଶ
ବୋଇଲା ସେ ରୂପ ମୁଁ ଛାଡ଼ିଲି ପ୍ରତ୍ୟକ୍ଷ ।
ତୁମ୍ଭରି ସକାଶେ ମୁଁ ସ୍ୱର୍ଗପୁର ଗଲି
ଇନ୍ଦ୍ରଙ୍କର ଛାମୁରେ ମୁଁ ଯାଇଣ ଜଣାଇଲି ।
ଇନ୍ଦ୍ର କହିବାରୁ ମୁଁ ଗଙ୍ଗାରେ ଝାସ ଦେଲି
ରୂପକୁ ବଦଳ କରି ତୋ ପାଶେ ଅଇଲି ।
ବାଞ୍ଛା ବଟ ମୂଳରେ ମୁଁ ବାଞ୍ଛା କଲି ଯାଇଁ
ଗଙ୍ଗାରେ ପଶନ୍ତେ ମୁଁ ନୂଆ ଦେହ ପାଇ ।
ସେ ରୂପ ଗୋଟି ମୋର ସେଠାରୁ କେଣେ ଗଲା
ଶୁଣିଣ ନଳ ପୁଣି ମନ ଆନନ୍ଦ କଲା ।
କୋଳରେ ବସାଇଣ ତାକୁ କରେ ଆଲିଙ୍ଗନ
ମୁଖରେ ଚୁମ୍ବ ଦେଇ କଲାକ ରତି ପୁଣ ।
ଦୁଇଜଣ ରତି ରସେ ହୋଇଲେ ସେ ଭୋଳା
ରମ୍ଭା କାମିନୀର କଥା ଶୁଣିଲୁ ସଖୀ ପରା ।
ଏଥୁ ଅନନ୍ତରେ ସେ ଗଲାକ କିଛି ଦିନ
ଆସ୍ଥାନରେ ବସିଛି ଲଙ୍କାର ରାଜନ ।
ମନ୍ତ୍ରୀ ଅମନାତ୍ୟଙ୍କୁ ବୋଇଲା ସେ ରାଇ
ପାତାଳ ଭୁବନକୁ ସାଧ କଲି ମୁହିଁ ।
ମର୍ତ୍ତ୍ୟପୁରରେ ମୋତେ ଯେ ନୋହିଲେ ସମସରି
ତେତିଶ କୋଟି ଦେବଙ୍କୁ ମୁଁ ଗଞ୍ଜିଲି ଯୁଦ୍ଧେଧରି ।
ଏକା ମୋତେ ଅସାଧ ହୋଇ ଅଛି ଇନ୍ଦ୍ର
ତାକୁ ଜିଣିଲେ ମୁଁ ହେବି ସୁର ଇନ୍ଦ୍ର ।
ବିବିଧ ଦେବଙ୍କୁ ମୁଁ ସାଧ କଲି ଏବେ
ନିମିଷକେ ସ୍ୱର୍ଗ ପୁର ବିଧ୍ୱଂସିବି ତେବେ ।
ଏତେ ବୋଲି ସନ୍ନିଧକୁ ରାଏ ବିଭୀଷଣ
ଆଜ୍ଞା ଦେଲା ସୈନ୍ୟ ମୋର ସଜକରି ଆଣ ।
ମେଘନାଦ କୁମ୍ଭକର୍ଣ୍ଣ ସଜ ହୋଇ ଥାନ୍ତୁ
ରତ୍ନମୟ ରହୁବରେ ବସିଣ ଆସନ୍ତୁ ।
ଶୁଣିଣ ଜମ୍ବୁମାଳୀ ଯେ ଅକମ୍ପନ ବୀର
କାକାକ୍ଷ, ବିରୁପାକ୍ଷ ଏ ବେନି କୁମର ।
ସଲୋପୀ ଅଲୋପୀ କଙ୍କଧଙ୍କ ମୂଳେ
କାଳଘଣ୍ଟ, ଯମଘଣ୍ଟ ଅଇଲେ ପ୍ରଖରେ ।
ଶୁକ, ସାରଣ ସହିତେ ସେହୁ ମନ୍ତ୍ରୀ ବେନି
ରଥ, ଗଜ, ଅଶ୍ୱ, ପାଦାନ୍ତି ସଇନି ।
ତୁହୋ ବିଭୀଷଣ ସଜ ହୋଇ ଆସ
ରଣ ଗୋଳ ଧନ୍ଦୋଳ କରିବା ତ୍ରିଦଶ ।
ସ୍ୱର୍ଗର ସମ୍ପଦ କରିବା ଆମ୍ଭେ ଯୁର
ଲଙ୍କାକୁ ବାନ୍ଧିଣ ଆଣିବା ଶଚୀ ସୁର ।
ଏସନେକ କହି ସେ ସୈନ୍ୟ ଅଣାଇଲା
ପୁଷ୍ପକ ଯାନରେ ସେ ରାବଣ ବସିଲା ।
କାହାର ରଥ ଯେ ଉଡ଼େ ଅନ୍ତରାଳେ
ପ୍ରବେଶ ହେଲେ ସେ ଆକାଶ ମଣ୍ଡଳେ ।
କରରେ ଶସ୍ତ୍ର ଧରି ବଜାନ୍ତି ଗାଲ ତୁରୀ
ମୁଖରେ ଚହଳରେ ପୁରେ ସ୍ୱର୍ଗପୁରୀ ।
ଏକକୁ ଆରେକ ଚାହିଁଣ ପୁଚ୍ଛାପୁଚ୍ଛି
କେ ବୋଲଇ ସ୍ୱର୍ଗକୁ ରାବଣ ବାହୁଛି ।
ମର୍ତ୍ତ୍ୟ, ପାତାଳ ଯେ ଜିଣିଲା ଦୁଇପୁର
ଦେବଙ୍କ ସଙ୍ଗରେ ଯେ କରିବ ସମର ।
କେ ବୋଲନ୍ତି କାଳ ପୂରିଲା ଏବେ ତାର
ନୋହିଲେ କେସନେ ଯେ ପଶିଲା ଅଗ୍ନୀର ।
ଦୁଇ ପୁର ଜିଣିଲା ପ୍ରାୟେ ସେ ମଣିଲା
ମର୍ତ୍ତ୍ୟପୁର ରାଜାଙ୍କୁ ସେ ଧରିଣ ଆଣିଲା ।
ତେମନ୍ତ ପ୍ରାୟେ ମଣି ସେ ସ୍ୱର୍ଗକୁ ଆସେ ଏବେ
ଏ ଘାନ୍ତି ପ୍ରାଣ ଘେନି ନ ଯାଏନା କେଭେ ।
ତେମନ୍ତ କରି ଧରି ଯେ ମାରିବା ସର୍ବେ ଧରି
ଏମନ୍ତ ବୋଲିଣ ଯେ ଦେବତାଏ ଭାଳି ।
କେ ବୋଲେ ରାବଣକୁ ଜିଣିବ କେ ଆନେ
ଯମ, କୁବେର ସାଧ କରିଅଛି ଯେଣେ ।
ସବୁଙ୍କରି ମୁଖରେ ସେ କାଳି ଲଗାଇଲା
ବରୁଣ ଦଶ ଦିଗପାଳଙ୍କୁ ଜିଣିଲା ।
କପିଳାସ କନ୍ଦରକୁ ଉପାଡ଼ିଲା ହେଳେ
ସାମାନ୍ୟ ଭରସା କି ପଶିଲା ସ୍ୱର୍ଗପୁରେ ।
କେ ବୋଲେ ଶୁଣି ନାହିଁ କି ବିବିଧର ଛନ୍ଦ
ନିଶ୍ଚୟେ ଦୈତ୍ୟ ଆଜ କରିବ ବଡ଼ ଦ୍ୱନ୍ଦ୍ୱ ।
ଏଥୁ ଅନନ୍ତରେ ଯେ କହନ୍ତି ଅଗସ୍ତି
ଭୋ ରାମ ବାରତା ପାଇଲା ସୁର ପତି ।
ଚମକର ଘାଏ ଯେ କମ୍ପେ ସ୍ୱର୍ଗ ପୁର
ଲୋକ ଗହଳରେ ପୂରିଲା ଶୂନ୍ୟ ପୁର ।

ଚାରି ଜଣାଇଲେ ଶୁଣ ଶଚୀ ସାଇଁ
ଦଶଗ୍ରୀବ ରାଜନ ଆଜ ତୁମ୍ଭ ପୁରେ ବାହି ।
ଶୁଣିଣ ବଜ୍ର ଧର ଦେଲେକ ଆଦେଶ
ଗନ୍ଧର୍ବ ବଳ ମୋର ସଜ ହୋଇ ଆସ ।
ସକଳ ଦେବ ବଳ ଯେ ଯାହା ସୈନ୍ୟ ଘେନି
ସିଂହଦ୍ୱାରେ ଆସିଣ ମିଳନ୍ତି ସଇନି ।
ଏତେ ବୋଲି ରାଜା ଆପଣେ ସଜ ହୋଇ
ସାଜ ସାଜ ବୋଲି ସେ ବିବୁଧେ ଆଜ୍ଞା ଦେଇ ।
ସଜ କରି ଆଣିଲା ଯେ ଐରାବତ ଗଜ
ଭଣ୍ଡାରୁ ଶହସ୍ର ମାନ ବାହାର କଲେ ଉଜ ।
କରରେ ଶସ୍ତ୍ର ଧରିଣ ହସ୍ତୀରେ ବସିଲା
ଦୁତୀ କାଳଦେବତା ପ୍ରାୟେକ ଦିଶିଲା ।
ସଙ୍ଗରେ ପୁତ୍ର ତାର ଅଛି ଜୟସେନ
ଅଙ୍ଗାର, ପନଙ୍ଗ, ଚିତ୍ରସେନ ବିଦ୍ୟମାନ ।
ଗନ୍ଧର୍ବ ବଳ ତାର କଳଣା ନ ଯାଇ
ଅତି ଉତ୍ତୁକଟରେ ଦୁନ୍ଦୁଭୀ ବଜାଇ ।
ସବୁ ଦେବତାଏ ଯେ ନିଜବଳ ଘେନି
ଦର୍ଶନ କଲେ ସେ ଆସି ସହସ୍ର ଯୋନି ।
ଦକ୍ଷ କିନ୍ନର ବିଦ୍ୟାଧର ବଳ ଯାଇ
ସ୍ୱର୍ଗପୁର ପୂରିଲା ଦେବତା ଗୁଣ୍ଡ ହୋଇ ।
ସକଳ ବିଦ୍ୟାଧର ସେମାନେ ନିର୍ଜିତା
କ୍ଷତ୍ରୀ ସମ ନାହିଁ ତିନିପୁରେ ବଳବନ୍ତା ।
ସଂଗ୍ରାମକୁ ତିଳେ ଭୟ ନାହିଁ ତାହାଙ୍କର
କରେ ଶସ୍ତ୍ର ଧରିଣ ଝମକାନ୍ତି ବୀର ।
ସଇନିମାନଙ୍କୁ ଧରି ବିଚାର କରେ ଇନ୍ଦ୍ର
ବିଷ୍ଣୁଙ୍କୁ ନ କହି କରିବା କିମ୍ପା ଦ୍ୱନ୍ଦ୍ୱ ।
ସେହି ସିନା ଜଗତରେ ଅଟନ୍ତି ଅଧିକାରୀ
ତାଙ୍କରି ସକାଶରୁ ଦଇତ୍ୟଗଣ ମାରି ।
ତାହାଙ୍କୁ ନ କହିଲେ ନୋହେ ଆମ୍ଭର କାର୍ଯ୍ୟ
ସେହିତ ଦଇତ୍ୟାରି ଅଟନ୍ତି ଚତୁର୍ଭୁଜ ।
ଏତେକ ଭାଳିଣ ସଇନ୍ୟ ଘେନି ଚଳି
ହସ୍ତୀରୁ ଓହ୍ଲାଇଣ ନବରେ ଯାଇଁ ମିଳି ।
ଦେଖିଣ ନାରାୟଣ ପାଛୋଟି ନେଲେ ଆସି
ବଇକୁଣ୍ଠ ନାଥଙ୍କୁ ଦେଖି ହେଲେ ତୋଷି ।
ସୁର ରାଜାଙ୍କୁ ଅତି ଗୌରବେ ଭଗବାନ
ସୁବର୍ଣ୍ଣ ସିଂହାସନେ ବସାଏ ବହନ ।

ଇନ୍ଦ୍ର ନ ବସିଣ ଯୋଡ଼ିଲେ ବେନି କର
ଶୁଣ ହେ ଲକ୍ଷ୍ମୀରମଣ ପ୍ରଭୁ ଚକ୍ରଧର ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଠାକୁର ଅଧିପତି
ତୁମ୍ଭ ଆଶ୍ରେ କରିଛନ୍ତି ସପତ ଦ୍ୱୀପା ପୃଥ୍ୱୀ ।
ଆକାଶରେ ଶିର ତୁମ୍ଭର ପାତାଳେ ପୟର
ସଚରାଚର ମହୀ ରଖିଛ ହୃଦର ।
ଚନ୍ଦ୍ର, ସୂର୍ଯ୍ୟ ନୟନ ହେ ପବନ ନିଃଶ୍ୱାସ
ସବୁ ଜୀବଙ୍କ ଶରୀରେ ହୋଇଛ ପ୍ରକାଶ ।
ଯାବତ ଜନଙ୍କର ହୃଦରେ ତୁମ୍ଭେ ଥାଅ
ଯାବତ ପଦାର୍ଥରେ ଧାତୁ ବିଧାତୁ ଦିଅ ।
ନାନାଦି ଯନ୍ତ୍ରରେ ତୁ ଅଟୁ ଯନ୍ତ୍ରକାରୀ
ନାରଦ ବେଦ ବ୍ରହ୍ମା ଆକାର ଓଁକାରି ।
ପରମ ଧାତୁ ତୁମ୍ଭେ ଦେବଙ୍କ ସ୍ୱରୂପ
ଆଦି ଦେବତା ସ୍ୱାମୀ ଅନାମିକା ତୋର ରୂପ ।
ଅଜୟେ ଅଜପା ତୁ ଜ୍ଞାନରେ ଜ୍ଞାନଗ୍ରାହୀ
ମର୍ମତାକୁ ସତ ତୁ ଯେ ଗୁଣକୁ ଗୁଣଗ୍ରାହୀ ।
ଚେତନାରେ ହେତୁ ତୁ ବୁଦ୍ଧି କାରର ଦେଶ
କର୍ମରେ ବିଯୋଗ ବଳ ସେଥିରୁ ହାସ୍ୟ ରସ ।
ପରମ ଜ୍ଞାନ ବ୍ରହ୍ମ ତୁ ପରମାର୍ଥର ହେତୁ
ତୋହରେ ଶରଣ ଯାଇ ସର୍ବ ଜୀବ ତତୁ ।
ଈଶ୍ୱର ପୁରୁଷ ତୁମ୍ଭେ ଅଟ ଆଦି ମୂଳ
ନାନା ବେଦ ଶାସ୍ତ୍ର ଯେ ତୋହର ଫୁଲ ଫଳ ।
ଶରଧାରେ ଶତ୍ରୁ ଯେ ତାମସରେ ଅବିଗୁଣ
ଏ ମାୟା ସଂସାର ଯେ ତୁମ୍ଭର କାରଣ ।
ତୁମ୍ଭେ ଦେବ ଭାରାଭର ପୃଥ୍ୱୀ ସିନା ରଚୁ
ତ୍ରିଭୁବନରେ ଜନ ଜନ୍ତୁଙ୍କୁ ତୁ ସଞ୍ଚୁ ।
ପ୍ରାଣୀଙ୍କର ହିତରେ ତୁ ଅନନ୍ତ ରୂପଧରୁ
ଦଶ ଅବତାର ହୋଇ ଅସୁର ସଂହାରୁ ।
ହିରଣ୍ୟ ହିରଣ୍ୟାକ୍ଷ ମଧୁ ଯେ କୈଟଭ
ଦନୁଜ ଦାନବ ଶଙ୍ଖାସୁର ନାମେ ନୃପ ।
ଏମାନଙ୍କୁ ମାରିଣ ପୃଥ୍ୱୀ ଉଦ୍ଧାରିଲ
ଏବେ କିମ୍ପା ଜଗତକୁ କାରଣ ନକଲ ।
ରାବଣ ନାମରେ ଯେ ଲଙ୍କାର ଈଶ୍ୱର
ବଳରେ ଉତ୍ପାତ ସେ ହେଲା ନିଶାଚର ।
ଜଗତ ଜିଣି ଏବେ ଯେ ସ୍ୱର୍ଗକୁ କଟକାଇ
ଦେଖିବାକୁ ଏକଥା ଶୁଣିଲା କର୍ଣ୍ଣେ ନାହିଁ ।

ଅସୁର ଅମରାବତୀ ପୁରରେ ପଶଇ
ତୁମ୍ଭର ବିଚାରକୁ ଯେମନ୍ତ ଆସଇ ।
ଏହିକ୍ଷଣି ଅସୁର ହରିବ ସ୍ୱର୍ଗ ପୁର
ନିଛତ୍ର ହୋଇଲାଟି ଅମରାବତୀ ପୁର ।
ପାରିଲେ ଗରୁଡ଼କୁ ଘେନି ସଜହୁଅ
ବୃନ୍ଦା ଅର୍କ ଗଣଙ୍କୁ ଜୀବନ ଦାନ ଦିଅ ।
ଦୈତ୍ୟଗଣଙ୍କୁ ମାରି ପୃଥ୍ୱୀ ରକ୍ଷାକର
ଏ ଘୋର ସଙ୍କଟରୁ ଉଦ୍ଧରି ବେଗେଧର ।
ଇନ୍ଦ୍ରଦେବ ମୁଖରୁ ଏସନ ବାଣୀ ଶୁଣି
ମନେ ମନେ ବିଚାରି ବୋଇଲେ ଚକ୍ରପାଣି ।
ତୁହି ହୋ ବଜ୍ରଧର ନକର ଏବେ ଭୟେ
ବିଧାତାର ବରରେ ଦଇତ୍ୟ ଅଜୟେ ।
ପ୍ରବଳ ହୋଇଣ ସେ ସାଧେ ତିନିପୁର
ରାକ୍ଷସେ ଇନ୍ଦ୍ରପଦ ଦେଲେ କୁଶଧର ।
ରାବଣ ସଙ୍ଗେ ଯୁଦ୍ଧ କଲେ ତୁମ୍ଭଙ୍କୁ ଜୟେନାହିଁ
ଦୁର୍ପିଷ୍ଟ ଦାନବ ସେ ଅଛି ବର ପାଇ ।
ମୁଁ ତାହା ସଙ୍ଗେ ନ କରିବି ଯେ ସମର
ନ ଜିଣିଲେ ନ ବାହୁଡ଼େ ରାବଣ ଦୈତ୍ୟ ବୀର ।
ଆମ୍ଭର ବର ତ ହେବ ଏବେ ମିଛ
ନାରାଜେ ନ ମରିବ ବିଶର୍ବାର ବସ୍ତ ।
ମୋତେ ତୁ ବାସବରେ ତହିଁକି ଘେନି ନଯା
ସେ ମହାଦୁଷ୍ଟ ଅଟଇ ଲଙ୍କାଗଡ଼ ରାଜା ।
ସଭିଏଁ ଏକାବେଳେ ହାରିବାଟି ଯେବେ
ତିନିପୁର ରାକ୍ଷସେ ଯେ ବିଧ୍ୱଂସିବେ ତେବେ ।
ତୁମ୍ଭେ ଏବେ ଦେବତାଏ ସମସ୍ତେ ଯାଇ ଯୁଝ
କେତେକ ବଳ ତାର ପ୍ରାକର୍ମ ଯାଇ ବୁଝ ।
ତୁମ୍ଭେ ହାରିଲେ ମୁଁ ଗରୁଡ଼ ଚଢ଼ି ଯିବି
ରାବଣ ସଙ୍ଗେ ଚାରି ରାବଣ ମାରିବି ।
ଏତେବେଳେ ନ ଯୁଝିବି ନୋହେ ମୋର କାଳ
ଯାଅ ଯାଅ ସୁର-ରାଜା ବେଗେ ସ୍ୱର୍ଗପୁର ।
ବିଷ୍ଣୁଙ୍କର ବଚନ ଶୁଣି ଇନ୍ଦ୍ର ଡରି
ସ୍ତମ୍ଭୀଭୂତ ହୋଇଣ ମନରେ ବିଚାରି ।
ମୁଖକୁ ଶୁଖାଇଣ ବାହୁଡ଼ିଣ ଗଲେ
ଐରାବତ ପିଠିରେ ଯାଇଣ ବସିଲେ ।
କ୍ରୋଧେ ବଜ୍ରଧର ଝମକଇ ରାଗେ
ଦୁନ୍ଦୁଭୀର ବାଜା ଯେ ବାଜୁଅଛି ଆଗେ ।
ଅକଳିତ ସୈନ୍ୟ ଯେ ସକଳ ଦେବେଛନ୍ତି
ଚାରି ରାବଣ ସଙ୍ଗରେ ସମର କରିବେ ବୋଲନ୍ତି ।
ଅମରାବତୀ ପୁରରେ ହେଲେ ପରବେଶ
ଶ୍ରୀ ଜଗନ୍ନାଥ ଶରଣ ମୁଁ ବଳରାମ ଦାଶ ।
ଶ୍ରୀ ଜଗନ୍ନାଥଙ୍କ ଚରଣେ ଲାଗେ ମୋ ଭାଳେଣି
ଦାରୁ ବ୍ରହ୍ମ ମୂର୍ତ୍ତି ବିଜେ ପୁରୁଷୋତ୍ତମେ ପୁଣି ।
ମୋଠାରେ ସୁଦୟା କଲେ ଲକ୍ଷ୍ମୀର ବିଳାସ
ବୋଇଲେ ତୁ ଆମ୍ଭର ହେଲୁ ନାତି ଅଂଶ ।
ମୁଁ ବୋଇଲି କେମନ୍ତେ ତୁମ୍ଭର ନାତି ହେଲି
ଜଗନ୍ନାଥ ବୋଇଲେ ଶୁଣ ତୁ ହେତୁ କରି ।
ପଦ୍ମନର କୁମର ଯେ ଅଟେ ଅନିରୁଦ୍ଧ
ସେହି ରୂପ ତୋହର ବଳରାମ ଦ୍ୱିଜ ।
ତାଙ୍କଠାରୁ ଶୁଣି ମୋର ହରଷ ହେଲା ମନ
ସେହି ଦିନୁ ତାଙ୍କ ପାଦେ ମୋହର ଶରଣ ।
ଏଥୁ ଅନନ୍ତରେ ଶୁଣ ରାମ ତୁମ୍ଭେ
ଦଶଗ୍ରୀବ ଦୈତ୍ୟ ଯେ ମନରେ କରି ରାଗେ ।
ଅମରାବତୀ ପୁରରେ ପଶି ଦୈତ୍ୟ ବଳେ
କୋଳାହଳ ରାବ ଯେ କରନ୍ତି ପୁରେ ପୁରେ ।
ଶ୍ରୀହରିଠାରୁ ଦେବେ ଅଇଲେ ବାହୁଡ଼ି
ଅମରାବତୀ ପୁରେ ପ୍ରବେଶ ଯାଇଁ କରି ।
ଦେଖିଲେ ଅସୁରେ ଉଜାଡୁଛନ୍ତି ଦେଶ
ତାହା ଦେଖି ଦେବତାଏ ମନରେ ପାଇ ତ୍ରାଶ ।
ବିବିଧ ପଦାର୍ଥମାନ ଯୁର କରୁଛନ୍ତି
ମେଢ଼ ଯେ ମଣ୍ଡପ ଦେଉଳ ଭାଙ୍ଗନ୍ତି ।
ଯେ ମୁଖେ ପଡ଼ନ୍ତି ମାରନ୍ତି ତାକୁ ବେଢ଼ି
ଅତି ଉଲ୍ଲଟରେ ଛାଡୁଛନ୍ତି ଘୋର ରଡ଼ି ।
କରରେ ଶସ୍ତ୍ର ଧରିଣ ସଭିଏଁ ଉଗ୍ର ମୂର୍ତ୍ତି
ଦେବତାଙ୍କର ଠାରେ ନାହିଁ ତାଙ୍କର ଭୀତି ।
ଏସନେକ ସମୟେ ମିଳେ ଯାଇଁ ଇନ୍ଦ୍ର
ଆରୋହଣ କରି ଅଛି ଐରାବତ ଗଜ ।
ମାର ମାର ବୋଲି ଇନ୍ଦ୍ର ଧାଇଁଲେକ ରାଗେ
ଅସୁରେ ପଳାଇଲେ ନ ରହିଲେ ଆଗେ ।
କୋଶେ ପରିଯନ୍ତେ ପଳାଇ ଗଲେ ପୁଣି
ରଥକୁ ଧଆଇଁ ଉଠେ ବିଂଶପାଣି ।
ସୁରଗଣଙ୍କ ଆଗରେ ରହିଣ ଯୁଦ୍ଧକଲେ
ଦେଖିଣ ଦେବତାଏ ଧାଇଁଣ ପଡ଼ିଲେ ।

ରହିଣ ଯୁଦ୍ଧକଲେ ଦୈତ୍ୟଗଣ ମାନେ
ଛେଲ ଚକ୍ର ଗଦା ଯେ ମାରନ୍ତି ଅବିଚ୍ଛିନ୍ନେ ।
ରଣଗୋଳ ଧନ୍ଦୋଳ ଯେ ବାଜିଲା ଦୁଇବଳ
ପାୟେ ନ ଛାଡ଼ନ୍ତି ଯେ ସମର ମହାଗୋଳ ।
ହାଣ ହାଣ ମାର ମାର ଶୁଭଇ ଶବଦ
ବିକଟାଳେ ବାଜଇ ଦୁନ୍ଦୁଭୀ ଯେ ବାଦ୍ୟ ।
ଦେବେ ଦାନବେ ଯେ ହେଲେ ମିଶାମିଶି
ଧାଇଁ ମରାମରି ହୋନ୍ତି ଶର ପେଶା ପେଶି ।
ଶହସ୍ରେ ଶହସ୍ରେ ବାଜିଲା ପଡ଼ି ତାଳ
ସଭିଙ୍କର ଶରୀରୁ ବହେ ଶ୍ରମ ଝାଳ ।
ଏକ ଆରେକରେ ନ ଘୁଞ୍ଚନ୍ତି ପାୟେ
ଏମନ୍ତେ ଯୁଦ୍ଧ ହେଲା ତିନି ଘଡ଼ିଯାଏ ।
ରକତ ନଦୀ ଗୋଟା ହେଲା ତିନିଧାର
ମଡ଼ା କୁଢ଼ କୁଢ଼ ଯେ ପଡ଼ିଲେ ନିରନ୍ତର ।
ଦୁଇ ବଳରୁ ଯେ ଅନେକ ସୈନ୍ୟ ମଲେ
ରାବଣ ମଉଳା ପଡ଼େ ଜମ୍ଭୋମାଳୀ ତୁଲେ ।
ଦୁଇଜଙ୍ଘ ପିଟି ଯେ ଶକତି ଗଲା ଗଳି
ପଡ଼ିଲା ସୁମାଳୀ ପୁତ୍ର ପିଣ୍ଡରୁ ପ୍ରାଣ ଛାଡ଼ି ।
ପ୍ରଶସ୍ତ ଭାଇ ତାର ଯେ ଆବୋରି ଘେନିଗଲା
ଲୋକଙ୍କର ହସ୍ତରେ ଲଙ୍କାପୁରକୁ ଚାଳିଦେଲା ।
ଅନେକ ପ୍ରକାର କଲେ ନରହେ ତାର ପ୍ରାଣ
ଜମ୍ଭୋମାଳୀ ତାର ଭାଇ ଯୁଝିଲା ଆସି ପୁଣ ।
ଦେବଙ୍କର ଶକତିରେ ସେହୁ ଘାଉ ହୋଇ
ପଡ଼ିଲେ ଦୈତ୍ୟ ବୀର ଭୂମିରେଣ ଶୋଇ ।
ପ୍ରଶସ୍ତ ସେହ୍ନାପତି ଲଙ୍କାକୁ ଦେଲା ଚାଳି
କେତେବେଳ ଉତ୍ତାରେ ଚେତା ପାଏ ଜାମ୍ବମାଳୀ ।
କବନ୍ଧ କୋଟି କୋଟି ନାଚିଲେ ନଦୀରେ
ଖେଚର ଚଣ୍ଡୀ ଚାମଣ୍ଡା ମିଳିଲେ ସେଠାରେ ।
ସମସ୍ତେ ମେଳ ହୋଇ ରୋଧିର ପାନକଲେ
ମାଂସ ଭକ୍ଷି ଦେବୀମାନେ ସନ୍ତୋଷ ହୋଇଲେ ।
ଏଥୁ ଅନନ୍ତରେ ରାମଚନ୍ଦ୍ର ଶୁଣ
ଦେବତାଏ ମାଇଲେ ଯେ ଅପର୍ଯ୍ୟାପ୍ତ ବାଣ ।
ଚିତ୍ର ରଥ ଶକତିରେ ଜମ୍ଭୋମାଳୀ ମୋହଗଲା
ଅସୁର ବଳ ଡରେ ଛାଡ଼ିଣ ପଳାଇଲା ।
ଗୋଡ଼ାଇ ଗନ୍ଧର୍ବ ବଳ ମାରେ ପିଠି କତି
ଇନ୍ଦ୍ରହିଁ ମାଇଲା ଯେ ଐରାବତ ପିଠି ।

ପଳାଇଲେ ରାକ୍ଷସ ବଳ ଯେ ଏଣେ ତେଣେ
ଦେଖିଣ ମେଘନାଦ ଯେ ଧାଇଁଲେ ଆପଣେ ।
ରତ୍ନମୟେ ରଥ ଯେ ସୂର୍ଯ୍ୟର କିରଣ
ତହିଁ ବସି ମେଘନାଦ କରେ କ୍ଷତ୍ରିପଣ ।
ସୈନ୍ୟଙ୍କୁ ବୋଇଲାରେ ମୋର ସଙ୍ଗେ ଥାଅ
ନିସରରେ ସଂଗ୍ରାମରୁ କେବେହେଁ ନ ପଳାଅ ।
ଲଙ୍କାଗଡ଼ ତୁମ୍ଭରରେ ଅଟେ କେତେ ଦୂର
ଗଲେ ଲଙ୍କାରେ ରହି ନ ପାରିବରେ ଅସୁର ।
ଆସ ଆସ ବୋଲିଣ ସେ ଧୂଆଇଲା ରଥ
ଦେଖିଣ ପଳାଇଲେ ଗନ୍ଧର୍ବ ସମସ୍ତ ।
ଅପୂର୍ବ ଯୁଦ୍ଧ କଲା ରାବଣର ପୁତ୍ର
ଦେବ ସୈନ୍ୟବଳଙ୍କୁ ତ ମାଇଲା ବହୁତ ।
ଅସମ୍ଭାଳ ହୋଇଣ ପଳାନ୍ତି ଦେବ ସୈନ୍ୟ
ଦେଖିଣ ଆବୋରିଲେ ସହସ୍ରେ ଲୋଚନ ।
ସୈନ୍ୟଙ୍କୁ ବୋଇଲେ ରେ ପଳାଅ କାହିଁ ପାଇଁ
ଅମର ପୁରେ ରହି କେ ମରଣକୁ ଡରଇ ।
ଲାଜ ଶଙ୍କୁଚ କି ନାହିଁରେ ତୁମ୍ଭର
ମୃତ୍ୟୁ କେଭେ ନାହିଁରେ ଏହି ସ୍ୱର୍ଗପୁର ।
ଏବେ ଯୁଦ୍ଧ କରରେ ମୋ ସଙ୍ଗରେ ଆସ
ଏହିକ୍ଷଣି ଦନୁଜଙ୍କୁ ମୁଁ କରିବି ପ୍ରାଣେ ନାଶ ।
ଇନ୍ଦ୍ରଙ୍କର ବଚନରେ ଗନ୍ଧର୍ବେ ଉଗ୍ର ମୂର୍ତ୍ତି
ଆଗଭର ହୋଇ ସେ ଯୁଝିଲେ ଚିତ୍ର ଗତି ।
ଐରାବତ ପିଠିରେ ଚଢ଼ିଲେ ବଜ୍ରଧର
ସଙ୍ଗରେ ଅଛନ୍ତି ତାର ଅନେକ କୁମର ।
ବିବିଧ ବଳ ଘେନିଣ ଉଠିଲାକ ରାୟେ
ଭେଟିଲାକ ଯାଇ ସେ ରାବଣ ତନୟେ ।
ଆରେ ଆରେ ବୋଲିଣ ବାସବର ସୁତ
ରାବଣ ପୁତ୍ରଠାରେ ଭେଟାଏ ନେଇ ରଥ ।
ଦୁହେଁ ମହା କ୍ଷତ୍ରୀ ରହିଲେ ସୈନ୍ୟ ଘେନି
ବେଳୁଁ ବେଳ ସମରେ ହୋଇଲେ ଅନାଅନି ।
ମେଘନାଦ ବୀର ବଜ୍ର ଶର ଯେ ମାରଇ
ଜୟନ୍ତ ଶର ପଡ଼ିଲେ ମେରୁ ଯେ ଝଡ଼ଇ ।
ଦୁହେଁ ମହା କ୍ଷତ୍ରୀ ଯେ ବିଦ୍ୟାରେ ଗରିଷ୍ଠ
ଏକକୁ ଏକ ଯୁଦ୍ଧରେ କରନ୍ତି ପରିପାକ ।
ଏକ ବିନ୍ଧନ୍ତେ ଯେ ଆରେକ ଛେଦଇ
କ୍ଷତ୍ରୀ ପଣରେ କାହାରି ଶରୀରେ ନ ଭେଦଇ ।

ହାକିଣ ବିନ୍ଧାବିନ୍ଧି ଯେ ଡାକିଣ ମରାମରି
ଶୂଳ ଶକ୍ତି ମାରିବାରେ ଚାହିଁତ ନ ପାରି।
ବେଳକୁ ବେଳ ସମର କଲେକ ଅପାର
ଦୁହିଁଙ୍କର ଦେହ ଯେ ରକତେ ଜର ଜର ।
ମାୟା ଯୁଦ୍ଧମାନ ଯେ କରନ୍ତି ବୀର ବେନି
କ୍ଷଣେ କ୍ଷଣେ ଅଦୃଶ୍ୟ ଅନ୍ଧାର ରଜନୀ।
କ୍ଷଣକେ ଅନ୍ତର କ୍ଷଣ କ୍ଷଣକେ ଭୂମିଗତ
କ୍ଷଣକେ ଅଗ୍ନି ଜାଳି ପୋଡ଼ନ୍ତି ଜଗତ।
କ୍ଷଣକରେ ବୃଷ୍ଟି କରେ ମୂଷଳ ସମାନ
କ୍ଷଣକରେ ଅନ୍ଧାର ନ ଦିଶେ କିଛି ପୁଣ।
କୋପରେ ଦଇତ୍ୟ ଯେ ବଜ୍ର ଅସ୍ତ୍ର କଲା
ଚାରି ମେଘ ପେଶିଣ ଜଳରେ ବରଷିଲା।
ଦେଖିଣ ମେଘନାଦ ବାୟବ୍ୟ ଅସ୍ତ୍ର କରି
ମେଘନ୍ତ ନାଶ ଯାଇ ଫିଟାଏ ତିମିରି।
ପୁଣିହିଁ ଗଦାଏ ଏକ ମାରେ ଦୈତ୍ୟ ନେଇ
ଦେଖିଣ ଇନ୍ଦ୍ର ସୁତ ଗଲେକ ପଳାଇ।
ବିଫଳ ହୋଇଲା ଯେ ତେତେ଼କ ମହାଅସ୍ତ୍ର
ଶକତି ମାରେ ପୁଣି ବାସବର ସୁତ।
ଶକ୍ତି ଦେଖି ମେଘନାଦ ଆଡ଼ ହୋଇ ଗଲା
ମେଘନାଦ ସାରଥିକି ଶୂଳେକ ମାଇଲା।
ବୁକୁରେ ବାଜି ପିଠିକି ବାହାର ହେଲା ଶର
ପ୍ରାଣ ଛାଡ଼ିଣ ସେ ପଡ଼ିଲା ଭୂମିର।
ବିରଥୀ ହୋଇଲା ଯେ ରାବଣର ସୁତ
ଆପଣେ ବାହୁଡ଼ାଇ ନେଲାକ ନିଜ ରଥ।
ଏସନେକ ସମୟେ ଇନ୍ଦ୍ର ପୁତ୍ର ଶର
ଫୁଲମା ଦଇତ୍ୟ ସେ ଯେ ଶଚୀର ପିଅର।
ସେ ଆସି ରାବଣର ସଙ୍ଗରେ ଯୁଦ୍ଧ କଲା
ଇନ୍ଦ୍ରଙ୍କ ପାଇଁ ପରିଘାଇ ସେ ଯୁଝିଲା।
ଦୁହେଁ ମାୟା ଯୁଦ୍ଧ ଯେ ଜିଣନ୍ତି କୂଟ ଛନ୍ଦ
ରଣରେ ତା ସମାନେ ନୋହେ ଦଶକନ୍ଧ।
ଶରୀରେ ତାହାର କାଣ୍ଡ ଅଛି ଲାଗି
ରୋଧିର ବାହାରନ୍ତେ ସେ ହେଲା ବଡ଼ ରାଗୀ।
ସଙ୍ଗରେ ଅଛନ୍ତି ତାର ଅନେକ କୁମର
ସମସ୍ତଙ୍କୁ ବୋଇଲା କରରେ ରଣ ଗୋଳ।
ବିବିଧ ବଳ ଘେନି ଉଠିଲାକ ରାଗେ
ଶେଷେ ଭେଟ ପଡ଼ିଲା ମେଘନାଦ ଆଗେ।

ଆରେ ଆରେ ବୋଲିଣ ବାସବର ସୁତ
ରାବଣ ତନୟଠାରେ ଟେକିଲାକ ରଥ।
ଦୁହେଁ ମହା କ୍ଷତ୍ରି ରହେ ଭୂମି ଘେନି
ବେଳୁଁ ବେଳ ସମର ହେଲା ଅନ୍ୟାଅନି।
ମେଘନାଦ ବୀର ଶର ଯେ ମାରଇ
ଜୟନ୍ତ ଶରେ ମେରୁ ଗିରି ଯେ ଝଡ଼ଇ।
ସାରଥୀ ବୋଇଲା ଦେବ ମୋର ବାଣୀ ଶୁଣ
ଅସଂଖ୍ୟ ସମର ଯେ ହେବ ଆଜ ରଣ ।
ସୁରଗଣ ପ୍ରାକର୍ମରେ ତୁହି ସେ ହାରିବୁ
ଇନ୍ଦ୍ର ଦେବତାକୁ ତୁ କେଭେ ନ ଜିଣିବୁ।
ରାବଣ ବୋଲେ ମୁଁ ଆଜ ମାରିବି ସୁର ରାୟେ
ତେବେ ମୋର ମନକାମନା ପୂର୍ଣ୍ଣ ହୋଏ।
ଏବେ ରଥ ବାହା ମୋହର ତୁ ଖର
ସାରଣ ମନ୍ତ୍ରୀ ବାହେ ମେଘନାଦ ରହୁବର ।
ଶୁଣିଣ ଶୁକ ସାରଣ ବାହିଲେ ବେଗେ ଯାନ
ପବନରୁ ବେଗେ ରଥ ଚଳେ ଘନ ଘନ।
ସଙ୍ଗରେ ତାର ରାକ୍ଷସ ଗଣ ଅପ୍ରମିତ
ଗୋଡ଼ାଇ ବିନ୍ଧୁଅଛି ଫୁଲମା ଦଇତ୍ୟ।
କୋପଭରେ ରାବଣ ବାଇଲା ଶର ଯେ
ଧନୁଶର ଧରି ଯେ ବିନ୍ଧେ ବିଂଶ ଭୁଜେ।
ଯତନରେ ଯୁଦ୍ଧ କରରେ ବୋଲି କହି
ନୟନ ବୁଲାଇ ଯେ ଭ୍ରୂଲତା ଡିଆଁଇ।
ପୁଣ ପୁଣ ପ୍ରତିଜ୍ଞା କରଇ ରାବଣ
ସବୁ ଦିଗପାଳଙ୍କର ମୁଁ ଘେନିବି ପରାଣ।
ଦଶାନନ ଠାରୁ ଯେ ଶୁଣିଣ ସାରଥୀ
ରଥ କଲା ନେଇ ସେ ଦେବଙ୍କର କତି।
ଦେଖି ଦେବଗଣେ ଇନ୍ଦ୍ରଙ୍କୁ ବିଚାରି
ଏ ମହାଦୁଷ୍ଟ ଯେ ଅଟେ ଦଶ ଗିରି।
ବ୍ରହ୍ମାର ବରରେ ଏ ନୋହେ ପ୍ରାଣ ନାଶ
ସ୍ୱର୍ଗରେ ସେ ଯୁଝେ ସାମାନ୍ୟ କି ତା ସାହସ।
ଆମ୍ଭର ବୋଲ ତୁମ୍ଭେ ଶୁଣ ହେ ସୁରପତି
ବେଢ଼ିଣ ମାରିବା ଆମ୍ଭେ ପଉଲସ୍ତୀ ନାତି।
ଦେବ ଭଣ୍ଡାରରେ ବାନ୍ଧିଣ ଥୋଇବା
କଳହ ହେଲେ ପଛେ ପ୍ରାଣରେ ମାରିବା।
ଏବେ ସଜ ହୋଇଣ ଆସ ସର୍ବ ସୁର
ଶୁଣିଣ ସନ୍ନତ ଯେ କଲେ ବଜ୍ରଧର।

ଦେବତାଏ ସର୍ବେ ଏକ ମୁଖ ହୋଇ
ସମସ୍ତଙ୍କ ବିଚାର ଧରିବା ଲଙ୍କସାଇଁ ।
ତେତିଶ କୋଟି ଦେବତା ଇନ୍ଦ୍ର ଆଜ୍ଞା ପାଇ
ଏକାଦଶ ରୁଦ୍ର ଧରିଣ ସଇନି ସଜ ହୋଇ ।
ଦ୍ୱାଦଶ ବିଶ୍ୱ ଦେବାଏ ଧଇଲେକ ଶୂଳ
ସନକାଦି ସହିତେ ସକଳ ଦିଗପାଳ ।
ରାବଣକୁ ମାଇଲେ ଆମ୍ଭର ଯିବ କଷ୍ଟ
ଏତେ ବୋଲି ସଜ ହେଲେ ସ୍ୱର୍ଗପୁର ରାଜା ।
ଷୋଳ ଚନ୍ଦ୍ରମା ଯେ ଧଇଲେ ଶକ୍ତି ଟାଣ
ଅଣଚାଶ ପବନ ଗଦାଧରି ପୁଣ ।
ସପତ ଯମ ଆସି ଧଇଲେ କାଳଫାଶୀ
ପଞ୍ଚ ଅଗ୍ନି ମୁଦଗର ଧରିଣ ମାରେ ପଶି ।
ନଇଋତ ବରୁଣ କୁବେର ଈଶାନ୍ୟ
ଦକ୍ଷଗଣ ଗନ୍ଧର୍ବାଦି କିନ୍ନର ଯେ ଗଣ ।
ଯେ ଯାହାର ପରାକ୍ରମ ଦେଖାଇ ପଶେ ରଣେ
ରାବଣକୁ ଭେଟ ଯେ ପଡ଼ିଲେ ତତ୍‌କ୍ଷଣେ ।
ସୁରାସୁର ଯୁଦ୍ଧ ଯେ ବାଜିଲା ମହାଗୋଳ
ପଞ୍ଚାଶ କୋଟି ବସୁନ୍ଧରୀ ହେଲେ ଟଳମଳ ।
ଚିହ୍ନିଣ ମରାମରି ଓପ୍ରୋଧ ନାହିଁ କିଛି
ଶ୍ରାବଣ ବରଷା ପରି ନାରାଚ ପଡ଼ୁଛି ।
ଚନ୍ଦ୍ର ଦେବତା ଦିବ୍ୟରଥରେ ଚଢ଼ିଥିଲେ
ଦେଖିଣ ମେଘନାଦ ଧାଇଁଣ ପଡ଼ିଲେ ।
ମାତଳୀ ଯେ ତାର ସାରଥି ଅଛି ମାରି
ସେ ରାଗରେ ବାଣ ମାରେ ଯତ୍ନ କରି ।
ଖଣ୍ଡ ଖଣ୍ଡ କରି କାଟିଲେ ତାର କାୟେ
ଇନ୍ଦ୍ର ଦେବତା ସହିତ ସଭିଏଁ ଭୟ ପାଏ ।
ବାସବ ବୋଇଲେ ତୁରେ ଏଥୁଁ ବେଗେ ପଳା
ମାୟା ଯୁଦ୍ଧ ଜାଣେ ସେ ବିଶ୍ରବାର ବଳା ।
ଏହିକ୍ଷଣି ତାହାକୁ ମୁଁ କରିବି ପ୍ରାଣେ ନାଶ
ତୋର କଷ୍ଟ ଦେଖିଲେ ମୋର ବଡ଼ ତ୍ରାସ ।
ମୁହିଁ ପଛେ ଅନ୍ୟରଥ ଚଢ଼ିଣ ଯୁଝଇ
ତୁ ବେଗେ ଯା ଯା ତୋ ମରଣକୁ ଡରଇ ।
ଶୁଣିକରି ମାତଳୀ ରଥ ଘେନିଗଲା
ଇନ୍ଦ୍ର ଯାଇକରି ହସ୍ତୀ ଆରୋହିଲା ।
କରେ ବଜ୍ରଧରିଣ ଝମକିଲା ରାଗେ
ଦେଖିଣ ମେଘନାଦ ଓଗାଳିଲା ଆଗେ ।
ବୋଇଲା ଇନ୍ଦ୍ର ତୁରେ ଯିବୁ ଆଜ କାହିଁ
ଅମରାବତୀର ଆଶା ଛାଡ଼ ଶଚୀସାଇଁ ।
ଆଉକି ଅପସରୀଙ୍କ କରିବୁରେ ଭୋଗ
ସରିଲା ବିଭୂତି ତୋର ଆକର୍ଷିଲା ରୋଗ ।
ବୃତ୍ତାସୁରକୁ ମାଇଲା ପ୍ରାୟେ କିରେ ତୁ ମଣୁ
ସେ ଅସୁର ସଙ୍ଗରେ ମୋତେ ତୁରେ ଗଣୁ ।
ଏତେ ବୋଲି ନାରାଚ ମାରେ ଘନ ଘନ
ଦେବରାଜା ବାଣ ସେ ମାରେ ଅବିଚ୍ଛିନ୍ନ ।
ଶ୍ୱେତ ପର୍ବତ ଜାଣି ଦିଶେ ଐରାବତ
ଆଦିତ୍ୟଙ୍କର ତେଜ ପ୍ରାୟେ ଇନ୍ଦ୍ରଜିତ ରଥ ।
ମନରେ ବିଚାରନ୍ତେ ତଳେ ଦୁଇ ରଥ
ବିଷମ ସମର କରେ ରାବଣର ସୁତ ।
ରାବଣ ଯୁଝୁଅଛି ଦେବଗଣଙ୍କ ସଙ୍ଗେ
ପ୍ରଶସ୍ତ ବୀର ଯେ ଯୁଝଇ ନାନାରଙ୍ଗେ ।
ପବନର ସଙ୍ଗରେ ଯୁଝେ ବିଭୀଷଣ
ଚାରି ମେଘ ଯୁଝନ୍ତି ସୁମାଳୀ ସଙ୍ଗେଣ ।
ଅକମ୍ପନ ଅଲୋପୀ ସଲୋପୀ ଏ ଚାରି
ପବନ ଦେବତାଙ୍କୁ ଅଛନ୍ତି ବେଢ଼ ପାଡ଼ି ।
ବାର ବିଶ୍ୱଦେବା ମହୋଦର ସଙ୍ଗେ
କାଳଘଣ୍ଟ ଯୁଝେ ଅଙ୍ଗାର ପନ୍ନଗର ସଙ୍ଗେ ।
ନବଗ୍ରହ ସମର କରନ୍ତି ମହାଟାଣ
ଧୂମାକ୍ଷର ତୁଲେ ବଢ଼େ ମହାରଣ ।
ଏଗାର କରଣ ସଙ୍ଗେ ଯୁଝେ ସ୍ଥୂଳ ଜଙ୍ଘ
ରସ କେତୁ ସତାଇଶ ନକ୍ଷତ୍ରଙ୍କର ସଙ୍ଗ ।
କୁମ୍ଭ ନିକୁମ୍ଭ ଯୁଝନ୍ତି ଚାରଣଙ୍କର ସଙ୍ଗେ
ପନ୍ଦର ତିଥିଙ୍କ ସଙ୍ଗେ କୁମର ନାନାରଙ୍ଗେ ।
ଖର ଦଇତ୍ୟ ଓଗାଳଇ ଯେ ବରୁଣ
ଚିତ୍ରସେନ ଯୁଦ୍ଧ କରଇ ମହାଟାଣ ।
ମିତ୍ରଘନ ସଙ୍ଗେ ଜୟସେନ ଯୁଝି
ରଣଭୂମି ଗହଳ ରଣଝଣ ବାଜି ।
ଦକ୍ଷଗଣ ଚାରଣ ଗନ୍ଧର୍ବ ବିଦ୍ୟାଧର
ଯମଗଣ ରୁଦ୍ରଗଣ କାଳଗଣ ବୀର ।
ମୃତ୍ୟୁ ଦେବତା ସହିତେ ସମସ୍ତେ ଯୁଦ୍ଧ କରି
ରାବଣର ପୋଏ ବେଢ଼ି ଶସ୍ତ୍ର ମାରି ।
ସୂର୍ଯ୍ୟଗଣ, ଚନ୍ଦ୍ରଗଣ, ନୈରତଗଣ ପୁଣ
ଗ୍ରହଗଣ, ପିଚାଶଗଣ, ଭଇରବୀ ଗଣ ।

ଅସୁରଙ୍କ ତୁଲେ କରନ୍ତି ରଣ ଘୋର
ରାକ୍ଷସଙ୍କ ସଙ୍ଗରେ କରନ୍ତି ରଣଘୋର ।
ଦନୁଜ ଦଇତ୍ୟ ଯେ ବଳେ ବଳବନ୍ତା
ଛତିଶ ଜାତି ଅସୁରେ ଅଛନ୍ତି ଅଗଣିତା ।
ଅନେକ କପଟରେ ଜାଣନ୍ତି ଯୁଦ୍ଧକରି
ନୋହିଲେ କେମନ୍ତେ ସେ ବ୍ରହ୍ମାଣ୍ଡ ଆବୋରି ।
କରନ୍ତି ଯୁଦ୍ଧ ଯେ ଘୁଞ୍ଚନ୍ତି ପାୟେ
ବେଳୁବେଳ ସମର ଅପ୍ରମିତ ହୋଏ ।
ଖଣ୍ଡା, ଶାବେଳି ଯେ ଲାଙ୍କିଆ ତୀକ୍ଷ୍ଣ ଭାଲ
ଉପରେଶ କାଣ୍ଡ ଯେ ପଡ଼ଇ ପଲ ପଲ ।
ବୁଲାଇ ମାଇଲା ସେ ହସ୍ତୀର କୁମ୍ଭ ସ୍ଥଳେ
ଗର୍ଜ୍ଜନକଲା ଗଜ ପ୍ରାଣର ବିକଳେ ।
ମହାନାଦ ସହିତେ ଡରିଲେ ତାହା ଶୁଣି
ଅଙ୍କୁଶ ଲଗାଇ ଯେ ଦେଲେ ବଜ୍ରପାଣି ।
ଧଇଲାକ ହସ୍ତୀ ଯେ ଯୋଧାର ବଚନେ
ମାରନ୍ତେ ମେଘନାଦ ପଶିଲା ଗଗନେ ।
ରଥ ସହିତରେ ରଥୀକି ଘେନିଗଲା
ଗଲାରଥ ତାର ଯେ ଭୂମିରେ ମିଳିଲା ।
ଲାଜରେ ଐରାବତ ଯେ ବାହୁଡ଼ି ଅଇଲା
ଦେଖିଣ ଐରାବତ ନାଗରେ ଧଇଲା ।
ଇନ୍ଦ୍ରଙ୍କର ହାତକୁ ବଢ଼ାଇ ଦିଏ ତାହା
ସେ ଶକ୍ତି ମେଘନାଦକୁ ମାରେ ଶଚୀ ନାହା ।
ଭୂମି ଭିତରେ ଦୈତ୍ୟ ଲୁଚାଇଲା ରଥ
ତେଡ଼େ ଶକତି ଗୋଟା ଯେ ହୋଇଲା ବିଅର୍ଥ ।
ଭୂମିରୁ ବାହାର ହୋଇ ସୈନ୍ୟରେ ଲୁଚାଦେଲା
ସହସ୍ରେ ତୀକ୍ଷ୍ଣ ଶର ଅଦୃଶ୍ୟେ ମାଇଲା ।
ସେହ୍ନା ଫୁଟି ବାଣ ଇନ୍ଦ୍ର ଦେହେ ଫୁଟି
କଣ୍ଟା ବୃକ୍ଷ ଯେସନେ ଭୂମିରେଣ ଲୋଟି ।
ରାବଣରେ ବଜ୍ରଧର ପିଟେ ସେ ଗୁରୁଜ
ଅଦୃଶ୍ୟ ହୋଇଲାକ ରାବଣ ଦନୁଜ ।
ତୀକ୍ଷ୍ଣଶର ପୁଣି ଯେ ମାଇଲା ନିଠାଇ
ପୁଣି ହିଁ ମେଘନାଦ ପାଶରେ ମିଳଇ ।
ଶଚୀପତିକି ତୀକ୍ଷ୍ଣ ଶରରେ ପ୍ରହାରି
ଚଳିଲାକ ନାରାଜ ଗର୍ଜ୍ଜନ ନାଦ କରି ।
ଶଚୀପତି ତାହା ଯେ ନ ପାରିଲା ଜାଣି
ଐରାବତ ନାଗରେ ବାଜିଲାକ ପୁଣି ।
ଇନ୍ଦ୍ର ପଡ଼ିବାରୁ ଲୁଚିଲା ଯାଇଁ ପଛେ
ଧାଡ଼ିକାରେ ତୀକ୍ଷ୍ଣଶର ମାଇଲାକ ଲକ୍ଷେ ।
ବାସବର ଶରୀରେ ହେଲାକ ବିଦାରି
ଐରାବତ ଗଜକୁ ମୂଷଳ ଧରି ମାରି ।
କର୍ଣ୍ଣ କ୍ରୋଟେ ବାଜନ୍ତେ ହସ୍ତୀ ମୋହଗଲା
ଦେଖିକରି ମେଘନାଦ ଶଙ୍ଖଧ୍ୱନି କଲା ।
ଇନ୍ଦ୍ରକୁ ସେହିକାଳେ ମାଇଲା ଶକତି
ପୁଣିହିଁ ମୁଦୁଗର ମାଇଲାକ ଧାତି ।
ଦୁଇ ଆୟୁଧ ଇନ୍ଦ୍ର ଦେହରେ ପଡ଼ିଲା
ହସ୍ତୀର କନ୍ଧ ପରେ ବାସବ ମୋହ ଗଲା ।
ଦେଖିଣ ରାବଣ ସୁତ ରଥରୁ ଓହ୍ଲାଇ
ଐରାବତ କନ୍ଧରୁ ଇନ୍ଦ୍ରକୁ ଧରି ନେଇ ।
ନିବିଡ଼ ବାନ୍ଧେଣୀ ଯେ ବାଜିଲାକ କୋପେ
ବିବୁଧଗଣେ କେହି ନ ରହିଲେ ଧାପେ ।
ବିଷମ ସମରରେ ଇନ୍ଦ୍ରକୁ ମାଇଲା
ହସ୍ତୀ କନ୍ଧରେ ସୁରପତିକି ମୋହକଲା ।
ବଳରେ ବାନ୍ଧି ଘେନି ଯାଉଅଛି ଏବେ
ଆମ୍ଭେମାନେ ପଳାଇଲୁ ଇନ୍ଦ୍ରଙ୍କର ଆଗେ ।
ଶୁଣିଣ ପିତାମହ ବୋଇଲେ ତୁମ୍ଭେ ରହ
କ୍ଷଣକେ ବିଶ୍ରାମିବା ଭାଙ୍ଗୁ ତାର କୋହ ।
ଲଙ୍କାକୁ ଯାଇଣ ଆଣିବା ମୁକୁଳାଇ
ବ୍ରହ୍ମାଙ୍କ ବଚନେ ଦେବେ ରହିଲେ ତୁଷ୍ଟହୋଇ ।
ଏଥୁ ଅନନ୍ତରେ ଦଶଗ୍ରୀବ ରାୟେ
ପୁତ୍ରକୁ ତାହାର ବହୁ ପ୍ରଶଂସା କରୟେ ।
ଭୋ ପୁତ୍ର ମେଘନାଦରେ ମହିମା ତାର ଧନି
କିଞ୍ଚିତ ଶରରେ ତୁ ଜିଣିଲୁ ସସ୍ତ୍ରଯୋନି ।
ତିନିପୁରରେ ତୋତେରେ ନାହିଁ ବଳୀୟାର
ଚଉଦ ଭୁବନରେ ତୁ ଏକାଏ ହେବୁ ବୀର ।
ଜଗତେ ବିଦ୍ୟମାନ ହୋଇଲୁରେ ବାବୁ
ଇନ୍ଦ୍ରକୁ ଜିଣିଲୁ ତୁରେ ଯଶକଲୁ ସବୁ ।
ଚାଲ ଏବେ ନିଜ ନବରକୁ ଯିବା
ସ୍ୱର୍ଗର ଭଣ୍ଡାର ଚାଲ ଲଙ୍କାକୁ ବୋହି ନେବା ।
ଏତେ କହି ଅମରାବତୀକି ଯୂର କଲେ
ଇନ୍ଦ୍ରଙ୍କର ବେଦାର୍ଚ୍ଚନ ସହିତେ ଆଣିଲେ ।
ମେଢ଼ ମଣ୍ଡପରେ ଯେ ଭାଙ୍ଗିଲେ ଜଗତୀ
ବୀର ତୁର ବଜାଇ ବାହୁଡ଼ି ସେଥୁ ଯାନ୍ତି ।

ଯୁର ପଦାର୍ଥମାନ ବିଭୀଷଣର ମୂଳେ ଦେଲେ
ସମ୍ପର୍ବରେ ସେଥିରୁ ଚଳିଣ ଅଇଲେ ।
ପୁଷ୍ପକ ଯାନଘରେ ସକଳ ଭରିଲା
ସ୍ୱର୍ଗର ସମ୍ପଦ ଲଙ୍କାକୁ ବହିନେଲା ।
ରାବଣ ନବରରେ ପ୍ରବେଶ ହୋଇଲା
ସ୍ୱର୍ଗର ସମ୍ପଦ ନିଜ ଭଣ୍ଡାରେ ଥୋଇଲା ।
ଇନ୍ଦ୍ରଙ୍କୁ ଧରି ରଖେ ଅତି ଯତ୍ନ କରି
ପୁତ୍ରକୁ ଅଭିଷେକ କରେ ଲଙ୍କପୁରୀ ।
ଆପଣେ ଚନ୍ଦନ ଲେପନ କଲା ନେଇ
ସମ୍ପର୍ବ କରି ମେଘନାଦକୁ ଘେନିଯାଇ ।
ଏହି ସମୟରେ ଅଇଲେ ପଦ୍ମଯୋନୀ
ସଙ୍ଗରେ ସକଳ ଦେବଗଣ ଘେନି ।
ଲଙ୍କାରେ ପଶନ୍ତେ ଦେଖେ ଦଶମଥା
ବିଭୀଷଣ ଅଇଲା ପାଇଣ ବାରତା ।
ମେଘନାଦ ସହିତେ ମିଳେ ସର୍ବେ ଆସି
ମୂର୍ଦ୍ଧନୀ ବ୍ରହ୍ମାଙ୍କର ଚରଣେ ନିବେଶି ।
ଧାତା ବୋଇଲେ ତୁମ୍ଭେରେ ସୁକଲ୍ୟାଣ ପାଅ
ଚଉଦ ଭୁବନରେ ବିପୁଳ ଭୋଗ ପାଅ ।
ଧନ ଦଶଗ୍ରୀବରେ ଧନ୍ୟତୋର ପୁଣ୍ୟ
ତୋଠାରୁ ତୋର ପୁତ୍ର ବଳୀୟାର ଜାଣ ।
ଚଉଦ ଭୁବନେ ଦେଖାଗଲା ତୋର ବଳ
ଏକାରେ ଜିଣିଲୁ ବାବୁ ଦଶ ଦିଗପାଳ ।
ଆଜଠାରୁ ପ୍ରତିଜ୍ଞା ତୋର ପୁତ୍ର ହେଲା ସାଙ୍ଗ
ମହତ ପ୍ରାଣୀଙ୍କର ଯେସନେ ମନୋବାଞ୍ଛା ।
ପୂର୍ବରେ ବୋଇଲେ ମୁଁ ଜିଣିବି ତିନିପୁର
ଲଙ୍କାକୁ ଜିଣି ଯେ ଆଣିବି ସୁରେଶ୍ୱର ।
ସେକଥା ଆଜ ତୋର ହୋଇଲାରେ ବାଞ୍ଛା
ଅପୂର୍ବରେ ସଂଗ୍ରାମ କଲୁ ମନଇଚ୍ଛା ।
ଏବେ ମନେ ଆନନ୍ଦ ହେଲୁ କିରେ ତୁହି
ଆମ୍ଭେ ମନେ ଭାବୁଛୁଁ ଏହାକୁ କ୍ଷତ୍ରି ସମନାହିଁ
ସନ୍ତୁଷ୍ଟ ମନେ ମୁଁ ଦେଇଅଛି ବର
ଚଉଦ ଭୁବନେ ତ୍ରାଶ ଲାଗିବ ତୋହର ।
ଏଯେ ସୁକୁମାର କୁମାର ମେଘନାଦ
ଏହାକୁ ଦେଲି ମୁଁ ଇନ୍ଦ୍ରଜିତ ପଦ ।
ଆଜ୍ଞୁଁ ଇନ୍ଦ୍ରଜିତ ଏହେଲା ତିନିପୁର
କଥାଏ ମାଗିବି ମୋତେ ଦେବୁ ଲଙ୍କେଶ୍ୱର ।

ବାସବକୁ ଜିଣିଣ ଆଣିଅଛୁ ଧରି
ତୋହର ମନକଲେ ପକାଇବୁ ମାରି ।
ତୋହର ହସ୍ତରେ ବଳି ପଡ଼ିଲାଣି ଯେବେ
ମଲା ପ୍ରାଣୀ ସମାନରେ ହେଲା ସେହି ଏବେ ।
ମୁହିଁ ମାଗୁଅଛି ଯେ ଛାଡ଼ିଦିଅ ତାକୁ
ଆଜଠାରୁ ଭଗତି ଯେ ହୋଇବ ତୁମ୍ଭଙ୍କୁ ।
ତୋହର ଆଜ୍ଞା ମାନି କରି ସେହୁଥିବ
ତୁ ଯାହା କହିବୁ ସେକଥା କରିବ ।
ବ୍ରହ୍ମାଙ୍କର ବଚନେ ବୋଲେ ରାବଣର ପୁତ୍ର
ତୁମ୍ଭେ ଯେବେ ପ୍ରସନ୍ନରେ ମାଗିଲ ମୋତେ ତ ।
ଦିଅ ଅମରବର କଥା ତୋର ଥାଉ
ତୋହଠାରେ ସନ୍ତୋଷ ମନ ମୋର ରହୁ ।
ବ୍ରହ୍ମା ବୋଇଲେ ତୁରେ ନ ଜାଣୁ ମେଘନାଦ
ମୁହିଁ ତୋତେ ଦେଲି ପରା ଇନ୍ଦ୍ରଜିତ ପଦ ।
ବେଦ ପୁରାଣରେ ତୁ କାଳେ କାଳେ ଥିବୁ
ରାମାୟଣ ଗ୍ରନ୍ଥରେ ପ୍ରଶଂସା ପାଇବୁ ।
ମୋତେ ତୁ ବୋଲୁଛୁରେ ଅମର ହେବା ପାଇଁ
ମର୍ତ୍ତ୍ୟରେ ଜନ୍ମି କେ ଅମର ଅଛିହୋଇ ।
ଶ୍ରୀହରି ଜନମିଲେ ଯାନ୍ତି ଦେହଛାଡ଼ି
ମର୍ତ୍ତ୍ୟପୁରେ ପୁଣ ଲାଗେ ନାମଧାଡ଼ି ।
ଦଶ ଦିଗପାଳେ ଜନ୍ମିଲେ ମରନ୍ତି
ଭୋଗ ଅନୁରୂପେ କୀରତି ରୁହାନ୍ତି ।
ତୁହି ଇନ୍ଦ୍ରଜିତ ନ ଜାଣୁରେ କିଛି
କାଳକ ଜୀଇଥିଲେ କେଉଁ ସୁଖ ଅଛି ।
ପ୍ରଥମରେ ବାଳକ ଦ୍ୱିତୀୟରେ ଯୁବା
ତୃତୀୟରେ ଭୋଗ ଚତୁର୍ଥରେ ବୃଦ୍ଧ ଦୁଃଖବାବା
କ୍ଷତ୍ରିକୁଳେ ଜନମିଲେ ମରଣେ ନାହିଁ ଭୟେ
ଓହୋକୁଳେ କ୍ଷତ୍ରି ତୁ ଅଟୁରେ ଅଜୟେ ।
ଆପଣେ ମାରିବ ମରିବ ତୋର ହାଥେ
ସେ କ୍ଷେତ୍ରିଙ୍କି ହୃଦେ ଯେ ଡରନ୍ତି ବିଷ୍ଣୁ ନାଥେ ।
ତୁହି ମେଘନାଦ କ୍ଷତ୍ରିୟ ଅଟଗଳ
ତୋର ସଂଗ୍ରାମକୁରେ ଡରନ୍ତି ଦିଗପାଳ ।
ତୋତେ ଅମର ବରରେ ଅପୂର୍ବ ନୁହଇ
ସ୍ୱର୍ଗପୁର ଜିଣିଲୁ ଇନ୍ଦ୍ରକୁ ବାନ୍ଧି ତୁହି ।
ଶୁଣିକରି ଇନ୍ଦ୍ରଜିତ ବଚନ କହିଲା
ମର୍ତ୍ତ୍ୟପୁରେ ଅମରକେ ନାହିଁ ଆଜ୍ଞା ହେଲା ।

ମୋହର ଅଜା ଯେ ଅଟନ୍ତି ମୟେଦୈତ୍ୟ
ସେ କେମନ୍ତେ ଅମର ହେଲେ ହେ ସମ୍ପ୍ରତ ।
ମୋର ପିତାର ଅଜା ଯେ ସୁମାଳୀ ଅଟେ ପୁଣ
ସେ କେମନ୍ତେ ଅମର ହୋଇ ଅଛି ଜାଣ ।
ବଳିର ନନ୍ଦନ ତ ଅଟେ ବାଣାସୁର
ସେ କେମନ୍ତେ ଅମର ତ ହୋଇଅଛି ମର୍ତ୍ତ୍ୟପୁର ।
ହିରଣ୍ୟ କୁମରତ ପ୍ରହଲାଦ ବୀର
ସେ ଅମର ହୋଇ କରି ଧରିଛି ଶରୀର ।
ବୈଲୋଚନ ସୁତ ଯେ ଅଟେ ବଳି ରାୟେ
ଅମର କରି ତାକୁ ରଖିଲେ ଦେବରାୟେ ।
ସେମାନଙ୍କୁ କିମ୍ପାଇଁ ଚିରଞ୍ଜିବୀ ହେଲା
ମୋହର କଥା କିମ୍ପା ନିଷ୍ଫଳକୁ ଗଲା ।
ବେଦବର ବୋଇଲେ ଶୁଣରେ କୁମର
ତୋର ଅଜା ଜନ୍ମିଥିଲେ ଖାଣ୍ଡବ ବନର ।
ଅମର ପୁରେ ଜନମ ଯହୁଁ ସେ ହୋଇଲା
ଶ୍ରୀହରି ଆସେ ତାକୁ ଅମର ବର ଦେଲା ।
ତୋ ବାପ ରାବଣର ସୁମାଳୀ ଅଟେ ଅଜା
ଶିବଙ୍କୁ ସେବା କରି ଅମରେ ତରିଯା ।
ଅନେକ କାଳ ସେ ବସିଣ ତପ କଲା
ତେବେ ସେ ସଦାଶିବ ତାକୁ ବର ଦେଲା ।
ବୋଇଲେ ବିଷ୍ଣୁ ଚକ୍ର ମାନବେ ଅବତରି
ବକ୍ର ବାଟୁଳିରେ ମାରିବେ ତୋତେ ଘେରି ।
ତେବେ ତୁ ମର୍ତ୍ତ୍ୟପୁରେ ପାଇବୁ ମରଣ
ଏମନ୍ତ ବୋଲି କପାଳେ ଲିହିଲେ ତ୍ରିଲୋଚନ ।
ବଳି ଅମର ହେଲା ବୋଲିଣ ବୋଇଲୁ
ସେ କଥା ଗୋଟି ଶୁଣ ଆରେ ବାବୁ କହିଲୁଁ ।
ପିତା ତାହାର ବଇଲୋଚନ ବୀରକୁ
ସ୍ତିରୀ ରୂପେ ଶ୍ରୀହରି ଯେ ନାଶ କଲେ ତାକୁ ।
ଶ୍ରୀହରି ଭାରିଯା ତାର ଗର୍ଭ ହୋଇଥିଲା
ବୈଲୋଚନ ମରିବାରୁ ଶ୍ରୀହରି ପଳାଇଲା ।
ବୈକୁଣ୍ଠ ପୁରେ ଯାଇଁ ହେଲେ ପରବେଶ
ସେଠାରେ ଜନମିଲେ ବୈଲୋଚନ ଶିଷ୍ୟ ।
ପିତାର ସ୍ୱଭାବରେ ଅସୁର ରୂପ ହେଲା
ଦେଖି ନାରାୟଣ ତାକୁ ଦୟା କଲା ।
ବୋଇଲେ ଅମର ବଇକୁଣ୍ଠେ ହେଲୁ ଜାତ
ପିତାର ଗୁଣ ଘେନି ହେଲୁରେ ସଂଜାତ ।
ମର୍ତ୍ତ୍ୟପୁରେ ଯାଇରେ କର ତୁ ବିଶ୍ରାମ
ଚଉଦ ଭୁବନରେ ସାଧେ ହେବ ଧର୍ମ ।
ଅମର ହୋଇଲୁରେ ନିଶ୍ଚିନ୍ତରେ ରହି
ଦାନରେ ଶକତିରେ ହେବୁ ତୁରେ ପୋଇ ।
ତେବେ ମୁଁ ଅବତାର ବ୍ରାହ୍ମଣ ରୂପ ଧରି
ଅମରେ ରଖିବି ତୋତେ ପାତାଳ ଯେ ପୁରୀ ।
ଏତେ କହି ବଳିକି ମର୍ତ୍ତ୍ୟପୁରେ ଭେଦି ଦେଲେ
କାଳେ ବାମନ ରୂପେ ଶିରୀ ସମ୍ପଦ ହରିଲେ ।
ସୁତଳ ପୁରେ ନେଇଣ ରଖିଲେ ତାହାକୁ
ବାମନ ରୂପରେ ଅକଟି ଛନ୍ତି ତାକୁ ।
ପରଲର ପିତାକୁ ତୋର ଦେଖିଛି ଯାଇ କରି
ଶୁଣିଣ ମେଘନାଦ ମନରେ ତାହା ଭାଳି ।
ହିରଣ୍ୟର ପୁତ୍ର ଯେ ଅଟେ ପ୍ରହଲାଦ
ନୀଳାବତୀ ଗର୍ଭରେ ସେ ହେଲା ସମ୍ଭବ ।
ଜନ୍ମିଲେ ସେ ଯାଇଁ କଶ୍ୟପ ଋଷି ଘରେ
କଶ୍ୟପଙ୍କ ଭାରିଯା ହେତୀ ନାମ ତାରେ ।
ବଧୂକୁ ଦେଖିବ ବୋଲି ଡକାଇ ନେଇ ଗଲା
ଦେଖିଣ ଦେବୀ ମନେ ସନ୍ତୋଷ ହୋଇଲା ।
ଏମନ୍ତ ସମୟରେ ପ୍ରବେଶ ହେଲେ ନାରୀ
ଦେଖିଲା ପୁତ୍ରକୁ ସୁନ୍ଦର ରୂପ ଘେରି ।
ସ୍ୱାମୀର ଆଗରେ ସେ କହିଲା ଯାଇଁ କରି
ଦେଖିକରି କଶ୍ୟପ ଦୟା ତାଙ୍କୁ କରି ।
ଅମର ହୁଅ ବୋଲି ବର ତାକୁ ଦେଲେ
ବିଷ୍ଣୁରେ ଭଗତି ହୁଅ ବୋଲିଣ ବୋଇଲେ ।
ଚେତା ପାଇ କୁମର ବିଷ୍ଣୁଙ୍କୁ ଲୟେ କଲା
ଜାଣିଣ ପିତା ତାକୁ ଅନେକ ଶାସ୍ତି ଦେଲା ।
ପୁତ୍ର ଛଳେ ଶ୍ରୀହରି ନୃସିଂହ ରୂପେ ଜାତ
ହୃଦୟ ବିଦାରି ହିରଣ୍ୟକୁ କଲେ ହତ ।
ଏରୂପେ ପ୍ରହଲାଦ ଅମର ହୋଇଲା
ଅସୁର ଶରୀର ଧରି ଶ୍ରୀହରି ସେବା କଲା ।
ବାଣାସୁର ଅମର ଯେ ହେଲା ଯେଉଁ ରୂପେ
ବଳି ରାଜା ନାରୀ ଗର୍ଭ ଜନମ ସମ୍ପ୍ରତେ ।
ଜନମ ହୋଇଣ ସେ ତକ୍ଷଣେ ଉଭା ହେଲା
ପିତାଙ୍କୁ ଋହିଁଣ ସେ ବଚନ ପ୍ରକାଶିଲା ।
ବୋଇଲା କାହାକୁ ମୁଁ କରିବି ସୁମରଣା
ପିତା ମାତା ବୋଇଲେ କପିଳାସ ଯାଅ କିନା ।

ଈଶ୍ୱର ଦେବତାଙ୍କୁ ମନାଅ ଯାଇ ବର
ତେବେ ରେ ପୁତ୍ର ଗୋଟି ହୋଇବୁ ଅମର ।
ଶୁଣିଣ ବାଣାସୁର ବେଗେ ଚଳିଗଲା
କପିଳାସ କନ୍ଦରେ ଯାଇଣ ଶୋଇଲା ।
କୋଳାହଳ ଶବଦ କଲା ରାବେ ପୁଣ
ଈଶ୍ୱର ପାର୍ବତୀ ମିଳିଲେ ସେହି ସ୍ଥାନ ।
ଦେଖିଲେ ନାଭିରେ ତାର ଲାଗିଛି ଫୁଲ ନାଡ଼
ଈଶ୍ୱର ବୋଇଲେ ତୁମ୍ଭେ ପାଳ ଯାକୁ ଗାଢ଼ ।
ଫୁଲ ନାଡ଼ି କାଟି ଇନ୍ତୁଡ଼ି ଇଛାର
ପାଳକ ପୁତ୍ର ଗୋଟି ହେଉ ଏ ତୁମ୍ଭର ।
ଶୁଣିକରି ପାର୍ବତୀ ଦାସୀଙ୍କି ଡକାଇଲେ
ଫୁଲ ନାଡି କାଟି ଇନ୍ତୁଡି ଇଛାରିଲେ ।
ପ୍ରସନ୍ନରେ ବରଦେଲେ ହୁଅ ତୁ ଅମର
ଏମନ୍ତେ ବାଣାସୁର ଜନମ ହେଲା ସାର ।
ଇନ୍ଦ୍ରଜିତ ବୋଲେ ମୁଁ ଜନ୍ମିଲି ମର୍ତ୍ତ୍ୟପୁରେ
କାହା ହାତେ ମୋର ମୃତ୍ୟୁ କହ ହେ ନିକରେ
ବିଧାତା ବୋଇଲେ ତୋର ଅନନ୍ତ ହସ୍ତେମୃତ୍ୟୁ
ସେ ଅନ୍ତେ ମାନବ ରୂପରେ ଜନ୍ମ ହେତୁ ।
ଚଉଦ ବରଷ ଫଳ ମୂଳ ଆହାର ନ କରିବ
ଚଉଦ ବରଷ ଯାଏ ଦେଶ ନ ମାଡ଼ିବ ।
ଚଉଦ ବରଷ ଯାଏ ଉନିଦ୍ର ହୋଇଥିବ
ଚଉଦ ବରଷ ସ୍ତିରୀକି ରମଣ ନ କରିବ ।
ଏତେ କଷ୍ଟ ଥିଲେରେ ତୋତେ ସେ ମାରିବ
ମାନବ ଅନନ୍ତ ବିନୁ କେହି ନ ମାରିବ ।
ଶୁଣିକରି ସନ୍ତୋଷ ହେଲା ମେଘନାଦ
ମନରେ ବିଚାରିଲା ପାଇଲି ମୃତ୍ୟୁ ଭେଦ ।
ଶ୍ରୀରାମ ବୋଇଲେ ସେଠାରୁ କିସ ହେଲା
ଅଗସ୍ତି ବୋଇଲେ ଶୁଣ ଦଶରଥ ବଳା ।
ଶୁଣିଣ ଇନ୍ଦ୍ରଜିତ ବ୍ରହ୍ମାଙ୍କୁ ବୋଇଲେ
କରଯୋଡ଼ି କରି ସେ ବ୍ରହ୍ମାଙ୍କୁ ଜଣାଇଲେ ।
ଭୋ ପିତାମହ ତୋତେ ମାଗୁଛି ମୁଁ ବର
ଯାଗ ମୁଁ କରିଣ ତୋଷିବି ବୈଶ୍ୱାନର ।
ପୂର୍ଣ୍ଣ ଆହୁତି ଦେଲେ କାଢ଼ିବି ମୁଁ ରଥ
ତହିଁରେ ବସି ଯୁଝିଲେ ଜିଣିବି ଜଗତ ।
ଅସ୍ତୁ ହେଉ ବୋଲିଣ ବିଧାତା ବୋଇଲେ
ବନ୍ଧନ ଫେଡ଼ି ଇନ୍ଦ୍ରଜିତ ଇନ୍ଦ୍ରଙ୍କୁ ଆଣିଦେଲେ
ବ୍ରହ୍ମାଙ୍କର ଗୋଚରେ ଆଣିଣ ସମର୍ପିଲେ
ସହସ୍ରେକ ଓଳଗି ବ୍ରହ୍ମାଙ୍କ ଚରଣେ ପୁଣିହେଲେ ।
ରାବଣ ବୋଇଲା ଯେ ବେଦବରଙ୍କୁ ଚାହିଁ
ଇନ୍ଦ୍ର ଦେବତାକୁ ଦେଉଅଛି ମୁହିଁ ।
ଭୋ ପିତାମହ ଏବେ ମୋହଠାରୁ ଶୁଣ
ସକଳ ଦେବଙ୍କୁ ତୁମ୍ଭେ ଛଡ଼ାଇ ନେଲ ଜାଣ ।
ନିଶ୍ଚେ ତାଙ୍କୁ ମାରିବାକୁ ମୁଁ ବିଚାରୁଥିଲି
ତୁମ୍ଭେ ପିତାମହ ତୁମ୍ଭ ଆଗରେ ଛାଡ଼ି ଦେଲି ।
ଯଦ୍ୟପି ଛାଡିଦେଲି କଥାଏ ମୋର କର
ମୋହର ପାଲଟାକୁ ଧୋଇବ ବୈଶ୍ୱାନର ।
ଚନ୍ଦ୍ର ମୋର ନିତ୍ୟେ ଯେ ରାନ୍ଧିବ ମଣୋହି
ନିତି ମୋର ଦ୍ୱାରେ ବେଦ ପଢିବୁ ଯେ ତୁହି ।
ସେହି ଇନ୍ଦ୍ର ବସିଥିବ ମୋର ଦ୍ୱାରପାଳ କତି
ଜଉତିଷ ପାଞ୍ଜି ଯେ କହିବେ ବୃହସ୍ପତି ।
ପବନ ମୋର ଶିରେ ଢାଳିବ ଚାମର
ନାରଦେ ବୀଣା ଧରି ବାଇବେ ଧୀର ଧୀର ।
ତୀମ୍ବୁର ଆଳାପ ଯେ କରିବେ ମୋର ଆଗେ
ଅଶ୍ୱିନି କୁମାର ଯେ ଥିବେ ମୋର ସଙ୍ଗେ ।
ଅପସରୀମାନେ କରିବେ ଆସି ନୃତ୍ୟ
ଦେବ, ଦକ୍ଷ, କିନ୍ନର, ଗନ୍ଧର୍ବ ସହିତ ।
ସମସ୍ତେ ସେବାକରି ଖଟିବେ ଅନୁସରି
ଏହି ମତେ ଦେବେ ଯେ ଖଟିବେ ମୋର ପୁରୀ ।
ଯେତେବେଳେ ଯହିଁକି ହେବ ମୋର ମନ
ତତକ୍ଷଣେ ସେକଥା ହେବ ଉତପନ୍ନ ।
ତ୍ରୈଲୋକ୍ୟରେ ଅଜୟ ହେବି ପୁଣ ମୁହିଁ
ମୋତେ ପ୍ରତିକଛ ନୋହିବେ ପୁଣ କେହି ।
ଏହି ବର ଦିଅ ମୋତେ ଯେବେ ଅଛି ଦୟା
ମୁହିଁ ତୋର ପୁତ୍ର ଯେ ନକର ମୋତେ ମାୟା ।
ଶୁଣିଣ ବିଧାତା ଯେ ବୋଲେ ଅସ୍ତୁ ହେଉ
ବ୍ରହ୍ମାଣ୍ଡ ଭିତରେ ଯେ ଜିଣନ୍ତା ତୋତେ ନୋହୁ ।
ଇନ୍ଦ୍ରଙ୍କ ସହିତେ ତୁ ଐରାବତ ଛାଡ଼
ଅପସରୀମାନେ ଯେ ପାଇଲେ ପୁଣି ଗାଢ଼ ।
ଗନ୍ଧର୍ବ, ବିଦ୍ୟାଧରୀ ଏମାନେ ଯାଆନ୍ତୁ
ଦେବଙ୍କୁ ଯେ ରକ୍ଷାକରି ସ୍ୱର୍ଗରେ ବିହରନ୍ତୁ ।
ସୁମରିଲା ବେଳରେ ଯେ ଆସିବେ ସକଳ
ଏତେ ବୋଲି ବିଧାତା କହିଲେ ଯାଇ ଧୀର ।

ଦେବ ଭଣ୍ଡାରୁ ଯେ ଆଣିଲୁ ବହୁଧନ
ତାହାତ ସୁଖରେ ବିଳସ ଦଶାନନ ।
ଶୁଣିଲା ଲଙ୍କେଶ୍ୱର ହରଷ ହୋଇଲା
ବ୍ରହ୍ମାଙ୍କର ବଚନରେ ସଭିଙ୍କି ଛାଡ଼ିଦେଲା ।
ଇନ୍ଦ୍ରକୁ ମୁକୁଳାଇ ଆଣିଲେ ବିଧାତା
ବିଭୀଷଣକୁ ଚାହିଁଣ କହିଲେ ବାରତା ।
ଶୁଣି ଦଶାନନର କନିଷ୍ଠ ସୋଦର
ଇନ୍ଦ୍ରଙ୍କର ଭଣ୍ଡାର କଲ ହେ ତୁମ୍ଭେ ଯୁର ।
ତହିଁରେ ପୁଣ ଅଛି ଅନନ୍ତ ପ୍ରତିମା
ତାକୁ ମୁଁ ସେବାକରି ହେଲି ବେଦବ୍ରହ୍ମା ।
ପ୍ରସନ୍ନ ହୋଇକରି ଯେ ଇନ୍ଦ୍ରକୁ ମୁଁ ଦେଲି
ଇନ୍ଦ୍ର ଦେବତା ବୋଇଲା ମୁଁ ସନ୍ତୋଷ ହୋଇଲି
ପଦ୍ମନାଭ ଦେବତାଙ୍କୁ ସେବି ସୁରପତି
ସୁଖେ ବିଳସେ ଅମର ସ୍ଥାନର ବିଭୂତି ।
ସେ ପ୍ରତିମା ତୁମ୍ଭେ ଯେ ଲଙ୍କାରେ ଠୁଳକଲ
ଯହୁଁ ସୁରଗଣଙ୍କୁ ଧରିଣ ଆଣିଲ ।
ତୁହି ସେ ପ୍ରତିମାକୁ ପୂଜାକର ନେଇ
ଅମର ହୋଇବୁ ଯେ ମୃତ୍ୟୁ ତୋତେ ନାହିଁ ।
କାଳେଣ ଏହି ଲଙ୍କାରେ ତୁହି ହେବୁ ରାଜା
ସକଳ ଅସୁରେ ତୋତେ କରିବେ ପାଦପୂଜା ।
ଅନନ୍ତ ଦେବତାଙ୍କୁ ତୁ ସେବା କରିଥିବୁ
ଏହି ଦେହ ଧରି ତୁରେ ବିଷ୍ଣୁଙ୍କୁ ଦେଖିବୁ ।
ଶ୍ରୀହରି ରାମରୂପେ ଅବତାର ହେବେ
ଏ ଦେବତା ତୋର ଘରେ ଥୋକେ ଦିନଥିବେ ।
ଲଙ୍କାକୁ ଆସିଣ ସେ କରିବେ ତୋର ପ୍ରୀତି
ତୁହି ସମର୍ପିବୁ ନେଇ ନାରାୟଣଙ୍କ କତି ।
ସେ ପ୍ରତିମା ନେଇରାମ ଜମ୍ବୁଦ୍ୱୀପରେ ଥୋଇବେ
ଶ୍ରୀ ପୁରୁଷୋତ୍ତମରେ ପୂଜା କରାଇବେ ।
କଳପ ବଟମୂଳେ ଶୁଆଇବେ ନେଇ
କାଳେ ସଂହାରିବେଟି ଗର୍ଭରେ ପୁରାଇ ।
ଏବେ ତୁ ବିଭୀଷଣରେ ପୂଜାକର ତାହା
ସେ ବିଷ୍ଣୁ ଦୟାରେ ତୁ ହେବୁ ଲଙ୍କନାହା ।
ରାବଣ ନ ଜାଣିବ ଦେବତୁ ଗୁପତେ
ଦେବାର୍ଚ୍ଚନ ନବରେତୁ ଥୋଇବୁ ଏକାନ୍ତେ ।
ଶୁଣିଣ ବିଭୀଷଣ ମସ୍ତକେ ହସ୍ତ ଦେଲା
ତୁମ୍ଭର ଆଜ୍ଞା ମୁହିଁ ପାଳିବି ବୋଇଲା ।

ବୁଦ୍ଧିବଳ ପ୍ରାକର୍ମରେ ଜାଣେ ବିଭୀଷଣ
ଗୁପତ କଥାକୁ ଗୁପତ କଲା ପୁଣ ।
ଏଥୁ ଅନନ୍ତରେ ପିତାମହ ଯାଇ
ଇନ୍ଦ୍ରଙ୍କୁ ଘେନିଣ ସେ ସ୍ୱର୍ଗପୁରେ ଯାଇ ।
ଅମରାବତୀ ପୁରେ ହେଲେ ପରବେଶ
ବ୍ରହ୍ମା ସହିତେଣ ବସିଲେ ତ୍ରିଦଶ ।
ଲାଜେଣ ବାସବ ଯେ ମଥା ପୋତି ବସି
ବୁଦ୍ଧିବଳ ସକଳ ଯେ ଆଉନାହିଁ କିଛି ।
ସୁରରାଜା ମନ ଯେ ପିତାମହ ଜାଣି
ଗୁପତେ ଶ୍ରବଣେ ଯେ କହିଲେ ଏ ବାଣୀ ।
ତୁ କିମ୍ପା ଅଭିମାନ ମନରେ ସୁରପତି
ଅହଲ୍ୟାକୁ ହରିଲୁ ସେ ଅଟେ ମହାସ୍ୱତୀ ।
ତେଣୁ ସେ ତୋର ଯଶ ଶିରୀ କ୍ଷୟେ ଗଲା
ଆଗେ ଧର୍ମ କରିଥିବାରୁ ଜୀବନ ରହିଲା ।
ଏବେ ତୁ ରିଷ୍ଟଯାଗ ଯେ କରସି ହୋ ରାୟେ
ଚରୁକରି ହବକି ଯେ ଭୁଞ୍ଜିବେ ଦେବତାଏ ।
ରାବଣ ଅଳପ ଦିନେ ଯେ ନାଶଯିବ
ମାନବ ରୂପେ ତାକୁ ଶ୍ରୀହରି ନାଶିବ ।
ଏବେ ଦେବତାଏ ଯେ ଯାହାରେ ଯାଅ
ଆପଣାର ନଗ୍ରରେ ନିଶ୍ଚିନ୍ତେଣ ଥାଅ ।
ଏତେକହି ବିଜେ କଲେ ପରମେଷ୍ଟି
ଇନ୍ଦ୍ର ହିଁ ଉଠିଲେ ଭାଗିଲା ସୁର ଗୋଷ୍ଠି ।
ଅଗସ୍ତି ବୋଇଲେ ରାମଚନ୍ଦ୍ର ଶୁଣ
ରାକ୍ଷସ ଇନ୍ଦ୍ର ପଦ ପାଇଲା ରାବଣ ।
ଶୁଣିଣ ରଘୁନାଥ ଆଶ୍ଚର୍ଯ୍ୟ ହୋଇଲେ
ସାଧୁରେ ଦଶଗ୍ରୀବ ବୋଲିଣ ବୋଇଲେ ।
ଏଥୁ ଅନନ୍ତରେ ଯେ ଅଗସ୍ତି ମୁନି କହି
ଶୁଣ ହେ ଶ୍ରୀରାମ ଦଶରଥଙ୍କ ତନୟୀ ।
ଚାରି ରାବଣ ଯେ ମାଇଲେ ପାଞ୍ଚଜଣ
ଅଯୋଧ୍ୟାରେ ଆସିଣ ମିଳିଲେ ତୁମ୍ଭେ ପୁଣ ।
ସକଳ ଭାଲୁ ମର୍କଟ ତୁମ୍ଭେ ମେଲାଣି ଦେଲ
ଲକ୍ଷେ ରାଜାଙ୍କୁ ସନମାନରେ ପଠାଇଲ ।
ବିଭୀଷଣ ସଙ୍ଗରେ ଅସୁର ବଳ ଗଲେ
ପାଞ୍ଚ ଲଙ୍କାରେ ପାଞ୍ଚଜଣଙ୍କୁ ରାଜା କଲେ ।
ବିଭୀଷଣ ଲଙ୍କାରେ ହେଲା ଅଧିକାରୀ
ସୁଖରେ ବେହରଣ ସୁବର୍ଣ୍ଣମୟେ ପୁରୀ ।

ଦେବଙ୍କର ଆୟ ଭଣ୍ଡାର ତୁଳେ ପୁଣ
ଇନ୍ଦ୍ରଙ୍କର ଦେବାର୍ଚ୍ଚନ ସିଂହାସନ ଜାଣ ।
ସକଳ ରହିଲା ଯେ ରାବଣ ଭଣ୍ଡାରେ
ବିଭୀଷଣ ଯାଚିଣ ନ ଦେଲେ ସୁର ପୁରେ ।
ସେଥି ସକାଶେ ଦେବେ କରନ୍ତି ଭାଳେଣି
ବିଚାରନ୍ତି ଶ୍ରୀରାମ ଅସୁର କୁଳମଣି ।
ରନ୍ ଆୟେ ମାନ ଯେ ଆମ୍ଭର ନ ଦେଲେ
କେଉଁ ଗୁଣରେ ଆମ୍ଭଙ୍କୁ ସୁଦୟା ପୁଣ କଲେ ।
ଏମନ୍ତ ଭାଳେଣୀ ଯେ କରନ୍ତି ସୁରଗଣ
ଶୁଣିକରି ରାମ ବିକଳ କଲେ ମନ ।
ବୋଇଲେ ସେ କଥା ଯେ ନାହିଁ ମୋର ମନେ
ସୁର ଲୋକଙ୍କର ଦୁଃଖ ଅଟଇ ବିଧାନେ ।
ଏହାଶୁଣି ରାମ ଯେ ମାରୁତି ସୁମରିଲେ
ଗନ୍ଧ ମାର୍ଦ୍ଦନ ପର୍ବତେ ମାରୁତି ଜାଣିଲେ ।
ଉଦ୍‌ବେଗ ହୋଇଣ ପବନର ସୁତ
ଅଯୋଧ୍ୟା କଟକରେ ମିଳିଲେ ତୁରିତ ।
ଶ୍ରୀରାମଙ୍କ ଚରଣେ କଲେ ନମସ୍କାର
ଦେଖି କରି ରାମ ସନ୍ତୋଷ ମନର ।
କକୟିଙ୍କି ଚାହିଁଣ ବୋଲନ୍ତି ଚାପଧାରୀ
ମାରୁତିକି ଘେନିଣ ତୁ ଚଳ ବେଗକରି ।
ପୁଷ୍ପକ ବିମାନରେ ବସି ଦୁଇଜଣ
ଲଙ୍କାଗଡ଼କୁ ବେଗେ କରରେ ଗମନ ।
ଆମ୍ଭ ସର୍ଜିଲା ରାଜାମାନଙ୍କୁ ଘେନି ଆସ
ସେ ଆସିଲେ ଦେବକାର୍ଯ୍ୟ ହୋଇବ ବିଶେଷ ।
ସଙ୍ଗତରେ ଆଣିଥିବେ ରାଣୀମାନଙ୍କୁ ସମସ୍ତ
ଶୀଘ୍ରେ ଫେରି ଆସିବଟି ଶୁଣ ହେ ଭରତ ।
ଶୁଣିକରି ରାମ ବୋଲନ୍ତି ବେଗେ ଯାଅ
କାଲିର ଦିନରେ ଏହିଠାରେ ହୁଅ ।
ଶୁଣି ଭ୍ରଥବୀର ଯେ ବେଗେ ଚଳିଗଲା
ମାତଳୀକି ଡାକିଣ ବେଗେ ଆଜ୍ଞା ଦେଲା ।
ରଥ ସଜକରିଣ ଆଣରେ ବହନ
ଶ୍ରୀରାମ ରାଜନ ମୋତେ ଆଜ୍ଞା ଦେଲେ ପୁଣ ।
ଲଙ୍କାକୁ ଯାଇଣ ମୁଁ ଆସିବି ତୁରିତରେ
ଶୁଣିକରି ମାତେଳୀ ଚଳିଗଲା ଖରେ ।
ପୁଷ୍ପକ ନାମେ ଯାନ ମଣ୍ଡିଣ ଆଣିଲା
ମାରୁତିକି ଘେନିଣ ଭରତ ବିଜେ କଲା ।

ଦକ୍ଷିଣ ଦିଗକୁ ରଥ ବାହିଲା ମାତେଳୀ
ସାତଘଡ଼ି ସମୟରେ ଲଙ୍କାଗଡ଼ରେ ମିଳି ।
ବାହାର ଅବକାଶ ଜଗତୀର ପରେ
ବିଭୀଷଣ ବିଜେ ଯେ କରିଛି ସେଠାରେ ।
ଗହ ଗହ ଶବଦ ଯେ ଲାଗିଛି ନିରନ୍ତର
ଗୁହାରୀ ହାରି ବୁଝେ ବିଭୀଷଣ ବୀର ।
ଏମନ୍ତ ସମୟରେ ପୁଷ୍ପକ ବିମାନ
ସିଂହଦ୍ୱାରେ ଯାଇଣ ମିଳେ ତତ୍‌କ୍ଷଣ ।
ଦେଖିଣ ଦ୍ୱାରପାଳ ବେଗେ ଚଳିଗଲା
ଭରଥ ବିଜେ ପଡ଼ି ହାରୀକି କହିଲା ।
ଶୁଣିକରି ପଡ଼ି ହାରୀ ବେଗେ ଚଳିଗଲେ
ବିଭୀଷଣ ଆଗରେ ଯାଇଁଣ ଉଭାହେଲେ ।
କରଯୋଡ଼ି ବୋଇଲା ଶୁଣ ହେ ଲଙ୍କେଶ୍ୱର
ସିଂହଦ୍ୱାରେ ବିଜେ କରିଛନ୍ତି ଭ୍ରଥବୀର ।
ଶୁଣିକରି ବିଭୀଷଣ ଜଗତୀପରୁ ଉଠି
ଭରତର ପାଶେ ବିଜେକଲେ ସେଟି ।
ଦେଖିକରି ବିଭୀଷଣ ଯୋଡ଼େ ବେନିକର
ବୋଇଲା ମୋର ପୁରେ ବିଜୟେ କିପାଁବାର ।
ଏତେବୋଲି ଶତେଥର ପ୍ରଳମ୍ଭିତ ହେଲା
ଆଜ ମୋହର ପୁର ପବିତ୍ର ହୋଇଲା ।
ଭରତ ବୋଇଲେ ତୁମ୍ଭେ ଶୁଣ ଲଙ୍କରାୟେ
ବ୍ରହ୍ମାଣ୍ଡର ନାଥ ଯେ ରାମଚନ୍ଦ୍ର ରାୟେ ।
କୁମ୍ଭରଷି ସୁତ ସଙ୍ଗେ ବିଜେ ଥିଁକି ପୁଣ
ମୋତେ ଦେଖି ଆଜ୍ଞା ଦେଲେ ଚଳ ତୁ ବହନ
ବିଭୀଷଣ ମନ୍ଦୋଦରୀ ମୋର ପାଶେ ଆଣ ।
ଆଜର ଦିନରେ ଯାଇ ଆସ ତୁ ବହନ ।
ଶୁଣିକରି ମାରୁତି ଘେନି ମୁଁ ଅଇଲି
ତୋହର ବନରେ ଆସି ପ୍ରବେଶ ହୋଇଲି ।
ଶୁଣିଣ ବିଭୀଷଣ ଆନନ୍ଦ ମନ ହେଲା
ମୋଠାରେ ସୁଦୟା କି ଦଶରଥ ବଳା ।
ରଥରୁ ଓହ୍ଲାଇ ମୋର ପୁରେ ବିଜେକର
ଏ ପୁର ଗୋଟି ସିନା ଅଟଇ ତୁମ୍ଭର ।
ଶୁଣିଣ ଭ୍ରଥବୀର ରଥରୁ ଓହ୍ଲାଇଲେ
ମାରୁତିକି ସଙ୍ଗେ ନେଇ ଭିତରେ ବିଜେ କଲେ ।
ବାହାର ଜଗତୀ ପରେ ଯାଇଁ ମିଳି
ଦେଖିଣ ଲଙ୍କାଲୋକ ସମସ୍ତେ କୁରୁଳି ।

ଭିତରେ ବାରତା ଯେ ପାଇଲେ ରାଣୀହଂସ
ଦାସୀମାନେ କହିଲେ ରାମଭାଇ ପ୍ରବେଶ ।
ଶୁଣିର ମନ୍ଦୋଦରୀ ସପତଣୀ ଘେନି
ବେଶ ଭୂଷଣ ହୋଇ ଉଭା ସର୍ବେ ପୁଣି ।
କନକ ଥାଳୀରେ ଦୁର୍ବାକ୍ଷତ ଭରି
ବନ୍ଦାପନା ନିମନ୍ତେ ଅଛନ୍ତି ଉହାଡ଼ି ।
ବିଭୀଷଣ ବୋଇଲେ ଶୁଣ ହେ କୈକେୟୀ
ରାଣୀ ହଂସ ଦେଖିବେ ଭିତରେ ଚଳ ତୁହି ।
ଶୁଣିଣ ଭ୍ରଥବୀର ବେଗେ ଚଳିଗଲେ
ଭିତର ଜଗତୀପରେ ଯାଇଁ ବିଜେ କଲେ ।
ହୀରା, ନୀଳା, ପ୍ରବାଳ ବଇଡୁର୍ଯ୍ୟ ସିଂହାସନ
ସେଥିରେ ବିଜେ କଲେ କୈକେୟୀ ଯେ ପୁଣ ।
ଏହି ସମୟରେ ମନ୍ଦୋଦରୀ ରାଣୀ
ସକଳ ରାଣୀ ହଂସ ସଙ୍ଗତରେ ପୁଣି ।
ମଙ୍ଗଳ ଆଳତୀ ଭ୍ରଥ ଆଗେ କଲେ
ଦୁର୍ବାକ୍ଷତ, ଅର୍ଘ୍ୟ ନେଇଣ ବନ୍ଦାଇଲେ ।
ନାନାଦି ଧୂପ ଗନ୍ଧ ଯେ ଆମୋଦ କରଇ
କରଯୋଡ଼ି ମନ୍ଦୋଦରୀ ଆଗରେ କହଇ ।
ଆମ୍ଭଠାରେ ସୁଦୟା କି ହୋଇଲା ତୁମ୍ଭର
ଦେଖିଣ ଅଇଲକି ଦାସ ଦାସୀ ତୋର ।
ଭରତ ବୋଇଲେ ତୁମ୍ଭେ ଅଟ ଭାଗ୍ୟବନ୍ତ
ତ୍ରୈଲୋକ୍ୟର କରତା ଅଟନ୍ତି ରଘୁନାଥ ।
ତୁମ୍ଭଠାରେ ସୁଖ ଯେ ଅନେକ ତାଙ୍କର
ତୁମ୍ଭଙ୍କୁ ଦେଖିବା ପାଇଁ ମୋତେ କଲେ ଚର ।
କହିଲେ ବିଭୀଷଣ ମନ୍ଦୋଦରୀଙ୍କି ଆଣ
ତାଙ୍କଠାରେ ମୋର ଯେ ଅଛଇଁ କାରଣ ।
ଶୁଣିକରି ମନ୍ଦୋଦରୀ ସନ୍ତୋଷ ହୋଇଲା
କନକ ଝରୀରେ ପୁଣ ନୀର ଅଣାଇଲା ।
ଚରଣ ଧୋଇଣ ଓଳଗି ହେଲା ବାଳୀ
ଶୀତଳ ମଣୋହି ଆଣି ଯୋଗାଇଲା ବାଳୀ ।
ଭଗତି ଭାବ ଦେଖି ଭୁଞ୍ଜିଲେ ଭ୍ରଥବୀର
ଆଞ୍ଚୋବନ ସାରନ୍ତେ ମାରୁତି କଲାକ ଆହାର
ମାତେଲୀ ଭୁଞ୍ଜିଣ ସେଠାରେ ସୁସ୍ଥ ହୋଇ
ବିଭୀଷଣ ଭୁଞ୍ଜିଣ ତକ୍ଷଣେ ସଜ ହୋଇ ।
ମନ୍ଦୋଦରୀ ଯାଇ ବେଶ ହୋଇଲା ବହନ
ଦେବ ଦଳନ ରଥରେ ବସିଲେ ଦୁଇଜଣ ।

ବିଭୀଷଣ କୋଳରେ ବସେ ମନ୍ଦୋଦରୀ
ବୋଇଲା ସାନୁଜ ସ୍ୱାମୀ ଆଗରେ ତୁମ୍ଭେ ଚଳି ।
ଭରତ ବୋଇଲେ ତୁମ୍ଭେ ଚଳ ଦୁଇଜଣ
ବିଲଙ୍କା ଗଡ଼କୁ ଯିବି ଯେ ମୁହିଁ ପୁଣ ।
ଶୁଣି ବିଭୀଷଣ ମନ୍ତ୍ରୀକି ଆଜ୍ଞା ଦେଲା
ଅଯୋଧ୍ୟାକୁ ମୋର ରଥ ବାହାରେ ବୋଇଲା
ଶୁଣିକରି ସାରଥୀ ରଥକୁ ଦେଲା ବାହି
ଚଉଦ ଘଡ଼ି ସମୟରେ ଅଯୋଧ୍ୟା ମିଳଇ ।
ଶ୍ରୀରାମ ସିଂହଦ୍ୱାରେ ହେଲା ପରବେଶ
ଦେଖିଣ ପଡ଼ିହାରୀ ଚଳିଲେ ତୁରିତ ।
କରଯୋଡ଼ି ଶ୍ରୀରାମ ଆଗରେ ଯାଇଁ କହି
ବିଭୀଷଣ ଆସିଣ ସିଂହଦ୍ୱାରେ ରହି ।
ଶୁଣିଣ ଶ୍ରୀରାମ ପାଛୋଟି ପୁଣ ଗଲେ
ଲକ୍ଷ୍ମଣ, ଶତ୍ରୁଘନ ଅଛନ୍ତି ସଙ୍ଗରେ ।
ଶ୍ରୀରାମଙ୍କୁ ଦେଖିଣ ବିଭୀଷଣ ପୁଣ
ରଥରୁ ଓହ୍ଲାଇ ମନ୍ଦୋଦରୀକି ଘେନିଣ ।
ଦୁଇଜଣ ଶ୍ରୀରାମ ଚରଣ ତଳେ ପଡ଼ି
ଉଠ ଉଠ ବୋଲିଣ ଶ୍ରୀରାମଚନ୍ଦ୍ର ଟୋଳି ।
ତୋତେ ଦେଖିବାକୁ ମୁଁ ଭେଦିଲି ସାନୁଜ
ଶତେ ବରଷ ହେଲା ନ ଦେଖିଲି ଲଙ୍କରାଜ ।
ଶତ୍ରୁଘନକୁ ବୋଇଲେ କରରେ ମୋର ବୋଲ
ମନ୍ଦୋଦରୀକି ଜାନକୀ ସଙ୍ଗେ କର ମେଳ ।
ଶୁଣିଣ ଶତ୍ରୁଘନ ମନ୍ଦୋଦରୀକି ନେଲା
ଅନ୍ତଃପୁର ଭିତରେ ଜାନକୀ ପାଶେ ଦେଲା ।
ମନ୍ଦୋଦରୀ ଜାନକୀଙ୍କି ଦେଖିଲା ନେତ୍ରରେ
ପାଯେ ପଡ଼ି ଶୋଇଲା ସେ ଜାନକୀ ପାଦତଳେ ।
ଆଖି ଥନ ଥନ କରି କରଇ ରୋଦନ
ଜାନକୀ ଧରିଣ ତାକୁ କରନ୍ତି ସମ୍ମାନ ।
ବୋଇଲେ ସୁନ୍ଦରୀ ଗୋ କିପାଇଁ ତୁ ରୋଦୁ
କିସ କଥା ଅପୂର୍ବ ତୋତେ ହେଲା ସବୁ ।
ମନ୍ଦୋଦରୀ ବୋଲେ ଶୁଣ ଗୋ ଠାକୁରାଣୀ
ମୋ ଲଙ୍କାଗଡ଼େ କଷ୍ଟ ପାଇଲ କେତେ ପୁଣି
ସେହି କଥା ମୋର ପଡ଼ିବାରୁ ମନେ
ହୃଦୟ ଦହନ ଯେ ହେଉଛି ସବୁଦିନେ ।
ଜାନକୀ ବୋଇଲେ ତୁମ୍ଭେ ମାଜଣା ସ୍ନାନକର
ପଛକଥା ମାନଗୋ ପୋଛ ତୋ ମନର ।

ଶୁଣିକରି ମନ୍ଦୋଦରୀ ହରଷ ହୋଇଲା
ମାଜଣା ସ୍ନାନ ସାରି ମଣୋହିଁ ତହିଁ କଲା ।
ବିଡ଼ିଆ ଭୁଞ୍ଜିଣ ସେ ହରଷ କଲାମନ
ମାନ୍ୟ ଧର୍ମ କରିଣ ସେ ଚଳେ ତତ୍କ୍ଷଣ ।
ତାହାର ବସା ନବରେ ପରବେଶ ହେଲା
ପୂର୍ବରେ ବିଭୀଷଣ ଯେଉଁ ସ୍ଥାନରେ ଥିଲା ।
ଲକ୍ଷ୍ମଣଙ୍କୁ ଚାହିଁଣ ଯେ ବୋଲେ ଚାପଧାରୀ
ବିଭୀଷଣଙ୍କୁ ନେଇଣ ରଖ ନିଜ ପୁରୀ ।
ଶୁଣିଣ ସଉମିତ୍ରୀ ବେଗେ ଚଳିଗଲେ
ବିଭୀଷଣ ନିଜ ମନ୍ଦିରେ ମିଳିଲେ ।
ମାଜଣା ସ୍ନାହାନ ଯେ ସାରେ ବିଭୀଷଣ
ମନ୍ଦୋଦରୀ ଷଡ଼ରସେ ପରଶେ ଆଣି ପୁଣ ।
ଭୋଜନ ସାରିଣ ଯେ ଆଞ୍ଚୋବନ କଲା
ବିଡ଼ିଆ ଲାଗି ହୋଇ ପଲଙ୍କେ ନିଦ୍ରାଗଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ବିଭୀଷଣ ଆସିବାରୁ ଭ୍ରଥ ଗଲେ ଚଳି ।
ବିଲଙ୍କା ଗଡ଼ରେ ଯାଇଁ ହେଲେ ପରବେଶ
ସିଂହଦ୍ୱାରେ ରଥ ରଖେ କୈକେୟୀର ସୁତ ।
ଦ୍ୱାରପାଳ ଯାଇଣ ମୁନିର ଆଗେ କହି
ତୁମ୍ଭର ସିଂହଦ୍ୱାରେ ରଥକେ ରୁହାଇ ।
ରଥୀ ଦୁଇଜଣ ସାରଥୀ ଏକ ଜଣ
ତିନିଜଣ ବ୍ୟତ୍ରକେ ଆନ ନାହିଁ ଜାଣ ।
ଶୁଣିଣ ସ୍ୱୟେ ମନୁ ଭିତର ପୁରେ ଗଲା
ତ୍ରିଜଟା ଆସିଣ ଯେ ନମସ୍କାର କଲା ।
ମୁନି ବୋଇଲେ ଗୋ ଶୁଣ ତୁ ସୁନ୍ଦରୀ
ଶ୍ରୀରାମର ଭାଇ ଆମ୍ଭ ପୁରକୁ ବିଜେ କରି ।
ସିଂହଦ୍ୱାରେ ଅଛନ୍ତି ସେ ନ ଆସିଲେ କେବେ
ଅର୍ଘ୍ୟ ସ୍ଥଳୀ ସଜକର ଯିବା ଗୋ ଚାଲ ଏବେ ।
ଶୁଣିକରି ତ୍ରିଜଟା ଆନନ୍ଦ ମନ ହେଲା
ଦାସୀଙ୍କର ହସ୍ତରେ ଅର୍ଘ୍ୟସ୍ଥାଳୀ ଘେନାଇଲା
ସିଂହ ଦ୍ୱାରେ ପ୍ରବେଶ ହେଲେ ବେନିଜନ
ଭ୍ରଥଙ୍କୁ ଦେଖି ଯୋଡ଼ିଲେ ବେନି କର ପୁଣ ।
ପାୟେ ପଡ଼ି ଶୋଇଣ ଚରଣ ତଳେ ଲୋଟି
ଦେଖି କରି ଭ୍ରଥ ରଥରୁ ବେଗେ ଉଠି ।
ଦୁଇଜଣଙ୍କର କର ଧରି ତୋଳେ ବେଗେ
ବୋଇଲା ଦୋହିତା ଗୋ କିମ୍ପାଇ ଉଦୁବେଗେ
ଶ୍ରୀରାମ ନାରାୟଣଙ୍କର ତୋଠାରେ ବଡ଼ ଦୟା
ଜାନକୀ ଠାକୁରାଣୀର ତୋଠାରେ ନାହିଁ ମାୟା ।
ଦେଖିବେ ବୋଲି ତୋତେ ପେଶିଲେ ଚାପଧାରୀ
ତୁମ୍ଭେ ଦୁଇଜଣ ଯାଅ ଅଯୋଧ୍ୟା ନାମେ ପୁରୀ ।
ଶୁଣି କରି ତ୍ରିଜଟା ମନରେ ସନ୍ତୋଷ
ଭ୍ରଥ ଶିରେ ନେଇ ବନ୍ଦାଏ ଅର୍ଘ୍ୟ ପୁଷ୍ପ ।
ଦୁର୍ବାକ୍ଷତ ଦେଇ ସେ ଆଳତୀ ଟେକିଲା
ହସ୍ତ ଧରି ଭ୍ରଥଙ୍କୁ ଭିତର ପୁରେ ନେଲା ।
ଭିତର ଜଗତୀରେ ସିଂହାସନ ପରେ
ବସାଇଲା ନେଇ ସେ ଅନେକ ସମ୍ଭର୍ବରେ ।
ମାଜଣା ସ୍ନାହାନ କରାଏ ତତ୍କ୍ଷଣ
ଶୀତଳ ମଣୋହି ଆଣି ଦେଲାକ ବହନ ।
ମାତେଲୀ ମାରୁତି ଘେନି ଭୁଞ୍ଜଇ କୈକେୟୀ
ଭୋଜନ ସାରିଣ ସେ ଆଞ୍ଚୋବନ କରଇ ।
ବିଡ଼ିଆ ଲାଗି ହୋଇ ସନ୍ତୋଷ ମନ ହେଲେ
ସେଠାରେ ରଜନୀ ସେଦିନ ବଞ୍ଚିଲେ ।
ପ୍ରଭାତୁ ଉଠିଣ ଭରତ ରଥେ ବସି
ମାରୁତିକି ସଙ୍ଗେ ଘେନି ମାତଳୀ ସାରଥୀ ।
ତ୍ରିଜଟାଙ୍କୁ ବୋଇଲେ ଚଳ ବେନିଜନ
ଅଯୋଧ୍ୟାରେ ଶ୍ରୀରାମଙ୍କୁ କରଯା ଦର୍ଶନ ।
ଶୁଣିଣ ତ୍ରିଜଟା ସ୍ୱୟଂ ମନୁ ପୁଣ
ସୁବର୍ଣ୍ଣର ରଥ ସଜ କଲେକ ବହନ ।
ସଜ ହୋଇ ବେନି ଜନ ରଥରେ ବସିଲେ
ମନ୍ତ୍ରୀକି କହିଣ ସେ ରଥ ଚାଳି ଦେଲେ ।
ପାଞ୍ଚଘଡ଼ି ସମୟରେ ଅଯୋଧ୍ୟା ପୁରେ ମିଳି
ରଥରୁ ଓହ୍ଲାଇ ସେ ଭିତରେ ଗଲେ ଚଳି ।
ଶ୍ରୀରାମଙ୍କୁ ଦେଖିଣ ଶୋଇଲେ ପାୟେ ପଡ଼ି
ଉଠିଣ କହନ୍ତି ସେ ବେନି କରଯୋଡ଼ି ।
ବୋଇଲେ ପିତା ମୋତେ ସୁଦୟା ଏବେ କଲ
ଜନନୀଙ୍କି ବେଗେ ଦର୍ଶନ ତୋର କର ।
କ୍ଷୁଧା ତୃଷା କରୁଥିବ ତୋର ହୃଦୟକୁ
ଜନନୀ ଠାରୁ ଦୁଧ ଖାଅ ଲୋ ମନକୁ ।
ତୋହର ନିଜ ମାତା ପିତା ଛନ୍ତି ବସି
ତାଙ୍କୁ ଯାଇ ଦେଖ ଗୋ ତ୍ରିଜଟା ଶୁଭ୍ରକେଶୀ ।
ଶୁଣିଣ ତ୍ରିଜଟା ବେଗେ ଚଳିଗଲା
ଭିତର ପୁରେ ସେ ପ୍ରବେଶ ବେଗେ ହେଲା ।

ଦେଖିଲା ଜାନକୀ ଯେ ସିଂହାସନରେ ବିଜେ
ଦାସୀଗଣେ ବେଢ଼ିଣ ବସିଛନ୍ତି ସଜେ ।
ମଧ୍ୟରେ ଚନ୍ଦ୍ରମା ପ୍ରାୟେକ ଅଛି ଉଇଁ
ଦେଖି କରି ତ୍ରିଜଟା ସନ୍ତୋଷ ମନ ହୋଇ ।
ଖଣ୍ଡେ ଦୂରୁ ଦେଖିଣ ପାୟେ ପଡ଼ି ଶୋଇ
ଜାନକୀ ବିଚାରିଲେ ତ୍ରିଜଟା ଅଟେ ଏହି ।
ଉଠିଣ ବଇଦେହୀ ଟେଳିଣ କୋଳ କଲେ
ମୋତେ ସଙ୍ଖୋଳି ଅଇଲ ତ୍ରିଜଟାକୁ ବୋଇଲେ ।
ଜାନକୀର ଶାଶୁମାନେ ବିଜେ କଲେ ଆସି
ବୋଇଲେ ଏହୁ କିଏ କହ ଗୋ ବିଶେଷି ।
ଜାନକୀ ବୋଇଲେ ମୋର ପୋଷିଆଁ ଝିଅ ଏହି
ତୁମ୍ଭର ନାତୁଣୀ ଏ ମୁନିଙ୍କି ବିଭା ହୋଇ ।
କଉଶଲ୍ୟା ବୋଇଲେ ଏ ଆସିଛି କିସ ପାଇଁ
ଋଷିୟାକୁ ଛାଡ଼ିଲେ କି ହାତ ପତ୍ର ଦେଇ ।
ଋଷିରେ ସୁହାଗୀ କି ନୋହିଲେ ଏହୁ ନାରୀ
ବାହାର କରି କିମ୍ପା ଦେଲେ ତପଚାରୀ ।
ତ୍ରିଜଟା ବୋଇଲେ ମୁଁ ଆସିଛି ଯହିଁ ପାଇଁ
ପିତାଙ୍କ ମାତାରୁ ମୁଁ ଗୋଟିଏ ନେବାପାଇଁ ।
ଆମ୍ଭ ଦୁଇପ୍ରାଣୀଙ୍କି ସେ କରାଇବେ ହାସ୍ୟରସ
ତେବେ ମୋହର ମନ ହେବ ଗୋ ସନ୍ତୋଷ ।
କଉଶଲ୍ୟା ବୋଇଲେ ସଙ୍ଗରେ ନେବ ଯେବେ
ଗୁରସ୍ତଙ୍କୁ ସଙ୍ଗରେ ଗୋ ଆଣିଥାନ୍ତ ତେବେ ।
ତ୍ରିଜଟା ବୋଇଲେ ମୋ ସଙ୍ଗରେ ତୁମ୍ଭ ବର
କଉଶଲ୍ୟା ବୋଇଲେ ଡାକି ଆଣ ମୋ ଆଗର ।
ଶୁଣିକରି ତ୍ରିଜଟା ବେଗେ ଚଳିଗଲା
ଶ୍ରୀରାମଙ୍କ ଆଗରେ ଯାଇଣ ମିଳିଲା ।
ସ୍ୱୟଂ ମନୁକୁ ବୋଇଲେ ବେଗେ ତୁମ୍ଭେ ଆସ
ମୋ ପିତାଙ୍କ ମାତା ତୁମ୍ଭଙ୍କୁ କରନ୍ତି ତଲାସ ।
ଶୁଣିଣ ସ୍ୱୟଂ ମନୁ ବେଗେ ଚଳିଗଲା
କଉଶଲ୍ୟା ଚରଣେ ଯାଇଣ ଓଳଗିଲା ।
କଉଶଲ୍ୟା ବୋଇଲେ ତ୍ରିଜୀବୀ ହୋଇଥାଅ
ଭାରିଯାକୁ ଘେନିଣ ଦିନକାଳ ନିଅ ।
ସ୍ୱୟଂ ମନୁ ବୋଇଲେ କର ଯେବେ ଦୟା
ସେହି କଥା ପ୍ରାପତ ହେଉ ମୋତେ ଦୟା ।
କଉଶଲ୍ୟା ବୋଇଲେ ଶୁଣ ମୋ ବଚନ
ତୁମ୍ଭ ଦୁଇପ୍ରାଣୀଙ୍କି ମୁଁ ପରଶିବି ଅନ୍ନ ।

ଶୁଣିଣ ଦୁଇଜଣ ବସିଲେ ହରଷେଣ
କଉଶଲ୍ୟା ପରଶେ ଛଡ଼ ରସରେ ବ୍ୟଞ୍ଜନ ।
ଭୋଜନ ସାରିଣ ଯେ ଆଞ୍ଚୋବନ କଲେ
ବିଡ଼ିଆ ଭୁଞ୍ଜି ଏକ ଆସନେ ବସିଲେ ।
କଉଶଲ୍ୟା ବୋଇଲେ ଚଳ ତୁମ୍ଭେ ଘର
ପିତା ମାତାକୁ ଯାଇ ଦର୍ଶନ ତୁମ୍ଭେ କର ।
ଶୁଣିକରି ତ୍ରିଜଟା ସ୍ୱାମୀଙ୍କ ସଙ୍ଗେ ଗଲେ
ନିଜ ପିତା ନଗ୍ରରେ ଯାଇଁଣ ମିଳିଲେ ।
ପିତା ମାତାଙ୍କୁ ଦେଖି ସେ ନମସ୍କାର କଲେ
ପାୟେ ପଡ଼ି ଶୋଇଣ ଶିରରେ କରଦେଲେ ।
ଜନନୀର ଚରଣେ ନମିଲା ଯାଇ ପୁଣ
ନିଜ ନବରେ ଯାଇ ରହିଲେ ବେନିଜନ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ବିଲଙ୍କା ଗଡ଼ରୁ ଭରଥ ଚଳିଯାନ୍ତି ।
ସୁଲଙ୍କା ଗଡ଼ରେ ଯାଇଁ ହେଲେ ପରବେଶ
ଦୋବର୍ଦ୍ଧନ ହେଉଅଛି ବୀରବାହୁ ଶିଷ୍ୟ ।
ସିଂହଦୁଆରେ ରଥ ରଖିଲେ ସେ ପୁଣ
ଭିତରକୁ ମାରୁତି ଚଳିଲା ବହନ ।
ରକ୍ଷା ଲୋକମାନେ ପଚାରେ ପୁଣ ତହିଁ
କଥା ନ କହି ଚଳେ ପବନ ତନୟୀ ।
ପଛରେ ମାଲ ଯୋଦ୍ଧା ଗୋଡ଼ାଇଲେ ତାର
ଭିତରେ ପଶିଲା ଯାଇଁ ପବନ କୁମର ।
ଦେଖିକରି ସୁବାହୁ ଦେବାର୍ଚ୍ଚନରୁ ଉଠି
ପାହାଡ଼ ପକାଇଣ ଚରଣ ତଳେ ଲୋଟି ।
ମୋର ପୁରେ ବିଜୟେ ଅପୂର୍ବ ଆଜ ହେଲା
ମୋରଠାରେ ସୁଦୟା କି ବାସୁଦେବର ହେଲ ।
ଶୁଣିକରି ମାରୁତି ବୋଲେ ପୁତ୍ର ଶୁଣ
ତୋର ଦ୍ୱାରେ ବିଜେ କରିଛନ୍ତି ଭ୍ରଥ ପୁଣ ।
ତ୍ରୈଲୋକ୍ୟ ଠାକୁରେ ବିଜେ ଏବେ କଲେ
ଦର୍ଶନ କଲେ ପାପଯିବ ତୋ ବୋଇଲେ ।
ଶୁଣ ସୁବାହୁ ବିଦ୍ୟାଧରୀ ଦୁହେଁ ପୁଣ
ଚଉଦୋଳେ ବସିଣ ବଜାଏ ବାଜାମାନ ।
ବେଣୁ, ବୀଣା, ତାଳ, କଂସାଳ, ମର୍ଦ୍ଦଳ
ଘଣ୍ଟିରାବ ଶବଦେ ପୂରିଲା ସକଳ ।
ଆଗରେ ଅପସରୀ ନାଚନ୍ତି ଗୀତ ଗାଇ
ଶଙ୍ଖ, ମହୁରୀ, ତେଲଙ୍ଗୀ ଆଗରେ ବଜାଇ ।

ସୁବର୍ଣ୍ଣ ଝରୀରେ ନୀର ଘେନିଣ ସୁବାହୁ
ରାମତାଳି ହରିବୋଲ ଶବଦେ ଗୋଳ ହେଉ ।
ଝଞ୍ଜାଳ, କଂସାଳ ବାଜେ ଆଗେ ପୁଣ
ଚାମର ଛତି ଟେକାଇ ଆସେ ବୀର ଜାଣ ।
ସିଂହଦ୍ୱାର ନିକଟରେ ହେଲା ପରବେଶ
ଦେଖିଣ ଭ୍ରଥବୀର ମନରେ ହରଷ ।
ମାତଳୀ ବୋଲେ ତୁ ଶୁଣରେ ଦେବଦୂତ
ବଡ଼ ସମ୍ଭ୍ରମରେ ଆସେ ବୀରବାହୁର ସୁତ ।
ମାତଳୀ ବୋଲେ ସେ ଯେ ବିଷ୍ଣୁର ଭକତ
ତୋତେ ନେବାକୁ ତାର ମନରେ ଉସତ ।
ପୁଷ୍ପକ ଦୋଳୀର ବସାଇ ତୋତେ ନେବେ
ନିଜ ମନ୍ଦିରରେ ଧୂପ ଦୀପ ଦେବେ ।
ସିଂହଦ୍ୱାରେ ଯାଇଣ ମିଳିଲା ସୁବାହୁ
ରାମର ରୂପ ଗୋଟା ନେତ୍ରରେ ଦେଖେ ସେହୁ ।
ପାହାଡ଼ା ପାଡ଼ିଣ ସେ ଶୋଏ ଲୋଟି ଗାଳି
ଶିରେ କର ଦେଇଣ ପୁଣ ପୁଣ ପଡ଼ି ।
ଦେଖିଣ ଶ୍ରୀରାମ ସାନୁଜ ଓହ୍ଲାଇଲେ
ସୁବାହୁକୁ ଦେଖିଣ ଗଉରବ କଲେ ।
ଜଳରେ ସୁବାହୁ ଚରଣ ପଖାଳି
ଚରଣ ଉଦକ ମସ୍ତକରେ ଭରି ।
ବୋଇଲେ ପୁଷ୍ପକ ଦୋଳିରେ ବିଜେ କର
ଶୁଣି କରି ଭ୍ରଥବୀର ବିଜୟେ ସତ୍ୱର ।
ସମ୍ଭ୍ରମରେ ତାକୁ ନବରେ ଘେନିଗଲା
ହୀରା, ନୀଳା ସିଂହାସନେ ନେଇଣ ବସାଇଲା ।
ଧୂପ ଦୀପ ଦେଇଣ କଲା ସନମାନ
ମଙ୍ଗଳ ଆଳତୀ କଲେକ ବିଧାନ ।
ସଉରୋଭ ପାଟରାଣୀ ବେଶ ହୋଇ ପୁଣ
ଅର୍ଘ୍ୟ ବନ୍ଦାପନା କଲେକ ନେଇ ପୁଣ ।
ଲକ୍ଷେକ ସପତଣୀ ଧାଇ ମୁଦୁସୁଲୀ
ଏମାନଙ୍କୁ ଘେନିଣ ଛାମୁରେ ଆସି ମିଳି ।
ଅର୍ଘ୍ୟ ବନ୍ଦାପନା ଭ୍ରଥ ଶିରେ କଲା
ପାୟେ ପଡ଼ି ଶୋଇଣ ଶିରେ କର ଦେଲା ।
ଲକ୍ଷେ ଖଦୀ ଚାମର ବିଞ୍ଚଣୀ ଆଲଟ
ଖଦୀ ଚାମର ସଙ୍ଗରେ ବିଞ୍ଚନ୍ତି ମାଣିକ୍ୟ ।
ଭରଥ ବୋଇଲେ ତୁରେ ସୁବାହୁ ଏବେଶୁଣ
ରାମଚନ୍ଦ୍ରଙ୍କ ଆଜ୍ଞାରେ ମୁଁ ଆସିଅଛି ପୁଣ ।
ପାଟରାଣୀ ଘେନିଣ ଚଳତୁ ବେଗ ହୋଇ
ମୋତେ ପେଷିଛନ୍ତି ରାମ ତୋତେ ଦେଖିବାପାଇଁ ।
ଶୁଣିଣ ସୁବାହୁ ଚହଳ ବେଗେ ଭାଙ୍ଗି
ସୁବର୍ଣ୍ଣ ରଥ ସାଜି ଅଣାଇଲା ବେଗି ।
ଭରଥକୁ ମାଜଣା ସ୍ନାନ କରାଇଲା
ଶୀତଳ ମଣୋହି ଆଣି ସୁବାହୁ ପରଶିଲା ।
ମାରୁତି ମାତେଳିକି ସଙ୍ଗତରେ ଘେନି
ମଣୋହିରେ ବିଜେ ରାମ ଭାଇ ପୁଣି ।
ଆଞ୍ଚୋବନ ସାରିଣ ବିଡ଼ିଆ ଲାଗି ହେଲେ
ଯାଅ ବୋଲି ସୁବାହୁକୁ ବଚନ ବୋଇଲେ ।
ପୁଷ୍ପକ ଯାନ ପରେ ବିଜେ କଲେ ଯାଇଁ
ଗଗନ ମାର୍ଗରେ ରଥ ମାତଳି ବାହି ।
ଅଲଙ୍କା ଗଡ଼ରେ ହେଲେ ପରବେଶ
ଏଥୁ ଅନନ୍ତରେ ଶୁଣ ଦିବ୍ୟ ରସ ।
ବୀରବାହୁ ପାଟ ରାଣୀ ଘେନି ଚଳିଗଲା
ଅଯୋଧ୍ୟା ନଗ୍ରରେ ଯାଇଁଣ ମିଳିଲା ।
ରଥରୁ ଓହ୍ଲାଇ ସଉରୋଭକୁ ଘେନି
ଭିତରେ ପ୍ରବେଶ ହୋଇଲେ ଦୁଇପ୍ରାଣୀ ।
ଜାନକୀ ସଙ୍ଗତରେ ବିଜୟେ ଶ୍ରୀରାମ
ସେଠାରେ ପ୍ରବେଶ ହେଲେ ବେନି ଜନ ।
ଦେଖି କରି ଚରଣେ ସେ ନମେ ପୁନଃ ପୁନଃ
ଶ୍ରୀରାମ ବିଜୟେ ଜଗତୀ ପରେ ପୁଣ ।
ଛାମୁରେ ମିଳିଣ ଗଡ଼ଘାଳି ଶୋଇ
ଉଠ ଉଠ ବୋଲିଣ ଶ୍ରୀରାମ ଆଜ୍ଞା ଦେଇ ।
ବୋଇଲେ ରହିବା ଘରେ ଯାଇଣ ବିଜେ କର
ପିତା ମାତାଙ୍କୁ ତୁ ଦର୍ଶନ ଯାଇଁ କର ।
ଶୁଣିଣ ମହାନାଦ ବେଗେ ଚଳିଗଲା
ପୂର୍ବ ବସାଘରରେ ଯାଇଁଣ ରହିଲା ।
ଜନନୀ ଆଗରେ ମିଳେ ପୁଣ ଯାଇଁ
ଓଳଗି ହୋଇଣ ପାୟେ ପଡ଼ି ଶୋଇ ।
ପୁତ୍ର ବଧୂ ଦେଖି ମନ୍ଦୋଦରୀ ପୁଣ
କୋଳ କରି ଆଘ୍ରାଣ କଲେ ସେ ନେଇଣ ।
ବୋଲେ ପିତା ତୋର ଯେ ଅଟଇ ରାବଣ
ନାରାୟଣ ସଙ୍ଗରେ ଅପ୍ରୀତି ହେଲା ପୁଣ ।
ସେ ଦୋଷରୁ ତୋର ପିତା ଯମଆଳେ ଗଲା
ଖୁଡୁତା ବିଭୀଷଣ କୁଳଇଁ ରକ୍ଷା କଲା ।

ଶୁଣିଣ ମହାନାଦ ବେଗେ ଚଳିଯାଇ
ବିଭୀଷଣ ଚରଣେ ଓଳଗି ସେ ହୋଇ ।
ଏମନ୍ତ ସମୟେ ମିଳେ ଯେ ସୁକର୍ଣ୍ଣ
ଶଙ୍ଖନାଦ କରିଣ ବଜାଏ ବାଜା ପୁଣ ।
ରଥରୁ ଓହ୍ଲାଇ ଘରଣୀ ହସ୍ତ ଧରି
ଶ୍ରୀରାମ ଅନ୍ତଃପୁରେ ବିଜେ ଯାଇଁ କରି ।
ମଣୋହି ସାରି ଆଞ୍ଚୋବନ କଲେ ଚାପଧାରୀ
ପାଣି ତୋଳି ଦିଅନ୍ତି ଯେ ଜନକ କୁମାରୀ ।
ଏମନ୍ତ ସମୟରେ ଯାଇ ବେନି ଜନ
ଚରଣରେ ଓଳଗି ହେଲେ ପୁଣ ପୁଣ ।
ଜାନକୀ ବୋଲେ ଏକଥା ବିଡ଼ମ୍ବଣ
ଅନ୍ତଃପୁର ମଧ୍ୟକୁ ଆସନ୍ତି ସର୍ବଜନ ।
ଶ୍ରୀରାମ ବୋଇଲେ ଆମ୍ଭେ ଅଟୁ ନାରାୟଣ
ଦର୍ଶନ କରିବାକୁ ଆସନ୍ତି ସର୍ବଜନ ।
ଏମାନେ ମୋହର ଯେ ଅଟନ୍ତି ଭକତ
ଏମାନେ ଆସିଲେ ମୋତେ ପୁରୁଷାର୍ଥ ।
ଜାନକୀ ବୋଲନ୍ତି ଏ କାହାର ଅଟେ ବଳା
ଶ୍ରୀରାମ ବୋଇଲେ ଏ କୁମ୍ଭକର୍ଣ୍ଣର ବଳା ।
ଯେଉଁ କୁମ୍ଭକର୍ଣ୍ଣ ଗୋ ପର୍ବତ ପ୍ରାୟେ ଦିଶି
ସେହି ଦନୁଜର ଅଟେ ଏହୁ ବଂଶି ।
ଜାନକୀ ବୋଇଲେ ତୁ ଶୁଣରେ ସୁକର୍ଣ୍ଣ
ବସା ଘରରେ ତୁ ରହ ଯାଇ ପୁଣ ।
ଶୁଣିକରି ସୁକର୍ଣ୍ଣ ବେଗେ ଚଳିଗଲା
ପୂର୍ବର ବସାଘରେ ଯାଇଣ ରହିଲା ।
ପାର୍ବତୀ ବୋଇଲେ ଶୁଣ ହେ ତ୍ରିପୁରାରୀ
ସେଠାରୁ ଭରତ କେଉଁଆଡ଼େ ଫେରି ।
ଈଶ୍ୱର ବୋଇଲେ ଶୁଣ ମନ ଦେଇ
ମାରୁତିକି ଘେନିଣ ଭରଥ ଚଳଇ ।
ଉତ୍ତର ମହୋଦଧି କୂଳେ ସେ ମିଳିଲା
ଜମ୍ବୁଦ୍ୱୀପରେ ଦକ୍ଷିଣ ଦିଗ ସେହୁ ପରା ।
ଯେଉଁଠାରେ ରାମନାଥ ଧାମ ଦେବ କଲେ
ସେ ଠାବରେ ଭରଥ ମାରୁତି ଘେନି ମିଳେ ।
ଅଙ୍ଗଦ ସିଂହଦ୍ୱାରରେ ହେଲେ ପରବେଶ
ବାରତା ପାଇ ଅଙ୍ଗଦ ଅଇଲେ ତୁରିତ ।
ବୋଇଲେ ପିତା ତୋର କୁଟିଳ ଅଟେ ବୁଦ୍ଧି
ପୁତ୍ରର ଦ୍ୱାରେ କିମ୍ପା ନ ଯାଉ ଅବଧି ।
ଜନ୍ମ କଲା ପୁତ୍ରକୁରେ ମୁରୁଛୁ କିସ ପାଇଁ
ମୋର ମାତା ସିନା ଛଡ଼ ଗୁରସ୍ତ ଅଛି ପାଇ ।
ମୋର ସିନା ଛଡ଼ ବାପ ତୋର ଏକ ପିତା
ତୋହର ମାତା ସିନା ଜଗତରେ ଜିତା ।
ଭରଥ ବୋଇଲେ ରେ ନଜାଣୁ ପୁତ୍ରମଣି
କୁଳବଧୂ ଆମ୍ଭରରେ ତୋହର ଘରଣୀ ।
ସବ୍ୟ ଅସବ୍ୟରେ ମୋର ବଧୂ ଥିବ ପୁଣ
ସେଥି ସକାଶେ ମାନ୍ୟ ମୋର ଅଟେ ଜାଣ ।
ଅଙ୍ଗଦ ବୋଇଲେ ପିତା ଭିତର ପୁରେଚଳ
ମାରୁତି ଭାଇ ମୋର ଥିଲେ ଯେ ସଙ୍ଗର ।
ସେ କିପାଁ ତୁମ୍ଭଙ୍କୁ ଘେନିଣ ନ ଗଲା
ମାରୁତି ବୋଇଲେ ମୋତେ ମାନ୍ୟ ହେଲା ।
ମୁହିଁ ଅଟେ ବଡ଼ ତୁ ଅଟୁ ସାନୁଜ
କେମନ୍ତେ ତୋର ପୁରକୁ ମୁହିଁ ଯାନ୍ତି ଆଜ ।
ଶୁଣିକରି ଅଙ୍ଗଦ ସନ୍ତୋଷ ମନ ହେଲା
ଭରଥ ମାରୁତିକି ଘେନିଣ ଚଳିଗଲା ।
ଦିବ୍ୟ ଜଗତୀରେ ନେଇ ବସାଇଲା
ମର୍ଦ୍ଦନ ମାଜଣା ଯେ ସ୍ନାହାନ କରାଇଲା ।
ଅମଳାଣ ବସ୍ତ୍ର ନେଇଣ ସମର୍ପିଲା
ଦେବାର୍ଚ୍ଚନ ନ କରାଇ ଅନ୍ତଃପୁର ନେଲା ।
ରାଣୀହଂସ ଆସି କଲେ ଦରଶନ
ଚରଣେ ଲୋଟଗାଳି ଶୋଇଲେକ ପୁଣ ।
ଶୀତଳ ମଣୋହି ଆଣି ବେଗେ ଦେଲା
ଭୋଜନ ସାରି ଭ୍ରଥ ଆଞ୍ଚୋବନ କଲା ।
ବିଡ଼ିଆ ଲାଗି ହୋଇ ଭ୍ରଥ କହେ ପୁଣ
ବଧୂଙ୍କୁ ସଙ୍ଗେ ଘେନି ଚଳ ପୁତ୍ର ପୁଣ ।
ପଚିଶ ଯୂଥପତି ସଙ୍ଗତରେ ନିଅ
ପରମ ବ୍ରହ୍ମ ଦେଖି ନୟନ ସୁଖ ଦିଅ ।
ଏତେ କହି ଭ୍ରଥ ସେଠାରୁ ଚଳିଗଲା
ପୁଷ୍ପକ ଯାନ ପରେ ଯାଇଣ ବିଜେ କଲା ।
ପୁଷ୍ପକ ବିମାନ ଚଳେ ଘନ ଘନ
କିଷ୍କିନ୍ଧ୍ୟା କଟକରେ ପ୍ରବେଶ ଯାଇଁ ପୁଣ ।
ଏଥୁ ଅନନ୍ତରେ ଶୁଣ ଶାକମ୍ବରୀ
ଅଙ୍ଗଦ ଯେ ନିର୍ମଳ ରଥକୁ ସଜକରି ।
ପଚିଶ ଯୂଥପତିଙ୍କି କହିଣ ବହନ
ଦୁଇଜଣ ରଥରେ ବସିଲେ ଯାଇ ପୁଣ ।

ଶୂନ୍ୟ ମାର୍ଗରେ ଯାନ ବେଗେ ଚଳିଗଲା
ଅଯୋଧ୍ୟା ନଗ୍ରରେ ଯାଇଣ ମିଳିଲା ।
ରଥରୁ ଓହ୍ଲାଇ ପଞ୍ଚଶ ଯୂଥପତି
ଶ୍ରୀରାମଙ୍କ ଚରଣେ ଓଳଗି ହୁଅନ୍ତି ।
ଅଙ୍ଗଦ ଓହ୍ଲାଇ ସଙ୍ଗତେ ଘେନି ନାରୀ
ଶ୍ରୀରାମର ଚରଣେ ମାନ୍ୟଧର୍ମ କରି ।
ଦେଖିକରି ରାମ ଅଙ୍ଗଦକୁ କହି
ଅନ୍ତଃପୁରେ ଦୁଇଜଣ ଚଳ ବେଗ ହୋଇ ।
ଶୁଣିକରି ଅଙ୍ଗଦ ବେଗେ ଚଳିଗଲା
ଜାନକୀଙ୍କ ଚରଣେ ଓଳଗି ହୋଇଲା ।
ଅଙ୍ଗଦ ଘରଣୀ କନକ ହୀରାବତୀ
ଜାନକୀ ଚରଣେ ସେ ନମିଲା ତଡ଼ତି ।
ବଇଦେହୀ ବୋଇଲେରେ କୁମରମଣି ଶୁଣ
ତୋର ସଙ୍ଗେ ଏ ନାରୀ କେହୁ ଅଟେ ପୁଣ ।
ଅଙ୍ଗଦ ବୋଇଲେ ମାତ ମୋରଠାରୁ ଶୁଣ
ମୋହର ଘରଣୀ ଏ ତୋହର ବଧୂ ପୁଣ ।
ଶୁଣିକରି ଜାନକୀ ଉଠିଲେ ପଲଙ୍କରୁ
ଅଙ୍ଗଦ ଘରଣୀକି କୋଳ କଲେ ତଳୁ ।
ଆପଣା ପଲଙ୍କରେ ନେଇଣ ବସାଇଲେ
ଦାସୀଗଣେ ଦେଖିଣ ହୁଳହୁଳି ଦେଲେ ।
ଶବଦ ଶୁଣିଣ ଅଇଲେ ରାମ ମାତ
ଜନନୀମାନେ ଦେଖିଣ ହେଲେ ସ୍ତମ୍ଭୀଭୂତ ।
ବୋଇଲେ ସୀତୟା ଗୋ ଆମ୍ଭର ବାଣୀ ଶୁଣ
ଏ ନାରୀ ଗୋଟି ତୋର କିଏ ଅଟେ ପୁଣ ।
ଜାନକୀ ବୋଇଲେ ମୋର ବଧୂ ଅଟେ ଏତ
ଯେଉଁ ବାଳିକି ମାରିଥିଲେ ରଘୁନାଥ ।
ସେ ବାଳି ରାଜା କୁମର ଅଟଇ ଅଙ୍ଗଦ
ମାତା ତାରାବତୀ ସୁନ୍ଦର ମଣେ ସିଦ୍ଧ ।
ବାପ ମରିବାରୁ ପୁତ୍ରର ଦୁଃଖ ନାହିଁ
ଲଙ୍କା ଗଡ଼ରେ ଯାଇଁ ଯୁଝିଲା ମୋର ପାଇଁ ।
ବାନର ଭାଲୁ ଘେନି ଖୁଡୁତା ସୁଗ୍ରୀବର
ସମୁଦ୍ରେ ବନ୍ଧବାନ୍ଧି ମାଇଲେ ଅସୁର ।
ତୁମ୍ଭ ପୁଅଙ୍କ ବୋଲ ଏ କନ୍ୟା ଶାଶୁ କଲା
ଶୋଚନା ନକରି ଦିଅର ତଳରେ ରହିଲା ।
ଏହାଙ୍କର ସକାଶେ ପାଇଲ ମୋତେ ତୁମ୍ଭେ
ନୋହିଲେ ପ୍ରାଣ ହାରନ୍ତି ମୁଁ ଲଙ୍କାଗଡ଼ ମଧ୍ୟେ

ଶୁଣିକରି ସକଳ ଜନନୀ ତୋଷ ହେଲେ
ଦେଖି ତୁମ୍ଭର ବୋହୂ ବୋଲିଣ ବୋଇଲେ ।
କେହୁ ବାଳ ଝିଙ୍କନ୍ତି କେ ବାସ ନ୍ୟନ୍ତି ଟାଣି
ଦୁଇଶ ପଞ୍ଚାଶ ରାଣୀଙ୍କି ଏକବଧୂ ପୁଣି ।
କଉତୁକ ରସରେ ତାହାଙ୍କ ସଙ୍ଗେ ଲୀଳା
ଅଙ୍ଗଦର ଘରଣୀ ହୋଇଲା କାଉଳା ।
ଜାନକୀ ଆଣିଣ ତାକୁ କୋଳରେ ବସାଇଲେ
ଅଙ୍ଗଦକୁ ଚାହିଁଣ ବଚନ ବୋଇଲେ ।
ଘରଣୀ ଘେନି ବାବୁ ଚଳରେ ବହନ
ନିଜବସା ଘରରେ କର ଯାଇଁ ସ୍ଥାନ ।
ସକଳ ଶାଶୁ ମୋର ଏହାର ପରିହାସୀ
ଅନେକ ପ୍ରଭାବ ଦେବେ ଏହାକୁ ଆସି ।
ଶୁଣିକରି ଅଙ୍ଗଦ ଘରଣୀ ଘେନି ଚଳି
ନିଜ ବସାଘରେ ରହିଲେ ଯାଇକରି ।
ଏଥୁ ଅନନ୍ତରେ ଶୁଣ ଦୈତ୍ୟପତି
ଭରତ ମାରୁତି ଯାଇଁ ସୁଗ୍ରୀବର କତି ।
ସିଂହଦ୍ୱାରେ ଯାଇ ଜାନନୀକୁ ଦେଖିଲେ
ରଥରୁ ଓହ୍ଲାଇ ଭିତର ପୁରେ ଗଲେ ।
ପଡ଼ିହାରୀ ବୋଇଲେ ଶୁଣ ରାମଭାଇ
ରାଜନ ସୁଗ୍ରୀବର ପାରିଧିକି ଯାଇ ।
ଭରଥ ବୋଇଲେ ଅଛନ୍ତିକି ପାଟରାଣୀ
ପଡିହାରୀ ବୋଲେ ଅଛନ୍ତି ଠାକୁରାଣୀ ।
ଶୁଣିକରି ଭରତ ଅନ୍ତଃପୁରେ ମିଳି
ଦେଖିଲେ ତାରାବତୀ ଖେଳରେ ମାତିକରି ।
ଦାସୀଗଣ ମାନେ ସଙ୍ଗରେ ପୁଣଥିଲେ
ହସ୍ତ ଦେଖାଇଣ ରାଣୀଙ୍କି ଠାରିଦେଲେ ।
ବକ୍ରକରି ଚାହିଁଲା ତାର ମହାଦେଈ
ବୋଇଲେ ଅପୂର୍ବତ ଦେଖିଲି ଆଜମୁହିଁ ।
ଅସମ୍ଭାଳ ହୋଇ ବୋଇଲା ମୋର ଭାଗ୍ୟ
ନୀଳେନ୍ଦୀ ଦଳ ରୂପ ମୁଁ ଦେଖିଲି ଯେ ଆଜ ।
ସୁବର୍ଣ୍ଣ ଝରୀରେ ଅଣାଏ ବେଗେ ଜଳ
ଚରଣ ଧୋଇ ଝୀନବସନେ ପୋଛେ ତାର ।
ହସ୍ତଧରି ନେଇ ପଲଙ୍କେ ବସାଇଲା
ଉତ୍ସବ ଆନନ୍ଦରେ ବନ୍ଦାପନା କଲା ।
ଦାସୀଙ୍କି ବୋଇଲା ମର୍ଦନ ଯାଙ୍କୁ କର
ମର୍ଦନ ମାଜଣା ଯେ କଲେ ସ୍ତିରୀକୁଳ ।

ଗଙ୍ଗାଜଳ ଘେନିଣ ସ୍ନାନ କରାଇଲେ
ଶ୍ରୀ ଅଙ୍ଗ ପୋଛି ଅମଳାଣ ପିନ୍ଧାଇଲେ ।
ଦେବାର୍ଚ୍ଚନ କରାଇ ମଙ୍ଗଳ ଆଳତୀ
ଧୂପଦୀପ ଦେଇଣ ସନ୍ତୋଷ କଲେ ମୃତି ।
ଶୀତଳ ମଣୋହି ଆଣି ରାଣୀ ଦେଲା
ହରଷରେ ଭରତ ବେଗ୍ରରେ ଭୁଞ୍ଜିଲା ।
ଆଞ୍ଚୋବନ ସାରିଣ ବିଡ଼ିଆ ଲାଗି ହୋଇ
ପଲଙ୍କ ଉପରେ ଶୟନ କଲେ ଯାଇଁ ।
ପଡ଼ିହାରୀ ମାତଳିକି ଭରି ଭୋଜନ ଦେଲା
ମାରୁତି ମୃଉଳାଣୀ ପାକରେ ଭୁଞ୍ଜିଲା ।
ଦାସୀମାନେ ଭରଥ ପାଦ ମଞ୍ଚାଳିଲେ
ଏଥୁ ଅନନ୍ତରେ ଶୁଣ ଶାକମ୍ବରୀ ଭଲେ ।
ଏହି ସମୟରେ ଚଉଦଘଡ଼ି ବେଳ
ପାରିଧିରୁ ଫେରିଲେ ସୁଗ୍ରୀବର ନବର ।
ପଡ଼ିହାରୀ ବେଗେ ଯାଇଣ ଜଣାଇଲା
ତୁମ୍ଭର ପୁରେ ବିଜେ ରାମଭାଇ ପରା ।
ଶୁଣିକରି ଆନନ୍ଦ ସୁଗ୍ରୀବର ହେଲା
ବୋଇଲା ମୋର ଭାଗ୍ୟ ଆଜତ ଦିଶିଲା ।
ଏତେ ବୋଲି ନବରେ ପ୍ରବେଶ ହେଲାଯାଇଁ
ଅର୍ଘ୍ୟ ବନ୍ଦାପନା ତାରା ଯେ କରଇ ।
ମଙ୍ଗଳ ଆଳତୀରେ ଧୂପଦୀପ ଦେଲା
ପହଣ୍ଡ ମଣାଇଣ ଅନ୍ତଃପୁରକୁ ନେଲା ।
ମର୍ଦ୍ଦନ ମାଜଣା ସାରି କରାଏ ବେଗେ ସ୍ନାନ
ଦେବାର୍ଚ୍ଚନ ସାରିଣ ବିଜୟେ ରାଜନ ।
ବୋଇଲେ ପାଟରାଣୀ ଗୋ କଥାଏ ପଚ୍ଚରଇ
ସ୍ୱାମୀର ଭାଇ ମୋର ଅଛନ୍ତି କେଉଁଠାଇଁ ।
ତାରାବତୀ ବୋଲେ ତୁମ୍ଭେ ନଥିଲ ଅଇଲେ
ଭଣଜା ମାରୁତି ତାଙ୍କ ସଙ୍ଗରେ ପୁଣିଥିଲେ ।
ସ୍ନାହାନ ସାରିଣ ମଣୋହି ସେହୁ କଲେ
ପଲଙ୍କ ଉପରେ ଯାଇଣ ପହୁଡ଼ିଲେ ।
ସୁଗ୍ରୀବର ବୋଇଲେ ସେହୁ ନାରାୟଣ
ମୋରଠାରେ ଦୟାଅଛି ତାଙ୍କର ଯେ ପୁଣ ।
ଏତେବୋଲି ମଣୋହି କଲେ ଯାଇକରି
ଛଡ଼ରସେ ଆଣିଣ ପରଶେ ତାରାନାରୀ ।
ଭୋଜନ ସାରିଣ ସେହୁ ଆଞ୍ଚୋବନ କଲେ
ବିଡ଼ିଆ ଭାଙ୍ଗିଣ ଦାସୀ ଆଣି ଦେଲେ ।

ପଲଙ୍କ ଉପରେ ପହୁଡ଼େ ଯାଇଁକରି
ଅଳସ ଭାଙ୍ଗି ଉଠିଲେ ସୁଗ୍ରୀବ ଶୀଘ୍ରକରି ।
ଏମନ୍ତ ସମୟରେ ମାରୁତି ଆସି ମିଳି
ଚରଣେ ଓଳଗିହେଲେ ଏକେଶରୀ ତନୟ ମହାବଳୀ ।
ସୁଗ୍ରୀବର ବୋଇଲା ଶୁଣରେ ତନୟେ
ଶ୍ରୀରାମଚନ୍ଦ୍ର ଟିକି ଆନନ୍ଦ ମନେ ରହେ ।
ଭରଥ କି ନିମନ୍ତେ ଆସିଛି ଆମ୍ଭପୁର
ସେ କଥା ଜାଣୁକିରେ ପବନ କୁମର ।
ହନୁମନ୍ତ କହେ ରାମ ଆଜ୍ଞା ଦେଲେ
ସଭିଙ୍କି ଡାକିଆଣ ବୋଲିଣ ବୋଇଲେ ।
ବିଭୀଷଣ ସୁକର୍ଣ୍ଣ ମହାନାଦ ଯେ ସୁବାହୁ
ସ୍ୱୟଂ ମନୁ ଅଙ୍ଗଦ ଗଲେଣି ପୁଣତହୁଁ ।
ସମସ୍ତଙ୍କ ରାଣୀମାନେ ସଙ୍ଗତରେ ଗଲେ
ତେଣୁ ଲେଉଟି ଭରଥ ତୋପୁର ବିଜେକଲେ ।
ଶୁଣିଣ ସୁଗ୍ରୀବର ତାରାକୁ କହେ ପୁଣ
ସଜହୁଅ ଅଯୋଧ୍ୟାକୁ ଯିବା ଏହିକ୍ଷଣ ।
ରୋମା ନାରୀକି ସେ ଡକାଇ କହିଲେ
ବେଶହୁଅ ଅଯୋଧ୍ୟା ଯିବା ଗୋ ବୋଇଲେ ।
ଶୁଣିଣ ଦୁଇରାଣୀ ବେଶ ଭୂଷଣ ହେଲେ
ଏହି ସମୟରେ ଭ୍ରଥ ନିଦ୍ରାରୁ ଉଠିଲେ ।
ମୁଖ ପଖାଳିଣ ବସିଲେ ସିଂହାସନେ
ସୁଗ୍ରୀବର ଦେଖିଣ ମିଳିଲେ ତତ୍କ୍ଷଣେ ।
ଅନେକ ପଉରୋଷେ ମାନ୍ୟ ସୁଗ୍ରୀକଲେ
କେଉଁ କାର୍ଯ୍ୟେ ଅଇଲ ବୋଲିଣ ବୋଇଲେ ।
ଭରଥ ବୋଇଲେ ତୁମ୍ଭେ ଶୁଣ ମୋର ବାଣୀ
ତୁମ୍ଭଙ୍କୁ ନେବାକୁ ପେଶିଲେ ରଘୁମଣି ।
କୁମ୍ଭ ଋଷିଙ୍କ ସୁତ ଅଗସ୍ତି ଛନ୍ତି ରହି
ମୋତେ ପେଶିଛନ୍ତି ମିତ୍ରକୁ ନେବାପାଇଁ ।
ଦୁଇ ପାଟରାଣୀ ସଙ୍ଗରେ ଆଣିଥିବେ
ଅଷ୍ଟସେନାପତି ସଙ୍ଗରେ ଅଣାଇବେ ।
ଶୁଣିଣ ସୁଗ୍ରୀବର ସନ୍ତୋଷ ହୋଇଲେ
ଗଜୀନ୍ଦ୍ର କରୀନ୍ଦ୍ର ଦୁଇପୁତ୍ରଙ୍କୁ ଡକାଇଲେ ।
ବୋଲେ ଅଯୋଧ୍ୟା ଆମ୍ଭେ ଯାଉଅଛୁଁ ପୁଣ
ଜନନୀ ସହିତେ ଯିବେ ମୋ ସଙ୍ଗେଣ ।
ରାଜ୍ୟରକ୍ଷା କରିବ ନ କରିବ ଦୁଷ୍ଟପଣ
ପରଜାମାନଙ୍କୁ ଆଉ ନ କରିବରେ ଭିନ୍ନ ।

ପରିଜନ ପଠାଇ ମଣୋହି ତିଆରିଲେ
ମାରୁତି ଭରଥଙ୍କୁ ଘେନି ଭୋଜନ ସେହୁକଲେ ।
ଦୁଇରାଣୀ ଭୁଞ୍ଜିଣ ସଜ ହେଲେ ପୁଣ
ରଥ ସଜକରିଣ ଅଣାଏ ବହନ ।
ସୁବର୍ଣ୍ଣ ରଥ ଉପରେ ଯାଇଁ ବିଜେକଲେ
ଦୁଇପାଶେ ଦୁଇ ରାଣୀ ହରଷେ ବସିଲେ ।
ଶୂନ୍ୟ ମାର୍ଗରେ ରଥ ଚଳେ ଘନ ଘନ
ପୁଷ୍ପକ ଯାନରେ ଭରଥ ବସେ ପୁଣ ।
ଅଷ୍ଟ ସେନ୍ମାପତି ମାରୁତି ସଙ୍ଗରେ
ସମସ୍ତେ ବିଜେକଲେ ରଘୁବର ପରେ ।
ଚନ୍ଦ୍ରଦ୍ଵୀପ ଆଲୋକ ଯେସନେ ଚନ୍ଦ୍ର ଉଇଁ
ଅନ୍ଧାରକୁ ଦୁଇରଥ ଦୁଇଚନ୍ଦ୍ର ହୋଇ ।
ଆଗ ପଛେ ଦୁଇରଥ ଚଳେ ଘନ ଘନ
ଗୋମତୀ ନଦୀ ଉତ୍ତରେ କରନ୍ତି ଗମନ ।
ଚନ୍ଦ୍ର ଉଜ୍ଜ୍ୱଳ ପର୍ବତ ଉପରେ ଯାଇ ହୋଇ
ଶତ ସିଂହ ପର୍ବତ ସେ ପାଖେ ଅଛଇଁ ।
ପର୍ବତ ଉପରେ ସିଂଘକା ନାମେ ଦୈତ୍ୟବୀର
ତାର ହସ୍ତେ ଅଠର ଦୁଇଗୋଟି ଗୋଡ଼ ।
ନବକୋଟି ମୁଣ୍ଡ ତାର ଶୁକଳ ବର୍ଣ୍ଣ ଅଟେ
ବାସ୍ତରୀ କୋଟି ଅସୁର ତାର ପାଦେ ଖଟେ ।
ପର୍ବତ ମାଡ଼ି ସେଥିରେ ରହିଛନ୍ତି ବଳ
ସେ ପର୍ବତ ଶିଖେ ବସେ ଯେସନେ ଦିଗପାଳ ।
ଦୂରରୁ ଦେଖିଲେ ସେ ଉଜ୍ଜ୍ୱଳ ରଥ ବେନି
ସ୍ୱର୍ଗ ମଞ୍ଚ ଦୁହିଁଙ୍କ ଉହାଡ଼ିଲା ପୁଣି ।
ଆଗରେ ଦେଖିଲା ଯେ ସୁଗ୍ରୀବର ଯାଇଁ
କବାଟ ପାଡ଼ିଲା ପ୍ରାୟେ ବାଟ ନିରୋଧଇ ।
ଦେଖିକରି ସୁଗ୍ରୀବର ସ୍ତବ୍ଧିତେ ରହିଲା
କେବଣ ବିଚାର ଏ ମନରେ ବିଚାରିଲା ।
ଭରଥ ଯାଇଣ ହେଲେ ପାଶେ ପୁଣ
ଦେଖିଲେ ନିରୋଧିଛି ସିଂହୀକା ଦୈତ୍ୟଜାଣ ।
ମାତଳୀକି ବୋଇଲେ କେବଣ କଥା ଜାଣ
ଦେବଦୂତ ବୋଇଲେ ଶୁଣିବା ହେଉ ପୁଣ ।
ଶମ୍ଭୁ ନିଶମ୍ଭୁ ବୋଲିଣ ଅଟନ୍ତି ଦୁଇବୀର
ସତ୍ତରଭ ସତ୍ୟଯୁଗେ ଅବତାର ତାଙ୍କର ।
ମଂଷାସୁର ସଙ୍ଗରେ ସେ କଲେ ବେହରଣ
ଦୁର୍ଗାଙ୍କର ହସ୍ତରେ ସେ ପାଇଲା ମରଣ ।

ତାହାର କୁମର ଯେ ସିଂହୀକା ଅସୁର
ଚନ୍ଦ୍ର ଉଜ୍ଜ୍ୱଳ ପର୍ବତେ ସେ କରିଅଛି ଘର ।
ସେଥିରେ ବିମ୍ବର ଯେ ଅଛି ପାତାଳକୁ
ସେ ପୁରେ ଡରିଣ ଥିଲା ଲୁଚି ଅମ୍ବୀକାକୁ ।
ଗ୍ରୀଷମ କାଳ ଦେଖି ସେ ହୋଇଛି ବାହାର
କଷ୍ଟୋର ଯୁଦ୍ଧ କରିବ ସିଂଘୀକା ନାମେବୀର ।
ଡାଙ୍କୁଣୀ ଦେଇଛି ଯିବାକୁ ବାଟ ନାହିଁ
ଆଡ଼େ ହୋଇଗଲେ ଦୈତ୍ୟବଳ ମାନ ହୋଇ ।
ଧର ଧନୁଶର କର ହେ ପୟାଣ
ସୁଗ୍ରୀବରକୁ ବୋଲନ୍ତି ପଛକୁ ଯାଅ ପୁଣ ।
ଭରଥ ବୋଇଲେ ଶୁଣ ହେ ଜ୍ୟେଷ୍ଠ ଭ୍ରାଥ
ଦୁଇକନ୍ୟା ଘେନି ତୁମ୍ଭେ ପଛକୁ ବାରେ ଘୁଞ୍ଚ ।
ଆଲୋକ ଲିଭାଇ ଗୁପତ ସୁଗ୍ରୀ ହେଲା
ଅଷ୍ଟ ସେନ୍ମାପତିଙ୍କି ଭରଥ ଆଜ୍ଞା ଦେଲା ।
ବୋଇଲା ତଳକୁରେ ଓହ୍ଲାଇ ତୁମ୍ଭେ ଯାଅ
ବିମ୍ବରକୁ ଆବୋରି ଅସୁର ବଳ ଦହ ।
ଶୁଣିଣ ଅଷ୍ଟ ସେନ୍ମାପତି ଓହ୍ଲାଇଲେ
ବିମ୍ବର ଦ୍ୱାର ଦେଖିଣ ପଥ ନିରୋଧିଲେ ।
ହୁଁକାର ଶବଦ ଦେଇ ଗର୍ଜିଣ ଉଠିଲେ
ଦେଖିଣ ରାକ୍ଷସ ବଳ ସମସ୍ତେ ସଜ ହେଲେ ।
ମାର ମାର ଶବଦ ଶୁଭେ ତହିଁ ଟାଣ
ବିକ୍ରମ ମୁରତି ପୁଣ ହେଲେ ହନୁମାନ ।
ଦଶବିଂଶ ଚାଳିଶ ଏକାବେଳେ ଧରି
କଚାଡ଼ିଲା ଶିଳା ଉପରେ ନେଇ କରି ।
ସୁଷେଣ ବିରୁପାକ୍ଷ ଚନ୍ଦନ କୁମୁଦ
ଗନ୍ଧମାର୍ଦ୍ଦନ ଜାମ୍ବେବ ସାରାସ ପାରାସ କୁନ୍ଦ ।
କରନ୍ତି ରଣଗୋଳ ମାରନ୍ତି ଅସୁର
ପଚିଶ କୋଟି ବଧିଲେ ଘଡ଼ିକ ମଧ୍ୟର ।
ଦୁଇଘଡ଼ି ସମୟରେ ଏତେ ସୈନ୍ୟ ନାଶି
ଦେଖିଣ ସିଂହୀକାସୁର ଧନୁର୍ବାଣ ଆକର୍ଷି ।
ଅସୁର ଶରକୁ ମାଇଲାକ ଟାଣେ
ସାତ ସେନାପତି ପଡ଼ିଲେକ ତେଣେ ।
ହନୁମନ୍ତ ଜଗିଣ ଅଛି ଯେ ବିମ୍ବର
ତେତେବେଳକୁ ରାତ୍ର ତିନି ଯେ ପ୍ରହର ।
ଭରଥ କୋଦଣ୍ଡରେ ବେଗେ ଗୁଣ ଦେଲେ
ବ୍ରହ୍ମଶର ତିନିଗୋଟା ନେଇଣ ଯୋଚିଲେ ।

ମନ୍ତ୍ର ପଢ଼ି ଛାଡ଼ି ଦେଲେ ରାମର ସାନୁଜ
ଦୁଇ ଚରଣକୁ ତାର କାଟିଲେ ଯେ ବେଗ ।
ସମ୍ଭାଳି ନୋହିଣ ସେ ଭୂମିରେ ପଡ଼ିଲା
ଦୁଇ ପର୍ବତକୁ ଧରି ଶରୀର ଲୁଚାଇଲା ।
ସମ୍ଭାଳି ନୋହିଣ ସେ ଭୂମିରେ ପଡ଼ିଲା
ଦୁଇ ପର୍ବତକୁ ଧରି ଶରୀର ଲୁଚାଇଲା ।
ଆଉଥରେ ବଜ୍ରଶର ପେଶିଲେ ଭ୍ରଥବୀର
ଅଠର ଭୂଜ ତାର ଛେଦିଲେ ଧାତିକରେ ।
ମୁଣ୍ଡା ବୃକ୍ଷ ପ୍ରାୟେକ ପଡ଼ିଅଛି ସେହି
କରଚରଣ ତାର କାଟିଲେ ରାମଭାଇ ।
ମାତଳୀ ବୋଇଲେ ତୁମ୍ଭେ ଶୁଣ ମୋର ବାଣୀ
ଦିବସରେ କଅଁଳିବ କର ଚରଣ ପୁଣି ।
ରଜନୀ ଥାଉଁ ଯେବେ କରିବ ଶିର ଛେଦ
ନୋହିଲେ ଅନର୍ଥ କରିବ ଅସୁର ରାଜ ।
ଭରତ ବୋଇଲେ କେବଣ ଶରେ ନାଶ
ମାତଳୀ ବୋଲେ ବର ତାକୁ ଦେଲେ ଅମରେଶ ।
ବରଦେଲା ବେଳେ ତାକୁ ଅଛନ୍ତି ମନାଇଁ
ଅନନ୍ତ ନାରାୟଣ ଶରେ ସେ ମରଇ ।
ଶୁଣିଣ ଭ୍ରଥବୀର ଅନନ୍ତ ଶର କାଢ଼ି
ଧନୁର୍ବେଦ ସୁମରି ବେଗେ ଦେଲେ ଛାଡ଼ି ।
ନବମୁଣ୍ଡ ତାର ଏକାବେଳକେ ଛିଡ଼ିଗଲା
ଯୋଜନେ ପର୍ଯ୍ୟନ୍ତେ ରକ୍ତ ପିଚିକା ଦେଲା ।
ଭରଥ ଡାକିଦେଲେ ଶୁଣ ଜ୍ୟେଷ୍ଠ ଭାଇ
ପଛକୁ ଦୁଇ ଯୁଣ ଘୁଞ୍ଚି ଯାଅ ତୁହି ।
ନୋହିଲେ ରକତରେ ହେବ ଜର ଜର
ନବଧାରା ହୋଇ ଯେ ବହିଲା ରୋଧିର ।
ଏହି ସମୟରେ ରଜନୀ ଗଲା ପାହି
ଦେଖିଲେ ଦଶଦିଗେ ଶ୍ରୋଣୀତ ଯାଏ ବହି ।
ତାରା ରୋମା ଦେଖିଣ ଆଶ୍ଚର୍ଯ୍ୟିତ ହେଲେ
ଧନ୍ୟରେ ସାନୁଜ ବୋଲିଣ ବୋଇଲେ ।
ସପତ ସେହ୍ନାପତି ଉଠିଲେ ଚେତା ପାଇ
ଦେଖିଲେ ଯୁଦ୍ଧ ଯେ ରହିଲା ସ୍ଥିର ହୋଇ ।
ବାକି ଅସୁର ବଳ ଯେତେକ ପୁଣଥିଲେ
ପଳାଇଣ ପର୍ବତ ବିମ୍ବରେ ଲୁଚିଲେ ।
ସପତ ସେହ୍ନାପତି ବସିଲେ ରଥରେ
ହନୁମନ୍ତକୁ ଚାହିଁଣ ଭରତ କହେ ଧୀରେ ।

ଆସ ଆସ ବାବୁରେ ବସ ଯାନ ପରେ
ଶୁଣିକରି ମାରୁତି ଅଇଲେ ଧାତିକାରେ ।
ପୁଷ୍ପକ ବିମାନପରେ ଯାଇଣ ବିଜେକଲା
ବଡ଼ ଦୈତ୍ୟ ମଲା ବୋଲି ମନେ ବିଚାରିଲା ।
ଏମନ୍ତ ସମୟରେ ଯୋଗ୍ରୀବଳ ଆସି
ପିଚାଶ ଗଣଙ୍କୁ ଘେନି ହେଲେ ମିଶାମିଶି ।
ମହୁମାଂସ ଖାଇଣ ରୋଧିର ପାନକଲେ
ସାଧୁରେ ଭ୍ରଥବୀର ବୋଲିଣ ବୋଇଲେ ।
ଜୟଶଙ୍ଖ ଦେଇଣ ଚଳେ ଭ୍ରଥବୀର
ସୁଗ୍ରୀବର ସଙ୍ଗରେ ଯାଇଣ ଭେଟ ତାର ।
ତାରାବତୀ ବୋଇଲା ଶୁଣରେ ସାନୁଜ
ଆମ୍ଭେ ଏକା ଆସିଥିଲେ ମାରନ୍ତା ଦନୁଜ ।
ଭରଥ ବୋଇଲେ ସଙ୍ଗରେ ଅଛନ୍ତି ଜ୍ୟେଷ୍ଠଭ୍ରାଥ
ନାରାୟଣଙ୍କର ଯେହୁ ଅଟନ୍ତି ପ୍ରାଣହିତ ।
ସୁମରଣା କଲେ ଦୈତ୍ୟ କେଣେ ଯାନ୍ତି ମିଳି
ଯାର ନାମ ଧଇଲେ ପଥର ତରଳି ।
କଥା ହୁଅନ୍ତେଣ ଚଳେ ରଘୁବର
ଦୁଇ ଘଡ଼ିରେ ମିଳେ ଅଯୋଧ୍ୟା ନଗ୍ରପୁର ।
ଅଯୋଧ୍ୟା ସିଂଘଦ୍ୱାରେ ହେଲେ ପରବେଶ
ଜୟଶଙ୍ଖ ବଜାଇଣ ମନରେ ହରଷ ।
ଶ୍ରୀରାମଚନ୍ଦ୍ର ରାୟେ ବାହାରେ ଅବକାଶ
ଶଙ୍ଖର ଶବଦ ଶୁଣି ତୁରିତେ ପ୍ରବେଶ ।
ସିଂହଦ୍ୱାରେ ପ୍ରବେଶ ହେଲେ ଚାପଧାରୀ
ଦେଖିଣ ସୁଗ୍ରୀବର ରଥରୁ ଉତୁରି ।
ତାରା ରୋମାଙ୍କୁ ଘେନିଣ ଚରଣେ ଶୁତିଲେ
ଦେଖିଣ କୋଦଣ୍ଡଧାରୀ ତୋଳିଣ ଧଇଲେ ।
ତାରାଙ୍କୁ ବୋଇଲେ ଯେ କୋଦଣ୍ଡ ଚାପଧାରୀ
ଭିତର ପୁରକୁ ତୁମ୍ଭେ ଯାଅ ବେଗକରି ।
ତୁମ୍ଭର ନବର ସିନା ଅଟେ ମୋର ପୁର
ତୁମ୍ଭର ସୁଦୟାରେ ଅଯୋଧ୍ୟା କଲି ଘର ।
ଆପଣା ନଗ୍ର ନ ଯାଇ ବାହାରେ କିପାଁ ରହ
ତୁମ୍ଭଙ୍କୁ ଦେଖିବା ପାଇଁ ଜାନକୀର ସ୍ନେହ ।
ଶତେ ବରଷ ହେଲା ଲୁଚାଇ ଅଛି ଦେହ
ଅର୍ଦ୍ଧ ଅଙ୍ଗ ତୁମ୍ଭର ମନେ କି ନାହିଁ ସ୍ନେହ ।
ତାରା ବୋଲେ ତୁମ୍ଭେ ମୋର ତ୍ରୈଲୋକ୍ୟ ଠାକୁର
ତୁମ୍ଭର ଦର୍ଶନେ ମୋର ପାତକ ହେବ ଦୂର ।

ଯେଉଁଦିନ ସୁଦୟା ତୁମ୍ଭର ହୃଦେ ହୋଇ
ସେକାଳେ ଦରଶନ ଆମ୍ଭଙ୍କୁ ମିଳଇ।
ଏତେକହି ତାରା ରୋମା ଭିତର ପୁର ଗଲେ
ମାଣିକ୍ୟ ପଲଙ୍କ ପରେ ଜାନକୀ ଦେଖିଲେ।
ଦୂରୁଁ ପାୟେ ପଡ଼ି ଯେ ଶୁଏ ବେନିରାଣୀ
ଉଠ କରି ଜାନକୀ ତୋଳିଲେ ତାଙ୍କୁ ପୁଣି।
ତାରା ରୋମା ଦୁହେଁ ଯେ କରନ୍ତି କାରୁଣ୍ୟ
ଦୁହିଁଙ୍କି ଧରିଣ ସୀତା କଲେ ଯେ ରୋଦନ।
ବୋଇଲେ ସକଳ କୁଟୁମ୍ବ ବନ୍ଧୁ ମୋର
ଅନାସ୍ତ ହେଲା ବେଳେ ମୋତେ ଲଗାଅ କୂଳ।
ତୁମ୍ଭର ଗୁଣ ଶୁଝି ମୁଁ ନ ପାରଇରେ ସହୀ
ଅଯୋଧ୍ୟା ଠାକୁରାଣୀ ହେଲି ମୁଁ ତୁମ୍ଭ ତହିଁ।
ଶୁଣିଣ ତାରା ରୋମା ଚରଣ ତଳେ ପଡ଼ି
ତ୍ରୈଲୋକ୍ୟ ଠାକୁରାଣୀ ସମ୍ଭାଳ ଶୋକ ତୋରି।
ରୋଦନ ଶୁଣିଣ ଯେ ଦାସୀମାନେ ଗଲେ
ଦୁଇଶ ପଞ୍ଚାଶ ଜନନୀ ଆଗରେ କହିଲେ।
ଜନକର ଦୋହିତା ରାମଙ୍କର ଠାକୁରାଣୀ
ରୋଦନ କରୁଛନ୍ତି ତାରାକୁ ଦେଖି ପୁଣି।
ଶୁଣିକରି କଉଶଲ୍ୟା ଅଇଲେ ବେଗକରି
ସକଳ ଜନନୀ ଅଇଲେ ସଙ୍ଗେ ଘେରି।
ଦେଖିଲେ ତାରା ରୋମା ଜାନକୀ ରୋଦନ
ଧରାଧରି ହୋଇଣ ବିଳାପ କରି ପୁଣ।
ମଧ୍ୟରେ କଉଶଲ୍ୟା ପଶିଲେ ଯାଇଁକରି
ତିନି ବଧୂଙ୍କୁ ନିବର୍ତ୍ତ କରାଏ ପୁରସରି।
ଶାଶୁଙ୍କୁ ଦେଖି ନିବର୍ତ୍ତ ହେଲେ ତିନିବଧୂ
ରୋଦନ ତେଜ୍ୟାକରି ଚରଣେ ନମେ ସାଧୁ।
ତାରାକୁ ନେଇଣ କୌଶଲ୍ୟା କୋଳେଧରି
ମୋହର କୁଳବଧୂ ତୁହି ଅଟୁ ନାରୀ।
ଗୁରସ୍ତ ମଲା ତୋର ମୋର ପୁତ୍ର ହସ୍ତେ
ତେବେ ତୁ କ୍ରୋଧ ଯେ ନୋହିଲୁ ରଘୁନାଥେ।
ମୋର ରାମର କଥା ରଖି ଦିଅର ସନମାନ
ମର୍କଟ ଭାଲୁଙ୍କ ହସ୍ତେ ଦହିଲୁ ଅସୁରସୈନ୍ୟ।
ପୁତ୍ରବଧୂକୁ ଦେଇଣ ତୁ ମୋତେ ତୋଷକଲୁ
ବୃଦ୍ଧ କାଳରେ ମୋତେ ସୁଖ ତୁହି ଦେଲୁ।
ଭଲ ଯୋଗ ଜନନୀ ଜନମ କରିଥିଲା
ବେଳରେ କମଳାର ମାତା ସେ ହୋଇଲା।

ଏତେବାଗେ କଉଶଲ୍ୟା ତୋଷିଲେ ତାଙ୍କ ମନ
ହରଷ ହୋଇଲେ ଶୁଣି ତାରା ରୋମା ପୁଣ।
କୋଳରୁ ଉଠିଣ ସେ ଚରଣ ମଞ୍ଚାଳେ
ଆର ଚରଣକୁ ମଞ୍ଚାଳେ ରୋମା ଭଲେ।
ଜାନକୀ ଉଠିଣ ଦାସୀଙ୍କି ଆଜ୍ଞା ଦେଲେ
ଏ ଦୁଇ ରାଣୀଙ୍କି ମାଜଣା କର ଭଲେ।
ଫୁଲରୀ ଘେନି ସୀତା ମାୟା ସୀତାର ତୁଲେ
ଚାରିବଧୂ ମିଶି ଶାଶୁଙ୍କୁ ମାଜଣା ବିଧିକଲେ।
ତାରା ରୋମା ଜାନକୀ ମିଶି ସ୍ନାନ କଲେ
ସ୍ନାହାନ ସାରିଣ ସର୍ବେ ଭୂଷଣ ଯେ ହେଲେ।
ଭୋଜନରେ ତିନିଜଣ ବସିଲେକ ପୁଣ
କଉଶଲ୍ୟା ବଧୂମାନଙ୍କୁ ପରଶେ ବ୍ୟଞ୍ଜନ।
ତ୍ରିପୁତି ହୋଇଣ ସେ ଆଞ୍ଚୋବନ କଲେ
ବିଡ଼ିଆ ଭାଙ୍ଗିଣ ପଲଙ୍କେ ବସିଲେ।
ଶାଶୁମାନଙ୍କୁ ବ୍ୟଞ୍ଜନ ତିନିହେଁ ପରଶି
ତିନି ବଧୂଙ୍କୁ ଦେଖିଣ ଶାଶୁମାନେ ତୋଷି।
ସେଦିନ ସେ ପୁରରେ ରହିଲେ ମହାଦେଈ
ଆରଦିନ ବସାଘରେ ପ୍ରବେଶ ହେଲେ ଯାଇଁ।
ଏଥୁ ନ୍ନରେ ଶୁଣ ଭଗବତୀ
ସୁଗ୍ରୀବରକୁ ଘେନିଣ ଶ୍ରୀରାମ ଚଳନ୍ତି।
ମାଜଣା ମର୍ଦ୍ଦନ ହେଲେ ଅନ୍ତଃପୁରେ
ସ୍ନାନ ଦେବାର୍ଚ୍ଚନ ହେଲେ ଏକଠାରେ।
ଭୋଜନ କଲେ ସଙ୍ଗ ହୋଇ ଦୁଇଜଣ
କଉଶଲ୍ୟା ଜନନୀ ପରଶି ଦେଲେ ପୁଣ।
ଆଞ୍ଚୋବନ ସାରିଣ ବିଡ଼ିଆ ଭୁଞ୍ଜିଲେ
ଶୀତଳ ପଲଙ୍କରେ ଦୁହେଁ ପହୁଡ଼ିଲେ।
କେତେବେଳ ଉତ୍ତରେ ଭାଗେ ନିଦ୍ରାପୁଣ
ସଭାରେ ବିଜେକଲେ ରାମ ସୁଗ୍ରୀଜାଣ।
ଅଙ୍ଗଦ ମହାନାଦ ସୁକର୍ଣ୍ଣ ସୁବାହୁ
ସ୍ୱୟଂମନୁ ବିଭୀଷଣ ସେନ୍ନାପତି ସବୁ।
ଯୁଥପତି ଅସୁର ଯେ ପରଜାଗଣ ମିଳି
ପାତ୍ର ମନ୍ତ୍ରୀ ସାମନ୍ତ ଅଇଲେ ବେଗକରି।
ବଶିଷ୍ଠ ଅଗସ୍ତି ହେଲେ ପରବେଶ
ଏଥୁ ଅନନ୍ତରେ ଶୁଣ ଦିବ୍ୟ ରସ।
ଗହ ଗହ ସଭା ଯେ ହେଲା ସେହିଠାରେ
ପରଜାଙ୍କ ଗୁହାରୀକି ରାମ ଦୃଷ୍ଟିକରେ।

ନ୍ୟାୟ ଅନ୍ୟାୟ ବୁଝିଣ ପରଜା ବୋଧକଲେ
ଏଥୁ ଅନନ୍ତରେ କଥା ଶୁଣ ଭଲେ ।
ତାରା ସଙ୍ଗେ ସପତଣୀର କୂଳବଧୂ ପୁଣ
ମନ୍ଦୋଦରୀ ସଙ୍ଗେ କୁଳବଧୂ ତିନିଜଣ ।
ଦୋହିତା ତ୍ରିଜଟା ସଙ୍ଗରେ ଘେନିଣ ମନ୍ଦୋଦରୀ
ସପତରାଣୀ ପୁଣି ହେଲେ ଏକମେଳି ।
ନାନାରସରେ ଖେଳ କରନ୍ତି ସେ କେଳି
ଚାରିଦିନ ଉତ୍ତାରୁ ଲକ୍ଷ୍ମଣ ପୁରେ ମିଳି ।
ସନମାନ ପାଇଣ ସେଠାରେ ଦିନେ ରହି
ଆରଦିନ ଭରଥ ନବରେ ହେଲେ ଯାଇଁ ।
ସେଠାରେ ଏକଦିନ ରହିଲେ ସର୍ବନାରୀ
ଆରଦିନ ଶତୃଘନ ନବରେ ଯାଇଁ ମିଳି ।
ସେଠାରେ ଏକଦିନ କଲେ ଖେଳରସ
ଯେ ଯାହା ବସାରେ ଯାଇଁ ହେଲେ ପରବେଶ ।
ଜାନକୀଙ୍କ ସଙ୍ଗରେ ପ୍ରତିଦିନ ଭେଟ
ଖେଳ କଉତୁକ ନାନାରଙ୍ଗରେ ମୁରାଟ ।
ପୂର୍ବର କଥାମାନ ହୁଅନ୍ତି କୁହାକୁହି
ଏମନ୍ତେ ଦଶଦିନ ସେଠାରେ ଗଲାବହି ।
ସପତ ରାଜାଙ୍କୁ ଘେନିଣ ଶ୍ରୀରାମ
ଆପଣାର ପୁରେ ବିଜେ କଲେ ପୁଣ ।
ଖେଳ କଉତୁକ ନାନାରସରେ କଲେ ଲୀଳା
ଲକ୍ଷ୍ମଣ ପୁରେ ମିଳିଲେ ଦଶରଥ ବଳା ।
ସେହିଦିନ ସେଠାରେ କଲେ ରହମାନ
ଆରଦିନ ନନ୍ଦିଗ୍ରାମେ ମିଳିଲେ ରାମ ପୁଣ ।
ଭରଥ ନବରେ ଯାଇଣ ବିଜେ କଲେ
ଷଡ଼ରସେ ବ୍ୟଞ୍ଜନ ଭୋଜନ ସେଥିକଲେ ।
ଆରଦିନ ଶତୃଘନ ନବରେ ମିଳିଲେ
କଳାବତୀ ଜନନୀ ଆସିଣ ଚରଚିଲେ ।
ମର୍ଦ୍ଦନ ମାଜଣା ସମସ୍ତେ ହେଲେ ପରା
ଷଡ଼ରସେ ଭୋଜନ ଜନନୀ ଦିଏ ତୋରା ।
ଭୋଜନ ସାରି ବିଡ଼ିଆ ଲାଗି ହୋଇ ପୁଣ
ସେଠାରୁ ବିଜେ କଲେ ନିଜ ନବରେଣ ।
ଭରତ ଲକ୍ଷ୍ମଣ ଶତ୍ରୁଘନ ତିନି
ଭୁଞ୍ଜନ୍ତି ପକ୍ୱଅନ୍ନ ପରଶେ ସୀତା ଆଣି ।
ଏଥୁ ଅନନ୍ତରେ ପକ୍ଷେ ବହିଗଲା
ପ୍ରତିଦିନ ଚରଚା ସୁମନ୍ତ ଯାଇ କଲା ।

ବଶିଷ୍ଠ ଅଗସ୍ତିଙ୍କି ଘେନିଣ ଶ୍ରୀରାମ
ବିଜେ କଲେ ବାହାର ଜଗତିରେ ପୁଣ ।
ଶ୍ରୀରାମ ପଚାରନ୍ତି ଅଗସ୍ତିଙ୍କି ଚାହିଁ
ପୂର୍ବର ଦିନ କଥା କହ ହେ ଗୋସାଇଁ ।
ବିଷ୍ଣୁରେ ଭଗତ ହୋଇ ଅସୁରେ ହେବରାଗୀ
ଯୁଗେ ଯୁଗେ ଅମର ହେବ ସଉଭାଗି ।
କପିନ୍ଦ୍ର ହୋଇ ରହିବ ଗନ୍ଧମାର୍ଦ୍ଦନ ଗିରି
ବାସୁଦେବ ଦେବତାର ଅନେକ କାର୍ଯ୍ୟକରି ।
ଚନ୍ଦ୍ର, ସୂର୍ଯ୍ୟ ଥିବାଯାଏ ନାନା ବିକାଶିବ
ଏମନ୍ତ ପୁତ୍ର ତୋର ଗର୍ଭରୁ ଜାତ ହେବ ।
ନ କର ନିରାଶ ସମର୍ପ ମୋତେ ଅଙ୍ଗ
ଗାଢ଼େ ପୀନିତ ମୋତେ କରୁଛି ଅନଙ୍ଗ ।
ଗଗନ ମାର୍ଗେ ମୁଁ ଯେ ଭ୍ରମଣ କରୁଥିଲି
ତୋରୂପ ଦେଖଇ ମୁଁ ଯେ ଏଥକୁ ଅଇଲି ।
ତୁ ମୋତେ ନିରାଶ ଗୋ ନକର ସୁନ୍ଦରୀ
ଏତେ ବୋଲି ମରୁତ କନ୍ୟାର ଭୁଜଧରି ।
ମଳୟ ବହିଣ ଆମୋଦ କରାଇଲା
ଦିବ୍ୟରୂପ ଧରିଣ କନ୍ୟାକୁ ମୋହିଲା ।
ଖଡ଼ଦର ଦୋହିତା କଲା ସନମତ
କନ୍ଦର୍ପ ମୋହିଲା ତାହାର ପଞ୍ଚଭୁତ ।
ତୁଷ୍ଟରେ ଅନୁମତ ହେଲା ସେହୁ ଯହୁଁ
ମହା ସୁଖେ ପବନ ରମଣ କଲା ତହୁଁ ।
ବିବିଧ ବିନୋଦରେ ପ୍ରେମରସ ଘେନି
ପଞ୍ଚଶର ପିଡ଼ିଲା ତାଙ୍କର ଦେହ ପୁଣି ।
ପବନ ଦେବଙ୍କର ଖସିଲାକ ଧାତୁ
ପ୍ରମଞ୍ଜନୀ ଗର୍ଭର ରହିଲା ଯାଇଁ ତତୁ ।
ନାଭିକମଳେ ରହିଲା ପବନର ବୀର୍ଯ୍ୟ
ବିନ୍ଦୁକୁ ଆକର୍ଷି ରହିଲା ତାର ରଜ ।
ମାହେନ୍ଦ୍ର ଯୋଗରେ ସେ ହେଲେ ଗର୍ଭବାସ
ଛାଡ଼ିଲା ସୁନ୍ଦରୀ ସୁରତିର ଆଶ ।
ଅନ୍ତର୍ଦ୍ଧାନେ ପବନ ଗଗନ ମାର୍ଗେ ଗଲା
ତକ୍ଷଣେ ପ୍ରଭଞ୍ଜନୀ ସେଠାରୁ ଚଳିଲା ।
ସେ ପୁତ୍ର ଗର୍ଭେ ରହେ ବାର ଯେ ବରଷ
ଗର୍ଭେ ଥାଇ ଚେତାପାଏ ପବନର ଶିଷ୍ୟ ।
ପ୍ରମଞ୍ଜନୀ ଏକଦିନେ ଗର୍ଭକୁ ଚାହିଁ ବୋଲେ
କିପାଇଁ ମୋ ଗର୍ଭରୁ ନୋହୁ ତୁ ବାହାରେ ।

ଗର୍ଭରେ ଥାଇଣ ମାରୁତି ଡାକ ଦେଲା
ପବନ ଦେବତାଙ୍କୁ ସୁମର ବୋଇଲା ।
ପବନ ବଜ୍ର କାଛଟା ଆଣି ଦେଲେ ପୁଣ
ସେ କାଛଟା ଜନନୀର ଗିଳ ଲୋ ବହନ ।
ତେବେ ମୁଁ ଜନମ ଯାଇଁ ହେବି ଭୂମି ତଳେ
ଶୁଣିକରି ଜନନୀ ବିଚାରେ ମନରେ ।
ଆରତ ହୋଇଣ ସେ ପବନ ସୁମରିଲା
ଜାଣିକରି ମରୁତ କପିଳାସ ଗଲା ।
ତ୍ରିଲୋଚନ ଛାମୁରେ ଜଣାଏ ପୁଣ ଯାଇଁ
କାଛଟା ଖଣ୍ଡିଏ ମୋତେ ଦିଅହେ ଉମାସାଇଁ ।
ଜାଣିକରି ଈଶ୍ୱର ବଜ୍ର କାଛଟା ଦେଲେ
ମରୁତ ଘେନିଣ ତା ଚଳିଗଲେ ଖରେ ।
ପ୍ରମଞ୍ଜନୀ ହସ୍ତରେ ନେଇ ଦେଲେ ପୁଣ
ପବନକୁ ସୁମରି ଗିଳିଲା ନାରୀ ଜାଣ ।
କାଛଟାକୁ ଦେଖିଣ ମାରୁତି ପିନ୍ଧିଲା
ଦିନମଣି ଉଦୟକୁ ମାରୁତି ଜନ୍ମ ହେଲା ।
ମାତା ଗୁଣ ଘେନିଣ ସେ କପି ତନୁ ବହି
ମେଷ ସଂକରାନ୍ତି ସେ ଦିନ ଅଟଇ ।
ପ୍ରଭାତ ସମୟରୁ ଜନ୍ମିଲା ମାରୁତି
ପୁତ୍ର ଦେଖି ପ୍ରମଞ୍ଜନୀ ମନରେ କରେ ଭୀତି ।
କାଳ ଦେବତା କି ହେଲା ଅବତାର
ଜନମ ହୋନ୍ତେ ଉଠି ବସିଲା କୁମର ।
ପୁତ୍ର ବୋଲେ ଆଗୋ ମୋର ମାତ
ମୋହର ଶରୀର ତ କ୍ଷୁଧାରେ ଆରତ ।
ମୋତେ ଦିଅ ଆହାର ମୁଁ କରିବି ଗ୍ରାସ
ଶୁଣିଣ ପ୍ରମଞ୍ଜନୀ ପାଇଲା ମନେ ତ୍ରାସ ।
ପଞ୍ଚଭୂତ ଆତ୍ମାରେ ଭାଳେ ସେ ବିଚାରି
ବୋଲେ ଏ ପୁତ୍ର ପବନ ବୀର୍ଯ୍ୟରୁ ଅବତରି ।
ତେଣୁ ଏ ବଳବାନ ତନୟେ ହୋଇଲା
ଜନମ ହେଲାରୁ ଏ ଆହାର ମାଗିଲା ।
ଏବେ ଏ ପୁତ୍ରକୁ ମୁଁ ଘରକୁ ଘେନି ଯିବି
ବନସ୍ତୁଁ ଫଳ ମୂଳ ଆଣି ମୁଁ ଭୁଞ୍ଜାଇବି ।
ଏସନେକ ବୋଲିଣ ପୁତ୍ରକୁ କୋଳେ ଧରି
ବାହାରର ଘରେ ମିଳିଲା ସୁନ୍ଦରୀ ।
ଆଶ୍ରମରେ ବସାଇଣ ଅରନ୍ୟକୁ ଗଲା
ଏହିକ୍ଷଣି ଫଳମୂଳ ଆଣିବି ବୋଇଲା ।
ଏସନେକ ବୋଲିଣ ଗଲାକ ଜନନୀ
ଫଳ ମୂଳ ଘେନିଣ ପ୍ରବେଶ ହେଲା ପୁଣି ।
ଫଳମୂଳ ଦେଖିକରି ବୋଲେ ସେ ପାବେନି
ମୋହର ଗ୍ରାସକୁ ଏ ନିଅଣ୍ଟିବ ପୁଣି ।
ଅନ୍ତରାଳ ହୋଇଣ ଚାହେଁ ଏଣେ ତେଣେ
ଦେଖିକରି ଜନନୀ ମନରେ ଭୟ ଆଣେ ।
ରବିର ଉଦୟ ଯେ ପୂର୍ବର ଦିଗରେ
ରକତ ବର୍ଣ୍ଣ ପ୍ରାୟେ ଶରୀର ଦିଶେ ତାହାରେ ।
ପାଚିଲା ପକ୍ୱଫଳ ଜାଣିଣ ଆଗର
ଜନନୀ ବୋଇଲେ ରେ ଦେଖତୁ କୁମର ।
ଏହି ଫଳକୁ ତୁ କରଯା ଆହାର
ପାରୁ ଯେବେ କୁମର ଚଳ ତୁ ଶୂନ୍ୟ ପୁର ।
ଆହାର ପ୍ରାୟେ ମଣି ଧାଏଁ ସେ ବାଳୁତ
ବିକ୍ରମି ଯାଇ ମିଳି ଆଦିତ୍ୟର ରଥ ।
ନିକଟକୁ ଯାଇଁ ଦେଖେ ଦିନମଣି ପୁଣ
ସେହି ରଥରେ ବସେ ହନୁମାନ ଜାଣ ।
ରବି ବିଚାରିଲେ ମନେ ଶୀଘ୍ରଗତି
ଦେଖ ଅଞ୍ଜନାର ତନୟର ରୀତି ।
ଆଜ ଜନ୍ମିଲା ପୁଅର ହେଲା ଏଡ଼େବଳ
ଯୁବା ହୋଇଲେକି ରଖିବ ଦିଗପାଳ ।
ଶୁଣି ପବନ ଦେବତା ହେଲେ ତାଙ୍କ ଆଗ
ରବିକି ବୋଇଲେ ତୁମ୍ଭେ ନକର ବଇରାଗ ।
ସେ ମୋର ପୁତ୍ର ପ୍ରମଞ୍ଜନୀ ଗର୍ଭୁ ଜାତ
ଗଗନକୁ ବିକ୍ରମେ ସେ କ୍ଷୁଧାର ଆରତ ।
ନପୁଣ ସେ ଆଦିତ୍ୟ ତେଜରେ ପ୍ରାଣ ପାଇ
ଏତେ କହି ପବନ ସୁଶୀତଳେ ବହି ।
ଏଥୁ ଅନନ୍ତରେ ଶୁଣ ରଘୁନାଥ
ଧାଇଁଣ ହନୁମନ୍ତ ବାନ୍ଧେ ରବି ରଥ ।
ସେଦିନ ଅମାବାସ୍ୟା ରାହୁର ଅଟେ ପାଳି
ସେହି ଯାଇଅଛି ସୂର୍ଯ୍ୟଙ୍କୁ ଓଗାଳି ।
ହନୁମନ୍ତକୁ ଦେଖି ରାହୁ ଭୟେ କଲା
ପ୍ରାଣର ବିକଳେ ଭୟରେ ପଳାଇଲା ।
ଇନ୍ଦ୍ରଙ୍କର ଆଗରେ ପଚାରେ ପୁଣ ରାହୁ
ମୁହିଁ ସେ କ୍ଷୁଧାର୍ତ୍ତୀ ହୋଇଲି ହେ ପ୍ରଭୁ ।
ଚନ୍ଦ୍ର, ସୂର୍ଯ୍ୟଙ୍କୁ ତୁ ଯେ ଆହାର କରିଦେଲୁ
ଏବେ ପୁଣ ତାହାକୁ କାହାକୁ ନ କହିଲୁ ।

ବାନର ଗୋଟାଏ ଆଦିତ୍ୟକୁ ଯେ ବାନ୍ଧିଲା
ପୁଣି ଇନ୍ଦ୍ର ଦେବ ମନରେ କ୍ରୋଧ ହେଲା ।
ଐରାବତ ଚଢ଼ି ଅଇଲେ ସରାଗେ
ଯାଇଁଣ ମିଳିଲେ ରାହୁ ଅଛି ସଙ୍ଗେ ।
ବଜ୍ରକରେ ଧରିଣ ବାସବ କୋପ ମନ
ଯାଇଣ ଭେଟିଲେ ସେ ପବନର ନାନ ।
ପକ୍ୱ ଫଳ ବୋଲିଣ ବାନ୍ଧେ ରବିରଥ
ନୁହଇ ବୋଇଲେ ଯେ ଫିଟାଏ ତୁରିତ ।
ଏହି ସମୟରେ ମିଳେ ଯହୁଁ ରାହୁ
ପଛେ ରଥ ଚଢ଼ଇ ସେ ଆସେ ବଜ୍ରବାହୁ ।
ସୂର୍ଯ୍ୟଙ୍କୁ ଚାହିଁ ହନୁ ବିକଳିତ ମନ
ରାହୁକୁ ଦେଖି ଧାଇଁ ପଡ଼ିଲା ବହନ ।
ସର୍ପ ଦେଖି ଯେହ୍ନେ ଝାମ୍ପଇ ନେଉଳ
ତେମନ୍ତ ପ୍ରାୟେ ଧାଏଁ ପବନ କୁମର ।
ଡରରେ ରାହୁ ପଳାଇ ସେଥୁଁ ଗଲା
ଇନ୍ଦ୍ରଦେବ ଠାରେ ସେହୁ ଶରଣ ପଶିଲା ।
ବୋଇଲା ସୁରରାଜା ରକ୍ଷାକର ମୋତେ
ଏହିକ୍ଷଣି ଗିଳିବ ଆସି ତୋର ଐରାବତେ ।
ଜାଣି ଦେବରାଜା ହସ୍ତୀକି ଚାଳି ଦେଲା
ହନୁମାନ ଆଗରେ ଯାଇଣ ମିଳିଲା ।
ବଜ୍ର ଧରିଣ ଯେ ମାରେ ରୋଷଭରେ
ପଡ଼ିଲା ବଜ୍ର ଯାଇ ହନୁର ଅଙ୍ଗରେ ।
ଗାଲ ଉପରେ ଯେ ପଡ଼ିଲା ଯାଇ ତାର
ମୋହଯାଇ ପଡ଼ିଲା ପବନ କୁମର ।
ଜ୍ଞାନଭ୍ରଷ୍ଟ ହୋଇଣ ପଡ଼ିଲା ଗଗନୁ
ପର୍ବତ ଉପରେ ପଡ଼ିଲା ଯାଇ ହନୁ ।
ଦେଖିକରି ପବନ ହେଲା ଯେ ବିକଳ
ଉଚ୍ଚସ୍ୱରେ କାନ୍ଦନ୍ତେ ପଡ଼େ ଅଶ୍ରୁଜଳ ।
ଇନ୍ଦ୍ରକୁ ବୋଇଲେ ତୁରେ ଏଡ଼େ କର୍ମ କଲୁ
ଆଜି ଜନ୍ମିଲା ପୁତ୍ରକୁ ମୋହର ମାଇଲୁ ।
ଧିକ ହେଉ ତୋହର ଦେବରାଜ ପଣ
ଅସୁରଙ୍କ ସଙ୍ଗେ କରରେ ମହାରଣ ।
ଏହାକୁ ନ ଜାଣିବା ପଣରେ ଗଲୁ ମାରି
କେବଣ ଯୋଗେ ହେଲୁ ଦେବଙ୍କ ଅଧିକାରୀ ।
ବଷଦ୍ରୋହୀ କେମନ୍ତେ ତୁ କଲୁରେ ପାପୀଷ୍ଟ
ଅକାରଣେ ମୋତେରେ ଦେଲୁ ପୁତ୍ର କଷ୍ଟ ।
ଏତେ ବୋଲିଣ ସେ ସ୍ତମ୍ଭୀଭୂତ ହୋଇ
ସବୁ ଦେବଙ୍କ ସ୍ଥାନ ମାନ ନିରୋଧଇ ।
ପବନ ନିରୋଧନ୍ତେ ନ ହେଲେ ତିରଣ
ଗରମରେ ଆକୁଳ ହେଲେ ଦେବଗଣ ।
ଜଗତ ବିକଳ ଯେ ଜୀବନ ଥରହର
ବ୍ରହ୍ମାଙ୍କର ଆଗରେ କହିଲେ ସର୍ବ ସୁର ।
ଶୁଣ ହେ ପିତାମହ ପୂର୍ବର କାହାଣୀ
ପବନର ପୁତ୍ରକୁ ମାଇଲା ବଜ୍ରପାଣି ।
ସେ କୋପେ ମରୁତ ଗଗନ ନିରୋଧିଲା
ପୁତ୍ରକୁ କୋଳ ଧରି ଅନେକ ଶୋକକଲା ।
ଜଗତ ଜୀବଜନ୍ତୁ ନାଶିବ ଏକ୍ଷଣି
ପବନ ନ ବହିଲେ ନବର୍ତ୍ତିବେ ପ୍ରାଣୀ ।
ସେଠାରେ ବଳରାମ ଦାସ ଯେ ରହିଣ
ସେବାକରି ଥାଇ ସେ ହନୁର ଚରଣ ।
ହନୁମନ୍ତ ମୋହଯିବା ଶୁଣିଣ ଅଚିନ୍ତ
ବଳରାମ ଦାସ ମୁଁ ଶରଣ ଦଶରଥ ସୁତ ।
ଏଥୁ ଅନନ୍ତରେ ଶୁଣ ରାମରାଣ
ହନୁମନ୍ତର ଜନ୍ମର କଥା ଏମନ୍ତେଣ ।
ଜାଣିଣ ପିତାମହ ସର୍ବଦେବଙ୍କୁ ଘେନି
ସ୍ୱର୍ଗରୁ ଓହ୍ଲାଇ ସେ ଅଇଲେ ତତ୍‌କ୍ଷଣି ।
ବିଧାତାଙ୍କୁ ଦେଖି ପବନ ପୁତ୍ରକୁ ତଳେ ଥୋଇ
ନମସ୍କାର କଲେ ସେ ଶୋକଭର ହୋଇ ।
ପୁତ୍ରର ସମୀପେ ମିଳିଲେକ ବିରଞ୍ଚୀ
କମଣ୍ଡଳୁ ଜଳ କାଢ଼ି ପୁତ୍ରର ମୁଖେ ସିଞ୍ଚୀ ।
ଗତପ୍ରାଣ ପାଇଣ ଉଠିଲା କୁମର
ଦେଖିଣ ନିଃଶ୍ୱାସ ଯେ ବହେ ଦେବଙ୍କର ।
ବ୍ରହ୍ମା ବୋଇଲେ ତୁମେ ଶୁଣ ଦେବଗଣ
ଏପୁତ୍ର ଆମ୍ଭଙ୍କୁ କରିବ ବହୁଗୁଣ ।
ଏପୁତ୍ରରେ ଅନେକ ହେବ ଦେବକାର୍ଯ୍ୟ
ସକଳ ଦେବତାଏ ବର ଦେବା ଆଜ ।
ଶୁଣିଣ ସୁରପତି ଅନେକ ଚିନ୍ତା କଲା
ପୋଡୁ ମୋର ସ୍ୱଭାବ ଯେ ବୋଲିଣ ବୋଇଲା ।
ଜନ୍ମକଲା ପୁତ୍ରକୁ ମାଇଲି ଶହସ୍ର
ପୁତ୍ରର କଷ୍ଟ ମୁଁ ଯେ ଦେଖିଲି ବେନି ନେତ୍ର ।
ବିଧାତା ବୋଇଲେ ହେ ତୋର ନୋହେ କୃତ୍ୟ
ଆଗେ ଦୋଷ କଲା ଯେ ପବନର ସୁତ ।

ଦେବ୍ତା ହେବ ତାଙ୍କର କଶ୍ୟପନନ୍ଦନ
ଅଜ୍ଞାନରେ ବାନ୍ଧିଲା ପୁତ୍ର ହନୁମାନ ।
ସେ ଦୋଷରେ ତୋର ଶହସ୍ରେ ମୋହଗଲା
ପବନ ଭାଇ ତୋର କ୍ରୋଧରେ ଶାପ ଦେଲା ।
ସେ ଦୋଷରୁ ଅସୁର ବାନ୍ଧବ ତୋତେ ଥରେ
ଏତେ ବୋଲି ପ୍ରବୋଧ ହେଲେ ଶଚୀଧରେ ।
ଶୁଣିଣ ଶଚୀପତି ପଦ୍ମକ ମାଳା ଦେଲା
ନେଇଁଣ ଲମ୍ବାଇଲେ ହନୁମନ୍ତ ଗଳା ।
ବୋଇଲେ ବଜ୍ର ପଡ଼ି ଭାଙ୍ଗିଲା ତୋର ଗାଲ
ମାରୁତି ନାମ ତୋର ହେଉରେ ମହାମଲ୍ଲ ।
କଉଣସି ଶସ୍ତ୍ରରେ ନୋହିବୁରେ ହତ
ଆଜଠାରୁ ବଜ୍ରଅଙ୍ଗ ହୁଅରେ ହନୁମନ୍ତ ।
ଅଗ୍ନୀ ବୋଇଲେ ମୋର ଯେ ଦ୍ୱାଦଶ ଗୁଣଅଛି
ଅଂଶେକ ବହୁ ମୋଠାରୁ ପବନର ବଛି ।
ବରୁଣଦେବତା ବୋଇଲେ ଏହାକୁ ମୃତ୍ୟୁ ନୋହୁ
ଯୁଗେ ଯୁଗେ ଏ ଯେ ଅମରତନୁ ବହୁ ।
ଯମ ବୋଇଲେ ଏ ନ ମରୁ କାଳ ଦଣ୍ଡେ
ଆରୋଗ୍ୟ ହୋଇଣ ସେ ଥାଉ ଏ ବ୍ରହ୍ମାଣ୍ଡେ ।
କୁବେର ବୋଇଲେ ଏ ଜିଣିବ ଜଗତ
ମୋହର ଗଦା ଯେ ଥାଉ ଯାର ହସ୍ତ ।
ଈଶ୍ୱର ବୋଇଲେ ତୁ ବ୍ରହ୍ମାଶରେ ନ ମରିବୁ
ବ୍ରହ୍ମା ବୋଇଲେ ତୁ ଅଜ୍ରାମର ହେବୁ ।
ତୋ ଅଙ୍ଗରେ ବଜ୍ରଶର ନକରିବ ଭେଦ
ଆଜଠାରୁ ତୁହି ହେଲୁ କପୀଇନ୍ଦ୍ର ।
ବିଶ୍ୱକର୍ମା ବୋଇଲେ ନ ଭେଦିବ ଅସ୍ତ୍ର
କେଭେ ନାଶ ନୋହିବ ପବନର ସୁତ ।
ସର୍ବ ପୁରେ ଦେବ ତାକୁ ବର ଦେଲେ ପୁଣ
ତେତିଶ କୋଟି ଦେବର ପ୍ରାକର୍ମ ଦେଲେ ଜାଣ ।
ଶୁଣ ପବନ ଦେବ ତୋ ପୁତ୍ରର ମହିମା
ସଭିଙ୍କି ଜିଣିବ ଏ ବୋଲନ୍ତି ଦେବବ୍ରହ୍ମା ।
ତୋର ସମାନରେ ଏ ପ୍ରାକର୍ମ ବହିବ
ଏହାରେ ଦେବ କାର୍ଯ୍ୟ ଅନେକ ହୋଇବ ।
ବାସୁଦେବ ଅବତାର ହେବେ ରାମ ରୂପେ
ରାବଣକୁ ମାରିବେ ସୀତା ନେଲା କୋପେ ।
ସେକାଳେ ପୁତ୍ର ତୋର କରିବ ଦେବକାର୍ଯ୍ୟ
ଏତେ କହିଣ ଗଲେ ଦେବ କୁଶଧ୍ୱଜ ।

ଦେବତାଙ୍କୁ ଘେନିଣ ବିଧାତା ସ୍ୱର୍ଗ ଗଲେ
ସ୍ନେହରେ ପବନ ଯେ ପୁତ୍ରକୁ କୋଳକଲେ ।
ଅଞ୍ଜନା ସନ୍ନିଧକୁ ଗଲେ ତାକୁ ଘେନି
ପବନ ବୋଇଲେ ତୁ ଶୁଣରେ କାମିନୀ ।
ପୁତ୍ର ତୋର ସୂର୍ଯ୍ୟଙ୍କୁ ଜିଣିଲା ଆଜ ହେଳେ
ଇନ୍ଦ୍ର ଆସି ବଜ୍ର ଯେ ମାଇଲେ ତାକୁ ବଳେ ।
ମୁଖରେ ଶର ବାଜନ୍ତେ ପଡ଼ିଣ ମୋହଗଲା
ମୋର ଶୋକ ଦେଖିଣ ବିଧାତା ଦୟାକଲା ।
ସବୁ ଦେବତାଏ ମିଳିଣ ବର ଦେଲେ
ଆଜଠାରୁ ହନୁମନ୍ତ ନାମ ଦେଇ ଗଲେ ।
ଏବେ ଏ ପୁତ୍ରକୁ ଯେ ସମ୍ଭାଳ ତୋହର
ଏତେକହି ଅନ୍ତର୍ଦ୍ଧାନ କଶ୍ୟପ କୁମର ।
ପୁତ୍ରକୁ କୋଳେ ଧରି ବସିଲେ ପ୍ରମାଞ୍ଜନୀ
ମୁଖରେ ଚୁମ୍ବଦେଇ ସ୍ନେହଭାବ ଘେନି ।
ଏମନ୍ତେ କେତେକ ସେ ଦିନ ବହିଗଲା
ହନୁମନ୍ତର ବଳ ଅସଂଖ୍ୟ ପୁଣ ହେଲା ।
ବନସ୍ତେ ତପଶିଣ ସେ ମୋର ମତ୍ତହସ୍ତୀ ।
ସିଂହର ପାଦଧରି ବୁଲାଏ ଊର୍ଦ୍ଧ୍ୱଗତି
ମୃଗ ଶୂକର ମାରେ ସେ ନାନା ବର୍ଣ୍ଣରେ ଜନ୍ତୁ
ବନବାସୀଙ୍କି ଦେଖିଲେ ଦିଏ ତାଙ୍କୁ ମୃତ୍ୟୁ ।
ଋଷିଙ୍କର ମଢ଼ୀଆ ଯେ ଭାଙ୍ଗଇ ମାରୁତି
ଛଡ଼ାଇ ନେଇଣ ସେ ଚିରଇ ବେଦ ପୋଥି ।
ବେଳୁଁ ବେଳ ଅନ୍ୟାୟ ସେ କରଇ ବହୁତ
ଅସୁରଙ୍କୁ ଖୋଜି ସେ ମାରଇ ବନସ୍ତ ।
ବିଦେଶୀ ଲୋକଙ୍କର ଛଡ଼ାଇ ନିଏ ଦ୍ରବ୍ୟ
ପକ୍ୱଦ୍ରବ୍ୟ ଖାଇଣ ସେ ଉଜାଡ଼ କରେ ସର୍ବ ।
ଏ କଥା ଜାଣିଣ ଯେ ମିଳିଲେ ମରୁତ
ବିଚାରିଲା ଏ ପୁତ୍ରତ ହେଲା ବଳବନ୍ତ ।
ପୁତ୍ରକୁ କୋଳେ ଧରି ମରୁତ ତିଆରି
କିମ୍ପାଇଁ ବାବୁ ତୁ ଅନ୍ୟାୟ କରୁଛୁ ବିଚାରି ।
ଧର୍ମକଲେ ପ୍ରାପତ ହୁଏ ଶୁଭକର୍ମ
ଅନ୍ୟାୟ କଲେ ତାକୁ ନ ସହେ ପୁଣ ଧର୍ମ ।
ତପବଳେ ଦେବତାଏ ସନ୍ତୋଷ ସୃଷ୍ଟି କରି
ତପର ବଳେ ତପୀ ଦେବତା ସଙ୍ଗେସରି ।
ତପ ନ କଲେ ବାବୁରେ ନୋହେ ରାଜ୍ୟସୁଖୀ
ତପ ତେଜ୍ୟାକଲେ ମୁନି ଦେବତା ହୋନ୍ତି ଦୁଃଖୀ ।

ଅନ୍ୟାୟ ଉପଦ୍ରବ ତୁ କେଭେ ନ କରିବୁ
ଯେମନ୍ତେ ନାରାୟଣଙ୍କୁ ଦର୍ଶନ ପାଇବୁ ।
ଏତେକହି ପବନ ଯେ ଅନ୍ତର୍ଦ୍ଧାନେ ଗଲେ
ତିଆରିଲା ବୋଲ ହନୁମନ୍ତ ଯେ ନ କଲେ ।
ବଳରେ ପ୍ରବଳ ହେଲା ସେ ବନସ୍ତେ
ମଢ଼ୀଆ ଭାଙ୍ଗି ଦୁଃଖ ଦିଏ ଅପ୍ରମିତେ ।
କୁଶମନ୍ତ୍ର ପୋଥି ଆଧାରୀ ଗୋଟି ନେଇ
ଜଳର ଭିତରେ ନେଇ ସେମାନେ ପକାଇ ।
କୋପରେ ଋଷିମାନେ ବୋଲନ୍ତି ବଚନ
ବାପ ତିଆରିଲା ବୋଲ ନ କଲା ହନୁମାନ ।
ଥୋକେକାଳ ଦେହ ତୋର ନିର୍ବଳ ଯେ ହେଉ
ଅକାରଣ ସମୟରେ ପ୍ରାକର୍ମ ତୋର ନୋହୁ ।
ଦେବ କାର୍ଯ୍ୟରେ ତୁହି ସାମରଥ ହୁଅ
ଏବେ ତୋର ବଳବପୁ ପ୍ରାକର୍ମ ହେଉ କ୍ଷୟ ।
ତତକ୍ଷଣେ ହନୁ ନିର୍ବଳ ପୁଣି ହେଲା
ତପୀଙ୍କର ଶାପରେ ବଳ ତାର ଗଲା ।
ତପୀମାନେ ବୋଲନ୍ତି ଶୁଣରେ ମାରୁତି
ରାମଙ୍କୁ ଦେଖିଲେ ତୋ ବଳ ହେଉ ଉଗ୍ରମୂର୍ତ୍ତି ।
ତେତିଶ କୋଟି ଦେବଙ୍କ ପ୍ରାକର୍ମ ବହିବୁ
ରାମାୟଣ ଯୁଦ୍ଧେ ତୁ ସାମର୍ଥ ବୋଲାଇବୁ ।
ତାଙ୍କରି ଶାପରେ ତୋତେ ବଳ ହେବ ହୀନ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ରଘୁରାଣ ।
ତେଜ ବଳହୀନ ଯେ ହେଲା ହନୁମନ୍ତ
ଶାନ୍ତି ହୋଇ ରହିଲା ପବନର ସୁତ ।
କିଷ୍କିନ୍ଧ୍ୟା ନଗ୍ରରେ କାଶୀଶ୍ୱରେ ବୋଲି ରାଜା
ଖଡ଼ଗ ନୃପତି ଯେ ଅଟେ ତା ତନୁଜା ।
ଖଡ଼ଗ ନୃପତି ପୁଣି ପିତାର ନିଧନେ
ସେ ରାଜ୍ୟରେ ନୃପତି ହେଲେ ବିଦ୍ୟମାନେ ।
ବାଳି ସୁଗ୍ରୀ ଖଡ଼ଗ ନୃପତିର ସୁତ
କାଳେଣ ବାଳିକି ରାଜା ତହିଁ ସେ କଲାତ ।
ସୁଗ୍ରୀକି ଯୁବରାଜା ପଣରେ ଶାଢ଼ୀ ଦେଲା
ଖଡ଼ଗ ନୃପତି ଯେ ସ୍ୱର୍ଗକୁ ଚଳିଗଲା ।
କାଳେଣ ଦଇବ ଦୁର୍ଯ୍ୟୋଗ ପୁଣି ଘେନି
ଅଜ୍ଞାନ ପଣେ ଯେ ହେଲେ ଅନ୍ୟାଅନି ।
ବାଳିର ଭୟେ ଯେ ସୁଗ୍ରୀ ପଳାଇଲା
ଋଷି ମୁଖ ପର୍ବତରେ ଯାଇଣ ଲୁଚିଲା ।

ସେଠାରେ ହନୁମନ୍ତ ହୋଇଲେ ସେ ସାହା
ବୋଲନ୍ତି ଅଗସ୍ତୀ ଋଷି ଶୁଣ ରାମ ନାହା ।
ସୁଗ୍ରୀବର ଭାରିଜାକୁ ବାଳି ଯେ ହରିଲା
ସେ ଦୋଷରୁ ତୁମ୍ଭ ହସ୍ତେ ମରଣ ପାଇଲା ।
ପୂର୍ବର କଥାମାନ କହିଲି ତୁମ୍ଭ ଆଗେ
ରାବଣ ହନୁମନ୍ତର ଜନ୍ମ ଯେବଣ ବାଗେ ।
ଶୁଣିଣ ରାମଚନ୍ଦ୍ର ମୁନିଙ୍କ ମୁଖ ଚାହିଁ •
ଆହୁରି କଥାଏକ ଯେ ପଚାରିବି ମୁହିଁ ।
ରାବଣ, କୁମ୍ଭକର୍ଣ୍ଣ, ବିଭୀଷଣ, ଇନ୍ଦ୍ରଜିତ ବୀରପଣ
ଶୁଣିଣ ସନ୍ତୋଷ ହେଲା ମୋର ମନ ।
ବୀରବାହୁ ସ୍ଥୁଳ ଜଙ୍ଘ ଅକ୍ଷୟେ ରାବଣ
ଏମାନେ ସାମର୍ଥ ଯେ ଅଟନ୍ତି ଯୁଦ୍ଧେ ପୁଣ ।
ଅଗସ୍ତି ବୋଇଲେ ଶୁଣ ଚାପଧାରୀ
ରାବଣ ସାନପୁଅ ଅକ୍ଷୟ ନାମ ତାରି ।
ଯେତେବେଳେ ଜନମ ହୋଇଲା ସେ ପୁତ୍ର
ଦଶଶିର ତାର ନାମ ଦେଲା ଅକ୍ଷୟତ ।
କପାଳେ ବିହି ତାର ଲେଖି ଦେଲା ପୁଣ
ବୋଇଲେ ଏ ପୁତ୍ର ଅମର ହେବ ଜାଣ ।
ତ୍ରୀଦଶ ଦେବତା ଦଶ ଦିଗ ପାଳ
ଏମାନଙ୍କ ସଙ୍ଗରେ ଯେ ହେବ ଅବତାର ।
ପବନ ହେବ ପିତା ମାତା ତା ବାନରୀ
ଦଶଦିଗ ପାଳ ତ୍ରୀଦଶ୍ୟ ଆଦି କରି ।
ସମସ୍ତଙ୍କ ଅଂଶ ତାର ଅଙ୍ଗରେ କରି ଠୁଳ
ସେ ଜନ୍ମ ହେଲେ ମାରିବ ଅକ୍ଷୟ କୁମର ।
ଏମନ୍ତେ ବିଚାର ବିହି କପାଳେ ଲେଖିଦେଲା
ଦୁଇ ଫାଳ ଯେ କରିବ ମରିବ ବୋଇଲା ।
ଏଥୁ ଅନନ୍ତରେ ଶୁଣ ଚାପଧାରୀ
ଅତି ଯତ୍ନେ ରାବଣ ସେ କୁମରକୁ ପାଳି ।
ଦ୍ୱାଦଶ ବରଷ କୁମରକୁ ଯହୁଁ ହେଲା
ତାହାର ହୃଦୟରେ ଜ୍ଞାନ ଉପୁଜିଲା ।
ମନ୍ଦୋଦରୀ ଜନନୀକି କହିଲା ସେ ରାଣୀ
କେଉଁ ଦେବତାଙ୍କୁ ମୁଁ ମନାସିବି ପୁଣି ।
ଜନନୀ ବୋଲେ ପୁତ୍ର ତୁ ସୁମର ଦିନମଣି
ବିରଞ୍ଚି ନାରାୟଣଙ୍କୁ ମନାଅ ଯାଇ ପୁଣି ।
ସେ ତୋତେ ବର ଦେଲେ ହେବୁ ତୁ ଅମର
ଶୁଣି କରି କୁମର ବୋଲେ ଯେ ଉତ୍ତର ।

କେଉଁ ସ୍ଥାନେ ତପକଲେ ହେବେ ପରସନ୍ନ
ମନ୍ଦୋଦରୀ ବୋଲେ ଚଳ ଜମ୍ବୁ ଦ୍ୱୀପେ ଜାଣ ।
ଚନ୍ଦ୍ରଭାଗା ନଦୀ କୂଳେ କର ତୁ ଯାଇଁ ତପ
ରବିଙ୍କ ଉଦୟ ସ୍ଥାନ ଅଟେ ସେ ନିୟତ ।
ସେ ସ୍ଥାନେ ତପ କଲେ ସୂର୍ଯ୍ୟଙ୍କୁ ଭେଟ ପାଇ
ତାହା ଶୁଣି କୁମର ବେଗ୍ରରେ ଚଳିଯାଇଁ ।
ଅର୍କ ତୀର୍ଥରେ ଯାଇଁ ହେଲା ପରବେଶ
ତହିଁ ବସି ତପ କଲା ରାବଣ ସାନ ଶିଷ୍ୟ ।
ଶତେକ ବରଷ ନିଷ୍ଠଳେ ତପ କଲା
ତେବେ ବିରଞ୍ଚିଙ୍କର ହୃଦରେ ଦୟା ହେଲା ।
ବିରଞ୍ଚି ବୋଇଲେ ପୁତ୍ର ତୁ ବେଗେ ମାଗ ବର
ଅକ୍ଷୟ ବୋଲେ ଦେବ ହେ କର ଅଙ୍ଗୀକାର ।
ମୋତେ ଅମର ବର ଦେବ ହେ ଗୋସାଇଁ
ତୁମ୍ଭେ ଥିବା ତକ ମୁହିଁ ଥିବି ରହି ।
ଶୁଣିଣ ଦିନମଣି ବୋଲନ୍ତି ବଚନ
ମର୍ତ୍ତ୍ୟ ପୁରେ ଜନ୍ମି ଅମର ନୋହି ପୁଣ ।
ତେତିଶ କୋଟି ଦେବ ଦଶ ଦିଗପାଳ
ଏ ଅଂଶ ଧରି ଯେ ହୋଇଥିବ ଅବତାର ।
ସବୁ ଦେବତାଙ୍କ ବଳ ସେହୁ ବହିଥିବ
ଦେବଙ୍କର କାର୍ଯ୍ୟରେ ସେ ଜାତ ହୋଇବ ।
ମାତା ତାର ବାନରୀ ପୁତ୍ର ତା ବାନର
ସେହି ତୋତେ ମାରିବ ଶୁଣରେ କୁମର ।
ବେନି ଫାଳ କରି ଚିରିବ ଯେତେବେଳେ
ତେବେ ତୁ ମୃତ୍ୟୁ ପାଇବୁ ତାହାର ହସ୍ତରେ ।
ଏତେ ବୋଲି ବିରଞ୍ଚି ଗୋଟିଏ ଲିଙ୍ଗ ଦେଲେ
ଏ ଲିଙ୍ଗକୁ ତୁରେ ଗିଳଟି ବୋଇଲେ ।
ଶୁଣି କରି ବୀର ଲିଙ୍ଗକୁ ଦେଲା ଗିଳି
ଶତେ ସିଂହର ବଳ ପ୍ରାକର୍ମ ହେଲା ତାରି ।
ଓଳଗି ମେଲାଇଣ କୁମର ଚଳିଗଲା
ଲଙ୍କା ଗଡ଼ରେ ଯାଇଁ ପ୍ରବେଶ ବେଗେ ହେଲା
ଜନନୀ ଆଗରେ ତାର ଯାଇଣ ମିଳିଲା ।
ଶୁଣି କରି ମନ୍ଦୋଦରୀ ମନେ ଶୀତଳ ହେଲା ।
ସେ କୁମରକୁ ହନୁ ସମରେ ନାଶିଲା
ଦୁଇ ଫାଳ କରିଣ ଚିରି ପକାଇଲା ।
ରାବଣର ଶତେ ନାତି ତିନି ପୁତ୍ର କୁମାରୀ
ଅନେକ ସୈନ୍ୟବଳ ମାରୁତି ସଂହାରି ।

ଯେଉଁ ପ୍ରାଣ ଲିଙ୍ଗକୁ ବିରଞ୍ଚି ଦେଇଥିଲେ
ସେ ଲିଙ୍ଗକୁ ହନୁ ଗର୍ଭକ କ୍ଷେପିଲେ ।
ଶ୍ରୀରାମ ବୋଇଲେ ତାର କଥା ଶୁଣିଲଇଁ
ସ୍ଥୂଳ ଜଙ୍ଘ କଥା କହ ହେ ମୁନି ଫେଇ ।
ଅଗସ୍ତି ବୋଲନ୍ତି ସେ କଥା ଏବେ ଶୁଣ
ରକ୍ତବୀର୍ଯ୍ୟ ଝିଅ ସ୍ଥୂଳ ଜଙ୍ଘ ମାତା ଜାଣ ।
ଜନ୍ମ ହୋଇ ଶତେ ବରଷ ବହିଗଲା ।
ବାର ଆଙ୍ଗୁଳି ଲମ୍ବରେ କୁମର ଅଟେ ପରା ।
ଭୂମିରେ ଚାଲନ୍ତେ ତାର ହୋଏ ନାଟ ଗତି
ସକଳ ଅସୁରେ ଦେଖି ହାସ୍ୟ କରୁଥାନ୍ତି ।
ସେ ପୁତ୍ର ମାତାକୁ କହଇ ଏକଦିନେ
ଏତେ ଛୋଟରେ ଜନ୍ମିଲି ମୁଁ ତୋର ଭୁବନେ ।
ଯାହାକୁ ମନାଇ ମୁଁ ହେବି ଯେ ବଳିଷ୍ଠ
ଜନନୀ ବୋଲେ ପୁତ୍ର ତୁ ବହନ ହୋଇ ଉଠ ।
ଜମ୍ବୁଦ୍ୱୀପ ନର୍ମଦା କୂଳରେ ତପର
ଅଗ୍ନୀ ଦେବତାଙ୍କୁ ତୁ ମନାଇ ମାଗ ବର ।
ସେ ତୋତେ କାରଣ କରିବେ ପୁତ୍ରମଣି
ତାହାର ବରେ ତୁ ଯେ ସବୁଙ୍କୁ ପାରୁ ଜିଣି ।
ଶୁଣିଣ କୁମର ବେଗ୍ରରେ ଚଳିଗଲା
ନର୍ମଦା କୂଳରେ ସେ ତପ ବସି କଲା ।
ଶତେ ବରଷକେ ଅଗ୍ନି ହେଲେ ପରବେଶ
ସ୍ଥୂଳ ଜଙ୍ଘକୁ ଦେଖି ହେଲେ ସେ ହରଷ ।
ବୈଶ୍ୱାନର ବୋଲନ୍ତି ଶୁଣରେ କୁମର
ଶତେ ସିଂହ ବଳ ବହତୁ ହୃଦୟର ।
ନାରାୟଣ ମାନବରେ ଜନମ ହୋଇବେ
ମୋହର ଶରରେ ସେ ତୋତେ ବିନାଶିବେ ।
ବଇକୁଣ୍ଠ ପୁରେ ତୋତେ ନେଇ ଠାବ ଦେବେ
ଅସୁର ଜନ୍ମରୁ ପାରି ହେବୁ ତୁହି ତେବେ ।
ଏତେ କହି ବୈଶ୍ୱାନର ଅନ୍ତର୍ଦ୍ଧାନେ ଗଲେ
ସେଠାରୁ ସ୍ଥୂଳ ଜଙ୍ଘ ଲଙ୍କାରେ ମିଳିଲେ ।
ଶତେ ହାତ ଉଚ୍ଚ ଯେ ହେଲା ସେହୁ ପୁଣ
ବଳିଷ୍ଠ ପଣେ ସେ ନ ମାନେ କାହାକୁ ପୁଣ ।
ଏକଦିନେ ରାବଣ ତାର ବଳ କଷି
ବୋଇଲା ସ୍ଥୂଳ ଜଙ୍ଘରେ ଜମ୍ବୁଦ୍ୱୀପକୁ ଯାସି ।
ନିର୍ବାତ କପଟଙ୍କୁ ମୁହିଁ ଯୁଦ୍ଧେ ହାରି
ତୀଅନ୍ତା ଧରି ଆଣ ଯାଇ ତୁ ବେଗ କରି ।

ଶୁଣିଣ ସ୍ଥୁଳ ଜଙ୍ଘ ବେଗେ ଚଳିଗଲା
ନିର୍ବାତକୁ ଗଉରବ ଗିରି ତଳେ ଭେଟିଲା ।
ସତର ବରଷ ପରିଯନ୍ତେ କଲେ ଯୁଦ୍ଧ
ନିର୍ବାତ କପଟକୁ ଜଣେ ଦୈତ୍ୟ ରାଜ ।
ଧରି କରି ନେଲା ସେ ଲଙ୍କା ଭୁବନକୁ
ଦେଖିକରି ରାବଣ ପ୍ରଶଂସା କଲା ତାକୁ ।
ଏହି ସମୟରେ ନିର୍ବାତ ଦୋହିତା
ରଥେକ ଚଢ଼ିଣ ଚଳେ ସେ ବନୀତା ।
ଲଙ୍କାରେ ପ୍ରବେଶ ହେଲା ଯାଇଁ କରି
ସବୁ ଅସୁରଙ୍କୁ ମୋହ କଲା ସେହୁ ନାରୀ ।
ଇନ୍ଦ୍ରଜିତ କୁମରକୁ ସେ କନ୍ୟା ବିଭା ହେଲା
ବନ୍ଧୁପଣ କରି ନିର୍ବାତ ଫେରି ଗଲା ।
ସେ ସ୍ଥୁଳଜଙ୍ଘ ମଲା ତୁମ୍ଭର ଅଗ୍ନିଶରେ
ସୁବଳ ଗିରି ପରେ ଯୁଦ୍ଧ ତୋ ସଙ୍ଗରେ ।
ଶୁଣି କରି ରାମ ବଚନ କହନ୍ତି
ବିଚାରିଣ କଥାଏ କହ ମୁନି ପାଖି ।
ଅଗସ୍ତି କହନ୍ତି ତୁମ୍ଭେ ଶୁଣ ରାମଚନ୍ଦ୍ର
ମଂଷାସୁର ଦୋହିତାକୁ ବିଭା ଦଶଗ୍ରୀବ ।
ସେ କନ୍ୟା ଗର୍ଭରୁ ବୀରବାହୁ ଜାତ
ଜନ୍ମ ହେବାରୁ ବାର ବର୍ଷେ ପାଏ ତତ୍ୱ ।
ମାତାକୁ ବୋଇଲା ମୁଁ କାହାକୁ ମନାଇବି
କେଉଁ ଦେବଙ୍କୁ ମନାଇଲେ ସିଦ୍ଧାନ୍ତ ହୋଇବି ।
ଜନନୀ ବୋଇଲେ ବାସୁଦେବକୁ ମନାଅ
ବୈକୁଣ୍ଠ ପ୍ରାପତ ହେବ ତୋତେ ପୁଅ ।
ଏ ସଂସାର ଗୋଟି ଅଟେ ମିଥ୍ୟା ବୋଲି ଜାଣ
ବାସୁଦେବଙ୍କୁ ଦେଖିଲେ ହେବୁରେ କାରଣ ।
ବ୍ରହ୍ମଶରେ ଯେବେ ତୋତେ ନାରାୟଣ ମାରି
ଅସୁର ଜନ୍ମରୁ ତରି ଯିବୁ ତୁ ସ୍ୱର୍ଗ ପୁରୀ ।
ଶୁଣି କରି କୁମର କପିଳାସ ଗଲା
ବୟାଳିଶ ଯୁଗ ଯାଏ ନାରାୟଣଙ୍କୁ ଭଜିଲା ।
ତେବେ ସେ ମୃତ୍ୟୁ ତୋହର ହସ୍ତରେ ପାଇ
ସ୍ୱର୍ଗରେ ରହଇ ସେ ଗନ୍ଧର୍ବ ରୂପ ହୋଇ ।
ଇନ୍ଦ୍ରଜିତକୁ ସେ ବିଧାତା କହିଥିଲା
ଅନନ୍ତ ହସ୍ତେବଧ ତୋ କପାଳେ ଲେଖିଦେଲା ।
କାଳେ ସେ ଅନନ୍ତ ଲକ୍ଷ୍ମଣ ରୂପେ ଜାତ
ଚଉଦ ବର୍ଷ ପର୍ଯ୍ୟନ୍ତେ ଆହାର ନାହିଁ ସୁସ୍ଥ ।
ସ୍ତିରୀସଙ୍ଗ ନୋହିଲା ଦେବଙ୍କ କୂଟରେ
ଅନିଦ୍ରା ହେଲା ତୁମ୍ଭ ଘରଣୀ ଜଗିବାରେ ।
ବେଳେ ଲକ୍ଷ୍ମଣ ତାକୁ କଲେକ ବିନାଶ
ବଜ୍ରଧର ବୀର୍ଯ୍ୟରେ ସେ ଗନ୍ଧର୍ବ ପୁରୁଷ ।
ଅଚିନ୍ତା ଅମର ପୁରରେ ସେ ରହିଲା
ଶୁଣିକରି ରାମ ସନ୍ତୋଷ ମନ ହେଲା ।
ଶ୍ରୀରାମ ବୋଲନ୍ତି ଶୁଣ ହେ ମୁନିବର
ମହୀରାବଣ କଥା କହ ମୋ ଆଗର ।
ମୁନି ବୋଇଲେ ସେ ଇନ୍ଦ୍ରଜିତର କୁମର
ନିର୍ବାତ କପଟର ଅଟେ ସେ ନାତି ସାର ।
ରାବଣର ନାତି ଆଗରେ ସେ ହୁସିଆର
ତେର ଶତ ନାତିରୁ ଜ୍ୟେଷ୍ଠନାତି ତାର ।
ରାବଣକୁ ସେହୁ ନାତି ଜଣାଏ ପୁଣ ଯାଇ
କାହାକୁ ତପକରି ସେ ମନାଇବି ମୁହିଁ ।
ଦଶଗ୍ରୀବ ବୋଇଲା ତୁ ବ୍ରହ୍ମାଙ୍କୁ ସୁମର
ସେ ଅଟନ୍ତି ଆମ୍ଭ କୁଳର ଗୁରୁସାର ।
ଶୁଣିକରି କୁମର ବ୍ରହ୍ମାଙ୍କୁ ଲୟେ କଲା
ଗଙ୍ଗାକୂଳେ ସାତଯୁଗ ତପରେ ବସିଲା ।
ଆସନ କରିଣ ଗଙ୍ଗା କୂଳରେ ରହି
ସାତଯୁଗରେ ବ୍ରହ୍ମା ପ୍ରସନ୍ନ ହେଲେ ଯାଇଁ ।
ବୋଇଲେ ନିର୍ଭୟ ତୁ ହୁଅରେ କୁମର
ଛନ୍ଦ କପଟ ଯୁଦ୍ଧରେ ଜିଣ ତିନିପୁର ।
ତୋତେ ବଳି ମାୟାରେ ଯେ ନଜିଣିବେ କେହି
ମାୟାରେ ମୋହ ତୁ ଯେ କରିବୁ ସବୁଙ୍କୁହିଁ ।
ମହୀରାବଣ କହେ ମୃତ୍ୟୁର ଭେଦ କହ
ବ୍ରହ୍ମା ବୋଲେ ଦେଖିଲେ ବାସୁଦେବଙ୍କ ପ୍ରିୟ ।
ଅନିଦ୍ରା, ଆହାର, ମୈଥୁନ ଶୂନ୍ୟ ଯାର
ଚଉଦ ବରଷ ଯାଏ ପାଳିବେ ଯେ ନର ।
ଅନନ୍ତ ମୂରତିରେ ମାନବ ଜାତ ହେବ
ତାଳଧ୍ୱଜ ରଥଚଢ଼ି ତୋତେ ସେ ନାଶିବ ।
ପଦ୍ମଭୁଅ କରିଣ ତାକୁ ତୁ ଘେନିଯିବୁ
ତେବେ କ୍ରୋଧ ତୋଠାରେ ହେବରେ ବାବୁ ।
କ୍ରୋଧ ହେଲେ ତୋତେରେ କରିବେ ସେ ନାଶ
ଏତେ କହି ବେଦବର ହେଲେ ଯେ ଅଦୃଶ୍ୟ ।
ସେଠାରୁ ମହୀରାବଣ ବେଗେ ଚଳିଗଲା
ଲଙ୍କାଗଡ଼ରେ ସେ ପ୍ରବେଶ ବେଗେ ହେଲା ।

ଏମନ୍ତେ କିଛିଦିନ ଗଲା ତହିଁ ବହି
ରାବଣ ମନରେ ବିଚାର କରେ ତହିଁ ।
ନିର୍ବାତ କପଟକୁ ସ୍ଥୂଳଜଙ୍ଘ ଜିଣି
ବରଷେ ଜିଣିମାରୁ ନୋହେ ସରି ପୁଣି ।
ତାକୁ ଯୁଦ୍ଧରେ ସ୍ଥୂଳଜଙ୍ଘ ଧରି ଆଣି
ନିଉନରେ ଦୋହିତା ଯାଚିଦେଲା ପୁଣି ।
ଅକ୍ଷୟ କୁମର କୁଶଦ୍ୱୀପ ଗଲା
ସେ ପୁରେ ଦୁଇଲକ୍ଷ ନୃପତି ଜିଣିଲା ।
ଇନ୍ଦ୍ରଜିତ ଜିଣିଲା ସୁରଗଣ ପୁଣ
ପାତାଳ ମଞ୍ଜିଜିଣି ଯେ ହେଲି ମୁଁ କାରଣ ।
ମେଘନାଦ କୁମର ମହୀ ଯେ ରାବଣ
ଏହାର ବଳଦେଖି ପରକ୍ଷିବା ପୁଣ ।
ସୁଲଙ୍କା, ଜ୍ୟୋତିଲଙ୍କା, ଦୁଇଗଡ଼ ପୁଣ
ସଉକେଶା, ନଉକେଶା ଦୁଇଭାଇ ଜାଣ ।
ତାଙ୍କର ସଙ୍ଗରେ ସେ ସତର ଯୁଗ ଯୁଝି
କେବେହେଁ ନପାରିଲି ଅଇଲି ବଳ ବୁଝି ।
ସେଗଡ଼କୁ ଦେଖି ଭେଦିବା ଏହୁ ନାତି
ଜିଣି ପାରିଲେ ସେଥିରେ କରିବା ନୃପତି ।
ଏତେ ବୋଲି ମହୀ ଯେ ରାବଣ ଡାକେ କତି
ଯାଅରେ ସୁଲଙ୍କା ଜ୍ୟୋତି ଲଙ୍କାକୁ ତଡ଼ତି ।
ଜିଣିଲେ ସେ ପୁରେ ତୁ ହେବୁ ନୃପବର
ନୋହିଲେ ମୃତ୍ୟୁ ତୋର ସେହୁ ଯେ ଗଡ଼ର ।
ଶୁଣିଣ ମହୀରାବଣ ଭାଇକି ସଙ୍ଗେ ଘେନି
ସୁଲଙ୍କା ଗଡ଼େ ଯୁଦ୍ଧ କଲା ଯାଇଁ ପୁଣି ।
ସତର ବରଷରେ ଦୁହିଁଙ୍କି ସେ ମାଇଲା
ଅନେକ ମାୟାଯୁଦ୍ଧ ସେଥିରେ ଆରମ୍ଭିଲା ।
ଜାଣିଣ ଦଶଗ୍ରୀବ ଇନ୍ଦ୍ରଜିତ ଗଲେ
ମହୀରାବଣଙ୍କୁ ସେଥିରେ ରଜାକଲେ ।
ସେ ଦୁଇ ଅସୁରଙ୍କର ଲକ୍ଷେକ ଦୋହିତା
ମହୀରାବଣକୁ ବିଭା କରାଏ ତାର ପିତା ।
ସେ କନ୍ୟା ଘେନି ମହୀରାବଣ ସେଥିରହି
ଦୁଇ ପିତା ତାର ଲଙ୍କାଗଡ଼କୁ ଯାଇ ।
ସେଥିରେ ସାତଗଣ୍ଡା ଯୁଗ ବହିଗଲା
ସତରଗଣ୍ଡା ପୁତ୍ର ତାଠାରୁ ଉପୁଜିଲା ।
ସହସ୍ରେକ ନାତିରୁ ପଞ୍ଚାଶ ଊଣା ତାରେ
ବିଚାରିଲେ ରାବଣ ମୋଠାରୁ ବଡ଼ ଏରେ ।

ସେ ମହୀରାବଣକୁ ଲକ୍ଷ୍ମଣ ନାଶକଲେ
ଦଶଗ୍ରୀବ ତାର ନାମ ଏକ ମୁଖା ଦେଲେ ।
ସେ ଜ୍ୟୋତି ଲଙ୍କାରେ ନାଦକୁ ରକ୍ଷାକଲୁ
ସୁଲଙ୍କା ଗଡ଼କୁ ସୁବାହୁ କୁମରକୁ ଦେଲୁ ।
ଅଠରଗଣ୍ଡା କୁମର ତେ଼ରଶତ ନାତି
ବରପାଇ ସବୁପୁରେ ଉଗ୍ରରେ ଭ୍ରମନ୍ତି ।
ଉତ୍କଳ ହେବାରୁ ଦୁଇଭାଇ ହସ୍ତେ ମଲେ
ଅଷ୍ଟସେହ୍ନା ପଚିଶ ଯୁଥପତିଙ୍କ ତୁଲେ ।
ପୁଅ ଗୋଟିକରେ ପୁତୁରା ଗୋଟିଏ
ଭାଇରୁ ଗୋଟିଏ ତାର ନାତିହିଁ ଗୋଟିଏ ।
ଏମନ୍ତେ ଚାରିଜଣ ସେ କୂଳରୁ ବର୍ତ୍ତି
ଆଉ ସର୍ବେ ଗଲେ ସଞ୍ଜୀବନୀ ଦେଖି ।
ପଦ୍ମବନ ଯେହ୍ନେ ସେ ଘୋଟେ ପୁଷ୍କରିଣୀ
ତେମନ୍ତ ପ୍ରାୟେ ଦୈତ୍ୟ ସେପୁରେ ହେଲେ ପୁଣି ।
ପଦ୍ମବନେ ଯେସନେ ପଶେ ମତ୍ତହସ୍ତୀ
ପଦ୍ମକୁ ନିକାତି ସେ ଆସଇ ଉପରକୁ ଉଠି ।
ସେହିରୂପେ ଅସୁର ସାୟରେ ପଶିଲେ
ଧନୁ ନାରାଜ ଧରି ଯେ ଅସୁର ମନ୍ଥିଲେ ।
କ୍ଷୀର ସାୟେରକୁ ମନ୍ଥିଲାର କାଳେ
ଅନେକ ପଦାର୍ଥ ଉପୁଜାଇଲେ ସେ ବେଳେ ।
ସେ ପଦାର୍ଥ ଦେବେ ସ୍ୱର୍ଗକୁ ଘେନିଗଲେ
ଅମେଧ ପଦାର୍ଥକୁ ଅସୁରେ ଭୋଗ କଲେ ।
ସେ ଦେବ ପଦାର୍ଥ ରହିଲା ତିନିଲଙ୍କା
ଦେବଙ୍କ ଆୟେ ନଦେଲୁ ଦେବେ କଲେ ଶଙ୍କା ।
ଅନୁକ୍ଷଣ ମନରେ ଚିନ୍ତନ୍ତି ଦେବଗଣ
ବିଚାରନ୍ତି ବାସୁଦେବ ଜନମ ହେଲେ ପୁଣ ।
ଅସୁରଙ୍କ ଭୟରୁ ଆମ୍ଭଙ୍କୁ ପାରିକଲେ
ଆମ୍ଭର ଦ୍ରବ୍ୟ କିମ୍ପାଇ ସେ ନ ଦିଆଇଲେ ।
ପିତୃଲୋକେ ତୋର କରନ୍ତି ଚିନ୍ତା ପୁଣ
ଆମ୍ଭର କଥାତ ଲଙ୍ଘିଲେ ନାରାୟଣ ।
ଅରନ୍ୟକ ରାଜାକୁ ରାବଣ ମାରିଥିଲା
ତେତେବେଳେ ସେ ରାଜା ଅସୁରେ ଶାପ ଦେଲା ।
ଷୋଳଯୁଗ ଯାଏ ନକରିବୁ ଦର୍ଶନ
ସେ କଥା ତୁମ୍ଭର ଯେ ହେଉଅଛି ଆନ ।
ଶୁଣିଣ ଶ୍ରୀରାମ ଯେ ମନରେ ହେଲେ ଦୁଃଖୀ
ଗୁପତେ ତାହା ସେ ହୃଦପଦ୍ମେ ରଖି ।

ଅଗସ୍ତି ବୋଇଲେ ଆମ୍ଭେ ଯାଉଛୁଁ ନିଜସ୍ଥାନ
କେତେଦିନ ରହିଲୁଁ ଯେ ତୁମ୍ଭର ଭୁବନ ।
ପୂର୍ବର କଥାମାନ ଯେ କହିଲି ତୋର ଆଗେ
ରାବଣ ହନୁମନ୍ତ ଜନ୍ମ ଯେଉଁ ବାଗେ ।
ଶୁଣିକରି ରାମ ହରଷ ମନ କଲେ
ଉଠିଣ ଅଗସ୍ତିଙ୍କୁ ନମସ୍କାର ହେଲେ ।
ଆବର ଯେତେ ଥିଲେ ଋଷିଗଣ ମାନ
ତାହାଙ୍କୁ ବିନୟ ଯେ ହେଲେ ରଘୁନାନ ।
ଧନବସ୍ତ୍ର ଦେଇଣ ଅନେକ ପୂଜାକଲେ
ଆଜ ମୋତେ ଧନ୍ୟ କଲ ସେ ବୋଇଲେ ।
ବ୍ରହ୍ମଋଷିମାନେ ମିଳିଲେ ମୋର ପୁରୀ
କେବଣ ପୁନ୍ୟ କରିଥିଲେ ରଘୁଧାରୀ ।
ଉପର ବଂଶ ପୁନ୍ୟରେ ଅଇଲେ ମୁନିମାନେ
ପାଦରେଣୁ ପକାଇଲେ ଅଯୋଧ୍ୟା ଭୁବନେ ।
ଶୁଣିଣ ଋଷିମାନେ ରାମଙ୍କୁ ପ୍ରଶଂସି
ସାଧୁ ସାଧୁ ମହିମା ହେ ଦଶରଥ ଶିଷି ।
ଯୁବାକାଳେ ତୋର ଏଡ଼େକ ବିବେକ
ତୋତେ ପଟାନ୍ତର ନାହାନ୍ତି ତ୍ରୈଲୋକ୍ୟ ।
ବାବୁ ମହିମା ତୁମ୍ଭର ହେ ଦଶରଥ ବଳା
ସମୁଦ୍ରେ ବନ୍ଧ ବାନ୍ଧି ପଥର କଲ ଭେଳା ।
ବନଜୀବ ଋକ୍ଷ ବାନର ବଶ କଲ
ଦେବେଣ ଅଜୟ ଦୈତ୍ୟଙ୍କୁ ମାଇଲ ।
ସୁରଗଣମାନଙ୍କୁ ଦେଲ ସ୍ୱର୍ଗ ଭୋଗ
ତୋହର ଦେବତାଏ ପାଇଲେ ହବିର୍ଭାଗ ।
ତୁମ୍ଭେ ରାମ ତ୍ରୈଲୋକ୍ୟ ଈଶ୍ୱର ରଘୁମଣି
ବ୍ରହ୍ମାଣ୍ଡ ଠାକୁର ଯେ କୋଦଣ୍ଡ କାଣ୍ଡ ପାଣି ।
ହେ ରାମ ତୁ ଆମ୍ଭଙ୍କୁ ସୁଦୟା କରିଥିବୁ
ଆମ୍ଭେ ତୋତେ ତ୍ରିସନ୍ଧ୍ୟାରେ କଲ୍ୟାଣ କରିବୁଁ ।
ଏତେ ବୋଲି ପୁଣି ଶଙ୍ଖଧ୍ୱନି କଲେ
ରଘୁନାଥଙ୍କ ଶିରରେ ଆଶୀର୍ବାଦ ଦେଲେ ।
ଯୁଗେ ଯୁଗେ ରାଜ୍ୟ ତୁମ୍ଭେ କର ହେ ରଘୁବଂଶି
ଯିବେ ବୋଲି ଉଠିଲେ ସକଳ ମହାଋଷି ।
ନଗ୍ରରୁ ବାହାର ତୋର ଗଲେ ସେ ତୁରିତ
ପଛରେ ଗୋଡ଼ାଇଲେ କମଳାର କାନ୍ତ ।
ଥୋକାଏ ଦୂରରେ ଯେ ରହିଲେ ମୁନିମାନେ
ରାମଙ୍କୁ ମୁନି ବୋଲନ୍ତି ବାହୁଡ଼ ରଘୁନାନେ ।
ଇନ୍ଦ୍ରକୁ ଜିଣିଣ ତୁମ୍ଭେ ଅଟ ରଘୁବୀର
ତୁମ୍ଭେ କିମ୍ପା ଆମ୍ଭଙ୍କୁ ଗୋଡ଼ାଅ ଏତେ ଦୂର ।
ବାହୁଡ଼ି ଯାଅ ବୋଲି ମୁନି କଲ୍ୟାଣ ତାଙ୍କୁକଲେ
ସେଠାରୁ ରାଘବ ଲେଉଟିଣ ଅଇଲେ ।
ନିଜ ନଗ୍ରରେ ରାମ ପରବେଶ ହେଲେ
ବାହାର ବେହରଣ ଉପରେ ବସିଲେ ।
ବୋଲନ୍ତି ରଘୁନାଥ ସୁମନ୍ତଙ୍କୁ ଚାହିଁ
ଆଜ ସରଯୁରେ ସ୍ନାନ କରିବାକୁ ଯାଇଁ ।
ଏମନ୍ତ ସମୟରେ ହେଲେ ଶୁଚିବନ୍ତ
ସନ୍ଧ୍ୟା ସୁମରିଲେ ତହିଁ ଜାନକୀର କାନ୍ତ ।
ଭରତ, ଲକ୍ଷ୍ମଣ, ଶତ୍ରୁଘନ ତୁଲେ
ବଶିଷ୍ଠଙ୍କୁ ବୋଇଲେ ଯାଅ ହେ ମୁନି ଭଲେ ।
ତିନିଭାଇ ମାତାଗଣଙ୍କୁ ବେଗେ ଘେନି
ସରଯୁ ଗଙ୍ଗାକୂଳେ ଚଳ ତୁମ୍ଭେ ପୁଣି ।
ରାଜ୍ୟରେ ଧେଣ୍ଡୁରା ଫେରାଏ ରାମରାଣ
ସରଯୁ ଗଙ୍ଗା କୂଳକୁ ଚଳନ୍ତୁ ସର୍ବେ ଜାଣ ।
ବିଭୀଷଣ, ସୁକର୍ଣ୍ଣ, ସୁବାହୁ, ସ୍ୱୟଂମନୁ ରାଇ
ବୋଇଲେ ସରଯୁ ଚଳିଯାଅ ବେଗହୋଇ ।
ନାଦ ସୁଗ୍ରୀବ ଅଙ୍ଗଦ ପବନ କୁମର
ଏମାନଙ୍କୁ ବୋଇଲେ ଚଳ ଧାଡିକାର ।
ଅଷ୍ଟସେହ୍ନା ପଞ୍ଚଶ ଯୁଥପତି ତୁଲେ
ସମସ୍ତେ ଚଳିଯାଅ ସରଯୁ ଗଙ୍ଗାକୂଳେ ।
ଜାନକୀ ମାୟାସୀତା ମାତାଗଣ ଘେନି
ଆଗରେ ଚଳିଗଲେ ରାମଚନ୍ଦ୍ର ପୁଣି ।
ବଶିଷ୍ଠ, ସୁମନ୍ତ, ସାୟନ୍ତନୁ ପାତ୍ରମନ୍ତ୍ରୀ
ନଗ୍ରର ନରନାରୀ ସମସ୍ତେ ଚଳିଯାନ୍ତି ।
ଚତୁରାଙ୍ଗବଳ ଆଗପଛରେ ଗଲେ
ନିଶାଣ ଶବଦରେ କୁରୁମ ଉଛୁଳିଲେ ।
ତାରା ବିଜେ କଲେ ଘେନି ମାତା ଯେ ମାନଙ୍କୁ
ରଥପରେ ବସି ଚଳେ ସରଯୁ ଗଙ୍ଗାକୁ ।
ଘରଣୀମାନଙ୍କୁ ଯେ ସଙ୍ଗତରେ ଘେନି
ଆନନ୍ଦରେ ଚଳନ୍ତି ସକଳ ସଇନି ।
ସୁଗ୍ରୀବର, ଅଙ୍ଗଦ ସଙ୍ଗରେ ନାରୀ ଘେନି
ଚଳିଲେ ସରଯୁ ଗଙ୍ଗାକୁ ବେଗେ ପୁଣି ।
ବିଭୀଷଣ, ସୁକର୍ଣ୍ଣ, ସୁବାହୁ, ମହାନାଦ ଗଲେ
ସଙ୍ଗରେ ଯେଝାନାରୀ ଘେନିଣ ଚଳିଲେ ।

ତ୍ରିଜଟାକୁ ଘେନିଣ ଚଳେ ସ୍ୱୟଂ ମନୁ
ସରଯୁ ଗଙ୍ଗାକୂଳେ ମିଳି ସର୍ବେ ତେଣୁ ।
ନବର ଶୂନ୍ୟ ହେଲା ଗଙ୍ଗାରେ ସର୍ବେ ଗୁଣ୍ଡ
ପାଞ୍ଚଘଡ଼ି ସମୟରେ ଗଙ୍ଗାର ସମ୍ପଦ ।
ଯୋଗବଳେ ବାରିଣ ବଶିଷ୍ଟ କହିଲେ
ଗୁହନାମେ ଶବର ଯେ ଆସିଣ ମିଳିଲେ ।
ବାଦ୍ୟ ନିଶାଣ ରାମତାଳି ଶବଦ ହରିବୋଲ
ବାଜଣାର ଶବଦେ ଚମକେ ଗଙ୍ଗାକୂଳ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ସମସ୍ତଙ୍କର ମନ ଆନନ୍ଦରେ ସେ ପୂରି ।
ଅସୁର ନର ବାନର କନ୍ଧ ଯେ ଶବର
ଋଷିଙ୍କି ଘେନିଣ ଗଙ୍ଗାକୂଳରେ ହେଲେ ମେଳ ।
ଗଙ୍ଗାକୂଳରେ ଥାଟ ଅତିହିଁ ଚହଳ
ବାଦ୍ୟର ଘୋଷରେ ନ ଶୁଭେ କହିବାର ।
ସ୍ୱର୍ଗରୁ ପୁଷ୍ପ ବୃଷ୍ଟି କରନ୍ତି ଅପକ୍ଷରୀ
ଆନନ୍ଦେ ଦେବତା ଯେ ପୁଷ୍ପ ବୃଷ୍ଟି କରି ।
ଧନ୍ୟ ଶ୍ରୀରାମ ତୁମ୍ଭେ ହେ ଶିରେ ଦ୍ୟନ୍ତି କର
ଦରଶନେ ନରମାନେ ବିହରେ ଗଙ୍ଗାକୂଳ ।
ଗଙ୍ଗାକୂଳେ ଯୁବତୀଏ ହୁଳହୁଳି ଦ୍ୟନ୍ତି
ଆଜ ସରିକି ରାମଙ୍କୁ ଦେଖିଲୁ ବୋଲନ୍ତି ।
ଅଭିଷେକ କାଳେ ଯେସନେକ ହୋଏ ପ୍ରଭା
ତେସନେକ ସଂଜାତ ଗଙ୍ଗାକୂଳରେ ଶୋଭା ।
ଶ୍ରୀରାମ ସଙ୍ଗରେ ସକଳେ ପାନ୍ତି ଶୋଭା
ଅନ୍ନବସ୍ତ୍ର ପାଣି ପଣା ଦିଅନ୍ତି ଗଙ୍ଗାକୂଳ ପ୍ରଭା ।
ମାଗିବାର ଲୋକଙ୍କୁ ଦିଅନ୍ତି ଅବିଛିନ୍ନ
ସାବଧାନେ ସଦାବର୍ତ୍ତ ଦିଅନ୍ତି ରଘୁନାନ ।
ସମସ୍ତଙ୍କଠାରେ ଶ୍ରୀରାମର ଦୟା
କେହି ଯେ କାହାକୁ ନ କରନ୍ତି ସେଥି ମାୟା ।
ଅଭିଷେକ କାଳେ ବନ୍ଦାଏ ଯେତେ ନାରୀ
ସେ ବେଶ ସମସ୍ତଙ୍କର ଅଙ୍ଗରେ ସେହିପରି ।
ରୂପରେ ସୁନ୍ଦର ପୁଣି ଯୁବା ଯେ ବୟସ
ସ୍ୱର୍ଗର ଅପସରୀ କି ଜାଣି ସାଦୃଶ୍ୟ ।
ସଭିଏଁ ନାଗରୀ ଯେ ଜାଣନ୍ତି ରତୀନୀଳା
ପୁରୁଷମାନେ ଶୃଙ୍ଗାର ରସରେ ଅନର୍ଗଳା ।
ଆଖିର ଛଟକରେ ଠରାଠରି ପୁଣି
କହିବାର ଭଙ୍ଗୀ ଯେ ଜାଣନ୍ତି ସ୍ତିରୀ ପୁଣି ।

କେ କାଖେ ହସ୍ତ ଦେଇ କେ ମୁଖେ ମୁଖ ଦ୍ୟନ୍ତି
ଗୋଡ଼ ଆଙ୍ଗୁଠି ମାରିକେ ସମ୍ବାଦ କରନ୍ତି ।
ଧନ୍ୟରେ ଗରୁହଂସୀ ଯେ ସମ୍ପଦେ ଗରୁ ପାଇ
ବୟସରେ ସୁନ୍ଦର ଯଉବନ ଭାରି ହୋଇ ।
ରାମ ରାଜନଙ୍କୁ ନ କରେ ସେ ଭୟେ
ତେଣୁ ପ୍ରମଦା ମାନେ କାମରେ ମତ୍ତ ମୟେ ।
ହସ୍ତୀ ଦଣ୍ଡ ଭିତରେ ପଶିଲେ ଧଂସାଇ
ଦେଖିକରି ଆନନ୍ଦ ରଘୁକୁଳ ସାଇଁ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ସକଳ ବିଧି ସାରି ରାମ ଗଙ୍ଗାରେ ବିଜେକରି ।
ଗଙ୍ଗାରେ ପଶି ରାମ କରନ୍ତି ସ୍ନାହାନ
ସମସ୍ତେ ସ୍ନାନ କଲେ ଶ୍ରୀରାମ ସଙ୍ଗେ ପୁଣ ।
ଜନନୀ ମାନେ ବେଶ ହୋଇଣ ସ୍ନାନ କଲେ
ଜାନକୀ ତିନିଭଗ୍ନୀ ତାରା ମନ୍ଦୋଦରୀ ତୁଲେ ।
ତ୍ରୀଜଟାର ସଙ୍ଗରେ ଅଙ୍ଗଦ ଘରଣୀ
ମହାନାଦ ଘରଣୀ ସୁବାହୁ ନାରୀ ପୁଣି ।
ସୁକର୍ଣ୍ଣ ଘରଣୀ ଘେନିଣ ମେଳ ହେଲେ
ଶାଶୁଙ୍କ ସଙ୍ଗରେ ସର୍ବେ ଗଙ୍ଗା ସ୍ନାନକଲେ ।
ଏହି ରୂପେ ସକଳ ନାରୀ ସ୍ନାନ ସାରି
ଅମଳାଣ ଶାଢ଼ୀମାନ ପିନ୍ଧିଲେ ଆସିକରି ।
ତାରାବତୀ, ମନ୍ଦୋଦରୀ, ସୁବାହୁ ଘରଣୀ
ଜାନକୀଙ୍କି ତିନିଜଣ ଧଇଲେ ଯାଇ ପୁଣି ।
ଜଳକ୍ରୀଡ଼ା ବିନୋଦ ଗଙ୍ଗାରେ କରନ୍ତି
ଜାନକୀଙ୍କି ତିନିଜଣ ପିଚିକା ମାରନ୍ତି ।
ଜାନକୀ ତିନିଭଗ୍ନୀ କରନ୍ତି ତହିଁଗୋଳ
ଦାସୀ ଘେନି ପିଚିକା ମାରି ଜଳସ୍ଥଳ ।
ଏମନ୍ତେ ଘଡିଏ ସେହୁ ଜଳକ୍ରୀଡ଼ା କଲେ
ଶୀତଳ ହେବାରୁ ସେ କୂଳକୁ ଉଠିଲେ ।
ଯେ ଯାହା ଦାସୀ ଆଣି ଦେଲେ ଝୀନବାସ
ଶ୍ରୀଅଙ୍ଗମାନ ପୋଛି ଛଡ଼ାଏ କଲୁଷ ।
ତିନିଭଗ୍ନୀ ଘେନିଣ ସୀତୟା ବେଶ ହେଲେ
ଏଥୁ ଅନନ୍ତରେ ଶୁଣ ଗୋ ତୁମ୍ଭେ ଭଲେ ।
ତ୍ରିଜଟା ମହାନାଦ ସୁକର୍ଣ୍ଣ ଅଙ୍ଗଦ ନାରୀ
ଏ ଘରି ଶ୍ରୀରାମ ଜନନୀଙ୍କ ସଙ୍ଗେ ମିଳି ।
କୌଶଲ୍ୟା, କୈକେୟୀ, ସୁମିତ୍ରା କଳାବତୀ
ଏମାନଙ୍କୁ ଘେନିଣ ଯେ ଗଙ୍ଗାରେ ପଶନ୍ତି ।

ଶ୍ରୀରାମଙ୍କ ଜନନୀ ସଙ୍ଗରେ କରେ ଲୀଳା
ଜଳ ହାବୁକା ପିଚିକା ମାରନ୍ତି ଅବଳା ।
ଏମାନେ ଅଟନ୍ତି ଯୁବା ରାମ ଜନନୀ ବୃଦ୍ଧା ପୁଣି
ଖେଳ ରସରେ ହାରିଲେ ରାମମାତା ପୁଣି ।
ଜାନକୀଙ୍କ ଆଗରେ ଦାସ କହେ ପୁଣ
ମନ୍ଦୋଦରୀ ତିନିବଧୂ ଦୋହିତା ତାର ଜାଣ ।
ସକଳେ ମେଳହୋଇ ଶାଶୁଙ୍କୁ ତୋରମାରି
ଶୁଣି କରି ଜାନକୀ ହସିଣ ତାଙ୍କୁ ବୋଲି ।
ସେ ବଧୂ ଦୋହିତାଙ୍କୁ ଘେନିଆସ ବେଗ
ତାଙ୍କ ଶାଶୁମାନଙ୍କ ସଙ୍ଗରେ କର ସଙ୍ଗ ।
ଶୁଣିଣ ଦାସୀଗଣ ବେଗେ ଚଳିଗଲେ
ଜାନକୀ କହିବା କଥା ତାହାଙ୍କୁ କହିଲେ ।
ଶୁଣିଣ ସେମାନେ ଯେ ଅଇଲେ ବେଗକରି
ଯେ ଯାହା ଶାଶୁମାନଙ୍କ ପାଖରେ ବିହରି ।
ଏଥୁ ଅନନ୍ତରେ ସମସ୍ତେ ସ୍ନାନକରି
ସେ ଦିନ ରଜନୀରେ ରହିଲେ ଗଙ୍ଗା ଘେରି ।
କେଉଁମାନେ କଲେ ଯେ ରାନ୍ଧଣା ବିଧିପୁଣ
କେଉଁମାନେ ଭୋଜନ କଲେ ଜଳପାନ ।
କେଉଁମାନେ ଶୀତଳ ମଣୋହି ପୁଣ କଲେ
ପାତ୍ର ମନ୍ତ୍ରୀ ସାମନ୍ତ ଉତ୍ତମ ଭୁଞ୍ଜିଲେ ।
ଶ୍ରୀରାମଙ୍କ ସଙ୍ଗରେ ରାଜାମାନେ ପୁଣ
ଅମୃତ ଭୋଜନେ ସନ୍ତୋଷ କଲେ ମନ ।
ଚନ୍ଦ୍ରଦୀପ ଦିହୁଡ଼ି ମାନ ସେହୁଜାଳି
ଉଜାଗରେ ଗଙ୍ଗା କୂଳେ ହରଷେ ରାତ୍ରହରି ।
ପ୍ରଭାତରୁ ଗଙ୍ଗାକୁ ଦର୍ଶନ କରି ଚଳି
ଚତୁରାଙ୍ଗ ବଳ ଯେ ଗଙ୍ଗାକୂଳକୁ ଫେରି ।
ବାଦ୍ୟର ନିଶାଣ ଯେ ଦୁନ୍ଦୁଭୀ ଗରଜନ
ସ୍ୱର୍ଗ ମଞ୍ଚ କମ୍ପଇ ଯେ ଶବଦ ଗରୁଟାଣ ।
ଅପକ୍ଷରୀ କିନ୍ନରୀ ଯେ ଆଗରେ ନୃତ୍ୟକରି
ଶ୍ରୀରାମ ବିଜେକଲେ ଅଯୋଧ୍ୟା ନଗ୍ରପୁରୀ ।
ଆଲମ୍ବ ପାଟଛତ୍ର ବିଲମ୍ବ ଉଦଣ୍ଡ ଘେନି
ନାନାଦି ସମ୍ଭର୍ବରେ ରାମ ବିଜେ ପୁଣି ।
ଯେ ଯାହା ଯାନରେ ବସିଣ ଚଳିଗଲେ
ଆଗରେ ରାମତାଳି ହରି ଶବଦ କରେ ।
ନନ୍ଦୀଗ୍ରାମରେ ଯାଇଁ ହେଲେ ପରବେଶ
ସେ ଗ୍ରାମରେ ରସେ ଦିନ ରହିଲେ ବିଶେଷ ।

ମର୍ଦ୍ଦନ ମାଜଣା ହୋଇ ସ୍ନାନ ସନ୍ଧ୍ୟା କଲେ
ଦେବାର୍ଚ୍ଚନ ନୀତି ରାଜାଏ ସାରିଲେ ।
ଜାନକୀ ପାକରେ ଭୁଞ୍ଜିଲେ ସର୍ବଲୋକ
ବିପ୍ରମାନେ ପରଶିଲେ ଆନନ୍ଦିତ ଚିତ୍ତ ।
ସେ ଦିନ ସନ୍ତୋଷରେ ରହିଲେ ସର୍ବଜନ
ଆଉଦିନ ଅଯୋଧ୍ୟାକୁ କଲେ ସେ ଗମନ ।
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ବରୀ
ରାମଚନ୍ଦ୍ର ଯାଇଣ ନବରେ ବିଜେକରି ।
ପୁଷ୍ପକ ବିମାନରୁ ଉତୁରି ବିଜେ କଲେ
ମର୍ଦ୍ଦନ ମାଜଣାରେ ସ୍ନାନ ପୁଣି କଲେ ।
ଦେବାର୍ଚ୍ଚନ ନୀତି ଯେ ସାରିଲେ ରାମ ରାଣ
ସାମନ୍ତ ପାତ୍ର ମନ୍ତ୍ରୀ ଗଲେ ଯେ ଯାହାସ୍ଥାନ ।
ଚତୁରାଙ୍ଗ ବଳ ପରଜା ଗଲେ ପୁଣ
ନରନାରୀ ମିଳିଲେ ଯେ ଯାହା ଘରେ ଜାଣ ।
ବିଭୀଷଣ ସୁଗ୍ରୀବର ସମସ୍ତେ ଚଳିଗଲେ
ରାଣୀଙ୍କି ଘେନିଣ ବସାଘରରେ ମିଳିଲେ ।
ଜନନୀମାନେ ନିଜପୁରେ ହେଲେ ପରବେଶ
ତିନିଭଗ୍ନୀ ସୀତା ଘେନି ମନ୍ଦିରେ ପ୍ରବେଶ ।
ସ୍ନାହାନ ନିତ୍ୟକର୍ମ ସମସ୍ତେ ସାରିଲେ
ରାଜାମାନେ ତିଳକ ଲାଗି ପୁଣ ହେଲେ ।
ଯେ ଯାହା ଗୃହରେ କଲେକ ଭୋଜନ
ଏଥୁ ଅନନ୍ତରେ ଗୋ ଶାକମ୍ବରୀ ଶୁଣ ।
ଜାନକୀ ତିନିଭଗ୍ନୀ ଘେନିଣ ସ୍ନାନକଲେ
ଝୀନ ବସନ ପିନ୍ଧି ପାକ ସମ୍ପାଦିଲେ ।
ତିନିଭାଇ ଘେନିଣ ରାମଚନ୍ଦ୍ର ପୁଣି
ଅନ୍ତଃପୁରେ ବିଜେକଲେ ମଣୋହିରେ ପୁଣି ।
ଜାନକୀ ପରଶିଲେ ଭୁଞ୍ଜିଲେ ଚରିଭାଇ
ଆଞ୍ଚୋବନ ସାରିଣ ବିଡ଼ିଆ ଲାଗି ହୋଇ ।
ପଲଙ୍କ ଶୁପାତିରେ ନିଶ୍ଚିନ୍ତେ ନିଦ୍ରାଗଲେ
ଏଥୁ ଅନନ୍ତରେ ସୀତା ଭୁଞ୍ଜିଣ ବସିଲେ ।
ତିନିଭଗ୍ନୀ ଘେନିଣ କଲେକ ଭୋଜନ
ଆଞ୍ଚୋବନ ସାରିଣ ବିଡ଼ିଆ ଭୁଞ୍ଜିପୁଣ ।
ପଲଙ୍କ ଉପରେ ଅଳସେ ନିଦ୍ରାଗଲେ
ସମସ୍ତେ ଭୁଞ୍ଜିଣ ସନ୍ତୋଷ ମନ କଲେ ।
ଜନନୀମାନେ ସର୍ବେ କଲେକ ଭୋଜନ
ରାଜାଗଣ ମାନେ ମଣୋହି କଲେ ପୁଣ ।

ଉଠିଣ ଦାଶରଥୀ ମୁଖ ପଖାଳିଲେ
ବାହାର ଜଗତୀରେ ଅବକାଶ ହେଲେ ।
ବେଳ ଅସ୍ତ ହେବାରୁ ସନ୍ଧ୍ୟା ସୁମରିଲେ
ଶୟନ ମନ୍ଦିରେ ଯାଇ ପଲଙ୍କେ ମିଳିଲେ ।
ନଟବର ବେଶ ହୋଇ ଅଇଲେ ଜାନକୀ
ଯେସନେ ଚନ୍ଦ୍ରମା ନିଶାରେ ଉଇଁ ଆସି ।
ସ୍ୱାମୀଙ୍କର ଚରଣରେ ନମସ୍କାର କଲେ
ଦୁଇ ଚରଣ ଧରି ମଞ୍ଚାଳିଲେ ସେ ବେଳେ ।
ସେଠାରୁ ଶ୍ରୀରାମ ଯେ ଜାନକୀ ଭୁଜଧରି
ଜାଣିଣ ପଟାନ୍ତର ମଦନ ରତି ପରି ।
ବିବିଧ ବିନୋଦରେ ଶେଷ ହେଲା ରାତି
ପୂର୍ବଦିଗେ ପାଣ୍ଡୁର ଦିଶିଲାକ ବାଛି ।
ରାଜାଗଣେ ଯେ ଯାହାର ସୁଖରେ ଶୋଇଥିଲେ
ପରଜାଗଣେ ସୁଖେ ରାତ୍ରି କଟାଇଲେ ।
ଜନନୀମାନେ ଯେ ଯାହା ସୁଖରେ ନିଦ୍ରା ଯାଇ
ତିନିଭାଇ ଯେ ଯାହା ନାରୀ ଘେନି ଶୋଇ ।
ନାନା ହାସ୍ୟ ରସରେ ପୁହାଇଲେ ରାତି
ରାତ୍ରି ପାହି ଯିବାରୁ ସମସ୍ତେ ହୋଇ ଚେତି ।
ଅରୁଣ ଉଦୟ ଯେ ହୋଇବାରୁ ପୁଣ
ସମସ୍ତେ ଚେତାପାଇ ଉଠିଲେ ବହନ ।
ଏଥୁ ଅନନ୍ତରେ ତୁମ୍ଭେ ଭଗବତୀ ଶୁଣ
ସାରେଣୀ ବୀଣା ଯନ୍ତ୍ର ବାଦ୍ୟ ବାଜେ ପୁଣ ।
ଚତୁରଙ୍ଗ ବଳ ସିଂହଦ୍ୱାରେ ସଜ
ତୁଣ୍ଡର ଗହଳରେ ପୂରେ ନଗ୍ର ଦାଣ୍ଡ ।
ପୁରଜନମାନେ କଲେ ନାଟ ଗୀତ
ଧନାଶ୍ରୀ ରାଗରେ ମୋହି ରାମଚନ୍ଦ୍ର ଚିତ୍ତ ।
ବାଳିକି ମାରିବା ସମୁଦ୍ର ତରିଯିବା
ରାବଣକୁ ମାରି ବିଭୀଷଣକୁ ରାଜ୍ୟ ଦେବା ।
ମହୀରାବଣ ଶତେମୁଖା ମାରିବାର ପୁଣ
ସହସ୍ରମୁଖାକୁ ସୀତା କରିବା ନିଧନ ।
ସୁକର୍ଣ୍ଣ, ସୁବାହୁ, ସ୍ୱୟଂ ମନୁ ଯେ ତ୍ରିଜଟା
ମହାନାଦ କୁମର ରାବଣ ଦୈତ୍ୟ ବେଟା ।
ଅଲଙ୍କା ବିଲଙ୍କା ସୁଲଙ୍କା ଜ୍ୟୋତିଲଙ୍କା
ଏତେ ପୁରେ ରାଜାକଲେ ରାମ ଜଗଜିତା ।
ଦକ୍ଷିଣ ମହୋଦଧି ଉତ୍ତର କୁଳେ ପୁଣ
ରାମେଶ୍ୱର ନାମେ ଧାମ କଲେକ ଭିଆଣ ।

ଅଯୋଧ୍ୟା ଅଭିଷେକ ଦେବ ଅସୁରେ ଆସି
ନର ବାନର ଭାଲୁ କନ୍ଧ ଶବର ମିଶି ।
ଜାନକୀ ଘେନିଣ ସୁଖରେ ବିଳସିବା
ତିନିପୁରେ ବିଖ୍ୟାତ ରାମର ମହିମା ।
ଏମାନ ଗୀତକରି ଗାଏ ନାଟକାରୀ
ଆନନ୍ଦ ହେଲେ ଶୁଣି କୋଦଣ୍ଡ ଚାପଧାରୀ ।
ଏଥୁ ଅନନ୍ତରେ ଶୁଭେ ଶଙ୍ଖଧ୍ୱନି
ଜାଣିଲେ ଶ୍ରୀରାମ ଯେ ପାହିଲା ରଜନୀ ।
ଆଳସ୍ୟ ଭାଙ୍ଗିଣ ଉଠିଲେ ରାମ ସୀତା
ହସିକରି ବୋଇଲେ ଜନକ ଦୋହିତା ।
ଭୋ ସ୍ୱାମୀ ତୁମ୍ଭେ ଯେ ରୂପରେ ଉତ୍ତମ
ଦେବେ ଇନ୍ଦ୍ର କହନ୍ତି ତୁମ୍ଭେ ପୁରୁଷୋତ୍ତମ ।
ଦେବତାଏ ବୋଇଲେ ଯେ ଧାର୍ମିକପଣେ ସରି
ଧନୁ ଧଇଲେ ସରି ନୋହିବେ ତ୍ରିପୁରାରି ।
ଆପଣାର ଧନ ତୁଣ୍ଡେ ବୟସେ ଅଚ୍ୟୁତ
ବ୍ରହ୍ମାଣ୍ଡ କରତା ତୁମ୍ଭେ ହେ କଉଶଲ୍ୟା ସୁତ ।
ପର୍ଶୁରାମକୁ ସରିସମ ନାହିଁ କ୍ଷତ୍ରୀ
ଶତେ ଏକ ଉତ୍ତର ବାର ସାଧିଲେ ସେ ପୃଥ୍ୱୀ
ସେ ତୁମ୍ଭଙ୍କୁ ଦେଖିଣ ମନରେ ଭୟକଲେ
ଚାରି ରାବଣ ବଂଶ ତୁମ୍ଭରେ ହତ ହେଲେ ।
ଦେବରଷି, ନାଗରଷି, ବ୍ରହ୍ମ ଯେ ସିଦ୍ଧରଷି
ରାଜରଷି, ବିପ୍ରରଷି, ଛଡ଼ ପ୍ରକାରେ ଆସି ।
ଦେବତା ଅସୁର ଯେ ନର ହିଁ ବାନର
ଅଭିଷେକ କଲେ ସର୍ବେ ମିଳିଣ ଏ ପୁର ।
ଦେବ ରୁଦ୍ର ବ୍ରହ୍ମା ତୁମ୍ଭ ଛାମୁକୁ ଅଇଲେ
ସ୍ୱର୍ଗରେ ବସିଲୁଁ ଯେ ବୋଲିଣ କହିଲେ ।
ଚଉଦ ଭୁବନେ ତୁମ୍ଭ କୀରତି ବିସ୍ତାର
ତୁମ୍ଭଙ୍କୁ ତିନିପୁରେ ନାହାନ୍ତି ବଳିୟାର ।
ଲକ୍ଷେ ରାଜା ତୁମ୍ଭର ଯେ କିଙ୍କର ଅଟନ୍ତି
ବନଜନ୍ତୁ ତୁମ୍ଭର ଚରଣେ ଖଟନ୍ତି ।
ତୁମ୍ଭ ପାଦ ଲାଗିଣ ଅହଲ୍ୟା ମୁକ୍ତ ହେଲା
ତୁମ୍ଭ ନାମ ସୁମରି ବୈକୁଣ୍ଠ ପୁର ଗଲା ।
ଅନେକ ତପଫଳେ ମୁଁ ହୋଇଲି ଦାସୀ
ଏକବ୍ରତୀ ନିୟମ ମୁଁ କରାଇଲି ଆସି ।
ଏ ଜନ୍ମରେ ଦାସୀ ମୁଁ ହୋଇଲି ତୁମ୍ଭର
ସୁନ୍ଦର ନାରୀ ଭୋଗ କରନ୍ତି ନିରନ୍ତର ।

ଏ ବୁଦ୍ଧିଆଉ ମୋତେ ନଦେବ କେତେବେଳେ
ମନଇଚ୍ଛା ଭୋଗ ଯେ ନୋହେ ଏ ଅବତାରେ
ଆଉ ଅବତାରେ ହେବ ବହୁ ଲୀଳା
ମୋର ଅଂଶେ ବତିଶ ସହସ୍ର କନ୍ୟାପରା ।
ତାଙ୍କୁ ଘେନି ତୁମ୍ଭେ କରିବ ରତିରସ
ଅନେକ ସନ୍ତାନ ହେବେ ତୁମ୍ଭର ବିଶେଷ ।
ମାୟାସୀତା ଅଂଶରେ ହେବ ଜାତ ପୁଣ
ଷୋଳ ସହସ୍ର ଯେ ଅପସରା ଗଣ ।
ତାହାଙ୍କୁ ଭୋଗ ତୁମ୍ଭେ କରିବ ଦେବରାଜ
ସୁବର୍ଣ୍ଣ ସୀତା ଅଂଶରେ ଗୋପୀ ହେବେ ଭୋଗ।
ଚୌଷଠି ସହସ୍ର କନ୍ୟା ସେ ଯୁଗେ ଭୋଗକରି
ତେବେ ମନ କାମନା ସିଦ୍ଧ ଯେ ତୁମ୍ଭରି ।
ଏ ଜନ୍ମରେ ଦୟା ମୋତେ କରହେ ବ୍ରହ୍ମରାଶି
ନିରନ୍ତରେ ତୁମ୍ଭର ଚରଣେ ମୁହିଁ ଦାସୀ ।
ଏତେକହି ସୀତା ରାମ ପାଦଧରି
ଅନୁଗ୍ରହ ମାଗଇ ଜନକ କୁମାରୀ ।
ଜାଣିକରି ଶ୍ରୀରାମ ତାଙ୍କୁ କୋଳ କଲେ
ତୁହି ମୋର ପ୍ରାଣର କାରେଣୀ ବୋଇଲେ ।
ଏଥୁ ଅନନ୍ତରେ ପାହିଲା ପୁଣ ରାତି
ଶଯ୍ୟା ଛାଡ଼ିଣ ଯେ ଉଠିଲେ ରଘୁପତି ।
ନିତ୍ୟକର୍ମ ରାମ ସାରିଲେ ତତକ୍ଷଣ
ପ୍ରଭାତ ସନ୍ଧ୍ୟା ଯେ ସାରିଲେ ଆପଣ ।
ସୁମନ୍ତ ମନ୍ତ୍ରୀ ଯେ ପିତା ପୁତ୍ର ଆଏ
ମାଜଣା ସ୍ନାନ ଯେ ସାରନ୍ତି ରାମରାୟେ ।
ତର୍ପଣ ସାରି ଦେବାର୍ଚ୍ଚନରେ ବିଜେକଲେ
ଆପଣେ ରଘୁନାଥ ଅଗ୍ନିରେ ହୋମକଲେ ।
ଦଶଦିଗପାଳ ନବଗ୍ରହ ହସି
ଆପଣେ ଦେବାର୍ଚ୍ଚନ ନବରେ ବିଜେକଲେ ଆସି
ଇଷ୍ଟ ଦେବତାଙ୍କର ବିରଞ୍ଚି ନାରାୟଣ
ଆବର ମନ୍ଦିରେ ବିଶ୍ୱନାଥ ପୁଣ ।
ସନ୍ତୋଷ କରିଣ ପୂଜା ତାଙ୍କୁ କରି
ଆସନ୍ତେ ହୁଳହୁଳି ଦିଅନ୍ତି ନରନାରୀ ।
ଶତ୍ରୁଘନ ଲକ୍ଷ୍ମଣ ଢାଳନ୍ତି ଚାମର
ସୁମନ୍ତ୍ର ମନ୍ତ୍ରୀ ଉପରେ ଦେଇଣ ବାମକର ।
ପଟୁଆର କରିଣ ଆସନ୍ତି ଚଉଦୋଳେ
ପହଣ୍ଡ ମଣାଇଁ ଖଣ୍ଟିଆ ଅବହେଳେ ।

ଆସ୍ଥାନ ନବରେ ଯାଇଁଣ ବିଜେକଲେ
ନେତର ତୂଳିରେ ରାମ ବିଜେକଲେ ।
ସପତ ନୃପତି ଯେ ବିଜେକଲେ ଆସି
ବଶିଷ୍ଠଙ୍କ ସଙ୍ଗେ ଅନେକ ଋଷି ଆସି ।
ସେମାନଙ୍କୁ ଦେଖି ରାମ ନମସ୍କାର କରି
ସିଂହାସନେ ବିଜୟେ କମାୟଣ ଧରି ।
ଚତୁରଙ୍ଗ ବଳ ଯେ କଳଣା ନଯାଇ
ହାତୀ, ରଥୀ, ପଦାତି ପଟୁଆରେ ରହି ।
ମଧ୍ୟରେ ନାଟ ଗୀତ କରନ୍ତି ନଟକାର
ତରୁଣ ବସନ୍ତ ରାଗେ ଗାଉଣା କଲେ ସ୍ୱର ।
ସମ୍ପର୍ବ ଆସନରେ ଦଶରଥ ସୁତ
ସ୍ୱର୍ଗରେ ବେହରଣ କରନ୍ତି ପୁରୁହୁତ ।
ସୁଗ୍ରୀବ, ବିଭୀଷଣ, ସୁକର୍ଣ୍ଣ, ସୁବାହୁ
ମହାନାଦ, ସ୍ୱୟଂମନୁ, ଅଙ୍ଗଦ, ରୁକ୍ଷରାହୁ ।
ଛତ୍ର ମନ୍ତ୍ରୀ ଦୈତ୍ୟ ଯେ ବଳ ଅପ୍ରମାଣ
କପି ଦୁଇ ରାଜାଙ୍କର ଇଷ୍ଟ ମନ୍ତ୍ରୀ ଜାଣ ।
ହନୁମନ୍ତ ଜମ୍ୱେବ ଅଛନ୍ତି ସେ କତି
ଗନ୍ଧମାର୍ଦ୍ଦନ ଛନ୍ତି ରାମ ଆଗରେଟି ।
କେଶରୀ ଶତବଳ ଆବର ଶତବାଳି
ରଘୁନାଥଙ୍କ ଶିରେ ଚାମର ନେଇ ଢାଳି ।
ବସନ୍ତ ପନଶୀଳ ନଳ ନୀଳ ଛନ୍ତି
ଗବୟେ ଗବାକ୍ଷ ରନ୍ ବିଞ୍ଚଣି ବିଞ୍ଚନ୍ତି ।
ଚନ୍ଦନ ତାଳିମ୍ବ ଯେ ଶଉରି ସେନାପତି
ଦଶକାଳ ବୃଦ୍ଧ ଯେ ବିବିଧ ସମ୍ପାତି ।
ମହୀନ୍ଦ୍ର ଦୃବିନ୍ଦ ଯେ ପବନ ମରୁତ
କୁନ୍ଦ କାମୋଦ ଯେ କଞ୍ଚନ ସର ସେତ ।
ଋଷଭ ଦଧିମୁଖ ଯେ କାଳିମୁଖ ବୀର
ତାରାକ୍ଷ ସୁଷେଣ ଯେ ଢାଳନ୍ତି ପନିର ।
ଗହ ଗହ ଶବଦ ରାମର ଆସନ
ବଶିଷ୍ଠ କହନ୍ତି ପୂର୍ବର କଥାମାନ ।
ପର୍ଶୁରାମ ବୋଲିଣ ଏକରାଜା ଥିଲେ
ଆପଣେ ଭିଖ ମାଗି ସେ କୁଟୁମ୍ବ ପୋଷିଲେ ।
ପ୍ରଜାଙ୍କ ଠାରୁ କର ନ ନେଲେ ସେ କିଛି
ପୁତ୍ରରୁ ଅଧିକ ସେ ପରଜା ପାଳନ୍ତି ।
ଶତ୍ରୁ ଉପଗତରେ ଆପଣେ କରେ ଯୁଦ୍ଧ
ଲକ୍ଷେ ଲକ୍ଷେ କରି ହାଣେ ସେ ବିବୁଧ ।

ଡରେଣ ଶତ୍ରୁତାର ନ ଆସେ ଦେଶଘୋଷ
ସର୍ବଦା ପର୍ଶୁରାମ ଧର୍ମରେ ବିଶେଷ ।
ନଗ୍ରରେ ଭିକ୍ଷା ମାଗିଣ ତଣ୍ଡୁଳ ଯେତେପାଇ
ତାହା ସେ ନୃପତି ଯେ ରନ୍ଧନ କରି ଖାଇ ।
ପଞ୍ଚ ମହାଦେଈ ଯେ ରାଣୀମାନେ ଆଏ
ସବୁଙ୍କରି ମନ ଯେ ଧର୍ମରେ ପୁଣଥାଏ ।
ଦିନେକ ରାଜା ଯେ ଭିକ୍ଷା ମାଗି ଗଲା
ସାଧୁତ ଦ୍ୱାରେ ଯାଇଁ ପ୍ରାର୍ଥନା ସେ କଲା ।
ଆସ୍ତି ନାସ୍ତି ନପାଇ ଯେ ନୃପତି ରହିଲା
ଗୃହିଣୀ ବ୍ୟବସ୍ଥାରେ ଗୃହରେ ତାର ଥିଲା ।
ଘଡ଼ିଏ ପରିଯନ୍ତେ ରହିଲେ ଉଭାହୋଇ
ସେ ଗୃହସ୍ଥାଣୀ ଆଗରେ କହିଲେ ଲୋକେଯାଇଁ ।
ରାଜନ ତୋର ଦ୍ୱାରେ ଉଭା ହୋଇଛନ୍ତି
ତୁଯେ ବଡ଼ ହେବାରୁ ନଜାଣୁ ପୁଣକିଛି ।
ଯାହାର ପ୍ରସାଦରେ ବିପୁଳ ଦ୍ରବ୍ୟଭୁଞ୍ଜୁ
ସେ ଭିକ୍ଷା ମାଗନ୍ତି ଯେ ଆମ୍ଭର ମନରଞ୍ଜୁ ।
ଆସ୍ତି ନାସ୍ତି ବାରତା ନ କହି କିଛି ପୁଣି
ଗୁରୁସ୍ଥାଣୀ ବୋଇଲା ଯେ ଲୋକଙ୍କ ବାଣୀଶୁଣି ।
ଯେ ଯାହା ଝଗଡ଼ରେ ଥାଉଁ ଆମ୍ଭେ ପୁଣି
ଘଣ୍ଟି ବାଜଇ କିମ୍ପା ନଆସେ ନୃପମଣି ।
ତେବେ ସିନା ଜାଣିବ ଭିତରେ ଥିବାଲୋକ
କୀରତି ଝଗଡ଼ ଯେ ଲାଗିଛି ଅନେକ ।
ଭିତର ଶବଦ ଯେ ଶୁଣି ନୃପବର
ବୋଇଲା ଏକଥା ଯେ ଅଟଇ ଅବେଭାର ।
ଯେ ଯାହା ଝଗଡ଼ରେ ସମସ୍ତେ ଲାଗିଛନ୍ତି
ମୁହିଁ ଆସିବାରେ ଯେ ମାଗିଲେ ନଶୁଣନ୍ତି ।
ଏହିକଥା ମୋର ଯେ ମନକୁ ଯୋଗାଇଲା
କାଲି ମୁଁ ଘଣ୍ଟି ବାନ୍ଧି ଆସିବି ବୋଇଲା ।
କୋପ ନ କଲେ ସେ ମହାରାଜା ହୋଇ
ଏ ସମୟେ ସାଧବ ବୋହୂ ଯେ ଆସଇ ।
ପାଞ୍ଚଗୋଟି ପାଟ ପତନୀ ଶାଢ଼ୀ ଆଣି
ଚାରିଗୋଟି ପାଟ ଯେ ଖଦୀ ସଙ୍ଗରେ ପୁଣି ।
ଦଶମାଣ ତଣ୍ଡୁଳ ଦୁଇମାଣ ମୁଗଯାଇ
ବାଡ଼ିରୁ ବାଇଗଣ ନଉତିଏ ନେଇ ।
ଦୁଇଗୋଟା ସୁବର୍ଣ୍ଣ ସ୍ଥାଳିରେ ସେ ନେଲା
ଦୁଇଗୋଟି ଝରୀ ତହିଁ ଉପରେ ଥୋଇଲା ।
ସାତଗୋଟି ଗିନା ଯେ ସାତଗୋଟି କଂସା
ଗୋଟିଏକ ଘଣ୍ଟି ଗୋଲରେ ଚାରି ଅଂଶା ।
ବାକସ ଗୋଟିକରେ ସକଳ ଦ୍ରବ୍ୟଭରି
ରାଜାଙ୍କ ଛାମୁରେ ଦେଲେ ସାଧବର ନାରୀ ।
ରାଜନ ବୋଇଲେ ଏହୁ ଅଟେ କିସଦ୍ରବ୍ୟ
ସାଧବାଣୀ ବୋଇଲେ ମୁଁ ଭିକ୍ଷାଦେଲି ଆଜ ।
ରାଜନ ବୋଇଲେ ମୁଁ କେମନ୍ତେ ବହିନେବି
ସାଧବାଣୀ ବୋଇଲେ ମୁଁ ଲୋକ ସଙ୍ଗେ ଦେବି ।
ପରିଜନ ଗୋଟିଏ ଡାକି ସାଧବାଣୀ
ରାଜାର ସଙ୍ଗରେ ଦେଲାକ ଲୋକ ଆଣି ।
ରାଜାର ପରିଜନ ଚଳନ୍ତି ନଗ୍ରେ ପୁଣ
ନବର ଭିତରେ ଯାଇ ପ୍ରବେଶହେଲେ ଜାଣ ।
ମଞ୍ଜୁଷ ଥୋଇଦେଇ ପରିଜନେ ଆସି
ପାଟ ମହାଦେଈମାନେ ରାଜାକୁ ଦେଖି ହସି ।
ଆଜତ ରାଜନ ବହୁତ ଭିକ୍ଷା କଲେ
ମଞ୍ଜୁଷ ଗୋଟିଏ କେଉଁଠାରୁ ଯେ ଆଣିଲେ ।
ରାଜନ ବୋଇଲେ ଏ ସାଧବ ଘର ଭିକ୍ଷା
କି କି ଦେଇଛନ୍ତି ସେ ମଞ୍ଜୁଷ ଫେଡ଼ିଦେଖା ।
ଶୁଣିଣ ରାଣୀମାନେ ମଞ୍ଜୁଷ ମେଲାକଲେ
ପ୍ରଥମେ ଶାଢ୍ୀ କଳପେଡ଼ା ଯେ ଦେଖିଲେ ।
ଦ୍ୱିତୀୟେ ଦେଖିଲେ ଅମୂଲ୍ୟ ଜଳପାନ
ତୃତୀୟେ ଦେଖିଲେ ସୁରତଣ୍ଡୁଳ ଯାଇ ପୁଣ ।
ଚତୁର୍ଥେ ଦେଖିଲେ ପରିବା ବଡ଼ି ଅଛି
ପଞ୍ଚମେ ଅମଳାଣ ଦେଖିଲେ ଶଶୀମୁଖୀ ।
ଷଷ୍ଠରେ ଦେଖିଲେ ରତ୍ନ ଚୂଡ଼ୀ ବୀରବଲ୍ଲୀଖଡ଼ ।
ସପ୍ତମେ ମଣୋହି ଯୋଗାଡ଼ ଅଛି ସବୁ ।
ଅଷ୍ଟମରେ ଦେଖିଲେ ଅଛି ଘଣ୍ଟି ଗୋଟି
ନବମେ ରତ୍ନ ପାଦୁକା ସେଥି ମଧ୍ୟରେ ଅଛି ।
ହରଷ ହୋଇଲେ ଦେଖି ସକଳ ରାଣୀଗଣ
ବୋଲନ୍ତି ଆଜ ଭିକ୍ଷା ଅଟଇ ବଡ଼ଟାଣ ।
ଏ ସାଧବ ଘରେ ଭିକ୍ଷା ନକର ବାରମାସ
ତୁମ୍ଭ କୁଟୁମ୍ବଙ୍କୁ ଚାହିଁ ହେଲା ସେ ହରଷ ।
ସକଳ ପଦାର୍ଥ ବାଣ୍ଟି ରାଣୀ ପାଞ୍ଚ ନେଲେ
ପୁତ୍ରଙ୍କୁ ଡାକିଣ ବୀରବଲ୍ଲୀ ଖଡୁଦେଲେ ।
ହୀରା, ମାଣିକ୍ୟ, ଚୂଡ଼ୀ ଲାଇଲେ ରାଣୀଗଣ
ଅମଳାଣ ଶାଢ଼ୀମାନ ପିନ୍ଧିଲେ ବହନ ।

ପୁତ୍ରଙ୍କୁ ପିନ୍ଧାଇଲେ ପାଟ ଶାଲ ଯୋଡ଼ି
ସୁବର୍ଣ୍ଣ ଦେଖିଣ ବିସ୍ମର ମନେ କରି ।
ରାଜାଙ୍କୁ ବୋଇଲେ ଏ ଅଟେ କିସ ପୁଣ
ପଶୁଧର ନୃପତି ବୋଇଲେ ତୁମ୍ଭେ ଶୁଣ ।
ଭିକ୍ଷା ମାଗି ଆଜ ଯେ ଗଲି ମୁହିଁ ପୁଣ
ଗୃହରେ ଆଢ଼ତି କରେ ସାଧବ ବୋହୂଜାଣ ।
ଉଛୁର ଦେଖିଣ କେ ଯାଇଁଣ କହିଲେ
ସାଧବାଣୀ ବୋଲେ ଦେଖ ଗହଳି ମୋରପୁରେ ।
ଯାନୁରେ ଘଣ୍ଟ କିମ୍ବା ନବାନ୍ଧେ ରାଜନ
ଏତେବୋଲି ସାଧବାଣୀ ଘଣ୍ଟିଏ ଦେଲାପୁଣ ।
ଶୁଣିଣ ରାଣୀମାନେ ସନ୍ତୋଷ ମନ ହେଲେ
ସୁବର୍ଣ୍ଣ ଘଣ୍ଟି ଗୋଟି ରାଜାଙ୍କୁ ନେଇ ଦେଲେ ।
ରନ୍ଧନ ଭୋଜନ କଲେ ତହିଁ ସୁଖେ
ରଜନୀ ପୁହାଇଲେ କ୍ରୀଡ଼ାରସ କଉତୁକେ ।
ଆରଦିନ ରାଜା ଯାନୁରେ ଘଣ୍ଟି ବାନ୍ଧି
ସଜ ହୋଇ ନଗ୍ରକୁ ଚଳିଲେ ନୃପନିଧି ।
ଜାଣିଣ ନଗ୍ରଲୋକେ ଭିକ୍ଷା ଦେଲେଆଣି
ଧନ୍ୟ ଧନ୍ୟ ବୋଲି ପ୍ରଶଂସା କରେଯେ ଧରଣୀ ।
ସ୍ୱର୍ଗରେ ଦେବଲୋକେ ସାଧୁ ସାଧୁ କଲେ
ଯାନୁଘଣ୍ଟ ପର୍ଶୁରାମ ବୋଲି ନାମଦେଲେ ।
ଯୁଗ ଯୁଗକୁ କଥା ରହିଲା ପୁରାଣେ
ତାକୁ ଧର୍ମବନ୍ତ ବୋଲି ବୋଲନ୍ତି ଦେବଗଣେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ସରଯୂ ଗଙ୍ଗାରେ କିମ୍ବା ଶ୍ରୀରାମ କଲେସ୍ନାନ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ମନନେଇ
ସ୍ୱର୍ଗରେ ଗଙ୍ଗାଥିଲା ବିଷ୍ଣୁ ପାଦେ ରହି ।
ଦେବଙ୍କର କୂଟ ଯେ ଭାଗ୍ୟରଥି ତପ
ଅଗସ୍ତିଙ୍କ କ୍ରୋଧରେ ପ୍ରାଣରେ ହେଲେ ହତ ।
ସାଗର ପୂରିବାଭାଗ୍ୟରଥି ବଂଶ ଉଦ୍ଧରିବ
ସ୍ୱର୍ଗର ଗଙ୍ଗା ଯେ ମଞ୍ଚରେ ବୁହାଇବ ।
ତେବେ ସେ କାରଣ ଯେ ପାଇବେ ସର୍ବଜନ
ଏଥିରେ ସକାଶେ ଗଙ୍ଗା ହୋଇଲେ ପ୍ରସନ୍ନ ।
ପିତୃଙ୍କୁ ଉଦ୍ଧରିଲେ ଭାଗ୍ୟରଥି ପୁଣ
ତପସ୍ୟା ବଳରେ ମଞ୍ଚକୁ ଗଙ୍ଗା ଆଣି ଜାଣ ।
ବିଷ୍ଣୁର ପାଦରୁ ମେରୁର କ୍ରୋଟେ ଯାଇଁ
ଐରାବତ ଦନ୍ତ ମାରନ୍ତେ ତିନିଧାର ବହି ।
ଯମୁନା ସରସ୍ୱତୀ ଧବଳାଙ୍ଗୀ ପୁଣ
ଏମନ୍ତେ ଗଙ୍ଗାନାମ ତିନି ପ୍ରକାରେଣ ।
ବହନ୍ତେ ସୁରାସୁରୀ ସାଗର ପରିପୂର୍ଣ୍ଣ
ପିତୃଙ୍କୁ ଉଦ୍ଧରିଲେ ଭାଗ୍ୟରଥି ପୁଣ ।
ଯେଉଁ ଦିନ ଗଙ୍ଗା ଜନ୍ମିଲେ ମର୍ତ୍ତ୍ୟପୁରେ
ସେଦିନର କଥା ଶୁଣ ଗୋ ତୁମ୍ଭେ ଭଲେ ।
ସେଦିନ ଚଇତ୍ର ଯେ କୃଷ୍ଣ ତ୍ରୟୋଦଶୀ
ବାର ସେଦିନ ଶନି ଗଙ୍ଗାକୁ ଶୁଭଟି ।
ବୋଇଲେ ବାରୁଣୀ ଯେ ହେଉ ଆଜଯୋଗ ।
ଆଜଦିନ ଯେଉଁନରେ ମୋଠାରେ ଭକ୍ତିହେବେ
ଏଦିନ ଯୋଗରେ ସ୍ନାନକଲେ ବୈକୁଣ୍ଠେ ବସିବେ ।
ସେହିଦିନ ଗଙ୍ଗାସ୍ନାନ ହୋଇଲା ପୁଣି ସାର
ତିନିପୁରେ ପବିତ୍ର ବାରେଣୀ ସ୍ନାନ ମୂଳ ।
ସେ ବାରେଣୀ ସେଦିନ ଯେ ପଡ଼ିବାରୁ ପୁଣ
ଗଙ୍ଗାରେ ସ୍ନାନ ଯାଇଁ କଲେ ରାମରାଣ ।
ଉତ୍ସବ ଆନନ୍ଦରେ ଗଙ୍ଗାକୁ ପୂଜାକଲେ
ସକଳେ ଫେରିଆସି ଅଯୋଧ୍ୟା ପୁରେ ମିଳେ ।
ଭଗବତୀ ବୋଲନ୍ତି ଶୁଣ ହେ ଈଶାନ
ସେଠାରୁ କିସ ହେଲା କହିବା ହେଉ ପୁଣ ।
ତ୍ରିଲୋଚନ ବୋଇଲେ ଶୁଣ ମନଦେଇ
ବଶିଷ୍ଠ ବୋଲନ୍ତି ଶୁଣ କୋଦଣ୍ଡ ରୂପଦେହୀ ।
ବେଣୁ ବୋଲିଣ ଯେ ଏକ ରାଜା ଥିଲା
କୁଲା କୁଣ୍ଢାଇ ବିକି ପେଟ ସେ ପୋଷିଲା ।
ପ୍ରଜାଙ୍କୁ ପାଳଇ ସେ ଅତି ଯତ୍ନକରି
ଚକ୍ରବର୍ତ୍ତୀ ହେଲେ ସେ ତିନିପୁର ସାଧକରି ।
ସହସ୍ରେ ଯୋଜନରେ ଯେଉଁ ଦୁଷ୍ଟ ଥାଇ
ମାରଇ ତାକୁ ନୃପତି ମନ୍ତ୍ରବଳେ ଯାଇଁ ।
ତେବେ ସେ ନାଶକୁ ଯେ ଭଜନ୍ତି ଦୁଷ୍ଟପ୍ରାଣୀ
କୁଲା କୁଣ୍ଢାଇ ନେଇଣ ବିକେ ତାର ରାଣୀ ।
ସେ କୁଲା କୁଣ୍ଢାଇରୁ ଆଣେ ଯେତେଧନ
ତଣ୍ଡୁଳ କିଣିଣ ସେ ନିଅଇ ବହନ ।
ରନ୍ଧନ କରିଣ ସେ ଦୁଇଜଣ ଭୁଞ୍ଜି
କେଭେ ଦୁଃଖ ନୁହନ୍ତି ପରଜା ନ ଗଞ୍ଜି ।
ଏ ପୃଥିରେ ଥିଲେ ଅନେକ ରାଜାମାନେ
ବୈକୁଣ୍ଠ ସ୍ୱର୍ଗ ମୃତ୍ୟୁ ତାକୁ ଯେ ସମାନେ ।

ପୋଖରୀରୁ ପାଣି ଆଣେ ତାର ନାରୀ
ପାଦ ନ ତିନ୍ତେ ତାର କହିଲି ତୋତେଫେରି ।
ଶ୍ରୀରାମ ବୋଇଲେ ଯେବେ ନ ତିନ୍ତେ ତଳିପା
କେମନ୍ତେ ପାଣି ଆଣେ ରାଜାର ବନୀତା ।
ବଶିଷ୍ଠ ବୋଇଲେ ତାର ନବରରେ ପୁଣ
ବେଣ୍ଟ ପୋଖରୀ ଅଛଇଁ ଶ୍ରୀରାମ ଯେ ଜାଣ ।
ସେ ପୋଖରୀରେ ପଦ୍ମ ପରିପୂର୍ଣ୍ଣ ପୁଣ
ପଦ୍ମପତ୍ରରେ ରାଣୀ ଚଳିଯାଏ ପୁଣ ।
ପୋଖରୀ ମଧ୍ୟରୁ ପାଣି ଆଣଇ ଅବଳା
ଧର୍ମେ ଥିଲା ଲୋକର ଯେ ନବୁଡ଼ଇ ଭେଳା ।
ଯହୁଁ ସେ ରାଜା ସତ୍ୟ ଧର୍ମରେ ରାଜ୍ୟକଲା
ତାର ନାମ ସବୁଠାରେ ବିଖ୍ୟାତ ହୋଇଲା ।
ଏସନେକ କରିଣ ପାଳେ ଜନପ୍ରଜା
ପ୍ରଭାତରୁ ସୁମରନ୍ତି ସମସ୍ତେ ବେଣୁ ରାଜା ।
ଶିବ ନୃପତିଙ୍କର ମହିମା ଅପାର
ଦେହରୁ କାଟିଦେଲା ଶେଣାପକ୍ଷୀକି ମାଂସତାର
ସତ୍ୟ କରାଇ ସେ ସଭିଙ୍କି ମାଗେ ବର
ସପତ ଦିନ ହେଲା ଆହାର ନାହିଁ ମୋର ।
ମୃତ୍ୟୁମାଂସ ନ ଭକ୍ଷଇ ଭକ୍ଷେ ବଳକୃତେ
ଭିକ୍ଷାକରି ଉଦର ପୋଷେ ମାଂସମାରେ ନିତ୍ୟେ ।
ଶିବିଦାତା ବୋଇଲେ ମୁଁ କିସଦେବି ତୋରେ
ଶେଣାପକ୍ଷୀ ବୋଲେ ମାଂସ ଦେଇଣ ତୁଷ୍ଟକରେ
ସେ ପକ୍ଷୀ ନିୟତରେ ଶରୀର ମାଂସ କାଟି
ଭକ୍ଷନ୍ତେ ଶେଣାପକ୍ଷୀ ମନରେ ହେଲେ ଶାନ୍ତି ।
ନିଜ ଆଶ୍ରମକୁ ତାର ଚଳେ କୁରୁବୀର
ଶିବିଦାତା ନାମ ଯେ ରହିଲା ରବିତଳ ।
ଜୀମୂତ ବାହନ ରାଜା ବହୁ ସୁକୃତ କଲା
ପାଳିଲାର ଦୋହିତାକୁ ରାଜାକୁ ଦାନଦେଲା ।
ସେ ରାଜ୍ୟ ତେଜ୍ୟାକରି ଗଲାକ ଜୀମୂତ
ଜଳ ଆହାର ନକଲା ଯିବାକୁ ସୁକୃତ ।
ସେ ରାଜା ରାଜ୍ୟକୁ ତେଜିଣ ପୁଣ ଗଲା
ରାଜ୍ୟ ତେଜି ଯାଉ ଯାଉ ପ୍ରାଣ ତା ଛାଡ଼ିଲା ।
ପୁଷ୍ପକ ବିମାନରେ ସ୍ୱର୍ଗକୁ ସେ ଗଲା
ଯୁଗେ ଯୁଗେ ଚନ୍ଦ୍ରର ସଙ୍ଗରେ ରହିଲା ।
ଶ୍ରୀରାମ ବୋଲନ୍ତି ସେ ଅଟଇ ଶ୍ରୀକାଳ
ଏତେ ବୁଦ୍ଧି ତାକୁ କେମନ୍ତେ ଗୋଚର ।

ଜୀବମାନେ ଅଜ୍ଞାନ ଅଟନ୍ତି ପଶୁଜାତି
କେଉଁ ରୂପେ ତାର ଜ୍ଞାନ ହୋଇଲାକ ସ୍ଥିତି ।
ବଶିଷ୍ଠ ବୋଇଲେ ତୁମ୍ଭେ ଶୁଣ ରଘୁରାଣ
କୋମଦ କେଶରୀ ବୋଲି ଏକଇ ରାଜ୍ୟପୁଣ ।
ଅନେକ ଦାନ ଦେଇ ସୁକୃତ ସେହୁ କଲା
ସେ ଦେହ ଛାଡ଼ିଣ ସଞ୍ଜବନୀରେ ମିଳିଲା ।
ଜନ୍ତୁପତି ଦେଖିଣ ବହୁତ ତୋଷ ହେଲେ
ବରମାଗ ବୋଲିଣ ତାକୁ ଆଜ୍ଞାଦେଲେ ।
ସେ ରାଜା ବୋଇଲେ ଶୁଣ ହେ ନାଶକରି
ଯେଉଁଜନ୍ମ ହେଲେ ପୂର୍ବହେତୁ ଯେ ଥିବ ମୋର
ଅସ୍ତୁହେଉ ବୋଲିଣ ଯେ ବୋଲନ୍ତି ନାଶକର
ବୋଇଲେ ନରଦେହ ତେଜ୍ୟାହେଲା ତୋର ।
ଏତେବୋଲି ଶୃଗାଳ ରୂପରେ ଜାତକଲା
ପୂର୍ବର ହେତୁ ତୋର ମନରେ ରହିଲା ।
ଶ୍ରୀରାମ ବୋଇଲେ ଯେ ଜାତିରେ ଶୃଗାଳ
ରାଜାକୁ ପ୍ରଦାନ କଲା କନ୍ୟା ଯେ ନିକର ।
ବଶିଷ୍ଠ ବୋଇଲେ ସୂର୍ଯ୍ୟ ମଣ୍ଡଳ ସେ ପୁର
ବସନ୍ତି ସେ ନଗରେ ନବଲକ୍ଷ ଘର ।
ଚନ୍ଦ୍ରକର ବୋଲିଣ ଏକଇ ବିପ୍ରବର
ଦୁର୍ଲ୍ଲଭ ନାମେ ଦୋହିତା ଅଟଇ ତାହାର ।
ହରିଦାସ ନାମରେ ବିପ୍ରେକ ତହିଁ ଥିଲା
ତାହାକୁ ଚନ୍ଦ୍ରକର ଦୋହିତା ବିଭାକଲା ।
ବର୍ଷକେ ସେହୁ ବିପ୍ର ହେଲା ପ୍ରାଣ ତ୍ୟାଗ
ଦୁର୍ଲ୍ଲଭ ନାମେ ବ୍ରାହ୍ମଣୀକି ହେଲା ବିଧବାଯୋଗ ।
ସେ ଦୁର୍ଲ୍ଲଭ ଦୁଇ ବରଷେ ହେଲା ରଜସ୍ୱଳା
ସେ ବ୍ରାହ୍ମଣୀ ସଙ୍ଗରେ ବଶ୍ୟକଲା ନୀଳା ।
ବଶ୍ୟର ବୀର୍ଯ୍ୟେ ବ୍ରାହ୍ମଣୀ ହେଲା ଗର୍ଭବାସ
ଦଶମାସେ ଉପୁଜାଏ ଦୋହିତାଗୋଟି ଶେଷ ।
ଏକଇ ମଞ୍ଜୁଷରେ ତାକୁ ନେଇ ଭରି
ନଦୀରେ ନେଇ ମେଲିଦେଲା ସେ ସୁନ୍ଦରୀ ।
ସେ ଦୋହିତାକୁ ନଈକୂଳେ ଦେଖିଲା ଜୀମୂତ
ଯତନେ ରଖିଲା ନେଇ ଗାତ ଭିତରେତ ।
ସେଦେଶେ ଅନେକ ଗାଈ ରାଜାର ପୁଣ ଥିଲେ
ପ୍ରଥମ ଚିରେକ ମୁହିଁ ପକାବନ୍ତି ତଳେ ।
ସେ କ୍ଷୀର ଖୁଆଇ କନ୍ୟାକୁ ପ୍ରତପାଳି
ଗୋରସ ଭୁଞ୍ଜିବାରେ ସୁନ୍ଦର ସେହୁ ବାଳୀ ।

କାଳେଣ ରାଜା ଯେ ପାରିଧି କରି ଯାଇ
ବିମ୍ବର ସ୍ଥାନରେ ସେ କନ୍ୟାକୁ ଦେଖଇ ।
କନ୍ୟାକୁ ଦେଖି ରାଜନ ହେଲା ଲୋଭଶକ୍ତ
କହନ୍ତେ ଜୀମୂତ ଦେଲେ ଦାନ କନ୍ୟାରତ୍ନ ।
ସେ ରାଜ୍ୟେ ଜଳ ନଖାଇ ପ୍ରାଣ ସେ ହରାଇଲା
ଚନ୍ଦ୍ରଙ୍କର ସଙ୍ଗରେ ସେ ଯାଇଣ ବସିଲା ।
ଶୁଣିକରି ରାମ ଯେ ସନ୍ତୋଷମନ ହେଲେ
ଏଥି ଉତ୍ତାରୁ କିସ କହ ହେ ବୋଇଲେ ।
ବଳି ନୃପତି ରାମ ହେ ଜିଣିଲା ତିନିପୁର
ତାହାକୁ ଅଚିନ୍ତା କଲେ ସ୍ୱର୍ଗରେ ସୁରେଶ୍ୱର ।
ତାହା ଜାଣି ବଳି ଯେ ଦାନରେ ହେଲେ ଦାତା
ଯେ ଯାହା ମାଗେ ଦିଏ ବୈଲୋଚନ ସୁତା ।
ନାରାୟଣଙ୍କଠାରେ ଦେବେ ଯାଇଁ କହି
ବଳିର ସକାଶେ ଆମ୍ଭେ ସ୍ୱର୍ଗରେ ରହି ନୋହି
ଶୁଣିଣ ବାସୁଦେବ ଶୟନ ତେଜ୍ୟାକଲେ
ବଳିରାଜାର ପୁରେ ଯାଇଁଣ ମିଳିଲେ ।
କପଟେ ବାସୁଦେବ ମାଗିଲେ ପୁଣି ଦାନ
ଜାଣିଣ ସତ୍ୟକଲେ ବଳି ଯେ ରାଜନ ।
ସତ୍ୟ କରାଇ ଶ୍ରୀହରି ରାଜା ଦାନ ନେଲେ
ତିନି ପୁର ହରିଣ ସୁତାଳେ ରଖିଲେ ।
ଏ ମହୀମଣ୍ଡଳେ ରାଜା କୀରତି ରଖିଲା
ଚଉଦ ଭୁବନରେ ମହିମା ବିକାଶିଲା ।
ଆବର ଅନେକ ଯେ ଥିଲେ ନୃପମଣି
ଧର୍ମ ପରାୟଣ ସେ ପାପପୁଣ୍ୟ ଜାଣି ।
ଧର୍ମରେ କୀର୍ତ୍ତି କଲେ ଯୁଗେ ଯୁଗେ ଥାଇ
ତୁମ୍ଭେ ରାମ ଧର୍ମରେ ପାଳ ଏବେ ମହୀ ।
ତୁମ୍ଭରି ଉପରେ ବଂଶେ ହରି ଚନ୍ଦନ ଥିଲେ
କହିଲେ ନ ସରଇ ଯେତେ ପୁଣ୍ୟ କଲେ ।
ଧର୍ମର ନିମନ୍ତେ ରାଜା ପୁତ୍ର ଭାରିଜା ବିକି
ସେ କଥାମାନ ରାଜାର ପୁରାଣରେ କୀର୍ତ୍ତି ।
ଶ୍ରୀରାମ ବୋଇଲେ ରାଜା ଅନ୍ୟାୟ ପୁଣ କଲେ
ମୂଳକୁ କାଟି ଦେଇ ଡାଳରେ ପାଣ ଦେଲେ ।
ବଶିଷ୍ଠ ବୋଇଲେ ସେ ପ୍ରଥମ ବୟସରେ
ବନରେ ପାରିଧି କରି ସକଳ ଜୀବମାରେ ।
ଦ୍ୱିତୀୟେ ରାଜାହୋଇ ଜିଣିଲା ତିନିପୁର
ଚଉଦ ଭୁବନରେ ଜିଣି ଦୈତ୍ୟବଳ ।
ତୃତୀୟରେ ଦାନୀରେ ସେ ହୋଇଲେ ଶକତା
ଚଉଦ ଭୁବନରେ ବିକ୍ଷାତ ତାଙ୍କ କଥା ।
ଦୟାଳୁ ପଣ ଦେଖିଣ ବିଶ୍ୱାମିତ୍ର ଗଲେ
ସେ ରାଜା ପୁରରେ ମୁନି କୁଟୁମ୍ବ ରଖିଲେ ।
ରାଜାଙ୍କୁ କହିଣ ସେ ଗଲେ ତପକରି
ଲକ୍ଷେ ବରଷ ତପକଲେ ବିଶ୍ୱାମିତ୍ର ଯୋଗଧାରୀ ।
କେତେ ଦିନ ଅନ୍ତରେ ହରିଚନ୍ଦନ ପୁଣ
ଋଷିର କୁଟୁମ୍ବକୁ ନ ସଂଖୋଳେ ରାଜନ ।
ଦାସୀଆଡ଼ ପୁତ୍ର ଯେ ଗୋଟିଏ ତାରଥିଲା
ଋଷିର କୁଟୁମ୍ବକୁ ସେହି ଯେ ପାଳିଲା ।
ଦୁର୍ଭିକ୍ଷ କାଳରେ ଯେ ଦେଲା ସେ ଗୋ-ମାଂସ
ଚଣ୍ଡାଳରେ ଗଣିତା କଲେ ଯେ ତ୍ରିଦଶ୍ୟ ।
ବିଶ୍ୱାମିତ୍ର ଜାଣିଣ ସେଠାବେ ଅଇଲେ
ତ୍ରୀଶଙ୍କୁ ଚଣ୍ଡାଳଙ୍କୁ ସ୍ୱର୍ଗରେ ସ୍ଥାନ ଦେଲେ ।
ଏମନ୍ତେ କେତେଦିନ ଗଲାକ ତହିଁରେ
କାଳେଣ ରାଜନ ଯାଗ ଆରମ୍ଭିଲେ ।
ଶ୍ରୀଚନ୍ଦନ ରାଜା ଅଶ୍ୱମେଧ ଯାଗ କଲା
କାଳେଣ ବିଶ୍ୱାମିତ୍ର ଆଚାର୍ଯ୍ୟ ତହିଁ ହେଲା ।
ଉପରେ ରୋଷରେ ଋଷି ପାଞ୍ଚିଲେ ରାଜାକୁ
ହରିଚନ୍ଦନ କଲାମନ ଦକ୍ଷିଣା ଦେବାକୁ ।
ଅନେକ ଧନ ଯେବେ ତ୍ରିପୁତି ନୋହିଲା
ରାଜ୍ୟହିଁ ଦେଲେ ଋଷି ସନ୍ତୋଷ ନୋହିଲା ।
ପୁତ୍ର ଭାରିଜା ଦୋସରା ରାଜ୍ୟରେ ବିକିଦେଲା
ତେବେ ସେ ବିଶ୍ୱାମିତ୍ର ଅଙ୍ଗରୁ କ୍ରୋଧଗଲା ।
ଗୁରସ୍ତ ଭାରିଜା ଯେ ଲଭିଲେ ସ୍ୱର୍ଗ ପୁର
ପୁତ୍ର ଅରନ୍ୟକ ରାଜ୍ୟେ ହେଲା ଦଣ୍ଡଧର ।
ଶୁଣିଣ ରଘୁନାଥ ହସିଣ ବୋଲନ୍ତି
ଭୋ ବଶିଷ୍ଠ ତୁମ୍ଭେ ଯେବଣ ରାଜ୍ୟେ ମନ୍ତ୍ରୀ ।
ସେ ଦେଶ ସୁଲଭ ଯେ ଦଇବେ ହୋଇବ
ପୃଥ୍ୱୀଦେବୀ ଆନନ୍ଦେ ବିବିଧ ରସଦେବ ।
ମୋତେ କିପାଁ ଉପାସନା କରିବ ହେ ଯଦି
ଶୁଣି କରି ବୋଇଲେ ଯେ ସପତ ନୃପତି ।
ଏଥୁ ଅନନ୍ତରେ ଯେ ଶୁଣ ଶାକମ୍ଭରୀ
ମିଥୀଳା ନଗ୍ରରେ ଯେ ଜନକ ଦଣ୍ଡଧାରୀ ।
ଶ୍ରୀରାମଙ୍କୁ ଦେଖିବା ପାଇଁ ଆସେ ପୁଣ
ପ୍ରବେଶ ହେଲେ ସେ ଯେ ଅଯୋଧ୍ୟା କଟକେଣ ।

ଶ୍ରୀରାମ ଦେଖିଣ ଯେ କଲେ ନମସ୍କାର
ବଶିଷ୍ଠଙ୍କ ପାଶରେ ବସିଲେ ମୁନିବର ।
ଶ୍ରୀରାମଙ୍କୁ ଚାହିଁଣ ବୋଲନ୍ତି ବଚନ
ବଶିଷ୍ଠ କହିଲେ ଯେତେ ରାଜାଙ୍କ ଗୁଣମାନ
ସେମାନେ ତୁମ୍ଭଙ୍କୁ ଯେ ନୁହନ୍ତି ସମସରି
ତୁମ୍ଭେ ସେ ଆଦିମୂଳ ଅଟହେ ରାବଣାରି ।
ଅଭୟ ପୁରୁଷ ତୁ ଅନନ୍ତେ ଶୟନ
ଦେବାଧି ଦେବରାଜ ଶ୍ରୀ ପୁରୁଷୋତ୍ତମ ।
ଶଙ୍ଖ ଚକ୍ରଧାରୀ ତୁ ସାକ୍ଷାତେ ଚତୁର୍ଭୁଜ
ଶ୍ରୀ ପୀତବସନ ଯେ ଶ୍ରୀବତ୍ସ ଧଉର୍ଯ୍ୟ ।
ଯତନେ ଜନମିଲେ ଅସୁରଙ୍କୁ ମାରି
ଅନ୍ୟରେ ଗରି ରାବଣ ଯହୁଁ ନୋହିଲେ ସଂହାରି ।
ମୋହର ଭାଗ୍ୟଥିଲା ଦୋହିତା ତୋତେଦେଲି
ଅନେକ ଜନ୍ମର ପାପ ମୁହିଁ ଯେ ଛଡ଼ାଇଲି ।
ଭୋ ରଘୁନନ୍ଦନ ହେ ମୋର ବୋଲ କର
ଯେତେକ ଅଛି ମୋର ଧନ ଯେ ଭଣ୍ଡାର ।
ରାଜ୍ୟ ସହିତେ ତୋତେ ସମସ୍ତ ମୁହିଁ ଦେଲି
ଯେତେକ ପଦାର୍ଥ ମୁଁ ସବୁ ସମର୍ପିଲି ।
ଚତୁରଙ୍ଗ ବଳ ମୋର ତୁମ୍ଭେ ସଙ୍ଗେ ଥାଉ
ମୁଁ କିସ ରାଜ୍ୟଭାର ବହିବି ପୁଣିଆଉ ।
ତୋହର ପ୍ରାୟେ ଯୁଆଁଇ ଥିବଟି ଯାହାର
ଇହ ପର ଲୋକରେ କୀରତି ତାହାର ।
ତୁମ୍ଭେ ରାମ ସତ୍ୟଶୀଳ ଶ୍ରୀବନ୍ତ ପୁରୁଷ
ଜାନକୀର ଦୋଷ ମୁଁ ମାଗୁଛି ରଘୁଶିଷ୍ୟ ।
ସେ ତୁମ୍ଭର ଦାସୀ ଅଟେ ତୁମ୍ଭେ ତାର ସ୍ୱାମୀ
ତୁମ୍ଭେ ନାରାୟଣ ସେ ଅଟେ ଲକ୍ଷ୍ମୀ ପୁଣି ।
ପ୍ରକୃତି ପୁରୁଷ ତୁମ୍ଭେ ଅଟ ବେନିଜନ
ତୁମ୍ଭେ ଯେ ତାହାକୁ ବର ପଣରେ ଭାର୍ଜନ ।
ମୋର କହିବାର ଯେ ନୁହଇ ଉଚିତ
ତୁମ୍ଭେ ସେ ଅନାଦି ଅଭୟ ଅଚ୍ୟୁତ
ଏତେ କହି ଜନକ ରାମଙ୍କୁ କୋଳେ କଲେ
ସୀତାଙ୍କୁ ଡିଆରି ଯେ ମିଥିଳାପୁର ଗଲେ ।
ଜନକ ଋଷି ଯିବାରୁ ରାମ ଗୋଡ଼ାଇଲେ
ନବରୁ ବାହାର ହୋଇ ସରଯୁ ଯାଏ ଗଲେ
ଥୋକାଏକ ଦୂରରୁ ଯେ ଅଇଲେ ବାହୁଡ଼ି
ମନୋରଥ ନାମରେ ହୟବର ଚଢ଼ି ।
ଶିରରେ ଧବଳ ଛତ୍ର ଉଡ଼େ ଫରଫର
ରଥ ଗଜହୟ ଯେ ଅନେକ ସମ୍ଭାର ।
ନବରେ ଯାଇ ବିଜେ କଲେ ଦାଶରଥି
ବୋଲନ୍ତି ସଦାଶିବ ଶୁଣ ଗୋ ପାର୍ବତୀ ।
ହୟରୁ ଉତୁରି ରାମ ଭିତରକୁ ଗଲେ
ନିଜ ମଉଳାଙ୍କୁ ରାଇଣ ବୋଇଲେ ।
ଭୋ ମାତୁଳ ତୁମ୍ଭେ ଯେ ଯାଅ ନିଜପୁର
ପିତାଙ୍କର ଶରୀର ହୋଇଲା ନିର୍ବଳ ।
ପିତାଙ୍କୁ ତୋର ଯାଇଣ ସମ୍ଭାଳ ଯତ୍ନକରି
ଚତୁର୍ଥ କାଳ ଆସି ହୋଇଲା ତାଙ୍କରି ।
ରାଜ୍ୟର ଚିନ୍ତା ତୁମ୍ଭେ ନ ଛାଡ଼ିବି ହେ କ୍ଷଣେ
ସ୍ନେହ କରିଥିବୁ ମୋତେ ତୋର ମନେ ।
ଚର ପେଶିଣ ତୁମ୍ଭେ ବାରତା ଆଣି ଦେବ
ରାଜ୍ୟର ପ୍ରଜାମାନଙ୍କୁ ସୁଖରେ ପାଳିବ ।
ଏତେ କହିଣ ରାମ ଦେଲେ ବହୁ ଧନ
ଅପୂର୍ବ ଗଜ ଅଶ୍ୱ ଅମୂଲ୍ୟ ରତନ ।
ଲକ୍ଷ୍ମଣଙ୍କୁ ବୋଇଲେ ରେ ଥୋକେ ଦୂରଯାଅ
ସରଯୁ ପାରିକରି ମାମୁଙ୍କୁ ଛାଡ଼ି ଦିଅ ।
ରାମଙ୍କର ଆଜ୍ଞା ମାନି ଲକ୍ଷ୍ମଣ ବେଗେ ଗଲେ
ଥୋକେ ଦୂରେ ଲକ୍ଷ୍ମଣ ଛାଡ଼ିଣ ଅଇଲେ ।
ଏଥୁ ଅନନ୍ତରେ ଯେ ଦିନାଚାରି ଗଲା
କଉଶଲ୍ୟା ନନ୍ଦନ ମନରେ ବିଚାରିଲା
ସଭାକରି ବସିଲେ ଯାଇଁ ରାମରାହୁ
ବଶିଷ୍ଠଙ୍କୁ ବୋଇଲେ କୋଦଣ୍ଡକାଣ୍ଡ ବାହୁ ।
ଭୋ ମୁନି ଏହୁ ଯେ ସୁଗ୍ରୀବର ରାୟେ
ଆବର ବିଭୀଷଣ ବିଶ୍ରବା ତନୟେ ।
ଏ ଦୁହେଁ ଅଟନ୍ତି ମୋହର ପ୍ରାଣ ସରି
ଅଙ୍ଗଦ, ହନୁମନ୍ତ ଜୀବନ ମୋହରି ।
ଏତେ ବୋଲି ଦୁହିଁଙ୍କି ସନ୍ନିଧକୁ ରାଇ
ଆପଣାର ଅଙ୍ଗୁ ଅଳଙ୍କାର କାଢ଼ି ଦେଇ ।
ଅଙ୍ଗଦ ମହାନାଦ ଦୁହିଙ୍କି ରାମ ବୋଲେ
ଅଳଙ୍କାର ନେଇଣ ତାଙ୍କର ହସ୍ତେ ଦେଲେ ।
ସୁକର୍ଣ୍ଣ ସୁବାହୁ ସ୍ୱୟଂମନୁକୁ ଡାକି
ଅଳଙ୍କାର ମଣ୍ଡିଲେ ତାଙ୍କର ଅଙ୍ଗରେଟି ।
ବିଭୀଷଣକୁ ବୋଇଲେ ଶୁଣ ଲଙ୍କରାଜ
କଥାଏ ମାଗିବି ମୁଁ ଦେବ ମନରେ ଯା ।

ମୋଠାରେ ଦୟାଯେବେ କରିବେ ନୃପବର
ତୁମ୍ଭେ ସୁଖୀହେବ ମୁଁ ହେବି ଭବୁଁପାର ।
ବିଭୀଷଣ ବୋଇଲେ ହେ ଆଜ୍ଞା ଯାହ ହେବ
ତୁମ୍ଭର ସଞ୍ଚିଲା ସିନା ଆମ୍ଭର ଏ ଜୀବ ।
ରାମ ବୋଇଲେ ହେ ଦେବଙ୍କର ଧନ
ଭଣ୍ଡାର ଦେବାର୍ଜିନ ଯୁରକାଳେ ପୁଣ ।
ଦଶଗ୍ରୀବ ଶତେଗ୍ରୀବ ସହସ୍ରେ ଗ୍ରୀବ ପୁଣ
ସୁରଙ୍କ ପଦାର୍ଥକୁ ଯୂରକରି ଆଣିଣ ।
ଭଣ୍ଡାରେ ରଖିଛନ୍ତି ଦେବଙ୍କୁ ତୁମ୍ଭେ ଦିଅ
ଦେବେ କୂଟକରିବେଟି ନଦେଲେ ତାଙ୍କ ଆୟ
ଶୁଣିଣ ବିଭୀଷଣ ସୁକର୍ଣ୍ଣ ସ୍ୱୟଂ ମନୁ
ବୋଇଲେ ଦେବତାଏ ନିଅନ୍ତୁ ଆସି ତେଣୁ ।
ଯେ ଯାହାର ପଦାର୍ଥ ଚିହ୍ନିଯାନ୍ତୁ ଘେନି
ଆମ୍ଭର ସେ ପଦାର୍ଥ ନାହିଁତ ପୂର୍ବୁ ପୁଣି ।
ଦେବଙ୍କର ରତ୍ନ ଯେ ନରଖିବୁ କିଛି
ତୁମ୍ଭର ଆଜ୍ଞାରେ ଯେ ସକଳ ଦେବୁଁ ବାଛି ।
ଶୁଣିକରି ରାମ ଯେ ହରଷ ହୋଇଲେ
ନାରଦ ମହାମୁନିଙ୍କି ସୁମରଣା କଲେ ।
ତକ୍ଷଣେ ନାରଦ ମିଳିଲେ ଆସି ପୁଣ
ନମସ୍କାର କଲେ ଦଶରଥଙ୍କ ନନ୍ଦନ ।
ବୋଇଲେ ମହାମୁନି ସ୍ୱର୍ଗପୁର ଯିବ
ଦେବାସୁର ରାଜାମାନଙ୍କୁ ଜଣାଇବ ।
ବୋଲିବ ଦଶମୁଖା ଶତେମୁଖା ପୁଣ
ସହସ୍ରମୁଖା ସଙ୍ଗରେ ଯେତେକ ଦୈତ୍ୟଗଣ
ଏମାନଙ୍କ ନବରୁ ତୁମ୍ଭର ଆୟେ ଆଣ
ଶ୍ରୀରାମ କହିଲେ ଯରିଲଙ୍କା ଯିବ ପୁଣ ।
ଶୁଣିକରି ନାରଦ ସ୍ୱର୍ଗପୁର ଗଲେ
ସୁଧର୍ମା ସଭାରେ ତକ୍ଷଣେ ମିଳିଲେ ।
ବୋଇଲେ ଦେବତାଏ ଶୁଣ ମୋର ବାଣୀ
ରାମ କହିଛନ୍ତି ଲଙ୍କାକୁ ଯିବ ପୁଣି ।
ଭଣ୍ଡାରୁ ଧନଦ୍ରବ୍ୟ ଅସୁରେ ଯାହା ନେଲେ
ସେହିଦ୍ରବ୍ୟ ତୁମ୍ଭେ ଆଣ ଯାଇ ଭଲେ ।
ଶୁଣିଣ ଦେବତାଏ ହରଷ ହୋଇଲେ
ଶଙ୍ଖନିଧି, ପଦ୍ମନିଧି କୁବେର ଡକାଇଲେ ।
ବୋଇଲେ ତିନି ଲଙ୍କାଗଡକୁ ତୁମ୍ଭେ ଯିବ
ଦେବଙ୍କ ପଦାର୍ଥ ଚିହ୍ନିଣ ଆଣିବ ।
ରତ୍ନମୟେ ଅଳଙ୍କାର ବସନ ରତନ
ଦେବଙ୍କର ଯେତେକ ଅଟେ ପୁଣ ଧନ ।
ଶୁଣିଣ ଶଙ୍ଖନିଧି ପଦ୍ମନିଧି କହି
ଲଙ୍କାକୁ ଯିବାର ଆମ୍ଭର ଉଚିତ ନୁହଇ ।
ଆଜର ରଜନୀରେ ସୁମର ଯେଝାଧନ
ଭଣ୍ଡାରେ ପ୍ରବେଶ ହେବ ସେ ଆସି ପୁଣ ।
ଯେତେ ତ୍ରୈଲୋକ୍ୟନାଥ ରାମ ଦୟାକଲେ
ସୁମରିଲେ ଯେ ଯାହା ପଦାର୍ଥ ଆସି ମିଳେ ।
ନିଧି କହିବାରୁ ଯେ ସକଳ ଦେବେ ପୁଣ
ସଭା ଭାଙ୍ଗିଣ ଯେ ଗଲେ ଯେଝା ସ୍ଥାନ ।
ରଜନୀରେ ଆସନ ଶୁଦ୍ଧି କରି ବସି
ଅସୁରଙ୍କ ପୁରୁ ଧନ ହରିନ୍ୟନ୍ତି ।
ଆୟେ ଅଳଙ୍କାର ପଦାର୍ଥ ସବୁଗଲା
ଦେବଙ୍କର ଭଣ୍ଡାରେ ଯାଇଁଣ ଠୁଳ ହେଲା
ଦେଖିଣ ଦେବଗଣ ହୋଇଲେ ଆନନ୍ଦ
ମୁଖ ବିକାଶର ଯେ ପୂର୍ଣ୍ଣମୀର ଚନ୍ଦ ।
ବ୍ରହ୍ମା ରୁଦ୍ରଦଶ ଦିଗପାଳଙ୍କର ଧନ
ଅସୁରଙ୍କର ପୁରୁ ହେଲା ଯେ ଉଭାନ ।
ଦେବତାଏ ବୋଲନ୍ତି ରାମ କୁଶଳେ ଥାଉ
ଦେବତାଙ୍କର ଠାରେ ଦୟା ହୃଦ ବହୁ ।
ଆନନ୍ଦରେ ରାମଙ୍କୁ କଲେକ ପ୍ରଶଂସା
ନିଶି ପାହି ଦିନମଣି ଉଦୟ ହେଲେ ରସା ।
ନାରଦ ଯେ ଅଯୋଧ୍ୟାପୁରେ ଯାଇଁ ମିଳି
ଶ୍ରୀରାମ ଆଗରେ ଏକାନ୍ତରେ ଭାଳି ।
ଏଥୁ ଅନନ୍ତରେ ଯେ ଶୁଣ ଗୋ ଭଗବତୀ
ଶ୍ରୀରାମଙ୍କ ମନ ଯେ ଆନନ୍ଦ ରସେ ଗତି ।
ଅଷ୍ଟ ସେହ୍ନାପତିଙ୍କି ଡାକିଣ ହରଷରେ
ଅଳଙ୍କାର ଧନ ଦେଲେ ତାଙ୍କୁ ହରଷରେ ।
ପଞ୍ଚଶ ଯୂଥପତିଙ୍କି ଡ଼ାକିଣ ରାମରାହୁ
ସନ୍ତୋଷରେ ଅଳଙ୍କାର ଧନ ଦେଲେ ସେହୁ
ଯେତେକ ଅସୁର ଯେ ସଙ୍ଗରେ ଆସିଥିଲେ
ଧନବସ୍ତ୍ର ରତନ ବହୁତ ତାଙ୍କୁ ଦେଲେ ।
ସୁଗ୍ରୀବର ଅଙ୍ଗଦ ସଙ୍ଗରେ ରକ୍ଷକପି
ଅଳଙ୍କାର ଧନ ଦେଇ ତୋଷିଲେ ତାଙ୍କମତି ।
ଯେତେକ ମଉଳା ଯେ ଆସିଥିଲେ ପୁଣ
ଧନରତ୍ନ ଦେଇଣ ଆନନ୍ଦ କଲେ ମନ ।

ସରଜୁ ପାରିକରି ଛାଡ଼ି ତାଙ୍କୁ ଦେଲେ
ଭଗ୍ନୀମାନଙ୍କୁ କହି ସେ ନିଜପୁର ଗଲେ ।
ମନ୍ଦୋଦରୀ ତ୍ରିଜଟା ତାରାଙ୍କୁ ଡକାଇଣ
ବଧୂମାନଙ୍କୁ ଘେନି ଅଇଲେ ସେ ପୁଣ ।
ଜାନକୀ ପୁରେ ଯାଇଁ ହେଲେ ପରବେଶ
ଦେଖିକରି ଜାନକୀ ମନରେ ହରଷ ।
ତାରା ମନ୍ଦୋଦରୀ ଯେ ବୋଇଲେ ତ୍ରିଜଟା
ସୁଦୟା ଆମ୍ଭଠାରେ କରିଥିବୁଁ ମାତା
ଆମ୍ଭ ଯାଉଅଛୁଁ ନିଜ ଯେ ମନ୍ଦିର
ତ୍ରୈଲୋକ୍ୟ ଜନନୀ ସୁଦୟା ଆମ୍ଭଙ୍କୁ କର ।
ଜାନକୀ ବୋଇଲେ ମୋତେ ପଚ୍ଚରୁଥିବ ବାରେ
ମୋହର ମନ ସବୁଦିନେ ତୁମ୍ଭଠାରେ ।
ଏତେକହି ଅଳଙ୍କାର ଆଣି ବେଶକଲେ
ଅନେକ ଭୂଷଣ କରି ଆନନ୍ଦ କରାଇଲେ ।
ବୋଇଲେ ତୁମ୍ଭେ ମୋତେ ନମୁର୍ଚ୍ଛିବ କ୍ଷଣେ
ସମସ୍ତେ ମାନ୍ୟ କଲେ ଜାନକୀ ଚରଣେ ।
ଜାନକୀ ଶାଶୁମାନଙ୍କୁ ଓଳଗିଲେ ଯାଇଁ ।
ଶାଶୁମାନେ ବୋଲନ୍ତି ଶୁଣ ଗୋ ଚନ୍ଦ୍ରମୁହିଁ ।
ଧର୍ମରେ ଚନ୍ଦ୍ର ସୂର୍ଯ୍ୟ ହୋନ୍ତି ଆତଯାତ
ଧର୍ମରେ ଥିଲେ ପୂଜା ପାଆନ୍ତି ଜଗତ ।
ଧର୍ମରେ ବୃକ୍ଷମାନେ ଫଳୁଛନ୍ତି ଫଳ
ଧର୍ମରେ ଧେନୁମାନେ ଦେଉଛନ୍ତି କ୍ଷୀର ।
ଧର୍ମରେ ତୁମ୍ଭେମାନେ ଅଟ ମୋର ବଧୂ
ମୁହିଁ ତୁମ୍ଭର ଜନନୀ ଧର୍ମରେ ଅଟେ ସାଧୁ ।
ପୁତ୍ରବଧୂଙ୍କୁ ମୋର କଲ୍ୟାଣ ବାଞ୍ଛାକର
ପୂର୍ବର କଥାମାନ ମନରୁ ଏବେ ଛାଡ଼ ।
ଏକଥା ଶୁଣି ସର୍ବେ ସନ୍ତୋଷ ମନ ହେଲେ
ମାନ୍ୟଧର୍ମ କରିଣ ଯେ ଯାହା ପୁରେ ଗଲେ ।
ବିଚ୍ଚରିଲେ ଶ୍ରୀରାମ ସମସ୍ତେ ଏକଅଙ୍ଗ
ସମସ୍ତେ ବୀର ଲାବଣ୍ୟଭାଷା ପ୍ରତିରେ ନାହିଁ ଭଙ୍ଗ
ଏଥୁ ଅନନ୍ତରେ ଯେ ଶୁଣ ଶାକମ୍ଭରୀ
ସୁଗ୍ରୀବର ଅଙ୍ଗଦକୁ ଡାକିଣ ଚ୍ଚପଧାରୀ ।
ବୋଇଲେ ମଇତ୍ର ହେ ମୁଁ ଦେଖିବା ପାଇଁ
ଭରତକୁ ପଠାଇ ମୁଁ ଆଣିଲି ଡ଼କାଇ ।
ଏଥିକି କ୍ରୋଧ ତୁମ୍ଭେ ନକର ମନରେ
ଏ ଜନ୍ମେ ମୋହର ତୁମ୍ଭେ ସଖା ସହୋଦରେ

ପୁତ୍ର ପିତା ତୁମ୍ଭେ ହେ ଯେ ଯାହା ପୁରେଯାଅ
ମୋହଠାରେ ସୁଦୟା ତୁମ୍ଭେ ରଖିଥାଅ ।
ଅକ୍ଷତ ଦେଇଣ ଯେ ମେଲାଣି ତାଙ୍କୁ ଦେଲେ
ଅଙ୍ଗଦ କୁମର କୋଳରେ ବସାଇଲେ ।
ବୋଇଲେ କୁମରରେ ନକର ମନେ ଦୁଃଖ
ପିତାକୁ ମାରିବା କଥା ମନରେ ମୁରୁଛ ।
ଏତେବୋଲି ଅଙ୍ଗଦକୁ ପ୍ରବୋଧ କରାଇଲେ
ଯାଅବାବୁ ନିଜରାଜ୍ୟ ବୋଲିଣ ବୋଇଲେ ।
ଅଷ୍ଟ ସେନାପତିଙ୍କି ଡ଼ାକି ରାମ କହି
ତୁମ୍ଭର ସକାଶେ ମୁଁ ପାଇଲି ବଇଦେହୀ ।
ଭାଇ ଲକ୍ଷ୍ମଣ ପରି ଅଟ ତୁମ୍ଭେ ପୁଣ
ମରଣକୁ ସଂଶୟ ନ କଲ ତୁମ୍ଭେ ମନ ।
କେତେ ଦୁଃଖ ପାଇଛ ମୋହର ସକାଶରେ
ଶରୀର ଥିଲାଯାକ ପ୍ରାଣ ହୃଦୟରେ ।
ଯୁଥପତିମାନଙ୍କୁ କହିଲେ ଚ୍ଚପଧାରୀ
ମୋର ଭାଇ ଶତୃଘନ ପରାଯେ ତୁମ୍ଭେ ସରି ।
ଅନେକ ହିଁ ଦୁଃଖ ଯେ ପାରିଛ ଯୁଦ୍ଧରେ
ବେଳେକ ଉଦ୍ଧରିଲ ଅସୁର ଦଳିବାରେ ।
ଚ୍ଚଟୁଭାଷା କହିଣ ତାଙ୍କୁ ମୋହକଲେ
ଧନ୍ୟଧନ୍ୟ ରାମଚନ୍ଦ୍ର ବୋଲିଣ ବୋଇଲେ ।
ଧନ୍ୟ ତୁମ୍ଭର ଜୀବନ ଧନ୍ୟ ଆମ୍ଭର କୁଳ
ଧନ୍ୟ ଦଇବ ଆମ୍ଭଙ୍କୁ କଲ ହେ ଋଷି କୁଳ ।
ଭଲଯୋଗେ ସୁଗ୍ରୀବର ଜନମ ହୋଇଥିଲେ
ଶ୍ରୀରାମରେ ପ୍ରୀତିକରି ଆମ୍ଭଙ୍କୁ ଭେଟାଇଲେ ।
ନିରାକାର ନିରଞ୍ଜନ ନିର୍ବିକାର ପୁରୁଷ
ନେତ୍ରରେ ଦେଖି ଆମ୍ଭେ ହେଉ ଯେ କୃତାର୍ଥ
ଏତେ ବୋଲି ଶ୍ରୀରାମଙ୍କ ଚରଣେ ଲୋଟଗାଳି
ଦ୍ୱିତୀୟ ଥର ଯୁଦ୍ଧରେ ନିଅ ହେ ଚ୍ଚପଧାରୀ ।
ଆମ୍ଭର ମନ ଯେ ଏବେ ନଯାଏ ଆଉକେଣେ
ଦେଖିବୁ ନେତ୍ରରେ ସଙ୍ଗେଥିବୁ ଅନୁକ୍ଷଣେ ।
ଶୁଣିକରି ରାମ ସନ୍ତୋଷ ମନ ହେଲେ
ଥାଅ ଦିନା କେତେ ଯେ ବୋଲିଣ ବୋଇଲେ
ସୁଗ୍ରୀବଙ୍କୁ ବୋଇଲେ ଚଳ ହେ ବହନ
ରାଜ୍ୟର ପରଜାଙ୍କୁ ପାଳିବ ଯତନ ।
ସୁଗ୍ରୀବର ବୋଇଲେ ମୁଁ କିମ୍ପାଇ ଯିବି ଘର
ମୋର ସ୍ୱାମୀ ଶ୍ରୀରାମ ଅଟନ୍ତି ଠାକୁର ।

ରାମ ବୋଇଲେ ମଇତ୍ର ଅଟହେ ରାଜ୍ୟେଶ୍ୱର
ଏଠାରେ ରହିବାର ନୋହେଟି ବେଭାର ।
ଯେତେବେଳେ ମନଇଚ୍ଛା ତେତେବେଳେ ଆସ
ମୋତେ ସଙ୍ଖୋଳିଣ ଯେ ମନକର ତୋଷ ।
ଗଲାବେଳେ ସଙ୍ଗେ ନେବି ଥିବାଯାକ ଦେଖ
ଏତେ କହି ବୋଧିଲେ କଉଶଲ୍ୟା ସୁତ ।
ଅଙ୍ଗଦ ବୋଇଲା ମୁଁ କେବେହେଁ ନଯିବି
ତୁମ୍ଭର ଶ୍ରୀଚରଣେ ସେବା କରିଥିବି ।
ଶ୍ରୀରାମ ବୋଇଲେ ବେଗେ ଚଳିଲେ କୁମର
ତୋର ପାଇଁ ରାମଧାମ ହୋଇଛି ମୋହର ।
ସେ ଲିଙ୍ଗକୁ ପ୍ରତିଦିନ ଦର୍ଶନ କରିଥିବୁ
ଧୂପ ଦୀପ ପୂଜାରେ ସାବଧାନ ହେବୁ ।
ଗଲାବେଳେ ମୋର ସଂଗେ ଯିବୁ ସ୍ୱର୍ଗପୁର
ଶୁଣିଣ ସନ୍ତୋଷ ହେଲେ ବାଳିର କୁମର ।
ପିତାପୁତ୍ର ଦୁଇଜଣ ରଥପରେ ବସି
ବଧୂ ଘେନି ତାରା ଯେ ବସାଘରୁ ଆସି ।
ଶ୍ରୀରାମ ଚରଣତଳେ ଯାଇ ଓଳଗିଲେ
ଆମ୍ଭଠାରେ ସୁଖ ରଖି ଥିବଟି ବୋଇଲେ ।
ଶ୍ରୀରାମ ବୋଇଲେ ମିତ ମୁହିଁଟି ତୁମ୍ଭର
ସ୍ୱାମୀକି ମାଇଲି ବୋଲି ନ ଧର ଅନ୍ତର ।
ତାରା ବୋଇଲେ ଦେବ ଗଲାବେଳେ ମୋତେ
ବଇକୁଣ୍ଠ ପୁରକୁ ନେବଟି ସଂଗତେ ।
ଅଙ୍ଗଦ ଘରଣୀ କହେ ଶୁଣହେ ପିତା ମୋର
ମୁହିଁ ତୁମ୍ଭ କୂଳବଧୂ ନେବ ସଙ୍ଗତର ।
ଏମନ୍ତ କହିଣ ସେ ରଥରେ ବସିଲେ
ସାରଥିକି କହିଣ ରଥ ଚଳି ଦେଲେ ।
ପଛରେ ରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘନ
ହୟ ପରେ ଚଢ଼ିଣ କରନ୍ତି ଗମନ ।
ନଗ୍ରରୁ ବାହାର ହୋଇ ଗଲେ ପିତାପୁତ୍ର
ସାରଥି ବୋଇଲେ ତୋର ପଛେ ରଘୁନାଥ ।
ଲକ୍ଷ୍ମଣଙ୍କୁ ଅନାଇଣ ତାରାବତୀ କହି
ତୁମ୍ଭେ ଯାଅ ଫେରି ଆମ୍ଭେ ଯାଉଁ ପଥବହି ।
ଶୁଣିଣ ଚରିଭାଇ ଫେରିଣ ଅଇଲେ
ବିଭୀଷଣ, ସୁକର୍ଣ୍ଣ, ସୁବାହୁ ଅଣାଇଲେ ।
ବୋଇଲେ ନିଜପୁର ଯାଅ ତୁମ୍ଭେ ବେଗ
ପରଜା ପାଳିଣ ତୁମ୍ଭେ ବିପୁଳ କର ଭୋଗ ।

ମନହେଲେ ସଂଖୋଳୁ ଥିବଟି ଯେ ମୋତେ
ଚିନ୍ତା ନ ଥିବଟି ଯେ ତୁମ୍ଭଙ୍କୁ ଯୁଗତେ ।
ବିଭୀଷଣ ବୋଲେ ମୁଁ ଅଟେ ତୁମ୍ଭ ଦାସ
ମୋଠାରେ ଦୟାଥିବଟି ଅନାଦି ପୁରୁଷ ।
ମନ୍ଦୋଦରୀ ଆସିଣ ଚରଣେ ନମିଲା
ମୁଁ ତୁମ୍ଭର ଦାସୀ ବୋଲିଣ ବୋଇଲା ।
ବଧୂମାନେ ଓଳଗି ହୋଇଲେ ଆସି ପାଶ
ସୁକଲ୍ୟାଣ କରି ରାମ ହୋଇଲେ ହରଷ ।
ଏସନ ସମୟରେ ମହାନାଦ ପରବେଶ
ଦେଖିଣ ଶ୍ରୀରାମ ହୋଇଲେ ହରଷ ।
ଶ୍ରୀରାମ ବୋଇଲେ ରେ ମହାନାଦ ଶୁଣ
କିଛି ଚିନ୍ତା ନକରି ରାଜ୍ୟ କରତୁ ପାଳନ ।
ପିତା ତୋର ବିଭୀଷଣ ମାତା ମନ୍ଦୋଦରୀ
ଏମାନଙ୍କୁ ମନେ ଧରିଥିବୁ ସେବାକରି ।
କେତେ କଳି ମୋର ସଙ୍ଗେ ଜନନୀ ତୋର କଲା
ମନର ସୁଖରେ ତୋତେ ରାଜା କରାଇଲା ।
ମହାନନ୍ଦ ବୋଲେ ପିତା କଥାକହୁ କେଣେ
ତୁହି ମୋର ପିତା ମାତାମୁହିଁ ଜାଣେ ଏଣେ
ଚରଣେ ଓଳଗି ହୋଇ ରଥରେ ବସିଲା
ତ୍ରିଜଟା ଆସିଣ ରାମ ଚରଣେ ଓଳଗିଲା ।
ଅନେକ ରୋଦନ ଯେ କରଇ ସେ ବାଳୀ
ବୋଲଇ ପିତା ମାତା ଅଟ ଯେ ମୋହରି ।
ମୋରଠାର ସୁଦୟା ରଖିଣ ଥିବ ପୁଣ
ଶୁଣିକରି ଶ୍ରୀରାମ ବୋଲନ୍ତି ବଚନ ।
ତୋହର ସକାଶରେ ଜାନକୀ ମୁଁ ଯେ ପାଇ
ଯେ ଯେବେ ନଥାନ୍ତୁ ଯେ ମରନ୍ତା ବଇଦେହୀ ।
ଲଙ୍କାରେ ତାର କେହି ଭରସା ନଥିଲା
ତୋହର ଭରସାରେ ମୋ ସଖି ବଞ୍ଚିଲା ।
ଧର୍ମରେ ଆମ୍ଭର ତୁ ଅଟୁ ଯେ ଜନନୀ
ତୁମ୍ଭର ପୁତ୍ରବଧୂ ଅଟୁ ଆମ୍ଭେ ପୁଣି ।
ଶୁଣିଣ ତ୍ରିଜଟା ଯେ ମନରେ ତୋଷହେଲା
ସ୍ୱାମୀର ସଙ୍ଗେ ଯାଇ ରଥରେ ବସିଲା ।
ସାରଥିକି କହିଣ ରଥ ବେଗେ ଚଳି
ପାଞ୍ଚ ରଥ ଆଗପଛେ ଯାଏ ଫେରି କରି ।
ଚରିହୟ ଚଢ଼ି ଚରିଭାଇ ଗୋଡାଇଲେ
ନଗ୍ରର ବାହାରେ ଛାଡି ଲେଉଟି ଅଇଲେ ।

ଲଙ୍କାରେ ପ୍ରବେଶ ବିଭୀଷଣ ହେଲା
ନିଜ ମନ୍ଦିରେ ଯାଇଣ ନିଶ୍ଚିନ୍ତେ ରହିଲା ।
ସୁକର୍ଣ୍ଣ ପ୍ରବେଶ ଯେ ଅଲଙ୍କା ଭୁବନେ
ରଥରୁ ଓହ୍ଲାଇ ସେ ଗଲାକ ଭୁବନେ ।
ମହାନାଦ ଯେ ଜ୍ୟୋତି ଲଙ୍କାରେ ପ୍ରବେଶ
ରଥରୁ ଓହ୍ଲାଇଣ ଗଲା ନିଜବାସ ।
ସୁବାହୁ ସୁଲଙ୍କାରେ ହୋଇଲା ଯାର ପୁଣ
ଘରଣୀକି ଘେନି ଘରେ ମିଳିଲା ତତକ୍ଷଣ ।
ଏଥୁ ଅନନ୍ତରେ ଯେ ସୁଗ୍ରୀବ ଚଳିଯାଇ
ବାଟରେ ତାରା ଯେ ସୁଗ୍ରୀବ ପୁଣ କହି ।
ରଘୁନାଥ ଯେବେ ହେ ଦେବ ଦାମୋଦର
ଆମ୍ଭମାନଙ୍କଠାରେ ଏଡ଼େ ଭାବ ତାର ।
ଅନନ୍ତ ବାସୁଦେବ କୋଦଣ୍ଡ ଧାରଣ
ସେ କିପାଁ ନିଭନ ଯେ ହୁଅନ୍ତି ତୋତେ ପୁଣ ।
ସୁଗ୍ରୀବର ବୋଇଲେ ଶୁଣ ତୁ ମନୋହାରୀ
ସବୁଦିନେ ଦାସ ମୁଁ ଅଟଇ ତାଙ୍କରି ।
ସେହି ସ୍ନେହ ମୋହଠାରେ କରନ୍ତି ଦୟାଭାବ
ଯେଣୁ ମୁଁ ଆଦିତ୍ୟଙ୍କ କୋଳରେ ସମ୍ଭବ ।
ତାରାବତୀ ବୋଇଲେ ତୁମ୍ଭେ ତରବିର ସୁତହେଲ
ବାଳ କିପାଁ ଅଭାବ ସେ ନୋହିଲେ ଦୁର୍ଲ୍ଲଭ ।
ସୁଗ୍ରୀବ ବୋଇଲେ ସେ ଅଟେ ଇନ୍ଦ୍ରତେଜ
ସବୁଦିନେ ସୁରରାଜା ହୁଅଇ ମତ୍ତଗର୍ବ ।
ପରସ୍ତିରୀ ହରଣ ଯେ ଅଟେ ତାର ମତି
ସେ ସକାଶୁଁ ତାର ପୁତ୍ର ଉତପାତେ ବ୍ୟାପି ।
ଦେଖିଲୁ ଯେ ସୋଦରରେ ଅଭ୍ୟାନ୍ତର କଲା
ମୁହିଁତାର ହିଂସାଦାର ଘଉଡ଼ି ମୋତେ ଦେଲା ।
ସେ ମୋହର ଜ୍ୟେଷ୍ଠ ଯେ ମୁଁ ଅଟେ କନିଷ୍ଠ
ମୋର ଭାରିଯା ମାନିତ ତାକୁ କଲା ନଷ୍ଟ ।
ଭାଇ ବୋହୂ ହରିଲା ଅଜ୍ଞାନ ପଣତାର
ତେଣୁ କୋପକଲେ ନିରଞ୍ଜନ ନିରାକାର ।
ବିଚରିଲେ ପଶୁର ଅଙ୍ଗରେ ବାଳି ସରି
ତେଣୁକରି ବ୍ରହ୍ମଶରେ ମାଇଲେ ରଘୁପଧାରୀ ।
ତୋରମନ ସନ୍ତୋଷରେ ଯାଚିଣ ଦେଲେବର
ସତୀରେ ଗଣିତା କରି କଲେ ଯେ ଉଦ୍ଧାର ।
ଶୁଣିଣ ତାରାମନ ସନ୍ତୋଷ ହୋଇଲା
ନିଜ ନବରେ ପ୍ରବେଶ ବେଗେ ଯାଇଁ ହେଲା ।

ରଥରୁ ଓହ୍ଲାଇଣ ନିଜପୁରେ ଗଲା
ସଙ୍ଗରେ ବଧୂ ଘେନି ନବରେ ପଶିଲା ।
ସ୍ନାନ ମାଜଣା ଯେ ହୋଇଣ ବେଗେ ପୁଣ
ପୁତ୍ର ବଧୂ ଘେନିଣ ଯେ କରନ୍ତି ଭୋଜନ ।
ଘରିଦିନ ଅଙ୍ଗଦ ଯେ ରହିଣ ଚଳିଗଲା
ସେତୁବନ୍ଧ ରାମେଶ୍ୱର ସ୍ଥାନରେ ମିଳିଲା ।
ସ୍ନାହାନ ଶଉଚ ଯେ ଦେବାର୍ଚ୍ଚନ ସାରି
ରାମନାଥ ଲିଙ୍ଗକୁ ଯାଇଣ ପୂଜାକରି ।
ଫେରିଣ ଭୋଜନ ମଣୋହି ପୁଣ କଲା
ଏଥୁ ଅନନ୍ତରେ ଶୁଣ ହେମବନ୍ତର ଦୁଲଳା
ସୁଗ୍ରୀବର ଯିବାର ସେହ୍ନା ଯୂଥପତି
ଏମାନେ ରହିଲେ ସର୍ବେ ଶ୍ରୀରାମର କତି ।
ନଳନୀଳ ସୁଷେଣ ଯେ ଏହୁ ତିନିଜଣ
ଗବୟ ଗବାକ୍ଷ ଦଧି ମୁଖ ଯେ କଞ୍ଚଣ ।
ପବନ ପନଶୀଳ କେଶରୀ ସେତାପତି
ମହୀନ୍ଦ୍ର ଦ୍ୱିବିନ୍ଦ ସହିତେଣ ଅଛନ୍ତି ।
କୁମୁଦ କାଳୀମୁଖ ସୁନାଶ ପରାସ
ତାରକ୍ଷ ଗନ୍ଧମାର୍ଦନ ବିବିଧ ସାରାସ ।
କୁନ୍ଦ କାମୋଦ ଯେ ବସନ୍ତ ଡାଳିମ୍ବ
ସମ୍ପାତୀ ଶତବଳ ଶତବାଳି ଜୀବ ।
ସେହ୍ନା ଯୁଥପତି ଯେ ସମସ୍ତେ ରହିଲେ
ତାଙ୍କ ସଙ୍ଗେ ହନୁମନ୍ତ ସେ ରହେ ଭଲେ ।
ସେହ୍ନା ଯୁଥପତି ଯେ ରହିଲେ ସବୁ ଜାଣ
ବୋଲନ୍ତି ସଦାଶିବ ପାର୍ବତୀ ଦେବୀ ଶୁଣ ।
ଏଥୁ ଅନନ୍ତରେ ଯେ ଜାନକୀର ସାଇଁ
ମନର ସନ୍ତୋଷରେ ଆନନ୍ଦ ଯେ ହୋଇ ।
ମର୍ଦ୍ଦନ ମାଜଣା ଯେ ହୋଇଣ ରଘୁପଧାରୀ
ସ୍ନାନ ସାରିଣ ସେ ଯେ ଦେବାର୍ଚ୍ଚନ କରି ।
ଭୋଜନ ସାରିଣ ଯେ ପଲଙ୍କେ ନିଦ୍ରାଗଲେ
ଆଳସ୍ୟ ଭାଙ୍ଗି ବାହାର ଜଗତୀରେ ମିଳେ
ଗହ ଗହ ସଭା ଯେ ଲାଗିଲା ଗରୁ ଟାଣ
ପଲଙ୍କ ଉପରେ ସିଂହାସନେ ବିଜେ ରାମଜାଣ
ଏଥୁ ଅନ୍ତରେ ଯେ ଶୁଣ ଶାକମ୍ଭରୀ
ବିଶର୍ବା ଋଷି ଯାଇ ମିଳିଲେ ଲଙ୍କାପୁରୀ ।
ଅନ୍ତଃପୁରେ ଯାଇଣ ହେଲେ ପରବେଶ
ଦେଖିଣ ରାଣୀହଂସ ମିଳିଲେ ସମସ୍ତ ।

ନଉକେଶା ସହିତେ ମିଳିଲେ ସର୍ବେ ଆସି
ମୁନିଙ୍କ ଚରଣରେ ଓଳଗି ଶୁଅନ୍ତି ।
ସୁକଲ୍ୟାଣ କଲେ ଯେ ବିଶ୍ରବା ଋଷି ପୁଣ
ଏମନ୍ତ ସମୟରେ ମିଳେ ବିଭୀଷଣ ।
ପିତାଙ୍କ ଚରଣରେ ନମସ୍କାର କଲା
ବିଶ୍ରର୍ବା ଋଷି ତାଙ୍କୁ ସନ୍ତୋଷ ମନ ହେଲା ।
ପୁତ୍ରବଧୂ ମୋର ଯେ ବୟସ ଏକ ମେଳ
ବହୁତ ସୁକୃତ ଯେ ଅଟଇ ତୁମ୍ଭର ।
ବିଷ୍ଣୁ ସଙ୍ଗେ ସଙ୍ଗ ହେଲୁ ତୁରେ ପୁତ୍ର
ସେ ବିଷ୍ଣୁ ଦେବତା ତୋତେ କଲେରେ ପବିତ୍ର ।
ଶ୍ରୀରାମଚନ୍ଦ୍ର ଠାରେ ବିଶ୍ୱାସ କରିଥିବୁ
ତେବେ ତୁ ଯୁଗେ ଯୁଗେ ଅମର ହୋଇବୁ ।
ମୋହର ବଚନ ତୁ ଶୁଣରେ କୁମର
ବିଷ୍ଣୁ ଦେବତାଙ୍କୁ ତୁ ପୂଜିବୁ ନିରନ୍ତର ।
ଯଶ ଯେଉଁ ରୂପରେ ହୋଇବ ପ୍ରାପତ
ସାକ୍ଷାତେ ବିଷ୍ଣୁର ତୁ ଅଟୁରେ ଭକତ ।
ତୋର ମନ ତୋତେ ଯେ ପୁଣରେ ପ୍ରାପତ
ମନ୍ଦୋଦରୀ ଘେନି ଥାଅ ଲଙ୍କାରେ ନିଶ୍ଚିନ୍ତ ।
ପୂର୍ବରୁ ଧାପ ଛାଡ଼ିଣ ପ୍ରଜା ତୁହି ପାଳ
ଗୋଦୋହନ କରିବୁରେ ବିଶ୍ୱନାଥ ଆଳ ।
ବିଷ୍ଣୁ ଦେବତାଙ୍କୁ ଯେ ଭୋଗ ନିତ୍ୟେ ଦେବୁ
ଶୁକଳ ନବମୀରେ ଦେବୀଙ୍କି ଭୋଜି ଦେବୁ ।
କୃଷ୍ଣ ଚତୁର୍ଦ୍ଦଶୀରେ ସଦାଶିବ ପୂଜା
ଏକାଦଶୀ ଉପବାସ କରିବୁ ତନୁଜା ।
ନିତ୍ୟାନି ପ୍ରଭାତରେ ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦେବୁ
ସପତମୀ ଦିନ ଅନ୍ନ ଗ୍ରହଣ ନ କରିବୁ ।
ସେ ଦିନ ସ୍ତିରୀଅଙ୍ଗ କେଭେ ନ ଛୁଇଁବୁ
ଆହୁରି କଥାଏ କହୁଛି ଶୁଣ ବାବୁ ।
ସଂକ୍ରାନ୍ତି, ଅମାବାସ୍ୟାରେ ନ ଭକ୍ଷିବୁ ଅନ୍ନ
ମିଷ୍ଟାନ୍ନ ଭୋଜନ କରାଇବୁ ବିପ୍ରଜନ ।
ଶନିବାରେ କଳା ବସ୍ତ୍ର ନ ପିନ୍ଧିବୁ ନରପତି
ରବିବାରେ ଦଧି ଅନ୍ନ ଦେବୁ ହୋ ବୃହସ୍ପତି
ସୋମବାରେ ବଳା ତୁରେ ଶଙ୍ଖାଦାନ ଦେବୁ
ନବ ରତ୍ନ ମୁଦି ଅଙ୍ଗୁଷ୍ଠରେ ଲାଇଥିବୁ ।
ଅମନାତ୍ୟଗଣଙ୍କୁ ତୁ ସମର୍ପିବୁ ରାଜ୍ୟ
ମନ୍ତ୍ରୀକି ପୁଚ୍ଛିଣ ତୁ କରିବୁ ସବୁ କାର୍ଯ୍ୟ ।

ନଗ୍ରର ନରନାରୀ ମ୍ଳେଚ୍ଛ ଯେ ନୋହିବେ
ଶୁଚିମନ୍ତ ଆଚରରେ ସମସ୍ତେ ରହିଥିବେ ।
ପୁଣ୍ୟକାଳ ମାନଙ୍କରେ କରିବେ ନାନା ଧର୍ମ
ଯେ ଯାହାର ଜାତିରେ ଥିବେ ନିଜ କର୍ମ ।
ହାତୀଘୋଡ଼ା ନିତିନିତି ସଙ୍ଖୋଳିବେ ଯେପରିଛା
ରୋଗକୁ ଚିହ୍ନି ବୈଦ୍ୟ କରିବେ ଚିକିତ୍ସା ।
କ୍ଷତ୍ରୀମାନେ ସାଧାନ ଯେ ନଛାଡ଼ିବେ କ୍ଷଣେ
ପରଦେଶ ବାରତା ଦେଉଥିବେ ଘରଗଣେ
ପୁଣ୍ୟ ସ୍ଥାନ ଦେଖି ନିତ୍ୟ ହୋମ କରାଇବୁ
ଦେବତା ବ୍ରାହ୍ମଣଙ୍କୁ ବିନୟ ଭାବ ହେବୁ ।
ବଣିଜାର ଲୋକଠାରେ ରଖିଥିବୁ ଦୟା
ବିଶ୍ୱାସ ଲୋକଙ୍କୁ ତୁ ନ କରିବୁ ମାୟା ।
କାର୍ତ୍ତିକମାସେ ସାଧୁତେ ଛାଡ଼ିବେଟି ଧାନ
ଅଗ୍ନି ମୁଖରେ ତୋଷିବେ ସୁର ଦେବତାପୁଣ ।
ତୁ ମହା ଧାର୍ମିକରେ ଅଟୁ ସତ୍ୟବାଦୀ
ମୁହିଁ ତୋତେ କିସରେ ଶିଖାଇ ଦେବି ବୁଦ୍ଧି ।
ଶ୍ୱେତ ଛତ୍ର ଧରାଇବୁ ସକଳ ଦିନେ ପୁଣ
ଏତେ ବୋଲି କହିଲେ ବିଶ୍ରବା ଋଷି ଜାଣ ।
ସକଳ ବଧୂମାନେ ଚରଣେ ଓଳଗିଲେ
ବିଭୀଷଣ କରଯୋଡ଼ି ଆଗରେ କହିଲେ ।
ଭୋ ପିତା ମାତାଙ୍କୁ ନିଅ ସଙ୍ଗତରେ
ବିଶ୍ରବା ବୋଇଲେ ସେ ଅଯୋଗ୍ୟ ହେଲା ମୋରେ ।
ମୋର ଯୋଗ ମେଣ୍ଟିଣ ଯେ ପୁତ୍ରରେ ଭଗତି
ତେଣୁ କରି ତାଙ୍କୁ ମୁଁ ନ ନେବି ଆଉ କତି ।
ଶ୍ରୀରାମ ଯେତେବେଳେ ବୈକୁଣ୍ଠ ପୁର ଯିବେ
ତେତେବେଳେ ପୁତ୍ରରେ ଡ଼କାଇ ତେତେନେବେ ।
ମନରେ ହେତୁକରି ଥିବୁରେ କୁମର
ଶତେ ରାଣୀ ରଖିଥିବୁ ମନ୍ଦୋଦରୀ ସଙ୍ଗତର ।
ଜନନୀ ରାଣୀମାନଙ୍କୁ ପାଶେ ରଖିଥିବୁ
ବିନୟ ହୋଇଣ ତୁ ବଚନ କହିବୁ ।
ତେବେ ସ୍ୱର୍ଗକୁ ଯିବ ମାତା ରାଣୀ ପୁଣ
ତେତେବେଳେ କାରଣ ପାଇବେ ଏହୁଜାଣ ।
ରାଣୀମାନେ ବୋଲେ କୃତାର୍ଥ ହେଲୁ ଆମ୍ଭେ
ତୁମ୍ଭେ ପିତାମହ କହିଲ ନିଗମେ ।
ଏତେ କହି ବିଶ୍ରବା ଋଷି ଚଳିଗଲେ
ଜ୍ୟୋତି ଲଙ୍କାରେ ଯାଇଁ ପରବେଶ ହେଲେ ।

ମହାନାଦ ଦେଖିଣ ଯେ ନମସ୍କାର କଲା
କୃତାର୍ଥ ହୋଇଲି ବୋଲି ଚରଣେ ନମିଲା ।
ତାହାର ରାଣୀମାନେ ଚରଣେ ପୂଜାକଲେ
ସକଳେ ଏକଠାବ ହୋଇଣ ବସିଲେ ।
ମୁନି ବୋଇଲେ ଧର୍ମରେ ହୁଅ ଆତଯାତ
ଆଦିତ୍ୟ ପୂଜାକର ବାରମାସ ଯାକ ।
ସଂକରାନ୍ତି, ପୂର୍ଣ୍ଣମୀ ବାର ଚତୁର୍ଦ୍ଦଶୀ
ଏକାଦଶୀ, ନବମୀ, ସପତମୀ ନିଶି ।
ଏଥିରେ ହୋମକଲେ ଦେବତା ତୋଷ ହୋଇ
ଏହି ପ୍ରକାରେ ସର୍ବ ବୁଝାଏ ମୁନି ଯାଇ ।
ନିଜ ଆଶ୍ରମରେ ଯାଇ ହେଲେ ପରବେଶ
ଏଥୁ ଅନନ୍ତରେ ଯେ ଶୁଣ ଦିବ୍ୟ ରସ ।
ସ୍ୱୟଂ ମନୁ ପୁରେ ଅଙ୍ଗିରା ହେଲେ ପରବେଶ
ରାଜନୀତି ପଢାଇ ତାକୁ ଧର୍ମରେ ବିଶ୍ୱାସ ।
ସେଠାରୁ ଚଳିଯାଇ ସୁଲଙ୍କା ଗଡ଼ ଗଲେ
ସୁବାହୁକୁ ଦେଖିଣ ଆନନ୍ଦ ମନ ହେଲେ ।
ଧର୍ମ ବାଟ ଦେଖାଇ ରାଜନୀତି କହି
ତାହାର ମନ ଚିତ୍ତ ଧର୍ମରେ ବୁଡ଼ାଇ ।
ସେଠାରୁ ଚଳିଯାଇ ଅଲଙ୍କା ଗଡ଼େହେଲେ
ସୁକର୍ଣ୍ଣ ଦେଖିଣ ଯେ ନମିଲା ପୟରେ ।
ଅଙ୍ଗୀରା ବୋଇଲେ ତୁ ଶୁଣରେ ଅସୁର
ଧର୍ମ ପଥ ପଡ଼ିବାରୁ ପିତା କଲା ତୋର ।
ତୁହି ଏବେ ହୋମ ଦାନ ପୁଣ୍ୟ କର
ଓଷା ବାର ବ୍ରତ ଯେ ସମ୍ପୂର୍ଣ୍ଣ ପ୍ରକାର ।
ଦେବତା ବ୍ରାହ୍ମଣଙ୍କୁ ହୋମ ଦାନରେ ତୋଷ
ନ କଲେ ପିତା ପ୍ରାୟେ ତୁହି ଯିବୁ ନାଶ ।
ଏତେ କହିଣ ମୁନି ନିଜ ପୁରେ ଗଲେ
ଅସୁରେ ସେହିଦିନୁ ଧର୍ମ ଆଚରିଲେ ।
ସୁଗ୍ରୀବ ଆଗରେ ମିଳିଲେ ଦୁର୍ବାସା
ମୁନିଙ୍କ ପାଦେ ପଡ଼ି ସୁଗ୍ରୀବ କହେ ଭାଷା ।
କେଉଁ କାର୍ଯ୍ୟେ ଅଇଲେ ବୋଲିଣ ବୋଇଲେ
ଚରଣ ଧୋଇ ଦେଇ ଆସନେ ବସାଇଲେ ।
ମୁନି ବୋଇଲେ ତୋରଠାରେ ମୋରଦୟା
ତେଣୁ କରି ଅଇଲି ନ କରି ହୃଦେ ମାୟା ।
ତୁ ଯେଣୁ ବାସୁଦେବରେ ହୋଇଲୁ ଭଗତି
ତୋହର ମନରେ ଯେ ଗର୍ବ ପୁଣ ଅଛି ।

ଦାନ ପୁଣ୍ୟ ନକରୁ ନକରୁ ହୋମ ପୁଣ
ଓଷା ବାର ବ୍ରତ କିମ୍ବା ନକରୁ ରାଜନ ।
ବାରମାସ ହୋମ କରି ତୁ ନିତି ଦାନଦେବୁ
ପୁତ୍ର ସମାନରେ ତୁ ପରଜା ପାଳିବୁ ।
ରାବଣ ଦୁଷ୍ଟପଣ କରିଣ ନାଶ ଗଲେ
ନର୍କ ଦର୍ଶନ କରେ ଧର୍ମରେ ହାନି ତାରେ ।
ବଳି ଯେ ତୋହର ଭାଇ ଅଟେ ପୁଣ
ଭାଇ ବୋହୁ ହରିବାରୁ ସେହି ଦୋଷୀ ଜାଣ ।
ରାମହସ୍ତେ ମରିବାରୁ ସେହି ସ୍ୱର୍ଗ ଗଲା
ନପୁଂସକ ହୋଇଣ ସେ ପୁରେ ରହିଲା ।
ଧର୍ମରେ ଆତଯାତ ସକଳ ସୃଷ୍ଟି ଜାଣ
ଧର୍ମ ଆଚରଣ ଯେ କର ହୋ ରାଜନ ।
ଏତେକହି ମୁନି ଯେ ସେଠାରୁ ଚଳିଗଲେ
ସୁଗ୍ରୀବ ଧର୍ମ କଥାରେ ବିଶ୍ୱାସୀ ହୋଇଲେ ।
ଦାନପୁଣ୍ୟ କରି ହୋମ ଯୋଗରେ ସେହୁପୁଣ
ମାସକେ ବାରଦିନ ଉପାବସ ତାର ଜାଣ ।
ସେଠାରୁ ମୁନି ଯାଇ ଅଙ୍ଗଦ ପୁରେ ମିଳି
ଦେଖିଣ ଅଙ୍ଗଦ ଯେ କଲା ନିଉଛାଳି ।
ବସିଣ ମୁନି ତାକୁ ସକଳ ବୁଝାଇଲେ
ରାମନାଥ ଦର୍ଶନ କରି ନିଜପୁର ଗଲେ ।
ଏଥୁଅନନ୍ତରେ ଯେ ରାମଚନ୍ଦ୍ର ରାୟେ
ଏକାନ୍ତେ ହନୁମନ୍ତକୁ ହକାରିଣ କହେ ।
ଆଶ୍ୱାସନା କରିଣ ଆଉଁସେ ଶରୀର
ଯାଅସି ହନୁମନ୍ତ ଗନ୍ଧମାର୍ଦ୍ଦନ ପର୍ବତର ।
ସୁପକ୍ୱ ଫଳ ଭୁଞ୍ଜିଣ ଆନନ୍ଦରେ ଥାଅସି
ବହୁତ ଦୁଃଖ ତୁ ସମରେ ପାଇଛୁରେ ବସି ।
ଶୁଣିଣ ହନୁମନ୍ତ ଯୋଡ଼େ ବେନି କର
ମୋତେ କିମ୍ବା ସ୍ନେହ ଛାଡ଼ିଲ ରଘୁବୀର ।
ମୁହିଁ ତୋର ଚରଣେ ସେବା କରିଥିବି
ତୁମ୍ଭର ପଦ୍ମ ମୁଖରୁ ନିତ୍ୟେ ଦେଖୁଥିବି ।
ଭୋ ରଘୁ ନନ୍ଦନ ତୋର ମୋଠାରେ ଯେବେଶ୍ରଦ୍ଧା
କାହିଁକି ନ ଯାଇ ମୁହିଁ ଥିବି ଏ ଅଯୋଧ୍ୟା ।
ତୋତେ ଛାଡ଼ଇ ଯିବାକୁ ନବଳେ ମୋର ମନ
ଯେସନେକ ଲକ୍ଷ୍ମଣ, ଭରତ, ଶତ୍ରୁଘନ ।
ଏହାଙ୍କ ସଙ୍ଗରେ ମୁଁ ସେବା କରୁଥିବି
ମୁଁ ତୋତେ ଛାଡ଼ିଣ ନାଥ କାହିଁକି ନଯିବି ।

ଏତେ ବୋଲି ହନୁମନ୍ତ ମସ୍ତକେ ଦେଲେହସ୍ତ
ହସି କରି ଭୁଜ ତାର ଧଇଲେ ରଘୁନାଥ ।
ବୋଲନ୍ତି ଶ୍ରୀରାମ ହେ ପବନ ସୁତ ଶୁଣ
ତୋହର ବଳରେ ସିନା ସୁଗ୍ରୀର ରାଜାପଣ ।
ତୁ ମହାବୀର ହାଦେ ଅଟୁ ମହା ଯୋଧି
ତାହାକୁ ମିତ ପଋରିବ ସକଳ ବୁଦ୍ଧି ।
ଗନ୍ଧମାର୍ଦ୍ଦନ ଗଲେ ଯିବୁ ସୁଗ୍ରୀ ପାଶ
କାର୍ଯ୍ୟ ପଡ଼ିଲେ ଦୂତ ବରଗିଲେ ଆସ ।
ଶୁଣିଣ ହନୁମନ୍ତ ଯୋଡ଼େ ବେନିକର
କଥାଏ ମାଗିବି ମୋତେ ଦେବ ରଘୁବୀର ।
ତୁମ୍ଭର କୀର୍ତ୍ତି ପୃଥ୍ୱୀରେ ଯେତେକାଳ ଥିବ
ତେତେକାଳ ଦେହ ମୋର ନିରୋଗୀ ହୋଇବ
ତୋହର ଭଗତି ଯେ ହୋଇଥିବି ମନେ
ତୋହର ପଦ୍ମ ମୁଖ ଚିନ୍ତୁଥିବି ଧ୍ୟାନେ ।
ରାମ ବୋଇଲେ ତୋର ବାଞ୍ଛା ସିଦ୍ଧ ହେଉ
ରାମନାମ ଥିବାଯାଏ ତୋର ଦେହ ସୁସ୍ଥ ଥାଉ ।
ଶୁଣିଣ ହନୁମନ୍ତ ନମସ୍କାର କଲା
ଜାନକୀଙ୍କି କହିବାକୁ ଭିତର ପୁର ଗଲା ।
ଅନ୍ତଃପୁରେ ଯାଇଁ ହେଲା ପରବେଶ
ଦେଖିଣ ପଲଙ୍କ ପରେ ଜାନକୀ ହରଷ ।
ତତକ୍ଷଣେ ଜାନକୀ ଉଠିଲେ ବେଗ ହୋଇ
ଦେଖି ହନୁମନ୍ତ ନମସ୍କାର ଯେ କରଇ ।
ଭୋ ମାତା କିଷ୍କିନ୍ଧ୍ୟାକୁ ପିତା ଆଜ୍ଞାଦେଲେ
ମୋରଠାରେ ପିତା ଯେ ନିର୍ଦ୍ଦୟା ହୋଇଲେ ।
ମୋର ମନ ନାହିଁ ଯେ ଶ୍ରୀରାମ ବୋଲନ୍ତି
ଶୁଣି କରି କହନ୍ତି ଯେ ଜନକ ଦୋହିତୀ ।
ଯାଅସି ହନୁମନ୍ତ ଦେଖ ଘର ତୋର
ମାସେ ହୋଇଲାଣି ଯେ ଆସିବା ଉଚ୍ଛୁର ।
ସୁଗ୍ରୀବର ସଂଗରେ ବାବୁ କିଷ୍କିନ୍ଧ୍ୟା ଥାଅ
ଅମୃତ ସମାନରେ ଫଳ ମୂଳ ଖାଅ ।
ସର୍ବଦା ଶରୀରରେ ଆରୋଗ୍ୟ ହୋଇଥିବୁ
ସର୍ବଦା କାଳରେ ତୁହି ଅମର ହୋଇବୁ ।
ରୋଦନ କରି ମାରୁତି ଭୂମିରେ ପଡ଼ିଲା
ବୋଇଲା ଜନନୀଗୋ ପିତା କହିବା କଥାହେଲା ।
ନିରାଶ ବଚନ ଏବେ ହୃଦରୁ ବାହାରିଲା
ଏତେ କହି ହନୁମନ୍ତ ବାହାର ହୋଇଲା ।
ନମସ୍କାର କରିଣ ବାହୁଡ଼ି ଅଇଲା
ଶ୍ରୀରାମ ପାରୁଶରେ ପ୍ରବେଶ ହୋଇଲା ।
ରାମଙ୍କୁ ପ୍ରଦକ୍ଷିଣ କଲାକ ମାରୁତି
ବେନି ନୟନରୁ ଲୁହ ବହଇ ଝଟତି ।
ଯାଅ ବାବୁ ବୋଲି ଆଜ୍ଞା ଦେଲେ ରଘୁପତି
ମାରୁତି ରୋଦନ ଦେଖି ମନରେ ବିଋରନ୍ତି ।
ଭରତ, ଲକ୍ଷ୍ମଣ ଯେ ଶତୃଘନ ତିନି
ଏହାକୁ ପ୍ରଦକ୍ଷିଣ କଲା ଯେ ପାବେନୀ ।
ଶ୍ରୀରାମ ବୋଇଲେ ବାବୁ ଏବେ ତୁହି ଶୁଣ
ସେହ୍ନା ଯୂଥପତିଙ୍କର ସଙ୍ଗରେ ଯିବୁ ପୁଣ ।
ତୋରମନ ତୋଷରେ ଯେତେବେଳେ ହେବ
ତେତେବେଳେ ଆସିବୁରେ ପବନ ଆତ୍ମଜ ।
ନାରଦଙ୍କୁ ଚାହିଁଣ ରାମଚନ୍ଦ୍ର କହି
ଶତୃଘନକୁ କହିଣ ଚଳ ହେ ମୁନି ତହିଁ ।
ସଞ୍ଜୀବନୀ ପୁରେ ଯାଇଁ ହେବ ପରବେଶ
ଜନ୍ତୁପତିଙ୍କି କହିବ ମୋହର ସନ୍ଦେଶ ।
ବୋଲିବ ରାମଚନ୍ଦ୍ର ରାବଣକୁ ମାରି
ଉପର ବଂଶରେ ଶାପ ଦେଲେ ଦଣ୍ଡଧାରୀ ।
ନର୍କ ଦର୍ଶନ ଯେ କରିବ ଷୋଳଯୁଗ
ତେବେ ଦ୍ୱାରପାଳକୁ ହେବ ସେହି ଯୋଗ୍ୟ
ଶୁଣିଣ ନାରଦ ଯେ ସୀଉକାର କଲେ
ଶତୃଘନକୁ ଋହିଁଣ ଶ୍ରୀରାମ ଆଜ୍ଞା ଦେଲେ ।
ଶ୍ରୀରାମ ଆଜ୍ଞାରେ ଯେ ଶତ୍ରୁଘନ ପୁଣ
ଅସୁର ଦଳନ ରଥ ସଜକଲେ ଜାଣ ।
ରାମଙ୍କୁ ନମସ୍କାର କରିଣ ରଥେ ବସି
ନାରଦଙ୍କୁ ରଥପରେ ବସାଇ ଚଳନ୍ତି ।
ମାତଳି ବାହିଲା ରଥ ଚଳିଲା ଶୂନ୍ୟରେ
ଦକ୍ଷିଣ ଦିଗରେ ରଥ ଚଳିଗଲା ଖରେ ।
ପ୍ରଥମେ ଅଯୋଧ୍ୟାପୁର ଜିଣି କରି ଗଲେ
ଦ୍ୱିତୀୟେ ହେମାଳୟ ପୁରକୁ ଜିଣିଲେ ।
ତୃତୀୟେ ସ୍ୱର୍ଗପୁର ଜିଣିଲେ ସେ ପୁଣ
ଚତୁର୍ଥରେ ଜିଣିଲେ ନୃସିଂହନାମେ ଜାଣ ।
ପଞ୍ଚମରେ ଦେବୀପୁର କରନ୍ତି ଗମନ
ଷଷ୍ଠରେ ଦେଖିଲେ ଯେ ଅପୂର୍ବ କଥାମାନ ।
ସପ୍ତମେ ସଞ୍ଜୀବନୀ ପୁରରେ ପରବେଶ
ଋରିଦ୍ୱାର ଦେଖିଣ ସେ ମନରେ ହରଷ ।

ପର୍ବତ ସମାନରେ ଦେଖି ମଇଁଷି ପୁଣ
ସିମିଳୀ ଗଛ ଗୋଟାଏ ବାର ଯୁଣ ଜାଣ ।
ବାରକୋଟି ସେ ବୃକ୍ଷରେ ଅଛନ୍ତି ବନ୍ଧାହୋଇ
ଚଉପାଶେ ଦେଖିଲେ ଅନେକ ଲୋକରହି ।
ସତର ଯୁଣ ପଥ ଯେ ଅଟେ ନଗ୍ର କୋଟି
ଛପନ କୋଟି ଲୋକ ସେଥିରେ ଅଛନ୍ତି ।
ନାନା ବର୍ଣ୍ଣେ ଦ୍ରବ୍ୟ ଯେ କରନ୍ତି ଭୋଗଜାଣ
ସବୁଦ୍ୱାରେ ନାନାବର୍ଣ୍ଣ କରନ୍ତି ଭୂଷଣ ।
ଅମୃତ ସମାନେ ଫଳ ମୂଳଛନ୍ତି ଥୋଇ
ଦେଖିଲା ଲୋକମାନଙ୍କୁ ଯେ ଯାଚିକରି ଦେଇ ।
ନଦେଲା ଲୋକଙ୍କୁ ଲୁହା ଠେଙ୍ଗାରେ ପିଟିଛନ୍ତି
ନିଷ୍ଠୁର ପଣ ସେଥିରେ ସମସ୍ତେ କରନ୍ତି ।
ସେ ସ୍ଥାନେ ସର୍ବଜୀବେ କରନ୍ତି ରୋଦନ
ତିଳେହେଁ ଦୟା ନାହିଁ ଜନ୍ତୁପତିର ପୁଣ ।
ନାଶ କର ସିଂହଦ୍ୱାରେ ହେଲେ ପରବେଶ
ଦ୍ୱାରପାଳ କହିଲେ ଯେ ଜନ୍ତୁପତି ପାଶ ।
ନାରଦ ସଙ୍ଗେ ଘେନି ଅଇଲେ ରାମଭାଇ
ତୋର ସିଂହଦ୍ୱାରେ ରଥ ଅଛନ୍ତି ଆରୋହି ।
ଶୁଣିଣ ଜନ୍ତୁପତି ବେଗ ହୋଇ ଆସି
ମୁନି ଶତ୍ରୁଘନଙ୍କୁ ଦେଖି ହେଲେ ତୋଷି ।
ପାହାଡ଼ା ପାଡ଼ିଣ ସେ ଓଳଗେ ପୁଣ ପୁଣ
କରଯୋଡ଼ି ଉଭାହେଲେ ରବିଙ୍କ ନନ୍ଦନ ।
ବୋଇଲେକି କାରଣେ ମୋ ପୁରେ ବିଜେକଲ
ପାତକ ଧ୍ୱଂସିବାକୁ ମୋହର ଅଇଲ ।
ନାରଦେ ବୋଇଲେ ରାମ ଦେଲେ ପଠିଆଇ
ରାବଣେଶ୍ୱରକୁ ତୁ ଯେ ଆଣିବାର ପାଇଁ ।
ରାମର ଉପରବଂଶେ ଅରଣ୍ୟ ନାମେ ରାୟେ
ନିଓପ୍ରୋଧେ ରାବଣ କଲା ତାଙ୍କୁ ଜୟେ ।
ମଲାବେଳେ ମହୀପାଳ ଶାପ ଦେଇଗଲେ
ମୋହର ବଂଶର ହସ୍ତେ ମରିବୁ ବୋଇଲେ ।
ମଲେ ଷୋଳଯୁଗ ପର୍ଯ୍ୟନ୍ତେ ନର୍କଭୋଗ
ନର୍କ ଭୋଗ କରିବୁ ସଞ୍ଜୀବନୀରେ ଭୋଗ ।
ସେକଥା ନ ଜାଣିଲୁ ସୁଜାଣ ହୋଇ ପୁଣ
କେମନ୍ତେ ମୃତ୍ୟୁ ପୁର କଲୁ ଯେ କାରଣ ।
ମନ୍ତ୍ରୀମାନ ଜାଣିଣ ତୋତେ କି ନ କହନ୍ତି
ଚିତ୍ରଗୁପତ ତୋର କାହିଁକି ପାଶେ ଛନ୍ତି ।

ଜନ୍ତୁପତି ବୋଇଲେ ସେ କଥା ଅଗୋଚର
ଶ୍ରୀରାମଚନ୍ଦ୍ର ତାକୁ ମାଇଲେ ବ୍ରହ୍ମଶର ।
ଯେ ବାଣେ ମୁକତ ଅବା ହେଲା ଦ୍ୱାରପାଳ
ଏମନ୍ତ ବିଚ୍ଛରି ମୁଁ ଯେ ନ କଲି କଟାଳ ।
ନାରଦ ବୋଇଲେ ସେ ଉପର ବଂଶକଥା
କେମନ୍ତେ ମେଣ୍ଟିବ ଯେ ଜଗତ କରତା ।
ଶୁଣିଣ ବେନି ମନ୍ତ୍ରୀ ଜନ୍ତୁପତି ବାଣୀ
କାଳ ଫାଶ ତାଙ୍କର ହସ୍ତରେ ଘେନି ପୁଣି ।
ବଇକୁଣ୍ଠ ପୁରକୁ ଚଳିଲେ ମନ୍ତ୍ରୀବର
ରମ୍ୟକ ଦ୍ୱୀପରେ ସେ ମିଳିଲେ ସତ୍ୱର ।
ଦେଖିଲେ ରାବଣ ଯେ ନିଜଦ୍ୱାରେ ବସି
କୁମ୍ଭକର୍ଣ୍ଣ ଭାଇ ତାର ପାଖରେ ଅଛି ବସି ।
କାଳଫାଶ ବାନ୍ଧିଲେ ଯାଇଣ ତୁରିତ
କୁମ୍ଭକର୍ଣ୍ଣ ବୋଇଲେ ଏ ନୁହେଁ ଉଚିତ ।
ବୈକୁଣ୍ଠ ପୁରରୁ ତୁମ୍ଭେ ନେଉଛ ବାନ୍ଧିପୁଣ
ଏଥେ ପଶିବାକୁ କେହି ନୁହନ୍ତି ଭାଜନ ।
ନାଶକର ମନ୍ତ୍ରୀ ବୋଲେ ଶୁଣରେ ଦ୍ୱାରପାଳ
ଶତେ ବରଷ ପର୍ଯ୍ୟନ୍ତ ରହିଲୁଁ ଆମ୍ଭେ ସ୍ଥିର ।
ଏବେ ଶ୍ରୀରାମ ଯେ ଆମ୍ଭଙ୍କୁ ଆଜ୍ଞା ଦେଲେ
ଉପରବଂଶ କଥା ନ ମେଣ୍ଟ ବୋଇଲେ ।
ଭାଇ ସଙ୍ଗେ ନାରଦଙ୍କୁ ଦେଲେକ ପଠିଆଇ
ଶାପ ହେଲା କଥାର ମେଣ୍ଟଣ ନ ଯାଇ ।
ଅରଣ୍ୟ ରାଜାର ଶାପ କରିବ ଏହୁ ଭୋଗ
ଷୋଳ ଯୁଗ ପର୍ଯ୍ୟନ୍ତ ନର୍କ ଦେଖିବ ଲଙ୍କରାଜ ।
ଏତେକହି ବାନ୍ଧିଣ ଘେନି ସେ ଅଇଲେ
ପାରୁଆକୁ ସଞ୍ଚାଣ ଯେସନେ ନେଲାପରିରେ ।
ସଞ୍ଜୀବନୀ ପୁରେ ଯାଇଁ ହେଲେ ପରବେଶ
ନାରଦ ଶତ୍ରୁଘନଙ୍କୁ ଦେଖି ରାବଣ କରେ ଶୋକ ।
ଶତ୍ରୁଘନ ବୋଇଲେ ପୂର୍ବରେ ଯାହା ଅର୍ଜି
ସେ ଫଳ ଭୁଞ୍ଜିବୁ ଶରୀର ତୋରଗଞ୍ଜି ।
ରାମ ସିନା ତୋତେରେ ଛଳରେ ନାଶିଲେ
ତୋହର ଦୋଷରେ ରାମ ଜାହ୍ନବୀ ତେଜିଲେ ।
ଉପର କଥାରେ ଯେ ରାମର ନାହିଁ ବଳ
ବାସୁଦେବ ଲଙ୍ଘିଲେ ସର୍ବ ଯେ ଅନ୍ଧାର ।
ଧର୍ମରେ ଆତଯାତ ସକଳ ପୁର ହୋଇ
ଶାପ ଦେଲେ କଥାମାନ ମେଣ୍ଟିଣ ନ ଯାଇ

ସ୍ୱର୍ଗର ସୁରରାଜା ଇନ୍ଦ୍ର ଅଟଇ ପୁଣ
ଗୌତମ ଋଷିଙ୍କ ଘରଣୀ ହରିଲେ ଜାଣ ।
ଇନ୍ଦ୍ରଙ୍କର ସହସ୍ରେଯୋନି ଅହଲ୍ୟା ଶାପର
ତ୍ରୈଲୋକ୍ୟର ଈଶ୍ୱର ଅଟନ୍ତି ବଳୀୟାର ।
ପ୍ରଜାପତି ଶାପରେ ଅଣ୍ଡରେ ହୋଏ ପୂଜା
ସେତେ ପ୍ରଭୁଗୋଟାକୁ ନୋହେ ଶାପତେଜ୍ୟା ।
ଷୋଳଯୁଗ ପରିଯନ୍ତେ ରହିବୁ ସଞ୍ଜୀବନୀ
ପ୍ରଭାତରୁ ନର୍କ ଦର୍ଶନ ପାଅ ପୁଣି ।
ଏମନ୍ତ ପ୍ରକାରେ ନାଶକରତୁ ଆଜ୍ଞାଦେଲେ
ଦିନକେ ଥରେ ନର୍କ ଦର୍ଶନ କରାଇଲେ ।
ସେଠାରୁ ମାତଳି ଯେ ରଥ ଘେନି ଚଳି
ଯମକୁ ତିଆରିଣ ଅଇଲେ ବେଗ କରି ।
ନାରଦ ଶତ୍ରୁଘନ ଅଯୋଧ୍ୟା ପରବେଶ
ରଥରୁ ଓହ୍ଲାଇ ଗଲେ ରାମଚନ୍ଦ୍ର ପାଶ ।
ନାରଦଙ୍କୁ ଦେଖିଣ ରାମ ଓଳଗିଲେ
ଦେଖିଣ ନାରଦ ଯେ ସୁକଲ୍ୟାଣ କଲେ ।
ଶତ୍ରୁଘନ ଓଳଗିଲେ ଶ୍ରୀରାମ ପୟର
ଦେଖିକରି ରାମରାଣ କରନ୍ତି ବିଚ୍ଛର ।
ନାରଦ ବୋଲେ ରାବଣ ନାଶକର ପୁରେ
ପୂର୍ବ କଥା ଚେତିଣ ରୋଦନ ସେ କରେ ।
ଶ୍ରୀରାମ ବୋଲନ୍ତି ନର୍କ ଷୋଳସସ୍ର ଭୋଗ
ମୋର ହାତେ ମରିବାରୁ କ୍ଷୟେଗଲା ସର୍ବ ।
ଷୋଳଯୁଗକୁ ଷୋଳ ସହସ୍ର ବରଷ
ନାଶକର ପୁରେ ରହି ହେଉ ଯେ ଖଲାସ
ଏତେକ କହିଣ ସଭା କରେ ରାମରାଣ
ସମସ୍ତଙ୍କୁ ଚରଣ କଲେକ ସେ ପୁଣ ।
ସନ୍ଧ୍ୟା ସୁମରିବାକୁ ଚଳେ ଅନ୍ତଃପୁର
ମାୟା ସୀତା ଆଣିଣ ଦେଲେ ଗଙ୍ଗା ନୀର ।
ସନ୍ଧ୍ୟା ସୁମରଣା ଯେ କରେ ରୂପଧାରୀ
ମାଜଣା ମର୍ଦ୍ଦନ ଯେ ହୋଇଣ ସ୍ନାନକରି ।
ଅମଳାଣ ବସନ ଯେ ପିନ୍ଧି ପୂଜାକଲେ
ଛତ୍ରରସେ ଭୋଜନ କଲେ ଅନ୍ତଃପୁରେ ।
ଭୋଜନ ସାରିଣ ଯେ ଆଞ୍ଚୋବନ କଲେ
ବିଡ଼ିଆ ଲାଗି ହୋଇ ପଲଙ୍କେ ନିଦ୍ରାଗଲେ ।
କେତେବେଳେ ଜାନକୀ ଆସି ପ୍ରବେଶ ହୋଇ
ଶ୍ରୀରାମଙ୍କ ପାଶରେ ପ୍ରବେଶ ହେଲେ ଯାଇଁ ।

ଚରଣ ମଞ୍ଜାଳିଣ ସଙ୍ଗରେ ନିଦ୍ରାଗଲେ
ରତି ନୀଳା ରଙ୍ଗରେ ଯାମିନୀ ପୁହାଇଲେ ।
ପାହାନ୍ତିରେ ଗୀତ ନାଟ କଲେ ନଗ୍ରଜନ
ବୀଣା ତୁମ୍ବୁର ବାଦ୍ୟ ନିଶାଣ ବାଜେ ପୁଣ ।
ଶୁକ ସାରୀ ରାବନ୍ତି କାକ କଲେ ଧ୍ୱନି
କୁଳର ଭୁଆଷୁଣୀ ଉଠିଲେ ତାହା ଶୁଣି ।
ନଟ ନାରୀଙ୍କର ପୁରୁଁ ନାଗର ଚଳିଗଲେ
ସକଳ ବେଶକାରୀ ପ୍ରଭାତୁଁ ଲାଗିଲେ ।
ପଲଙ୍କ ତେଜ୍ୟାକରି ଗଲେକ ଜାନକୀ
ଗଙ୍ଗା ଜଳରେ ମୁଖ ଯାଇଁ ପଖାଳନ୍ତି ।
ପଲଙ୍କ ତେଜିଣ ଉଠିଲେ ରାମରାଜ
ସୁବାସିତ ଜଳରେ ପଖାଳେ ମୁଖ ବେଗ ।
ଝୀନ ବସନରେ ପୋଛି ହେଲେ ଶୁଣ
ମର୍ଦ୍ଦନ ମାଜଣା ହୋଇ ସ୍ନାନ କଲେ ପୁଣ
ସାନ୍ଲୁ ଯୋଡ଼ ପିନ୍ଧିଣ ଦେବାର୍ଚ୍ଚନ କଲେ
ସନ୍ଧ୍ୟା ସୁମରି ପିତୃ ତର୍ପଣମାନ କଲେ ।
ଛତ୍ରରସେ ଭୋଜନ କଲେ ଯାଇ ପୁଣ
ବିଡ଼ିଆ ଭୁଞ୍ଜିଣ ଆଳସ୍ୟ ଭାଙ୍ଗେ ଜାଣ ।
ଅଳପ ନିଦ୍ରାଯାଇ ପଲଙ୍କୁ ଉଠିଲେ
ବାଦ୍ୟର ଜଗତୀ ସିଂହାସନରେ ବସିଲେ ।
ଚତୁରାଙ୍ଗ ବଳ ଯେ ମିଳେ ଆସି ପୁଣ
ବାଦ୍ୟର ଶବଦରେ କମ୍ପେ ପୁରମାନ ।
ପାତ୍ର ମନ୍ତ୍ରୀ ସାମନ୍ତ ମିଳେ ଆସି ବେଗ
ବଶିଷ୍ଠ ନାରଦ ସେ ମିଳେ ଆସି ବେଗ ।
ସେହ୍ନା ଯୂଥପତିମାନେ ସମସ୍ତେ ହେଲେ ଠୁଳ
ଗହ ଗହ ସଭା ଯେ ହେଲା ନିରନ୍ତର ।
ରାମ ପଚ୍ଚରନ୍ତି ଯେ ନାରଦ ମୁଖ ଚ୍ଚହିଁ
କଥାଏ ପଚ୍ଚରିବି ପ୍ରସନ୍ନେ ମୋତେ କହି ।
ରାବଣ ବଂଶାନୁ ଚରିତ୍ର ଅଗସ୍ତି କହିଲେ
ମୋର ମନକୁ ଅଗସ୍ତି ସନ୍ତୋଷ କରାଇଲେ ।
ସହସ୍ରାମୁଖ ରାବଣ ବଂଶାନୁଚରିତ
ଶୁଣିବାକୁ ମୋର ମନ ଯେ ଉସତ ।
ଏକଗ୍ରୀବ ଦଶଗ୍ରୀବ କଥାମାନ ଶୁଣି
ଛଡ଼ ଚକ୍ରବର୍ତ୍ତୀ କଥା ବଶିଷ୍ଠ କହେ ପୁଣି ।
ଶତେଗ୍ରୀବ ସହସ୍ରେ ଗ୍ରୀବ କଥା ମୋତେକହ
କେଉଁରୂପେ ଜାତହେଲେ ବିଶାଖାର ପୁଅ ।

ନାରଦ ବୋଇଲେ ତୁମ୍ଭେ ଶୁଣ ହେ ରାମରାଣ
ସହସ୍ରଗ୍ରୀବ ଉପର ବଂଶ କଥା ଶୁଣ ।
ଯମଘଣ୍ଟ, କାଳଘଣ୍ଟ ବୋଲି ଦୁଇଭାଇ
କଶ୍ୟପ ଋଷି ବୀର୍ଯ୍ୟେ ଏହୁ ଜାତହୋଇ ।
ଏକଦିନେ ପ୍ରହେତୀ ସ୍ୱାମୀର ପାଶେ ମିଳି
ସେ ଦିନ ଅଟଇ ତାର ଶୁଦ୍ଧ ସ୍ନାନ ପାଳି ।
ଉତ୍ତମ ବେଶ ହୋଇଣ ମିଳିଲା ସେ ନାରୀ
କଶ୍ୟପଙ୍କ ଚରଣେ ପ୍ରଣିପାତ କରି ।
ଦେଖିଣ କଶ୍ୟପ ତାଙ୍କୁ ସନ୍ତୋଷ ହୋଇଲେ
ତୋ ସଙ୍ଗରେ ଆଜରତି କରିବା ବୋଇଲେ
ପ୍ରହେତୀ ବୋଇଲେ ଦେବ ବିନତି ମୋର ଘେନ
ଦୁଇ ପୁତ୍ର ଜାତହେବେ ମୋର ବଳମାନ ।
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଜିଣିବେ ପୁତ୍ରମାନେ
ତିନିପୁରେ ତାଙ୍କୁ କେହି ନୋହିବେ ଭାଜନେ
ଏକ ଚକ୍ରବର୍ତ୍ତୀ ହେବେ ମୋର ପୁତ୍ରେପୁଣ
ରାତ୍ର ଦିବସେ ତାଙ୍କୁ ନୋହିବ ମରଣ ।
ଶୁଣିଣ କଶ୍ୟପ ଋଷି ଆନନ୍ଦ ହୋଇଲେ
ପ୍ରହେତୀର ସଙ୍ଗରେ ରତି ଲୀଳା କଲେ ।
ଟଳିଲାକ ମୁନି ବୀର୍ଯ୍ୟ ଗର୍ଭରେ ହେଲାଠୁଳ
ସେ କନ୍ୟା ଗର୍ଭରୁଜାତ ହେଲେ ବେନିବାଳ ।
ଜାଣିଣ କଶ୍ୟପ ଋଷି ତାଙ୍କୁ ନାମ ଦେଲେ
ଯମଘଣ୍ଟ, କାଳଘଣ୍ଟ ବୋଲିଣ ବୋଇଲେ ।
ବାର ଯେ ବରଷ ତାଙ୍କୁ ପ୍ରତିପାଳି ଋଷି
ଜ୍ଞାନରେ ଶକତା ହେଲେ ଦୁଇ ବାଳଗୋଟି ।
ବଳ ଯେ ଅକଳିତ ହୋଇଲା ତାଙ୍କର
ବଢ଼ିଲେ କୁମର ଯେ ଆକାଶେ ଲାଗେ ଶିର ।
ଇକ୍ଷୁ ସମୁଦ୍ରେ ଯାଇ ବସିଣ ତପକଲେ
ସହସ୍ରେ ବରଷେ ବେଦବରକୁ ମନାଇଲେ ।
ଯଶୋବନ୍ତୀ ପୁରୁ ଯେ ବେଦବ୍ରହ୍ମା ଗଲେ
ହଂସର ଉପରେ ବସି ଆଗରେ ମିଳିଲେ ।
ବୋଇଲେ ତୁମ୍ଭେ କମ୍ପାରେ ଜଳରେ କରତପ
ସେ ବୋଇଲେ ସୁମରୁଁ ଆମ୍ଭେ ବିଧାତାର ରୂପ ।
ବ୍ରହ୍ମା ବୋଇଲେ ଆମ୍ଭେ ଅଟୁରେ ବିଧାତା
ଶୁଣିଣ ବେନିଭାଇ ଉଠିଣ ଶକତା ।
ଚରଣେ ନମିଣ ସେ କରଯୋଡ଼ି କହି
ବର ଦିଅ ଆମ୍ଭଙ୍କୁ ଜଗତ ପିତା ତୁହି ।

ସେ ବୋଇଲେ ଅମର ହୋଇ ବରପାଅ
କାଳେଣ ସ୍ତିରୀ ହସ୍ତେ ମରଣ ତୁମ୍ଭେ ହୁଅ ।
ଏତେ କହି ପରମେଷ୍ଠି ନିଜପୁରେ ଗଲେ
ସେଠାରୁ ଉଠି ଦୈତ୍ୟ ଜଗତ ଜିଣିଲେ ।
ପାତାଳ ପୁରେ ଯାଇଁ ଜିଣିଲେ ନାଗବଳ
ମର୍ତ୍ତ୍ୟରେ ବୁଲି ରାଜାମାନଙ୍କୁ କଲେ ଠୁଳ ।
ଚଉଦ ଭୁବନ ଏରୂପେ ସାଧି କଲେ
କେହି ତାଙ୍କସଙ୍ଗେ ଯୁଦ୍ଧେ ସାମର୍ଥ ନୋହିଲେ
ସ୍ୱର୍ଗରୁ ଅପସରୀ ଦୁଇଗୋଟି ଆଣି
ସମୁଦ୍ର ଭିତରେ ଥାଟ କଲେ ଯାଇଁ ପୁଣି ।
ଅରୁଣ ଦ୍ୱୀପ ବୋଲି ସେ ସ୍ଥାନ ନାମଦେଲେ
ତହିଁରେ ବିଶ୍ୱକର୍ମା ଘର ନିର୍ମାକଲେ ।
ଚଉଦ ଭୁବନର ପଦାର୍ଥ ଯୂରକରି
ଅପସରୀ ଘେନିଣ ବିଳ ସେ ଦଣ୍ଡଧାରୀ ।
କାଳେଣ ଦୁଇପୁତ୍ର ହୋଇଲା ତାଙ୍କର
ଅକାଳ, ସୁକାଳ ବୋଲି ନାମଦେଲେ ତାର
ଏକ ଦିନରେ ସେ ସମୁଦ୍ର ଭିତରେ
ତର୍ପଣ କରନ୍ତି ଯାଇ ଦୁଇ ଯେ ଅସୁରେ ।
ସେହିବାଟେ ଗୋମାତା ରମ୍ୟକ ଦ୍ୱୀପୁ ଆସି
କୁଶ ଦ୍ୱୀପରେ ତାର ବାଳକ ରହିଅଛି ।
ପୁତ୍ରଙ୍କୁ କ୍ଷୀର ଦେବ ବୋଲିଣ ମାତାଧାଇଁ
ସମୁଦ୍ର ଭିତରେ ପାଣି ଆଣ୍ଟୁ ଆଣି ହୋଇ ।
ପୁତ୍ରର ସ୍ନେହରେ ଯେ ଆସଇ ଗୋ ମାତା
କାଳଘଣ୍ଟ, ଯମଘଣ୍ଟ ଦେଖିଣ ହେଲେ ସେ ତ ।
ବୋଇଲେ ଏ ଗାଈକି ବାନ୍ଧିଣ ଘେନିଯିବା
ନିଜ ଭୁବନରେ ରଖି କ୍ଷୀର ଯେ ଭକ୍ଷିବା ।
ଏତେ ବୋଲି ଗୋମାତାର ଦୁଇଶିଙ୍ଘଧରି
ସମୁଦ୍ର ଭିତରେ ତାକୁ ଅଟକେ ମହାବଳୀ ।
ଅଟକନ୍ତେ ଗୋମାତା ମନରେ କ୍ରୋଧହେଲା
ଦୁଇଶିଙ୍ଘରେ ଦୁଇ ଅସୁର ଚିରିଦେଲା ।
ମାରିକରି ଗୋମାତା କୁଶଦ୍ୱୀପ ଯାଏ
ଆନନ୍ଦ ମନରେ ସେ ପୁତ୍ରକୁ କ୍ଷୀର ଦିଏ ।
ଅପସରୀ ଜାଣିଲେ ଅସୁରଙ୍କର ହତ
ସେରୂପ ତେଜ୍ୟାକରି ସ୍ୱର୍ଗକୁ ଗଲେ ସେତ ।
ତାଙ୍କର କୁମର ଯେ ଦୁଇଗୋଟି ଥିଲେ
କାଳେଣ ତପକରି ଶୁକ୍ରଙ୍କୁ ମନାଇଁଲେ ।

ବଳବନ୍ତ ହୋଇଣ ସାଧିଲେ ତିନିପୁର
ପାତାଳ ନାଗନାରୀ ଆଣିଲେ କୁମର ।
ତାହାଙ୍କର ସଙ୍ଗରେ କଲେ ରତିରଙ୍ଗ
ତାଙ୍କଠାରୁ ଜାତହେଲେ ଅଭଙ୍ଗ ସୁଭଙ୍ଗ ।
ଅକାଳ, ସୁକାଳ ଦୁହେଁ ରମ୍ୟକ ଦ୍ୱୀପେ ଗଲେ
ଗରୁଡ ସଙ୍ଗରେ ରହିଣ ଯୁଦ୍ଧକଲେ ।
ସହସ୍ର ବରଷରେ ଗରୁଡ ତାଙ୍କୁ ମାରି
ଜାଣିଣ ନାଗବଳ ନିଜପୁରେ ଚଳି ।
ଅଭଙ୍ଗ, ସୁଭଂଗ ଦୁହେଁ ହେଲେ ବଳିୟାର
ନବସସ୍ର ବରଷ ସାଧିଲେ ତିନିପୁର ।
ମର୍ତ୍ତ୍ୟପୁର ସାଧି କନ୍ୟା ଦୁଇଗୋଟି ନେଲେ
ରତି ଲୀଳା କରନ୍ତେ ପୁତ୍ର ଦୁଇହେଲେ ।
ବାରଣ ନିବାରଣ ପୁତ୍ରଙ୍କ ନାମ ଦେଲେ
କାଳେଣ ଅସୁର ଯୁଦ୍ଧକୁ ଗମିଲେ ।
ଜମ୍ବୁଦ୍ୱୀପେ ବେନୁରାଜା ସଙ୍ଗରେ ଯୁଦ୍ଧକରି
ସପତ ବରଷେ ରାଜା ତାଙ୍କୁ ମାରି ।
ସେ ଦୁଇ ନାରୀଗୋଟି ଅଗ୍ନିରେ ପଶିମରି
ପାର୍ଥୀବ ଦେହ ଛାଡ଼ି ଚଳିଲେ ସ୍ୱର୍ଗପୁରୀ ।
ଅଭଂଗ ସୁଭଂଗ ଯେ ହେଲେ ପ୍ରାଣେ ନାଶ
ବାରଣ ନିବାରଣ ହେଲେ ବଳବନ୍ତ ।
ଏଥୁ ଅନନ୍ତରେ ହେ ରାମଚନ୍ଦ୍ର ଶୁଣ
ପାର୍ବତୀ ପଚ୍ଛରନ୍ତି ସଦାଶିବଙ୍କୁ ପୁଣ ।
ମଞ୍ଜୁଷ ଭିତରେ ବିଶାଖା ରହିଲା ଦୁଇଫାଳ
ସେ ପୁଣ କିସ ହେଲା କହ ମୋ ଆଗର ।
ଈଶ୍ୱର ବୋଇଲେ ଯେ ଶୁଣ ଭଗବତୀ
ବେନିଫାଳ କରିଣ ବିଶାଖା ଯୁବତୀ ।
ମଞ୍ଜୁଷ ଭିତରେ ନେଇଣ ଠୁଳକଲା
ମୁଣ୍ଡକୁ ମୁଣ୍ଡ ଗଣ୍ଡିକି ଗଣ୍ଡି ଲଗାଇଲା ।
କଟିକି କଟି ଯେ ଚରଣକୁ ଚରଣ
ସଳଖ କରି ରଖିଲା ମଞ୍ଜୁଷରେ ପୁଣ ।
ଦଇବୀ ମାୟାରେ କଲେ ଦୁଇଫାଳ ସଙ୍ଗ
ମଞ୍ଜୁଷ ଢାଙ୍କିଣ ପକାଇଲା ସେହୁ ମୁଦ ।
ଲାଖ ଯାବ ଦେଇଣ ଚିକ୍‌କଣ କରାଇଲା
ଦାସୀଙ୍କି ଡାକିଣ ଯେ ବଚନ କହିଲା ।
ବୋଇଲା ଏ ମଞ୍ଜୁଷ ସାଗରେ ଦିଅ ମେଲି
ଶୁଣିଣ ଦାସୀମାନେ ସଂଗରେ ଘେନିଚଳି ।

ସମୁଦ୍ର କୂଳରେ ଯାଇଁ ହେଲେ ପରବେଶ
ମଞ୍ଜୁଷ କୂଳରେ ଥୋଇଲେ ଆଶ୍ୱାସ ।
ଏହିରୂପେ ମଞ୍ଜୁଷ ନିଶ୍ଚିନ୍ତରେ ରହି
ମଞ୍ଜୁଷର କଥା ଗୋଟି ଶୁଣ ଗୋ ପ୍ରାଣସହୀ ।
ଏକତ୍ର ହେବାରୁ ସେ ବେନିଫାଳ ପୁଣ
ବିଧାତା ଦେଇ ଜୀବକୁ ଛାଡେ ସେଥିରେଣ ।
ଶରୀରେ ଜୀବ ହୋନ୍ତେ ରୋଦନ ସେ କଲା
ଦୁଇ ଅଙ୍ଗ ଯହୁଁ ସେ ଏକତ୍ୱ ହୋଇଲା ।
ମଞ୍ଜୁଷ ଭିତରେ ପୁତ୍ର ହୋଇଲା ବଳିୟାର
ପାଦଘାତେ ମଞ୍ଜୁଷ ହୋଇଲା ଶତେଚୂର ।
ସିଂହ ରଡ଼ି କରନ୍ତେ ଯେ କୁରୁମ ଉଛୁଳି
ଫାଳସୁର ରଡ଼ିରେ ତିନିପୁର ସରି ।
ସମୁଦ୍ର ଲହରୀ ପୁଣ ହୋଇଲାକ ସ୍ଥିର
ଆକାଶରେ ଦିଗପାଳେ କରନ୍ତି ବିଚ୍ଚର ।
ବୋଇଲେ ଫଳାସୁର ଆମ୍ଭଙ୍କୁ ଦେବ ଦୁଃଖ
ତ୍ରିଦଶ ଦେବତାଏ ଖଟିବୁ ଯାର ପାଖ ।
ସେଠାରେ ଦାସୀଗଣ ଦଶପାଞ୍ଚ ଥିଲେ
ଇକାର ଘୋର ରଡ଼ି ଶୁଣିଣ ଚଳିଗଲେ ।
ବିଶାଖା ରାଣୀ ପାଖରେ କହିଲେ ଯାଇଁପୁଣ
କରଯୋଡ଼ି ଛାମୁରେ କହିଲେ ଦାସୀଗଣ ।
ତୋହର ଗର୍ଭରୁ ଯେଉଁ ବେନିଫାଳ ଜାତ
ମଞ୍ଜୁଷରେ ଭରିଣ ଯେ ପେଶିଲୁ ଆମ୍ଭନ୍ତ ।
ସମୁଦ୍ର ଜଳରେ ନେଇ ଆମ୍ଭେ ତାକୁ ରଖି
ବେନି ଅଂଗଗୋଟି ତାର ଏକଅଙ୍ଗ ଦେଖି ।
ସେ ରୋଦନ କରନ୍ତେ କମ୍ପେ ତିନିପୁର
ରଡ଼ିର ଘାତରେ ଚମକେ ସୁରନର ।
ଚରଣ ହାତ ବାଜିଲା ଭାଜିଲା ମଞ୍ଜୁଷ
କୂଳରେ ପଡ଼ିଣ ପୁତ୍ର କରେ ଯେ ବିଳାପ ।
ଶୁଣିଣ ବିଶାଖା ଯାନ ବେଗେ ଚଢ଼ି
ସମୁଦ୍ର କୂଳେ ପ୍ରବେଶ ସୁର ମେଘ ନାରୀ ।
ପୁତ୍ରକୁ ଦେଖିଣ ସେ ଆନନ୍ଦ ମନ କଲା
ବାଲିରୁ ତୋଳିଧରି କୋଳରେ ବସାଇଲା ।
ମୁଖରେ ସ୍ତନ ଦେଇ ସମର୍ପିଲେ ରାଣୀ
କ୍ଷୀର ପିବନ୍ତେ ପୁତ୍ର ରୋଦନ ସ୍ଥିର ପୁଣି ।
ଦାସୀମାନେ ଯାଇଣ ରାଜାଙ୍କୁ ଜଣାଇଲେ
ମଲା ପୁତ୍ର ତୁମ୍ଭର ଜୀଇଲା ବୋଇଲେ ।

ଦୁଇଫାଳ ହେଲାଯାକ ଅଜୀବ ହୋଇଥିଲା
ମଞ୍ଜୁଷରେ ଦୁଇଫାଳ ରାଣୀ ଯେ ଭରିଲା ।
ବୋଇଲା ସମୁଦ୍ରରେ ମେଲ ଯାକୁ ନେଇ
ତାହାର କହିବାରୁ ଆମ୍ଭେ ସର୍ବେ ନେଇ ।
ସମୁଦ୍ର କୂଳରେ ନେଇ ଥୁଅନ୍ତେ ଆମ୍ଭେ ଜାଣ
ବାହାର ହେଲା କୁମର ମଞ୍ଜୁଷ ଭାଙ୍ଗିଣ ।
କୋଳରେ ଧରି ତାକୁ କ୍ଷୀରପାନ ଦେଲା
ବାରତା ପାଇଣ ସେ ତୋର ରାଣୀଗଲା ।
ଶୁଣିଣ ସୁରମେଘା ବେଗେ ସଜହୋଇ
ଚତୁରଙ୍ଗ ବଳ ଘେନି ସେଠାକୁ ଯାଇଁ ।
ଦେଖିଲା ପୁତ୍ରଗୋଟି ଧବଳ ରୂପ ପୁଣ
କାଳ ଦେବତା ଯେସନେ ଦିଶଇ ମଞ୍ଚେଣ ।
ବୋଇଲା ଏ ପୁତ୍ର ମୋର କୁଳର ଉଦ୍ଧାରଣ
ସଦାଶିବ ଦେବତା ତୋଷେ ଦେଲା ପୁଣ ।
ପୁତ୍ରକୁ ଘେନି ନିଜପୁରେ ଗଲେ ସେହୁ
ଯତନେ ପାଳିଲା ତାକୁ ଅସୁର କୁଳ ରାହୁ ।
ଏକୋଇଶ ଦିନରେ ପୁତ୍ରର ନାମ ଦେଲା
ଫାଳସୁର ବୋଲିଣ ନାମ ତାର ହେଲା ।
ରୋଦନ କରିବାରୁ ରାବଣ ତାକୁ କହି
ସ୍ନେହରେ ଜନନୀ ଯେ ତାହାକୁ ପାଳଇ ।
ଏମନ୍ତେ ବାରବରଷ ତହିଁରେ ବହିଗଲା
ସେ ପୁତ୍ର ଜନମ ଯେ ସାର ପୁରୁଷେ ହେଲା
ଏକଦିନେ ସୁରମେଘା ପାତାଳ ପୁର ଗଲା
ବିମ୍ବର ଦ୍ୱାରେ ପୁଣି ପାତାଳେ ମିଳିଲା ।
ଜନକ ପୁର ଗୋଟି ଯେ ଦେଖେ ଯାଇକରି
ଦିହୁଡ଼ି ତ୍ରାସ ଯେସନେ ଉଜ୍ଜ୍ୱଳ ଦିଶେ ପୁରୀ ।
ସେ ପୁରେ ଚନ୍ଦ୍ର, ସୂର୍ଯ୍ୟ ହୁଅନ୍ତି ଆତଯାତ
ଉପରେ ଢାଙ୍କୁଣୀ ଅଛି ପରବତ ।
ସେ ପୁର ଗୋଟି ଶୋଭା ଦିଶେ ସର୍ବକାଳେ
ଦିହୁଡ଼ି ଚନ୍ଦ୍ରଦୀପରେ ଆଲୋକ ଦିବାକରେ ।
ଶତେକ ଯୋଜନ ଯେ ଅଟେ ଦୀର୍ଘ ପ୍ରତି
ବାର କୋଟି ଘର ଯେ ସୁବର୍ଣ୍ଣରେ ତିଥି ।
ସ୍ୱର୍ଗକୁ ଜିଣି ପୁର ଦିଶଇ ସୁନ୍ଦର
ସେ ପୁର ରାଜା ଅଟେ ସୁରଭି ଅସୁର ।
ଚତୁରାଙ୍ଗ ବଳ ଅଟେ ବାଆନେ କୋଟିଜାଣ
ହସ୍ତୀ ତାର ପାଞ୍ଚକୋଟି ଅଶ୍ୱ ଅପ୍ରମାଣ ।

ବସନ୍ତ କର୍ଣ୍ଣ ଆଭରଣ ସଭିଙ୍କର ଦିଶେ
ସୁର ମେଘାସୁର ଦେଖି ମନରେ ହରଷେ ।
ରାଜାର ପାଶକୁ ଚଳେ ମେଘାସୁରସୁତ
ରାଜାର ନିକଟରେ ହୋଇଲା ପ୍ରବେଶତ ।
ଦେଖିଣ ସୁରଭିସୁର ତାହାକୁ ପଚାରି
କେଉଁଠାରୁ ଅଇଲୁ ଦୈତ୍ୟ କହହେ ବିଚାରି ।
ସୁମେଘା ବୋଲେ ମୋଘର ଅଟେ ମର୍ତ୍ତ୍ୟପୁରେ
ଦିଗ ବିଜେ କରି ମୁଁ ଅଇଲି ପାତାଳେ ।
ଶୁଣିକରି ସୁରଭି ବୋଲେ ତୋର ଛାର
ଭାର୍ଜନ ଅଟୁକି ପଶିବାକୁ ମୋର ପୁର ।
ଏମନ୍ତ ବୋଲି ଗଦା ଧରଇ କରରେ
ପିଟିଲାକ ନେଇ ଯେ ସୁମେଘାସୁର ପରେ ।
ଦେଖିକରି ସୁମେଘା ଧରେ ଗଦାକାର
ଦୁହେଁ ପିଟାପିଟି ଯେ ହେଲେ ସେହିପୁର ।
ତିନିମାସ ପରିଯନ୍ତେ ଗଦାଧରି ଯୁଦ୍ଧ
ସେଠାରୁ ଶସ୍ତ୍ରଧରି କଲେ ରଣ ସଧ ।
ବାର ବରଷ ଯାଏ କାଣ୍ଡ କୋଦଣ୍ଡ ଧରି
ଅନେକ ଯୁଦ୍ଧ କଲେ ଆଡ଼ ବାଡ଼ କରି ।
ସହସ୍ର ଛାଡ଼ିଣ ଯେ ହେଲେ ଧରାଧରି
ଶତେ ବରଷ ଯାଏ ମାଲଯୁଦ୍ଧ କରି ।
ସୁମେଘାସୁରକୁ ମାଡ଼ି ବସିଲା ସୁରଭି
କର ତାର ଧରିଣ ପେଟ ତାର ବିଦାରି ।
ପେଟ କାଟନ୍ତେ ଯେ ମଲାକ ସୁମେଘା
ସୁରଭି ସେଠାରୁ ମାଜଣା ସ୍ନାନ ଶ୍ରଦ୍ଧା ।
ଦୂତମାନେ ଦେଖି ଯେ ବିଲଙ୍କା ପରବେଶ
ବିଶାଖା ଶୁଣିଲା ଯେ ସ୍ୱାମୀର ପୁଣ ହତ ।
ଫାଳ ସର ନେଇଣ ଗାଦିରେ ବସାଇଲେ
ଅଭିଷେକ କରିଣ ରାଜନ କରାଇଲେ ।
ଏମନ୍ତେ କିଛିଦିନ ସେଥିରେ ଗଲା ବହି
ଫାଳସୁର ମନରେ ବିଚାର କରଇ ।
ଜନନୀକି ଡକାଇ ବୋଲେ ମାତା ଶୁଣ
କେଉଁ ଦେବ ମନାଇଁ ବର ମାଗିବି ପୁଣ ।
ବିଶାଖା ବୋଇଲେ ଆମ୍ଭର ପ୍ରଭୁ ସଦାଶିବ
ତାହାଙ୍କୁ ସେବାକଲେ ମିଳେ ସର୍ବଦ୍ରବ୍ୟ ।
ସେ ପୁରୁଷ ଆଣି ତୋତେ ମୋରଠାରେ ଦେଲା
ତାରପାଦେ ସେବାକର ତୁ ଯାଇରେ ବଳା ।

ସେ ତୋତେ ଅମର ବର ଦେବରେ କୁମର
ଶୁଣିଣ ଫଳାସୁର କଲା ମତି ସ୍ଥିର ।
ମାତାକୁ ଓଳଗିଣ ବେଗେ ଚଳିଗଲା
କପିଳାସ କନ୍ଦରେ ଯାଇଁଣ ମିଳିଲା ।
ଶୁଣନ୍ତି ରାମଚନ୍ଦ୍ର ନାରଦ ମୁନି କହି
ପାର୍ବତୀ ଆଗେ ସେକଥା ଶୂଳଧାରୀ ଗାଇ ।
ଶିବ ଉଦ୍ୟାନ ବନରେ ମିଳେ ଫାଳସୁର
ନିର୍ମଳ ସ୍ଥାନ ଦେଖି ତପ କଲେ ଘୋର ।
ସାତ ଯୁଗ ବସିଣ ସେଠାରେ ତପକଲା
ତେବେ ସେ ଶୂଳଧାରୀ ଯାଚିଣ ବରଦେଲା ।
ବୋଇଲେ କୁମରରେ ମାଗିଣ ଘେନବର
ଯୁଗେ ଯୁଗେ ଅମର ହୁଅରେ କୁମର ।
ଶୁଣିଣ ଫଳାସୁର ସନ୍ତୋଷ ହୋଇଲା
ସହସ୍ରେ ଶିର ମୋର ହେବ ହେ ବୋଇଲା ।
ତତକ୍ଷଣେ ସହସ୍ର ମୁଖ ହେଲା ତାର
ବାର ଯୁଣ ଓସାର ହୃଦୟ ତାହାର ।
ମୁଖ ତାର ଘରିପାଖେ ମଧରେ ବେକତାର
ସେଠାରୁ ସସ୍ରମୁଖା ରାବଣ ନାମ ତାର ।
ବର ପାଇ କପିଳାସ କନ୍ଦରୁ ଅଇଲା
ବିଳଙ୍କା ଗଡରେ ସେ ପ୍ରବେଶ ହୋଇଲା ।
କିଛିଦିନ ବିଲଙ୍କାରେ ରହିଲା ସସ୍ରାନନ
କୋମଦ ସୁର ଦୋହିତା ସରୀତା ନାମଜାଣ
ସେ କନ୍ୟା ସୁନ୍ଦର ସେ ଦେଖି ବିଭାହେଲେ
ବହୁ ଆଡମ୍ବରେ ବିଭା କରାଇଲେ ।
ସେ କନ୍ୟା ସଙ୍ଗରେ କଲେ ରତିରସ
ଛଡ଼ପୁତ୍ର ଜନମିଲେ ତାହାର ଗର୍ଭୁତ ।
ସେ ପୁତ୍ରମାନଙ୍କ ନାମ ଶୁଣ ହେ ରାମରାଣ
ପ୍ରଥମ ପୁତ୍ର ଗୋଟି ଯେ ଗୁମାନିସୁର ଜାଣ ।
ଦ୍ୱିତୀୟ ପୁତ୍ର ଗୋଟି କୋଦାଳ ସୁରନାମ
ତୃତୀୟ ପୁତ୍ର ଗୋଟି ବୀରଚନ୍ଦ୍ର ନାମ ।
ଚତୁର୍ଥ ପୁତ୍ର ଗୋଟି ହେ କଉରୋବ ମଣି
ସରସେତୁ ପୁତ୍ର ବୋଲି ପଞ୍ଚମରେ ପୁଣି ।
ଅକ୍ଷୟ ଦ୍ରୋଣ ବୋଲି ଯେ ଷଷ୍ଠରେ ପୁତ୍ର ଜାତ
ବଡ଼ ପୁତ୍ର ତପକଲେ ବିନ୍ଧ୍ୟ ଗିରିତଟ ।
ଛଡ଼ ଦିଗପାଳ ଯେ ତାହାଙ୍କୁ ବରଦେଲେ
ବାସୁଦେବ ହସ୍ତରେ ମନରେ ବୋଇଲେ ।
ଆଉ ସମସ୍ତଙ୍କୁ ଯେ ଜିଣିବ ତୁମ୍ଭେ ପୁଣ
ବର ପାଇ ସେଠାରୁ ଗଲେ ଛଡଜଣ ।
ସେଠାରୁ ସହସ୍ର ମୁଖା ମର୍ତ୍ତ୍ୟପୁର ବୁଲି
ସପତ ଦ୍ୱୀପ ନୃପତି ଜିଣିଲା ମହାବଳୀ ।
ଦେଖା ଦରଶନି ଯେ ସମସ୍ତେ ଦେଲେ ନେଇ
ସକଳ ପଦାର୍ଥ ବିଲଙ୍କାଠାରେ ଠୁଳ ହୋଇ ।
ପାର୍ବତୀ ନୀଳା ବନରେ ହେଲା ପରବେଶ
ଦେଖିଲା ଈଶ୍ୱର କୋଳେ ଉମା ଯେ ବିଳାସ
ସୁନ୍ଦର ଦେଖିଣ ପାର୍ବତୀଠାରେ ମନ
ବୋଇଲା ଶିବଙ୍କୁ ମୁଁ ମାଗିବି କନ୍ୟାଦାନ ।
ଶିବର ନାରୀକି ନେଇ ଚମ୍ପାପୁରେ ବିଳସିବି
ତେବେ ଜୀବନରେ ମୋର ସୁଫଳ ଲଭିବି ।
ଏମନ୍ତ ବିଚାରନ୍ତେ ଜାଣିଲେ ପାର୍ବତୀ
ଅସୁରକୁ ବୋଇଲେରେ ଆସ ଆସ କତି ।
ଶୁଣିଣ ସହସ୍ର ମୁଖା ପାଖକୁ ଅଇଲା
ଦେଖିଣ ପାର୍ବତୀ ଯେ ତୋଠାରେ କୋପହେଲା ।
ବୋଇଲେ ଅସୁରରେ ଆମ୍ଭେବର ଦେଲୁଁ ।
ଆମ୍ଭଠାରେ ତୋର ମନ ବିଡ଼ମ୍ବଣ କଲୁ ।
ଏବେ ତୋତେ ଶାପରେ ଦେଉଅଛି ମୁହିଁ
ନାରାୟଣଙ୍କ ବନିତା କମଳା ଅଟଇ ।
ମାନବରୂପରେ ସେ ହେବେ ଅବତାର
ସେହି ତୋତେ ମାରିରେ କରିବେ ବେନିଫାଳ ।
କାଳ କତୁରୀ ଶରରେ ଚିରି ପକାଇବେ
ତେବେ ତୋର ପ୍ରାଣ ନାଶକର ହରିନେବେ ।
ସତର ଯୁଗ ଗଲେ ହେବୁ ତୁହି ଜାତ
ଜରାସନ୍ଧ ନାମ ତୋର ହୋଇବ ବିଦିତ ।
ପବନ କୁମର ଯେ କରିବ ତୋର ନାଶ
ତେବେ ତୁ ମୋକ୍ଷ ନୋହିବୁ କହ୍ଣା ସୁରଦୈତ୍ୟ ।
ଏକଫାଳ ଫୋପାଡ଼ନ୍ତେ ସାଗରେ ପଡ଼ିବୁ
ଆରଫାଳ ଫୋପାଡ଼ନ୍ତେ ଗଗନେ ଉଡ଼ିଯିବୁ ।
ଅଠରଯୁଗ ଗଲେରେ ହେବୁ ଏକମେଳ
ତେବେ ତୋତେଚକ୍ରରେ ଛେଦିବେ ଚକ୍ରଧର ।
ସେତେବେଳେ ମୋକ୍ଷ ହୋଇ ସ୍ୱର୍ଗପୁରଯିବୁ
ଅଚିନ୍ତା ନବରେ ଯାଇଁ ନିଶ୍ଚିନ୍ତେ ରହିବୁ ।
ଶୁଣିଣ ସହସ୍ର ମୁଖା ପଳାଇଲା ବେଗ
ବିଚାରିଲା ପରସ୍ତିରୀ ମୁଁ ନ କରିବି ଭୋଗ ।

ଏତେବୋଲି ସେଠାରୁ ଯେ ଚଳିଲା ସହସ୍ରେ ଗ୍ରୀବ
ସକଳ ରାଜାମାନଙ୍କୁ ସାଧିଲା ହୋଇଉଗ୍ର ।
ଛଡ଼ ଚକ୍ରବତୀଙ୍କ ସଙ୍ଗରେ ଯୁଦ୍ଧ କଲା
ହରି ଚନ୍ଦନ ତାକୁ ବନ୍ଦୀରେ ରଖିଲା ।
ସେଠାରୁ ଫେଡ଼ି ତାକୁ ନେଲେ ପଞ୍ଚାନନ
ପର୍ବତ ମଡ଼ାଇ ଯେ ରଖିଲା ନେଇ ପୁଣ ।
ଯାନୁଘଣ୍ଟ ପର୍ଶୁରାମ ସଙ୍ଗରେ ଯୁଦ୍ଧକଲା
ସପତ ବର୍ଷ ଯାନୁଘଣ୍ଟ ଯାନୁରେ ବାନ୍ଧିଲା ।
ଜାଣିଣ ତ୍ରିଲୋଚନ ସେଠାରୁ ଚଳିଗଲେ
ଅସୁରକୁ ବୋଧିଣ ସେ ସକଳ କହିଲେ ।
ଶିବରାଜା ସଙ୍ଗତେ କଲା ସେହିରଣ
ମୋହ ଯାନ୍ତେ ମନ୍ତ୍ରୀତାର ଘେନି ଗଲା ପୁଣ ।
ମାନଧାତା ସଙ୍ଗରେ ଯାଇଣ ରଣକଲା
ପବନାଶରେ ମାନଧାତା ଉଡାଇଲା ।
ନିଜରାଜ୍ୟେ ଯାଇଣ ପଡ଼ିଲା ବୀର ମଣି
ସାତଦିନରେ ପ୍ରାଣ ପାଇଣ ସେ ପୁଣି ।
ବଳିରାଜା ସଙ୍ଗରେ ଯୁଗେକ ଯୁଦ୍ଧ କଲା
ହାରି କରି ସେଠାରୁ ସସ୍ରମୁଖା ଗଲା ।
ବାଣାସୁର ସଙ୍ଗରେ ଯୁଝିଲା ଯାଇ ପୁଣ
ହାରିଣ ସେଠାରୁ ଯେ ଗଲା ଦୈତ୍ୟରାଣ ।
ନିର୍ବାତ କପଟ ସଙ୍ଗରେ ଯୁଦ୍ଧକଲା
ଜିଣି ନପାରି ସେ ପଳାଇ ଅଇଲା ।
ମର୍ତ୍ତ୍ୟପୁର ରାଜାଙ୍କୁ ଜିଣିଲା ସାଧିକରି
କିଙ୍କର ପଣେ ତାଙ୍କୁ ରଖିଲା ଶସ୍ତ୍ରଧାରି ।
ସଦାଶିବ କହିବାରୁ ତାଙ୍କୁ ଛାଡ଼ିଦେଲା
ସକଳ ଋଷିଙ୍କି ଧରି ଆପଣାପୁରେ ନେଲା ।
କାର୍ତ୍ତିକେଶ୍ୱର ଯାଇ ଆଣିଲେ ମୁକୁଳାଇ
ମର୍ତ୍ତ୍ୟପୁର ଜିଣିଣ ବଳମାନ ହୋଇ ।
ସୁବର୍ଣ୍ଣ ଲଙ୍କାଗଡ଼େ ଯାଇ ହେଲା ପରବେଶ
ଦେଖିକରି ଦଶଗ୍ରୀବ ମନରେ ହରଷ ।
ସସ୍ରମୁଖା ସଙ୍ଗତେ ସେ ମଇତ୍ର ହୋଇଲା
ଆପଣାର ଦୋହିତା ତା ପୁତ୍ରେ ବିଭାଦେଲା ।
ଅଲଙ୍କା ଗଡ଼କୁ ପୁଣ ଚଳେ ସସ୍ର ମୁଖା
ଶତେଗ୍ରୀବ ସଙ୍ଗରେ ହେଲା ଯାଇଁ ଦେଖା ।
ଦୁଇଜଣ ବିଶ୍ୱାସରେ ହେଲେ ବହୁକଥା
ପୂର୍ବର କଥାମାନ କରନ୍ତି ବ୍ୟବସ୍ଥା ।
ଭୁଞ୍ଜିସାରି ଠିଆ ହୋଇଲେ ଦୁଇଜଣ
ସନ୍ତୋଷ ହୋଇଣ ବସିଲେ ପଲଙ୍କେଣ ।
ବୋଇଲେ ଦୁଇ ସମୁନ୍ଦି କରିବା ଦେଖିରଣ
ତୋହର ପବନ ମୋର ସଦାଶିବ ଜାଣ ।
କାହାର ବଳ ଏଥିରେ ହୋଇବ ବହୁତ
ଶୁଣିଣ ଶତେମୁଖା ଧରେ ଗଦାହସ୍ତ ।
ଦୁଇଜଣ ଗଦାଧର ଯାଇଁ ଉଭାହେଲେ
ଡକାଡକି କରିଣ ଗଦାମାଡ଼ି କଲେ ।
ସପତ ବରଷ ଗଦାମାଡ଼ରେ ବହିଗଲା
ପୁଣି ସେ ଯୁଦ୍ଧକଲେ ଶସ୍ତ୍ରଧରି ତୋରା ।
ସେଥିରେ ଯେ ବତିଶ ବରଷ ବହିଗଲା
କେହି ଯେ କାହାକୁ ଜିଣି ନ ପାରିଲା ।
ମାଲଯୁଦ୍ଧ କଲେ ସେ ସପତ ବରଷ
ତେବେ ଅଟକ ହେଲେ ଦୁଇ ଯେ ରାକ୍ଷସ ।
ଶତେ ମୁଖା ରାବଣ ସସ୍ରେ ମୁଖାକୁ ଧରି
ଫୋପାଡ଼ି ଦେଲା ସେ ବିକ୍ରମ ଗତିକରି ।
ଜମ୍ବୁଦ୍ୱୀପରେ ସେ ପଡ଼ିଲାକ ଯାଇଁ
ହାରିଣ ସସ୍ରମୁଖା ଗଲାକ ପଳାଇ ।
ନାଶକର ପୁରେ ଯେ ହେଲେ ପରବେଶ
ରଥରୁ ଓହ୍ଲାଇ ବସେ ବିଶାଖାର ଶିଷ୍ୟ ।
ସେ ପୁରେ ବସି ସେ ତପ ଆରମ୍ଭିଲା
ସହସ୍ରେ ବରଷ ସେ ବସି ତପକଲା ।
ତେବେ ସେ ନାଶକର ପ୍ରବେଶ ହେଲେ ତାରେ
ବୋଇଲେ ସହସ୍ର ମୁଖା ବରମାଗ ମୋରେ ।
ସହସ୍ରମୁଖା ବୋଇଲା ଶୁଣ ହେ ନାଶକର
ମୋର ଯେତେ ପୁତ୍ରନାତି ହୋଇବେ ଅମର ।
ଜନ୍ତୁପତି ବୋଇଲେ ଯେ ଅସ୍ତୁ ହେଉତୋରେ
ବିନାଦୋଷେ ଭଗାରୀ ତୁ ନୋହିତୁ କାହାରେ ।
ବିନାଦୋଷେ ଭଗାରୀ ହେବୁ ଯେବେ ରାଜା
ସମସ୍ତେ ମରିବେ ତୁମ୍ଭେ କୁଳହେବ ତେଜ୍ୟା ।
ବଳାକ୍ରାରେ ତୋର ସଙ୍ଗେ ଯେବଣ ଶତ୍ରୁହୋଇ
ତୋର ସଙ୍ଗେ ବାଦକଲେ ଜିଣିବୁ ନୃପସାଇଁ ।
ଏହାଶୁଣି ସସ୍ରଗ୍ରୀବ ବେଗେ ଚଳିଗଲା
ଆପଣା ରାଜ୍ୟରେ ଯାଇଁ ପ୍ରବେଶ ହୋଇଲା ।
ସାତଗଣ୍ଡା ଯୁଗ ଯେ ଏଥିରେ ଗଲା ବହି
ପାତାଳ ଦିଗବିଜେ କଲା ସସ୍ରସାଇଁ ।

ଅଠର କୋଟି ପୁରେ ପଶିଣ ଯୁଦ୍ଧକଲା
ନାଗବଳ ଜିଣି ବାସୁକୀ ଛାମୁରେ ମିଳିଲା ।
ଅନନ୍ତ ବାସୁକୀକି କହିଲା ଯାଇଁକରି
ବୋଇଲା ମୋର ସଙ୍ଗେ ଆସି କର ହେ କଳି ।
ସେ ବୋଇଲା ମୋର ଯେ ନାହିଁ ରିପୁପୁଣ
ଧରଣୀ ତେଜିଲେ ରସାତଳେ ପଡ଼ିବ ଜାଣ ।
ସହସ୍ରେଗ୍ରୀବ କହିଲେ ବଧାଇ ମୋତେ ଦିଅ
ବାସୁକୀ ବୋଇଲେ କିସ ନେବୁ ମୋତେକହ
ଫାଳସୁର ବୋଇଲା ମାଗିବି ମୁଁ ଯାହା
ସତ୍ୟ କରିଥିବୁ ଯେ ନ ଲଙ୍ଘିବୁ ତାହା ।
ଶତେଭରା ସୁବର୍ଣ୍ଣ ପ୍ରତିଦିନରେ ଦେବୁ
ନଦେଲେ ନିଶ୍ଚେରେ ତୋର ପ୍ରାଣ ମୁରୁଛିବୁ ।
ଶୁଣିଣ ବାସୁକୀ ଯେ ସନମତ କଲା
ପ୍ରତିଦିନ ତୋର ପୁରେ ଦେବି ଯେ ବୋଇଲା ।
ଶୁଣିଣ ସହସ୍ରେଗ୍ରୀବ ଫେରିଣ ସେଥୁଁଗଲା
ନିବିଡ଼ ପାତାଳପୁର ସ୍ଥାନରେ ମିଳିଲା ।
ବାରକୋଟି ଅସୁର ଭୁବନରେ ପଶି
ଯୁଦ୍ଧକରି ଅସୁରଙ୍କୁ ସଭିଙ୍କି ମନତୋଷି ।
କେଉଁପୁରେ ମାସେ ଯେ କେଉଁପୁରେ ବରଷେ
କେଉଁପୁରେ ଶତେବର୍ଷ କେଉଁପୁରେ ମାସେ ।
କେଉଁପୁରେ ଯୁଗେ କେଉଁପୁରେ ଦୁଇଦିନ
କେଉଁଠାରେ ପନ୍ଦର କେଉଁଠାରେ ଦଶଦିନ ।
ଏମନ୍ତେ ସାତଯୁଗ ପାତାଳେ ଯୁଦ୍ଧଗଲା
ତିରିଶି କୋଟିପୁର ଜିଣେ ବିଶାଖାର ବଳା ।
ଗୋଲେଖ ନିତ୍ୟସ୍ଥଳୀରେ ହେଲା ପରବେଶ
ଗୁଣସାଗର ମନ୍ତ୍ରୀ ବୋଲେ ଶୁଣ ନରଈଶ ।
ଏ ପୁରେ ବାସୁଦେବ ଶ୍ରୀକୃଷ୍ଣର ଲୀଳା
ଏ ସ୍ଥାନକୁ ଗଲେ ତୋର ବୁଡ଼ିବଟି ଭେଳା ।
ଏ ପୃଥ୍ୱୀରେ ପ୍ରବଳ ଯେତେ ଅସୁର ହେଲେ
ଏ ପୁରକୁ କେହିତ ଆସି ଯେ ନଥିଲେ ।
ମନ୍ତ୍ରୀର ଏମନ୍ତ ବଚନ ଶୁଣି ସସ୍ରାନନ
ଏମନ୍ତ ସମୟେ ତାର ନ ଚଳିଲା ଯାନ ।
ପାତାଳକୁ ପଶିଣ ଗଲା ଯାନ ତାର
ଡେଇଁକରି ପଳାଏ ମନ୍ତ୍ରୀ ବୀରବର ।
ଦେଖିଣ ସସ୍ରାନନ ଡେଇଁଣ ପଳାଇଲା
ଗଦାଧନୁ ଶକତି ଯେ ନାରାଚ ଛାଡ଼ିଲା ।

ଏକମୁଖା ସଙ୍ଗହୋଇ ଦୁଇଜଣ ଗଲେ
ସୁବର୍ଣ୍ଣ ଲଙ୍କାପୁରେ ଯାଇ ପ୍ରବେଶ ହୋଇଲେ ।
ରଥେକ ସେ ପୁରରୁ ଆଣିଲା ବହନ
ସେ ରଥରେ ବସିଲା ଯାଇ ସସ୍ରାନନ
ପାତାଳ ପୁରକୁ ବାଛି ଲକ୍ଷେ ନାରୀ ନେଲା
ବିଲଙ୍କା ଗଡ଼ରେ ଯାଇ ପ୍ରବେଶ ହୋଇଲା ।
ଶୁଭଯୋଗେ ଲକ୍ଷେ ନାରୀ ବିଭା ହେଲା ପୁଣ
ତାଙ୍କୁ ଘେନି ରତି ଯୋଗେ ନୀଳା କଲା ଜାଣ ।
ସାତଗଣ୍ଡା ଯୁଗ ଯେ ସେଥିରେ ବହିଗଲା
ଦୁଇଲକ୍ଷ କୁମର ସମ୍ପୂର୍ଣ୍ଣେ ଜାତ ହେଲା ।
ବାରଲକ୍ଷ ଦୋହିତା ଯେ ଜାତ ହେଲେ ପୁଣ
ପୁତ୍ର ଗୋଟିକରେ ସହସ୍ରେ ନାରୀ ଜାଣ ।
ପୁତ୍ରଙ୍କର ପୁତ୍ରମାନେ ହେଲେ ପାଞ୍ଚ ପାଞ୍ଚ
ଦୋହିତା ହେଲେ ପୁଣି ତାଙ୍କର ପାଞ୍ଚ ପାଞ୍ଚ ।
ଦୁଇଲକ୍ଷ କୁମର ତାର ଦଶଲକ୍ଷ ନାତି
ବାଷଠୀ କୋଟି ତାର ହେଲେ ଅଣନାତି ।
ସମସ୍ତେ ମୁକୁଟାବନ୍ଧା ସେହ୍ନାପତିରେ ଗଣା
ବାରଲକ୍ଷ ଶାଳକ ଲେଖାରେ ଠୁଳ କିନା ।
ଅଠରଲକ୍ଷ ଜ୍ୱାଇଁ ବତିଶକୋଟି ନାତୁଣୀ ଜ୍ୱାଇଁ
ଏମାନେ ସେହ୍ନାପତି ପଣରେ ଶାଢୀପାଇ ।
ପାତାଳ, ମର୍ତ୍ତ୍ୟପୁର ଦୁହିଙ୍କ ସାଧିକଲା
ଏକୋଇଶ ଗଣ୍ଡା ଯୁଗ ବହିଗଲା ।
ରାମ ପଘରନ୍ତି ଯେଉଁ ରଥରେ ଚଢ଼ିଥିଲା
ଗୋଲେଖପୁରେ ସେ ରଥ ଭୂମିଗତ କିମ୍ପା ହେଲା ।
ନାରଦ ବୋଲନ୍ତି ସେ ଅଟେ ବିଷ୍ଣୁସ୍ଥାନ
ସେ ପୁରକୁ ଗମନ ନକରେ ଆନପୁଣ ।
ବିଶାଶତେ ଯୋଜନ ସେ ପୁର ଆୟତନ
ଚଉରିଦ୍ୱାରେ ତ୍ରିପୁରା ବିଜେ କଲେ ପୁଣ ।
ଭିତରେ ପ୍ରବାଳ ଯେ ସ୍ଫଟିକ ପୁରସାର
ସେଥିରେ ବତିଶସସ୍ର ଅଛନ୍ତି ସ୍ତିରୀବଳ ।
ସେଠାରେ ରାଧିକାଙ୍କୁ ଘେନିଣ ଶ୍ରୀକୃଷ୍ଣ
ରାହାସ କରୁଛନ୍ତି ରାତ୍ର ଯେ ଦିବସ ।
ଷୋଳସସ୍ର ନାରୀ ଯେ ସଙ୍ଗରେ ବେଶହୋଇ
ରାଧାକୃଷ୍ଣ ଆଗରେ ରାହାସ ଲୀଳା କରଇ ।
ରାତ୍ର ଦିବସ ଭିନ୍ନ ନାହିଁ ଯେ ସେଠାର
ଉଜ୍ଜ୍ୱଳ ଚନ୍ଦ୍ରଦୀପ ଜଳଇ ନିରନ୍ତର ।

ଚଉଦ ଭୁବନରେ ଅଟେ ନିତ୍ୟସ୍ଥଳୀ
ରାଧାଙ୍କୁ କୋଳେ ଧରି ଶ୍ରୀକୃଷ୍ଣ ଲୀଳା କରି ।
ଦଣ୍ଡେ ଶୂନ୍ୟ ସେଠାରେ ଯେ ନୁହଇ ରାହାସ
ବେଶମାନ ସ୍ତିରୀଙ୍କର ଅଟେ ଅଭିଳାଷ ।
ଅମଳାଣ ବେଶ ଯେ ସମସ୍ତଙ୍କର ପୁଣ
ତେଣୁକରି ସେଠାକୁ ନଯାନ୍ତିକେବଣ ଯେ ଜନ
ବ୍ରହ୍ମା ବିଷ୍ଣୁ ସଦାଶିବ ନଯାନ୍ତି ସେ ପୁର
ଯୁଗେ ତପ ଯେ ସାଧିବ ଦେଖିବ ସେ ଦ୍ୱାର ।
ତ୍ରୀପୁରାକୁ ଅନୁସରି ଶତେଯୁଗ ରହି
ତ୍ରୀପୁରା ପ୍ରସନ୍ନ ହେଲେ ରାହାସ ଦେଖେ ଯାଇ
ସେହି ସ୍ଥାନ ଗୋଟି ଯେ ସଂସାରେ ସାର
ବତିସସ୍ର କନ୍ୟା ଘେନି ସେଠାରେ ବେହାର ।
ସେ ସ୍ତିରୀମାନଙ୍କର କ୍ଷୁଧା ତୃଷା ନାହିଁ
ଗୋଟିଏ ସ୍ତିରୀ ସେଠାରେ ଗୋଟିଏ ରୂପ ହୋଇ
ତାଙ୍କଠାରୁ ଜଗତ ଯେ ହୋଇଛି ପ୍ରକାଶ
ସେ ରାଧାକୃଷ୍ଣ ଦୁହେଁ ଅଟନ୍ତି ଅକ୍ଷୟତ ।
ଶତେଥର ଯେବେ ସେ ପ୍ରଳୟ ହୁଅଇ
ତେବେ ଯେ ଶ୍ରବଣେ ତାଙ୍କର ଶବଦେ ବାଜଇ ।
ତାଙ୍କଠାରୁ ବ୍ରହ୍ମା, ବିଷ୍ଣୁ, ମହେଶ ହୋନ୍ତି ଜାତ
ସେମାନେ ସୃଷ୍ଟିକରି କରନ୍ତି ଆତଯାତ ।
ଚଉଦ ଭୁବନ ଯେ ଦେଖନ୍ତି ପ୍ରତିଦିନ
ସେ ଦେଖନ୍ତି ସବୁଙ୍କୁ ତାଙ୍କୁ ନ ଦେଖେ କେହିପୁଣ ।
ରାହାସ ମଣ୍ଡଳରେ ଭୋଳ ତାଙ୍କ ମନ
ଷୋଳସସ୍ର କନ୍ୟା କରନ୍ତି ନାଟ ଯେ କୀର୍ତ୍ତନ ।
ଅନେକ ଯତନରେ ନାଟରସ କରି
ରାଧା କୃଷ୍ଣଙ୍କ ମନ ମୋହନ୍ତି ଯେ ସ୍ତିରୀ ।
ଶଉଚ ଯେ ଅଶଉଚ ତାଙ୍କଠାରେ ନାହିଁ
ନିମିଷେକ ସେଠାରେ ଯେ ଜନ ନ ରହଇ ।
ଯୁଗେକ ସେଠାରେ ଯେ ଯାଇ ତାର ଗୁଣ
ନେତ୍ରେ ଦେଖିବାକୁ କେହି ନୁହନ୍ତି ଭାର୍ଜନ ।
ଏମନ୍ତ ସ୍ଥାନକୁ ସସ୍ରାନନ ଯାଇଥିଲା
ଦ୍ୱାରରେ ପ୍ରବେଶ ନୋହୁଁ ଜ୍ଞାନ ତା ହଜିଲା ।
ଆଉ ଦଣ୍ଡେ ସେ ରହିଥିଲେ ହଜିଥାନ୍ତା ପୁଣି
ମନ୍ତ୍ରୀର ବୋଲ ମାନି ପଳାଇଗଲା ଜାଣି ।
ଶ୍ରୀରାମ ବୋଇଲେ ଯେ ଗୋଲେଖ ପୁରଗୋଟି
ପାତାଳ ବଇକୁଣ୍ଠ ବୋଲିଟି ତାକୁ ଲେଖି ।
ସେ ବଇକୁଣ୍ଠ ଦ୍ୱାରୀ କିମ୍ପା ହୋଇଲା ତ୍ରୀପୁରା
କେମନ୍ତେ ସେ ପୁରକୁ ସମ୍ଭାଳେ ଅବଳା ।
ନାରଦ ବୋଇଲେ ଯେ ସେଥିରେ କଥାଶୁଣ
ଚଉଦ ବଇକୁଣ୍ଠରେ ଚଉଦ ଭୁବନ ।
ଚଉଦ ବଇକୁଣ୍ଠରେ କ୍ଷୀର ସାୟେର ସାର
କ୍ଷୀର ସାୟେର ପରେ ଗୋଲେଖ ବିହାର ।
ଗୋଲେଖରୁ ଯେତେବେଳେ ଶବଦ ଶୁଭଇ
କ୍ଷୀର ସାୟେର ନାରାୟଣ ନିଦ୍ରା ଯେ ଭାଙ୍ଗଇ ।
ଯେତେବେଳେ ଅନନ୍ତର ନିଦ୍ରା ଯେ ଭାଜଇ
ସେତେବେଳେ ପୃଥିବୀ ପ୍ରଳୟ ହୋଇଯାଇ ।
ପ୍ରଳୟଜଳେ ସକଳ ପୁଣି ହୋନ୍ତି ନାଶ
ରାଧାକୃଷ୍ଣଙ୍କର କ୍ଷୟେ ନୁହନ୍ତି ରାହାସ ।
ଚଉଦ ଭୁବନେ ସେ ଅଟେ ସାତଦୀପ
ନବଖଣ୍ଡ ମେଦିନୀ ତିଆରି କରନ୍ତି ତ ।
ସପତ ସାଗର ପୁଣି ଭିନ୍ନ ଭିନ୍ନ କରି
ତିନିପୁର ଚଉଦ ବ୍ରହ୍ମାଣ୍ଡ ରଥେ ହରି ।
ଚଉଦ ବ୍ରହ୍ମାଣ୍ଡେ ଚୌଦ ବଇକୁଣ୍ଠ ପୁଣ
ଚଉଦ ନାରାୟଣ ସେଥିରେ ବିଜେ ଜାଣ ।
ବ୍ରହ୍ମାଣ୍ଡ ପାଳନ୍ତି ସେ ନାରାୟଣ ଦେହୀ
ଦୁଷ୍ଟମାରି ସନ୍ଥପାଳି ଉଶ୍ୱାସନ୍ତି ମହୀ ।
ବ୍ରହ୍ମାଣ୍ଡକୁ ପାଳିଲେ ଅନନ୍ତ ଜାତ ହୋନ୍ତି
ଅତି ପ୍ରବଳ ଦୁଷ୍ଟଙ୍କୁ ସେହି ସେ ନିବାରନ୍ତି ।
ସେ ରାଧା କୃଷ୍ଣଙ୍କର ନୋହେ କିଛି ତୃଟି
ଅତୁଟ ଦୁଇଜଣ ଅଟନ୍ତି ବିରାଟୀ ।
ସେ ପୁରେ ପଶିବାକୁ କାହାର ଅଟେ ବଳ
ସେହି ଅଂଶ ସେଥିରେ ଚଳ ଯେ ଅଚଳ ।
ସାତ ମନୁ ଅନ୍ତରେ ଏଗାର ଦିନ ଯେ ଓଳିଏ
ରାହାସ ପାତାଳରୁ ମର୍ତ୍ତ୍ୟ ପୁରକୁ ଆଏ ।
ବୃନ୍ଦାବନେ ନିତ୍ୟ ସ୍ଥଳୀ ହୁଅଇ ଭିଆଣ
ଏଗାରଦିନ ଅଳିକି ଏଗାର ବର୍ଷ ଛମାସ ଭିଆଣ ।
ସେଠାରୁ ଅନ୍ତର ହୋଇ ପାତାଳ ପୁରେ ଯାଇ
ମାନବ ନାରାୟଣ ତେତେଦିନରେ ସଙ୍ଗ ହୋଇ ।
ସେ ସ୍ତିରୀମାନେ ଗୋପାଳୁଣୀ ଅଂଶେ ଜାତହୋଇ
ନୟନ କଟାକ୍ଷରେ ମାନବ ବିଷ୍ଣୁ ମୋହି ।
ସେହି ସେ ସତେଜେ ମାନବ ବିଷ୍ଣୁ ଜାଣ
ରତିରସ କରନ୍ତି ପଞ୍ଚଶ ବର୍ଷ ଜାଣ ।

ଯେତେବେଳେ ମାନବ ନାରାୟଣ ଯାଇ
ଆପଣାର ବଇକୁଣ୍ଠ ଭୁବନେ ପୁଣ ହୋଇ ।
ତେତେବେଳେ ଗୋପାଳୁଣୀ ଛାଡ଼ିଣ ସେହୁ ଅଙ୍ଗ
ଗୋଲେଖ ବଇକୁଣ୍ଠରେ ହୁଅନ୍ତି ରାଧା ସଙ୍ଗ ।
ତେତେବେଳେ ବୃନ୍ଦାବନ ନିତ୍ୟସ୍ଥଳୀ ଗୁପ୍ତ
ସେ ଗୋଲେଖ ଜଗି ରହଇ ସ୍ତୀରୀ ଏକ ।
ବୃନ୍ଦାବତୀ ନାମ ଯେ ତାର ପୁଣ ହୋଇ
ମର୍ତ୍ତ୍ୟପୁର ନିତ୍ୟ ସ୍ଥଳୀ ଜଗିଣ ରହେ ସେହି ।
ସେ କୃଷ୍ଣ ଅଂଶରେ ଏକା ରହଇ ଗୋପେଶ୍ୱର
ଲିଙ୍ଗରୂପେ ଜଗି ରହେ ସେହି ନିତ୍ୟ ସ୍ଥଳ ।
ସେ ନିତ୍ୟ ସ୍ଥଳ ଦ୍ୱାରୀ ଯେ ଅଟେ ପୂର୍ଣ୍ଣମାସୀ
ଆଦ୍ୟ ରୂପ ଧରିଣ ସେ ଦ୍ୱାରେ ଥାଏ ବସି ।
ସପତ ମନୁରେ ପୁଣି କୃଷ୍ଣଙ୍କୁ ଭେଟ ପାଇ
ରାଧିଙ୍କା ସଙ୍ଗରେ ନିତ୍ୟେ ଭେଟ କରେ ନେଇ ।
ସେ ବୃନ୍ଦବାନରେ ବାସ ତା ତିନିଜଣ
ଅନୁକ୍ଷଣେ ଚିନ୍ତାକରେ ଶ୍ରୀକୃଷ୍ଣ ଚରଣ ।
ଏମନ୍ତେ ତିନିଜଣ ଅଟନ୍ତି ଭକ୍ତ ଜାଣ
ତାଙ୍କୁ ଦୟାକରେ ଯେ ରାସ ବେହାରି ପୁଣ ।
ଏମନ୍ତ ପ୍ରକାରେ ଯେ ଗୋଲେଖର କଥା
ନର ନାରାୟଣ ସବୁ ଦିନରେ ହୋନ୍ତି ଦେଖା
ଶୁଣିଣ ରାମଚନ୍ଦ୍ର ବୋଲନ୍ତି ବଚନ
ସ୍ୱର୍ଗକୁ କିପାଁ ନ ଆସେ ରାଧାକୃଷ୍ଣ ଜାଣ ।
ନାରଦ ବୋଇଲେ ଯେ ସେଥିରେ କଥାଶୁଣ
ଅନନ୍ତ ବାସୁଦେବ ସେଥିର କାରଣ ।
ସ୍ୱର୍ଗ ଦେବଙ୍କୁ ଘେନିଣ ତାଣ୍ଡବ ନୃତ୍ୟ କରେ
ବ୍ରହ୍ମା ସଦାଶିବ ଥାନ୍ତି ତାଙ୍କର ସଙ୍ଗରେ ।
ସେ ତାଣ୍ଡବ ନୃତ୍ୟରେ ବାସୁଦେବ ଭୋଳା
ମଦଳ ଘେନି ବେଦବର କରଇ ଯେ ନୀଳା ।
ଯେଉଁ ନୃତ୍ୟର ନାଟ କରଇ ସଦାଶିବ
ଯେଉଁ ନୃତ୍ୟରେ ତାଳ ଧରନ୍ତି ବାସୁଦେବ ।
ତ୍ରିଦଶ ଦେବତାଏ ସେଠାରେ ହୋନ୍ତି ମେଳ
ଅପକ୍ଷରୀ କିନ୍ନରୀ ବିଦ୍ୟାଧରୀ ଠୁଳ ।
ପାରିଜାତକ ପୁଷ୍ପ ଯେ ଅମଳାଣ ଶାଢ଼ୀ
ବେଶ ହୋଇ ସେମାନେ ସକଳ ମୋହ କରି
ତ୍ରୀଦଶ ଦେବତାଏ ଯେ ବ୍ରହ୍ମାବିଷ୍ଣୁ ହର
ସମସ୍ତଙ୍କୁ ମୋହକରେ ଅପକ୍ଷରୀ ବଳ ।
ନାଟରଙ୍ଗ ଗୀତ ନାନା ଛଟକ ଗହାଣୀ
ଦେବତାଙ୍କୁ ମୋହକରି ହୁଅନ୍ତି ସିଆଣୀ ।
ତହିଁରେ ବାସୁଦେବ ହୋନ୍ତି ଯହୁଁ ଭୋଳା
ସେ ପୁରରେ ରାଧାକୃଷ୍ଣର ନୁହଇ ରସଲୀଳା ।
ଯେତେବେଳେ ରାଧାକୃଷ୍ଣ ଶୂନ୍ୟରେ କରେରାସ
ତେତେବେଳେ ସ୍ୱର୍ଗପୁରେ ତାଣ୍ଡବ ପ୍ରକାଶ ।
ଶ୍ରୀରାମ ବୋଲନ୍ତି ସେ ରାଧାକୃଷ୍ଣ ଦୁଇ
ବତିଶ ସସ୍ର କନ୍ୟା ସଙ୍ଗରେ ଲୀଳା ହୋଇ ।
ରାତ୍ର ଦିବସ ଯେ ନାହିଁଟି ତାହାଙ୍କର
କ୍ଷୁଧା ତୃଷା ନାହିଁ କାର ବିରାଟ ରୂପ ସାର ।
ବେଶ ଭୂଷଣ ତାଙ୍କର ନୁହଇ ମଳିଣ
ଅନୁକ୍ଷଣେ ନୃତ୍ୟ ହୋଏ ଦେଖନ୍ତି ଦୋହେପୁଣ ।
ଚରିଦ୍ୱାରେ ଚରିସ୍ତିରୀ ଅଛନ୍ତି ତାଙ୍କର
କୃଷ୍ଣ ଜନମିଲେ ସେ କରନ୍ତି କି ପ୍ରକାର ।
ନାରଦ ବୋଇଲେ ତୁମ୍ଭେ ସେ କଥାଇଁ ଶୁଣ
ସେ ସ୍ତିରୀଙ୍କି ଚାହିଁଲେ ନାସଯାନ୍ତି ଦୁଷ୍ଟଜନ ।
ଦେବତାଏ ଗଲେ ଦେବନାଶନ ବଟ ଧରି
ସେ ଛାଇରେ ଚାଲିଲେ ଦେବତା ଯାଏ ମାରି ।
ଅସୁରେ ଗଲେ ତାଙ୍କୁ କରନ୍ତି ଭୂମିଗତ
ଯାନଗଲେ ବାଳୀ ସେ କରନ୍ତି ଭୂମିଗତ ।
ଭଗତ ଗଲେ ତାଙ୍କୁ ଯେ ରେଣୁ ଗଣାବନ୍ତି
ମର୍ତ୍ତ୍ୟପୁରେ ଯେତେବେଳେ ରାଧା କୃଷ୍ଣ ଯାନ୍ତି ।
ତେତେବେଳେ ଭକ୍ତଗଣ ହୁଅନ୍ତି ଗୋପାଳୁଣୀ
ମାନବ ବିଷ୍ଣୁ ସଙ୍ଗରେ ରମଣ ନୀଳା ଜାଣି ।
ସେ ପୁରକୁ କେହି ଯେ ନୁହନ୍ତି ଭାର୍ଜନ
ଏକା ନର ନାରାୟଣ କରନ୍ତି ଗମନ ।
ନରନାରାୟଣଙ୍କୁ ଅଟକ ତ୍ରିପୁରାର
ରାଧାକୃଷ୍ଣ ଠାରେ ଯେ ତାଙ୍କର ଗୋଚର ।
ସେ ଯେବେ ଆଜ୍ଞା କଲେ ଯାଆନ୍ତି ବେନିଜନ
ନୋହିଲେ ବଳକୃତ୍ୟ ନୁହଇ ସେ ସ୍ଥାନ ।
ବଳକୃତ ଯେ କରନ୍ତି ବକ୍ଷକୁ ନ ଦିଶଇ
ଶୁଆ ରୂପ ଧରିଣ ସେ କେତେ ଯୁଗରହି ।
ଶୁଆ ରାଧାକୃଷ୍ଣ ନାମ କରଇ ଗାୟନ
କେତେଦିନ ଦୟାକଲେ ପାଏ ଦରଶନ ।
ତେବେ ଅନ୍ଧ ପଟଳରୁ ସେହି ହୋଇ ପାର
ଯେତେବେଳେ ଦୟାକରେ ଗୋଲେଖ ଠାକୁର ।

ଶ୍ରୀରାମ ବୋଇଲେ ସେ ଯେ କେଉଁଠାରୁ ଜାତ
ନାରଦ ବୋଇଲେ ଜାତ ନୁହନ୍ତି ସେ ପୁରୁଷ ।
ବିରାଟ ପୁରୁଷ ସେ ଯେ ଅଟଇ ନିଶ୍ଚଳ
ଯାହାର ଶରୀରୁ ବ୍ୟାପି ଅଛି ତିନିପୁର ।
ଯାହାର ମସ୍ତକରେ ଆକାଶ ଅଟେ ଜାଣ
ଶରୀର ଗୋଟି ତାର ଧରଣୀ ପ୍ରମାଣ ।
ପାଦ ତା ରସାତଳ ସୁତାଳ ଅଙ୍ଗୁଷ୍ଠି
ଏକରୂପ ଗୋଟି ଚୌଦ ଭୁବନରେ ବ୍ୟାପି ।
ତାରଠାରୁ ସମସ୍ତେ ହୋନ୍ତି ପୁଣ ଜାତ
ଲୀନ ହେଲା ବେଳରେ ତାଠାରେ ଉପଗତ ।
କାରୁଣ୍ୟ ଜଳଧି ଯେ ଘୋଟି କରେ ନାଶ
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଦେବତା ହୋନ୍ତି ଧ୍ୱଂସ ।
ତେତେବେଳେ ନିର୍ବୀଜ ଯେ ଟଳଇ ଶ୍ରୀକୃଷ୍ଣର
ସେ ରଜ ଟଳଇ ରାଧିକା ଶରୀର ।
ସେ ଦୋହେଁ ଜଳରେ ଯେ ହୋନ୍ତି ପରବେଶ
ଅଣ୍ଡରୂପ ଧରିଣ ସେ ଭାସନ୍ତି ଜଳରେତ ।
ସେ ଅଣ୍ଡ ଶରୀରରୁ ଯେ ଛୁଆ ହୋଏ ଜାତ
ସେହି ଛୁଆ ଅଣାକାର ସ୍ୱରୂପେ ହୋଏ ଜାତ ।
ସେ ଛୁଆ ଗୋଟି ପୁଣି ଓଁକାର ଶବଦ କରଇ
ମହାମାୟା ପାଦରୁ ଓଁକାର ଜାତ ହୋଇ ।
ତାର ସଙ୍ଗରେ ନୀଳା କରନ୍ତି ନିରଞ୍ଜନ
ଯୋଗମାୟା ସେହିଠାରୁ ହୋଇଛନ୍ତି ଜନ୍ମ ।
ତାରଠାରୁ ବ୍ରହ୍ମା ବିଷ୍ଣୁ ଜାତ ହୋଏପୁଣ
ତାଙ୍କଠାରୁ ଜଗତ ଜନ ହୁଅନ୍ତି ଭିଆଣ ।
ସେଠାରୁ ଚଉଦ ବଇକୁଣ୍ଠ ପୁର ହୋଇ
ଚଉଦ ନାରାୟଣ ସେଥିରେ ଯାଇଁ ରହି ।
ଅଣାକାର ପୁରୁଷ କ୍ଷୀରସାଗର ଭିତରେ
ଶୟନ କରନ୍ତି ଅନନ୍ତ ଶୟନରେ ।
ସେ ପୁରୁଷ ନାନାଭଙ୍ଗୀରେ ହୋନ୍ତି ଅବତାର
ଦେବତାମାନେ ଭକ୍ତି ଯେ କରନ୍ତି ତାଙ୍କଠାର ।
ଭଗତ ଭାବଗ୍ରାହୀ ବୋଲନ୍ତି ସେ ପୁଣ
ଅବତାର ହୋଇଣ ମାରନ୍ତି ଦୁଷ୍ଟଗଣ ।
ତାହାର ଅବତାର ଅସୁରେ ହୋନ୍ତି ହତ
ଅସୁରଙ୍କର ରିପୁ ଯେ ଅଟନ୍ତି ଜଗନ୍ନାଥ ।
ମାୟାଭି ପୁରୁଷ ସେ ଜାଣନ୍ତି ବଡ଼ମାୟା
ଭଗତି କଲେ ସେଠାରେ କରନ୍ତି ତାଙ୍କୁ ଦୟା ।

ସେହି ଯେ ତିନିପୁର ଦୁଷ୍ଟଙ୍କୁ ନାଶକରି
ସନ୍ଥଜନ ମାନଙ୍କୁ ପାଳନ୍ତି ଦେବହରି ।
ତେଣୁ ସେ ଜଗତରେ ଜଗନ୍ନାଥ କହି
ଜଗତ ତାଙ୍କର ହୃଦୟରୁ ଜାତହୋଇ ।
ଶୁଣିଣ ଶ୍ରୀରାମ ଯେ ମନରେ ତୋଷହେଲେ
ଗୋଲେଖନାଥ ମୂଳ ଯେ ବୋଲିଣ ବୋଇଲେ
ଶ୍ରୀରାମ ବୋଲନ୍ତି ଯେ ଶୁଣ ହେ ମୁନିବର
ଏଜନ୍ମେ କିମ୍ପା ଏକବ୍ରତୀ ଯେ ମୋହର ।
ନାରଦ ବୋଇଲେ ବାବୁ ସେକଥାଇଁ ଶୁଣ
ଅନନ୍ତ ଶୟନରେ ବିଜେ ତାର ପୁଣ ।
ଦିନେକ କମଳା ଯେ ଶୁଚିମନ୍ତ ହୋଇ
ସ୍ନାନସାରି ବେଶ ଯେ ହେଲେ ଚନ୍ଦ୍ରମୁହିଁ ।
ସେଦିନ ଜନ୍ମ ତାର ତିଥି ଯେ ଅଟଇ
ବିଚାରିଲା ପ୍ରଭୁଙ୍କୁ ମୁଁ ଅର୍ଘ୍ୟ ଦେବିନେଇ ।
ଦାସୀଙ୍କ ସଙ୍ଗରେ ହସ୍ତେ ଅର୍ଘ୍ୟ ସ୍ଥାଳୀଧରି
ଆସନ୍ତେ ଦ୍ୱାରପାଳ ଦ୍ୱାର ନିରୋଧ କରି ।
ଦ୍ୱାରନିରୋଧନ୍ତେ ଯେ ସେଦେବୀ ଶାପଦେଲା
ଅସୁରହୁଅ ଦୁହେଁ ବୋଲିଣ ବୋଇଲା ।
ତାହାର ଶାପରେ ଯେ ଚଳିଲେ ଦୁଇଜଣ
ଅସୁର ଯୋନିରେ ଜାତ ହେଲେ ଯାଇପୁଣ ।
ତାହାଶୁଣି ନାରାୟଣ କମଳାରେ କହି
ସେବକ ଦୋଷକଲା କିପାଇଁ ଶାପ ବିହି ।
ସେ ବୋଇଲେ ମୋତେ ଦର୍ଶନ ମନାକଲା
ତେଣୁ କରି ତାମସ ମୋ ହୃଦରୁ ଜାତ ହେଲା
ନାରାୟଣ ବୋଇଲେ ତାମସ ଯେବେ ଜାତ
ଶାନ୍ତିରୂପ ହୋଇ ତାମସ ମୋ ଯାଇଁଯେ ରହତ ।
ତାମସ ରୂପଗୋଟି ମେରୁ ଦୋହିତା ହେଉ
ଅସୁର ମାରିବା ଯାଏ ତପକରି ଥାଉ ।
ଯେତେବେଳେ ରିପୁ ବଂଶେ ଜାତ ହେବପୁଣ
ଶାନ୍ତିରୂପ ପ୍ରବେଶ ହେବ ତୋ ଦେହେଣ ।
ଦୁଇରୂପ ଏକଠୁଳ ଜନମ ହେବ ପୁଣି
ରକ୍ଷିର ଦୋହିତା ତୁ ହେବୁ ଗୋସାମଣି ।
କମଳା ବୋଇଲେ ଯେବେ ତାମସିକ ମୋରଯିବ
ମେରୁ ଦୋହିତା ହୋଇ ତପସ୍ୟା କରିବ ।
ତେବେ ତୁମ୍ଭେ ଏକବ୍ରତ ହୋଇବଟି ଜାଣ
ମୋର ସଙ୍ଗରେ ତୁମ୍ଭର ଦିନଯିବ ପୁଣ ।

ମୋରବିନା ଆଉ ଅଙ୍ଗ ନଛୁଇଁବ କାହାରି
ମୁହିଁ ଅସୁର ମରାଇ ଆସିବି ନିଜପୁରୀ ।
ବାସୁଦେବଙ୍କୁ ମନାଇଁ ତାମସ ବେଗେଗଲା
ମେରୁନାରୀ ଗର୍ଭରେ ଯାଇଣ ଜାତହେଲା ।
ବାରହ ବରଷଠାରୁ ବାସ୍ତରୀ ଯେ ଯୁଗ
କନକ ବଇଡୁର୍ଯ୍ୟ ତପରେ ତପଭୋଗ ।
ଦିଗବିଜେ ରାବଣ ଯେ କରିବାକୁ ଗଲା
ତାମସ ନାରୀକି ଯାଇ ସେପୁରେ ଭେଟିଲା ।
ଛଳକଥା କହନ୍ତେ ସେ ତ୍ରିପୁତି ନୋହିଲା
ବଳାତ୍କାରେ ଦଶଗ୍ରୀବ ଯାଇଁଣ ଧଇଲା ।
ବିଡ଼ମ୍ବଣ କରିବାକୁ ମନରେ ବିଚାରି
ସେହିନାରୀ ବୋଲେତୁ ଶୁଣରେ ଦଶଗିରି ।
ଏହିରୂପ ଗୋଟି ତୋତେ କରିବଟି ନାଶ
ଏତେବୋଲି ପ୍ରାଣକୁ ସେ ତେଜିଲେ ତୁରିତ ।
ସେହି ମୃଦାରକୁ ଦୈତ୍ୟ ଘେନିକରି ଗଲା
ମୋଞ୍ଚନକରି ଖାଇବ ବୋଲିଣ ବିଚାରିଲା ।
ମନ୍ଦୋଦରୀ ଛାମୁରେ ଦେଲାକ ନେଇକରି
ମଞ୍ଜୁଷରେ ଭରି ନାରୀ ସମୁଦ୍ରେ ନେଇଭରି ।
ମାୟାରେ ସେ ମଞ୍ଜୁଷ ସୁରରାଜା ନେଲା
ଜନକ ଯଜ୍ଞଶାଳାରେ ନେଇଣ ପୋତିଲା ।
ପିଣ୍ଡଗୋଟି ମଞ୍ଜୁଷାରେ ସଂଜୀବେ ରହେତାର
ଅନନ୍ତ ଶଯ୍ୟା ତୁମ୍ଭେ କଲହେ ରଘୁବୀର ।
କମଳା ସେହିଦିନ ସେ ପିଣ୍ଡରେ ପଶି
କଉଶଲ୍ୟା ଗର୍ଭେ ତୁମ୍ଭେ ଜନମ ବ୍ରହ୍ମରାଶି ।
ଛଡ଼ମାସ ଯିବାର ଜନକରଷି ପୁଣ
ଲଙ୍ଗଳରେ ଶୋଧନ୍ତେ ମଞ୍ଜୁଷପାନ୍ତି ପୁଣ ।
ମଞ୍ଜୁଷ ଭିତରେ ଯେ ଦେଖିଲେ ଏକନାରୀ
ସେ କନ୍ୟାକୁ ଜନକରଷି ନେଇ ପାଳି ।
ଫାଳରୁ ଜାତ ହେବାରୁ ତା ନାମ ସୀତାହେଲା
ନବ ଦିନରେ ସେକନ୍ୟା ନବଯୁବା ହେଲା
କାଳେଣ ସେ କନ୍ୟା ଯେ ପ୍ରାପତହେଲା ତୋତେ
ସେକନ୍ୟା ସତ୍ୟ କରାଇଲା ତୁ ତାକୁ ବିଭାହୋନ୍ତେ
କାଳେଣ ତାହାର ସକାଶରେ ପୁଣ
ଚାରି ରାବଣ ମାଇଲ ଶୁଣ ରାମରାଣ ।
ସେ କମଳା ତୁମ୍ଭଙ୍କୁ ମନାଇଁ ଥିଲେ ପୂର୍ବେ
ତେଣୁ ଏକବ୍ରତୀରେ ଗଲା ଏଯୁଗ ଏବେ ।

ଏଥୁ ଅନନ୍ତରେ ଯେ ପାର୍ବତୀ ଦେବୀ ଶୁଣ
ସଦାଶିବ ଚରଣେ ଓଳଗେ ଦେବୀଜାଣ ।
ବୋଇଲେ ସସ୍ରାନନ ଯେ ଦୁଇପୁର ଜିଣି
ଲକ୍ଷେକ କନ୍ୟା ନେଇ ସେ ବିଭାହେଲା ପୁଣି
ଦୁଇଲକ୍ଷ କୁମାର ଯେ ଦଶଲକ୍ଷ ନାତି
ଅଠର ଲକ୍ଷ ଯୁଆଇଁ ଅଟଇ ତାରଟି ।
ପଦ୍ମବନ ଜାଣିଣ ବଂଶ ବଢ଼େ ତାର
ପୁଣି କିସ କଲା ଦୈତ୍ୟ କହ ମୋ ଆଗର ।
ସଦାଶିବ କହନ୍ତି ପାର୍ବତୀ ଆଗୋ ଶୁଣ
ନାରଦ କହନ୍ତି ରାମଙ୍କୁ ସେକଥା ବିଚାରିଣ ।
ଶ୍ରୀରାମ ବୋଇଲେ କହ ସସ୍ରଗ୍ରୀବ କଥା
ନାରଦ ବୋଲନ୍ତି ଶୁଣ ଦଶରଥ ପୁତା ।
ଏକୋଇଶ ଗଣ୍ଡା ଯୁଗ ସେଥିରେ ବହିଗଲା
ସହସାନନର ବଂଶ ପଦ୍ମବନ ହେଲା ।
ଏକଦିନେ ବିଚାର କରଇ ସସ୍ରମୁଖା
ସ୍ୱର୍ଗପୁର ନ ଜିଣିଲି ନୋହିଲା ମୋର କକ୍ଷା ।
ଦେବତାମାନଙ୍କୁ ଯେବେ ଜିଣିବଇଁ ମୁହିଁ
ସେବାକାରୀ ପଣେ ଆଣି ମୁହିଁ ରଖିବଇଁ ।
ଏତେକ ବିଚାରି ଚତୁରାଙ୍ଗ ବଳ ସାଜି
କଟକାଇ କଲା ସ୍ୱର୍ଗକୁ ବିଲଙ୍କା ଗଡ଼ ନିଧି ।
ହେମଗିରି ଉପରେ ଉଠିଲା ଯାଇଁ ପୁଣ
ଗଙ୍ଗା ପାରି ହୋଇ ଭେଟିଲା ଦକ୍ଷଗଣ ।
ଗନ୍ଧର୍ବ କିନ୍ନର ଭେଟିଲା ଆସି ପୁଣ
ଗନ୍ଧମାର୍ଦ୍ଦନ ପର୍ବତେ ଲାଗିଲା ଘୋର ରଣ ।
ଗନ୍ଧର୍ବ ଦକ୍ଷଗଣ କିନ୍ନର ବିଦ୍ୟାଧର
ଚାରି ବର୍ଣ୍ଣରେ ମିଳି ଲାଗିଲାକ ଗୋଳ ।
ବରଷେ ପରିଯନ୍ତେ ସେଥିରେ ଯୁଦ୍ଧହେଲା
ଚବିଶ କୋଟି ଅସୁର କ୍ଷୟ ଗଲେ ପରା ।
ବାରକୋଟି ମଲେ ଯେ ଗନ୍ଧର୍ବ ବିଦ୍ୟାଧର
ପ୍ରତିଦିନ ରକ୍ତନଦୀ ବହିଲା ଗିରିପର ।
ସେଠାରୁ ଗନ୍ଧର୍ବ ଯେ ଦକ୍ଷ ବିଦ୍ୟାଧର
ଭାଜିବାରୁ ଅସୁରେ ଯେ ହୋଇଲେ ପ୍ରବଳ ।
ସ୍ୱର୍ଗପୁରେ ଯାଇଣ ଖୁମାଇ ପଶିଲେ
ତ୍ରିଦଶ ଦେବତାଏ ଆସିଣ ଓଗାଳିଲେ ।
ଲାଗିଲା ରଣ ଗୋଳ ସୁର ଅସୁରଙ୍କର
ଯୁଗେ ପରିଯନ୍ତେ ସେ ହେଲା ବହୁ ଗୋଳ ।

ପ୍ରତିଦିନ ସ୍ୱର୍ଗରେ ରକତ ନଦୀ ବହି
କବନ୍ଧ କୋଟି କୋଟି ନାଚୁଛନ୍ତି ତହିଁ ।
ପିଚ୍ଛଶୁଣୀ ବାନେ କୋଟି କରେ ରୋଧିର ପାନ
ଯୁଗକେ ସୁର ଅସୁର ହେଲେ ଭିନ୍ନ ଭିନ୍ନ ।
ଭାଜିଗଲେ ଦେବବଳ ଅସୁରେ ପ୍ରବଳ
ଦଶଦିଗ ପାଳେ ଯେ ଆବୋରି କଲେ ଗୋଳ ।
ଦଶଯୁଗ ପରିଯନ୍ତେ ରହିଣ ଯୁଗକଲେ
ତହୁଁ ପୁଣ ଦଶ ଦିଗପାଳେ ହାରିଗଲେ ।
ଅନେକ ଅସୁର ଯେ ମଲା ଉଭାରେ ପୁଣ
ଅନେକ ଦେବଗଣ ତୁଟିଲେ ତହିଁ ପୁଣ ।
ମର୍ତ୍ତ୍ୟପୁର ଗୋଟି ଯେ ରକତେ ପୂରିଲା
ଯେସନେ ବରଷାକାଳେ ଜଳ ବରଷିଲା ।
ବାନେ କୋଟି ପିଚ୍ଛଶୁଣୀ ମିଳି ମର୍ତ୍ତ୍ୟପୁର
ରୋଧିର ଭକ୍ଷିଣ ସେ ମନକୁ କଲେ ସ୍ଥିର ।
ସେଠାରୁ ଯୁଦ୍ଧକଲେ ନବକୋଟି ଦେବୀଗଣ
ସିଂହ ଶାର୍ଦ୍ଦୋଳ ଗତି କରନ୍ତି ରଣେପୁଣ ।
ଚଉଷଠୀ ଯୋଗ୍ନି ଯେ ମିଶି ଯୁଦ୍ଧକଲେ
ପିଚ୍ଛଶୀଗଣ ତାଙ୍କ ସଙ୍ଗରେ ଭେଟିଲେ ।
ଦେଖିଣ ଫାଳସୁର ଶିବଶର ମାରି
ପଶୁପତ୍ର ଶରରେ ପକାଇଲା ଦଳି ।
ପଳାଇଲେ ଦେବଗଣ ନ ରହିଲେ କେହି
ରକତ ନଦୀମାନ ଯାଏ ସେଠାରେ ବହି ।
ସ୍ତିରୀ ବୋଲି ଓପ୍ରୋଧ ନ କଲା ଦୈତ୍ୟବୀର
ଦୁଇଯୁଗ ସମର ଯେ ତାଙ୍କ ସଙ୍ଗରେ ଘୋର ।
ଛଳିଶି କୋଟି ଯୋଗ୍ନୀ ଯେ କାଟିଲା ପଶୁପତ୍ରେ
ବାଆନେ କୋଟି ଦୈତ୍ୟେ ମାଇଲେ ଦେବୀହସ୍ତେ ।
ଦେବୀ ପଳାଇବାରୁ ଯେ ଅସୁରେ ଘୁଞ୍ଚନ୍ତି
ସୁରରାଜା ଆସିଣ ଓଗାଳେ ପୁଣ ସେଥି ।
ଯୁଗେ ପରିଯନ୍ତେ ଯେ ଇନ୍ଦ୍ର ଯୁଦ୍ଧକଲା
ଦଇବର ଦୁର୍ବଳରେ ସେହି ଯେ ଭାଜିଲା ।
ସସ୍ତାନନ କୁମର ସେ ଗୁମାନୀସୁର ପୁଣ
ତାର ପୁତ୍ର ଶକ୍ରାଜିତ ଶୁଣ ହେ ରାମରାଣ ।
ସେ କୁମର ଇନ୍ଦ୍ରକୁ ଯେ ବାନ୍ଧିଲା ମୋହଫାଶେ
ଦଶଦିଗ ପାଳଙ୍କୁ ଗୁମାନୀସୁର ରଖେ ।
ନବକୋଟି ଦେବୀଙ୍କି କୋଦାଳ ସୁର ଧରି
ଚୌଷଠିକୋଟି ଯୋଗ୍ନୀଙ୍କି ବୀରବର ବାନ୍ଧିକରି

ଦକ୍ଷ ଗନ୍ଧର୍ବ ଯେ କିନ୍ନର ବିଦ୍ୟାଧର
ଏମାନଙ୍କୁ ସସ୍ତାନନ ବନ୍ଦୀକରି ତାର ।
ନିଶାଣ ବଜାଇ ସେ ବିଲଙ୍କା ପୁର ଆସି
ଚଉଦ ଯୁଗରେ ସ୍ୱର୍ଗ ପକାଇଲା ଧ୍ୱଂସି ।
ସ୍ୱର୍ଗରୁ ଅଇଲା ସେ ବଜାଇଣ ବାଜା
ବିଲଙ୍କାରେ ପ୍ରବେଶ ହେଲା ମହାରାଜା ।
ଚଉଦ ଯୁଗ ଯାଏ ବାନ୍ଧିଣ ରଖିଲା
ଦେବତାଙ୍କୁ କିଙ୍କର ପରାୟେ ମଣିଲା ।
ଅତିଦୁଃଖ ପାଇଲେ ତ୍ରିଦଶ ଦେବଗଣ
ଆରତେ ଡାକିଲା ରଖ ଅମ୍ବିକା ରମଣ ।
ସେ ଡାକକୁ ଶୁଣି ଯେ ସଦାଶିବ ଗଲେ
ବୃଷଭ ବାହନ ଉପରେ ବିଜେକଲେ ।
ବିଲଙ୍କା ଗଡ଼ରେ ସେ ହେଲେ ପରବେଶ
ଦେଖିଲେ ସସ୍ତାନନ ବାହାରେ ଅବକାଶ ।
ଈଶ୍ୱରଙ୍କୁ ଦେଖି ଫଳାସୁର ଯେ ଓଳଗି
ସୁକଲ୍ୟାଣ କଲେ ଯେ ପରମ ପୁରୁଷ ଯୋଗୀ
ଈଶ୍ୱର ବୋଇଲେ ଶୁଣରେ କୁମର
ମନୋରଥ ପୂର୍ଣ୍ଣ କି ହୋଇଲା ତୁମ୍ଭର ।
ତିନିପୁର ସାଧିଲୁ ତୁ ହେଲୁ ଚକ୍ରବର୍ତ୍ତୀ
ତୋର ସଙ୍ଗେ ସମକକ୍ଷ କେହି ଯେ ନୁହନ୍ତି ।
ସସ୍ତାନନ ବୋଲେ ଦେବ ତୋର ପରସନ୍ନେ
ସକଳ ଜିଣିଲି ମୁଁ ହାରିଲି ନାରାୟଣେ ।
ମୋର ଆଜ ଭାଗ୍ୟତ ହୋଇଲା ପୁଣି ବଡ଼
ଦେଖିଲି ମୁଁ ନିରଞ୍ଜନ ପାତକ ହେଲା ଦୂର ।
କେଉଁ କାର୍ଯ୍ୟେ ମୋର ପୁରେ ବିଜେ ଦେବରାଜ
ଈଶ୍ୱର ବୋଇଲେ ପୁତ୍ର ତୋଠାରେ ଅଛି କାର୍ଯ୍ୟ
ଚଉଦ ଯୁଗ ପର୍ଯ୍ୟନ୍ତେ ଦେବଙ୍କ ସଙ୍ଗେ କଳି
ତାହାଙ୍କୁ ଧରି ଆଣି ରଖିଛୁ ଓଗାଳି ।
ସାତଗଣ୍ଡା ଯୁଗ ହେଲା ଦେବଙ୍କର ନାହିଁ ନୀତିଗତି
ସ୍ୱାହାନ ମାଜଣା ସେ ନ କଲେ ହିଁ କିଛି ।
କେତେଦୁଃଖ ପାଇଲେ ଦେବତା ସକଳ
ସୁରରାଜା ସଭା ନାହିଁ ସାତଗଣ୍ଡା ଯୁଗ ତାର ।
ଦେବତାମାନଙ୍କର ଭରସା ନାରାୟଣ
ଯେଉଁ ନାରାୟଣ ହସ୍ତେ ଅସୁର ହୋନ୍ତିଲୀନ ।
ସେ ନାରାୟଣଙ୍କୁ ଆମ୍ଭେ କେହି ନୁହେ ସରି
ଜଣକରେ କେତେ ଶିବ ଜନ ସେହୁ କରି ।

ଦିନେକ କୋଟିଏ ଶିବ କରି ପାରଇ ଆନ
ସେ ନାରାୟଣଙ୍କ ସଙ୍ଗେ କି ତୁହୋଇବୁ ଭାର୍ଜନ ।
ଯାହାର ନାରୀ ହସ୍ତରେ ତୋର ହେବ ମୃତ୍ୟୁ
ସେ କଥାକୁ କିମ୍ପା ମନେ ନ କରୁ ତୁ ହେତୁ ।
ସକଳ ଦେବତାଙ୍କୁ ଜିଣିଲୁ ତୁ ବଳେ
କଥା ରଖିଲୁ ତୁହି ଏ ମହୀ ମଣ୍ଡଳେ ।
ଏବେ ମୋର ବୋଲରେ ଦେବଙ୍କୁ ଦିଅଛାଡ଼ି
ଆଉବେଳେ ଦେବତାଏ ନ କରିବେ କଳି ।
ଈଶ୍ୱରଙ୍କ ବୋଲେ ସସ୍ରାନନ ତୋଷ ହେଲା
ତ୍ରୀଦଶ ଦେବତାଙ୍କୁ ତକ୍ଷଣେ ଆଣିଦେଲା ।
ସୁରରାଜା ଇନ୍ଦ୍ରକୁ ସେ ଆଣି ଦେଲା ପୁଣ
ନବକୋଟି ଦେବୀ ସଙ୍ଗେ ଯୋଗ୍ନୀ ଗଣମାନ ।
ସକଳ ଦେବଦେବୀ ବନ୍ଧନୁ ହେଲେ ପାର
ମହାଦେବଙ୍କ ଚରଣେ କଲେ ନମସ୍କାର ।
ଈଶ୍ୱର କହିବାରୁ ସ୍ୱର୍ଗପୁର ଗଲେ
ମାଜଣା ସ୍ନାନ ଯାଇ ଯେ ଯାହା ପୁରେ ହେଲେ ।
ଅମୃତ ଭୋଜନରେ ମନ କଲେ ତୋଷ ।
ମହାଦେବଙ୍କ ଚରଣେ ଶରଣ ମୁଁ ବଳରାମ ଦାସ ।
ଏଥୁ ଅନନ୍ତରେ ଯେ ଶୁଣ ରାମରାଣ
ଦେବେ ସନ୍ତୋଷ ହେଲେ ତ୍ରିଲୋଚନେ ପୁଣ
ଦଶଦିଗପାଳେ ଯେ ଯାହା ସ୍ଥାନେ ଗଲେ
ଆପଣେ ନିଶ୍ଚିନ୍ତରେ ସ୍ୱର୍ଗରେ ରହିଲେ ।
ଏଥୁ ଅନନ୍ତରେ ଯେ ସସ୍ରାନନ ପୁଣ
ସଦାଶିବଙ୍କ ଚରଣେ କଲା ମାନ୍ୟଧର୍ମ ।
ବିନତି ହୋଇଣ ସେ କହିଲାକ ପୁଣ
ନିଜ ଆଶ୍ରମକୁ ବିଜେ କର ହେ ଆପଣ ।
ଏମନ୍ତ ସମୟରେ ବିଶାଖା ଏହାଶୁଣି
ବଧୂମାନଙ୍କୁ ଘେନି ଚରଣେ ସେବି ରାଣୀ ।
ସୁକଲ୍ୟାଣ କରିଣ ଯେ ସଦାଶିବ ଗଲେ
କପିଳାସ କନ୍ଦରେ ଯାଇଣ ମିଳିଲେ ।
ଏଥୁ ଅନନ୍ତରେ ଯେ ବିରଳେ ସସ୍ରଗ୍ରୀବ
ମନ୍ତ୍ରୀକି ବୋଇଲା ତୁମ୍ଭେ ଶୁଣ ମୋର ଭାବ ।
ନାରାୟଣ ପୁରକୁ ଯିବା ସମର କରି
ନାରାୟଣଙ୍କୁ ଜିଣିଲେ କେହି ନୋହିବେ ସରି ।
ଶୁଣି ଗୁଣସାଗର ମନ୍ତ୍ରୀ କହେ ବାଣୀ
କେଭେ ନାରୟଣଙ୍କୁ ନ ପାରୁ ତୁରେ ଜିଣି ।
ସେ ନାରାୟଣ ଦେବତା ଅଟନ୍ତି ଚକ୍ରଧର
କେଡ଼େ କେଡ଼େ ଅସୁର ମାରି ପୃଥ୍ୱୀକଲେ ସ୍ଥିର ।
ସେ ପୁରକୁ ଗଲେ ତୋତେ ମାରିବେ ଅବଶ୍ୟ
କମଳା ହସ୍ତେ ତୋର ମୃତ୍ୟୁ ପାର୍ବତୀର ଶାପ ।
ତୋ ଅଜା ମେଘାସୁରକୁ ଦ୍ୱାରପାଳ ଯେମାରି
ତୁହିଗଲେ ତୋତେ ମାରିବେ ବନମାଳୀ ।
ଶୁଣିକରି ସସ୍ରାନନ ମନରେ ସନ୍ତୋଷ
ଧନରତ୍ନ ଆଣିଦେଲା ମନ୍ତ୍ରୀକି ବହୁତ ।
ବୋଇଲାରେ ତୋର କଥା ସେମାନଙ୍କୁ ଆସି
ତୋର ବୋଲ ନମାନିଲେ କୋଳେ ହେବ ଦୋଷୀ ।
ଏତେକହି ଅନ୍ତଃପୁରେ ଗଲା ସସ୍ରାନନ
ଗୁଣ ସାଗର ମନ୍ତ୍ରୀ ଯେ ଚଳେ ତତକ୍ଷଣ ।
ନିଜ ମନ୍ଦିରେ ଯାଇଁ ହେଲା ପରବେଶ
ଏଥୁ ଅନନ୍ତରେ ଯେ ଶୁଣ ଦିବ୍ୟରସ ।
ସେଠାରୁ ସସ୍ରଗ୍ରୀବ ମନରେ ହରଷ
ଚଉଦଗଣ୍ଡା ଯୁଗ ଗଲା ଯେ ଅଭିଳାଷ ।
କାଳେଣ ଜାନକୀ ଯେ ହେଲେ ପୁଣି ଜାତ
ତାର ହସ୍ତେ ମଲା ଏବେ ବିଶାଖାର ସୁତ ।
ଏତିକି ବଳମାନ ଯେ ଅଟେ ସସ୍ରାନନ
ତାହାର ଭାରିଜା ଯେ ସରୀତା ରାଣୀ ପୁଣ ।
ସେ ସରୀତା ରାଣୀ ତାର ସ୍ୱାମୀକିନିତ୍ୟେକହେ
ଧର୍ମବନ୍ତ ପ୍ରାଣୀ ଯେ ଚରିଯୁଗରେ ରହେ ।
ଅଧର୍ମବଳେ ନାଥ ହେ କୁଳଯାଏ ନାଶ
ପଛନ୍ତେ ବଡ଼ ଦୁଃଖ ମିଳେ ତାକୁ ପ୍ରାସ ।
ଧର୍ମରେ ଚନ୍ଦ୍ରସୂର୍ଯ୍ୟ ଆତ ଯାତ ହୋନ୍ତି
କେତେବେଳେ ସେମାନେ କ୍ଷୟ ଯେ ନୁହନ୍ତି ।
ଧର୍ମରେ ଧରଣୀ ଯେ ହୋନ୍ତି ଆତଯାତ
ସେ ଧରଣୀକି ଧରି ବାସୁକୀ ଅହୀତ ।
ଧର୍ମରେ ବୃକ୍ଷମାନେ ଫଳନ୍ତି ଯେ ଫଳ
ଧର୍ମରେ ନାରାୟଣ ସବୁରି ଦେହ ଠୁଳ ।
ଧର୍ମରେ ସୁରଭୀ ଯେ ଦିଅନ୍ତି କ୍ଷୀର ଦାନ
ଅଧର୍ମରେ ଆହାର ଯେ ସବୁରି ଦେହେ ଲୀନ ।
ସାତବାର ସତାଇଶ ଯେଣୁ ସେ ନକ୍ଷତ୍ର
ବାରମାସେ ବରଷେ ହୁଅଇ ସମାପତ ।
ଦୋହିତା ପୁତ୍ର ସିନା ଭାରିଯାଠାରୁ ଜାତ
ଆମଠାରୁ ଏମାନେତ ନୁହନ୍ତି ସମ୍ଭୁତ ।

ଆପଣାର ଦୋହିତାଙ୍କୁ କେହି ନ ହରନ୍ତିନାଥ
ଏମନ୍ତ ପ୍ରକାରେ ଥିଲେ ଅଟନ୍ତି ସତ୍ୟବନ୍ତ ।
ତୁମ୍ଭେ କିମ୍ବା ଅଧର୍ମରେ କରୁଛ ନୃପମଣି
ଦେବତାଙ୍କ କୂଟକୁ କେ ପାରିବ ଜିଣି ।
ଶୁଣିକରି ସସ୍ତ୍ରାନନ କହଇ ବଚନ
ଅସୁର ଶରୀର ସିନା ସବୁ ଦିନରେ ହୀନ ।
ଦେବତାମାନେ ଆମ୍ଭର ଭାଇ ଅଟନ୍ତି ପୁଣ
ସେମାନେ ଆମ୍ଭଙ୍କୁ ହିଂସା କରନ୍ତି ଅନୁକ୍ଷଣ ।
ମୋହର ଯେଉଁ ସ୍ୱଭାବ ଅଟଇ ଗୋ ରାଣୀ
ସେ ସ୍ୱଭାବ ଛାଡ଼ି ଆଉ ସ୍ୱଭାବ ନୋହେପୁଣି ।
ରାଣୀର ବଚନକୁ ଅସୁର ନ ଘେନିଲା
ଆପଣାର ସ୍ୱଭାବରେ ପ୍ରତିଜ୍ଞା ରାଜାକଲା ।
ବୋଇଲା ଦେବତାଙ୍କୁ ତୋର ଆଗେ ପୁଣ
ଧରିଆଣି ବାନ୍ଧି ରଖିଲି ମୋର ରାଜ୍ୟେଣ ।
ଦେଖିଲୁ ସାକ୍ଷାତେ ଈଶ୍ୱର ଆସେ ପୁଣି
ମୋତେ କହି ମୁକୁଳାଇ ନେଲେ ସେହିପୁଣି ।
ଦେବତା ମାନଙ୍କଠାରୁ ମୋର ଛାଡ଼େ କ୍ରୋଧ
କେବଳ ବାସୁଦେବ ମୋତେ ଯେ ଅବଧ ।
ତାଙ୍କୁ ଯେବେ ମୁହିଁ ଜିଣିଣ ଆଣିବି
ତେବେ ମୁଁ ଅଚିନ୍ତା ଯେ ହୋଇଣ ରହିବି ।
ଶୁଣିଣ ସରୀତା ରାଣୀ ବୋଲଇ ବଚନ
କେହି ଜାଣିପାରି ନାହାନ୍ତି ନାରାୟଣ ।
ଅନେକ କୂଟ ଯେ ଜାଣନ୍ତି ନରହରି
ତାହାଙ୍କୁ ଜିଣିବାକୁ କେହି ନୋହେ ସରି ।
ରାଣୀର ବଚନରେ କହେ ସସ୍ତ୍ରାନନ
ଅନେକ କୂଟତ ଜାଣଇଁ ନାରାୟଣ ।
ଅସୁର ଅଂଶରେ ଯେ ଜନ୍ମ ଜଳନ୍ଧର
ବରୁଣ ରାଜାର ପୁତ୍ର ଅଟେ ସେ ନିକର ।
କାଳେଣ ନାରାୟଣ ତା ସଙ୍ଗେ ଯୁଦ୍ଧକଲା
ନପାରି ବାସୁଦେବ ବନ୍ଦୀରେ ରହିଲା ।
ପୁଣି ସେ ବଳି ସଙ୍ଗେ କଲେକ ସମର
ସକଳ ଭୁବନ ଜିଣିଲା ବଳି ବୀର ।
ଡରିଣ ବାସୁଦେବ ଥରେ ଘୁଞ୍ଚିଗଲେ
ବାସୁଦେବ ଘୁଞ୍ଚିବାରୁ ବଳି ଯେ ବିଚରିଲେ ।
ବୋଇଲେ ନିଶ୍ଚୟ ମୋତେ ମାୟାରେ ହରିମାରି
ଏଥର ତାମସ ଛାଡ଼ିବି ହୃଦରେ ବିଚରି ।
ଯେବେ ଦେବତା ବ୍ରାହ୍ମଣେ ମୁହିଁ ଦେବିଦାନ
ତେବେ ମୋଠାରେ ଦୟା କରିବେ ଭଗବାନ ।
ଏମନ୍ତ ବିଚରି ସେ ଦାନୀରେ ଶକତା
ତେବେ ନାରାୟଣର ହେଲା ତାକୁ ଚିନ୍ତା ।
ବାମନ ବ୍ରାହ୍ମଣ ହୋଇ ଦ୍ୱାରେ ଭିକ୍ଷା ମାଗି
ଦେଖିଣ ବଳିରାଜା ମନରେ ହେଲା ରାଗୀ ।
ବିଚରିଲା ଏରୂପ ଦେଖା ଯେ ନ ଥିଲା
ଜାଣିଣ ମନ୍ତ୍ରୀବର ସେଠାରେ କହିଲା ।
ଏ ବାମନରୂପ ଅଟେ ଠୁଳ ପୁଣ
ନାରାୟଣ ଅଟଇଟି ଏ ମାୟା ବ୍ରାହ୍ମଣ ।
ତୋହର ସମ୍ପତ୍ତି ନିଶ୍ଚେ କରିବ ଚୂର
ଗୁପତେ ବିପ୍ରବେଶ ଧରିଣ ଶରୀର ।
ମନ୍ତ୍ରୀଠାରୁ ଶୁଣିଣ ବଳି ଯେ ତାକୁ କହି
ସକଳ ଜୀବଙ୍କୁ ସିନା ନାରାୟଣ ଭ୍ୟାଇ ।
ସେ ଯେବେ ମୋରପୁରେ ଆସିଲେ ଭିକ୍ଷାକରି
ନିର୍ଲ୍ଲଜ ହେଲା ସିନା ସଂସାର ଅଧିକାରୀ ।
ଦେବି ମୁଁ ଦାନ ତାକୁ ନେଉ ମୋ ସମ୍ପତ୍ତି
ଏତେବୋଲି ଦାନଦେଲା ବଳି ଯେ ନୃପତି ।
ତିନିପାଦ ଦାନଦେଇ ରହିଲା ତଳ ପୁର
ତାହାଙ୍କୁ ରଖି ସୁତାଳେ ହେଲା ଦ୍ୱାରପାଳ ।
ସେ ଯେବେ ନିସତ ଆସି ହୋଇବ ଗୋମୋତେ
ତେବେ ମୁଁ ଦୟା ତାକୁ କରିବି ହୃଦଗତେ ।
ଶୁଣିଣ ସରୀତ ରାଣୀ ସନ୍ତୋଷ ହୋଇଲେ
ଶ୍ରୀରାମ ଆଗରେ ଏହା ନାରଦ କହିଲେ ।
ପାର୍ବତୀ ବୋଲନ୍ତି ସେ ଅଟନ୍ତି ବାସୁଦେବ
ବଳିଦ୍ୱାରେ ଦ୍ୱାରପାଳ ରୂପରେ ସମ୍ଭବ ।
ବଳିରେ ଦ୍ୱାରେ ଯେ ରହିଲେ ନାରାୟଣ
ଅନନ୍ତ ଶୟନରେ କିଏ ରହେ ପୁଣ ।
ଈଶ୍ୱର ବୋଇଲେ ତୁମ୍ଭେ ମନ ଦେଇ ଶୁଣ
ନାରାୟଣ ଦେହେ ରୋମ ଯେତେ ଅଟେ ପୁଣ ।
ରୁମ ଗୋଟିକରେ ପୁଣି ଗୋଟିଏ ଶ୍ରୀହରି
ଦେବେ ଜଣାଣ କଲେ ରୋମ ଦେହୁଁ ଟାଳି ।
ପାର୍ବ୍ବତୀ ବୋଇଲେ ସେରୋମ ଗୋଟିକି କିସକରି
ଈଶ୍ୱର ବୋଇଲେ ନାରାୟଣ ରୂପ ଧରି ।
ଦୁଷ୍ଟଙ୍କୁ ନିବାରି ସନ୍ଥପାଳେ ରୋମ ନାରାୟଣ
ସେ ରୋମରେ ବାସୁଦେବ ସମ୍ଭବଇଁ ପୁଣ ।

ଯେତେ ଅବତାର ଯେ ହୁଅନ୍ତି ଦେବହରି
ସର୍ବ ନାରାୟଣ ସିନା ଦେବ ରୂପ ଧରି ।
ଧବଳ ରୋମଗୋଟି ଯେ ରହିଲେ ବଳିଦ୍ୱାରେ
ଏକଥାକୁ ଲୟ କର ଗୋ ମନରେ ।
ଚଉଦ ଭୁବନ ଯେ ନବଖଣ୍ଡ ମହୀ
ସପତ ସାଗର ଏଥିରେ ତିନିପୁର ହୋଇ ।
ତ୍ରିଦଶ ଦେବତା ଯେ ଛପନ କୋଟି ଜୀବ
ନବକୋଟି ଅସୁର ବଳ ଅଠରକୋଟି ନାଗ ।
ଏମାନଙ୍କ ଶରୀରରେ ଯେ ଆପଣ ବିଜେକରି
ତେଣୁ ସେ ପରମେଶ୍ୱର ବୋଲନ୍ତି ଶ୍ରୀହରି ।
ପାର୍ବତୀ ବୋଇଲେ ଯେତେ ସବୁରି ଦେହେ ସେହି
ପୁଣ ଜୀବଙ୍କଠାରେ ହିଂସା କିମ୍ପା ବହି ।
ଈଶ୍ୱର ବୋଇଲେ ଯୋଗେ ଅଯୋଗ ଦୁଇଜାଣି
ଯୋଗକୁ ଜନ୍ମହେଲେ ଶାନ୍ତି ହୋଇ ପୁଣି ।
ଅଯୋଗରେ ହେଲେ ଦେବକୁଟ ହିଂସାକଲେ
ତେଣୁ ରୋମ ନାରାୟଣ ଅବତାର ହେଲେ ।
ଅବତାର ହୋଇକରି ନାଶେ ଦୁଷ୍ଟ ପୁଣ
ଏରୂପେ ନାରାୟଣ ଅବତାର ଶୁଣ ।
ଶୁଣିକରି ପାର୍ବତୀ ଯେ ପଚାରେ ଈଶ୍ୱରେ
ଯେଉଁ ନାରାୟଣ ଜାତ ରାମ ସ୍ୱରୂପରେ ।
ଈଶ୍ୱର ବୋଇଲେ ଆପେ ବାସୁଦେବ ଜାତ
ଅନେକ କାଳ ଦେବତା କଲେ ଯହୁଁ ତପ ।
ଅନନ୍ତ ଶଯ୍ୟାକୁ ଯେ ତେଜିଲେ ଆପେ ନାଥ
ଚତୁର୍ଦ୍ଧା ରୂପରେ ମଞ୍ଚପୁରେ ହେଲେ ଜାତ ।
ଅନେକ ଦୁଷ୍ଟ ନାଶିଲେ ଶାନ୍ତ ହୋଇବ ଧରଣୀ
ତେବେ ନିଜପୁରକୁ ଯିବେ ରଘୁମଣି ।
ପାର୍ବତୀ ବୋଇଲେ କିମ୍ପା ଦୟାଳୁ ହୃଦୟ
ଈଶ୍ୱର ବୋଇଲେ ସନ୍ଥଜନଙ୍କର ପ୍ରିୟ ।
ଦୁଷ୍ଟଜନଙ୍କଠାରେ କଠୋର ଅଟେ ହିଆ
ଏଥିର ସକାଶୁଁ ତାର ଜଣା ନ ଯାଏ ମାୟା
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ଅନନ୍ତ ଶୟନେ କେହୁ ରହିଲେ କହପୁଣ ।
ଶ୍ରୀହରି ପାଟଣା କିଏ ଆତଯାତ
ଯେଉଁ ପାଟଣାରେ ଘର ନଉ ଯେ ସାଗରେ ।
ଈଶ୍ୱର ବୋଇଲେ ସେଥିରେ ଗୋଲେଖ ଆସି
ସେ ପୁରକୁ ସମ୍ଭାଳନ୍ତି ବିରାଟ ଦ୍ୱାରେ ବସି ।

ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ଏକାଦଶ
ନାରଦ ରାମ ପାଖେ କହିଲେ ପୁଣି କିସ ।
ଈଶ୍ୱର ବୋଇଲେ ସସ୍ରାନନ କଥାକହି
ଆଦ୍ୟରୁ ପ୍ରାନ୍ତକରି ଶୁଣିଲେ ରାମ ତହିଁ ।
ନାରଦଙ୍କ ଚରଣେ ନମସ୍କାର କଲେ
ଶତେମୁଖ ରାବଣର ଚରିତ ପଚାରିଲେ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ମୁନିବର
ଶତେମୁଖା ରାବଣ ଯେ ଜନମ କାହାଠାର ।
ନାରଦ ବୋଇଲେ ଯେ ସେକଥା ଶୁଣ ଏବେ
ଅଲଙ୍କା ଦେଶ ରାଜା ଅଟଇ ସେହୁ ଭାବେ ।
ଜଇନ୍ତ ମୁନିଙ୍କର ସେ ଅଟଇ କୁମର
ଶୁଭ୍ରକେଶୀ ଅସୁରୀ ଯେ ଜନନୀ ଅଟେ ତାର ।
ଶୁଭ୍ରକେଶୀ ଅସୁରୀର ପିତା ଯେ କେତୁ ସୁର
ଯେନାମଣି ପାଟଣାରେ ଅଟେ ତାର ଘର ।
ଦୁଇଗୋଟି ଦୋହିତା ଯେ ବାରଗୋଟି ପୁତ୍ର
ବୀରମଣି ସିଂଘର ସେ ଅଟେ ବନ୍ଧୁ ଗୋତ୍ର ।
ସୁନ୍ଦର ପଣେ ଶୋଭା ଯେ ଶୁଭ୍ରକେଶୀ ନାରୀ
ନବ ଯୁବା ରୂପ ସେ ଧଇଲେ ସୁନ୍ଦରୀ ।
ଏକ ଦିନକରେ ସେ ଯେ ବସିଣ ବିଚାରି
ପବିତ୍ର ପୁରୁଷକୁ ମୁଁ କରିବି ମନସରି ।
ତେବେ ମୋର ମନ ଗୋଟି ହୋଇବ ସନ୍ତୋଷ
ଏତେ ଭାବି ପିତାପୁର ତେଜିଲା ବିଶେଷ ।
କାଳିନ୍ଦୀ ନଦୀ କୂଳେ ଯାଇଣ ମିଳିଲା
ଜଇନ୍ତ ମୁନିଙ୍କି ସେ ସେଠାରେ ଦେଖିଲା ।
ତପ କରୁଛନ୍ତି ଯେ ବ୍ରହ୍ମ ମୁନିବର
ସୁନ୍ଦର ପଣେ ଶୋଭା ଯେସନେ ଦିଗାମ୍ବର ।
ଦେଖିଣ ଅବଳା ଯେ ମନରେ ତୋଷ ହେଲା
ମୁନିଙ୍କ ଚରଣରେ ଓଳଗି ହୋଇଲା ।
ଉଠିଣ କରଯୋଡ଼ି ମୁନିଙ୍କି ଚାହେଁ ପୁଣ
ନେତ୍ରକୁ ଢାଳି ଚହିଁଣ ଯେ କରେ ଆରୋପଣ
ଚହିଁବା ଛଟକରେ ମୁନି ଯେ ତପ ଭାଙ୍ଗି
ବୋଇଲା କେଉଁଠାରୁ ଅଇଲୁ କହ ବେଗି ।
ସେ ନାରୀ ବୋଲେ ଅଇଲି ଯେନାମଣି ପାଟଣାରୁ
ମୁଁ ଅଟେ ଦୁଲଣା ଜନ୍ମ କେତୁ ଅସୁରରୁ ।
ମାତା ନାମ ମୋର ଯେ ଅଟଇ ଉତ୍ତରା
ତାର ଗର୍ଭ ଜନମ ମୁଁ ହୋଇଲି ଯେ ତୋରା ।

ମୋହର ସମାନେ ବର ନ ମିଳିଲା ଯହୁଁ
ମୋ ମନ ଇଚ୍ଛାରେ ବର ବରିଲି ମୁଁ ତହୁଁ ।
ତୁମ୍ଭଙ୍କୁ ଦେଖିଣ ମୁଁ ଯେ ମନରେ ତୋଷ ହେଲି
ତୁମ୍ଭ ଚରଣେ ଖଟିବି ବୋଲିଣ ବିଚାରିଲି ।
ଶୁଣିଣ ଜଇନ୍ତା ମୁନି ତାକୁ କହେ ପୁଣ
ବୋଲିଲେ ତୋର ମନ ଯେବେ ଗୋ ପରସନ ।
ହୁଅ ମୋର ନାରୀ ଯେ ବୋଲିଣ ମୁନିକହି
ସଉରଭୀ ବୋଇଲା ତୁମ୍ଭେ ଶୁଣ ମନ ଦେଇ ।
ମାୟା ନ କରିବ ଯେ ମୋହଠାରେ ପୁଣ
ଶୃଙ୍ଗାରରସେ ସନ୍ତୋଷ କରିବ ମୋର ମନ ।
ପୁତ୍ରେକ ଉପୁଜାଇବ ଦିଗପାଳ ସମ
ତିନିପୁର ଜିଣିବ ସେ ହୋଇବ ଉତ୍ତମ ।
ଅଜାଙ୍କର ସ୍ଥାନରେ ତାକୁ ଦେବସ୍ଥାନ
ତେବେ ମୋର ସନ୍ତୋଷ ହେବ ଜାଣ ମନ ।
ଶୁଣିଣ ମୁନିବର ସୀଉକାର କଲେ
ସଉରଭୀକି ଦେବ ବିଚାରି ବିଭାହେଲେ ।
ଯୁଗେକ ପରିଯନ୍ତେ ଶୃଙ୍ଗାର ତାର ସଙ୍ଗେ
ମନ ବୋଧ ତାର ହୋଇଲା ରତିରଙ୍ଗେ ।
ସେଠାରୁ ପୁତ୍ରେକ ଯେ ହେଲା ତାର ଜାତ
ସେ ପୁତ୍ର ଦିଶେ ଯେହ୍ନେ ବସନ୍ତ ସ୍ୱରୂପ ।
ପିତାର ସଙ୍ଗେ ପୁତ୍ର ଯେ ଯୁଗେକ ରହିଲା
ଏକଦିନେ ମାତାକୁ ଯେ ପୁତ୍ର ପଚାରିଲା ।
କେଉଁ ଦେବଙ୍କଠାରେ ମୁଁ କରିବି ତପପୁଣ
କେଉଁ ଦେବଙ୍କୁ ସେବିଲେ ପାଇବି ବରଜାଣ ।
ଜନନୀ ବୋଇଲେ ଏବେ ଶୁଣରେ କୁମର
ତୋର ପିତାଙ୍କୁ ଯାଇଁ ତୁ ପଚାର ନିକର ।
ମାତାଠାରୁ ଶୁଣିଣ ପୁତ୍ର ଚଳିଗଲା
ପିତାର ଚରଣେ ଯାଇ ଓଳଗି ମେଳାଇଲା ।
ବୋଇଲା କେଉଁ ସ୍ଥାନରେ କରିବି ତପଯାଇଁ
ସେ କଥା ପିତା ଏବେ କହ ବେଗେ ତୁହି ।
ଶୁଣିଣ ଜଇନ୍ତା ମୁନି ଯୋଗରେ ବସିଲେ
ସର୍ବଜ୍ଞ ପୁରୁଷ ସେ ଯୋଗରେ ଜାଣିଲେ ।
ବୋଇଲେ ଏ କୁମର ହେବ ବଳବାନ
ତିନିପୁର ସାଧିବ ଏ ବଳରେ ପ୍ରାକର୍ମ ।
ଅର୍କତୀର୍ଥେ ଯାଇଣ ଏ ଯୋଗ ଲୟେକରୁ
ପବନକୁ ମନାଇଁ ଏ ହେଉ ମହାମେରୁ ।
ପୁତ୍ରକୁ ବୋଇଲେ ତୁରେ ଏଇକ୍ଷଣି ଚଳ
ଅର୍କବଟ ଗୋଟିଅଛି ବୀରଛତ୍ର ପୁର ।
ସେ ସ୍ଥାନରେ ବସି ତୁ ଯେ ତପସିଦ୍ଧକର
ପବନ ଦେବତାଙ୍କୁ ମନାଇଁ ମାଗବର ।
ସେ ତୋତେ ବର ଦେଲେ ତୁ ହେବୁ ବଳମାନ
ତେବେ ତିନିପୁର ଜିଣିବୁ ପୁତ୍ରଜାଣ ।
ଶୁଣି କରି କୁମର ଯେ ନମସ୍କାର କଲା
ଜନନୀ ଆଗେ କହି ବେଗେ ସେ ଚଳିଲା ।
ରବିକ୍ଷେତ୍ର ପ୍ରବେଶ ହେଲା ସେ କୁମର
ଅର୍କବଟ ମୂଳେ ବସି ତପକରେ ଘୋର ।
ରାମ ବୋଇଲେ ହେ ମୁନି ମୋରଠାରୁ ଶୁଣ
ସେ ପୁତ୍ରର ନାମ କିସ ଦେଲେ ମୁନିପୁଣ ।
ନାରଦ ବୋଇଲେ ଶୁଣ କହିବି ସେକଥା
ଯେତେବେଳେ ଜନମ ହୋଇଲା ସେ ପିତା ।
ରଜନୀ କାଳରେ ଯହୁଁ ଜାତ ହେଲା ସେହୁଁ
କାଳସୁର ବୋଲିଣ ତାର ନାମ ଦେଲେ ତହୁଁ
କାଳସୁର ଦୈତ୍ୟ ଅର୍କ ତୀର୍ଥରେ ତପକଲା
ସାତଯୁଗ ପରିଯନ୍ତେ ସେଥିରେ ବହିଗଲା ।
ଅର୍କତୀର୍ଥେ ଅର୍କବଟ ମୂଳରେ ସେ ବସି
ପବନକୁ ଲୟେ କରି ମଳ ମୂତ୍ର ଧ୍ୱଂସି ।
ସେ ବଟେ ଦର୍ଶନ କଲେ ତୀର୍ଥରାଜ ପୁଣ
ବରଷକେ ଥରେ ଆସି ଦେଖାଇ ପ୍ରମାଣ ।
ସେ ତୀର୍ଥର ତଳେ ନଦୀ ପାତକ ନାଶେନୀ
ଗଙ୍ଗାକୁ ଅଠର ମନୁ ବଡ଼ଅଟେ ପୁଣି ।
ସେ ନଦୀରେ ମେଳା ଯେ ହୋଏ ତୀର୍ଥରାଜ
ତୃତୀୟ ମାସ ଅଟଇ ଧର୍ମବନ୍ତ ତେଜ ।
ସେ ମାସର ନାମ ଯେ ମାଘମାସ କହି
ଆଦ୍ୟରୁ ପନ୍ଦରଦିନ ଅନ୍ଧାର କାଳଯାଇ ।
ପ୍ରାନ୍ତପକ୍ଷ ଶୁକ୍ଳ ଯେ ସପତମୀ ଦିନ
ତୀର୍ଥରାଜ ସେଦିନରେ କରଇ ରମଣ ।
ସେଦିନ ସୁରନରେ କରନ୍ତି ସ୍ନାହାନ
କଷ୍ଟରେ ସ୍ନାନକଲେ ମନାସେ ଫଳଗୁଣ ।
ସରସେ ସ୍ନାନକଲେ ନିରସେ ଜାତହୋଇ
ଗଙ୍ଗାର ଜ୍ୟେଷ୍ଠ ଭଗ୍ନୀ ସେହି ଯେ ବୋଲାଇ ।
ସେ ନଦୀ ସଙ୍ଗେ ଶୃଙ୍ଗାର କରି ସେ ତୀର୍ଥରାଜ
ବରଷେ ପରିଯନ୍ତେ ତେଜଇ ତାର ଭାବ ।

ସେହିକାଳେ କାଳ ସୁର ପବନେ ମନରୁଦ୍ଧି
ସାତଯୁଗେ ପବନ ଯେ ତାକୁ କହେବୋଧି ।
ମରୁତ ଦେବତା ଯେ ସେଠାରେ ବିଜେକଲେ
ବାଲିବନ୍ତ ଭିତରେ ଯେ କାଳସୁର ଥିଲେ ।
ମରୁତ ଆଜ୍ଞାରେ ବାଲିବନ୍ତ ଗଲଫାଟି
କ୍ଷୀନ ତାର ଶରୀର ଯୁବା ହୋଇଲା ପ୍ରକଟି ।
ପବନଦେବ ବୋଇଲେ ମାଗ ତୁରେ ବର
କାଳସୁର ବୋଲେ ମୁଁ ଯେ ହୋଇବି ଅମର ।
ମରୁତ ବୋଇଲେରେ ମର୍ତ୍ତ୍ୟପୁରେ ଜାତ
ମର୍ତ୍ତ୍ୟପୁରେ ଅମରରେ କେହି ନାହିଁସୁତ ।
କାଳସୁର ବୋଲେ ମୁଁ ଅମର ନୋହିବି
ଏତେଯୁଗ ପର୍ଯ୍ୟନ୍ତେ ମୁଁ କିମ୍ପାଥିବି ଚିନ୍ତେଭାବି ।
ମରୁତ ବୋଇଲେ ତୋତେ ନିଶ୍ଚେ ହେବ ମୃତ୍ୟୁ
ବାସ୍ତରୀ ଗଣ୍ଡାଯୁଗକୁ ରହୁ ତୋର ତନୁ ।
ଯେତେବେଳେ ବାସଦେବ ମର୍ତ୍ତ୍ୟପୁରେ ଜାତ
ଡାହାଣବ୍ରତ ଶଙ୍ଖା ତାର ହେବ ସାନଭ୍ରାତ ।
ଯୋଗରେ ଦୁର୍ଗା ତାର ହେବେ ଯୁଗଳ ମାତା
ସେ ଶଙ୍ଖକୁ ତ୍ରିଦଶ୍ୟ ଦେବେ କରିବେ ଶକତା ।
ପୁତ୍ର ହେବରଥୀ ଯେ ମାତା ହେବ ସାରଥୀ
ପରବୋଲେ ରଣ କଲେ ମରିବୁ ଲେଖାଅଛି ।
ପରବୋଲେ ତାରସଙ୍ଗେ କରିବୁ ଯେବେ ରଣ
ସେ ତୋର ଭଗାରୀ ଯେ ନାହିଥିବ ପୁଣ ।
ବିନାଦୋଷେ ତାରସଙ୍ଗେ କଲେ ଯେ ସମର
ନିଶ୍ଚୟ କାଳ ତୋତେ ହେବ ତେତେବେଳେ ।
ସେକଥାକୁ ମନେ ରଖିଥିବୁ ଆରେ ପୁତ୍ର
ପରବୋଲେ ସମର ନକରିବୁ କହ ସତ୍ୟ ।
ତୋସଙ୍ଗେ ବିନାଦୋଷେ ଯେ କରିବ ସମର
ସମସ୍ତଙ୍କୁ ଜିଣିବୁରେ କହିଲିରେ କୁମର ।
କେଭେ ତୁ ପରବୋଲ ନ କରିବୁରେ ବାବୁ
ଚିରଞ୍ଜୀବୀ ହୋଇ ମର୍ତ୍ତ୍ୟ ପୁରରେ ତୁ ଥିବୁ ।
କାଳସୁର ବୋଲେ ମୁଁ ଜାଣିଲି ମୃତ୍ୟୁ ବାଟ
ପର ବୋଇଲେ ଯୁଦ୍ଧକଲେ ମରିବି ନିୟତ ।
ଆହୁରି କଥାଏ ତୋତେ ମାଗଇ ମୁଁ ଜାଣ
ଶତେ ଗୋଟି ମୁଣ୍ଡ ମୋର ହେବଟି ପ୍ରମାଣ ।
ମରୁତ ବୋଇଲେ ଯେ ଏକଥା ଅସ୍ତୁହେଉ
ଶତେମୁଖା ରାବଣ ଯେ ତୋର ନାମ ଲିହୁ ।

କାଳସୁର ବୋଇଲା ଶୁଣ ମୋର ବାଣୀ
ଅତୁଟ ଶରୀର ମୋର ହେଉ ବ୍ରଜ ଜାଣି ।
ପବନ ଦେବ ବୋଇଲେ ଏ କଥା ହେଉ ଅସ୍ତୁ
କାଳସୁର ବୋଲେ ମୋତେ ଅନେକ ଗୁଣହେତୁ ।
ଅତୁଟ ବିମାନ ମୋତେ ଯାନ ଦେବୁ ତୁହି
ଅଗ୍ନିରେ ନ ତୁଟିବ ଜଳରେ ଭେଦ ନୋହି ।
ପବନେ ନ ଉଡ଼ିବ ଶର ନ କାଟିବ
ମରୁତ ବୋଇଲେ ବାବୁ ସବୁ ଅସ୍ତୁ ହେବ ।
ଅତୁଟ ବିମାନ ଆଣି ଦେଲେ ଯେ ପବନ
ସେ ଯାନକୁ ଦେଖି ଯେ ଅସୁର ତୋଷମନ ।
ବୋଇଲେ ସ୍ଥାନ ଖଣ୍ଡ ଯେ ମୋତେ ଦିଅ ପୁଣ
ଶୁଣିକରି ମରୁତ କହନ୍ତି ବଚନ ।
ସମୁଦ୍ର ଭିତରେ ଯେ ଅଲଙ୍କା ନାମେ ଗଡ଼
ସେ ପୁରେ ରାଜା ତୁହି ହୁଅ କାଳସୁର ।
କାଳସୁର ବୋଲେ ଯେ କାହାର ସେହୁସ୍ଥାନ
ମରୁତ ବୋଇଲେ ସେ କଥା ଏବେ ଶୁଣ ।
ପୂର୍ବରେ ବାଲିକୁଦ ଗୋଟିଏ ହୋଇଥିଲା
ଶତେ ଯୁଣ ପ୍ରତି ଦୁଇଶତ ଯୁଣ ଲମ୍ବ ପରା ।
ସେ ସ୍ଥାନେ ମନ୍ଦର ଗିରି ତପକଲେ ଯାଇଁ
ଦୁଇ ମନୁ ପରିଯନ୍ତେ ସେ ସ୍ଥାନରେ ରହି ।
ବିଚ୍ଛରିଲା ମେରୁ ମୁଁ ଯେ ହୋଇବି ପ୍ରମାଣ
ଏତେ ବୋଲି ତପକଲେ ଗିରିଙ୍କ ରାଜନ ।
ମେରୁ ଯାଇ କହିଲେ ଯେ ଇନ୍ଦ୍ରଙ୍କ ଆଗର
ବଜ୍ରଧରି ବାହାର ହେଲା ଯେ ସୁରେଶ୍ୱର ।
ମନ୍ଦର ଉପରେ ବଜ୍ର ନେଇଣ ପ୍ରହାରିଲା
ଭୟରେ ମନ୍ଦର ଯେ ସେଠାରୁ ପଳାଇଲା ।
ଆପଣା ନିଜ ସ୍ଥାନରେ ରହିଲା ପୁଣି ଯାଇ
ସେପୁରେ ବିଜେ କଲେ ଶଚୀ ଦେବୀ ସାଇଁ ।
ଯେତେବେଳେ ଗିରିବର ପଳାଇଣ ଗଲା
ବଜ୍ରର ଘାତେ ତାର ଦେହ ସେ ଝଡ଼ିଲା ।
ସେ ପଥରରେ ଚଉରିପାଶ ହେଲା ଗିରିକରି
ଅଲଙ୍କା ଗଡ଼କୁ ସେ ବେଢ଼ରେ ଆବୋରି ।
ଚଉରିପାଶ ସମୁଦ୍ର ଯେ ଗିରି ଚଉରିପାଶ
ତହିଁପାଶେ କୃଷ୍ଣବେଣୀ ଗଡ଼ିଣ ପ୍ରକାଶ ।
ସେଥିରୁ ଉତ୍ତାରୁ ଯେ ଅଗ୍ନିନଦୀ ପୁରି
ବଜ୍ରଧର ବୋଲରେ ଯେ ଅଗ୍ନିବିଜେ କରି ।

ଅଗ୍ନିନଦୀ ଉତ୍ତାରୁ ଅଲଙ୍କା ନାମେ ଗଡ଼
ସେ ଗଡ଼କୁ ନିର୍ଭାକଲା ବିଶ୍ୱକର୍ମା ଗାଢ଼ ।
କେତୁ ମଙ୍ଗଳ ଦୁହେଁ ସେଠାରେ ପରବେଶ
ବାର ଯୁଗ ପରିଯନ୍ତେ ସେଠାରେ କଲେ ବାସ ।
ଅନେକ ସୁଖ ସେଥିରେ ଭୋଗିଲେ ଦିଗପାଳ
କେତେଦିନ ଉତ୍ତାରୁ କଳହ ତାଙ୍କର ।
କଳହ କରନ୍ତେ ସେ ଯୁଦ୍ଧ ଆରମ୍ଭିଲେ
ଦୁଇଯୁଗ ପରିଯନ୍ତେ ରଣ ଯୁଦ୍ଧ କଲେ ।
ସୁରରାଜା ବ୍ରହ୍ମା ଯାଇ କଲେ ସମାଧାନ
ନିଜ ସ୍ଥାନମାନଙ୍କୁ ସେ କଲେକ ଗମନ ।
ସେଠାରେ ଚରିଯୁଗ ସେଥିରେ ବହିଗଲା
ଈଶ୍ୱର ଅଂଶରେ ଜାତ ଜଳନ୍ଧର ହେଲା ।
ତ୍ରିଦଶ ଜିଣିଣ ସେ ହେଲେ ବଳୀୟାର
ବାସୁଦେବଙ୍କୁ ଜିଣିଣ ରଖିଲେ ତାର ଘର ।
ଈଶ୍ୱରଙ୍କୁ ମାଗି ପଠାଏ ପାର୍ବତୀ
ପୁତ୍ର ହୋଇ ଅପରାଧ ମାତା ସଙ୍ଗରେଟି ।
ଶୁଣିଣ କୋପାନଳ ହେଲେ ସଦାଶିବେ
ଅକ୍ଷୟ କ୍ରୋଣ ଘେନି ନାଶ କଲେ ବେଗେ ।
ତାହାର ଭାରିଯା ଯେ ଅଟେ ବୃନ୍ଦାବତୀ
ସୁତୀବ୍ରତ ତାହାର ଯେ ଭାଙ୍ଗିଲେ ଶ୍ରୀପତି ।
ସେ ସ୍ତିରୀ ଜାଣିଣ ଯେ ବିଷ୍ଣୁଙ୍କୁ ଶାପ ଦେଲେ
ତାହାର ଶାପରେ ବିଷ୍ଣୁ ପାଷାଣ ହୋଇଲେ ।
ସେ ପାଷାଣୁ ଶାଳଗ୍ରାମ ଶିଳା ହେଲେ ଜାତ
ସେ ବୃନ୍ଦାବତୀ ହେଲେ ତୁଳସୀର ବୃକ୍ଷ ।
ସେହିଠାରେ କେତେକାଳ ପୁଣ ବହିଗଲା
ସେଠାରେ ରକ୍ତବୀର୍ଯ୍ୟ ଯାଇଣ ରହିଲା ।
କାଳେଣ ଦେବେ ଯେ ତାକୁ ନାଶ କଲେ
ସେଠାରୁ ସେହିପୁର ନିଛତ୍ର ହୋଇଲେ ।
ତୁ ଏବେ ସେ ପୁରରେ ହୁଅ ଯାଇଁ ରାଜା
ତୋହର ଅଜାଅଂଶ ଏଥିରେଟି ରାଜା ।
ଶୁଣିଣ ସନ୍ତୋଷ ଯେ କାଳସୁର ହୋଇ
ବିମାନ ଚଢ଼ିଣ ସେ ଅଳଙ୍କା ପୁର ଯାଇ ।
ସେଠାରୁ ମରୁତ ଯେ ନିଜ ପୁର ଗଲେ
ଏଥୁ ଅନନ୍ତରେ ରାମ କଥା ଶୁଣ ଭଲେ ।
ଯେତେବେଳେ କାଳସୁର କଲାକ ଗମନ
ମରୁତ ଦେବ ତାକୁ କହିଣ ପୁଣି ଜ୍ଞାନ ।

ବୋଇଲେ କାଳସୁରରେ କଥାଏ ଚେତିଥିବୁ
ପରରାଜ୍ୟେ ତୁହି ଯେବେ ରଣକରି ଯିବୁ ।
ଏହି ବଟ ମୂଳେ ତପ କରିବୁ ତିନିଦିନ
ତେବେ ତୋତେ ଯାନରେ ହେବ ପରସନ୍ନ ।
ସେ ରଥେ ବସିଲେ ତାର କାହାକୁ ଭୟନାହିଁ
ଏ ବଚନ ଶୁଣିଣ ଅସୁର ତୋଷ ହୋଇ ।
ପବନ କହିବାରୁ ସେ ଗଡ଼େ ବିଜେ କଲେ
ପରଜନ୍ତୁ ଆବୋରି ସେଥିରେ ରାଜା ହେଲେ ।
ସେଥିରେ ରହିବାରୁ ଅସୁରେ ହେଲେ ଠୁଳ
ଦୁଇଶତ ଯୋଜନ ଯେ ରତ୍ନମୟ ପୁର ।
ବେନିଯୁଗ ପରିଯନ୍ତେ ନିଶ୍ଚିନ୍ତେ ଭୋଗକଲା
ଅବିଗୁଣ ସୁଗୁଣ ମନ୍ତ୍ରୀ ଦୁହିଁଙ୍କି ରଖିଲା ।
ଅନେକ ଚତୁରାଙ୍ଗ ବଳ ଯେ ତାହାର
ହସ୍ତୀ ଘୋଡ଼ା ସାରେଣୀ ଅକଳିତ ତାର ।
ମନ୍ତ୍ରୀଙ୍କି ଡକାଇ କହେ ଜଇନ୍ତର ସୁତ
ଦିଗବିଜେ କରି ମୁଁ ଯିବଇଁ ଏବେତ ।
ଆଗେ କେଉଁ ପୁରକୁ କରିବା ଗମନ
ମନ୍ତ୍ରୀ ବୋଇଲେ ଦେବ ଶୁଣ ମୋ ବଚନ ।
ପାତାଳପୁର ଚଳ ଅଲଙ୍କା ରାଜନ
ସେ ପୁରେ ଅନେକ ଛନ୍ତି ଅସାଧ ଯେ ପୁଣ ।
ମନ୍ତ୍ରୀ ବଚନେ ସାଧିଲା ଚତୁରାଙ୍ଗ ବଳ
ପାତାଳ ପୁରେ ବିଜେ କଲାକ ମହୀପାଳ ।
ବିନ୍ଧ୍ୟଗିରି ନିକଟରେ ପ୍ରବେଶ ହୋଇଲା
ବିମ୍ବର ବାଟରେ ସେ ତକ୍ଷଣେ ପଶିଲା ।
ପାତାଳ ପୁରେ ଯାଇଁ ହେଲା ପରବେଶ
ଶତେଗ୍ରୀବ ମିଳିଲା ଅନନ୍ତ ନାଗ ପାଶ ।
ଅନନ୍ତ ନାଗକୁ ଯାଇ କହିଲା ବଚନ
ବୋଇଲା ମୋହ ସଙ୍ଗରେ କରତୁ ଏବେରଣ
ବାସୁକୀ ବୋଇଲା ଶୁଣ ଅସୁର କୁଳମଣି
ମୁହିଁ ରଣକଲେ ଯେ ଛାଡ଼ିବ ଧରଣୀ ।
ରସାନ୍ତଳେ ଧରଣୀ ପଡ଼ିବ ଯେବେ ପୁଣ
କାହା ସଙ୍ଗରେ ରଣ କରିବୁ ଦୈତ୍ୟଗଣ ।
ଶତେମୁଖା ବୋଇଲା ମୋର ବଚନ ନିୟତ
ନ ପାରିଲେ ଦାନ ନିଅ କହୁଛି ନିୟତ ।
ଦାନ ଯେବେ ନ ଘେନିବୁ ମୋସଙ୍ଗେ କର ରଣ
ପଡୁ ରସାନ୍ତଳେ ପଛେ ଧରଣୀ ପୁଣ ।

ଶୁଣିକରି ନାଗରାଜା ତାହାକୁ କହିଲା
ଦାନ କରି ତୋହଠାରୁ ନେଲି ଯେ ବୋଇଲା
ଜୟେ ଶଙ୍ଖ ବଜାଇ ଯେ ଲେଉଟେ ଅସୁର
ଅଠର କୋଟି ନାଗ ଯେ ଜିଣିଲା ସେଠାର ।
ନାଗରଷି ସିଦ୍ଧରଷି ତାଙ୍କଠାରେ ମିଳି
ଓଳଗ ମେଲାନ୍ତେ ଯେ ନମସ୍କାର କରି ।
ବୋଇଲା ମୋର ସଙ୍ଗେ କର ତୁମ୍ଭେରଣ
ଋଷିମାନେ ବୋଇଲେ ଅସୁର ରାଜା ଶୁଣ ।
ତପରେ ଆମ୍ଭର ତ୍ରିପ୍ତି ହୁଏ ମନ
ରଣରେ କାର୍ଯ୍ୟ ନାହିଁ ଶୁଣହେ ରାଜନ ।
ଶତେଗ୍ରୀବ ବୋଲେ ତୁମ୍ଭେ ନ କରିଲେ ରଣ
ଆସନମାନଙ୍କୁ ତୁମ୍ଭେ ଦାନକର ପୁଣ ।
ହେଉବୋଲି ନାଗଦେବ ସିଦ୍ଧ ଋଷି କହି
ଜୟେ ଶଙ୍ଖ ବଜାଇ ଅସୁର ଚଳିଯାଇ ।
ଜ୍ୟୋତିପୁରେ ଯାଇଣ ହେଲା ପରବେଶ
କୋଟିଏ କନ୍ୟାଙ୍କ ପରେ ଦୁଇ କନ୍ୟା ଶ୍ରେଷ୍ଠ
ଅସୁର ପଚାରଇ କନ୍ୟାଙ୍କୁ ଚାହିଁ ପୁଣ
ମୋର ପୁରେ ଯିବା ଆସ ବିପୁଳ ଭୋଗ ପୁଣ ।
ଦୁଇକନ୍ୟା ବୋଇଲେ ତୋଠାରେ ନାହିଁ ମନ
ସ୍ତିରୀମାନେ ଆମ୍ଭେ ପୁଣ ଅଟୁ ତପୀଜନ ।
ଯେ ଯାହାକୁ ଭଜଇ ଅବଶ୍ୟ ପାଇ
ଏକଥା ବିଚାର କର ଅସୁର କୁଳ ସାଇଁ ।
ଶତେଗ୍ରୀବ ବୋଲେ ମୁଁ ନକରେ ବଳମାନ
ଏତେ କହି ଅସୁର ସେ ଫେରିଲା ବହନ ।
ଅସୁରମାନଙ୍କ ପୁରେ ହେଲା ପରବେଶ
ତାକୁ ଦେଖି ଅସୁର ମନରେ ହେଲେ ତୋଷ ।
ବାରକୋଟି ଅସୁର ପୁର ଏକାନ୍ତେ ଭ୍ରମିଲା
ବଜ୍ର କପଟର ପୁରେ ଯାଇଣ ମିଳିଲା ।
ବଜ୍ର କପଟ ଦୋହିତା ଅଟଇ ଅଶ୍ୱିନୀ
ଶତେମୁଖାକୁ ଦେଖି ପ୍ରସନ୍ନ ହେଲା ପୁଣି ।
ବରଣ ମାଳା ଦେଇ ବରିଲା ତାକୁ ଯାଇ
ହସ୍ତଧରି ଶତେମୁଖା ତାକୁ ବେଗେ ନେଇ ।
ଅତୂଟ ବିମାନ ଉପରେ ବସାଇଲା
ଶତେକ ଦାବିଙ୍କି ଅଶ୍ୱିନୀ ଅଣାଇଲା ।
ସେଠାରେ ଜୟ ଶଙ୍ଖ ବଜାଏ ଶତାନନ
କରୁଣାବତୀର ପରେ ମିଳିଲା ବହନ ।
ଦେଖିଲା ସେ ପୁରେ ରାଜା ଅଟେ କଉମୋଦୀ
ସେ ଅସୁର ସାତଲକ୍ଷ କନ୍ୟା ଯେ ସମ୍ପାଦି ।
ଦିଗଶୂଳ ରାଜା ଦେଖି ଆନନ୍ଦମନ ହେଲା
ପ୍ରସନ୍ନ ହୋଇଣ ତାକୁ ସେ ଚରଚ୍ଚ କଲା ।
ସାତଲକ୍ଷ କନ୍ୟା ଆଣି ସମର୍ପି ଦେଲା ରାୟେ
ଦେଖିଣ ସତେଗ୍ରୀବ ହରଷ ମନ ହୋଏ ।
କନ୍ୟାମାନଙ୍କୁ ଆଣି ବସାଏ ବିମାନ
ପାତାଳ ଦିଗବିଜେ ସାରିଲା ରାଜନ ।
ଅନେକ ସୈନ୍ୟବଳ ଘେନି ସେ ଅଇଲା
ଅଲଙ୍କା ଗଡ଼ରେ ସେ ପ୍ରବେଶ ହୋଇଲା ।
ଯୁଗେକ ପରିଯନ୍ତେ କଲାକ ରସକେଳୀ
ପାଟରାଣୀ ହୋଇଲା ଅଶ୍ୱିନୀ ନାମେ ବାଳୀ ।
ଲକ୍ଷେକ କୁମର ତାର ଲକ୍ଷେକ ଦୋହିତା
ସାତଲକ୍ଷ ରାଣୀ ତାର ଏକୁଁ ଏକେ ଜିତା ।
ଅସୁରଙ୍କୁ ଧରି ଆଣି ଦୋହିତା ବିଭା ଦେଲା
ଧନରତ୍ନ ଭଣ୍ଡାର ଅଶ୍ୱ ବିଳୋହିଲା ।
ବିପୁଳ ଘର ରତ୍ନ ଦେଲାକ ରାଜ୍ୟ ପୁଣ
ଲକ୍ଷେକ କୁମର ବିଭା କରାଏ ରାଜାପୁଣ ।
ଏଥୁ ଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ଶୁଣ
ମନ୍ତ୍ରୀଙ୍କି ଡାକିଣ ଯେ କଲେ ରାଜ୍ୟପୁଣ ।
ପୁଣି ଶତେମୁଖା ଯେ ବିଚାର ସେ କଲା
ଦିଗବିଜେ କରିବାକୁ ମୋର ମନ ହେଲା ।
ଚତୁରାଙ୍ଗ ବଳ ଯେ ମୋର ସଜକର
ବାଦ୍ୟର ନିଶାଣରେ କମ୍ପୁ ତିନିପୁର ।
ନିରଞ୍ଜନ ଦ୍ୱୀପରେ ହେଲା ପରବେଶ
ସେ ଦ୍ୱୀପରେ ରାଜା ଯେ ଅଟେ ବାରଲକ୍ଷ ।
ସେ ରାଜାର ଲୋକେ ଯେ ଦିଶନ୍ତି ସୁନ୍ଦର
କାଣ୍ଡ କୋଦଣ୍ଡ ଧରି କରନ୍ତି ଯୁଦ୍ଧ ଘୋର ।
ବସ୍ତ୍ର ଅଳଙ୍କାର ଯେ ଦେହରେ ନାହିଁ କିଛି
ସ୍ତିରୀ ପୁରୁଷ ଉଲଗ୍ନ ଦଶରଥ ବସ୍ତି ।
କର୍ଣ୍ଣ ଦୁଇ ତାଙ୍କର ଅଟଇ ବଡ଼ ବଡ଼
ତଳରେ କର୍ଣ୍ଣ ତାଙ୍କର ଉପରେ କର୍ଣ୍ଣେକ ହାଡ଼ ।
ଏମନ୍ତ ରଙ୍ଗ ଦିଶନ୍ତି ସେହି ପୁରଜନ
ଅସୁର ସଙ୍ଗରେ ସେହୁ କଲେ ଘୋରରଣ ।
ବାସ୍ତରୀ ବରଷ ପର୍ଯ୍ୟନ୍ତେ ଯୁଦ୍ଧକଲେ
ନ ପାରି ଅସୁର ଯେ ଫେରିଣ ଅଇଲେ ।

ପୁଣିହିଁ ଶୁଚିବନ୍ତ ପୁରେ ପରବେଶ
ସେ ପୁର ଗତି ଶୁଣ ଦଶରଥ ଶିଷ୍ୟ ।
ପିତ୍ତଳ କଂସାରେ ଯେ ସେପୁର ନିର୍ମାଣ
ସପତ ଦ୍ୱୀପରୁ ଅଟେ ସେ ଚିକଣ ।
ଦିବ୍ୟ ଅଳଙ୍କାର ସବୁରି ଦେହେ ଖଞ୍ଜି
ସ୍ତିରୀମାନଙ୍କର ରୂପ ଜଗତ ପାରେ ସାଧି ।
ନବଯୁବା ପ୍ରାୟେ ସ୍ତିରୀ ସମସ୍ତେ ଦିଶନ୍ତି
ବେଗଳ ବେଗଳ ଘର କରିଣ ଅଛନ୍ତି ।
ମୁଖମାନ ତାଙ୍କର ଯେ ଶୁକ୍ରର ପ୍ରମାଣେ
କୋକିଳର ବଚନ ସେ କହେ ଅପ୍ରମାଣେ ।
ସଭିହେଁ ଯାନ ଚଢ଼ନ୍ତି ଶୂନ୍ୟ ନୋହେ କେହି
ପାଦଗତିରେ ଚଳଇ ପାଦୁକା ଗତିହୋଇ ।
ଅମଳାଣ ବସ୍ତ୍ର ଯେ ସବୁରି ଅଙ୍ଗେ ସାଜେ
ସବୁଙ୍କରି ଶିରେ ଛତି ଧରାଇଣ ବିଜେ ।
ଦିବସରେ ଶୃଙ୍ଗାର ରାଜି ଯେ ଯାହାକୁ
ପଶୁଙ୍କର ଆଚର ସବୁ ବେଭାରକୁ ।
ବଡ଼ସାନ ନ ମାନନ୍ତି ମଣନ୍ତି ଏକ ତୁଲ
ରାଜାର ନାମଧି ସକଳ ଲୋକଙ୍କର ।
ଅନେକ ଜାତି ସେଥିରେ ଅଛନ୍ତି ତୁମ୍ଭେଜାଣ
ବାରଣ ନାହିଁ ଜାତିରେ ଶୁଣ ହେ ରାମରାଣ ।
ସେ ଦ୍ୱୀପରେ ପ୍ରବେଶ ଅସୁର ବଳ ହେଲେ
ତାଙ୍କର ସଙ୍ଗରେ ଯୁଦ୍ଧ ଆରମ୍ଭ ଯାଇକଲେ ।
ସେମାନେ ଅନେକ ଯୁଦ୍ଧ କଲେକ ବିଚରି
ଅସୁର ସୈନ୍ୟଙ୍କୁ ସବୁ ପକାଇଲେ ଦଳି ।
ତାଙ୍କ ସଙ୍ଗେ ଅସୁର ଯେ ନୋହିଲେ ସରିକିଛି
ଶତେମୁଖା ରାବଣକୁ ଧରିନେଲ ସେହି ।
ଯୁଗେକ ପରିହନ୍ତେ ଚରଣେ ଦେଇ ବେଡ଼ି
ନିବିଡ଼ ଘରରେ ରଖିଲେ ବନ୍ଦୀକରି ।
ଯୁଗେକ ଉତ୍ତାରୁ ଯେ ମରୁତ ଦେବ ଜାଣି
ଶୁଚିଦ୍ୱୀପେ ପ୍ରବେଶ ହେଲେ ଯାଇଁ ପୁଣି ।
ଗରମେ କମ୍ପରାଜଠାରେ ପରବେଶ
ମାୟାରେ ମରୁତ ହୁଏ ଯତି ମୁନି ବେଶ ।
ରାଜାର ପାଶେ ପ୍ରବେଶ ହେଲା ଯାଇଁକରି
ନଗ୍ରଦାଣ୍ଡେ ଚଳିଯାନ୍ତେ କମଣ୍ଡଳୁ ଧରି ।
ଦେଖିଣ ସେ ନଗ୍ରଲୋକେ ଆଶ୍ଚର୍ଯ୍ୟ ହୋଇଲେ
ସାନଠାରୁ ବଡ଼ଯାଏ ଏଳଗ ମେଲାଇଲେ ।
ସ୍ତିରୀମାନେ ଆସିଣ କରନ୍ତି ନମସ୍କାର
ହୁଳହୁଳି ଶବଦ ଯେ କୋକିଳର ସ୍ୱର ।
ହରିବୋଲ ଶବଦ ଯେ କରନ୍ତି ବାଳ ବୃଦ୍ଧା
ରାମତାଳି ଦିଅନ୍ତି ଯେ ଆନନ୍ଦରେ ଶ୍ରଦ୍ଧା ।
ଆଗପଛେ ସାରେଣୀ ଯେ ମର୍ଦ୍ଦଳ ବୀଣାଧରି
ଗାୟନ କରି ନଟନାରୀ ଯେ ବିହରି ।
ଗହଳରେ ଯନ୍ତାଯନ୍ତି ହୋଇଲେ ଯେ ପୁଣ
ଯେସନେ ଗୁଣ୍ଡିଚା ଯାତ ନୀଳଗିରିରେଣ ।
ଆଷାଢ଼ ଦ୍ୱିତୀୟା ଦିନ ଯେସନେ ଜଗନ୍ନାଥ
ନନ୍ଦିଘୋଷ ରଥରେ ବିଜୟ ଯେମନ୍ତ ।
ଯେସନେକ ବଡ଼ଦାଣ୍ଡେ ଚଳିଯିବାବେଳେ
ତେସନ ପ୍ରକାରେ ଯେ ଆନନ୍ଦ ସେ ପୁରେ ।
କମ୍ପରାଜାର ଆଗରେ ପଡ଼ିହାରି କହି
ସ୍ୱର୍ଗର ଦେବତା କିଏ ତୋ ପୁରେ ଆସଇ ।
ଶୁଣିକରି କମ୍ପରାଜ ଆନନ୍ଦ ହୋଇଲା
ଭିତର ପୁରେ ଯାଇଁ ରାଣୀଙ୍କି କହିଲା ।
ସହସ୍ରେକ ନାରୀ ତାର ବେଶ ହେଲେ ତୋରା
ଚରଣେ ରତ୍ନ ପାଦୁକା ବାହାର ହେଲେ ପରା ।
ସକଳ ନାରୀ ଆଗକରି ନୃପମଣି
ସମସ୍ତଙ୍କ ହସ୍ତେ ଯେ ଅର୍ଘ୍ୟସ୍ଥାଳୀ ପୁଣି ।
ଦାସୀମାନଙ୍କ ହସ୍ତରେ ମଙ୍ଗଳ ଆଳତୀ
ନିଜ ସିଂହଦ୍ୱାରେ ଯେ ପାୟେଡ଼ା ପାରିଯାନ୍ତି ।
ଗଡ଼ର ସିଂହଦ୍ୱାଯାଏ ଯାଏ ପାୟେଡ଼ା
ଅମଳାଣ ବସ୍ତ୍ରମାନ ଦିଶେ ବଡ଼ ତୋରା ।
ସେଥିପରେ ରାଣୀହଂସ ନୃପତି ବିଜେକଲେ
ଧୀରେ ଧୀରେ ବିଜେକରି ଯାଆନ୍ତି ସଧୀରେ ।
ଆଗରେ ବାଜଇ ଶଙ୍ଖ ମର୍ଦ୍ଦଳ ଯେ ଭେରୀ
ବେଶ୍ୟା ସ୍ତିରୀମାନେ ଆଗେ ଯାନ୍ତି ନୃତ୍ୟକରି
ପଛରେ ରାଜା ପୁଣି କନକ ଝରୀ ଧରି
ବଇଡୂର୍ଯ୍ୟ ସିଂହାସନ ଉପରେ ବିଜେକରି ।
ଅତି ଆନନ୍ଦରେ ଯାଇ ଦ୍ୱାର ପରବେଶ
ଦେଖିଲେ ମୁନିର ବେଶ ମରୁତ ପୁରୁଷ ।
କନ୍ଧରେ ଯେ ଦଣ୍ଡ ଅଛି ହସ୍ତରେ କମଣ୍ଡଳ
କଟିରେ କଛଟା ଯେ କଉପୁନୀ ଡୋର ।
ଅଙ୍ଗରେ ବିଭୂତି ବୋଲି ଦିଶେ ଶୁକ୍ଳାମ୍ବର
ଝୋଟପ୍ରାୟେ କେଶଯାକ ଦିଶଇ ସୁନ୍ଦର ।

ଦୁଇ ଚରଣରେ ପୁଣି ପାଦୁକା ଲାଗି ଜାଣ
ମୁନି ବେଶ ହୋଇ ଚଳେ ମରୁତଦେବ ପୁଣ ।
ଦେଖିଣ ସେ କମ୍ପରାଜା ଆନନ୍ଦ ହୋଇଲା
ଓଳଗି ମେଲାଇ ମୁନି ଚରଣେ ଶୋଇଲା ।
ସୁବର୍ଣ୍ଣ ଝରୀରୁ ଗଙ୍ଗାନୀର ଚରଣେ ଢାଳିଲା
ଆପଣାର ଅଞ୍ଚଳରେ ଚରଣ ପୋଛିଲା ।
ଶତେବାର ଓଳଗି ଯେ ହୋଇଲା ରାଜନ
ଚରଣ ଉଦକ ଶିରେ ଲଗାଇଣ ପୁଣ ।
ବଇଡୂର୍ଯ୍ୟ ସିଂହାସନରେ ନେଇ ବସାଇଲା
ସେଥିରେ ଉପରେ ମୁନି ଆନନ୍ଦେ ବସିଲା ।
ରାଣୀହଂସ ଓଳଗିଲେ ଚରଣେ ତାଙ୍କର
ଶତେବାର ପର୍ଯ୍ୟନ୍ତେ କରନ୍ତି ନମସ୍କାର ।
ଅର୍ଘ୍ୟସ୍ଥାଳୀ ଘେନିଣ ବନ୍ଦାପନା କଲେ
ଦାସୀଜନ ସର୍ବେ ଯେ ହୁଳହୁଳି ଦେଲେ ।
ଅର୍ଘ୍ୟ ବନ୍ଦାପନା ସାରି ମଙ୍ଗଳ ଆଳତୀ
ରାଣୀମାନେ ଆନନ୍ଦରେ ବନ୍ଦାପନା କରନ୍ତି ।
ଚରଣତଳେ ରାଣୀ ଲଗାଇଲେ ଶିର
ହସ୍ତଧରି ରାଣୀମାନେ ତୋଳିଲେ ମୁନିବର ।
ସକଳ ରାଣୀହଂସ ମଧ୍ୟରେ ତୋଳି ଚଳି
ଜ୍ୟେଷ୍ଠ ପାଟରାଣୀ ମୁନିର ହସ୍ତ ଧରି ।
ଯେସନେ ପହଣ୍ଡ ବିଜେ ହୁଅନ୍ତି ଜଗନ୍ନାଥ
ତେସନକ ପ୍ରାୟେ ଚଳେ କଶ୍ୟପର ସୁତ ।
ଆଉ ରାଣୀମାନେ ପୁଣି ପୁଷ୍ପଲାଗି କଲେ
ଥୋକେ ରାଣୀ ଆଣିଣ ଯେ ଚନ୍ଦନ ଲେପିଲେ ।
ମର୍ଦ୍ଦନ ମାଜଣା ସାରି କରାଏ ସ୍ନାହାନ
ଅନେକ ଓଳଗି ଯେ ମେଲାଏ ରାଜନ ।
ଶ୍ରୀଅଙ୍ଗ ପୋଛିଣ ଅମଳାଣ ପିନ୍ଧାଇଲା
ସିଂହାସନ ଉପରେ ନେଇଣ ବସାଇଲା ।
ଚନ୍ଦନ କର୍ପୂର ଚୁଆ ଅଗୁର କସ୍ତୁରୀ
ମୁନିର ଅଙ୍ଗରେ ନେଇ ବୋଳିଲେ ଯତ୍ନକରି ।
ତାହାର ଭୁବନଯାକ ପ୍ରକଟ ଗନ୍ଧକଲା
ତେଣୁ ସେ ବନସ୍ତ ଋତୁ ପ୍ରବେଶ ହୋଇଲା ।
ଜନ ପ୍ରଜା ସହିତରେ ବୃକ୍ଷ ଜୀବମାନେ
ସମସ୍ତେ ହେଲେ ଆନନ୍ଦ ପବନେ ସ୍ୱାଦନେ ।
କେ ବୋଲନ୍ତି ଏପୁରେ କେଉଁ ଯେ ଦେବତା
ମରୁତ ବିଜେ କଲେକି ଘେନିଣ ଗନ୍ଧଶ୍ରୋତା ।

କାମରେ ମୋହିତ ଯେ ହେଲେ ସର୍ବସ୍ତିରୀ
ପଞ୍ଚମଶର ଯେସନ ମଦନ ପ୍ରହାରି ।
ବୃକ୍ଷମାନେ ପଲ୍ଲବିଲେ ପଲ୍ଲବେ ଜୀବଜନ୍ତୁ
ଅକାଳେ ପୁଷ୍ପମାନେ ଫୁଟିଲେ କରିହେତୁ ।
ରାଜନ ବିଚାରିଲା ଏକଥା କେମନ୍ତ
ମୋର ପୁରେ ବିଜେକି ମଦନ ମରୁତ ।
ଏମନ୍ତ ବିଚାରି ସେ ମୁନି ପାଶେ ଗଲା
ନମସ୍କାର କରି ଯେ ମୁନିଙ୍କୁ ପଚାରିଲା ।
ବୋଇଲେ କି କାର୍ଯ୍ୟରେ ବିଜେ ମୁନିବର
ମୋର ପୁର ଗୋଟି ଆସି କଲ ଯେ ସୁନ୍ଦର ।
ମରୁତ ବୋଇଲେ ତୁ ଶୁଣ ହେ ରାଜନ
ମଲା ଲୋକମାନଙ୍କୁ କି କରୁଛ ଛେଦନ ।
ଜୀବ ଥିଲା ଲୋକକୁ ସିନା କାଟେ କତୁରୀରେ
ଅଜୀବକୁ ରକତକୁ କାଟେ ତାକୁ ବୋଲେ ।
ମୁର୍ଦ୍ଦାର ଉପରେ କି ତରୁଆର ଘଷ
ଏମାନଙ୍କ ଉପରେ ଯେହୁ କରଇ ତାମସ ।
ପୋଷିଲାର ଜୀବ କି ନୋହିଣ ଆୟତ୍ତ
ପଥର ସଙ୍ଗେ କି ଯୁଝି ଯଶ ପାଇବ ତ ।
ମଲା ଜୀବକି ଆଉ ଲୋଡ଼ିଲେ ମିଳଇ
ଏପରି କେଉଁଠାରେ ଦେଖିଛୁ ନରସାଇଁ ।
ଜୀବନ୍ତା ଯାଅଇ ଯେ ଆସନ୍ତା ପୁଣି ଆସେ
ଏରୂପେ ସଂସାରେ ଯେ ବିଧାତା ପରକାଶେ ।
ରକତ ମାଂସ ଥିଲେ ରିପୁ ହୋଏ ଦେହ
ହିଂସା ରାଗ ଧରି ଯେ କରନ୍ତି କଳିପ୍ରିୟ ।
ପଦାର୍ଥ ଥିଲେ ସିନା ଦାନ ଧର୍ମ କରି
ନଥିଲା ଲୋକ ସିନା ଯେ ମଲାସଙ୍ଗେ ସରି ।
ଶତେମୁଖା ରାବଣ ତୋର ପୁରେ ଆସି
ତୋତେ ଜିଣିବ ବୋଲି ମନରେ ତାରତୋଷି
ମନରେ ବିଚାର ଯେ ନକଲା ତାର ବଳ
ସିଂହକୁ ଦେଖିଲେ ଯେହ୍ନେ ଭାଗଇ ଶୃଗାଳ ।
ତୋହର ଛାମୁରୁ ଯେ ଶତେମୁଖା ଭାଗି
ରଣଭଗ୍ନ ହେବାରୁରେ ମନରେ ଦୁଃଖଭାଗୀ ।
ତେତେବେଳେ ବପୁ ତାର ହେଲା ଯେ ନିଧନ
ତାକୁ କିମ୍ପା ତୁମ୍ଭେ କରି ରଖିଛ ବନ୍ଧନ ।
କ୍ଷତ୍ରୀ ହୋଇଲେ ହାରଇ ଜିଣଇ ସଂସାରେ
ଏକା ସମାନରେ କେ ଅଛି ବ୍ରହ୍ମାଣ୍ଡରେ ।

ଶୁଣିଣ କମ୍ପରାଜା ମନରେ ତୋଷହେଲା
ବନ୍ଦୀଆଳକୁ ଆଣରେ ବୋଲି ସେ ଆଜ୍ଞାଦେଲା
ଶୁଣିଣ ସେବାକାରୀମାନେ ଚଳିଗଲେ
ବନ୍ଦୀଘର ବନ୍ଦୀଆଳ ଫେଡ଼ିଣ ଆଣିଲେ ।
ରାଜାର ଛାମୁରେ ଯେ ତାକୁ କଲେ ଛିଡ଼ା
ଶଙ୍କୋଳି କଟାଇଲା କମ୍ପରାଜାଧୀରା ।
ଶତେମୁଖା କମ୍ପରାଜ ହେଲେ ସନମାନ
ଶତେଗ୍ରୀବକୁ ଛାଡ଼ିଦେଲା କମ୍ପରାଜା ଜାଣ ।
ଶତେମୁଖା ରାବଣ ଯେ ଯାନ ସୁମରିଲା
ତତକ୍ଷଣ ଅତୁଟ ବିମାନ ମିଳିଲା ।
ଶତେମୁଖା ରାବଣ ପବନ ଚରଣରେ
ଶତେବାର ପ୍ରଳମ୍ଭ କରଇ ସ୍ନେହରେ ।
ସେ ବୋଇଲା ଦେବ ମୁଁ ଯେ ଯାଇଛି ନିଜପୁର
ମରୁତ ବୋଇଲେ ତୁ ଶୁଣରେ କୁମର ।
ମର୍ତ୍ତ୍ୟପୁର ତୋର ଯେ ସରିଲା ଦିଗବିଜେ
ଏକ ଭୁବନେକ ଯେ ରହିଲା ତୋରଭାଗେ ।
ଲବଣ ସମୁଦ୍ର ଭିତରେ ଏକପୁର
କରଞ୍ଜ ଦ୍ୱୀପା ବୋଲି ନାମ ଯେ ତାହାର ।
ସେ ପୁରରେ ନାରକାସୁର ବୋଲି ରାଜା
ଅସୁର କୁଳରେ ଜାତ ହୋଇଛି ତନୁଜା ।
ମାତା ତାର ଧରଣୀ ପିତା ସେ ଅସୁର
ବଳରେ ଚାରିଦିଗ ଜିଣିଲେ ସେ କୁମର ।
ବାରବରଷ ଉତ୍ତାରୁ ମନରେ ବିଚାରି
ମରୁତ କହିବା କଥା ମନରେ ହେତୁକରି ।
ମନ୍ତ୍ରୀକି ଡାକିଣ ଯେ ସାଜିଲେ ବଳ ତାର
ବିମାନେ ବିଜେକରି ଚଳେ ସେ ସତ୍ୱର ।
କୁଞ୍ଜଗଳି ଦେଶରେ ହେଲା ପରବେଶ
ନାରକା ଛାମୁରେ ସେ ଦୂତ ପରବେଶ ।
ନାରକାସୁର ଆଗରେ ଦୂତ ଯାଇଁ କହି
ତୋହର ପୁରେ ଥାଟ ଆସିଛି ଗୋସାଇଁ ।
ଜଇନ୍ତ ମୁନିର ସୁତ ଅଟେ ଶତେମୁଖା
ତୋ ସଙ୍ଗେ ଯୁଝିବାକୁ କରିଅଛି କକ୍ଷା ।
ବୋଇଲା ନୃପତିକି ବେଗେ ଆଣ ଡାକି
ଯୁଦ୍ଧ କରିବାକୁ ମୁଁ ତା ପୁରେ ଆସିଅଛି ।
ଶୁଣିଣ ନାରକାସୁର କହିଲା ସମ୍ପାଦି
ଶତେମୁଖା ସଙ୍ଗରେ ମୁଁ ନପାରେ ଯୁଦ୍ଧଭଙ୍ଗୀ

ଶତେମୁଖା ନାରକା ହେଲେ ଏକ ସ୍ଥାନ
ଘେନା ଘେନି ହୋଇଲେ ଦୁଇ ରାଜା ପୁଣ ।
ସେଠାରୁ ଶତେମୁଖା ବିଜେକରି ଗଲା
ଆପଣାର ରାଜ୍ୟରେ ପ୍ରବେଶ ହୋଇଲା ।
ଶ୍ରୀରାମ ବୋଇଲେ ସେ ସଉରଭୀର ବାଳ
ପୁଣି ସେ କିସ କଲା କହ ମୁନିବର ।
ନାରଦ ବୋଇଲେ ଶୁଣ ହେ ରାମରାଣ
ସତାଇଶ ଗଣ୍ଡା ଯୁଗ ଭୋଗ କଲା ଜାଣ ।
ଏଥୁ ଅନନ୍ତରେ ଶୁଣ ମନ ଦେଇ
ଦିନେକ ଅସୁର ଯେ ମନେ ବିଚାରଇ ।
ସ୍ୱର୍ଗପୁର ଜିଣିଲେ ନିଶ୍ଚିନ୍ତ ହେବା ଆମ୍ଭେ
ଏତେ ବୋଲି ଶତେମୁଖା ଆଜ୍ଞାଦେଲା ଶୁଭେ ।
ଅତୁଟ ଯାନରେ ଯେ ଯାଇଁଣ ବିଜେକଲା
ସୈନ୍ୟଙ୍କର ଆଗରେ ସେହୁ ଚଳିଗଲା ।
ହେମଗିରି ଉପରେ ଉଠିଲାକ ଯାଇଁ
ସ୍ୱର୍ଗର ଦାଣ୍ଡରେ ଯେ ଅସୁର ଚଳିଯାଇ ।
ଚତୁରଙ୍ଗ ବଳ ଯେ ଚଳିଲେ ତାହାର
ବାଟରେ ଭେଟିଲେ ଯେ ଗନ୍ଧର୍ବ କିନ୍ନର ।
ଦକ୍ଷ ବିଦ୍ୟାଧର ମିଳିଲେ ଆସି ପୁଣି
କୋଦଣ୍ଡ କାଣ୍ଡ ଧରି ଯୁଦ୍ଧ କଲେ ଜାଣି ।
ନବଗ୍ରହ ଅଷ୍ଟବସୁ ଲାଗିଲେ ପୁଣ ଯାଇ
ମାସେ ରଣ କରି ଭାଗି ଗଲେ ସେହି ।
ସ୍ୱର୍ଗରେ ଯାଇଣ ଯେ ପଶିଲା ଅସୁର
ସୁଧର୍ମା ସଭାଠାରେ ମିଳିଲା ସେହି ଖର ।
ସଭାକୁ ଦେଖିଣ ଯେ ପ୍ରଶଂସା ବଡ଼କଲା
ଧନ୍ୟ ଦେବସଭା ବୋଲିଣ ବୋଇଲା ।
କରଯୋଡ଼ି ନମସ୍କାର ହୋଏ ଯେ ଅସୁର
ବୋଲେ ଏ ସଭାରେ ବିଜେ ଗୁରୁ ମୋର ।
ଏମନ୍ତ ସମୟରେ ମରୁତ ଯାଇଁ ମିଳି
ଗୁରୁଙ୍କୁ ଦେଖିଣ ଯେ ଅସୁର ମନେ ଭାଳି ।
ନମସ୍କାର କରିଣ ପାଦରେ ପଡ଼ିଲା
ସ୍ୱର୍ଗକୁ ଅଇଲି ଦେବ ବୋଲି ସେ ବୋଇଲା ।
ମରୁତ ବୋଇଲେ ପୁତ୍ରରେ ଜିଣିଲୁ ସ୍ୱର୍ଗପୁର
ତିନିପୁର ଜିଣିଣ ତୁ ହେଲୁ ସାରୋଦ୍ଧାର ।
ଶତେଗ୍ରୀବ ବୋଇଲେ ବହୁତ କଳିକଲେ
ଛପନ ବରଷଯାଏ ମୋ ସଙ୍ଗେ ଯୁଝିଲେ ।

ଏବେ ପଳାଇଲେ ଯେ ନ ରଖି କାହାକୁ
ବାସ୍ତରୀ ପଦ୍ମ ମୋର ମାଇଲେ ସୈନ୍ୟଙ୍କୁ ।
ସକଳ ସୈନ୍ୟ ମରାଇ ଏକା ଅଛି ମୁହିଁ
ଏ ଦେବଙ୍କୁ ଶେଷକଲେ ମନମୋ ତୋଷହୋଇ
ଏତେ ବୋଲି କ୍ରୋଧ ଯେ ହେଲା ଦୈତ୍ୟରାଣ ।
ପବନ ବୋଇଲେ ତୁ ହୁଅଟି ଧୈର୍ଯ୍ୟ ପୁଣ ।
ଅସୁର ବୋଇଲା ମୋର ହୃଦୟରେ ବ୍ୟଥା
ଚତୁରାଙ୍ଗ ବଳ ମୋର ମାଇଲେ ଦେବତା ।
ତାହାଙ୍କୁ ନାଶ କଲେ ମନ ମୋର ତୋଷ
ମରୁତ ବୋଇଲେ ଶୁଣ ଜୟନ୍ତ ମୁନି ଶିଷ୍ୟ ।
ପିତା ତୋର ଅସୁର ଗୁରୁଟି ଦେବତା
ଦୁଇକୁଳ ତୋର ଯେ ଅଟନ୍ତି ଇଷ୍ଟ ଜ୍ଞାତା ।
ମାତା ସିନା ଅସୁରୁଣୀ ତୋହର ସ୍ୱଭାବ
ଏଥିରେ ଅବିଗୁଣ ନ କର ଦୈତ୍ୟ ରାଜ ।
ଶାନ୍ତଶୀଳ ହୋଇଲେ ଅନେକ କାର୍ଯ୍ୟ ହୋଇ
ମଲାଲୋକ ହୋଇଲେ କେଉଁଦିନ ଜୀଇନାହିଁ ।
ହାନୀଲାଭ ଅପଚୟେ ହୁଅଇରେ ବାବୁ
ସବୁଦିନେ ସବୁକଥା ନ ରହଇ ସବୁ ।
ତୁ ପୁଣି ଜିଣିଲୁ ବାବୁରେ ତିନିପୁର ଯାଇ
ସେମାନେ ତୋତେରେ ଡରିଣ ପୁଣ ରହି ।
ଏତେବୋଲି ସମାଧାନ କରଇ ମରୁତ
ଗୁରୁଙ୍କ ବଚନ ଶୁଣି ହେଲା ତୋଷ ଚିତ୍ତ ।
ବୋଇଲା ଦେବତାଙ୍କୁ ଯେ ଅଣାଅ ସଭାକୁ
ପଳାଇ ଲୁଚିଛନ୍ତି ଯେ ମୋହର ଡରକୁ ।
ପବନ ବୋଇଲେରେ ମୋର ବୋଲକର
ସ୍ୱର୍ଗପୁର ଦାନ ମୋତେ ଦିଅରେ କୁମର ।
ଶୁଣିଣ ଶତେମୁଖା ସନ୍ତୋଷ ହୋଇଲା
ଜଳପ୍ରାତୀ ଘେନିଣ ମରୁତେ ଦାନ ଦେଲା ।
ନମସ୍କାର କରିଣ ଚଳଇ ନିଜପୁର
ପ୍ରବେଶ ହେଲା ଯାଇ ଅଲଙ୍କା ଗଡ଼ର ।
ଏଥୁ ଅନନ୍ତରେ ଯେ ଶୁଣ ହେ ଋପଧାରୀ
ସ୍ୱର୍ଗରୁ ଶତେମୁଖା ଗଲା ଯେ ଅପସରି ।
ସ୍ୱର୍ଗପୁର ଦାନ ଦେଇ ଯିବାରୁ ଯେ ପୁଣ
ତ୍ରିଦଶ ଦେବେ ଯେ ଆସି ମିଳିଲେ ସେ ପୁଣ
ମରୁତକୁ ପ୍ରଶଂସା କଲେ ସେ ସକଳ
ଭଲ ବୁଝାଇଲ ହେ ଅସୁରକୁଳ ମଲ୍ଲ ।

ତୁମ୍ଭ ସକାଶରୁ ଏ ସ୍ୱର୍ଗରକ୍ଷା ହୋଇ
କେଉଁଆଡ଼େ ଯାଇଥାନ୍ତୁ ଲୁଚିବାର ପାଇଁ ।
ସକଳ ଦେବେ ଯେ ହୋଇଲେ ତୋଷ ମନ
ଏବାର ସ୍ୱର୍ଗରେ ଆମ୍ଭଙ୍କୁ ରଖିଲୁ ତୁହି ପୁଣ ।
ତୋହର ସନ୍ତୋଷରେ ସ୍ୱର୍ଗପୁରେ ରହି
ତୋହର ଅର୍ଜିତରେ ଅଚିନ୍ତା ଆମ୍ଭେ ହୋଇ ।
ଶୁଣିଣ ମରୁତ ଯେ ପରମ ତୋଷ ହେଲା
ଦେବତାଙ୍କୁ ଘେନିଣ ସଭାରେ ବିଜେକଲା ।
ଅପସରୀ ନୃତ୍ୟ ଯେ କରନ୍ତି ସଭାରେ
ଦେବତାଏ ଆନନ୍ଦ ହେଲେ ଯେ ସେଠାରେ ।
ସୁରରାଜା ବିଜେ କଲେ ବିଜେ ତ୍ରିପୁରାରି
ଚତୁର୍ମୁଖ ବିଜେ କଲେ ସଭାରେ ଯାଇଁକରି ।
ସକଳେ ମେଳ ହୋଇ ମରୁତେ ପରଶଂସି
ଭଲବେଳେ ରକ୍ଷାକଲ ସ୍ୱର୍ଗପୁର ଗୋଟି ।
ନୃତ୍ୟରଙ୍ଗ ରୁହାଇଣ ସଭାରୁ ବିଜେକଲେ
ଯେ ଯାହାର ନିଜସ୍ଥାନେ ଯାଇଁଣ ମିଳିଲେ ।
ମର୍ଦ୍ଦନ ମାଜଣା ସ୍ନାହାନ ପୁଣ କଲେ
ଅମୃତ ଭୋଜନ କରି ନିଶ୍ଚିନ୍ତେ ନିଦ୍ରାଗଲେ ।
ଛପନ ବରଷ ଯାଏ ଦେବେ ଯେ ନିଶ୍ଚିନ୍ତ
ସ୍ୱର୍ଗପୁର ଗୋଟିକ ଲାଗିଲା ଉଶ୍ୱାସ ।
ପବନ ଦେବତା ଯେ ସେଠାରୁ ଚଳିଗଲେ
ନିଜପୁରେ ଯାଇଣ ଦେବ ବିଜେ କଲେ ।
ଶୁଚିବନ୍ତ ହୋଇଣ ଅମୃତ ଭୋଜନ
ନାରଦ କହିବାରୁ ଶୁଣିଲେ ରାମରାଣ ।
ଏଥୁ ଅନନ୍ତରେ କେତେଦିନ ଗଲା ବହି
ଦଶଗ୍ରୀବ ସେ ପୁରକୁ ଗଲା ଦେଖିବାର ପାଇଁ
ସେ ପୁର ଦେଖିଣ ଯେ ଦଶଗ୍ରୀବ ଭାଳି
ଶତେମୁଖା ସଙ୍ଗରେ ଲଗାଇଲା କଳି ।
ଯୁଗେ ପରିଯନ୍ତେ ଯେ କଳିଗୋଳ ହେଲା
ବାଳିବୀର ଯାଇଣ କଳି ଭାଙ୍ଗି ଦେଲା ।
ହାରିଲା ଦଶଗ୍ରୀବ ଜିଣିଲା ଶତେମୁଖା
ବାଳି ଥାଇ ତାକୁ ଯେ କରଇ ପ୍ରତିଶାଖା ।
ଦୁଇଜଣ ମିତ ହୋଇ ସନମାନ ହେଲେ
ଲଙ୍କାର ଗଡ଼କୁ ଦଶଗ୍ରୀବ ଚଳିଗଲେ ।
ବାଳିବୀର ଚଳିଗଲା କିଷ୍କିନ୍ଧ୍ୟା ନଗ୍ର ପୁଣ
ନାରଦ ମୁନି କହିଲେ ଶ୍ରୀରାମ ଆଗେଣ ।

ଉମା ପଚାରନ୍ତି ଶୁଣ ହେ ତ୍ରିଲୋଚନ
ସେଠାରୁ ଶ୍ରୀରାମ ଯେ କିସକଲେ ପୁଣ ।
ପାର୍ବତୀ ଆଗରେ ଯେ ଈଶ୍ୱର କହିଲେ
ଋରିରାବଣ ଜନମ ଶୁଣିଲୁ ବୋଇଲେ ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ଶ୍ରୀରାମ କିସ କଲେ କହ ମୋ ଆଗେଣ ।
ଈଶ୍ୱର ବୋଇଲେ ରାମ ନବରେ ପରବେଶ
ଋରି ରାବଣ କଥା ଶୁଣିଣ ହରଷ ।
ମର୍ଦ୍ଦନ ମାଜଣା ହୋଇ ରାମ ସ୍ନାନ କଲେ
ଛାଡ଼ରସ ଭୋଜନ ଜାନକୀ ପରଶିଲେ ।
ଭୋଜନ ସାରିଣ ଯେ ବିଡ଼ିଆ ଲାଗିହୋଇ
ପଲଙ୍କ ଉପରେ ଯେ ଶ୍ରୀରାମ ନିଦ୍ରା ଯାଇ ।
କେତେବେଳେ ଉତ୍ତାରେ ଉଠିଲେ ରାମରାଣ
ବାହାରେ ଅବକାଶ ହେଲେ ଯାଇଁ ପୁଣ ।
ପାତ୍ର ମନ୍ତ୍ରୀ ସାମନ୍ତ ରଥୀ ମହାରଥୀ
ସନ୍ତୋଷେ ଶ୍ରୀରାମ ଓଳଗି ହୁଅନ୍ତି ।
ଏମନ୍ତେ ସମୟେ ମିଳିଲେ ତିନିଭାଇ
ରାମଙ୍କୁ ନମସ୍କାର କଲେ ପୁଣ ଯାଇ ।
ଭାଇଙ୍କି ଦେଖିଣ ତୋଷ ହେଲେ ରାମାୟଣ
ଏମନ୍ତ ସମୟେ ବଶିଷ୍ଠ ମିଳେ ପୁଣ ।
ସିଂହାସନ ଉପରେ ବଶିଷ୍ଠ ବିଜେକଲେ
ରନ୍ନ ସିଂହାସନରେ ଶ୍ରୀରାମ ବସିଲେ ।
ଗହଗହ ସଭା ଯେ ହୋଇଲା ଅପାର
ଚତୁରାଙ୍ଗ ବଳ ଯେ ରହିଲେ ସିଂହଦ୍ୱାର ।
ଯାଆନ୍ତା ଯାଉଛନ୍ତି ଆସନ୍ତା ପୁଣି ଆସି
ବାଦ୍ୟର ଶବଦରେ ମେରୁ କମ୍ପୁଅଛି ।
ଏମନ୍ତ ସମୟରେ ଦୂତ ଆସି କହି
ଲୋମପାଦ ରାଜା ଆସି ତୁମ୍ଭପୁରେ ରହି ।
ରାମ ପଋରନ୍ତି ସେ କେଉଁଠାରେ ଛନ୍ତି
ଦୂତ ବୋଇଲେ ତୁମ୍ଭ ସିଂହଦ୍ୱାରେ ଛନ୍ତି ।
ଶୁଣିକରି ରାମ ସିଂହାସନରୁ ଉଠିଲେ
ଲୋମପାଦ ରାଜାଙ୍କୁ ପାଛୋଟି ଆସିଲେ ।
କୁଶଳ ବାରତା ତାଙ୍କୁ ପୁଛେ ଦାଶରଥି
ସକଳ ଭଲ ମୋର ଯେ ବୋଇଲେ ନୃପତି ।
ଏଥୁ ଅନନ୍ତରେ ଯେ ଶୁଣ ଭଗବତୀ
ମାରକଣ୍ଡ ବିଜେକଲେ ଶ୍ରୀରାମଙ୍କ କତି ।

ସିଂହଦ୍ୱାର ବାଟେ ଯେ ଚଳିଲେ ଋଷିପୁଣ
ପ୍ରବେଶ ହେଲେ ଯାଇ ରାମ ଛାମୁରେଣ ।
ଦେଖିକରି ରାମ ଯେ ଆସନୁ ଉଠିଲେ
ତିନିଭାଇଙ୍କି ଘେନି ଓଳଗି ମେଲାଇଲେ ।
ଗଙ୍ଗା ଜଳ ଆଣି ଚରଣ ଧୋଇଦେଲେ
ବକନକ ସିଂହାସନରେ ନେଇ ବସାଇଲେ ।
କଣ୍ଡୁରଷି ବୋଇଲେ ରାମଚନ୍ଦ୍ର ଶୁଣ
କୁଶଳ ତୁମ୍ଭରଟିକି କହ ମୋ ଆଗେଣ ।
ଶ୍ରୀରାମ ବୋଇଲେ ଯେ ତୁମ୍ଭର ପରସାଦେ
ସକଳ କୁଶଳ ମୋର ଶୁଣ ମୁନିଦେବେ ।
ମାର୍କଣ୍ଡ ବୋଇଲେ ତୁମ୍ଭେ ଶୁଣ ରାମରାଣ
ଅଷ୍ଟସେହ୍ନା ପଞ୍ଚଶ ଯୂଥପତି ଜାଣ ।
ତିନିଭାଇ ସଙ୍ଗେ ତୁମ୍ଭ ଯିବେ ପର୍ଶୁରାମ
କହୁଛି ରାମଚନ୍ଦ୍ର ଆହୁରି କଥା ଶୁଣ ।
ରାମ ବୋଲନ୍ତି ଋଷି ଯିବେ କିମ୍ପା ସଙ୍ଗେ
ସେଥିରେ କଥା ମୁନି କହ ହେ ଏଥି ବେଗେ ।
ମାରକଣ୍ଡ ବୋଇଲେ ସେ ଅଟେ ନରପୁଣ
ନାରାୟଣ ତୁହି ଅଟୁ ଶୁଣ ହେ ଶ୍ରୀରାମ ।
ଶ୍ରୀରାମ ବୋଲନ୍ତି ସେ ଋଷି କୁଳରେ ଜାତ
କିରୂପେ ନରହେଲେ କହ ସେଥିର ତଥ୍ୟ ।
ମାରକଣ୍ଡ ବୋଲନ୍ତି ସେ ଋଷିର ପୁତ୍ର ସିନା
ବିଷ୍ଣୁକଳା ତାର ଦେହେ ଅଛି ହୋ ଶୁଣକିନା ।
ଅନେକ ଦୁଷ୍ଟବଳ ପ୍ରବଳ ଯହୁଁ ହେଲେ
ବାସୁଦେବ ତାର ଶରୀରେ ବିଜେ କଲେ ।
ନାରାୟଣ ତେଜରେ ସେ ହେଲେ ବଳବାନ
ତେଣୁକରି ଦୁଷ୍ଟଜନ ସେ ମାଇଲେ ପୁଣ ।
ନରରୂପ ବିଷ୍ଣୁକଳା ତା ଦେହେ ପ୍ରକାଶ
ତେଣୁଟି ନରବୋଲି ବୋଲନ୍ତି ତ୍ରିଦଶ ।
ତୁହି ନାରାୟଣ ଯେ ସେହି ନର ଜାଣ
ଦୁଇଜଣ ସଙ୍ଗ ହୋଇ ବିଜେକର ପୁଣ ।
ଶୁଣିଲା ରାମଚନ୍ଦ୍ର ସନ୍ତୋଷ ହୋଇଲେ
ଯିବି ନିଶ୍ଚେ ପାତାଳକୁ ବୋଲିଣ ବୋଇଲେ ।
ଯେବେ ସେ ପୁରରେ ଅଛନ୍ତି ଦୁଷ୍ଟଜନ
ତେବେ ଖରେ ସେ ପୁରକୁ କରିବା ଗମନ ।
ଋରିଭାଇ ଆମ୍ଭେ ଯେ ରହିବୁ କିଏ ଜଣେ
ମାରକଣ୍ଡ ବୋଲନ୍ତି ଶୁଣ ମୋ ବଚନେ ।

ଲକ୍ଷ୍ମଣ ଅନନ୍ତ ଅଟେ ସେହି ଯେ ରହିବ
ଭରତ ଶତ୍ରୁଘନଙ୍କୁ ସଙ୍ଗରେ ତୁମ୍ଭେ ନେବ ।
ଆହୁରି କଥାଏ ବାବୁରେ କହୁଛି ଯେ ତୋତେ
ମେରୁରୁ ଜାତ ହେଲେ ଦୁଇ ଯେ ଦୋହୀତେ ।
ସେ ମେରୁ ଦୁହିତା ଯେ ବସିଣ ତପ କଲେ
କମଳା ଆସି ତୋର ପ୍ରସନ୍ନ ତାଙ୍କୁ ହେଲେ ।
ବୋଇଲେ ଦୁଇ ଭଗ୍ନୀ ଯେ ମୋର ବରଘେନ
ନର ନାରାୟଣଙ୍କୁ ବର ଗୋ ତୁମ୍ଭେ ପୁଣ ।
ସେ ବୋଇଲେ କେଉଁ ଠାରେ ତାହାଙ୍କୁ ଦେଖିବୁ
କମଳା ବୋଇଲେ ତ୍ରେତୟା ଯୁଗରେ ଭେଟିବୁ ।
ରାମ ପର୍ଶୁରାମ ଯେ ଦୁହେଁ ହେବେ ଜାତ
ରାବଣ ମାରିବାକୁ ସଙ୍ଗରେ ଅନନ୍ତ ।
ଶଙ୍ଖ ଚକ୍ର ଗଦା ପଦ୍ମ ନ ବହିବେ କରେ
ଶଙ୍ଖ ଶତ୍ରୁଘନ ହେବ ଭରଥ ସଙ୍ଗରେ ।
ତେଣୁକରି ଚତୁର୍ଦ୍ଧା ମୂରତି ସ୍ୱରୂପେ ଜାତ
ଶାରଙ୍ଗ ଧନୁ ଧରି ଦୁଷ୍ଟ କରିବେ ନିପାତ ।
ଯେତେବେଳେ ପାତାଳକୁ ଆସିବେ ବିଜେକରି
ତେତେବେଳେ ପର୍ଶୁରାମ ଥିବେ ସଙ୍ଗେ ତାରି
ଶ୍ରୀରାମଙ୍କୁ ଛାଡ଼ି ତୁ ପର୍ଶୁରେ ବରିବୁ
ପର୍ଶୁରାମ ଅଙ୍ଗେ ବିଷ୍ଣୁକଳା ତୁ ଦେଖିବୁ ।
ଏତେ ବୋଲି ଜ୍ୟେଷ୍ଠ ସଙ୍ଗେ ବିଜେ କମଳିନୀ
କମଳା ସୀମନ୍ତେ ଯେ ଅନ୍ତର ହେଲେ ପୁଣି ।
ପାତାଳ ଛାଡ଼ି ମର୍ତ୍ତ୍ୟପୁରେ ପରବେଶ
ରାବଣ ବଳକୃତ୍ୟେ ରୂପ କଲା ନାଶ ।
ମାୟାରେ ସ୍ୱତୀ ଯାଇଁ ଜନକ ପୁରେ ମିଳି
ଲଙ୍ଗଳରେ ଚଷନ୍ତେ ମଞ୍ଜୁଷ ବାହାରି ।
ତେଣୁ ସେ ଜାନକୀ ଯେ ଅଯୋନୀ ସମ୍ଭୂତେଣ
କାଳେ ସେ ପ୍ରାପତ ହୋଇଲା ତୋତେ ରାମ ।
ବଳରାମ ଦାସ ବୋଲେ ଶ୍ରୀରାମ ଚରଣେ
ବାରେ ମୋତେ ରଖ ହେ ଜାନକୀ ରମଣେ ।
ଏଥୁ ଅନନ୍ତରେ ଯେ ପାର୍ବତୀ ଦେବୀ ଶୁଣ
ମାରକଣ୍ଡ ବୋଇଲେ ଶ୍ରୀରାମ ଆଗେଣ ।
କନିଷ୍ଠ ଭଗ୍ନୀ ତାହାର ବସିଣ ତପକରି
ଧରାବତି ନାମ ଯେ ଅଟଇ ତାହାରି ।
ନିବିଡ଼ ପ୍ରବାଳ ପୁରେ ତପ କରେ ବସି
ବାସୁଦେବ ନାମ ଯେ ମନରେ ତାର ଘୋଷି

ଚଉରିପାଶ ନିବିଡ଼ ମାଛିକି ବାଟ ନାହିଁ
ଗନ୍ଧମାରବନକୁ ବିମ୍ବର ଅଛଇ ।
ମର୍ତ୍ତ୍ୟପୁରକୁ ଯିବାକୁ ଯେ ଅଛଇଁ ତହିଁ ବାଟ
ସ୍ଫଟୀକ ସିଂହାସନ ତପକରେ କମଳାର ଅଂଶ ।
ଜ୍ୟୋତିଚନ୍ଦ୍ର ବୋଲିକରି ଏକଇ ନିଶାକର
ସେ ପୁରେ ବିଜେ କରିଛନ୍ତି ନିରନ୍ତର ।
ସଦାବେଳେ ଆଲୋକ ସେ ରଜନୀ ତହିଁ ନାହିଁ
ସହସ୍ରେ ଦାସୀଗଣ ତାର ସଙ୍ଗେ ରହି ।
ଅମୃତ ଭୋଜନ ଯେ କରନ୍ତି ନିରନ୍ତର
ପର୍ଶୁରାମ ସଙ୍ଗେ ଘେନି ସେ କନ୍ୟାକୁ ବର ।
ଯମଦଗ୍ନି ସୁତକୁ ବିଭା କର ତାକୁ
ତେଣୁ ତୁ ଏକବ୍ରତୀ ଏ ଜନ୍ମେ ଦେବାକୁ ।
ସେହି ପୁରେ ପର୍ଶୁରାମ ରହୁ ନିଶ୍ଚିନ୍ତେଣ
ଦୁଷ୍ଟଙ୍କୁ ମାରି ପ୍ରାଣ ପାଇଛି ସେହୁ ପୁଣ ।
ଯେତେବେଳେ ଇଚ୍ଛା ପର୍ଶୁରାମ ଯେ କରିବ
ତାର ମନ ଇଚ୍ଛା ହେଲେ ଏ ପୁରେ ଆସିବ ।
ପାତାଳ ଦିଗବିଜେ କରିବ ଯେତେବେଳେ
ସେ ପୁରକୁ ବିଜେ କରିବ ତେତେବେଳେ ।
ମାରକଣ୍ଡ କହିବାରୁ ଶ୍ରୀରାମ ଶୁଣିଲେ
ନମସ୍କାର କରିଣ ମୁନିଙ୍କି ବୋଇଲେ ।
ଜାନକୀ ବେଦମତୀ ସେହି ଧରାବତୀ
ମେରୁ ନାରୀ ଗର୍ଭୁଜାତ ଦୁଇ ଭଗ୍ନି ହୋନ୍ତି ।
ବେଦମତୀ କମଳା ଯେ ଜାନକୀ ରୂପେ ଜାତ
ଅନୁଗ୍ରହ କରିବାରୁ ଧରାବତୀ ହୃଦଗତ ।
ସେ ପୁରକୁ ମୁହିଁ ଯେ ଜିଣିବାକୁ କହିଲ
ତୁମ୍ଭେ ଯାଇ ପର୍ଶୁକୁ ଆଣଯା ସତ୍ୱର ।
ଶ୍ରୀରାମଙ୍କ ବଚନେ ମାର୍କଣ୍ଡ ଉଠିଲେ
କରଯୋଡ଼ି ଶ୍ରୀରାମ ଋଷିଙ୍କି କହିଲେ ।
ବୋଇଲେ ପୁଷ୍ପକ ବିମାନେ ଯାଇଁ ବସ
ମୁଁ ତୁମ୍ଭର ସଙ୍ଗେ ଯିବି ନୁହହେ ବିରସ ।
ଦୁଇଜଣ ଯାଇଣ ଆଣିବା ତାକୁ ବରି
ଏତେ କହି ପୁଷ୍ପକ ବିମାନ ପାଶେ ମିଳି ।
ମାର୍କଣ୍ଡ ଯାଇ ବିମାନ ପରେ ବସି
କାଣ୍ଡ କୋଦଣ୍ଡ ଧରି ଶ୍ରୀରାମ ବିଜେ ସେଥି ।
ମାତେଳୀକି ବୋଇଲେ ଯାନ ବାହା ତହିଁ
ନିରାମ୍ବର ବନେ ପର୍ଶୁରାମ ଯେ ଅଛଇଁ ।

ଶୁଣିଣ ମାଳତୀ ବେଗେ ରଥ ବାହିନେଲା
ନିରାମ୍ବର ବନେ ପର୍ଶୁରାମଙ୍କୁ ଦେଖିଲା ।
ଆସନ କରିଣ ଋଷି ବସିଛି ନିକାଞ୍ଚନେ
ମନ ପବନ ରଖିଛି ଛଡ଼ଚକ୍ରେ ଧ୍ୟାନେ ।
ଏହି ସମୟେ ଶ୍ରୀରାମ ମାରକଣ୍ଡ ମିଳି
ପୁଷ୍ପକ ଯାନପରୁ ବେଗେ ସେ ଉତୁରି ।
ପର୍ଶୁରାମ ଆଗରେ ହେଲେ ଯାଇଁ ଛିଡ଼ା
ନେତ୍ରରେ ଦେଖିବାରେ ଭାଗେ ତପଭରା ।
ଉଠିଣ ମାରକଣ୍ଡଙ୍କ ଚରଣେ ବିନତି
କି କାର୍ଯ୍ୟେ ଅକ୍ଷୟେ ଋଷି ବିଜେକଲେ ଏଥି ।
ଏମନ୍ତ ସମୟେ ଶ୍ରୀରାମଚନ୍ଦ୍ର ରାୟେ
ପର୍ଶୁରାମ ଚରଣେ ଓଳଗି ଯାଏ ହୋଏ ।
ସୁକଲ୍ୟାଣ କରିଣ ବୋଲେ ପର୍ଶୁଧର
କିମ୍ପାଇଁ ବିଜେକଲେ ବ୍ରହ୍ମାଣ୍ଡ ଠାକୁର ।
ମାରକଣ୍ଡ ବୋଇଲେ ଶୁଣରେ ପର୍ଶୁଧର
ପାତାଳକୁ ଦିଗବିଜେ କରିବେ ରଘୁପଧର ।
ଏ ରାମ ସଙ୍ଗତରେ ଚଳ ତୁ ବହନ
ପାତାଳ ଦୁଷ୍ଟଜନଙ୍କୁ ମାରି ଆସ ପୁଣ ।
ପର୍ଶୁଧର ବୋଇଲେ ଏ ଅଟନ୍ତି ନାରାୟଣ
ମୁହିତ ଋଷି ପୁତ୍ର ଯିବି କିମ୍ପା ପୁଣ ।
ତ୍ରୈଲୋକ୍ୟ ଯାହାର ଅଟଇ ଖେଳଘର
ଯାହାର ନାମ ଜପ କରନ୍ତି ଶଙ୍କର ।
ମାଇଲେ ମାରିବ ସେ ରଖିଲେ ରଖିବ
ମାନବ ରୂପେ ଜାତ ହୋଇଲେ ବାସୁଦେବ ।
ଅନନ୍ତ ଯାହାର ଲକ୍ଷ୍ମଣ ଭାଇ ଅଟେ
ଶଙ୍କର ହୋଇଣ ଚରଣରେ ଖଟେ ।
ଭରଥ ଆୟୁଧ ଯେ ଚକ୍ର ଅଟେ ପୁଣ
ଡାହାଣ ବୃତ ଶଙ୍ଖ ଅଟଇ ଶତ୍ରୁଘନ ।
ହନୁମନ୍ତ ଅଟେ ଯେ ଚତୁର୍ମୁଖ ବ୍ରହ୍ମା
ସୁଷେଣ ଅଟେ ଅଶ୍ୱିନୀକୁମାର ବୈଦ୍ୟସିନା ।
ଜମ୍ବେବ ଅଟନ୍ତି ଯେ ବୃହସ୍ପତି ଜାଣ
ଏତେବୋଲି ପର୍ଶୁଧର କହିଲେ ବଚନ ।
ମାରକଣ୍ଡ ବୋଇଲେ ହେ ପର୍ଶୁଧର ଶୁଣ
ସେ କଥାମାନ ସବୁ ଜଣାଅଛି ଜାଣ ।
ସେ ଯେବେ ନାରାୟଣ ତୁହି ଅଟୁ ନର
ନର ନାରାୟଣ ରୂପେ ଦୁହେଁ ଅବତାର ।

ଏ ଜନ୍ମରେ ସଙ୍ଗ ହୋଇ ପାତାଳ ଦୁଷ୍ଟମାର
ନର ନାରାୟଣ ସ୍ୱରୂପ ହୋଇଣ ବିହର ।
ପର୍ଶୁରାମ ବୋଇଲେ ଦୟାକଲ ଯେବେମୋରେ
ଯିବଇଁ ସଙ୍ଗତରେ ଶ୍ରୀରାମ ଦୟାରେ ।
ଏତେବୋଲି କୋଠାର କୋଦଣ୍ଡ କରେଘେନି
ବାସୁଦେବ ସୁମରି ବାହାର ପର୍ଶୁମଣି ।
ମାର୍କଣ୍ଡ ଋଷିଙ୍କି ଘେନି ଯାନରେ ବିଜେ କଲେ
ଶ୍ରୀରାମ ଯାଇକରି ରଥରେ ବସିଲେ ।
ମାତଳି ବାହିଣ ଯାନ ନେଲେ ଖରକରି
ଅଯୋଧ୍ୟା ନଗ୍ରରେ ପ୍ରବେଶ ହେଲେ ହରି ।
ଯାନରୁ ଓହ୍ଲାଇ ଯେ ଭିତର ପୁର ଗଲେ
ବାହାର ଜଗତିରେ ଯାଇଣ ବସିଲେ ।
ମାର୍କଣ୍ଡ ବୋଇଲେ ତୁମ୍ଭେ ଶୁଣ ପର୍ଶୁଧର
ବେଦମତୀ ଧରାବତୀ ଜନମ ସେଠାର ।
ଜାନକୀ ବେଦମତୀ ଧରାବତୀ ତପକରେ
ରାମ ଜାନକୀ ବିଭା ମିଥିଳା ନଗ୍ରରେ ।
ଧରାବତୀ ତୋରପାଇଁ ଅଛଇରେ ବାବୁ
ପାତାଳ ଦିଗବିଜେ ସାରିଲେ ତାକୁ ବିଭାହେବୁ ।
ନର ନାରାୟଣ ଦୁହେଁ ହୋଇଣ ଅଛ ଜାତ
ନାରାୟଣ ସଙ୍ଗତରେ କମଳା ସମ୍ଭୁତ ।
କମଳାର ଅଂଶରୁ ଯେ ଧରାବତୀ ହୋଇ
ତାକୁ ବିଭା ହେଲେ ତୁମ୍ଭ ତପସିଦ୍ଧ ହୋଇ ।
ପର୍ଶୁରାମ ବୋଲନ୍ତି ମୁଁ ତୋ ବଚନ ମାନି
ଯେଣୁ ଅକ୍ଷୟ ଋଷି ମୋ ପିତା ଅଟୁ ପୁଣି ।
ଦାଶରଥି ଯେବେ ମୋତେ କଲେଣି କରୁଣା
ସକଳ କଥା ମୋର ହୋଇଲା ଏବେ ବଣା ।
ମାରକଣ୍ଡ ବୋଇଲେ ରାମଚନ୍ଦ୍ର ଶୁଣ
ଭରଥ ଶତ୍ରୁଘନଙ୍କୁ ଡକାଅ ବହନ ।
ରଥ ସଜ କରନ୍ତୁ ଯେବେ ଯିବେ ପାତାଳକୁ
ଶୁଣିକରି ରାମ ଆଜ୍ଞା ଦେଲେ ଲକ୍ଷ୍ମଣଙ୍କୁ ।
ଆମ୍ଭେ ଆସିବାଯାଏ ଅଯୋଧ୍ୟା ରଖିଥିବୁ
ସନ୍ଥଜନମାନଙ୍କୁ ତୁ ସୁଖରେ ପାଳିବୁ ।
ଦୁଷ୍ଟଜନ ମିଳିଲେ ଯେ କରିବୁ ତାକୁ ନାଶ
ଏମନ୍ତ ବୋଲିଣ ଭାଇ ମନେକଲେ ତୋଷ ।
ଭରତ ଶତ୍ରୁଘନଙ୍କୁ ଅଣାଇ ବହନ
ସଜକର ଯାନ ଯିବା ପାତାଳ ଭୁବନ ।

ଭରଥ ରଥରେ ସିନା ଅଷ୍ଟ ସେନାପତି
ଶତ୍ରୁଘନ ରଥରେ ପଚିଶ ଯୂଥପତି ।
ତାଳଧ୍ୱଜ ରଥରେ ବସନ୍ତୁ ପର୍ଶୁରାମ ଆଗ
ମାରକଣ୍ଡ ଋଷି ଯେ ଯାଆନ୍ତୁ ତାଙ୍କ ସଙ୍ଗ ।
ତକ୍ଷଣେ ଅନ୍ତଃପୁରେ ଯାଇଣ ବିଜେକଲେ
ଜନନୀମାନଙ୍କୁ ଯେ ଶ୍ରୀରାମ କହିଲେ ।
ବୋଇଲେ ପାତାଳ ପୁର ଯାଉଅଛି ମୁହିଁ
ସେ ପୁରେ ଅସୁରମାନେ ଅଛନ୍ତି ଦୁଷ୍ଟହୋଇ ।
ଅଳପ ଦିନରେ ନାଶ କରିଣ ମୁଁ ପୁଣ
ପର୍ଶୁରାମ ଯାଉଛନ୍ତି ମୋହର ସଙ୍ଗେଣ ।
ସର୍ବ ଜନନୀଙ୍କୁ କହି ସୀତା ପାଖକୁ ଗଲେ
ଯାଉଛୁ ପାତାଳ ପୁର ବୋଲିଣ ବୋଇଲେ ।
ଜାନକୀ ବୋଇଲେ ପ୍ରଭୁ ମୋର କଥା ଶୁଣ
ପୂର୍ବର ଭଗ୍ନୀ ମୋର ଧରାବତୀ ପୁଣ ।
ତାହାକୁ ସୁଦୟା ତୁମ୍ଭେ କରିବ ଋପଧାରୀ
ଅନେକ କାଳରୁ ସେ ଯେ ତୁମ୍ଭଙ୍କୁ ସୁମରି ।
ରାମ ବୋଇଲେ ଶୁଣ ପ୍ରାଣର ବଲ୍ଲଭୀ
ସେଥିର ସକାଶେ ପର୍ଶୁରାମକୁ ନେଲୁଁ ଭାବି ।
ନର ଋଷିଙ୍କି ମୁଁ ଯେ ବିଭା କରାଇବି
ନର ନାରାୟଣ ଆମ୍ଭେ ଅଟୁଁ ଗୋ ଏକ ଭାବି
ଶୁଣିଣ ଜାନକୀ ମନେ ସନ୍ତୋଷ ହୋଇଲେ
ସଜକରି ଆସ ବେଗେ ବୋଲିଣ ବୋଇଲେ ।
ସର୍ବଶୁଭେ ବିଜେକଲେ ଶ୍ରୀରାମ ସେଠାରୁ
ପର୍ଶୁରାମ ମାର୍କଣ୍ଡଙ୍କୁ ବୋଇଲେ ଚ଼ଲ ବାବୁ ।
ତାଳଧ୍ୱଜ ବେଗେ ଯେ ସାଜିଲା ଦାରୁକ
ଦୁଇ ଋଷି ବସିଲେ ସେ ରଥେ ତୁରିତ ।
ଶତ୍ରୁଘନ ବିଜେକଲେ ଯୂଥପତି ଘେନି
ଭରତ ବିଜେକଲେ ସେନାପତି ଆଣି ।
ଅନେକ ବାଦ୍ୟ ମର୍ଦ୍ଦଳ ନିସାଣ ଘଣ୍ଟି ବାଜେ
ପୁଷ୍ପକ ଯାନ ପରେ ବିଜେ ରାମରାଜେ ।
ଆଗେର ଶ୍ୱେତ ପାରୁଆ ରାଜହଂସ ପହ୍ଲ
ରାମତାଳି ହରିବୋଲ ଶୁଭଇ ଗହଳ ।
ହୁଳହୁଳି ଜୟଶଙ୍ଖ ଦେଇଣ ବାହାରିଲେ
ଆଗରେ ପର୍ଶୁରାମ ପଛରେ ରାମ ଚ଼ଲେ ।
ମଧ୍ୟରେ ଦୁଇଭାଇ କରନ୍ତି ଗମନ
ହେମଗିରି ଜିଣି ମିଳିଲେ ବିନ୍ଧ୍ୟଗିରି ଜାଣ ।

ବଡ଼ ବାଟ ଦେଖିଣ ସେ ପଶିଲେ ପାତାଳେ
ତକ୍ଷକଙ୍କୁ ଭେଟିଲେ ପାତାଳ ଦୁଆରେ ।
ଦେଖି ତକ୍ଷକ ନାଗ ଓଳଗି ମେଲାଇଲା
ନର ନାରାୟଣ ରୂପେ ଦେଖିଲି ବୋଇଲା ।
ପାତାଳ ଧ୍ୱଂସନ ମୋର ହୋଇଲା ଏବେପୁଣ
ସେଠାରୁ ଦାଶରଥି ଚଳିଗଲେ ପୁଣ ।
ଦ୍ୱିତୀୟ ଦ୍ୱାରେ ଯାଇଁ ହେଲେ ପରବେଶ
ଅଷ୍ଟକୁଳା ନାଗ ଦେଖି ହୋଇଲେ ହରଷ ।
ନର ନାରାୟଣ ଦେକି ନମସ୍କାର କଲେ
ନେତ୍ରେ ଦେଖି କୃତାର୍ଥ ହୋଇଲୁଁ ବୋଇଲେ ।
ସେଠାରୁ ସେ ପର୍ଶୁରାମ ଋପଧାରୀ ଗଲେ
ତୃତୀୟ ଦ୍ୱାରରେ ଯେ ସର୍ପଙ୍କୁ ଦେଖିଲେ ।
ମଣିଚଳ ଭଦ୍ରଚୂଳ ଶଙ୍ଖଚୂଳ ପୁଣ
କିରଟୀ ଋଷିଙ୍କୁ ଦେଖି ହେଲେ ତୋଷମନ ।
ନର ନାରାୟଣ ଦେଖି ପାଦରେ ନମିଲେ
ସେଠାରୁ ରାମ ପର୍ଶୁରାମ ଚଳିଗଲେ ।
ଚତୁର୍ଥ ଦ୍ୱାରେ ଯାଇଁ ହେଲେ ପରବେଶ
ଅଷ୍ଟକୁଳା ନାଗ ଦେଖି ହୋଇଲେ ହରଷ ।
ସେଠାରୁ ନାଗବଳ ଦେଖିଲେ ବିଶେଷ
ନାଗବଳ ଦେଖିଣ ହୋଇଲେ ହରଷ ।
ନାଗବଳ ଆସିଣ ଚରଣେ ନମିଲେ
ସେଠାରୁ ଋଷିଙ୍କି ଘେନି ରାମ ଚଳିଗଲେ ।
ମଣିଭଦ୍ର ଶୁଭଭଦ୍ର ପଞ୍ଚମଦ୍ୱାରେ ଦେଖି
ଦୁଇ ମନ୍ତ୍ରୀ ରାମଙ୍କୁ ଯେ ଅଇଲେ ପାଛୋଟି ।
ରାଜାର ପୁରକୁ ବିଜେକର ହେ ବୋଇଲେ
ଚରଣେ ବିନତି ହୋଇ ବଚନ କହିଲେ ।
ଆଗରେ ବାଟ ଯେ କଢ଼ାଏ ଦୁଇଜଣ
ବାସୁକୀ ଆଗରେ ନେଇ ଭେଟାଇଲେ ପୁଣ ।
ମସ୍ତକେ ଧରଣୀ ଅଛି ବସିଛି ଅନନ୍ତ
ଦେଖି କରଦୁଇ ଯୋଡ଼ିଲେ ନାଗନାଥ ।
ବୋଇଲେ ଏତେକାଳେ ମୋର ଭାଗ ଦିଶି
ମୋର ପୁରେ ବିଜେକଲେ ବ୍ରହ୍ମାଣ୍ଡନାଥ ଆସି
ଏତେ ବୋଲି ଦୁଇ ମନ୍ତ୍ରୀ ଡାକି ନାଗରାଜା
ନର ନାରାୟଣଙ୍କୁ କରରେ ବେଗେ ପୂଜା ।
ଶୁଣିଣ ଦୁଇ ମନ୍ତ୍ରୀ ଗଙ୍ଗାଜଳ ଆଣି
ସମସ୍ତଙ୍କ ଚରଣ ଧୋଇଲେ ନେଇ ପୁଣି ।

ସୁଗନ୍ଧ ଚନ୍ଦନ ଯେ କର୍ପୂର ଧୂପ ଦୀପ
ଦେଇଣ ନାରାୟଣ ମନରେ କଲେ ତୋଷ ।
ବାସୁକୀ ନାଗରାଜାର ରାଣୀ ଆସି ପୁଣି
ଦୁଇ ମୁନି ଶିରରେ ଅର୍ଘ୍ୟ ଦେଲା ଜାଣି ।
ମଙ୍ଗଳ ଆଳତୀ କରି ରାମ ପାଶେ ମିଳି
ରାମଙ୍କୁ ବନ୍ଦାପନା କଲେ ନାଗନାରୀ ।
ଅନେକ ଅଳଙ୍କାର ସଙ୍ଗରେ ଆଣିଥିଲା
ସମସ୍ତଙ୍କ ଅଙ୍ଗରେ ଭୂଷଣ୍ଡ ନେଇ କଲା ।
ଭରଥ, ଶତ୍ରୁଘନଙ୍କ ଅର୍ଘ୍ୟ ଶିରେ ଦେଇ
ଦେଇଣ ନାଗନାରୀ ନମସ୍କାର ହୋଇ ।
ବାହୁଡ଼ି ନାଗନାରୀ ନବରେ ପ୍ରବେଶ
ଦେଖିଣ ମୁନିମାନେ ମନରେ ଯେହେଲେ ତୋଷ ।
ମନ୍ତ୍ରୀକି ବୋଇଲାରେ ଦେଖାଅ ପୁର ମାନ
କେମନ୍ତେ ସୁଖରେ ଯେ ଅଛନ୍ତି ତୁମ୍ଭ ସୈନ୍ୟ ।
ଅଠର କୋଟି ପୁର ବୁଲି ସେ ଦେଖିଲେ
ମାସେ ଛଡ଼ଦିନ ଯେ ସେଠାରେ ରହିଲେ ।
ମନରେ ଆନନ୍ଦ ଯେ ହେଲେ ରାମରାଣ
ଲକ୍ଷେ ଯୂଣରେ ବିକ୍ରମି ଅଛି ନାଗ ପୁଣ ।
ଅଠର କୋଟି ନାଗ ରଷି ନିଶ୍ଚଳେ ଆସନଦେଖି
ସେଠାରୁ ଚଳନ୍ତେ ଯେ ଦେଖିଲେ ସିଦ୍ଧ ଋଷି ।
ମାଂଯେସ ନାହିଁ ତାଙ୍କର ଅସ୍ଥି ଅଛି ବସି
ଶ୍ରୀରାମଚନ୍ଦ୍ର ଦେଖି ମନରେ ହେଲେ ଖୁସି ।
ନର ନାରାୟଣ ଦେଖି ନବଯୁବା ହେଲେ
ନର ନାରାୟଣଙ୍କୁ ଦେଖି ସୁକଲ୍ୟାଣ କଲେ ।
ଦୁଇମାସ ତିନିଦିନ ସେପୁରେ ବହିଗଲା
ସବୁ ପୁର ବୁଲି ରାମ ସେ ପୁରେ ରହିଲା ।
ସିଦ୍ଧ ଋଷିଙ୍କ ପୁରୁ ରାମ ହେଲେ ଯେ ବାହାର
ବଳି ପୁରେ ପ୍ରବେଶ ହେଲେ ଗଦାଧର ।
ଦେଖିଲେ ବଳି ପୁର ଉତ୍ତମ ସୁନ୍ଦର
ରଥନେଇ ରୁହାଇଲେ ବଳିର ସିଂହଦ୍ୱାର ।
ରଥରୁ ଓହ୍ଲାଇଲେ କୋଦଣ୍ଡ ଗଦାଧାରୀ
ଦୁଇ ମୁନି ଆଗରେ ପଛରେ ଚକ୍ରଧାରୀ ।
ଭରଥ, ଶତ୍ରୁଘନ ସଙ୍ଗେ ଯୂଥପତି ପୁଣ
ସିଂହଦ୍ୱାରେ ପଶିଲେ ଦ୍ୱାରପାଳକୁ ନ ମାନିଣ
ଗରିଦ୍ୱାର ଜିଣି ପଞ୍ଚମ ଦ୍ୱାରେ ହେଲେ
ବାମନ ନାରାୟଣଙ୍କୁ ସେ ପୁରେ ଭେଟିଲେ ।
ଦେଖିଣ ମାନବ ଯେ ନର ନାରାୟଣ
ବୋଇଲେ ବିଜୟ କିମ୍ପା ଏ ପୁରରେ ପୁଣ ।
ରାମ ବୋଲନ୍ତି ଏ ଅଟଇ କାହା ପୁର
ବାମନ ବୋଇଲେ ଏ ଅଟେ ବଳି ଦ୍ୱାର ।
ଶ୍ରୀରାମ ବୋଇଲେ ଆମ୍ଭେ ଭିତରକୁ ଯିବୁ
ବଳିରାଜା ପୁର ଦେଖି ବାହୁଡ଼ି ଆସିବୁ ।
ଶୁଣିଣ ବାମନ ଯେ ଦ୍ୱାର ଦେଲେ ଛାଡ଼ି
ବଳିର ଭିତର ପୁରେ ପ୍ରବେଶ ଚାପଧାରୀ ।
ବଳିରାଜା ଆଗରେ ଦୂତ ପୁଣି କହି
ତୋର ପୁରେ ବିଜେକଲେ ଶ୍ରୀରାମ ଗୋସାଇଁ ।
ଶୁଣିଣ ବଳି ନୃପତି ଆସନୁ ଉଠିଲା
ଗଳାରେ କୁଠାର ଦନ୍ତେ ତିରଣ ଧଇଲା ।
ସୁବର୍ଣ୍ଣ ଝରୀରେ ଗଙ୍ଗାଜଳ ସେ ପୁରାଇ
ସଙ୍ଗରେ ରାଣୀକି ଘେନି ରାଜନ ଆସଇ ।
ରାଣୀର କରେ ଅର୍ଘସ୍ଥାଳୀ ଧୂପକାଠି
ଆବର ଧରିଛି ରାଣୀ ମଙ୍ଗଳ ଆଳତୀ ।
ଶ୍ରୀରାମଙ୍କ ଆଗରେ ଦୁଇଜଣ ଉଭା
କୋଦଣ୍ଡ ଧରିଣ ରାମ ପାଏ ଶୋଭା ।
ଶ୍ରୀରାମଙ୍କୁ ନେତ୍ରରେ ଦେଖିଲେ ବଳି ବୀର
ଦୁର୍ବାଦଳ ସ୍ୱରୂପ ଶ୍ୟାମଳ କଳେବର ।
ଚରଣ ତଳରେ ଯାଇଁ ଓଳଗି ଶୋଇଲା
ନୀଳନ୍ଦି ଦଳ ଲୋଚନ ଦେଖିଲି ବୋଇଲା ।
ଉଠ ଉଠ ବୋଲିକରି ଶ୍ରୀରାମ ତୋଳିଦେଲେ
କିମ୍ପାଇଁ ବ୍ୟାକୁଳ ଚିତ୍ତ ହେଉଛୁ ବୋଇଲେ ।
ତୋର ପୁର ଦେଖିବାକୁ ଆମ୍ଭର ମନହେଲା
ମର୍ତ୍ତ୍ୟପୁରୁଁ ଅଇଲୁଁରେ ବୈଲୋଚନ ବଳା ।
ଏମନ୍ତ ସମୟେ ତାର ରାଣୀ ନୀଳାବତୀ
ଓଳଗି ମେଲାଇ ସେ ଶୋଇଲା ଧରିତ୍ରୀ ।
ରାମ ବୋଇଲେ ଉଠ ଉଠ ଗୋ ସତୀ ଏବେ
ତୋରଠାରୁ ଭାଗ୍ୟବନ୍ତ ନାହିଁ ଆଉକେଭେ ।
ଅସୁର କୁଳରେ ଭାଗ୍ୟବନ୍ତ ବଳିରାଜା
ଭଲ ଯୋଗେ ଜାତ ତୁ ବୈଲୋଚନ ତନୁଜା ।
ରାମ ବାଣୀ ଶୁଣି ବଳି କହଇ ବଚନ
ତୁମ୍ଭେ ଯାହାକୁ ଦୟାକର ସେହି ବଡ଼ଜାଣ ।
ଯାହାକୁ ନିର୍ଦ୍ଦୟା କର ସେ ତୋର ବଇରୀ
ବିପଦ ନାଶନ ବାନା ଅଟଇ ତୋହରି ।

ମୋରଠାରେ ସୁଦୟା ହେ କର କମ୍ବୁପାଣି
ଶ୍ୟାମଳ ଦଳ ରୂପ ଯେ ଦେଖିଲି ନେତ୍ରେପୁଣି ।
ବଳିର ପାଟରାଣୀ ଅଟେ ନୀଳାବତୀ
କରଯୋଡ଼ି ଜଣାଇଲା ଶୁଣ ଦାଶରଥି ।
ଆମ୍ଭେ ତୋର ଦାସ ଦାସୀ ଅଟୁଁ ସବୁଦିନେ
କାହାକୁ ମୁଁ ଅର୍ଘ୍ୟ ଦେବି କହ ସୁପ୍ରସନ୍ନେ ।
ଶ୍ରୀରାମ ବୋଇଲେ କଜ୍ଜ ଋଷିଙ୍କି ଆଗେ ଦିଅ
ସେଥିର ଉତ୍ତାରୁ ନର ଋଷିଙ୍କି ବନ୍ଦାଅ ।
ଶୁଣିକରି ନୀଳାବତୀ ଅର୍ଘ୍ୟସ୍ଥାଳୀ ଧରି
ମାର୍କଣ୍ଡ ଋଷିଙ୍କି ସେ ବନ୍ଦାପନା କରି ।
ଦୁର୍ବାକ୍ଷତ ଦେଇଣ ଚଳିଲା ସେ ପୁଣ
ପର୍ଶୁରାମ ଯତିଙ୍କି କଲା ସେ ବନ୍ଦାଣ ।
ରାମଙ୍କ ଶରୀରେ ନେଇ ଅର୍ଘ୍ୟ ବନ୍ଦାଇଲା
ଧୂପ ଦୀପ ଦେଇଣ ରାମଙ୍କୁ ତୋଷିଲା ।
ବାମ ନୟନରେ ଠାରିଦେଲେ ଚାପଧାରୀ
ଭରଥ ଶିରେ ଅର୍ଘ୍ୟ ବନ୍ଦାପନା କରି ।
ଶତ୍ରୁଘନ ଶିରରେ ଅର୍ଘ୍ୟ ପୁଷ୍ପ ଦେଲା
ବନ୍ଦାପନା ସାରି ନାରୀ ଆନନ୍ଦ ହୋଇଲା ।
ଦାସୀଗଣ ଘେନି ରାଣୀ ଲେଉଟିଲା ବେଗେ
ଅନ୍ତଃପୁରେ ପ୍ରବେଶ ହୋଇଲା ସରାଗେ ।
ମନରେ ସେ ଚିନ୍ତାକରେ ଶ୍ରୀରାମଙ୍କୁ ପୁଣି
ଏଥୁ ଅନନ୍ତରେ ବଳି ଶ୍ରୀରାମଙ୍କୁ ଘେନି ।
ତାହାର ନିଜପୁରରେ ବୁଲାଇ ଦେଖାଇଲେ
ସ୍ଫଟିକ ସିଂହାସନେ ନେଇଣ ବସାଇଲେ ।
ପର୍ଶୁରାମ ମାର୍କଣ୍ଡଙ୍କୁ ବସାଇ ସିଂହାସନେ
ଭରଥ ଶତ୍ରୁଘ୍ନଙ୍କୁ ବସାଇ ଆସନେ ।
ଚରଣ ଧୋଇଦେଇ ପୋଛଇ ଝୀନବାସେ
ଶୀତଳ ମଣୋହି ଆଣି ଦେଲାକ ହରଷେ ।
ଆଦର ଭାବପାଇ ଭୁଞ୍ଜିଲେ ସର୍ବଜନ
ଦୁଇଦିନ ସେଠାରେ ରହିଲେ ରାମରାଣ ।
ବଳିକି କହିଣ ଯେ ସେଠାରୁ ଚଳିଗଲେ
ସିଂହଦ୍ୱାରେ ଯାଇଣ ରଥରେ ବସିଲେ ।
ସେ ପୁରରୁ ଗମନ କଲେ ଚାପଧାରୀ
ବିରାଟ ନାରାୟଣ ପୁରେ ଯାଇଁ ମିଳି ।
ଦେଖିଲେ ନିର୍ମଳ ଯେ ଅଟେ ଶୀତଳପୁର
ଚାରି ଦ୍ୱାରେ ଚାରି ଯେ ପୁରୁଷ ଛନ୍ତି ତାର ।

ଶଙ୍ଖ ଚକ୍ର ଗଦା ପଦ୍ମ ଯେ ଧରି କରେ
ବସିଛନ୍ତି ସେହି ନାରାୟଣ ସ୍ୱରୂପରେ ।
ଦେଖି କରି ରାମ ରଥରୁ ଓହ୍ଲାଇଲେ
ସେମାନଙ୍କୁ ଶ୍ରୀରାମ ନମସ୍କାର କଲେ ।
ମାର୍କଣ୍ଡ, ପର୍ଶୁରାମ, ଭରଥ, ଶତ୍ରୁଘନ
ଅଷ୍ଟସେନା ପଚିଶ ଯୂଥପତି ଜାଣ ।
ନମସ୍କାର କଲେ ସେହୁ ତାହାଙ୍କ ଚରଣେ
ଶ୍ରୀରାମ ପଚାରନ୍ତି ଶୁଣ ହେ ନାରାୟଣେ ।
ଏ ପୁରେ କିଏ ଅଛି କହ ହେ ଆମ୍ଭଙ୍କୁ
ସେ ବୋଇଲେ ରାମଚନ୍ଦ୍ର ନଯାଅ ଏ ପୁରକୁ ।
ଏ ପୁରେ ବିଜୟେ ଯେ ଗୋଲେଖ ଠାକୁରାଣୀ
ଶ୍ରୀକୃଷ୍ଣଙ୍କୁ ଘେନିଣ ରାହାସ କରେ ପୁଣି ।
ଚଉଦ ନାରାୟଣ ଯେ ଏପୁରେ ବସାଇ
ଗଲେ ଶାପ ପାଇବୁଟି କୋଦଣ୍ଡ ଚାପଦେହୀ ।
ଶୁଣି କରି ରାମ ଯେ ସନ୍ତୋଷ ମନହେଲେ
ନଯିବା ବୋଲି କରି ମନରେ ବିଚାରିଲେ ।
ଏମନ୍ତ ସମୟରେ ଭିତରେ କୃଷ୍ଣ ଜାଣି
ତ୍ରୀପୁରାକୁ ବୋଇଲେ ଚଳ ଗୋ ଏହିକ୍ଷଣି ।
ଅନନ୍ତ ବାସୁଦେବ ମୋର ଦ୍ୱାରେ ଛିଡ଼ା
ଚତୁର୍ଭୁଜ ନାରାୟଣ ମନା ସେ ତାକୁ କଲା ।
ଫେରିଯିବାକୁ ସେ ଯେ କରନ୍ତି ବିଚାର
ତୁ ଯାଇ ତାହାକୁ ଯେ ଆଣିବୁ ସତ୍ୱର ।
ତାର ସଙ୍ଗେ ପର୍ଶୁରାମ ନର ଯେ ଅଛଇ
ନରନାରାୟଣଙ୍କୁ ଘେନି ଆସ ଯାଇ ।
ମାରକଣ୍ଡ କଜ୍ଜଋଷି ଅଛନ୍ତି ସଙ୍ଗରେ
ତାହାଙ୍କୁ ଆଣିବୁ ପୁଣି ନକରି ଅନ୍ତରେ ।
ଆଉ ସେ କାହାକୁ ନ ଛାଡ଼ିବୁ ପୁଣ
ଏତେବୋଲି ଆଜ୍ଞା ଦେଲେ ଗୋଲଖ ନାରାୟଣ ।
ଶୁଣିଣ ଶ୍ରୀକୃଷ୍ଣ ବାଣୀ ତ୍ରିପୁର ଚଳିଯାଇ
ଦୁଇଋଷି ରାମଙ୍କୁ ଯେ ଘେନିଣ ଆସଇ ।
ଗୋଲଖ ମଣ୍ଡଳ ଭିତରେ ନେଇ କଲେ
କିହୋ ବାସୁଦେବ ଯେ କି କଲୁ ବୋଇଲେ ।
ଶ୍ରୀରାମ ବୋଇଲେ ଦୈତ୍ୟ ଚାରିଜଣ ମୁଁ ମାରି
ଦେବତାଙ୍କୁ ନିଶ୍ଚିନ୍ତ ଯେ ସ୍ୱର୍ଗପୁରେ କରି ।
ଏବେ ଯେ ପାତାଳକୁ ଆସିଅଛି ମୁହିଁ
ଅସୁର ମାଇଲେ ଧରଣୀ ଉଶ୍ୱାସ ହୋଇବଇଁ ।

ପଛନ୍ତେ ମର୍ତ୍ତ୍ୟପୁର ଦୁଷ୍ଟନାଶ ଯିବେ
ତେବେ ନିଜପୁରକୁ ଚଳି ମୁଁ ଯିବି ଭାବେ ।
ଶୁଣିଣ ଶ୍ରୀକୃଷ୍ଣ ଯେ ବୋଇଲେ ବେଗେ ଯାଅ
ଦୁଷ୍ଟଜନ ମାରିଣ ସନ୍ଥଙ୍କୁ ଶାନ୍ତିଦିଅ ।
ଶୁଣିଣ ଶ୍ରୀରାମ ଯେ ନମସ୍କାର କଲେ
ମାର୍କଣ୍ଡ ପର୍ଶୁରାମ ଚରଣେ ନମିଲେ ।
ତତକ୍ଷଣେ ପୁରୁ ଯେ ହୋଇଲେ ବାହାର
ସିଂହଦ୍ୱାରେ ଛାଡ଼ିଦେଲା ତ୍ରୀପୁରା ନାରୀବର ।
ତ୍ରୀପୁରା ଆସିବାରୁ ସେ ଦ୍ୱାର ପଡ଼ିଲା
ପୁଷ୍ପକ ଯାନପରେ ଶ୍ରୀରାମ ବିଜେକଲା ।
ତାଳଧ୍ୱଜ ରଥରେ ବିଜେ ମାରକଣ୍ଡ
ପର୍ଶୁରାମଙ୍କୁ ଘେନି ଚଳେ ସମଦଣ୍ଡ ।
ସେଠାରୁ ଚଳିଯାନ୍ତେ ବିରୀଜା ପୁରେ ମିଳି
ଦେଖିଲେ ଅସୁର ଯେ ସେପୁରେ ଛନ୍ତି ପୁରି ।
ସେ ଦ୍ୱାରରେ ପ୍ରବେଶ ହେଲେ ଯାଇଁ ପୁଣ
ଅସୁରେ ବାଣ ବିନ୍ଧିଲେ ଦେଖିକରି ଟାଣ ।
ଶ୍ରୀରାମ ବୋଇଲେ ତୁମ୍ଭେ କଶ୍ବରଷି ଶୁଣ
ରଣଗୋଳ ହେଲାଟି ଯାଅ ଏଥୁଁ ପୁଣ ।
ଶୁଣି ମାରକଣ୍ଡ ମନ ପବନ ଦଣ୍ଡଚଢ଼ି
ବେଗେଣ ଗମନ କଲେ ସେ ଜଟାଧାରୀ ।
ଶ୍ରୀରାମ ବୋଇଲେ ହନୁମନ୍ତ ଶୁଣ
ଅସୁରଙ୍କୁ ମାର ତୁ ଓପ୍ରୋଧ ନ କରିଣ ।
ଶୁଣିଣ ଅଷ୍ଟସ୍ନେହା ରଥରୁ ଡେଇଁପଡ଼ି
ତାଙ୍କର ପଛରେ ଯେ ଯୁଥପତି ମିଳି ।
ଭରଥ, ଶତ୍ରୁଘନ ଭିତରେ ପଶିଲେ
କୋଦଣ୍ଡ କାଣ୍ଡଧରି ବାଣ ସେ ବିନ୍ଧିଲେ ।
ଛେଲଚକ୍ର ଶକତି ମାଇଲେ ଅସୁର
ସେହ୍ନା ଯୁଥପତି ଯେ କଲେକ ସମର ।
ପଡ଼ିଲେ ଅସୁର ବଳ କଦଳୀବନ ଜାଣି
ଶୁଣିଣ ସୁମାଳୀ ଦୈତ୍ୟ ଅଇଲେ ଯେ ଘେନି ।
ଚତୁରାଙ୍ଗ ବଳ ଯେ ସଙ୍ଗରେ ଘେନି ତାର
ମାର ମାର ଶବଦ କରେ ସେ ଗହଳ ।
ଭ୍ରଥର ଛାମୁରେ ଆସିଣ ସେ ମିଳି
ଦେଖି ଭ୍ରଥ ବୀର ବଜ୍ର ବାଟୁଳୀ ସଜକରି ।
ବାଟୁଳୀ ବାଜନ୍ତେ ସେ ଶୋଇଲେ ଦୈତ୍ୟବଳ
କୁମ୍ଭାସୁର ଆସିଣ ମିଳିଲା ଆଗର ।
ଶତ୍ରୁଘନଙ୍କୁ ସେ ଯେ ଆଗରେ ଓଗାଳିଲା
କଉକେଶାଣ ଯେ ଛାମୁରେ ମିଳିଲା ।
ତାର ସଙ୍ଗେ ପର୍ଶୁରାମ କଲେକ ସମର
କଳକଣ୍ଠ ମିଳିଲା ଯେ ଶ୍ରୀରାମ ଛାମୁର ।
ବଳିସୁର କଣ୍ଠସ୍ୱର ପଡ଼ିଲେ·ବତିଶ
ଶ୍ରୀରାମ ଅଙ୍ଗରେ ସେ ରଣକଲେ ଆସି ।
ସତୁରୀ ଜଣ ମିଳି ପର୍ଶୁରାମ ସଙ୍ଗତେଣ
ଶତେକ ଭରଥ ସଙ୍ଗରେ ଗୋଳପୁଣ ।
ଶତ୍ରୁଘନ ସଙ୍ଗରେ ଦୁଇଶତ ବେଢ଼ଦେଲେ
ବାରକୋଟି ଅସୁର ଯୂଥପତିଙ୍କି ଘୋଟିଲେ ।
ଲାଗିଲା ବଡ଼ଟାଣ ହେଲା ମହାରଣ
କୋଠର ଧଇଲେ ଯେ ପର୍ଶୁରାମ ପୁଣ ।
ହନୁମନ୍ତ ଧଇଲେ ପର୍ବତ ବେନିକରେ
ଅସୁରଙ୍କୁ ଦଳିଣ ଦେଲେ ଦଣ୍ଡକରେ ।
ଭରଥ, ଶତ୍ରୁଘନ ଛେଦନ୍ତି ଦୈତ୍ୟବଳ
ଅସୁର ବାରକୋଟି ମଲେ ଦଣ୍ଡକ ଭିତର ।
ଶ୍ରୀରାମ ଯେ କୋଦଣ୍ଡ କରେ ଧରିଥିଲେ
ଶତେକ ରଥୀଙ୍କି ସେ ହାଣି ପକାଇଲେ ।
ଶତ୍ରୁଘନ କୋଦଣ୍ଡ ଗୁଣ ଟଙ୍କାର କରି
ସୁମାଳୀ କୁମାଳୀ ଯେ ପ୍ରତିମାଳୀଙ୍କି ମାରି ।
ଭରତ ମାଇଲେ ଯେ ଶତେରଥୀ ପୁଣ
କୋଟିଏ ଅସୁର ଯେ ମାଇଲେ ହନୁମାନ ।
ସେହ୍ନା ଯୂଥପତି ଯେ ମାରେ ଏଗାର କୋଟି
ପର୍ଶୁରାମ ମାରେ ପାଞ୍ଚ ସହସ୍ର ସେନାପତି ।
ବାକି ଅସୁରେ ଯେ ପଳାଇଣ ଗଲେ
ରକତ ନଦୀ ଯେ ବହିଲା ସେ ପୁରରେ ।
ସେ ପୁରେ ଚହଳ ଯେ ପଡ଼ିଲାକି ବଡ଼
ଅସୁର ବଳ ମାଇଲେ ମାନବ ହୋଇଗାଢ଼ ।
ବିଧବା ଯୁବତୀ ଯେ ନଉ କୋଟି ଥିଲେ
ସହସ୍ର ଧରି ସେହୁ ରଣରେ ପଶିଲେ ।
ମାରନ୍ତି ଛେଲ ଚକ୍ର କାଣ୍ଡ ଯେ ଅପାର
ଦେଖିଣ ଶ୍ରୀରାମ ଯେ ହେଲେ ନିର୍ବିକାର ।
ସ୍ତିରୀ ବୋଲି ଓପ୍ରୋଧ ସମସ୍ତେ ଜାଣ କଲେ
ହନୁମନ୍ତ ସହିତେ ତାଙ୍କୁ କେହି ନ ମାଇଲେ ।
ବଳବାନ ହୋଇଣ କରନ୍ତି ସ୍ତିରୀରଣ
ବାଶେଳିକି ସୁମରଣା କଲେ ରାମରାଣ ।

ଚଉଷଠୀ ଯୋଗ୍ନୀ ଘେନି ପ୍ରବେଶ ବାଣେଳୀ
ବୋଇଲେ ଶ୍ରୀରାମ ଦେଖ ଅସୁରୀଙ୍କ କଳି ।
ଶ୍ରୀରାମ କହନ୍ତେ ଯେ ଯୋଗ୍ନୀ ବଳ ମିଳି
ଅସୁରୁଣୀମାନଙ୍କୁ ଖାଇଲେ ବିଦାରି ।
ଦଣ୍ଡକେ ସକଳ ଅସୁରୁଣୀ ତହିଁ ମଲେ
ରାମ ପର୍ଶୁରାମ ଦେଖି ତାଟକା ହୋଇଲେ ।
ରାମାୟଣ ଯୁଦ୍ଧରେ ପ୍ରଶସ୍ତ ଜମ୍ବୁମାଳୀ
ଏଦୁହେଁ ସୁମାଳୀର କୁମର ମହାବଳୀ ।
ଲଙ୍କାରେ ଏ ଦୁହେଁ ପଡ଼ିଲେ ରଣକରି
ସେଠାରେ ହନୁମନ୍ତ କରତାଳି ମାରି ।
ଜମ୍ବୁମାଳି କୁମର ବିଜୁମାଳୀ ପୁଣ
ପ୍ରଶସ୍ତର କୁମର ସୁରେନ୍ଦ୍ରମାଳୀ ଜାଣ ।
ପିତାଙ୍କ ସ୍ଥଳରେ ଅନେକ ଯୁଦ୍ଧ କଲେ
ସୁମାଳୀ ପୁତ୍ରନାତି ରଣରେ ହଜିଲେ ।
ବିଜୁମାଳୀର ଯେ ଗୋଟିଏ ପୁତ୍ରଥିଲା
ସୁମାଳୀ ଘେନି ତାକୁ ପଳାଇ ଅଇଲା ।
ସେହି ସ୍ଥାନରେ ଯେ ମିଳିଲେ ଶ୍ରୀରାମ
ସୁମାଳୀକି ମାରି ଦୈତ୍ୟ ବଳ ମାରି ପୁଣ ।
ଦୈତ୍ୟବଳ ମାରିବାରୁ ଅସୁରୀ ଯୁଦ୍ଧକଲେ
ଯୋଗ୍ନୀଙ୍କର ହସ୍ତରେ ସେହିନାଶ ଗଲେ ।
ଆଉ ଯେତେ ଅସୁର ସେହିପୁରେ ଥିଲେ
ଘରଦ୍ୱାର ଛାଡ଼ିଣ ପଳାଇ ସକଳେ ।
ବନସ୍ତରେ ବିମ୍ବରେ ଯାଇଣ ପଶିଲେ
ସେପୁରେ କେହି ଆଉ ଗୋଟିଏ ନ ରହିଲେ ।
ତାହା ଦେଖି ବିଜୁମାଳି ନାରୀମାନେ ଭାଳି
ଗିରିମାଳୀ ପୁତ୍ରକୁ ବୋଲେ କୋଳେ ଧରି ।
ନାରାୟଣେ ଦୋଷୀ ହୋଇ ଆମ୍ଭର ବଂଶମଲେ
ଆମ୍ଭର କୁଳରେ ତୁ ରହିଲୁରେ ଭଲେ ।
ଏବେ ତ ପରଜା ସୈନ୍ୟ ବଳ ଗଲେ କେଣେ
କେମନ୍ତେ ବଞ୍ଚିବା ବାବୁ ଶତ୍ରୁ ଭୟ ଏଣେ ।
ଗିରିମାଳୀ ବୋଇଲା ମୋତେ ତୁ ଘେନି ଚଳ
ଶ୍ରୀରାମ ଆଗରେ ମୋତେ ଘେନିମିଳ ।
ତାହାର ଚରଣେ ମୁହିଁ ଯେ ପଶିବି ଶରଣ
ଦୟାଳୁ ପୁରୁଷ ଅଟେ ପ୍ରଭୁ ନାରାୟଣ ।
ବିଭୀଷଣ ଶରଣ ଯେ ରଖିଲେ ଋପଧାରୀ
ଏତେ ବୋଲି କୋଠାର ଗଳାରେ ନେଇ ଭରି ।

ଅନ୍ତରେ ତିରଣ ନେଇ ଧଇଲା ଗିରିମାଳୀ
ଜନନୀକି ଘେନିଣ ବେଗେ ଗଲାଚଳି ।
ଶ୍ରୀରାମ ଚରଣେ ଯାଇ ଶୋଇଲା କୁମର
ରଥରୁ ଓହ୍ଲାଇ ରାମ ଅଇଲେକ ଖର ।
କୁମରକୁ ତୋଳିଣ ସେ କୋଳରେ ନେଇଧରି
କିପାଇଁ ରୋଦନରେ କରୁଛୁ ଗିରିମାଳୀ ।
ଏତେବୋଲି ତାରଶିରେ ପାଟକେ ବାନ୍ଧିଲେ
ଏପୁରେ ରାଜନ ତୋତେ କଲୁରେ ବୋଇଲେ ।
ଧବଳ ଛତି ଟେକାଇ ନେଲେ ନିଜପୁର
ସିଂହାସନେ ବସାଇଲେ ନେଇ ଦଶରଥବାଳ ।
ପ୍ରବୋଧ କରିଣ ରାମ ସେଠାରୁ ବେଗେ ଆସି
ପୁଷ୍ପକ ବିମାନେ ଯାଇଣ ବେଗେ ବସି ।
ସେ ପୁରୁ ବାହାର ଯେ ହୋଇଣ ଚଳିଗଲେ
ମାରକଣ୍ଡ ଋଷିଙ୍କି ଯାଇଁ ନମସ୍କାର କଲେ ।
ଦ୍ୱାରେଣ ଅନେକ ବଳି ଅଛନ୍ତି ସେ ପୁରି
ସେହ୍ନାପତି ପାଦାନ୍ତି ଯେ ଘୋର ରଡ଼ିକରି ।
ସେ ପୁରରେ ରାଜା ଅଟେ କେଶରୀ ସିଂହଜାଣ
କରଯୋଡ଼ି ଦୂତ କହେ ରାଜାଙ୍କୁ ଆଗେଣ ।
ତୋର ଦ୍ୱାରେ ପରଶତ୍ରୁ ଆସିଣ ଏବେମିଳି
ସୈନ୍ୟବଳ କେହି ନାହିଁ ସଙ୍ଗତେ ତାଙ୍କରି ।
ଋରିରଥେ ଶତେଯେ ତିରିଶି ଜଣ ରଥୀ
ରଣ କରିବାକୁ ସେ ଯେ ଆସିଣ ଅଛନ୍ତି ।
କେଶରୀ ସିଂହ ବୋଇଲେ କରରେ ରଣଯାଇ
ଗୋଳମାଳ ହେଲେ ମୋତେ ପଠିଆଅ କହି ।
ଶୁଣିଣ ଦୂତ ବେଗେ କହିଲା ସରଦାରେ
ଯୁଦ୍ଧ କରିବାକୁ ରାଜା କହିଲେ ତୁମ୍ଭରେ ।
ଶୁଣିକରି ସେନାପତି କଲେ ଘୋରରଣ
ଏଥୁ ଅନନ୍ତରେ ଗୋ ଭଗବତୀ ପୁଣ ।
ବିନ୍ଧନ୍ତି ଛେଲା ଚକ୍ର କାଣ୍ଡ କୋନ୍ତ ଧରି
ଅସୁରାସୁର ମାରିଣ ଅନ୍ଧାର ସେ କରି ।
ତାହା ଦେଖି ଶତ୍ରୁଘନ ସର୍ଯ୍ୟଶର କରି
ତିମିର କେଣେ ଗଲା ଆଲୋକ ହେଲା ପୁରୀ ।
ଅନେକ ଶସ୍ତ୍ର ଯେ ମାଇଲେ ଦୈତ୍ୟବଳ
କାଣ୍ଡରେ ଛାଇ ହେଲା ସୂର୍ଯ୍ୟ ସେ ମଣ୍ଡଳ ।
ଦେଖିଣ ଶତ୍ରୁଘନ ମନଭେଦୀ ମାରି
ସକଳ ନାରାଜକୁ ପକାଏ ନିବାରି ।

ଦେଖିଣ ଦୈତ୍ୟବଳ ଘେରିଲେ ଚଉପାଶ
ଶତେପୁର ମଧ୍ୟେ ରହିଲା ସୁମେତ୍ରାର ଶିଷ୍ୟ ।
ଶତ୍ରୁଘନ ରଥରେ ଯେ ସେନାମାନେ ଥିଲେ
ପଞ୍ଚଶ ଯୂଥପତି ଯେ ଡେଇଁଣ ପଡ଼ିଲେ ।
ଜଣକୁ ଜଣ ଧରିଣ କରନ୍ତି ବୀର
ହସ୍ତୀ ଘୋଡ଼ା ସାରେଣୀ ପଡ଼ିଲେ ଧରଣୀର ।
ଶତୃଘନ ହୁଁ କାରି ବିନ୍ଧଇ ଶରଟାଣି
ଥରକରେ ସସ୍ରେ ଶତେ ପକାଏ ପୁଣହାଣି ।
ଅସୁର ଶର ଶତୃଘନ ଦେହେ ପଡ଼ି
ଦେଖିଣ ପର୍ଶୁରାମ ରଥ ତେଜ୍ୟାକରି ।
କୋଠାର ଧରି କରେ ପଶିଲା ସମରେ
ତମ୍ଭାଚକ୍ର ପ୍ରାୟେ ନେତ୍ର ତାର ବୁଲେ ଖରେ ।
କ୍ରୋଧରେ ଜର୍ଜର ଯେ ରେଣୁକା କୁମର
କୋଠାର ଧାରି ମାରନ୍ତେ ପଡ଼ିଲେ ଦୈତ୍ୟବଳ ।
ଶତ୍ରୁଘନ ହାଣଇ ଯେ ମାରନ୍ତି ଯୂଥପତି
ଅଠର କୋଟି ବଳ ଯେ ହୋଇଲେ ନିପାତି ।
ଶ୍ରୀରାମ କକୟ ଯେ ରଥରେ ଛନ୍ତି ବସି
ଧନୁଶର ସେହୁ ଯେ କରରେ ନିବେଶି ।
ଭାଜିଲେ ଦୈତ୍ୟବଳ ନ ରହିଲେ କେହି
ପଛରେ ପରଶୁରାମ ଗୋଡ଼ାଇ ମାରଇ ।
ଦେଖି କରି ଦୂତ କେଶରୀ ସିଂଘେ କହି
ଦୁଇଜଣ ବଳ ତାର ମାଇଲେ ଘିନାଇ ।
ଶୁଣି କେଶରୀ ସିଂହ ପୁତ୍ରକୁ ଡକାଇଲା
ଲକ୍ଷେ ଷାଠିଏ ସସ୍ର କୁମରଙ୍କୁ ଆଜ୍ଞାଦେଲା ।
ମାର ଶତୃଙ୍କରେ ଚତୁରଙ୍ଗ ବଳ ଘେନି
ମାନବ ମର୍କଟ ଆସି କରନ୍ତି ରଣ ପୁଣି ।
ଶୁଣିଣ ଅସୁରଗଣ ଧାଇଁଲେ ଅତିରାଗେ
ମାର ମାର ବୋଲି ଶର ବରଷନ୍ତି ବେଗେ ।
ମାରୁତି ଯୁଦ୍ଧ କଲା ଅସୁରଙ୍କର ସଙ୍ଗେ
ଆଗରେ ପିଟଇ ପଥର ମାରି ବେଗେ ।
ଆଗପଛେ ସମର କରନ୍ତି ହନୁମନ୍ତ
କୋନ୍ତ ଛେଲ ଚକ୍ର ଯେ ପଡ଼ଇ ହୃଦଗତ ।
ନମାନି କପୀଶ୍ୱର ଯେ କରଇ ଘୋରରଣ
କ୍ଷୀର ସାହେର କି ମନ୍ଦର ମନ୍ଥେ ପୁଣ ।
କେତେବେଳେ ବୃକ୍ଷରେ ପିଟେ ଦୈତ୍ୟବଳେ
କେତେବେଳେ ପର୍ବତ ମାରେ ନେଇବୀର ।

କେତେବେଳେ ପକ୍ଷୀର ପ୍ରାୟେ ପଡ଼ିଯାଇଁ
ଶୂନ୍ୟରେ ଯାଇଁଣ ଯେ ସିଂହ ରଡ଼ିଦେଇ ।
କେତେବେଳେ ତଳେ ହୁଅଇ ପରବେଶ
କେତେବେଳେ ରଥେ ନେଇଁ କରେଡ଼େଆର ରଥ ।
ଏମନ୍ତ ଯୁଦ୍ଧକରେ ପବନର ସୁତ
ଲକ୍ଷେବାର ଶସ୍ତ୍ର ମାଇଲା ଦଇତ୍ୟ ।
ତିନିସସ୍ର ରଥୀଙ୍କି କରେଡ଼େ ଧରିକରି
ଦୁଇସସ୍ର ସେହ୍ନାପତି ପକାଇଲା ମାରି ।
ଚମକି ମାରଇ ଯେ ଉଡ଼େ ରଥ ଘେନି
ଶୂନ୍ୟରୁ ଛାଡ଼ି ବୋଲେ ସମସ୍ତେ ଧନି ଧନି ।
ଦେଖିଣ ଦୈତ୍ୟବଳ ଆଶ୍ଚର୍ଯ୍ୟ ହୋଇଲେ
ଉପରକୁ ଅସୁରୁଣୀ ପୁଣ ଯେ ଚହିଁଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ପଞ୍ଚଶ ଯୂଥପତି ଯେ ଅଷ୍ଟସେହ୍ନା ପୁଣ ।
ଏମାନେ ଯୁଦ୍ଧକରି ମାରନ୍ତି ଅସୁର
ହନୁମନ୍ତ ମାରୁଣି ତ ସମସ୍ତଙ୍କୁ ବଡ଼ ।
ଅସୁରେ କିଏ କାହାକୁ ନକଲେ ସମର
ଏମାନଙ୍କୁ ଅସୁରେ କି ଓପ୍ରୋଧକଲେ ଗାଢ଼ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ଅସୁର ଯେତେଶର ମାରନ୍ତି ସେ ପାଞ୍ଚ ।
ଏହାଙ୍କର ସଙ୍ଗରେ ଶତ୍ରୁଘନ ଥିଲା
ମନଭେଦୀ ଶରରେ ଯେ କାଟି ପକାଇଲା ।
ତେଣୁ ଯେ ଦୈତ୍ୟଙ୍କର ଶର ନ ଭେଦେପୁଣ
ଅଚିନ୍ତାରେ ସେହ୍ନାପତି ମାରେ ଦୈତ୍ୟରାଣ ।
ରୋଧିର ନଦୀ ଯେ ଗୋଟାଏ ବହେ ଟାଣ
ସୁତାଳ ବିମ୍ବରରେ ପଶିଲା ଯାଇଁ ପୁଣ ।
ସୁତାଳେ ବୋହିଯାଇ ସିନ୍ଧୁରେ ପ୍ରବେଶ
କୋଟି କୋଟି କବନ୍ଧ ନାଚିଲେ ନଦୀତଟ ।
ପାର୍ବତୀ ବୋଲନ୍ତି ଯେ ଶୁଣିମା ହେଉ ହର
ଏଥିର ଉତ୍ତାରୁ କିସ କଲେ ଚପଧର ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଭରତ ଶତୃଘନ ସମର କରନ୍ତି ।
ସତୁରୀ ସହସ୍ର ବଳ କେଶରୀ କୁମରର
ଛେଲ ଚକ୍ର ନାରାଜ ବିନ୍ଧନ୍ତି ନିରନ୍ତର ।
ଛେଦନ୍ତି ଦୁଇଭାଇ ଧାରଣ ଧନୁଶର
ପ୍ରତିଶର କରନ୍ତି ଭ୍ରତ ଶତ୍ରୁଘନ ବୀର ।

ବଜ୍ରଶର ଲାଙ୍ଗିଆ ବାଣ ଯେ ହାବେଳୀ
ମାରନ୍ତି ଅସୁରେ ଭୟ ସେ ନ କରି ।
ବ୍ରହ୍ମଶର ବାବଲ ପ୍ରତିଶର ମାରି
ଅସୁର ଶର ମାରିଣ କୁହୁଡ଼ା ଶର ମାରି ।
କେତେବେଳେ ରଜନୀ କେତେବେଳେ ଦିବସ
ରଣ ଗୋଳ ଭୟରେ ନ ଯାଇ ଜଣା ସେତ ।
ଛେଦନ୍ତି ଦୁଇ ଭାଇ ମାରନ୍ତି ପ୍ରତିଶର
ତେଣେ ଶର ମାରନ୍ତି ଏଣେ ମରନ୍ତି ଅସୁର ।
ଏମନ୍ତେ ରାତ୍ର ଦିବସ ସାତଦିନ ଗଲା
ସତୁରୀ ସସ୍ର ବଳ ମାଇଲେ ଦୁଇଭାଇ ପରା ।
କେତେବେଳେ ମାରି କେତେବେଳେ ଶରଛେଦି
ଏହିମତେ ଦୁଇଭାଇ ଦେଲେ ଅସୁର ଶୋଧି ।
ରୋଧିର ନଦୀ ଯେ ସ୍ଥିର ହେବାକୁ ନାହିଁ
କବନ୍ଧ ନାଚିବାର ଥୟ ଯେ ନୁହଇ ।
ଖେଚରୀ ପୀଉଶୁଣି ଆହାର ସନ୍ତୋଷରେ
ଶ୍ରୀରାମଙ୍କୁ ବୋଲନ୍ତି ମାର ହେ ଦୈତ୍ୟବଳେ ।
ଆନନ୍ଦ ହୋଇଣ କରନ୍ତି ନୃତ୍ୟ ଗୀତ
ବୋଲନ୍ତି ଭଲେ ଥାଅ ହେ ଦଶରଥ ସୁତ ।
ଅନେକ ମଦମାଂସ ରୋଧିର ଭୁଞ୍ଜାଇଲୁ
ଅନେ କାଳକୁ ତୁ ତ୍ରିପୁତି କରାଇଲୁ ।
ତୁ ଯେବେ ଶୁଭେ ଥିବୁ ଆମ୍ଭେ ବଡ଼ ସୁଖୀ
ଏମନ୍ତ ବୋଲି ଦେବୀ କଲ୍ୟାଣ କରନ୍ତି ।
ପାର୍ବତୀ ବୋଇଲେ ଶୁଣ ଏକାଦଶ ରୁଦ୍ର
ସେଠାରୁ କିସ ହେଲା କହ ଯୁଦ୍ଧ ଭେଦ ।
ଈଶ୍ୱର ବୋଇଲେ ଶୁଣ ଗୋ ଶାକମ୍ଭରୀ
ରାମ ପର୍ଶୁରାମ ପଶିଣ ଯୁଦ୍ଧ କରି ।
ନୀଳ ଧବଳ ବଉଳ ତିନି ସଂଘ ପୁତ୍ର
ଷାଠିଏ ସସ୍ର ଯେ ତିନିଙ୍କ ଠାରୁ ଜାତ ।
ସେମାନେ ବେଢ଼ ଦେଲେ ଯାଇକରି ପୁଣ
ରାମ ପର୍ଶୁରାମଙ୍କୁ ଘେରିଲେ ଯାଇଣ ।
ଅନେକ ପ୍ରକାରରେ ମାରନ୍ତି ଶର ପୁଣ
ଛେଲ ଚକ୍ର ଶକତି ଲାଉ ଯେ କୁନ୍ତ ପୁଣ ।
ଏଥୁ ଅନନ୍ତରେ ଯେ ଭଗବତୀ ଶୁଣ
ଶ୍ରୀରାମ ଯେ କୋଦଣ୍ଡ ଧରିଛନ୍ତି ପୁଣ ।
ସମସ୍ତଙ୍କ ମାରୁଣୀ ଦେଖିଲେ ରାମରାଣ
ନାରାୟଣ ତେଜ ପ୍ରକାଶ କଲେ ପୁଣ ।

ଶାରଙ୍ଗ ଧନୁରେ ଯେ ଯୋଚିଲେ ନେଇ ଶର
ନାରାୟଣ ଶରକୁ ଯେ ବିନ୍ଧେ ରଘୁଧର ।
ଅସୁରଙ୍କ ଶରକୁ ଛେଦନ୍ତି ଆଡ଼େ କରି
କାଟିଲେକ ଅସୁର ପଡ଼ିଲେ ସବୁ ଟଳି ।
ତେତେବେଳେ ଶ୍ରୀରାମ ଯେ ବିଶ୍ୱରୂପ ହେଲେ
ନୟନ ଚନ୍ଦ୍ର ସୂର୍ଯ୍ୟ ଉଦୟ ପ୍ରାୟେ କଲେ ।
ଅଠେଇଶି ବାର ଯେ ପେଶିଲେ ରାମ ଶର
ଅଠେଇଶି କୋଟି ଅସୁର କଲେକ ସଂହାର ।
ତେତେବେଳେ ପୁଷ୍ପକଯାନ ସ୍ୱର୍ଗରେ ଯାଇଲାଗି
ଯେତେ ଦୈତ୍ୟ ବଳ ଥିଲେ ପଳାଇଲେ ଭାଗି ।
କେବଳ ଛଡ଼ ରଥି ଯେ ରହିଲେ ରଣ ଭୂଇଁ
ବିନ୍ଧୁଛନ୍ତି ଶର ଯେ କୋଟି କୋଟି ହୋଇ ।
ଗଉରୀ ସିଂଘ ଅସୁର ମାୟା ଯେ ପୁଣ କଲା
ପଥର ଘରରେ ରାମ ବଳ ଲୁଚାଇଲା ।
ଗୋଟିକ ଘରରେ ଗୋଟିଏ ରହେ ପୁଣ
ଲୁଚିଲେ ସମସ୍ତେ ଯେ ରାମ ସହିତେଣ ।
ପଥର ଘର ମୁଦ ଅନ୍ଧାର ଦିଶଇ
ଯେଉଁ ରଥ ଯେଡ଼େ ମନାସିକ ହୋଇ ।
ପୁଷ୍ପକ ବିମାନ ଯେ ତାଳଧ୍ୱଜ ପୁଣ
କଣୟର ରଥ ଧ୍ୱଜ ଅସୁର ବଳ ଜାଣ ।
ପଚିଶ ଯୁଥପତି ଅଷ୍ଟସେନା ମୂଳେ
ସମସ୍ତଙ୍କୁ ବନ୍ଦିକଲା ପଥରର ଘରେ ।
ଭିନ୍ନେ ଭିନ୍ନେ କଲା ଯେ କେ କାହାକୁ ନଦେଖି
ଅନ୍ଧ ପଟଳ ଦେଇଣ ସମସ୍ତଙ୍କୁ ରଖି ।
ଦେଉଳ ଭିତରେ ହନୁମନ୍ତ ଯେ ବିଚାରି
ରାରି ରାବଣଙ୍କୁ ଏ ଅଟେ ବଡ଼ ଭାରି ।
ମାୟାରେ ପଥର ଘରେ ରୁନ୍ଧିଲା ସକଳ
ସବୁ ପାରିବାର ପଣ ଯାଉଛି ଆମ୍ଭର ।
ଏତେ ବୋଲି ମାରୁତି ନାତେକ ମାଇଲା
ମୁଥେକ ପ୍ରହାରନ୍ତେ ଦେଉଳ ଭଜିଲା ।
ମାୟା ଦେଉଳୁଁ ବାହାର ପବନର ସୁତ
ଆଉ ଦେଉଳେ ନେଇ ମାଇଲାକ ନାତ ।
ସେ ଦେଉଳ ଭାଜନ୍ତେ ସୁଷେଣ ବାହାରି
ବୋଇଲା ମାରୁତି ଏ ବିଷମ ଯୁଦ୍ଧ କରି ।
ପାଷାଣ ଦେଉଳେ ଏ ସଭିଙ୍କି ବନ୍ଦି କଲା
କେମନ୍ତେ ବାହାରିଲୁ ପବନର ବଳା ।

ମାରୁତି ବୋଇଲା ଏବେ ଶୁଣ ମନ୍ତ୍ରୀବର
ବୁଦ୍ଧି ମୋତେ ନ ଦିଶିଲା ନିବିଡ଼ ପଥର ।
ନାତେକ ମାରି ମୁଁ ଯେ ମୁଥେକ ପ୍ରହାରିଲି
ଦେଉଳ ଭାଜିବାରୁ ମୁଁ ବାହାର ହୋଇଲି ।
ବୋଇଲି ଏ ଦେଉଳେ କିଏ ଅଛି ପୁଣ
ଏତେ ବୋଲି ନାତେକ ମାଇଲି ପୁଣ ।
ଦେଉଳେ ଭାଜନ୍ତେ ଯେ ବାହାର ହେଲୁ ତୁହି
କିସ କଥା ହେ ସୁଷେଣ ମନ୍ତ୍ରୀ ରହି ।
ସୁଷେଣ ବୋଲେ ମାରୁତି ଶୁଣ ମୋ ବଚନ
ଋରିଜଣ କେଉଁ ଦେଉଳେ ନ ଯାଏ ବାରଣ
ନାତ ମୁଥ ମାଇଲେ ବିଷ୍ଣୁଙ୍କୁ ମାଇଲା ପରି
କେମନ୍ତେ ବାହାର ଆମ୍ଭେ କରିବା ଋପଧାରୀ ।
ପର୍ଶୁରାମ ଅଟନ୍ତି ଯେ ଦ୍ୱିତୀୟ ନାରାୟଣ
ଶ୍ରୀରାମ ଅଟନ୍ତି ଯେ ବାସୁଦେବ ପୁଣ ।
ଭରଥ, ଶତ୍ରୁଘନ ବିଷ୍ଣୁର ଯେ ଦେହ
ନାତ ମାରିବାର କେଭେ ଉଚିତ ଯେ ନୁହଁ ।
ମାରୁତି ବୋଇଲେ ତେବେ କରିବା କିସ ପୁଣ
ସୁଷେଣ ବୋଇଲେ କଥାଏ କରିବା ବିଶେଷ ।
ଏତେ ବୋଲି ପୋଥି ଯେ ଦେଖିଲେ ସୁଷେଣ
ମୁଦ ପଥର ଘରକୁ ଔଷଧ ଅଛି ପୁଣ ।
ବିଷ୍ଣୁର ପାଟରାଣୀ କମଳା ଅଟେ ପୁଣ
ତା ଛଡ଼ା ଅଳତା ଲାଗିଲେ ପଥର ପାଣି ଜାଣ ।
ତୁ ଏବେ ଅଯୋଧ୍ୟାକୁ ଚଳ ହୋ ମାରୁତି
ସୀତାର ଛଡ଼ା ଅଳତାଆଣ ତୁ ଝଟତି ।
ରାତ୍ର ଥାଉଁ ଆସିବୁଟି ନୋହିବୁ ବାଟବଣା
ରାତ୍ର ପାହିଲେ ଅସୁର କରିବେଟି ଊଣା ।
ଏମନ୍ତ ବଚନ ମାରୁତି ସୁଷେଣଠାରୁ ଶୁଣି
ମାରୁତି ବେଗ୍ରରେ ଯେ ଗମନ କଲା ପୁଣି ।
ରାମ ନାମ ସୁମରି ସେ ହୋଇଲା ବାହାର
ବିମ୍ବରରେ ପରବେଶ ପବନ କୁମର ।
ଜାନକୀ ନାମ ଧରି ବିମ୍ବରୁ ବାହାର
ବିକ୍ରମ ଗତିକରି ଚଳିଲା ସତ୍ୱର ।
ଦଶଯୂଣ ଅଟଇ ଅଯୋଧ୍ୟାପୁର ଦୂର
ଘଡ଼ିକରେ ପ୍ରବେଶ ଯେ ହେଲା ମହାବୀର ।
ଏଥୁଅନ୍ତରେ ଗୋ ଶୁଣ ଭଗବତୀ
ଅନ୍ଧାରୀ ବିଜୟେ ଯେ ଲକ୍ଷ୍ମଣ କରିଛନ୍ତି ।

ମାରୁତି ଯିବାର ଯେ ଶବଦ ଅତି ଘୋର
ବରଷା କାଳେ ଯେମନ୍ତେ ଗର୍ଜନ ମେଘର ।
ସଉମିତ୍ରି ବିଋରିଲେ ଏକଥା ବିପରୀତ
ଶୂନ୍ୟରେ କେହୁ ଆସେ ଶବଦ କିପାଇଁ ତ ।
ଏତେ ବୋଲି ଉପରକୁ ଧୀରେ ଋହିଁଲେ ତ
ତକ୍ଷଣେ ପରବେଶ ଯେ ହେଲା ହନୁମନ୍ତ ।
ମାରୁତି ବୋଲେ ଏହୁ ଅଟେ କେଉଁପୁର
ଲକ୍ଷ୍ମଣ ବୋଇଲେ ତୋର କେଉଁଠାରେ ଘର ।
ମାରୁତି ବୋଇଲେ ମୁହିଁ ପବନ ନନ୍ଦନ
ଶ୍ରୀରାମଙ୍କ ଦାସ ମୁଁ ତୁହି ଏବେ ଶୁଣ ।
ଶୁଣିଣ ଲକ୍ଷ୍ମଣ ବେଗେ ଧଇଲେ କୋଳକରି
ବୋଲେ ଚିହ୍ନି ନ ପାରିଲି ରାତ୍ର ଯେ ଅନ୍ଧାରୀ ।
ଏଡ଼େ ଉଦବେଗ ତୁ କାହିଁକି ଆସୁ ଏକା
ହନୁମନ୍ତ ବୋଲେ ତୁମ୍ଭେ ମନେ ନ କରଶଙ୍କା ।
ମୋତେ ପ୍ରଭୁ ଭେଦି ଦେଲେ ଜାନକୀର ପାଶ
ଯେନାମଣି ପାଟଣାରେ ଯୁଦ୍ଧ ଅପ୍ରମିତ ।
ଯିବି ମୁଁ ଏହିକ୍ଷଣି ନ ରହିବି ଦଣ୍ଡେ
ରାତ୍ରପାହିଲେ ସେସ୍ଥାନେ କଥା ହେବ ଦ୍ୱନ୍ଦେ ।
ରାବଣକୁ ବଡ଼ ଯେ ଅଟେ ସେ ଅସୁର
ମାଇଲେ ନ ମାରନ୍ତି ସେହି ଦୈତ୍ୟ ବୀରବର ।
ସତରଦିନ ଯୁଦ୍ଧ ସେଠାରେ ହେଲା ପୁଣି ।
କେଶରୀ ସିଂହକୁ ମୁଁ ନ ପାରିଲି ଜିଣି ।
ଶୁଣିକରି ଲକ୍ଷ୍ମଣ ଚଳିଲେକ ଖରେ
ସେତେବେଳେ ରାତ୍ର ଯେ ଦ୍ୱିତୀୟ ପ୍ରହରେ ।
ମାରୁତି ସଙ୍ଗେ ଘେନି ନଗ୍ରରେ ପ୍ରବେଶ
ଏଥୁ ଅନନ୍ତରେ ଯେ ଶୁଣ ଦିବ୍ୟରସ ।
ସନ୍ଧ୍ୟାରେ ଲକ୍ଷ୍ମଣ ଘରଣୀ ଆସିକରି
ଜାନକୀର ପାଶେ ପ୍ରବେଶ ସୁନ୍ଦରୀ ।
ଓଳଗି ମେଲାଇ ଯେ ଦରଶନ ଯାଇକଲା
ଆଗରେ ଉଭାହୋନ୍ତେ ଜାନକୀ ପଋରିଲା ।
ସ୍ୱାମୀର ସେବାଛାଡ଼ି କିମ୍ପା ଆସୁ ତୁହି
ତୋସ୍ୱାମୀ ତୋ ବର କି ମନକୁ ନ ରୁଚଇ ।
ଉର୍ମୀଳା ନାରୀ ବୋଲେ ଶୁଣ ଠାକୁରାଣୀ
ଦର୍ଶନ ନିମନ୍ତେ ମୁଁ ଆସିଣ ଅଛି ପୁଣି ।
ଜାନକୀ ବୋଇଲେ ଆଜ ପୟରେ ଅଳତା
ଲଗାଇବାକୁ ମୋର ମନବଡ଼ ସ୍ରୋତା ।

ଉର୍ମୀଳା ବୋଇଲେ ତୁମ୍ଭେ ଅଳତା ଲାଗିହୁଅ
ଜାନକୀ ବୋଲେ ତୁ ମୋର ଚରଣରେ ଦିଅ ।
ପ୍ରତିଦିନ ଦାସୀଦ୍ୟନ୍ତି ତୁ ଦେବୁ ଆଜମୋତେ
ଶୁଣିଣ ଉର୍ମୀଳା ଯେ କହଇ ଅଗ୍ରତେ ।
ଶୁଣ ଠାକୁରାଣୀ ଗୋ ଅଛି କଥାଗୋଟି
ବଡ଼ଠାକୁରେ ଆଜ ଛୁଇଁବେ ସେ ବୋଲୋଟି ।
ଜାନକୀ ବୋଇଲେ ସେତ ନାହାନ୍ତି ନବରେ
କେମନ୍ତେ ଜାଣିଲୁ ସେ ଆସିବେ ରାତ୍ରରେ ।
ଉର୍ମିଳା ବୋଲେ ଆଜ ମିଳିବ ଖବର
ଆଜରାତ୍ରେ ଶୁଣିବି କୁଶଳ ଠାକୁରଙ୍କର ।
ଜାନକୀ ବୋଇଲେ ଯେବେ ନ ଛୁଇଁବୁ ତୁହି
ମୋହର ଦାସୀକି ଯେ ଡକାଇ ଆଣଯାଇ ।
ଉର୍ମୀଳା ନାରୀ ବୋଲେ ସେହି ନ ଜାଣିବେ
ଏକାନ୍ତେ ଅଳତା ଘେନି କହିଲଟି ଏବେ ।
ଅଳତା ଘେନିଣ ଯେ ଗୁଳାକୁ ରଖ ଯତ୍ନେ
ତୁମ୍ଭଙ୍କୁ ଶୁଭକଥା ମିଳିବ ଯୁଗତେ ।
ଅଳତା ବୋଲି ଲାଗିଲେ କହିବି ସେକଥା
ଶୁଣିକରି ଜାନକୀ ମନରେ ହେଲେ ସ୍ରୋତା ।
ଆପଣାର ହସ୍ତରେ ଅଳତା ଗୁଳାଧରି
ଦୁଇଚରଣ ଦଶ ଅଙ୍ଗୁଷ୍ଠିରେ ବୋଳି ।
ବେନିକର ମର୍ଦ୍ଦନୀ ରଖିଲେ ପାଦପର
ବୋଇଲେ ଚରଣନାଳି ମୋର ବୋଲକର ।
ଆଜ ଯେ ପ୍ରସନ୍ନ ମୁହିଁ ତୋତେ ହେଲି
ଲଗାବନ୍ତେ ଚରଣ ଦିଶେ ମୋର ଫେରି ।
ଏଥି ସକାଶରେ ମୁଁ ବରଦେଲି ଜାଣ
ତୁ ପାଷାଣେ ଲାଗିଲେ ପାଷାଣ ଚୁରଜାଣ ।
ସାରାଂଶ ପଥରରେ ଦେଉଳ ହୋଇଥିବ
ତୋତେ ଛୁଆଇଁଲେ ସେ ଭଙ୍ଗେଇଯିବ ।
ଶ୍ରୀରାମ ଚରଣ ଲାଗି ପାଷାଣ ମନୁଷ୍ୟ
ମୋର ଚରଣ ଲାଗନ୍ତେ ପାଷାଣ ହେଉନାଶ ।
ଏମନ୍ତ ବୋଲିଣ ତାକୁ ଯତନ କରିରଖି
ଏଥୁ ଅନନ୍ତରେ ଯେ ଶୁଣଗୋ ପାର୍ବତୀ ।
ବିଡ଼ିଆ ଲାଗିହୋଇ ପଲଙ୍କରେ ବସି
ନଟବର ବେଶପୁଣ ହେଲେ ଯେ ଜାନକୀ ।
ଅମଳାଣ ପିନ୍ଧି ପାରିଜାତକ ପୁଷ୍ପ ଘେନି
ଉର୍ମୀଳାକୁ ବୋଇଲେ ବେଶହୁଅ ଗୋ ତକ୍ଷଣି ।

ଶୁଣି ଉର୍ମୀଳା ନାରୀ ଅପୂର୍ବ ବେଶ ହେଲା
ଅନ୍ୟ ପଲଙ୍କ ପରେ ଯାଇଁଣ ବସିଲା ।
ଜାନକୀ ବୋଇଲେ ଯେ ସେକଥା ମୋତେକହ
ସ୍ୱାମୀର ବାରତା କି ଗୋଚର ଅଛି କହ ।
ଶୁଣିଣ ଉର୍ମୀଳା ନାରୀ କହନ୍ତି ବଚନ
ସତର ଦିନ ଯୁଦ୍ଧ କଲେଣି ସ୍ୱାମୀ ପୁଣ ।
ମାୟାରେ ଅସୁର ଯେ ମାୟା ଦେଉଳ ବନ୍ଦିଲା
ମାରୁତି ଦେଉଳକୁ ଭାଙ୍ଗି ବାହାରିଲା ।
ଆରେକ ଦେଉଳ ଯେ ଭାଙ୍ଗେ ହନୁରାଗେ
ସୁଷେଣ ବାହାର ସେ ଦେଉଳରୁ ବେଗେ ।
ହନୁମନ୍ତ ଆର ଦେଉଳ ଭାଙ୍ଗି ଚଳେ
ସୁଷେଣ ମନାକଲା ନ ଯା ତୁ ରେ ବଳେ ।
ଘରିମୂର୍ତ୍ତି ଯାକ ଯେ ଅଟନ୍ତି ନାରାୟଣ
ନାତ ମାରନ୍ତେ ଦୋଷ ହେବ ନିଶ୍ଚେଁ ଜାଣ ।
ଅଯୋଧ୍ୟା ପୁରକୁ ତୁ କରରେ ଗମନ
ସୀତା ପାଦରଙ୍ଗ ବୋଳରେ ପଥର ହେବଲୀନ
ଶୁଣି ହନୁମନ୍ତ ଯେ ଅଇଲେ ବେଗେ ଚଳି
ଜାନକୀ ବୋଇଲେ କାହିଁ ମାରୁତି ମହାବଳୀ ।
ଉର୍ମୀଳା ବୋଇଲେ ଯେ ରଜନୀ ଅର୍ଦ୍ଧଠାରେ
ସୌମିତ୍ରୀ ସଙ୍ଗେ ଆସିବ ପବନ କୁମରେ ।
ଶୁଣିଣ ଜାନକୀ ଯେ ତ୍ରିପୁତି ହୋଇଲେ
ଏ ସମୟରେ ରଜନୀ ନିଶା ଗରଜିଲେ ।
ମାରୁତି ସଙ୍ଗେ ଘେନି ଲକ୍ଷ୍ମଣ ଗଲେଚଳି
ଜାନକୀ ଅନ୍ତଃପରେ ଦୁହେଁ ଯାଇମିଳି ।
ଦୁଇଜଣ ଓଳଗିଲେ ଜାନକୀ ଚରଣ
ଜାନକୀବୋଇଲେ ମାରୁତି ଅଇଲକି କାରଣ ।
ମାରୁତି ବୋଲେ ମୋତେ ଅଳତା ପୁଣଦିଅ
ଜାନକୀ ବୋଇଲେ ସେହିଠାରେ ଅଛି ନିଅ ।
ଶୁଣିଣ ହନୁମନ୍ତ ଧଇଲେ ବେଗେ କରେ
ଜାନକୀଙ୍କି ଓଳଗି ଶୋଇଲେ ଶତେବାରେ ।
ଅଳତା ଗୁଳାଧରି ଉଗୁଇଁ ବେଗେ ଗଲା
ଘଡ଼ିକରେ ଯେନାମଣି ପାଟଣା ମିଳିଲା ।
ସୁଷେଣ ହସ୍ତରେ ସେ ଦେଲା ନେଇ ବେଗ
ଧରିଣ ସୁଷେଣ ଯେ ଚଳିଲା ଉଦ୍‌ବେଗ ।
ମାୟାର ଦେଉଳେ ନେଇ ଲଗାଇ ଦେଲା
ତତକ୍ଷଣ ପାଷାଣ ଉଙ୍ଗା ହୁଣ ଗଲା ।

ପଞ୍ଚତିରିଶ ଦେଉଳ ଲଗାଏ ଯେ ପୁଣ
ସକଳ ଦେଉଳ ଯେ ଉଙ୍ଗୁଇଁ ଗଭାଜାଣ ।
ତେତେବେଳେ ରଜନୀ ଯେ ଅଛି ତିନିଘଡ଼ି
ସମସ୍ତେ ଏକଠାବେ ବସିଲେ ଯାଇଁକରି ।
ଶ୍ରୀରାମ ବୋଇଲେ ହୋ ସୁଷେଣ ମନ୍ତ୍ରୀଶୁଣ
ବିଚିତ୍ର ଯୁଦ୍ଧକଲେ କେଶରୀ ନନ୍ଦନ ।
ଏମାନେ ବର୍ତ୍ତିଥିଲେକି ଧରଣୀ ସୁଖହୋଇ
ବାସୁକୀ କିମ୍ପାଇଁରେ ନ ଛାଡ଼ିବ ମହୀ ।
ହନୁମନ୍ତ ବୋଲଇ ଯେ ଯୋଡ଼ି ବେନିକର
କିଛି ଚିନ୍ତା ନାହିଁ ଆମ୍ଭେ ମାରିବା ଅସୁର ।
ଶ୍ରୀରାମ ବୋଇଲେ ହୋ ମାରୁତି ଏବେ ଶୁଣ
ମାୟାର ଦେଉଳ ସବୁ କେମନ୍ତେ ହେଲା ଲୀନ
ମାରୁତି ବୋଇଲା ଦେବ ସୁଷେଣ ମନ୍ତ୍ରୀଜାଣେ
ମୁହିଁ କିଛି ନ ଜାଣଇଁ ଶୁଣ ହେ ରାମରାଣେ ।
ଯେଣିକି କହେ ସୁଷେଣ ମୁଁ ଯାଏ ତେଣିକି
ଆଉ କଥାମାନ ମୋତେ ଗୋଚର ନୋହେଟିକି ।
ଶୁଣିଣ ଶ୍ରୀରାମ ଯେ ସନ୍ତୋଷ ହୋଇଲେ
ସୁଷେଣ ମନ୍ତ୍ରୀକି ପାଶକୁ ଡକାଇଲେ ।
ବୋଇଲେ ମନ୍ତ୍ରୀବର ଶୁଣ ମୋ ବଚନ
ବଡ଼ ଯୁଦ୍ଧକଲା ସେ ଯେ କେଶରୀ ନନ୍ଦନ ।
ନେଇଣ ପଥର ଘରେ ଆମ୍ଭଙ୍କୁ ବନ୍ଦୀ କଲା
ଘରି ରାବଣ ଯୁଦ୍ଧରୁ ଉତ୍ତମ ଆଜ ହେଲା ।
ପଥର ଘରେ ଆମ୍ଭେ ବନ୍ଦୀ ଯେଉଁ ପୁଣ
କେ ଆମ୍ଭଙ୍କୁ କାଢ଼ିଲା କହ ମୋ ଆଗେଣ ।
ସୁଷେଣ ବୋଲେ ଦେବ ମାରୁତି ଯୁଦ୍ଧକଲା
ନାତେକ ମାରିଣ ସେ ଦେଉଳ ଭାଙ୍ଗିଦେଲା ।
ଆର ଦେଉଳରେ ଯେ ମାଇଲା ମୁଥ ନେଇ
ସେ ଦେଉଳ ଭାଙ୍ଗନ୍ତେ ବାହାର ହେଲି ମୁହିଁ ।
ମୋତେ ପଚାରିଲା ଯେ ଭାଙ୍ଗିବ ସେ ଦେଉଳ
ବୋଇଲି ଉଚିତ ନୋହେ ପବନର ବାଳ ।
ଭାଙ୍ଗିଲେ କାହାର ଉପରେ ପଡ଼େ ମାଡ଼ି
ଆଳସ୍ୟରେ ଯୁଦ୍ଧ ଯେ ନ ପାରିବେ କରି ।
ମାରୁତି ବୋଇଲା ଆମ୍ଭେ କରିବା ତେବେ କିସ
ତାର ବୋଲ ଶୁଣି ମୁଁ ଦେଖିଲି ବୈଦଶାସ୍ତ୍ର ।
ସେଥିରେ ଲେଖାଅଛି ଦଇତର କୃତ୍ୟ
ଶାପରେ ପାଷାଣ ଯେତେ ହେବେ ସ୍ତିରୀପୁରୁଷ ।
ଶ୍ରୀରାମଙ୍କ ଚରଣ ଲାଗିଲେ ହେବ ମୋକ୍ଷ
ସୀତା ଅଳତାଗୁଳାଛୁଇଁଲେ ପାଷାଣ ହେବହତ ।
ମାୟାରେ ପାଷାଣ ଦେଉଳ ଯେତେ ହୋଇ
ଲାଲଗୁଳି ଜାନକୀର ଛୁଇଁଲେ ପଳାଇ ।
ହନୁର ଆଗରେ ମୁଁ ଶାସ୍ତ୍ର ଦେଖାଇଲି
ଅଯୋଧ୍ୟା ଯାଇ ଆଣ ବୋଲିଣ ବୋଇଲି ।
ମୋହର ବୋଲରେ ମାରୁତି ବେଗେ ଗଲା
ଜାନକୀଠାରେ ଯାଇଁ ପ୍ରବେଶ ହୋଇଲା ।
କହିଣ ଆଣିଲା ଅଳତା ଗୁଳି ସେହୁ
ଛୁଆଁନ୍ତେ ଦେଉଳ ଯେ କେଣେଗଲା ତହୁଁ ।
ଶୁଣି କରି ରାମ ପ୍ରଶଂସା ତାକୁ କଲେ
ସାଧୁରେ ସୁଷେଣ ତୁ ବୋଲିଣ ବୋଇଲେ ।
ସୁଷେଣ ବୋଇଲେ ସାଧୁ ଅଟଇ ମାରୁତି
ହନୁମନ୍ତ ଜୀଇଥିଲେ ନ ବାଧେ ଦୁର୍ଗତି ।
ଶ୍ରୀରାମ ବୋଇଲେ ଯେ ଏବେ କି କରିବା
ଏ ଦୁଷ୍ଟ ଅସୁରଙ୍କୁ କେମନ୍ତେ ମାରିବା ।
ହନୁମନ୍ତ ବୋଇଲା ମୋର ଭାଗରେ ଜଣେ
ସକଳ ସେନାପତି ନିଅନ୍ତୁ ଏକଜଣେ ।
ତୁମ୍ଭେ ଘରିଜଣଙ୍କୁ କର ହେ ସଂହାରଣ
ଯେମନ୍ତେ ଛଡ଼ରଥୀ ପାଆନ୍ତୁ ମରଣ ।
ଏମନ୍ତ ସମୟରେ ରଜନୀ ଗଲା ପାହି
କଶ୍ୟପର ନନ୍ଦନ ପୂର୍ବରେ ଉଦେ ହୋଇ ।
ଛଡ଼ରଥୀଥିଲେ ଯେ ରଣ ଭୂମିରେ ପୁଣ
ମାୟା କଥାଯାକ ଯେ ଦେଖିଲେ ନାହିଁ ପୁଣ ।
କ୍ରୋଧରେ ଜର ଜର କେଶରୀ କୁମର
ଆଶ୍ଚର୍ଯ୍ୟ ଯୁଦ୍ଧ କଲେ ରାମର ସଙ୍ଗର ।
ଦେଖିଣ ହନୁମନ୍ତ ଧାଇଁ ବେଗେ ଗଲା
କମଳ କେଶରୀର ରଥରେ ବସିଲା ।
ବେକ ଧରିଣ ଯେ ମାରେ ମୁଥ ପୁଣ
ରଥପରୁଁ ଧରାଧରି ପଡ଼ିଲେ ତଳେ ଜାଣ ।
ମାଲ୍ୟଯୁଦ୍ଧ ଅନେକ କଲେ ଦୁଇଜଣ
ହନୁକୁ ମାଡ଼ି ବସିଲା କେଶରୀ ସୁତ ପୁଣ ।
ପଡ଼ିଣ ମାରୁତି ଯେ ସୀତାଙ୍କୁ ସୁମରିଲା
ଲେଉଟାଇ ଅସୁରକୁ ମାଡ଼ିଣ ବସିଲା ।
ଦୁଇକରେ ଦୁଇଯେ ଚରଣ ଧରି ପୁଣ
ଚିରି ପକାଇଲା ଦୁଇଫାଳ ଯେ କରିଣ ।

ଦେଖିଣ ପଚିଶ ଯେ ଯୂଥପତି ପୁଣ
ଅଷ୍ଟ ସେନାପତି ଯେ ବେଢ଼ିଲେ ତକ୍ଷଣ ।
କାଳିଞ୍ଜୟ କେଶରୀ ରଥର ଚଉପାଶେ
ଶିଳା ବୃକ୍ଷ ବେଢ଼ରେ ମାଇଲେ ବିଶେଷେ ।
ପ୍ରତିଶର କରିଣ ଅସୁର ତାହା ଛେଦି
ଦେଖିଣ ଯୂଥପତି ହେଲେ ବଡ଼ରାଗୀ ।
ଶିଳାବୃକ୍ଷ ପିଟିଣ ରଥ ତାର ଭାଙ୍ଗି
ପାଞ୍ଚ ସାତ ମେଳ ହୋଇ ଧଇଲେ ଯାଇଁବେଗି ।
ହାତ ଗୋଡ଼ ଧରି ଦୋଳି ପହଞ୍ଚାଇ ପୁଣ
ଭାଜିଲା ରଥରେ ନେଇ କଉଡ଼ିଲେ ଜାଣ ।
ଦୁଇ ଗୋଡ଼ ଧରି ଦୁଇ ଆଡ଼କୁ ଓଟାରିଲେ
ଦୁଇ ଫାଳ କରି ତାକୁ ଚିରିଣ ପକାଇଲେ ।
ତାହା ଦେଖି ଶତ୍ରୁଘନର ଅଙ୍ଗେ ଛଳ ହେଲା
ସୁରଭୀ କେଶରୀ ପାଶେ ଯାଇଣ ମିଳିଲା ।
ଦେଖିଣ ଅସୁର ଯେ କଲା ଶର ବୃଷ୍ଟି
ଶତ୍ରୁଘନ ଅନୁଜର ଶରରେ ନିବାରନ୍ତି ।
ଅଗ୍ନିଶର ଘେନିଣ ଯେ ଶତ୍ରୁଘନ ମାରି
ସୁରଭୀ ଅସୁରକୁ ଦେଲା ଭସ୍ମ କରି ।
ଦେଖିକରି ପର୍ଶୁରାମ ହେଲେ ବଡ଼ ରାଗ
ରଙ୍ଗଲାଲ ଅସୁର ସଙ୍ଗେ କଲେ ରଣରଙ୍ଗ ।
ଅନେକ ଯେ ଶରବୃଷ୍ଟି ଅସୁର ପୁଣ କଲା
ବ୍ରହ୍ମଶର ବଜ୍ରଶର ଅସୁରାଶର ମାଇଲା ।
ନାରାୟଣାଶରେ ସେ ଯେ ସକଳ ନିବାରି
ରଥକୁ ରଥ ନେଇଣ ଯୁଝାଏ ପର୍ଶୁଧାରୀ ।
ତମ୍ବାର ଚକ୍ର ପ୍ରାୟେ ଯେ ବୁଲେ ନେତ୍ରଦୁଇ
ଅସୁର ରଥରେ ନେଇ ଏକପାଦ ଥୋଇ ।
ଅସୁର କୋଶକୁ ପର୍ଶୁ ଧରି ବାମକରେ
କୋଠାରେ ନେଇଣ ଯେ ମାଇଲା ଉପରେ ।
ବୁକୁର ଭାଗଠାରୁ ଛିଡ଼ିଣ ପଡ଼ିଲା
ବେନିଖଣ୍ଡ ହୋନ୍ତେ ପର୍ଶୁ ରଥରୁ ଫିଙ୍ଗିଦେଲା
ରଥ ଛଡ଼ାଇଣ ଯେ ଆଣିଲେ ଅପସରି
ଅଗ୍ନିଶର ପେଶିଣ ରଥକୁ ଭସ୍ମକରି ।
ଚଉରିରଥୀ ପଡ଼ିଲେ ରହିଲେ ଦୁଇଜଣ
ଦେଖିଣ ଭରଥ ଯେ ବିଚରିଲେ ମନ ।
ମର୍ଦ୍ଦରାଜ କେଶରୀ ସିଂହ ଆଗରେ ମିଳିଲା
ଦେଖି କରି ଅସୁର ଅନେକ ଶର କଲା ।

ଦିବ୍ୟଶର ଘେନିଣ ଯେ ଭରଥ ନିବାରି
ଦେଖିଣ ଅସୁର ଯେ ଶର ବୃଷ୍ଟି କରି ।
ଆଷାଢ଼ ମାସରେ ଯେହ୍ନେ ପ୍ରଥମ ବରଷା
ସେହିରୂପେ ଶରବୃଷ୍ଟି ଅସୁର କରେ ହିଂସା ।
ଦେଖିଣ ଭରଥବୀର ଶର ତାର ଛେଦି
ବଜ୍ର ବାଟୁଳି ଧନୁରେ ବସାଇଲେ ବେଗି ।
ସହସ୍ରେ ବାଟୁଳିଯେ ଏକାବେଳେ ମାରି
ବାଟୁଳି ବାଜନ୍ତେ ଯେ ଶରୀର ଜ୍ୱାଳାକରି ।
ପୁଣି ଆରବେଳେ ଯେ ବାଟୁଳି ଭ୍ରଥ ମାରି
ଚଉରି ଗୋଟି ବାଟୁଳି ଯେ ଗଲା ବେଗେକରି ।
ଦୁଇ ନୟନରେ ଯେ ପଶିଲା ଦୁଇ ଗୁଳା
ଗୁଳା ଏକ ପଶିଲା ଯେ ମୁଣ୍ଡରେ କରି ଜଳା ।
ଆର ଗୁଳାଟି ନାଭି ଭିତରେ ପଶିଲା
ପେଟରେ ଫଗି ଅଣ୍ଡ ବାଟେ ବାହାରିଲା ।
ଦୁଇ ନୟନ ତାର ଗଲାକ ଖୋଳା ହୋଇ
ମୁଣ୍ଡ ଗୁଳାଟି ଦଧି ନଉତି ଭାଙ୍ଗଇ ।
ଦେହରେ ପଶନ୍ତେ ଚଉରି ସ୍ଥାନକୁ ଦହିଲା
ଯେଣୁ ସେ ଶରୀର ତା ଜଳା ହୋଇଗଲା ।
ରଥର ଉପରୁ ଅସୁର ଢଳି ପଡ଼ି
ଭୂମିରେ ପଡ଼ନ୍ତେ ତାର ପ୍ରାଣଗଲା ଛାଡ଼ି ।
ଦେଖିକରି ରାମ ଯେ ମନରେ ବିଚରିଲେ
ମୋହର ଭାଗରେ ଏକ ଅଛଇଁ ବୋଇଲେ ।
କେଶରୀ ସୁର ମାୟାଭି ଅନେକ ଜାଣେ କୁଟ
ବନ୍ଦୀରେ ପଥର ଘରେ ରଖିଲା ଆମ୍ଭଙ୍କୁ ତ ।
ଏବେ ମୋର ଭାଗରେ ପଡ଼ିଅଛି ସେହି
କୁଟ ନକରୁ ଯେବେ ନାଶ କରଇ ମୁହିଁ ।
ତେବେ ସିନା ଅସୁର ଯେ ହେବ ଭସ୍ମରାଶି
ଇନ୍ଦ୍ରଜିତକୁ ଏହୁ ବଡ଼ ଯେ ବିଶେଷି ।
ଏମନ୍ତ ବିଚରି ଯେ ଗରୁଡ଼ା ଶର ଧରି
ଶାରଙ୍ଗ ଧନୁରେ ଯୋଚିଲେ ଯତ୍ନକରି ।
ଜାନକୀ ସୁମରିଣ ଯେ ଶରକୁ ଛାଡ଼ିଦେଲେ
ଗମିଲାକ ଶର ଯେ ଶବଦ କରି ଭଲେ ।
ଦୁଇ ଡେଣା ଶରରୁ ଯେ ହୋଇଲା ବାହାର
ଯାଉଁ ଯାଉଁ ଅଣ୍ଡ ମୁଣ୍ଡ ବିକାଶିଲା ତାର ।
ଭୟଙ୍କର ମୁରତି ଗରୁଡ଼ ପ୍ରାୟେ ହେଲା
ମାୟାଭି ଅସୁର ଯେ ରଥରେ ବସିଥିଲା ।

ଥଣ୍ଟରେ ମୁଣ୍ଡଧରି ଗୋଡ଼କୁ ଗୋଡ଼େଯାକି
ଘେନିଣ ଉଡ଼ିଗଲା ଗରୁଡ଼ାଶର ଝିଙ୍କି ।
ସମୁଦ୍ର ଭିତରେ ଶଙ୍ଖ ଉପୁଜିବାର ଦୀପେ
ପକାଇ ଦିଅନ୍ତେ ଶଙ୍ଖ ଭକ୍ଷିଲେ ତୁରିତେ ।
ଏମନ୍ତେ ଛଡ଼ରଥୀ ମାଇଲେ ପାଞ୍ଚକରି
ବାକି ସୈନ୍ୟ ଭାଜିଣ ପଳାଇଲେ ଡରି ।
ରଣଭୂମି ଠାବରେ ହେଲେ ପରବେଶ
ରଡ଼ିଏ ଘାଏ ପୁଣି ଚମକେ ଦଶଦିଶ ।
ଦେଖିଣ ଶ୍ରୀରାମ ଯେ ମନରେ ବିଚାରି
ସସ୍ରାନନ ପରାୟେ ବଳ ସେ ଏହାରି ।
ଚାରି ଯୂଥପତି ଯେ ସେନାପତିମାନେ
ସମର କଲେ ସେ ଯେ ତାଙ୍କ ସଙ୍ଗେ ଏଣେ ।
ବାଜିଲା ରଣଗୋଳ ଲାଗିଲା ଚହଳ
ମାର ମାର ଧର ଧର ଶବଦ ଗରୁତର ।
ଦେଖିଣ ହନୁମନ୍ତ ପଶିଲା ଯାଇଁ ରଣେ
ଗୋଟି ଗୋଟି କରି କଚାଡ଼େ ନେଇ ତେଣେ ।
ପ୍ରଥମେ ଯୁଥପତି ଅନେକ ବଳ ମାରି
ଦ୍ୱିତୀୟେ ହନୁମନ୍ତ ବିଶ୍ୱରୂପ ଧରି ।
ଶତେ ଶତେ ଧରିଣ ଶିଳାରେ କଚାଡ଼ି
ପଞ୍ଚମେ ଶତ୍ରୁଘନ ଧଇଲେ ଧନୁଶର କାଢ଼ି ।
ମନଭେଦୀ ଶରକୁ ବସାଇଣ ବୀର
ମନ୍ତ୍ର ପଢ଼ି ଛାଡ଼ିଦେଲା ସୁମିତ୍ରା କୁମର ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
କେଶରୀସୁର ସଙ୍ଗେ ପର୍ଶୁରାମ ଯୁଝନ୍ତି ।
ଶତ୍ରୁଘନ ସଙ୍ଗେ ନୀଳଧବଳ ଯୁଝନ୍ତି
ଏକୁଁ ଏକ ଯୋଦ୍ଧା କେହି ନ ଘୁଞ୍ଚନ୍ତି ।
ଏମନ୍ତେ ଶୂନ୍ୟରେ ଯେ ହେଲା ରଣ ଗୋଳ
ଅନେକ ସମର କଲେ ଅସୁର ଅନର୍ଗଳ ।
ସେଠାରେ ସାତଭାଇ ଯେ ଭରଥ କଲେ ନାଶ
ଚାରିଭାଇ ମାରୁତି ଯେ ମାଇଲେ ବିଶେଷ ।
ଏଗାର ଭାଇ ଯହୁଁ ସେଠାବରେ ମଲେ
ସେଠାରୁ ପଳାଇଲେ ଭ୍ରଥର ଡରରେ ।
ଯାଇଣ ଶରଣ ପଶିଲା ଶ୍ରୀରାମ ପୟରେ
ଶୋଇଲା ଠାବରୁ ଯେ ନ ଉଠିଲା ବୀରେ ।
ଦେଖିକରି ଶ୍ରୀରାମ ରଥରୁ ଓହ୍ଲାଇ
ରାକ୍ଷସକୁ ଛିଡ଼ାକଲେ ଭୂମିରୁ ଉଠାଇ ।

ରାକ୍ଷସ ମସ୍ତକରେ ବାନ୍ଧିଲେ ନେଇ ପାଟ
ଧବଳ ଛତ୍ର ଟେକାଇଲେ ତା ଲୋକେ ମୁରାଟ ।
ରାମ ବୋଇଲେ କୁମର ନିଶ୍ଚିନ୍ତେ ରାଜ୍ୟ କର
ଦୁଷ୍ଟପଣ ନ କରିଲେ ଶାନ୍ତପଣକୁ ଧର ।
ଷୋଳକକ୍ଷ ଭାଇ ଯେ ହୋଇଣ ଏକମନ
ଯେନାମଣି ପାଟଣାରେ ପରଜା ପାଳ ପୁଣ ।
ରାଜଜିତ ବୋଲେ ଦେବ ମୋରଠାରୁ ଶୁଣ
କଥାଏ କହିବି ଦେବ ରଖିବେ ମୋର ପୁଣ ।
ଲକ୍ଷେକ ରଥ ମୁଁ ଯେ ଭେଟିବି ତୋତେ ଆଣି
ଏମନ୍ତ ବଚନ ଯେ ରାଜଜିତ ଭଣି ।
ଚାଳିଶ ସସ୍ର ଦେବଙ୍କ ରଥର ଆୟେ ଅଛି
କୋଡ଼ିଏ ସସ୍ର ରଥ ନାଗରାଜା ଦେଲା ବାଛି ।
ଏମାନଙ୍କ ପାଣିଦ୍ରବ୍ୟ ପିତା ଆଣିଥିଲେ
ଜୂରକରି ଆଣି ନିଜ ଭଣ୍ଡାରେ ରଖିଲେ ।
କିପାଇଁ ଦେବଙ୍କର ପଦାର୍ଥ ଥିବ ଆଉ
ତୁମ୍ଭେ ନେଲେ ମୋଠାରୁ ଅହନ୍ତା ଭାବ ଯାଉ
ଶୁଣିକରି ରାଜଜିତ ବହନ ଚଳିଗଲେ
ଯାଅରେ ନିଜପୁର ବୋଲିଣ ବୋଇଲେ ।
ଶୁଣିକରି ରାଜଜିତ ବହନ ଚଳିଗଲେ
ଆପଣାର ନବରେ ଯାଇଁ ପ୍ରବେଶ ହୋଇଲେ ।
ଏଣେ ଅସୁର ଯୁବତୀମାନେ ଦେହଛାଡ଼ି ଗଲେ
ଆପଣା ସ୍ୱାମୀ ପାଶରେ ଯାଇଁଣ ମିଳିଲେ ।
ରାଜଜିତ ରଥମାନ ସାଜିଣ ଆଣିଲେ
ଶ୍ରୀରାମଙ୍କ ଚରଣେ ନେଇଣ ସମର୍ପିଲେ ।
ଦେଖିକରି ଶ୍ରୀରାମ ହରଷ ହୋଇଲେ
ସୁମନ୍ତକୁ ହକାରି ସମ୍ଭାଳି ବୋଇଲେ ।
ଶ୍ରୀରାମଙ୍କୁ କହିଲା ରାଜଜିତ ଯାଇଁ
ସକଳ ଜନନୀ ମୋର ମଲେ କିସ ପାଇଁ ।
ଶ୍ରୀରାମ ବୋଇଲେ ଯେ ସେକଥାଇଁ ଶୁଣ
ତୁମ୍ଭର ଜନନୀ ମୋର ଚରଣେ ଓଳଗିଣ ।
ବୋଇଲେ ଏ ଦେହରୁ ଜୀବନ ଛାଡ଼ିଯାଉ
ସ୍ୱାମୀଙ୍କ ସଙ୍ଗତରେ ଆମ୍ଭର ଭେଟ ହେଉ ।
ତାଙ୍କ ନିୟତରୁ ତାଙ୍କୁ ହେଲା ପରାପତ
ଦେହ ଛାଡ଼ିଗଲେ ସେ ସମସ୍ତେ ତୁରିତ ।
ଆମ୍ଭେ ବୋଇଲୁଁ ସର୍ବେ ଯାଅ ଯେ ଯାହାରେ
ଆପଣା ସ୍ୱାମୀ ସଙ୍ଗରେ ବସ ସ୍ୱର୍ଗପୁରେ ।

ତେଣୁ ସେମାନେ ଦେହଛାଡ଼ି ଗଲେ ସ୍ୱର୍ଗପୁର
ଏକଥା ଦୁର୍ଲ୍ଲଭ ତୋତେ ହେଲାରେ କୁମର ।
ଶୁଣିକରି ରାଜଜିତ ସନ୍ତୋଷ ହୋଇଲା
ଧନ୍ୟ ହେ ଶ୍ରୀରାମ ତୁମ୍ଭେ ବୋଲିଣ ବୋଇଲା।
ଏଥୁ ଅନନ୍ତରେ ଗୋ ଭଗବତୀ ଶୁଣ
ସୁମନ୍ତକୁ ହକାରି କହିଲେ ରାମରାଣ ।
ଲକ୍ଷେ ଶତ ରଥ ଘେନିଣ ବେଗେ ଚଳ
ଅଯୋଧ୍ୟା ପୁରରେ ଯାଇ ମିଳିବୁ ସତ୍ୱର ।
ଏ ରତ୍ନମାନ ନେଇ ଭଣ୍ଡାରେ ସାଇତିବୁ
ଲକ୍ଷ୍ମଣକୁ ଘେନିକରି ଭଣ୍ଡାର ମୁଦଦେବୁ ।
ଶୁଣିଣ ସୁମନ୍ତ ଯେ ସନ୍ତୋଷ ହୋଇଲା
ଲକ୍ଷେ ରଥ ଘେନିଣ ବେଗେ ଚଳିଗଲା ।
ସେ ପୁରୁ ଶ୍ରୀରାମ ଯେ ସମସ୍ତ ଘେନି ଚଳି
ହିରଣ୍ୟଗର୍ଭ ପୁରେ ଯାଇଣ ବେଗେ ମିଳି ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ସୀତା ପାଶୁଁ ଯେତେବେଳେ ଗଲା ହନୁମାନ ।
ଯେନାମଣି ପାଟଣାରେ ପ୍ରବେଶ ହୋଇଲେ
ଜାନକୀ ଉର୍ମିଳା ନାରୀ ସେଠାରେ ରହିଲେ ।
କିସ କଥା କଲେ ଯେ କହ ମୋତେ ପୁଣ
ଈଶ୍ୱର ବୋଇଲେ ଗୋ ଶୁଣ ମୋ ବଚନ ।
ହନୁମନ୍ତ ଯିବାରୁ ଜାନକୀ ପଚାରି
କିମ୍ପାଇଁ ହନୁମନ୍ତ ଅଇଲା ଆମ୍ଭପୁରୀ ।
ଉର୍ମିଳା ନାରୀ ବୋଲେ ସେ କଥାହିଁ ଶୁଣ
ଯେନାମଣି ପାଟଣାରେ ମିଳିଲେ ସ୍ୱାମୀଜାଣ ।
ଦୈତ୍ୟଙ୍କର ସଙ୍ଗରେ ଲାଗିଲା ଗୋଳଘୋର
କେଶର ଧବଳ ନୀଳ ବଉଳା ସିଙ୍ଘାର ।
ଏ ଚରିଭାଇ ଯେ ଅଟନ୍ତି ସେଥି ରାଜା
ଚରିଲକ୍ଷ ତାଙ୍କର ଅଟନ୍ତି ତନୁଜା ।
ଷୋଳଲକ୍ଷ ନାତି ଯେ ବତିଶିଲକ୍ଷ ଜ୍ୱାଇଁ
ଏମାନଙ୍କୁ ବେଢ଼ିଣ ମାଇଲେ ତୁମ୍ଭସାଇଁ ।
ଦେବଜିତ ନାମରେ ଅଟେ ନାତି ତାର
ମାୟାରେ ପଥର ଘର କଲା ଅଗୋଚର ।
ପଥର ଘର ଭିତରେ ମୁଦିଲା ସ୍ୱାମୀ ତୋର
ହନୁମନ୍ତ ଆସି ଯେ ନେଲା ଲାଳଗୁଳ ।
ଛୁଆଁନ୍ତେ ଅନ୍ତର ହେଲା ମାୟା ଯେ ଦେଉଳ
ପୁଣି ଦୁଇରାତ୍ର ଦୁଇ ଦିବସ ହେଲା ଗୋଳ ।

ସମସ୍ତ ଦୈତ୍ୟବଳ ନାଶଗଲେ ପୁଣି
ଆପଣାଆୟତ ରାଜାହେଲା ଶୁଣ ଗୋ ଠାକୁରାଣୀ ।
ଲକ୍ଷେ ରଥ ପାଣି ଦ୍ରବ୍ୟ ଯେ ସେହୁଦେଲା
ସେ ରଥ ଘେନି ସୁମନ୍ତ ଆମ୍ଭପୁରକୁ ଆସିଲା ।
ସେଠାରୁ ହିରଣ୍ୟପୁରେ ହେଲେ ପରବେଶ
ଶୁଣିକରି ଜାନକୀ ହେଲେ ହସ ହସ ।
ବୋଇଲେ ଭଲକଥା କହିଲ ମୋତେ ପୁଣି
ଲକ୍ଷ୍ମଣ ଶୁଣ କି କହୁଅଛି ତୋ ଘରଣୀ ।
ଶୁଣିଣ ଲକ୍ଷ୍ମଣ ବୋଲନ୍ତି କରଯୋଡ଼ି
ଦୁଇଦିନ ଉତ୍ତାରୁ କଥା କହିବ ବିଚରି ।
ଏତେ କହି ଲକ୍ଷ୍ମଣ ସେଠାରୁ ଚଳିଗଲେ
ଉର୍ମିଳା ନାରୀ ଜାନକୀ ପାଶେ ରାତ୍ରେ ଥିଲେ ।
ଏମନ୍ତେ ଦୁଇଦିନ ଯେ ଗଲା ତହିଁ ବହି
ଲକ୍ଷେ ଶତେ ରଥ ଘେନି ସୁମନ୍ତ ମିଳଇ ।
ଲକ୍ଷ୍ମଣଙ୍କୁ ସଙ୍ଗେ ଭଣ୍ଡାରେ ସାଇତିଲେ
ଚିହ୍ନମୁଦ ଦେଇକରି କୁଶଳ ପଚରିଲେ ।
ସକଳ ଶୁଭ ଖବର ସୁମନ୍ତ ଜଣାଇଲେ
ଶୁଣିକରି ଲକ୍ଷ୍ମଣ ଜାନକୀ ପାଶେ ଗଲେ ।
ବୋଇଲେ ଠାକୁରାଣୀ ଗୋ ହୋଇଲା କଥାସତ
ରତ୍ନ ରଥମାନ ଘେନି ସୁମନ୍ତ ଉପଗତ ।
ଶୁଣିକରି ଜାନକୀ ସନ୍ତୋଷ ହୋଇଲେ
ଧନ୍ୟ ସଉମିତ୍ରି ନାରୀ ବୋଲିଣ ବୋଇଲେ ।
ପାର୍ବତୀ ବୋଇଲେ ମୁଁ ଯେ ଶୁଣିଲା ଏହୁକଥା
ପୁଣି ସେ କିସ କଲେ ଦଶରଥ ସୁତା ।
ଈଶ୍ୱର ବୋଇଲେ ସେ ହିରଣ୍ୟପୁରେ ଗଲେ
ହିରଣ୍ୟର ଦ୍ୱାରେ ପ୍ରବେଶ ଯାଇଁହେଲେ ।
ଦେଖିଣ ଦୁଆରୀ ଯେ ଓଳଗି ମେଲାଇଲା
ଦଣ୍ଡେ ବିଳମ୍ବ କରି ରାଜାକୁ କହି ଆସେପରା ।
ହିରଣ୍ୟ ରାଜା ପାଶରେ ମିଳିଲାକ ପୁଣ
ବିସ୍ମୟ ମତିରେ ସେ କହିଲା ବଚନ ।
କରଯୋଡ଼ି ଜଣାଇଲା ଚରଣେ ତାହାର
ତୋର ପରେ ବିଜେ କଲେ କୋଦଣ୍ଡ ଚାପଧର ।
ରଘୁବଂଶେ ଜାତ ଦଶରଥଙ୍କ କୁମର
ଅନନ୍ତ ଶଯ୍ୟା ଛାଡ଼ିଣ ଅଇଲେ ମର୍ତ୍ତ୍ୟପୁର ।
ଅସୁର ମାରିବା ପାଇଁ ଆସନ ତେଜ୍ୟାକଲେ
ଚରି ରାବଣ ମାରି ସେ ଦେବଙ୍କୁ ରଖିଲେ ।

ସ୍ୱର୍ଗରେ ଦିଗବିଜେ କରି ସଭାକଲେ
ଦେବତାମାନଙ୍କୁ ନିଶ୍ଚିନ୍ତ କରାଇଲେ ।
ଏବେ ପାତାଳକୁ ଯେ ଦିଗବିଜେ ତାର
ଜ୍ୟୋତିପୁରେ ପଶି ଯେ ମୋତେ ସୁମାଳି ବୀର ।
ନାତିକି ତାହାର ଯେ ସେପୁରେ ରାଜାକଲେ
ଦେବତାମାନଙ୍କୁ ନିଶ୍ଚିନ୍ତ କରାଇଲେ ।
ଚଉରିଲକ୍ଷ କୁମରେ ଷୋଳକ୍ଷେ ନାତି
ବତିଶିଲକ୍ଷ ଜ୍ଞାଇଁ ତାର ମାଇଲେ ନିପାତି ।
ଜାଣିଣ ରାଜଜିତ ନାତି ଯେ ଅଇଲା
ଶରଣ ପଶନ୍ତେ ରାମ ତାକୁ ଦୟାକଲା ।
ତାର ଶିରେ ପାଟବାନ୍ଧି ସେ ପୁରେ ରାଜାକରି
ସେଠାରୁ ତୋର ପୁରେ ପ୍ରବେଶ ଆସିକରି ।
ସିଂହଦ୍ୱାରେ ମିଳନ୍ତେ ମୁଁ ତାଙ୍କୁ ରଖାଇଲି
ତୁମ୍ଭର ଆଗରେ ମୁଁ ସନ୍ଦେଶ କହିଲି ।
ସନମାନ କଲେ ତୁମ୍ଭେ ହେବ ଭଲ ପୁଣ
ବିମନା ହୋଇଲେ ନାଶ ଯିବା ହୋ ରାଜନ ।
ତୋର ଉପର ବଂଶରେ ହିରଣ୍ୟ କଶ୍ୟପ
ନୃସିଂହ ବରାହ ରୂପ ହୋଇ ମାଇଲେତ ।
ପ୍ରହଲାଦ କୁମର ଇନ୍ଦ୍ରପଦ ଦେଲେ
ବଇଲୋଚନକୁ ସ୍ତିରୀ ରୂପେ ସେ ନାଶକଲେ ।
ବଳିକି ଦାନ ମାଗି ରଖିଲେ ପାତାଳେ
ଏବେତ ତୋ ପୁରକୁ ଦେବ ବିଜେକଲେ ।
ଲାବଣ୍ୟସୁର ବୋଇଲା ଶୁଣରେ ଦ୍ୱାରପାଳ
ସମ୍ଭର୍ବେ ଭେଟିଲେ ସିନା ହୋଇବ ମଙ୍ଗଳ ।
ଏମନ୍ତ ବୋଲିଣ ସେ ମନ୍ତ୍ରୀକି ଡକାଇଲା
ରଘୁନାଥ ମୋର ଘରେ ବିଜେ କଲେ ପରା ।
ଯୁଦ୍ଧ କରିବାକି ଦେବା ସନମାନ
ବିଚ୍ଚର କର ହେ ତୁମ୍ଭେ ମନ୍ତ୍ରୀବର ପୁଣ ।
କିରିଟି କୁଣ୍ଡଳ ଯେ ଦୁଇମନ୍ତ୍ରୀ କହି
ଯୁଦ୍ଧକଲେ ତାର ସଙ୍ଗେ ଯଶ ନ ମିଳଇ ।
ନର ନାରାୟଣ ଦୁହେଁ କରିଛନ୍ତି ବିଜେ
ଦୁଇଭାଇ ସଙ୍ଗରେ ଅଛନ୍ତି ତାର ଏ ଯେ ।
ପଚିଶ ଯୂଥପତି ଅଷ୍ଟସେନା ଜାଣ
ଏତିକି ଅଛନ୍ତିଯେ ତାର ସଙ୍ଗେ ପୁଣ ।
ଯେତେକ ସୈନ୍ୟ ତୋର ଅଛନ୍ତି ଗର୍ଭରେ
ଏକାକେ ହନୁମନ୍ତ ମାରିପାରେ ଭଲେ ।

ଶୁଣିଣ ଲାବଣ୍ୟସୁର ହସିଣ ବୋଇଲା
ଚତୁରାଙ୍ଗ ବଳ ଯେ ଅଛନ୍ତି ମୋର ତୋରା ।
ହନୁମନ୍ତ ନାମରେ ଗୋଟାଏ ପୁଣ ଜାଣ
ବାସ୍ତରୀ ସାଗର ଯେ ଅଛନ୍ତି ମୋର ସୈନ୍ୟ ।
ବାସ୍ତରୀ ଯୋଜନ ଅଟେ ଗର୍ଭପୁର
ଏଥିରେ ପଶିଲେ ନିଶ୍ଚେ ମରିବ ମହାବୀର ।
କିରଟି ମନ୍ତ୍ରୀ କଲେ ପରୀକ୍ଷ ତୁମ୍ଭେକର
ଆଗେ ସନମାନ ହୋଇ ପଛେ ଯୁଦ୍ଧକର ।
ମନ୍ତ୍ରୀକି ବୋଇଲା ତୁରେ ଭଣ୍ଡାର ଘର ଚଳ
କୋଟିଏ ରଥରେ ନେଇ ପାଣିଦ୍ରବ୍ୟ ଭର ।
ମୋହର ଆଗକୁ ଯେ ଘେନିଆସ ବେଗେ
ଏତେ ବୋଲି ଆଜ୍ଞାଦେଲେ ଅସୁର କୁଳରାଜେ ।
ଦୁଇ ମନ୍ତ୍ରୀ ବେଗ ହୋଇଣ ଚଳିଗଲେ
କୋଟିଏ ରଥରେ ପାଣିଦ୍ରବ୍ୟ ଭରି ନେଲେ ।
ଲାବଣ୍ୟପୁର ରାଜା ଆଗରେ ନେଇ ପୁଣ
କୋଟିରଥ ପାଣିଦ୍ରବ୍ୟ ମନ୍ତ୍ରୀ ଦେଲାପୁଣ ।
ଦେଖିଣ ଅସୁର ଯେ ଆନନ୍ଦ ମନ ହେଲା
ଅତି ଉତ୍ସବରେ ସେ ବାହାର ହୋଇଲା ।
ଦୁଆରେ ଦେଖିଲା ଯେ ରାମଚନ୍ଦ୍ର ବିଜେ
ରଥରୁ ଓହ୍ଲାଇ ଯେ ଦୈତ୍ୟକୁଳ ରାଜେ ।
ଶତେବାର ପରିଯନ୍ତେ ଓଳଗି ମେଲାଇଲା
କରଯୋଡ଼ି ଆଗରେ ସେ ଯାଇଣ ଉଭାହେଲା
ବୋଇଲା ମୋର ପୁରେ ବିଜେ ଆଜି ଶିରୀ
ଯୋଗରେ ରଜନୀ ଯେ ପାହିଲା ମୋହରି ।
ରାମ ବୋଇଲେ ପୁତ୍ରରେ ତୋତେ ଦେଖିବାକୁ
ତେଣୁକରି ଆସିଛୁଁ ଯେ ତୋହର ପୁରକୁ ।
କୋଟିଏ ରଥ ନେଇ ସମର୍ପେ ଅସୁର
ରାମ ବୋଇଲେ ଏତ ଅଟଇ ସୁସାର ।
ବୋଇଲେ କୁମରରେ କୁଶଳେ ତୁମ୍ଭେ ରହ
ଆମ୍ଭେ ଯାଉଅଛୁଁ ଯେ କୁଶଳେ ତୁ ରହ ।
ଲାବଣ୍ୟସୁର ବୋଇଲା ଶୁଣ ହେ ଦାଶରଥି
କଥାଏ ମାଗୁଛି ମୋତେ ସୁଦୟା ହେବକି ।
ମନ୍ତ୍ରୀ କହିବାରୁ ମୁଁ ଶୁଣିଲି ତୁମ୍ଭ ଗୁଣ
ଅନେକ ଅସୁର ତୁମ୍ଭେ ମାଇଲ ଦୁଷ୍ଟ ପୁଣ ।
ମାରୁତି ବୋଲିଣ ଜଣେ ପବନ କୁମର
ଅନେକ ବଳବନ୍ତ ଅଟେ ସେହୁ ବୀର ।

ତାହା ସଙ୍ଗେ ଆଜ୍ଞାକଲେ ଯୁଦ୍ଧ ମୁଁ କରିବି
ଶୁଣିକରି ଶ୍ରୀରାମ ବୋଇଲେ ଯାଅ ବେଗି ।
ଏହା କହି ହନୁକୁ ବିଷ୍ଣୁ ତେଜଦେଲେ
ଲାବଣ୍ୟସୁର ଦେଖିଣ ତାକୁ ଭୟକଲେ ।
ମାରୁତିକି ଦେଖିଣ ସେ ନମସ୍କାର କଲା
ଶ୍ରୀରାମଙ୍କୁ ଖଣ୍ଡେଦୂର ପାଛୋଟି ଅଇଲା ।
ସେଠାରୁ ଶ୍ରୀରାମ ଯେ ବିଦାୟ ତାକୁ ଦେଲେ
ସେନା ଯୂଥପତିଙ୍କି ଯେ ଘେନିଣ ଚଳିଲେ ।
ହନୁମନ୍ତ ବୋଇଲେ ଶୁଣ ହେ ଶ୍ରୀରାମ
ଆହୁରି ପୁରେକ ଅଛି ମୋହଠାରୁ ଶୁଣ ।
ଉଲ୍ଲଳ ହେମାଳ ବୋଲି ଏକଇ ଯେ ପୁର
ସେହିବାଟେ ଗଲ ଆମ୍ଭେ ଯିବା ରଘୁବୀର ।
ଶ୍ରୀରାମ ବୋଇଲେ ଯେ ପବନ ସୁତ ଶୁଣ
ଏ ବିମ୍ବର ଗୋଟି ଯେ କେଉଁଆଡ଼କୁ ପୁଣ ।
ରାମଙ୍କୁ ବୋଲେ ମାରୁତି ଏ ଭିତରେ ଅଛିପୁର
ଧବଳ ପୁରଗୋଟି ଦିଶଇ ଉଜ୍ଜ୍ୱଳ ।
ସେହି ପୁରଗୋଟି ଉଜ୍ଜ୍ୱଳ ହେମମାଳୀ
ତିନିସସ୍ର ପୁର ଯେ ସେଥିରେ ଅଛି ଘେରି ।
ଯେବେଳେ ଆମ୍ଭେ ତୁମ୍ଭ ଘରଣୀ ଖୋଜିଲୁ
ଏହି ବିମ୍ବରେ ପଶି ବଣା ଆମ୍ଭେ ଦେଲୁଁ ।
ସେ ପୁରରେ ଆମ୍ଭେ ଯେ ହେଲୁ ପରବେଶ
ଦେଖିଲୁଁ ଯେ ଅନେକ ସ୍ତିରୀର ନିବାସ ।
ବୁଲିଣ ଚଉପାଶେ ଦେଖିଲୁଁ ଗୋସାଇଁ
ଜାନକୀର ସାଦୃଶ୍ୟରେ ସ୍ତିରୀ ଦେଖିଲୁଁ ତହିଁ ।
ଅମୂଲ୍ୟ ସିଂହାସନରେ ବସିଛି ସେ ନାରୀ
ଦେଖିଣ ମନରେ ଯେ ବିଚାର ଆମ୍ଭେ କରି ।
ଶ୍ରୀରାମଙ୍କ ଘରଣୀକି ଆଣିଲା ରାବଣ
ଏଥିରେ ଲୁଚାଇ ଯେ ରଖିଅଛି ପୁଣ ।
ଏମନ୍ତ ବୋଲିଣ ଆମ୍ଭେ କଲୁଁଟି ବିଚାର
ସେ ସତୀ ବୋଇଲେ ଶୁଣ ହେ କପିବୀର ।
ନୁହଇ ଜାନକୀ ମୁଁ ଯେ ରାମର ଘରଣୀ
ରାବଣ ଘେନିଗଲା ଲଙ୍କାଗଡ଼କୁ ପୁଣି ।
ଶ୍ରୀରାମର ଦୂତ ତୁମ୍ଭେରେ ଅମୃତ ପାନକର
ଯେବାଟେ ଅଇଲ ସେବାଟେ ବାହାର ।
ଉତ୍ତମ ପଦାର୍ଥ ଯେ ଦାସୀମାନେ ଦେଲେ
ଭୁଞ୍ଜିଣ ସନ୍ତୋଷ ଯେ ହେଲୁ ଆମ୍ଭେ ଭଲେ ।
ବାହାର ହୋଇ ପୁଣ ସେ ବାଟରେ ଗଲୁଁ
ସମୁଦ୍ର କୂଳରେ ଯାଇଣ ମିଳିଲୁଁ ।
ଏଥୁ ଅନନ୍ତରେ ଯେ ଶୁଣ ଶାକମ୍ଭରୀ
ଶ୍ରୀରାମ ସେଠାରେ ଯେ ଅଛନ୍ତି ବିଜେକରି ।
ବିମ୍ବର ଦୁଆରେ ଯେ ଦୁଇ ସ୍ତିରୀ ଥିଲେ
ଧରାବତୀ ଆଗରେ ବାରତା ନେଇ ଦେଲେ ।
ବୋଇଲେ ଶ୍ରୀରାମଙ୍କ ସଙ୍ଗରେ ପର୍ଶୁରାମ
ଭରଥ ଶତ୍ରୁଘନ ଦୁଇଭାଇ ପୁଣ ।
ପଚିଶ ଯୁଥପତି ଅଷ୍ଟସେନା ସଙ୍ଗେ
ବିଜେକଲେ ରାମ ବିମ୍ବର ଦ୍ୱାରେ ରଙ୍ଗେ ।
ଶୁଣିଣ ଧରାବତୀ ସନ୍ତୋଷ ହୋଇଲେ
ପାର୍ବତୀ ଆଗେ ଏହା ଈଶ୍ୱର କହିଲେ ।
ବଳରାମ ଦାସ ଯେ ଶ୍ରୀରାମ ଚରଣ
ଶରଣ ପଶିଣ ଯେ ଭାବଇ ଅନୁକ୍ଷଣ ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ଧରାବତୀ ଶୁଣିଣ ଆନନ୍ଦ ତାର ମତି ।
ଦାସୀଙ୍କି ବୋଇଲେ ଯେ ବହନ ଚଳିଯାଅ
ଦିହୁଡ଼ି ଚନ୍ଦ୍ରଦୀପ ବାଟରେ ବସାଅ ।
ଏ ପୁରକୁ ବିଜୟେ କରିବେ ଦାଶରଥି
ଉଜ୍ଜଳ ବାଟ ହେଲେ ଏଥକୁ ଆସିବେଟି ।
ନାରାୟଣ ଆସିଲେ ଦେଖିବା ଆମ୍ଭେ ଆଜ
ହରି ନାରାୟଣଙ୍କୁ ମନରେ ତୁମ୍ଭେ ହେଜ ।
ଅନେକ କାଳରୁ ଆଶା କରି ମୁଁ ଅଛି ତାଙ୍କୁ
ଦେଖିଲେ ମୋର ନେତ୍ର ସୁଫଳ କରିବାକୁ ।
ବାଟକୁ ଉଜ୍ଜଳ ଯେ ତୁମ୍ଭେ ବେଗେ କର
ପହଣ୍ଡ ମଣାଇଁ ଆଣ ଜାନକୀର ବର ।
ମୋହର ଜ୍ୟେଷ୍ଠଭଗ୍ନୀ ଅଟଇ ବେଦମତୀ
ତାହାର ସ୍ୱାମୀ ଯେ ଅଟନ୍ତି ଦାଶରଥି ।
ସେ ଅଟନ୍ତି ଜ୍ୟେଷ୍ଠ ମୁଁ ଅଟେ କନିଷ୍ଠ
ମୋହର ଆଶା ଅଛି ଦାଶରଥିଙ୍କ ପାଶ ।
ହାସ୍ୟରସ କରାଇ ମୋଠାକୁ ତାଙ୍କୁ ଆଣ
ପ୍ରସନ୍ନ ମୋତେ ଅବା ହେବେ ସେହୁ ପୁଣ ।
ଶୁଣିଣ ଦାସୀଗଣ ବେଗେ ଚଳିଗଲେ
ବେଶ ଭୂଷଣ ହୋଇ ସକଳେ ସଜହେଲେ ।
ଅମଳାଣ ଶାଢ଼ୀକି ଯେ ଉପରାଣ ଦେଲେ
ବିମ୍ବର ଦ୍ୱାର ବାଟରେ ଉଜ୍ଜଳ ନେଇ ଜାଳିଲେ ।

ବାଟ ନିରିମଳ କରି ଶଉଚ କରାଇଲେ
ବାହାର ଦ୍ୱାରେ ଯାଇଁ ପରବେଶ ହେଲେ ।
ଦେଖିଲେ ଦାଶରଥି ଅଛନ୍ତି ଉଭା ହୋଇ
ଓଳଗି ମେଲାଇଲେ ସକଳ ଦାସୀ ଯାଇଁ ।
ରାମଚନ୍ଦ୍ର ବୋଲନ୍ତି ଶୁଣ ନାରୀବର
ଏପୁରେ ତୁମ୍ଭର କି ଅଟେ ନିଜ ଘର ।
ଦାସୀମାନେ ବୋଇଲେ ଶୁଣିବା ରୂପଧାରୀ
ତୁମ୍ଭର ଶାଳୀ ଯେ ଏ ପୁରେ ବିଜେକରି ।
ବେଦମତୀ ଧରାବତୀ ଦୁଇ ଯେ ଭଉଣୀ
ମେରୁଙ୍କର ଦୋହୀତା ଅଟନ୍ତି ହାଦେ ପୁଣି ।
ନାରାୟଣ ଚରଣେ ଚିତ୍ତ ତାଙ୍କର ଗାଢ଼
ମେରୁରାଜା ଜାଣିଲେ ଯେ ତାଙ୍କର ବିଚାର ।
ଉଜ୍ଜଳ ହେମମାଳୀ ବୋଲିଣ ଏ ପୁର
ନିକାଞ୍ଚନ ସ୍ଥାନ ଯେ ରଖିଲେ ନୃପବର ।
କେତେକାଳ ଏଥିରେ ଯେ ଦୁଇଭଗ୍ନୀ ଥିଲେ
ବେଦମତୀ କିଛିଦିନ ଅନ୍ତରେ ପୁଣି ଗଲେ ।
ସେହି ଦେହ ଘେନି ଜାତ ଜନକ ରାଜାଘରେ
ପାଳକ ଝିଅ ଜାନକୀ ଜନକ ରାଜାରେ ।
ସେ କନ୍ୟାଙ୍କୁ ପ୍ରଭୁ ହୋଇଲେ ତୁମ୍ଭେ ବିଭା
ସୁନ୍ଦର ପଣରେ ସେ ଯୁବତୀ ଅଟେ ଲୋଭା ।
ତୁମ୍ଭେ ଏଠାବକୁ ଯେ ଆସିବାରୁ ପୁଣ
ଆମ୍ଭେମାନେ ତାକୁ ଯେ କହିଲୁଁ ଯାଇଁଣ ।
ସେ ବୋଇଲେ ପ୍ରଭୁଙ୍କୁ ଯେ ଘେନିଆସ ମୋର
ଦାସୀ ହୋଇ ଚରଣରେ ଖଟିବି ତାଙ୍କର ।
ଶୁଣିକରି ରାମ ଯେ ସନ୍ତୋଷ ମନ ହେଲେ
ଆଗରେ ଚାଲ ବୋଲି ଦାସୀଙ୍କୁ ବୋଇଲେ ।
ବିମ୍ବର ଦ୍ୱାରେ ଉଭା ହୋଇଥିଲେ ଯାଇ
ଦାସୀଙ୍କର ସଙ୍ଗରେ ଗଲେ ରଘୁସାଇଁ ।
ଆଗରେ ଦୁଇଜଣ ପଛରେ ଦୁଇଜଣ
ଦୁଇ ପାଶରେ ରହିଲେ ଚାରି ଚାରିଜଣ ।
ମଣିମା ଡାକ ଦେଇ ପଥ ବାରି ନେଲେ
ଏଥୁ ଅନନ୍ତରେ କଥା ଶୁଣ ଭଲେ ।
ପର୍ଶୁରାମ ଶ୍ରୀରାମଙ୍କ ପଛରେ ବିଜେକଲେ
ଦାସୀମାନେ ତାହାଙ୍କୁ ମଣାଇଁ ଘେନିଗଲେ ।
ତାଙ୍କ ପଛରେ ଭରତ କଲେ ଯେ ଗମନ
ମଣାଇଁ ଘେନିଗଲେ ଦାସୀଗଣେ ପୁଣ ।

ତାଙ୍କ ପଛେ ଶତ୍ରୁଘନ ଗମନ କରିଲେ
ହାସ୍ୟରସ କରି ଦାସୀ ପଥ ବଢ଼ାଇନେଲେ ।
ଉଜ୍ଜଳ ହେମମାଳୀ ପୁରେ ପରବେଶ
ଶ୍ରୀରାମ ଦେଖିଲେ ଯେ ମଙ୍ଗଳ ଆଦେଶ ।
ପୂର୍ଣ୍ଣକୁମ୍ଭ ନାରିକେଳ ଚୂତପତ୍ର ଟଣା
ବନକ ଜଗତୀମାନ ଦେଖିଲେ ହେବବଣା ।
ଚିତ୍ର ବିଚିତ୍ର କେ ଦିବ୍ୟ ପୁରମାନ
ସୁବର୍ଣ୍ଣର ଚଉରା ଯେ ଧାଡ଼ି ଧାଡ଼ି ପୁଣ ।
କୂପ ବାମ୍ପୀ ପୁଷ୍କରିଣୀ ଅନେକ ତହିଁ ଅଛି
ଡାହୁକ କୋକିଳ ହଂସ ଲୀଳା ଯେ କରନ୍ତି ।
ଦୁଇଭାଇ ପର୍ଶୁରାମ ଯାଇଁଣ ମିଳିଲେ
ସେନା ଯୂଥପତି ଯେ ଯାଇଣ ସଙ୍ଗହେଲେ ।
ଶ୍ରୀରାମ ସଙ୍ଗରେ ସେ ବୁଲନ୍ତି ସେ ପୁର
ନଦୀ ସରୋବର ମେଲା ପକ୍‌କା ଘର ।
ଗିରି କନ୍ଦର ଯେ ଦେଖିଲେ ଯାଇଁ ପୁଣ
ମୃଗ ସମ୍ବର ଶୂକର ଛନ୍ତି ଜାଣ ।
ଗଣ୍ଡା ଯେ ଗୟଳ ନାନା ଜୀବ ତହିଁ
ଦେଖିକରି ରାମ ଯେ ଆନନ୍ଦ ମନ ହୋଇ ।
ନାନା ଜାତି ପକ୍ଷୀ କରେ କ୍ରୀଡ଼ା ଭାବ
ନାନା ଜାତି ଜୀବ ଯେ ବିହରନ୍ତି ସର୍ବ ।
ଫେରିଲେ ସେପୁର ଯେ ଦେଖିଲେ ରାମରାଣ
ଲେଉଟି ସହରରେ ବିଜେ କଲେ ପୁଣ ।
ଦେଖିଲେ ନିର୍ମାଣ ଯେ ସ୍ଫଟିକ ପୁରମାନ
କଳଶ ଧାଡ଼ି ଧାଡ଼ି ଉପରେ ଅଛି ଜାଣ ।
ସେ ପୁର ଶୋଭା ଦେଖି ଲାଗଇ ଶୀତଳ
ଚନ୍ଦନ ବୋଳିଲେ ଯେହ୍ନେ ଦେହକୁ ହିତକାର ।
ସେ ପୁରକୁ ଦେଖିଣ ସନ୍ତୋଷ ହୋଇଲେ
ଭଲାରେ ବିଶ୍ୱକର୍ମା ରଚିଣ ଥିଲୁ ଭଲେ ।
ସବୁଠାରେ ବାଦ୍ୟ ଯେ ନିଶାଣ ଦୁନ୍ଦୁଭି
ହରିବୋଲ ରାମତାଳି ସବୁଠାରେ ଶୁଭି ।
ହୁଳହୁଳି ଶବଦ ଯେ ହେଉଛି ସବୁଠାରେ
ଦେଖିଣ ରାମଚନ୍ଦ୍ର ବିଚାରନ୍ତି ମନରେ ।
ଏପୁର ଗୋଟି ଦିଶେ ସବୁଠାରୁ ତୋରା
ବାହାର ପୁରମାନ ଦେଖି ରାମଧାରା ।
ଦେଖିଲେକ ରାମ ଯେ ସ୍ତିରୀ ପୁରୁଷ ସେଥି
ବସନ୍ତ ବର୍ଣ୍ଣ ମୂର୍ତ୍ତି ଦିବ୍ୟ ଦିବ୍ୟ ତାଙ୍କର ଜ୍ୟୋତି ।

ଶୋଭାରେ କାମଦେବ ରୂପକୁ ପାରେ ମୋହି
ପୁରୁଷମାନେ ଶୋଭା ରତିକି ପାରେ ଦହି ।
ହାଟ ବାଟ ଦାଣ୍ଡରେ ଅନେକ ବିକାକିଣା
ନେଲାଲୋକ ନିଏ ଦେଲା ଲୋକଇଁ ଫୁଲଣା ।
ରଜକାରୀ ଲମ୍ବହତା ସେବାରେ ତତପର
ଆଚ୍ଛର ବେଭାର ପୁଣି ପାଟକ ଜାତି ଘୋର ।
ଯାଆନ୍ତା ଯାଉଛନ୍ତି ଆସନ୍ତା ଆସନ୍ତି
ଗହଳରେ ଲୋକ ଯେ ଯନ୍ତାଯନ୍ତି ହୋନ୍ତି ।
କେ ବୋଲନ୍ତି ଏପୁରେ ତ ଅପୁର୍ବ ଆଜଦେଖା
କେ ବୋଲେ ଏ ଉରିଜଣ ବିଷ୍ଣୁଙ୍କର ସଖା ।
କେ ବୋଲନ୍ତି ନାରାୟଣ ଜନମ କି ହେଲେ
କେ ବୋଲନ୍ତି ବାସୁଦେବ ରୂପ ପ୍ରକାଶିଲେ ।
କେ ବୋଲନ୍ତି ଶୁଣା ଯାଉଥିଲାଟି ଯାହା
ସେହି କଥା ଆସି ହୋଇଲାଟି ତାହା ।
ଏକନାରୀ ବୋଲେ ଯେ ମୁହିଁ ଅଛି ଜାଣି
ଶ୍ରୀହରି ଜନମ ହେଲେ ସୁରଙ୍କ କଷ୍ଟ ଜାଣି ।
ଜମ୍ବୁଦ୍ୱୀପ ଭୂଥ ଖଣ୍ଡରେ ଅଯୋଧ୍ୟା ନଗ୍ରେପୁଣ
ଦଶରଥ ରାଜାଘରେ ଜାତ ଯେ ନାରାୟଣ ।
ଧରାବତୀ ଜ୍ୟେଷ୍ଠଭଗ୍ନୀ ବେଦମତୀ ପୁଣ
ଜନକ ରାଜାଘରେ ଜନ୍ମହେଲେ ଜାଣ ।
ଅଯୋନିରେ ଜାତ ଯେ ବେଦମତୀ ହେଲା
ପାଳକ ଝିଅ କରି ଜନକ ରଖିଲା ।
କାଳେଣ ତାର ନାମ ଜାନକୀ ଦେଇଥିଲେ
ସେ କନ୍ୟା ଗୋଟିକି ବିଭା ରାମ ଯେ ହେଲେ ।
ଏଠାକୁ ଆସିଛନ୍ତି ସେହି ଯେ ପୁରୁଷ
ଧରାବତୀ ବିଭା ତାଙ୍କୁ ହୋଇବ ଅବଶ୍ୟ ।
ଏଥୁ ଅନନ୍ତରେ ପାର୍ବତୀ ଦେବୀ ଶୁଣ
ଶ୍ରୀରାମ ଉରିଦିଗ ଦେଖିଲେ ଫେରିଣ ।
ନିଜ ନଗ୍ରରେ ଯାଇଁହେଲେ ପରବେଶ
ଦେଖିଲେ ହେମପୁର ଯେସନେ ପ୍ରକାଶ ।
ଚନ୍ଦ୍ରଙ୍କ ପୁର ଯେହ୍ନେ ଲାଗଇ ଶୀତଳ
ତେସନେକ ପ୍ରାୟେ ଯେ ଲାଗଇ ସେ ପୁର ।
ସ୍ଫଟିକ ପାବଚ୍ଛରେ ରାମ ଉଭା ହେଲେ
ଦାସୀମାନେ ଆସିଣ ଚରଣ ଧୋଇଦେଲେ ।
ଧରାବତୀ ଆସିଣ ଯେ କରଧରି ନେଲା
ବଳରାମ ଦାସ ଏହି ଗୀତରେ ଗାଇଲା ।

- ପ୍ରଥମ ଭାଗ ସମାପ୍ତ -

(ଦକ୍ଷିଣୀ ରାମାୟଣ)

# ଉତ୍ତରା କାଣ୍ଡ

## ଦ୍ୱିତୀୟ ଭାଗ

### ଶ୍ରୀ ଗଣେଶାୟ ନମଃ

ଜୟ ଜୟ ଜଗନ୍ନାଥ ଦଶରଥଙ୍କ ସୁତ ,
କଉଶଲ୍ୟାଙ୍କ ଗର୍ଭରେ ହେଲ ଦେବ ଜାତ ।
ଜାନକୀ ବଲ୍ଲଭୀ ତୁମ୍ଭର କମଳା ଅଟେ ପୁଣ
ସେହୁ ଜାତ ହେଲେ ମେରୁର ଘରେ ଜାଣ ।
ବେଦମତୀ ନାମ ଯେ ହୋଇଲା ତାହାର
ଅଯୋନୀ ସମ୍ଭୁତା ସେ ମାରିବାକୁ ଅସୁର ।
ଜନକ ଋଷିଘରେ ଭୂମିରୁ ଜାତ ହୋଇ
ଏଗାର ବର୍ଷ ଛଡ଼ମାସେ ରାମଚନ୍ଦ୍ରଙ୍କୁ ପାଇ ।
ଅସୁରକୁ ମାରିଣ ଅଯୋଧ୍ୟା ପରବେଶ
ସ୍ୱାମୀଙ୍କ ସଙ୍ଗରେ ବନେ ବୁଲିଲେ ବିଶେଷ ।
ସ୍ୱର୍ଗକୁ ଯାଇଣ ଦେବଙ୍କ ପୁର ଦେଖି
ପାତାଳ ଦିଗ ବିଜୟ ଶ୍ରୀରାମ ଲେଉଟି ।
ନିଶ୍ଚିନ୍ତ ହୋଇ ରାମ ସୀତା ଘେନି ବିହରିଲେ
ଗ୍ରୀଷମରେ ମଧୁବନେ ପଶିଣ କ୍ରୀଡ଼ାକଲେ ।
ଶବଦରେ ରତ୍ନପୁରେ କରନ୍ତି ନୀଳାରସ
ଶୀତରେ ଦାବାଗ୍ନି ଲଗାଇ ହରଷ ।
ଏହିରୂପେ ବାରମାସ ଭୋଗ କରନ୍ତି ରାମ
ଯେସନେକ ପାର୍ବତୀ ନ ତେଜି ମହାଦେବ ।
ଜାନୁପରେ ବସାଇ ଯେସନେ ପଞ୍ଚାନନ
ରାତ୍ର ଦିବସରେ ତେଜ୍ୟା ନ କରି ତ୍ରିଲୋଚନ ।
ସେହି ପ୍ରକାରେ ରାମ କରନ୍ତି ନୀଳାରସ
ଏମନ୍ତେ ବହିଗଲା ସହସ୍ରେ ବରଷ ।
ପାର୍ବତୀ ବୋଇଲେ ଦେବ ଜଳକ୍ରୀଡ଼ା ଭାବ
ଶୁଣିଣ ମୋର ମନ ହୋଇଲା ଶ୍ରୋତାଭାବ ।
ମୋର ନୀଳା ଶ୍ରୀରାମ ଯେ କେମନ୍ତେ ଜାଣିଲେ
ମନୁମାୟା କହିଲା ଈଶ୍ୱର ବୋଇଲେ ।
ତୋହର ଲୀଳା ନେଇ ତାହାଙ୍କୁ ଶିଖାଇଲା
ନାନା ଲୀଳା ବିର୍ନୋଦ ସେହୁ କରାଇଲା ।
ଯେଉଁ ରୂପେ ତୋର ମୋର ହୋଏ ଲୀଳା
ମନୁମାୟା ସର୍ବଙ୍କ ଶକତୀ ଅଟେ ପରା ।
ପାର୍ବତୀ ବୋଇଲେ ଦେବ ଶୁଣ ହେ ଈଶାନ
କ୍ରୀଡ଼ା ରସ ଛାଡ଼ିଣ କିସ କଲେ ରାମ ।
ଈଶ୍ୱର ବୋଇଲେ ଶୁଣ ଗୋ ଶାକମ୍ଭେରୀ
ଅନ୍ତଃପୁରେ ରାମ ଯେ ଲୀଳା ରସକରି ।
ଦକ୍ଷିଣ ଦିଗରେ ସାତ ମଣ୍ଡଳମଣି
ଚଉଦ ସହସ୍ର ରାଜା ଅଟନ୍ତି ସାର ପୁଣି ।
ସକଳ ରାଜାଙ୍କଠାରୁ ସେ ଧନ ଆଣି
ସାତ ସସ୍ର ପାଣିଦ୍ରବ୍ୟ ରଥରେ ଭରି ପୁଣି ।
ଶ୍ରୀରାମଙ୍କ ଛାମୁକୁ ଦେଲେ ପଠିଆଇ
ଦାଶରଥୀ ସିଂହଦ୍ୱାରେ ମିଳିଲେ ଆସି ସେହି
ସୁମନ୍ତ ମନ୍ତ୍ରୀ ଦେଖିଣ ଶତ୍ରୁଘନରେ କହି
ରାଜାମାନେ ଉପହାର ଦୂତଙ୍କ ହସ୍ତେ ଦେଇ ।
ଶତ୍ରୁଘନ ଶ୍ରୀରାମଙ୍କ ଛାମୁରେ ଯାଇଁ କହି
ଶ୍ରୀରାମ ବୋଇଲେ ଭଣ୍ଡାରେ ରଖନେଇ ।
ଲକ୍ଷ୍ମଣ ଭଣ୍ଡାରରେ ନେଇଣ ଧନ ରଖ
ଦୂତମାନଙ୍କୁ କହି ଶ୍ରୀରାମଙ୍କୁ ଯାଇ ଦେଖ ।
ଶୁଣିଣ ଶତ୍ରୁଘନ ବେଗେ ଚଳିଯାନ୍ତି
ଶୁଣ ସୁମନ୍ତ ମୋତେ ଶ୍ରୀରାମ କହିଛନ୍ତି ।
ଲକ୍ଷ୍ମଣଙ୍କ ଭଣ୍ଡାରେ ରହିବ ସେହୁ ଧନ
ଶୁଣିଣ ସୁମନ୍ତ ଚଳେ ସିଂହଦ୍ୱାରେ ପୁଣ ।
ସାତ ସହସ୍ର ରଥ ଯେ ଘେନି ଚଳିଗଲା
ଲକ୍ଷ୍ମଣଙ୍କ ସିଂହଦ୍ୱାରେ ନେଇଣ ରଖାଇଲା ।

ଲୋକ ଲଗାଇଣ ବହିନେଲେ ଦ୍ରବ୍ୟ
ରତ୍ନ ଭଣ୍ଡାର ଘରେ ଥୋଇଲେ ନେଇ ସର୍ବ ।
ସାରଥିମାନଙ୍କୁ ସଙ୍ଗରେ ଘେନିପୁଣ
ଶ୍ରୀରାମ ଦରଶନେ ଚଳିଲେ ସର୍ବଜନ ।
ସିଂହାସନର ଉପରେ ଶ୍ରୀରାମଙ୍କୁ ଦେଖି
ଶତେବାର ବିଳମ୍ବ କରି ଉଭା ହୋଇଲେଟି ।
ଶ୍ରୀରାମ ବୋଇଲେ ରାଜାମାନଙ୍କ କୁଶଳ
ଅଛନ୍ତି କି ସୁଖରେ ନିଜ ନିଜ ରାଜ୍ୟର ।
ଦୂତମାନେ ବୋଇଲେ ସମସ୍ତେ ଛନ୍ତି ଭଲେ
ତୁମ୍ଭର ନାମ ଜପ ଯେ କରନ୍ତି ସର୍ବକାଳେ ।
ଶୁଣି ଶ୍ରୀରାମ ଚନ୍ଦନ ଅକ୍ଷତ ତାଙ୍କୁ ଦେଲେ
ଏ ମେଲାଣି ପାଇଣ ଦୂତେ ଚଳିଲେ ନିଜପୁରେ ।
ରାଜାମାନଙ୍କ ପୁରରେ ହେଲେ ପରବେଶ
କହିଲେକ ତୁମ୍ଭଠାରେ ଶ୍ରୀରାମ ସନ୍ତୋଷ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଉତ୍ତର ଦିଗର ରାଜା ବିଚାର ସର୍ବେ କରି ।
ଛତିଶି ସହସ୍ର ଯେ ଉତ୍ତର ଦିଗ ରାଜା
ଅଠର ମଉଡ଼ମଣି ସଂସାରେ ପାନ୍ତି ପୂଜା ।
ବୋଇଲେ ରାମଙ୍କୁ ଦେଖା ଦରଶନି ଦେବା
ଯେଉଁ ଦେବ ସକାଶରେ ଚିନ୍ତା ହେଲା ତେଜ୍ୟା ।
ସେହି ନାରାୟଣ ଯେ ଅଟନ୍ତି ପରମବନ୍ଧୁ
ରାଜାଙ୍କର ଉପରେ ସେ ଅଟନ୍ତି ପୂର୍ଣ୍ଣ ଇନ୍ଦୁ ।
ଏମନ୍ତ ବିଚାରି ଯେ ସକଳ ରାଜାଗଣ
ଜମ୍ବୁନଦ ସୁବର୍ଣ୍ଣ ଆଧି ହେଲେକ ରାଜନ ।
ଛତିଶ ସହସ୍ର ଯେ ରଥ ସଜ କଲେ
ଦୂତଙ୍କର ହସ୍ତରେ ଅଯୋଧ୍ୟା ଚାଳିଦେଲେ ।
ଶ୍ରୀରାମର ସିଂହଦ୍ୱାରେ ହେଲେ ପରବେଶ
ରଥ ଦେଖି ସୁମନ୍ତ୍ର କହେ ଶତ୍ରୁଘନ ପାଶ ।
କରଯୋଡ଼ି ଜଣାଇଲେ ସୁମିତ୍ରାର ଶିଷ୍ୟ
ଭୋଦେବ ଶ୍ରୀରାମ ହେ ଶୁଣିବା ସନ୍ଦେଶ ।
ଉତ୍ତର ଦିଗ ରାଜାମାନେ ଆଣି ରତ୍ନ ଦେଲେ
ଛତିଶ ସହସ୍ର ରଥ ଆସିଣ ଅଛି ଭଲେ ।
ସବୁହିଁ ଶୁଦ୍ଧ ସୁବର୍ଣ୍ଣ ଅଟେ ଦେବ ଜାଣ
ଜମ୍ବୁନଦ ସୁନିଆଁ ଯେ ଆଣିଛନ୍ତି ପୁଣ ।
ଶ୍ରୀରାମ ବୋଇଲେ ଧନ ଘେନି ବେଗେ ଚଳ
ଭରଥର ଭଣ୍ଡାରେ ନେଇଣ ସମ୍ଭାଳ ।
ଶୁଣିଣ ଶତ୍ରୁଘନ ବେଗେ ଚଳିଗଲେ
ସୁମନ୍ତ ମନ୍ତ୍ରୀ ଆଗରେ ଯାଇଣ କହିଲେ ।
ବୋଇଲେ ଏ ଧନ ଦିଅ ଭ୍ରଥର ଛାମୁର
ତାଙ୍କର ଭଣ୍ଡାରେ କର ନେଇ ଧନ ଠୁଳ ।
ଶ୍ରୀରାମ ଆଜ୍ଞା ଦେଲେ ବେଗେ ଘେନି ଚଳ ।
ଶୁଣି କରି ସୁମନ୍ତ୍ର ଯେ ଉଠିଲେ ସତ୍ୱର ।
ଦୂତମାନଙ୍କୁ ଚାହିଁଣ ମନ୍ତ୍ରୀ ଆଜ୍ଞା ଦେଲେ
ନନ୍ଦୀ ଗ୍ରାମକୁ ଯିବା ବୋଲିଣ ବୋଇଲେ ।
ଘେନିଣ ସକଳ ରଥ ଚଳିଗଲେ ଖରେ
ନନ୍ଦୀ ଗ୍ରାମେ ମିଳିଲେ ଭ୍ରଥର ସିଂହଦ୍ୱାରେ ।
ଅନ୍ତଃପୁର ଶୋଧ କରି ଧନ ବହିନେଲେ
ହୀରାର ଘର ଭିତରେ ନେଇଣ ରଖିଲେ ।
ଦୂତଙ୍କୁ ବୋଇଲେ ଚଳିଯାଅ ବାବୁ
ଶ୍ରୀରାମଙ୍କୁ ତକ୍ଷଣେ ଦର୍ଶନ କର ସବୁ ।
ଶୁଣିଣ ଦୂତମାନେ ରଥ ଘେନିଗଲେ
ଶ୍ରୀରାମଙ୍କ ସିଂହାଦ୍ୱାରେ ରଥ ରୁହାଇଲେ ।
ଶତୃଘନ ସଙ୍ଗରେ ଭିତରେ ଯାଇ ମିଳି
କରଯୋଡ଼ି ପାଦତଳେ ନମସ୍କାର କରି ।
ଶ୍ରୀରାମ କହିଲେ ରାଜାମାନଙ୍କ କୁଶଳ
ଭଲରେ ଅଛନ୍ତିଟି ସକଳ ମହୀପାଳ ।
ଦୂତ ବୋଇଲେ ଦେବ ସମସ୍ତେ ତୋର ସିନା
ନିଶ୍ଚିନ୍ତ କଲ ମେଦିନୀ ଅସୁର ମାରିକିନା ।
ଶୁଣିକରି ଶ୍ରୀରାମ ଅକ୍ଷତ ମାଳା ଦେଲେ
ମନର ସନ୍ତୋଷରେ ମେଲାଣି ତାଙ୍କୁ କଲେ ।
ଓଳଗି ମେଲାଇଣ ଚଳିଗଲେ ଦୂତ
ଯେ ଯାହାର ରାଜ୍ୟରେ ହୋଇଲେ ଉପଗତ ।
ରାଜାମାନଙ୍କୁ ରାମଙ୍କ କୁଶଳ କହିଲେ
ବହୁତ ଖୁସି ଶ୍ରୀରାମ ତୁମ୍ଭମାନଙ୍କୁ ହେଲେ ।
ଅକ୍ଷତ ମାଳା ଦେଇଣ ଛନ୍ତି ଚାପଧାରୀ
କର ପ୍ରସାରି ନେଲେ ସକଳ ଦଣ୍ଡଧାରୀ ।
ଏଥୁ ଅନନ୍ତରେ ଶୁଣ ଆଗୋ ଭଗବତୀ
ପଶ୍ଚିମ ଦିଗେ ବତିଶ ସହସ୍ର ନୃପତି ।
ଷୋଳ ଗୋଟି ସେଥିରେ ଛନ୍ତି ମଉଡ଼ମଣି
ସ୍ୱୟମ୍ବର ସ୍ଥାନରେ ବିଚାର କଲେ ପୁଣି ।
ଶ୍ରୀରାମ ଯେ ଆମ୍ଭଙ୍କୁ ଅଚିନ୍ତା କରାଇଲେ
ଆମ୍ଭର ଭେଟି ଦର୍ଶନୀ ନେଇ ଦେବା ଭଲେ ।

ଏମନ୍ତ ବିଚାରି ଯେ ସକଳ ରାଜାଗଣ
ବତିଶି ସହସ୍ର ରଥ ସଜ କଲେ ପୁଣ ।
ସେଥିରେ ହୀରା ଲୀଳା ବଇଡୁର୍ଯ୍ୟ ଭରି
ଦୂତଙ୍କର ହସ୍ତରେ ଚଳିଲେ ଦଣ୍ଡଧାରୀ ।
ଶ୍ରୀରାମଙ୍କ ସିଂହଦ୍ୱାରେ ଯାଇ ପ୍ରବେଶିଲେ
ଦେଖିଣ ସୁମନ୍ତ ଶତୃଘନଙ୍କୁ କହିଲେ ।
ଶତ୍ରୁଘନ ଜଣାଇଲେ ଶ୍ରୀରାମ ଛାମୁରେ
ପଶ୍ଚିମ ଦିଗ ରାଜା ଉପହାର ପଠାଇଲେ ।
ଶ୍ରୀରାମ ବୋଇଲେ ସକଳ ପଦାର୍ଥ ନେଇ
ତୋହର ଭଣ୍ଡାରରେ ସାଇତ ଏହା ଯାଇ ।
ଶୁଣିଣ ଶତ୍ରୁଘନ ବେଗେ ଚଳିଗଲା
ବତିଶ ସହସ୍ର ରଥ ଘେନିଣ ଗମିଲା ।
ନନ୍ଦୀ ଗ୍ରାମରେ ଯାଇଣ ଶୀଘ୍ରେ ମିଳିଲେକ
ଲୋକ ଲଗାଇଣ ବୋହି ନେଲେ ରତ୍ନଯାକ ।
ମାଣିକ୍ୟର ଘରେନେଇ ସର୍ବ ସମ୍ପାଦିଲେ
ଜନନୀ ଘରଣୀଙ୍କି ସେ ଡକାଇ ଆଣିଲେ ।
ବୋଇଲେ କଞ୍ଚି ମୁଦ ଏ ଘରରେ ଦିଅ
ଲୋଡ଼ା ହୋଇଲେ ଏଥିର ଦ୍ରବ୍ୟ କିଛି ନିଅ ।
ସୁମାଳିନୀ କହେ ସ୍ୱାମୀ ଶୁଣ ମୋ ବଚନ
କିସ ଦ୍ରବ୍ୟ ଏଥିରେ ଭରଣା କଲ ପୁଣ ।
ଶତ୍ରୁଘନ ବୋଇଲେ ଏ ଆମ୍ଭ ଅଳଙ୍କାର
ଯାହାର ମନ ଅଛି ଲଗାଅ ହୃଦୟର ।
କଳାବତୀ ଜନନୀ ବୋଇଲେ ପୁତ୍ର ଶୁର
ବଧୂର ପାଞ୍ଚ ସହସ୍ର ଅଛନ୍ତି ଦାସୀଗଣ ।
ସେମାନେ ଅଳଙ୍କାର ଲଗାଇବାରେ ମନ
ତୁତ ଏକବ୍ରତୀ ଆଶା ଛାଡ଼ିଲେ ସେ ମନ ।
ଶତ୍ରୁଘନ ବୋଲେ ମୁଁ ତୁମ୍ଭଙ୍କୁ ସମର୍ପିଲି
ଯେ ଯାହା ଲଗାଇବଟି ଦିଅ ମୁଁ ବୋଇଲି ।
ଶୁଣିଣ ଶାଶୁ ବଧୂ ଦାସୀଙ୍କୁ ଡକାଇ
ଯେ ଯାହାର ମନ ଜାଣି ଅଳଙ୍କାରମାନ ଦେଇ ।
ଏଥୁ ଅନନ୍ତରେ ତୁହି ଶୁଣ ଗୋ ପାର୍ବତୀ
ପୂର୍ବ ଦିଗ ରାଜାମାନେ ବିଚାର କରନ୍ତି ।
ବୋଲନ୍ତି ରଘୁନାଥ ଆମ୍ଭଙ୍କୁ ଦେଲେ ବର
ତାଙ୍କ ଭୁଜ ବଳେ ଆମ୍ଭେ ହେଲାଇଁ ନିଶ୍ଚଳ ।
ଉପହାର ଆୟେ ଯେ ନଦେଲେଁ ଆମ୍ଭେମାନେ
ଏମନ୍ତ ବିଚାର କଲେ ସକଳ ରାଜନେ ।

ଅଠର ସହସ୍ର ରାଜା ବସିଣ ବିଚାରିଲେ
ଆୟୋଜନ କଲେ ଭେଟି ନେଇ ଦେବାଭଲେ ।
ମଉଡ଼ମଣି ସେଥିରେ ନବ ଗୋଟି ପୁଣ
ସ୍ୱୟମ୍ବର ତେଜ୍ୟା କରି ଗଲେ ଯେଝା ସ୍ଥାନ ।
ଯେ ଯାହାର ଭଣ୍ଡାରୁ ବାଛିଲେ ଅଳଙ୍କାର
ଗୋଟିଏ ଗୋଟିଏ ରଥେ ଭରି ନୃପବର ।
ଅଠର ସସ୍ର ରଥ ଏରୂପେ ସଜ ହେଲା
ଦୂତଙ୍କୁ ବୋଲେ ରାମଙ୍କୁ ଦିଅ ନେଇ ଭଲା ।
ତକ୍ଷଣେ ଦୂତେ ଘେନି ଅଯୋଧ୍ୟା ପୁର ଗଲେ
ଅଠର ସସ୍ର ରଥ ଅଯୋଧ୍ୟା ପୁରେ ମିଳେ ।
ଶ୍ରୀରାମ ସିଂହଦ୍ୱାରେ ହେଲେ ପରବେଶ
ଲକ୍ଷ୍ମଣ ଜଣାଇଲେକ ଶ୍ରୀରାମଙ୍କ ପାଶ ।
ବୋଇଲେ ଏ ପୂର୍ବଦିଗ ରାଜାଙ୍କର ବିତ୍ତ
ଆସିଅଛି କିସ ଆଜ୍ଞା ଦିଅ ରଘୁନାଥ ।
ଶ୍ରୀରାମ ବୋଇଲେ ମୋର ଭଣ୍ଡାରେ ସାଇତ
ଶୁଣ ବାବୁ ଲକ୍ଷ୍ମଣ ଯେ ମୋହର ଉଦନ୍ତ ।
ସେ ଭଣ୍ଡାର ଗୋଟିକି ଜାନକୀ ଜିମା ଦେବୁ
ମୋହର ଆଜ୍ଞା ବୋଲିଣ ତାଙ୍କୁ ଜଣାଇବୁ ।
ବୋଲିବୁ ତୁମ୍ଭର ମନ ଇଛାରେଟି ପୁଣ
ଦାସୀମାନଙ୍କୁ ତୁମ୍ଭର କରିବ ଭୂଷଣ ।
ଶୁଣିକରି ଲକ୍ଷ୍ମଣ ଯେ ବେଗେ ହୋଇଗଲା
ସିଂହଦ୍ୱାରୁ ପାଣିଦ୍ରବ୍ୟ ସବୁ ଅଣାଇଲା ।
ଅନ୍ତଃପୁର ଯାଇ ଆଗେ ଶୋଧ କରାଇଲେ
ସକଳ ଦ୍ରବ୍ୟ ନେଇ ଭଣ୍ଡାରେ ରଖାଇଲେ ।
ବଇଦେହୀ ପାଶରେ ହୋଇଲେ ପରବେଶ
ଦେଖି କରିଣ ଜାନକୀ ହେଲେ ହସ ହସ ।
ଲକ୍ଷ୍ମଣ ଯାଇଁଣ ପାଦେ ନମସ୍କାର ହେଲା
କରକୁ ଯୋଡ଼ିଣ ଆଗରେ ଉଭାରି ରହିଲା ।
ଜାନକୀ ବୋଇଲେ ହେ ଅଇଲ କିସ ପାଇଁ
ଆଜ କିମ୍ପା କ୍ଷୀଣ ଦେହ ଦିଶୁଅଛି ତହିଁ ।
ଘରଣୀ ତୁମ୍ଭର କିବା ନ ଦେଲେ ଭୋଜନ
ହରଷ ମନରେ କିବା ନକହି ବଚନ ।
ଲକ୍ଷ୍ମଣ ବୋଇଲେ ଆଗୋ ତୁମ୍ଭର ପ୍ରସାଦେ
ଦଣ୍ଡେ ହେଁ ନଦେଖିଲେ ନୀରସ ହୋଇହାଦେ ।
ସ୍ୱାମୀଙ୍କର ଦରଶନ ଅର୍ଥରେ ଅଇଲି
ଆସିଣ ତାଙ୍କ ଛାମୁରେ ଦରଶନ କଲି ।

ଏହି ସମୟରେ ରାଜାମାନଙ୍କ ଉପହାର
ପ୍ରବେଶ ହେଲା ଆସି ତୁମ୍ଭର ସିଂହଦ୍ୱାର ।
ଶ୍ରୀରାମ ବୋଇଲେ ମୋ ଭଣ୍ଡାର ନେଇ ଥୁଅ
ଜାନକୀର ଏ ଭଣ୍ଡାର ଜାନକୀଙ୍କି ଦିଅ ।
ଭଣ୍ଡାରେ ରଖି ଧନ ତୁମ୍ଭଙ୍କୁ ଜଣାଇଲି
ନିର୍ବନ୍ଧ କର ଭଣ୍ଡାର ଛାମୁରେ କହିଲି ।
ଜାନକୀ ବୋଇଲେ କୁଙ୍କୁମ ଲାଗି ମୋହର
ଲକ୍ଷ୍ମଣ ବୋଇଲେ ମେଲା ହୋଇଛି ଭଣ୍ଡାର ।
ଶୁଣିକରି ଜାନକୀ ପାଦୁକା ଲଗାଇଲେ
ଧୀର ଧୀର କରିଣ ସେ ଗମନ କରିଲେ ।
ଲକ୍ଷେ ପରିବାରୀ ଯେ ପଛରେ ଗୋଡ଼ାଇଲେ
ଭଣ୍ଡାର ଦୁଆରେ ଦେବୀ ପ୍ରବେଶ ହୋଇଲେ ।
ଦେଖିଲେ ଭଣ୍ଡାରରେ ଅମୂଲ୍ୟ ଅଳଙ୍କାର
ଦାସୀମାନଙ୍କୁ ଖଞ୍ଜିଲେ ଯେ ଯାହା ବେଭାର ।
ଯାହାକୁ ଯେଉଁ ବେଶ ଦିଶଇ ଶୋଭନ
ସେହି ସଦୃଶ୍ୟରେ ଦାସୀମାନେ ନେଲେ ଧନ ।
ଅନେକ ଅଳଙ୍କାର ଯେ ଦାସୀ ଲଗାଇଲେ
ବସନ୍ତ ବର୍ଣ୍ଣ ପରାୟେ ସମସ୍ତେ ଦିଶିଲେ ।
ହରଷରେ ଦାସୀମାନେ ଚରଣେ ନମନ୍ତି
ମନୁମାୟା ବେଶ ଯେ ହୋଇଲେକ ଆସି ।
ଜାନକୀ ବୋଇଲେ ଆଗୋ ମନୁମାୟା ଶୁଣ
ଦାସୀମାନେ କି ବୋଲନ୍ତି କହ ମୋ ଆଗେଣ ।
ମନୁମାୟା ବୋଇଲେ ଶୁଣ ଆଗୋ ସତୀ ।
ଅଳଙ୍କାର ଲାଇ ଦାସୀ ବିମୁଖେ କହନ୍ତି ।
ଏଡ଼େ ଶୋଭା ପଣକୁ ପୁରୁଷ ସଙ୍ଗ ନାହିଁ
ଏକଥା ଆମ୍ଭର ଭାଗ୍ୟେ ବିହି ଦୁଃଖ ଦେଇ ।
ଜାନକୀ ବୋଲେ ତୁମ୍ଭର ଏଜନ୍ମେ ତା ନାହିଁ
ବାସୁଦେବ ଶ୍ରୀରାମ ଚରଣେ ଥାଅ ଧାୟି ।
ବୈକୁଣ୍ଠ ପୁରରେ ତୁମ୍ଭେ ଷୋଳ ଯୁଗ ରହି
ମର୍ତ୍ତ୍ୟପୁରେ ଜନମ ହୋଇବ ତୁମ୍ଭେ ଯାଇଁ ।
ମଧୁବନର ନିକଟେ ବୃନ୍ଦାବନ ଦେଶେ
ସୈଗୋପପାଟଣା ନବଲକ୍ଷ ଘର ବସେ ।
ସେ ପୁରେ ଜନ୍ମ ହୋଇ ଲଭିବ ନାରାୟଣ
ପ୍ରଥମେ ତୁମ୍ଭ ସଙ୍ଗରେ କରିବେ ରମଣ ।
ତୁମ୍ଭ ସଙ୍ଗେ ମାୟା ସୀତା ଜନମ ହୋଇବ
ଏ ମାୟା ସୀତା ତୁମ୍ଭଙ୍କୁ ଘେନି ବିହରିବ ।

ଏହାର ନାମ ହୋଇବ ଚନ୍ଦ୍ରାବଳୀ ପୁଣ
ଆହୁରି ସୁବର୍ଣ୍ଣ ସୀତା ଗଢ଼ାଇବେ ରାମ ।
ସେ ହୋଇବେ ରାଧିକା ଶ୍ରୀମତୀ ତାର ନାମ
ମନୁମାୟା ଜାତ ହେବେ ଦୂତୀ ରୂପେ ପୁଣ ।
ସହଚରୀ ରୂପରେ ତୁମ୍ଭଙ୍କୁ ଭେଟାଇବ
ବହୁତ ସୁଖ ସେ ଜନ୍ମେ ତୁମ୍ଭଙ୍କୁ ମିଳିବ ।
ପରକୀୟା ଭାବେ ତୁମ୍ଭେ ଷୋଳସସ୍ର ନାରୀ
ଏଗାର ବର୍ଷ ଛଡ଼ମାସ ନିରୋଳେ ଭୋଗକରି ।
ତୁମ୍ଭଙ୍କୁ ସେଠାରୁ ଯେ ତେଜିବେ ବାସୁଦେବ
ଦ୍ୱିତିୟେ ଷୋଳସସ୍ର କନ୍ୟା କରିବେ ଭୋଗ ।
ତେର ବର୍ଷ ଛଡ଼ମାସ ରହିବେ ମଧୁପୁରେ
ଷୋଳସସ୍ର ଜାତ ହେବେ ଇନ୍ଦ୍ରଙ୍କର ପୁରେ ।
ତୁମ୍ଭମାନଙ୍କୁ ସୁର ରାଜା ଆଣିଣ ଦେବ
ମଥୁରାରେ ଭୋଗ ତୁମ୍ଭେ ନିରୋଳେ କରିବ ।
ସେଠାରୁ ବାସୁଦେବ ଯେ ଯିବେ ଦ୍ୱାରକାକୁ
ତୃତୀୟରେ ବିପ୍ରନାରୀ ଖଟିବେ ତାହାଙ୍କୁ ।
ଷୋଳ ସହସ୍ର କନ୍ୟା ଯେ ବ୍ରହ୍ମା ନେଇ ଦେବ
ସେ କନ୍ୟାଙ୍କୁ ବାସୁଦେବ ସୁଖରେ ରମିବ ।
ସେ କନ୍ୟାଙ୍କୁ ଭୋଗକରି ପନ୍ଦର ବରଷ ତ
ସେଠାରୁ ମୁହିଁ ହୋଇବି ରାଜା ଘରେ ଜାତ ।
ମୋ ଅଂଶରେ ଅଷ୍ଟପାଟ ବଂଶୀ ରାଜାଘରେ
ମୋର ଅଂଶୁ ଜାତ ଷୋଳ ସସ୍ର ନାରୀ ବରେ
ଏମାନେ ହେଁ ସମସ୍ତେ ଯେ ରାଜାର ଦୁଲାଳୀ
ଏମାନଙ୍କୁ ଘେନି ଲୀଳା କରିବେ ବଂଶୀଧାରୀ ।
ନିଜପୁରେ ଏମାନଙ୍କୁ ରଖିଣ ରମିବେ
ଅଷ୍ଟପାଟ ବଂଶୀ ନାୟିକା ସେଥିରେ ହେବେ ।
ସମସ୍ତଙ୍କର ପରେ ମୁଁ ହେବି ଶିରୋମଣି
ମୋହର ନାମ ରୁକ୍ମିଣୀ ସେ ଜନ୍ମରେ ପୁଣି ।
ଭୀଷ୍ମକ ରାଜା ଦୁଲାଳୀ ମୁଁ ଜନ୍ମରେ ହେବି
ଏକବ୍ରତୀ ନିୟମ ମୁଁ ସେ ଜନ୍ମେ କରିବି ।
ମୋହନ ମୂର୍ତ୍ତିରେ ରାମକୃଷ୍ଣ ଅବତାର
ଚୌଷଠି ସହସ୍ର କନ୍ୟା ହୋଇବେ ଶ୍ରୋତାର ।
ସେତେବେଳେ ଏ ରାମ ଚୌଷଠି ସସ୍ରରୂପ
ଚିନ୍ତା ନ କର ତୁମ୍ଭେ ଲଭିବ ବିଷ୍ଣୁରୂପ ।
କହିଲି ଏ ଜନ୍ମରେ ନାହିଁ ତୁମ୍ଭଙ୍କୁ ଭୋଗ
ଏକବ୍ରତୀ ଅବିଗୁଣ ତୁମ୍ଭେମାନେ ନ ଧରିବ ।

ଅସୁର ମାରିବା ପାଇଁ ନିୟମ ମୋ ହେଲା
ସେ କଥାମାନ ମୋତେ ଆଗହୁ ଜଣାଥିଲା ।
ବିଚାରିଲି ଏକବ୍ରତୀ ନୋହିବେ ଯେବେ ରାମ
ଅକ୍ଷୟେ ରାବଣମାନେ କେମନ୍ତେ ହେବେଲୀନ ।
ଏମନ୍ତ ବିଚାର ମୁଁ ନିୟମ କରାଇଲି ।
ଅସୁର ପୁରେ ଯାଇଁ ଚାରି ରାବଣ ମରାଇଲି ।
ଅକ୍ଷୟେ ଅସୁର ଯେ ହୋଇଲେ କ୍ଷୟେ ପୁଣ
ଦେଲି ବର ତୁମ୍ଭେ ଲଭିବଟି ନାରାୟଣ ।
ଶ୍ରୀରାମ ସଙ୍ଗରେ ଯେ ମୋର ସଙ୍ଗେଥିବ
ସ୍ୱପନ ପ୍ରାୟେ କଥା ମନରୁ ପାଶୋରିବ ।
ଶୁଣିଣ ସକଳ ଦାସୀ ସନ୍ତୋଷ ହୋଇଲେ
ପାର୍ବତୀ ଆଗରେ ଏହା ଈଶ୍ୱର କହିଲେ ।
ଭଗବତୀ ବୋଇଲେକ ଶୁଣ ଏକାଦଶ
ଏଠାରୁ କିସ ହେଲା ଶୁଣିବାକୁ ମାନସ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭେରୀ
ମରଦନ ମାଜଣା ଜାନକୀ ବେଗେ ସାରି ।
ସ୍ନାହାନ ସାରିଣ ପିନ୍ଧିଲେ ଅମଳାଣ
ନିତ୍ୟକର୍ମ ସାରିଣ ବିଜୟ କଲେ ପୁଣ ।
ରାନ୍ଧଣା ଶାଳରେ ପଶିଲେ ଯାଇ ସତୀ
ଛଡ଼ରସ ପ୍ରକାରେ ମଣୋହି ତିଆରନ୍ତି ।
ପାକ ସମ୍ପାଦି ଦେବୀ ଝରୀରେ ରଖି ନୀର
ଏମନ୍ତ ସମୟେ ବିଜେ କଲେ ରଘୁବୀର ।
ମର୍ଦ୍ଦନ ମାଜଣା ହୋଇ ସ୍ନାହାନ ସାରିଣ
ଦେବାର୍ଚ୍ଚନ ବିଧିସାରି ଦେବ ଦରଶନ ।
ଚତୁରଙ୍ଗ ବଳ ଦେଖି ପାତ୍ର ମନ୍ତ୍ରୀଙ୍କି କହି
କଶ୍ୟପ ବାମଦେବଙ୍କୁ ମେଲାଣି ସେ ଦେଇ ।
ଦୁଇଘଡ଼ି ପର୍ଯ୍ୟନ୍ତେ ବିପ୍ରଙ୍କୁ ଦାନ ଦେଲେ
ଦୁଃଖୀଙ୍କି ଅନ୍ନବସ୍ତ୍ର ନେଇଣ ଦିଆଇଲେ ।
ଭାଇମାନଙ୍କୁ ମେଲାଣି ଦେଇଣ ଚାପଧାରୀ
ପ୍ରବେଶ ହୋଇଲେ ରାମ ନିଜ ଅନ୍ତଃପୁରୀ ।
ଦେଖିଣ ଜାନକୀ ପାଣି ତୋଳିଣ ଦିଅନ୍ତି
ଶ୍ରୀରାମ ପ୍ରଭୁ ମଣୋହି ଠାବରେ ବସନ୍ତି ।
ଷଡ଼ରସେ ପରଶି ସୀତୟା ଚନ୍ଦ୍ରମୁହିଁ
ଭୁଞ୍ଜିସାରି ରାମ ଆଚମନ କଲେ ଯାଇଁ ।
ଆଞ୍ଚୋବନ ସାରିଣ ଶ୍ରୀମୁଖ ପୋଛି ଦେଲେ
ମାୟାସୀତା ବିଡ଼ିଆ ଆଣି ଯୋଗାଇଲେ ।
ବିଡ଼ିଆ ଲାଗି ହୋଇ ପଲ୍ୟଙ୍କେ ନିଦ୍ରାଯାଇ
ମାୟାସୀତା ମନୁମାୟା ପାଦ ମଞ୍ଚାଳଇ ।
ଶ୍ରୀରାମ ନିଦ୍ରା ଯିବାରୁ ଜାନକୀ ଭୋଜନ
ଆଞ୍ଚୋବନ ସାରି କରି ବିଡ଼ିଆ ଭୁଞ୍ଜିଣ ।
ଶୀତଳ ପଲ୍ୟଙ୍କରେ ଜାନକୀ ନିଦ୍ରାଗଲେ
ଦାସୀମାନେ ଆସିଣ ପାଦ ମଞ୍ଚାଳିଲେ ।
ସାତଘଡ଼ି ବେଳଅଛି ଉଠିଲେ ରାମରାଣ
ଜାନକୀ ଉଠିଆସି ଛାମୁରେ ଉଭାପୁଣ ।
ମୁଖ ପଖାଳି ରାମ ବିଡ଼ିଆ ଲାଗି ହେଲେ
ଜାନକୀଙ୍କି ଚାହିଁଣ ମୁରୁକି ହସା ଦେଲେ ।
ବାହାରେ ଅବକାଶ ହେଲେ ରାମରାଣ
ବଶିଷ୍ଠ ବାମଦେବ କଶ୍ୟପ ମିଳେ ପୁଣ ।
ମନ୍ତ୍ରୀ ଅମାତ୍ୟ ଯେ ଚତୁରଙ୍ଗ ବଳ
ସାମନ୍ତ ଭଟ୍ଟମିଶ୍ର ପାତ୍ର ମିଳି ଠୁଳ ।
ଗହ ଗହ ସଭା ଯେ ହୋଇଲା ଗହଳ
ରତ୍ନ ସିଂହାସନରେ ବିଜୟେ ଚାପଧର ।
କେ ବୋଲଇ ଆସ ଆସ କେ ବୋଲଇ ଯାଅ
ଦାଣ୍ଡ ହାଟ ଗହଳି ଯେ ହୋଇଲା ନିର୍ଭୟ ।
ଏଥୁ ଅନନ୍ତରେ ଶୁଣ ଆଗୋ ଭଗବତୀ
ଜାନକୀର ଦାସୀମାନେ ବେଶ ପୁଣି ହୋନ୍ତି ।
ମନୁମାୟା ସୀତା ଜାନକୀ ପାଶେ ଯାଇ
ସୀତାଙ୍କୁ ବସାଇଣ ରାଜବେଶ କରାଇ ।
ସୁନା ଖଡ଼ୁ ବୀରବଲ୍ଲୀ ବାହୁଟି ଖଞ୍ଜିଲେ
ଶିରରେ ପାଗବାନ୍ଧି ହୃଦରେ ଯାମାଦେଲେ ।
ଅନେକ ପ୍ରକାରେ ବେଶକଲେ ତାକୁ ତୋରା
ରାଜବେଶ ହୋଇଲେ ଜନକ ଝିଅ ଦ୍ୱରା ।
ବେଶକରି ରତନ ପାଦୁକା ପାଦେ ଦେଲେ
ପାଦୁକା ଲାଗି ହୋଇ ଦେବୀ ହରଷ ହେଲେ ।
ନିଜ ପୁରୁଁ ବାହାର ହୋଇଲେ ଠାକୁରାଣୀ
ଆଗରେ ବେନି ଛତ୍ରୀ ଯେ ଶୋଭା ଦିଶେ ପୁଣି ।
ଆଗରେ ଚାମର ମୟୂର ଝାଲ ପଡ଼ି
ଆଲଟ ବିଞ୍ଚଣୀ ଯେ ବିଞ୍ଚନ୍ତି ଦାସୀ ବେଢ଼ି ।
ପହଣ୍ଡ ମଣାଇଣ ମନୁମାୟା ନେଲା
ମଧୁବନ ତୋଟାରେ ପ୍ରବେଶ କରାଇଲା ।
ହୀରା ନୀଳା ମନ୍ଦିରେ ବୈଦୁର୍ଯ୍ୟ ସିଂହାସନ
ସ୍ଫଟିକ ଆସନରେ ବସାଏ ନେଇ ପୁଣ ।

ଦାସୀଗଣେ ସରବେ ହୋଇଲେ ଯାଇଁ ମେଳି
ବେଶ ହୋଇଛନ୍ତି ସେ ସ୍ୱର୍ଗର ଅପସରୀ ।
ଦେଖିଣ ଜାନକୀ ଯେ ସନ୍ତୋଷ ମନ ହେଲେ
ମନୁମାୟା କଥା ସେ ମନରେ ବିଚାରିଲେ ।
ମନୁମାୟା ବୋଲନ୍ତି ସକଳ ଦାସୀ ଶୁଣ
ନୃତ୍ୟ ରଙ୍ଗକରଯେ ଦେଖନ୍ତୁ ରାୟେ ପୁଣ ।
ବୀଣା ସୀତାର ଆଦି ତୀମ୍ବୁର ଘେନିନାରୀ
ମଦଳ, ତାଳ, କଂସାଳ ବାଦ୍ୟ ସ୍ୱର କରି ।
ଚୌଷଠି ସହସ୍ର ଯେ ଅଟନ୍ତି ବେଶକାରୀ
ନାଚନ୍ତି ନାନାରଙ୍ଗେ ଛଳରେ ନୃତ୍ୟକରି ।
କେହୁ ଢ଼ଳି ନାଚେ କେହୁ ନାଚେ ଶବଦାଇ
ଘାଗୁଡ଼ି ନୂପୁର ଯେ ଚରଣେ ସ୍ୱରଦେଇ ।
ଯେସନେ ତାଣ୍ଡବ ନୃତ୍ୟ ସ୍ୱର୍ଗପୁରେ ହୋଇ
ଅପସରୀ ବିଦ୍ୟାଧରୀ ନାଚନ୍ତି ମେଳହୋଇ ।
ଏଥୁ ଅନନ୍ତରେ ଜାନକୀ ଯେ ନୃତ୍ୟ ସାରି
ନିଜ ନବରେ ଯାଇଁ ମିଳିଲେ ରାମନାରୀ ।
ଏମନ୍ତ ସମୟରେଟି ଭଗ୍ନୀମାନେ ଆସି
ଜାନକୀଙ୍କ ଚରଣରେ ଦର୍ଶନ କରନ୍ତି ।
ଭଗ୍ନୀମାନଙ୍କୁ ବୋଇଲେ ନିଜପୁରେ ଯାଅ
ଦାସୀମାନଙ୍କୁ ନିତ୍ୟ ରଙ୍ଗରେ କରପ୍ରିୟ ।
ଶୁଣିଣ ତିନିଭଗ୍ନୀ ଯେ ଯାହା ପୁରେ ଗଲେ
ଦାସୀମାନେ ତାଙ୍କର ପଛରେ ଗୋଡ଼ାଇଲେ ।
ସେମାନେ ଦେଖିଣ ଗଲେ ଦାସୀଙ୍କର ବେଶ
ଉର୍ମିଳା ନାରୀଯେ ମନରେ ହୋଇ ହରଷ ।
ଏଥୁ ଅନନ୍ତରେ ଆଗୋ ଶୁଣ ଭଗବତୀ
ଚାରିଦିନେ ନୃତ୍ୟ ଥରେ ଶତ୍ରୁଘନ ଦେଖି ।
ବେନିମାସ ଉତ୍ତାରେ ଭରଥ ନାମେ ବୀର
ପାଞ୍ଚଘଡ଼ି ବେଳ ଅଛି ବିଜେ ଅନ୍ତଃପୁର ।
ଅନ୍ତଃପୁରେ କେହିନାହିଁ ଦେଖିଲେ ନୟନେ
ବିଚାରିଲେ ଅନ୍ତଃପୁର ଶୂନ୍ୟ କିମ୍ପା ଏଣେ ।
ଆଜ ଅନ୍ତଃପୁର କିମ୍ପା ହୋଇଅଛି ଶୂନ୍ୟ
ଦ୍ୱାରପାଳ ବୋଲେ ଚିନ୍ତା ନ କର ତୁମ୍ଭେ ମନ ।
ଠାକୁରାଣୀ ତୁମ୍ଭର ଯେ ନୃତ୍ୟ ଦେଖୁଛନ୍ତି
ସକଳ ଦାସୀ ବେଶ ହୋଇଣ ନାଚୁଛନ୍ତି ।
ଭରଥ ବୋଇଲେ ଆମ୍ଭେ ଯିବୁଁ ସେହିଠାବ
ଆମ୍ଭର ମନଅଛି ଦେଖିବୁ ନିତ୍ୟ ଭାବ ।

କୁନ୍ଦଦନ୍ତୀ ବୋଲେ ତୁମ୍ଭେ ହୁଅ ସ୍ତିରୀବେଶ
ତେବେ ତୁମ୍ଭେ ନୃତ୍ୟ ଦେଖି ହୋଇବ ହରଷ ।
ଭରଥ ବୋଇଲେ ମୋତେ ବେଶକର ତୁହି
ଶୁଣି କୁନ୍ଦଦନ୍ତୀ ସ୍ତିରୀ ବେଶ ଯେ କରାଇ ।
ପ୍ରକାଶନ ନ କରିବଟି ବୋଲିଣ ବୋଇଲା
ଦାସୀଙ୍କ ସଙ୍ଗେ ରହି ଦେଖିବ ହୋଇ ଦ୍ୱରା ।
ଧୀର ଧୀର ହୋଇଣ ଭରଥ ଚଳିଗଲେ
ଦାସୀଙ୍କର ସଙ୍ଗରେ ଯାଇଣ ମେଳ ହେଲେ ।
ଦେଖିଲେ ନିଳନାରୀ ହୋଇଛି ରାଜବେଶ
ଯେମନ୍ତେ ବରୁଣ ରାଜା ହୃଦୟ ପ୍ରକାଶ ।
ବିଚାରିଲେ ଏକଥା ଏ କେମନ୍ତ ଭିଆଇଲା
ଭଲ ସୁଖଲୀଳା ଏତ ହର୍ଷେ ଭୋଗକଲା ।
ବେନି ଛତୀ ଟେକାଇ ଚାମର ଖଦୀପଡ଼େ
ଜନକ ଦୋହୀତା କି ଆଦେଶ ତା ଦେଲେ ।
କୃତାର୍ଥ ହୋଇଲି ମୁହିଁ ଦେଖିଲି ନେତ୍ରରେ
ତାଣ୍ଡବ ନୃତ୍ୟଟି ସରି ନୋହେ ଏ ଲୀଳାରେ ।
ଏମନ୍ତ ସମୟରେ ଭାଙ୍ଗିଲା ନୃତ୍ୟଲୀଳା
ବେନି ଛତୀ ଟେକାଇ ଅଇଲେ ହୋଇ ତୋରା ।
ମଣୋହି ସାରିଣ ଯେ ବିଡ଼ିଆ ଲାଗି ହୋଇ
ଘରଣୀକି ଘେନିଣ ପଲଙ୍କେ ନିଦ୍ରାଯାଇ ।
ଏଥୁ ଅନନ୍ତରେ କଥା ଶୁଣ ଗୋ ପାର୍ବତୀ
ପାଞ୍ଚଦିନ ଲକ୍ଷ୍ମଣ ରହିଲେ ରାମକତି ।
ଶ୍ରୀରାମ ବୋଇଲେକ ଯାଅରେ ଲକ୍ଷ୍ମଣ
ମନକୁ ନ ଆସିଲେକ ସୁମିତ୍ରା ନନ୍ଦନ ।
ପନ୍ଦର ଦିନ ଉତ୍ତାରେ ରାମଚନ୍ଦ୍ର କହି
ନିଜପୁରେ କିମ୍ପାଇଁ ନ ଯାଉ ତୁରେ ଭାଇ ।
ଏବେ ତୁହି ନିଜ ପୁରେ କର ଯା ଗମନ
ଶ୍ରୀରାମଙ୍କର ଆଜ୍ଞାରେ ଚଳିଲେ ଲକ୍ଷ୍ମଣ ।
ପାଞ୍ଚଘଡ଼ି ବେଳ ଅଛି ଗଲେ ନିଜ ପୁର
ଅନ୍ତଃପୁରେ ପ୍ରବେଶ ହୋଇଲେ ଯାଇଁ ବୀର ।
ଦେଖିଲେକ ଅନ୍ତଃପୁର ଶୂନ୍ୟ ଅଛି ହୋଇ
ଖାଣ୍ଡବ ବନେ କେବଳ ଗହଳ ଶୁଭଇ ।
ସଉମିତ୍ରି ପଚାରିଲେ କଥାରେ ଅଛି ଛନ୍ଦ
ତତକ୍ଷଣେ ସଉମିତ୍ରି ଚଳିଗଲେ ବେଗ ।
ଖାଣ୍ଡବ ବନ ଯାଉଁଳି ଦୁଆରେ ପ୍ରବେଶ
ଦେଖିଲେ ଅନୁଛାୟା ବସିଅଛି ହରଷ ।

ବେଶ ହୋଇ ବସିଛି ସେ ରାଣୀହଂସପୁରୀ
ଚରଣେ ଓଳଗେ ଲକ୍ଷ୍ମଣଙ୍କୁ ଦେଖିକରି ।
ସଉମିତ୍ରି ବୋଇଲେ ତୁ ଶୁଣ ବେଶକାରୀ
ଅନ୍ତଃପୁର ଗୋଟି କିମ୍ପା ଶୂନ୍ୟ ଯେ ଆମ୍ଭରି ।
ଅନୁଛାୟା ବୋଲେ ଦେବ ତୁମ୍ଭ ଠାକୁରାଣୀ
ଦାସୀଗଣ ବେଶ କରି ସଙ୍ଗେ ଘେନି ପୁଣି ।
ନୃତ୍ୟ ରଙ୍ଗ ଗୀତରେ ସେ ନାଟରଙ୍ଗ ଦେଖେ
କେଳୀ କ୍ରୀଡ଼ା ଦେଖୁଛନ୍ତି ମନର ହରଷେ ।
ସୌମିତ୍ରି ବୋଇଲେ ତୁ ଶୁଣଲୋ ବେଶକାରୀ
କେମନ୍ତେ ଲୀଳା ହୁଏ ଦେଖିବା ତାଙ୍କରି ।
ଅନୁଛାୟା ବୋଲେ ଦେବ ଅଛି ଯେ ନିରୋଧ
ଠାକୁରାଣୀ ତୁମ୍ଭର ଘେନିଛି ରାଜପଦ ।
ପୁରୁଷ ବେଶ ଧରି ରାଜସିଦ୍ଧିରେ ବସି
ମାଣିକ୍ୟ ସିଂହାସନେ ଆବୋରିଛନ୍ତି ସେଟି ।
ଲକ୍ଷ୍ମଣ ବୋଇଲେ କଥା ଅସମ୍ଭବ ହେଲା
ଅନୁଛାୟା ବୋଲେ ଜାନକୀ କହୁଛନ୍ତି ପରା ।
ସୌମିତ୍ରି ବୋଲେ ଜାନକୀ ଟୀକା ଯେ ହେବାରୁ
ଠାକୁରାଣୀ ଆଜ୍ଞା ମାନି କିଏ ସେ ମାନକରୁ ।
ଅନୁଛାୟା ବୋଇଲେ ସେକଥା ଅଟେ ସତ
ଜାନକୀ ଡକାଇ ତାଙ୍କୁ କହିଲେ ଏମନ୍ତ ।
ସଉମିତ୍ରି ବୋଇଲେ ଦେଖା ମୋତେ ନେଇ
ନୀଳା ଦେଖିବାର ଶ୍ରୋତା ମୋହର ଅଟଇ ।
ଅନୁଛାୟା ବୋଲେ ଦେବ କହିବି କଥାଏ
ସ୍ତିରୀବେଶ ଗୋଟିଏ ଏବେ ହୁଅ ଦେବରାୟେ
ତେବେ କରିବ ତୁମ୍ଭେ ସେ ପୁରକୁ ଗମନ
ଶୁଣିକରି ସଉମିତ୍ରି ହର୍ଷ କଲେ ମନ ।
ବୋଇଲେ ବେଶକର ବେଗେ ମୋତେ ନାରୀ
ଶୁଣିଣ ଅନୁଛାୟା ବେଶ ତାଙ୍କୁ କରି ।
ବଇଦେହୀ ଅନୁରୂପେ ବେଶ ତାଙ୍କୁ କଲା
ଦିଅର ଭାଉଜ ଯେ ବାରଣ ନୋହେ ପରା ।
ସଉମିତ୍ରି ହରଷ ହୋଇଣ ଭୁଞ୍ଜେ ପାନ
ଦୁଆର ଫେଡ଼ି ଦେବାରୁ ଗଲେ ସେ ବହନ ।
କେଳୀଠାରେ ପରବେଶ ହେଲେ ଯାଇଁକରି
ଦେଖିଲେ ସିଂହାସନେ ବସେ ଆପଣାନାରୀ ।
ରାଜବେଶ ଗୋଟିଏ ହୋଇଛି ବଡ଼ ତୋରା
ଯେସନେକ ମେରୁ ରାଜା ଦିଶନ୍ତି ଶୋଭାପରା ।

ଲକ୍ଷ୍ମଣ ବିଚାରିଲେ ଏକଥା ମୋତେ ଭଲ
ଏକ ଅଙ୍ଗ ଗୋଟି ଅଟେ ଏ ମୋହର ।
ଦାସୀଙ୍କର ସଙ୍ଗରେ ନୃତ୍ୟ ରସେ ରସି
ଲୋଟଣୀ ଛନ୍ଦରେ ନୃତ୍ୟ କରନ୍ତି ସଙ୍ଗେ ମିଶି
ସବୁ ଦାସୀଙ୍କ ଉପରେ ଶୋଭାଦିଶେ ତୋରା
ଯେସନେକ ଚନ୍ଦ୍ର ଗୋଟି ଗଗନରେ ଧାରା ।
ଯେମନ୍ତେ ସୁବର୍ଣ୍ଣ ତେଜ ବିରାଜଇ ପୁଣ
ସେ ସୁବର୍ଣ୍ଣ ତେଜ ଜ୍ୟୋତି ଅଟେ ବସନ୍ତବର୍ଣ୍ଣ ।
ନାଟରଙ୍ଗ ଦେଖନ୍ତେ ଜାଣେ ଉର୍ମିଳା ନାରୀ
ବିଚାରିଲା ମୋର ସ୍ୱାମୀ ସ୍ତିରୀ ବେଶ ଧରି ।
ମୋହର ବଡ଼ପଣ ଦେଖିବା ନିମନ୍ତେ
ଅନୁଛାୟା ବେଶ କରି ଛିଡ଼ା ଦେଲା ଏଥେ ।
ମୁଁ ଯେବେ ଏତେବେଳେ କରିବି ମାନ୍ୟଧର୍ମ
କେଳୀ ରସ ଭାଜି ଯିବ ଆଜିଠାରୁ ପୁଣ ।
ପ୍ରଘଟ ନ କରି କଥା ରଖିଲା ଗୁପତେ
ଆଗତ ନିଗତ କଥା ଜାଣଇ ନିରତେ ।
ଏଥୁ ଅନନ୍ତରେ ନିତ୍ୟ ରସ ଭାଙ୍ଗି
ନିଜ ମନ୍ଦିରକୁ ଚଳିଗଲେ ଉଦବେଗି ।
ଉପରେ ବେନି ଛତ୍ରୀ ଟେକି ଉର୍ମିଳା ନାରୀ
ରତ୍ନ ପାଦୁକା ଲଗାଇ ଧୀରେ ଧୀରେ ଚଳି ।
ଆଗରେ ପଡୁଅଛି ଆଲଟ ଚାମର
ହୁଳହୁଳି ସଖୀମାନେ ଦ୍ୟନ୍ତି ନିରନ୍ତର ।
ଆଗରେ ଯେ ନିତ୍ୟକାରୀ ନିତ୍ୟ କରିଚଳେ
ଅନ୍ତଃପୁରରେ ଯାଇଣ ମିଳିଲେ ସକଳେ ।
ଉର୍ମିଳାନାରୀ ଯେ ବେଶ ଉଲାଗି ହୋଇଲେ
ସଖୀଗଣମାନଙ୍କୁ ମେଲାଣି ବେଗେ ଦେଲେ ।
ଯେ ଯାହା ପୁରରେ ଯାଇ ହେଲେକ ପ୍ରବେଶ
ଲକ୍ଷ୍ମଣ ଚଳିଯାଇ ବାହାରେ ଅବକାଶ ।
ସ୍ତିରୀ ବେଶ ଉଲାଗି ପୁରୁଷବେଶ ହେଲେ
ଅନ୍ତଃପୁରକୁ ସେହି ବହନ ହୋଇଗଲେ ।
ଭୋଜନ ସାରିଣ ଯେ ବିଡ଼ିଆ ଲାଗି ହୋଇ
ପଲ୍ୟଙ୍କରେ ଉର୍ମିଳାକୁ କୋଳେ ଘେନି ଶୋଇ
ହରଷରେ ରତିରଙ୍ଗ ନାନାବନ୍ଧେ କଲେ
ଦୁଇଜଣ ରତିଭାବେ ନିଶି ପୁହାଇଲେ ।
ଏଥୁ ଅନନ୍ତରେ ପୁଣି ଶୁଣ ଗୋ ପାର୍ବତୀ
ମନୁମାୟା ଘେନି କେଳୀ କରନ୍ତି ଜାନକୀ ।

ଏମନ୍ତେ ଏକବରଷ କାଳ ବହିଗଲା
କେଳୀ ରସେ ଜାନକୀ ମନରେ ତୋଷହେଲା ।
ସେହି କଥା ଜଣାଗଲା ଶ୍ରୀରାମଙ୍କୁ ପୁଣ
ବିଚାରିଲେ ଜାନକୀ କରାଏ ନୃତ୍ୟମାନ ।
କେମନ୍ତେରେ ଆମ୍ଭେ କେଳୀରସ ଯେ ଦେଖିବ
ଦାସୀମାନେ ନିତ୍ୟକାରୀ କେହ୍ନେ ଅନୁପମା ।
ଏମନ୍ତ ବିଚାରି ଏକଦିନେ ରାମରାଣ
ଦେବାର୍ଚ୍ଚନ ସାରି ଦିନେ କଲେ ସଭାପୁଣ ।
ସଭାଭାଙ୍ଗି ନିଜପୁରେ ହେଲେ ପରବେଶ
ଯେସନେକ ପଦ୍ମବନ ଦିଶଇ ସାଦୃଶ୍ୟ ।
ଯେଉଁରୂପେ ଧର୍ମରାଜା ତେଜବନ୍ତ ହୋଇ
ସେହିରୂପେ ଜାନକୀର ତେଜ ବିରାଜଇ ।
ସଖୀମାନେ ବେଶ ହୋଇ ଅଇଲେ ତାଙ୍କର
ମନୁମାୟା ପରବେଶ ହୋଇଲେ ଆଗର ।
ରତ୍ନପାଦୁକା ନେଇଣ ସୀତାପାଦେ ଦେଲା
ପାଦୁକା ଲଗାଇ ସତୀ ବାହାର ହୋଇଲା ।
ବେନିଛତ୍ରୀ ଉପରେ ଧଇଲେ ଟେକି ଜାଣ
ଖଦୀ ଚାମର ଆଗରେ ପଡ଼େ ଅନୁକ୍ଷଣ ।
ମଧୁବନର ଭିତରେ ହେଲେ ପରବେଶ
ହୀରାନୀଳା ପୁରେ ଯାଇ ମିଳିଲେ ହରଷ ।
ବସନ୍ତ ସିଂହାସନ ଉପରେ ବିଜେକଲେ
ମନୁମାୟା ମଙ୍ଗଳ ଆଳତି ବେଗେ ଦେଲେ ।
ଧୂପଦୀପ ନୈବେଦ୍ୟ ଦେଲେକ ମନୁମାୟା
ପୂଜାବିଧି ସାରିଣ ସେଠାରୁ ଗଲା ଛାୟା ।
ଯାଉଁଳି ଦୁଆରେ ଯାଇ ହେଲା ପରବେଶ
ଦ୍ୱାରକୁ ମୁଦି ଦେଇଣ ବସିଲା ହରଷ ।
ଏଥୁ ଅନନ୍ତରେ କେଳୀରସ ଯେ ହୋଇଲା
ନୃତ୍ୟରସେ ଗାଉଣା ଯେ ବାଦ୍ୟ ଗୀତ ହେଲା
ଏହି ସମୟେ ରାମ ମିଳିଲେ ଅନ୍ତଃପୁର
ଦେଖିଲେ ନିର୍ବନ୍ଧ ଦ୍ୱାର ହୋଇଛି ସକଳ ।
ଫେରିଣ ତୋଟା ଦୁଆରେ ହେଲେ ପରବେଶ
ଦେଖିଣ ମନୁମାୟା ଯେ ମନରେ ହରଷ ।
କରଯୋଡ଼ି ମନୁମାୟା ପାଦେ ଓଳଗିଲା
ରାମ ବୋଇଲେ ଶୁଣ ତୁ ମୋ ବଚନ ଭଲା ।
ଜାନକୀ ନାହାନ୍ତି କିମ୍ବା ଅନ୍ତଃପୁରେ ପୁଣ
ଶୁଣିଣ ମନୁମାୟା ବଚନ କହେ ଜାଣ ।

ଜନକ ରାଜାର ଯେ ଦୋହିତା ବଇଦେହୀ
ତୁମ୍ଭର ପାଟରାଣୀଟି ସେହି ଯେ ଅଟଇ ।
ନୃତ୍ୟରସ ଦେଖିବାକୁ ହୋଇଛି ଚିତ୍ତ ପୁଣ
ଦାସୀ ଗଣ ବେଶ କରି ସଙ୍ଗରେ ଘେନିଣ ।
ନିଜର ରାଜବେଶ ଜନକ ଯେମା ପୁଣ
ବିଳାସିନୀମାନେ ନୃତ୍ୟ ଆଗେ କରେ ଜାଣ ।
ଶ୍ରୀରାମ ବୋଇଲେ ଏମନ୍ତ ଯେବେ ଭାବ
ଆମ୍ଭଙ୍କୁ ଦେଖାଇବ ଯେ ତାଙ୍କର ଉତ୍ସବ ।
ମନୁମାୟା ବୋଇଲେ ତା ଦୁଆର ଏବେ ମନା
ପୁରୁଷ ଦେଖିଲେ ଲୀଳା ଭାଗିବ ମାର କିନା ।
ଶ୍ରୀରାମ ବୋଇଲେ ମୋତେ ସ୍ତିରୀ ବେଶ କର
ବଇଦେହୀ ରାଜାର ମୁଁ ହେବି ପାଟ ସାର ।
ସେ ମୋହିନୀ ଗଣେ ନିତ୍ୟେ ତାକୁ ଯେ ଖଟଇ
ମୁହିଁ ଭଲା ଏକଦିନେ ତା ବୋଲ କରଇଁ ।
ଶୁଣିଣ ମନୁମାୟା ଯେ ବେଶ ଅଣାଇଲା
ବେନି ହସ୍ତେ କାଚଖଡ଼ୁ ତାଡ଼ ବିଦ ଦେଲା ।
ଗଳାରେ ଖଞ୍ଜିଲା ନେଇ ରତ୍ନ ମାଳମାନ
ହୀଳା ଲୀଳା ଛପସରି କଣ୍ଠେ ଶୋଭାବନ ।
ବ୍ୟାଘ୍ର ନଖ ପରାୟେ ପଦକ ହୃଦେ ଲୁଳେ
ମାଣିକ୍ୟରେ ନିବାଡ଼ ଯେ ଦାଉ ଦାଉ ଜଳେ ।
ମସ୍ତକରେ ଅଳକା ଯେ ମଥାମଣି ଦେଲା
ଯୁଡ଼ା ବାନ୍ଧି ବେଢ଼ା ଫୁଲ ଲାଗି କରାଇଲା ।
ଲୋଥ ସଙ୍ଗେ ବସଣୀ ଛତ୍ର ଆକାରେ ଗୁଣା
କାପ ମଲ୍ଲ କଢ଼ୀ ଯେ କର୍ଣ୍ଣକୁ ଦିଶେ ଜିଣା ।
ମଧ୍ୟକର୍ଣ୍ଣେ ଚନ୍ଦ୍ରଫାଶିଆ ଦିଶେ ଶୋଭାବନ
ମୁଖକୁ ଚାହିଁଲେ ମୋହ ହେବେ ତ୍ରୀଲୋଚନ ।
ଚରଣରେ ନୂପୁର ବାଜେଣୀ ବଳା ଶୋହେ
ପାହୁଡ଼ ଝୁଣ୍ଟିଆକୁ ଯେ ଲଗାଇଲେ ସ୍ନେହେ ।
ଚରଣରେ ଅଳତା ହସ୍ତରେ ବସ୍ତ୍ର ମୁଦି
ବାମ କରର ଅଙ୍ଗୁଷ୍ଠିମାନଙ୍କରେ ମୁଦି ।
ଅମଳାଣ ରଙ୍ଗଶାଢ଼ୀ କାଛି ପିନ୍ଧାଇଲା
ଉପରେ ଖଣ୍ଡୁଆ ଯେ ପଟନୀ ନେଇ ଦେଲା ।
ମସ୍ତକରେ ସିନ୍ଦୂର ଯେ ନୟନେ ଆଞ୍ଜନ
ନୀଳନ୍ଦୀ ଦେହକୁ ଶୋଭା ପାଇଲା ଯତନ ।
ମନୁମାୟା ବୋଲେ ତୁମ୍ଭେ ଧୀରେ ଧୀରେ ଯିବ
ଗହଳରେ ପଶିଣ ଯେ ରାଜାଙ୍କୁ ଦେଖିବ ।

ବିଡ଼ିଆ ଭାଙ୍ଗିକରି ପଣନ୍ତେ ବାନ୍ଧି ଦେଲା
ବିଡ଼ିଆ ଭୁଞ୍ଜି ରାମ ମନ ଉଲ୍ଲାସ କଲା ।
ଯାଉଁଳି କବାଟ ଫିଟାଇ ଦେଲା ଦାସୀ
ଧୀର ଧୀର ହୋଇ ରାମ ପଥ ଚଳିଯାନ୍ତି ।
ଗହଳରେ ପ୍ରବେଶ ହୋଇଲେ ଋପଧାରୀ
ମୁଖଟେକି ସୀତା ରୂପ ଅନୁସରି କରି ।
ବିକ୍ରମ ସିଂହ ପ୍ରାୟେ ଦିଶନ୍ତି ବଇଦେହୀ
ଯେସନେ ଅନନ୍ତ ନାଗ ପାତଳେ ଦିଶଇ ।
ଲକ୍ଷେ ରାଜାଙ୍କ ପରେ ଯେସନେ ଶିରୋମଣି
ପୀନାକୀ ଧନୁରେ କି ଅକ୍ଷୟତ୍ରୋଣ ଟାଣି ।
କୋଦଣ୍ଡ ଗୋଟିଏ ଯେ ଅଛଇ ବାମ ପାଶ
ବିଋରିଲେ ତିନିପୁର କରି ପାରେ ନାଶ ।
ଦେଖି କରି ଶ୍ରୀରାମ ସନ୍ତୋଷ ମନ ହେଲେ
ନୃତ୍ୟକାରୀଙ୍କ ସଙ୍ଗରେ ନୃତ୍ୟ ସେହି କଲେ ।
ଗହଳରେ ଶ୍ରୀରାମ ଯେ ନୋହିଲେ ବାରଣ
କେତେକ ବେଳ ଉତ୍ତାରେ ନୃତ୍ୟରହେ ପୁଣ
ବେନି ଛତ୍ର ଧରାଇ ପାଦୁକା ଲାଗି ହେଲେ
ସିଂହାସନପରୁ ଉଠି ଦେବୀ ଚଳିଗଲେ ।
ଆଗରେ ଦିବ୍ୟ ଋମର ଆଲଟ ବିଞ୍ଚଣୀ
ହୁଳହୁଳି ଶବ୍ଦ ଦ୍ୟନ୍ତି ଦାସୀମାନେ ପୁଣି ।
ଦ୍ୱାର ଫେଡ଼ି ମନୁମାୟା କରଯୋଡ଼ି ଉଭା
ଆଗ ପଛେ ଦାସୀଙ୍କ ମଧ୍ୟରେ ଦେବୀ ଶୋଭା ।
ନିଜ ଅନ୍ତଃପୁରେ ଯାଇ ହେଲେ ପରବେଶ
ଦାସୀମାନଙ୍କୁ ମେଲାଣି ଦେଲେ ସେ ହରଷ ।
ଆଜ୍ଞା ପାଇ ଦାସୀମାନେ ଯେଝାପୁରେ ଗଲେ
ସେ ଦାସୀମାନଙ୍କ ସଙ୍ଗେ ରାଘବ ଆସିଲେ ।
ସ୍ଫଟିକ ଘର ଭିତରେ ରାମଚନ୍ଦ୍ର ପଶି
କବାଟ ପଞ୍ଜର ବାଟେ ଋହିଁଲେ ନିରେଖି ।
ମନୁମାୟା ପ୍ରବେଶ ହୋଇଲେ ତାଙ୍କ ପାଶ
ଚରଣକ୍ଷେ ଓଳଗିଣ ହେଲେ ସେ ହରଷ ।
ଶ୍ରୀରାମ ବୋଇଲେ କଥା ଏକ ଆଜ କର
ଏହି ବେଶେ ଆମ୍ଭେ ଯିବା ଜାନକୀ ପାଶର ।
ଶୁଣି କରି ମନୁମାୟା ହରଷ ହୋଇଲା
ବିଜେ କରନ୍ତୁ ବୋଲି ସେ ଆନନ୍ଦେ କହିଲା ।
ରତନ ପାଦୁକା ଆଣିଦେଲା ବେଗକରି
ପାଦୁକା ଲାଗି ହୋଇଣ ଶ୍ରୀରାମ ବାହାରି ।

ବଇଦେହୀଙ୍କ ପାଶରେ ହେଲେ ପରବେଶ
ଦେଖିଣ ବୈଦେହୀ ମନେ ହୋଇଣ ହରଷ ।
ବୋଇଲେ ଆଜ ତୁମ୍ଭର ବିପରୀତ ବେଶ
ମନୁମାୟା ବୋଇଲେକ ସ୍ୱାମୀର ହରଷ ।
ତୁମ୍ଭର ଭାଗ୍ୟ ଆଜ କରିବ ଆନ କେହୁ
ଯେତେବେଳେ ଯା ଇଛା କରନ୍ତି ମହାବାହୁ ।
ଜାନକୀ ବୋଇଲେ ମୋର ସେକଥାହିଁ ଲୋଡ଼ା
ଦେଖିବି ଅନେକ ବେଶ ନେତ୍ରେ ହୋଇଭେଳା ।
ଏତେ କହି ବଇଦେହୀ ଝରୀ କରେ ଧରି
ରାମ ଚରଣ ଦୁଇ ଧୋଇଲା ଉଠିକରି ।
ସୁଝୀନ ବସନରେ ଚରଣ ପୋଛି ଦେଲା
ମନୁମାୟା ଆଣିଣ ଯେ ପଶାପାଲି ଦେଲା ।
ଦୁଇଜଣ ବସିକରି ଖେଳିଲେକ ଖେଳ
ଦୁହିଁଙ୍କର ପଶାଖେଳରେ ହୁଅଇ ଗୋଳ ।
ଜାନକୀ ଜିଣିଲେ ଯହୁଁ ଶ୍ରୀରାମ ହାରିଲେ
କେତେବେଳେ ଦାଶରଥି ତହୁଁ ସେ ଜିଣିଲେ ।
ହସ୍ତର ଅଳଙ୍କାର ଯେ କରଇ ଶବଦ
ଦୁହେଁତ ସ୍ତିରୀ ବେଶ ସେଥିରେ ନାହିଁଭେଦ ।
ଯେତେବେଳେ ରାମଚନ୍ଦ୍ର ଖେଳରେ ଜିଣନ୍ତି
ବଇଦେହୀଙ୍କ ମୁଖରେ ଚୁମ୍ବନ ସେ ଦ୍ୟନ୍ତି ।
ଯେତେବେଳେ ସୀତୟା ରାମଙ୍କୁ ଜିଣଇ
ଶ୍ରୀରାମଙ୍କୁ ଧରିଣ ମୁଖରେ ଚୁମ୍ବ ଦେଇ ।
ଏମନ୍ତେ କେତେ ଖେଳ ଖେଳିଲେ ଦୁଇଜଣ
ଖେଳ ଭାଙ୍ଗିଣ ଭୋଜନ କଲେ ଯାଇଁପୁଣ ।
ଭୋଜନ ସାରିଣ ମୁଖ ଆଞ୍ଚୋବନ କଲେ
ପଲଙ୍କ ଉପରେ ଯାଇଁ ଶ୍ରୀରାମ ବସିଲେ ।
ଜାନକୀ ଭୋଜନ କରିସାରି ତତକ୍ଷଣ
ଫୁଲଶେଯ ଉପରେ ବସିଲେ ଯାଇ ପୁଣ ।
ମନୁମାୟା ବିଡ଼ିଆ ନେଇଣ ଯୋଗାଇଲା
ବିଡ଼ିଆ ଭୁଞ୍ଜି ଦୁହେଁ ସନ୍ତୋଷ ହେଲେ ଭଲା ।
ବାସର ଶଯ୍ୟାରେ ଆସନ ଋପଧାରୀ
ପାଦ ବେନି ମଞ୍ଚାଳିଲେ ଜନକ କୁମାରୀ ।
କେତେବେଳରେ ଶ୍ରୀରାମ ଜାନକୀଙ୍କି ଧରି
ଆସନ ଉପରେ ବସିଲେକ ଋପଧାରୀ ।
ମନୁମାୟା ସେଠାବରୁ ହେଲେ ଯେ ଅନ୍ତର
ରତି ଲୀଳା କଲେ ରାମ ସୀତାଙ୍କ ସଙ୍ଗର ।

ରଜନୀ ପାହାନ୍ତିରେ ଅଇଲେ ଦାସୀଗଣ
ଉଲାଗି କଲେ ରାମଙ୍କୁ ସ୍ତିରୀବେଶ ପୁଣ ।
ସେଠାରୁ ଗଙ୍ଗାଜଳେ ସ୍ନାହାନ କରାଇଲେ
ସୁକ୍ଷୀନ ବସନରେ ଶ୍ରୀଅଙ୍ଗ ପୋଛିଦେଲେ ।
ବାହାରେ ଅବକାଶ ହୋଇଲେ ରାମରାଣ
ଦେବ ଅର୍ଚ୍ଚନ ବିଧି ସେ ସାରିଲେ ଆପଣ ।
ସେଠାରୁ ଅନ୍ତଃପୁରେ ହେଲେକ ପ୍ରବେଶ
ଭୋଜନ ସାରି ପଲ୍ୟଙ୍କେ ପହୁଡ଼ି ରାମେଶ ।
ଏକ ଏକ ଦିନେ ଏକ ଏକ ବେଶ ଧରି
ଜନକ ନନ୍ଦିନୀଙ୍କର ମନ ତୋଷ କରି ।
କେଉଁଦିନ ନଟବର ବେଶ ଯେ ହୁଅନ୍ତି
କେଉଁଦିନ ବିପ୍ରବେଶ ହୋଇଣ ଯାଆନ୍ତି ।
କେଉଁଦିନ ରାଜବେଶ ହ୍ୱନ୍ତି ମନଇଛା
କେଉଁଦିନ କ୍ଷତ୍ରୀରୂପ କରିଥାନ୍ତି ଦୀକ୍ଷା ।
କେଉଁଦିନ ହୁଅନ୍ତେ ଯେ ଅମଳାଣ ବେଶ
ଖପ ପ୍ରଜା ଜାତି ପ୍ରାୟ ଦିଶେ ରଘୁବଂଶ ।
କେଉଁଦିନ ମାଲୁଣୀ ବେଶରେ ଯାନ୍ତି ପୁଣ
ଜାନକୀର ରୂପକୁ ଯେ ବେଶରେ ଭୂଷଣ ।
କେଉଁଦିନ ରଜକାରୀ ବେଶରେ ସେ ଚଳି
ଉଜ୍ୱଳ ଜାଳି ଦେଇ ଜାନକୀଠାରେ ମିଳି ।
ଏହିମତେ ମନୁମାୟା ପ୍ରତିଦିନ ପୁଣ
ଦିନକେ ବେଶେ ଲେଖାଏଁ କରାଏ ଘଟଣ ।
କେଉଁଦିନ ଦେବତା ରୂପରେ ବେଶ ପୁଣ
କେଉଁଦିନ ନାଗରାଜା ବେଶ ହୋଇ ପୁଣ ।
କେଉଁଦିନ ହୁଅନ୍ତି ଅସୁର ବେଶ ପୁଣ
କେଉଁଦିନ ଅସୁରୁଣୀ ବେଶ ହୋନ୍ତି ଜାଣ ।
କେଉଁଦିନ ବାନର କେଉଁଦିନ ବାନରୀ
ବାନରୀ ସ୍ୱଭାବରେ ସେ ରତିରଙ୍ଗ କରି ।
ଭାଲୁ ବେଶ ହେଲେ ସେ ଯେ କେଉଁଦିନ ପୁଣ
ଭାଲୁଣୀ ସଙ୍ଗରେ ଯେଉଁ ରୂପରେ ରମଣ ।
କେତେବେଳେ ମୃଗରୂପ ମୃଗୁଣୀ ସଙ୍କେତ
ମୃଗୁଣୀ ଶୃଙ୍ଗାର ପ୍ରାୟେ କରେ ନୀଳା ସେ ତ ।
କେତେବେଳେ ପକ୍ଷୀଜୀବ ପ୍ରୀୟା ବେଶ ହୋନ୍ତି
କେତେବେଳେ ମତ୍ସ୍ୟରୂପ ଧରିଣ ଯାଆନ୍ତି ।
ଜାନକୀର ସଙ୍ଗରେ ସେ ଅଙ୍ଗସଙ୍ଗ ହୋନ୍ତି
ନାନାରସ ରଙ୍ଗେ ରତିରଙ୍ଗ ସେ କରନ୍ତି ।

କେତେବେଳେ କମଠ ରୂପରେ ବେଶ ହୋଇ
ସେ ରୂପେ ବଇଦେହୀ ସଙ୍ଗରେ ଭେଟ ହୋଇ ।
କେତେବେଳେ ବରେହା ଶୁକର ରୂପେ ବେଶ
ସେହିରୂପେ ଜାନକୀ ସଙ୍ଗତେ ରତିରସ ।
କେତେବେଳେ ସିଂହରୂପେ କରନ୍ତି ଗମନ
କେତେବେଳେ ଶାର୍ଦ୍ଦୋଳ ରୂପ ନାରାୟଣ ।
କେତେବେଳେ କଳାହସ୍ତୀ ରୂପରେ ଚଳନ୍ତି
ସୀତୟା ସଙ୍ଗେ ଲୀଳା ଆତୁର ଭାବେ ମତି ।
କେତେବେଳେ ଅଶ୍ୱ ଅଶ୍ୱଣୀ ପରାୟେ ମତି
ଏମନ୍ତେ ଅନେକ ବେଶ ପ୍ରତିଦିନ ହୋନ୍ତି ।
ବେଶ ଦେଖି ସେହିରୂପେ ହୁଅନ୍ତି ଜାନକୀ
ଯେଉଁରୂପେ ଶ୍ରୀରାମ ଯେ ବେଶ ହୋଇଥାନ୍ତି ।
ଯେତେବେଳେ ଶ୍ରୀରାମ କୋଦଣ୍ଡଧାରୀ ହେଲେ
ସେହିରୂପେ ସୀତୟା ରାମଙ୍କୁ ଘଟାଇଲେ ।
ପାର୍ବତୀ ବୋଇଲେ ପ୍ରଭୁ ନାନାରୂପ ହେଲେ
ଜାନକୀଙ୍କ ଠାରେ ରାମ ସୁଖ ପୁଣି କଲେ ।
ମହାହରଷରେ ଦିନ ନେଲେ ରୂପଧାରୀ
ଭାଗ୍ୟବନ୍ତ ଅଟେ ବଡ଼ ଜନକ କୁମାରୀ ।
ଆହୁରି କଥାଏ ଦେବ ପଚାରିବି ମୁହିଁ
ଲକ୍ଷ୍ମଣ କିରୂପେ ଉର୍ମିଳାରେ ଭାବବହି ।
ଈଶ୍ୱର ବୋଇଲେ ତାର ମାୟା ଅଗୋଚର
ସେକଥା ଉର୍ମିଳାନାରୀ ଜାଣଇଁ ସକଳ ।
ନର ଯେ ବାନର ନରପତି ସେନାପତି
ସମସ୍ତେ ହେଁ ମୋହଗଲେ ଧରଣୀ ପରେଟି ।
ଦେଖି ରାମ ଘରଣୀ ଉପାୟେ ପୁଣ କଲେ
ଧନୁଶର ଧରିଣ ସେ ରଥରେ ବସିଲେ ।
ଦୁର୍ଗାଆସି ସେ ରଥରେ ସାରଥି ହେଲେ ପୁଣ
ସହସ୍ରାନନ ସଙ୍ଗେ ଯୁଦ୍ଧ କଲେ ରାଣୀଜାଣ ।
ଏଗାର ଘଡ଼ିରେ ରାମଘରଣୀ ତାକୁ ମାରି
ହନୁମନ୍ତକୁ ଭେଦିଲେ କପିଳାସ ଗିରି ।
ଗଣେ ଆସିବାରୁ କାଳପାଶ ପଳାଇଲା
ସମସ୍ତଙ୍କ ହୃଦୟରେ ସାହା ଯେ ପଶିଲା ।
ଜାନକୀ ପାଶେ ଆସ୍ତର ତୋଷ ହେଲା କାୟା
ଏ କଥାକୁ ଜାଣିଣ ବୋଲନ୍ତି ରଘୁନାହା ।
ସେହିଠାରେ ଅଗ୍ନିରେ ପଶିଲେ ରାମନାରୀ
ଚନ୍ଦ୍ରରୁ ଅଧିକ ତେଜ ଦିଶେ ଦେହ ତାରି ।

ରାବଣକୁ ମାରିଣ ଅଇଲେ ରାମରାଣ
ସମୁଦ୍ରରୁ ଏ କୂଳରେ କଲେ ଧାମପୁଣ ।
ଅଯୋଧ୍ୟା ନିଜନଗ୍ରେ ଶ୍ରୀରାମ ପରବେଶ
ଅଭିଷେକ ହେଲେ ତହିଁ ଦଶରଥ ଶିଷ୍ୟ ।
ଆମ୍ଭଙ୍କୁ ମେଲାଣି ସେହି ସନ୍ତୋଷରେ କଲା
ସ୍ୱୟଂ ଶ୍ରୀନାରାୟଣ ଯେ ଅଯୋଧ୍ୟା ରହିଲା ।
ଶୁଣି ସେନା ସୈନ୍ୟବଳ ପାତ୍ର ମନ୍ତ୍ରୀ ପୁଣ
ସନ୍ତୋଷ ହୋଇଣ ସର୍ବେ ବୋଲନ୍ତି ବଚନ ।
ଆମ୍ଭଙ୍କୁ ଥରେ ନେଇ ଦେଖାଅ ପ୍ରଭୁତୁମ୍ଭେ
ତୁମ୍ଭ ସକାଶେ ମୁକତ ଲଭିବୁଁ ଯେ ଆମ୍ଭେ ।
ରାଜାମାନେ ବୋଇଲେ ଚଳହେ ତୁମ୍ଭେମାନେ
କ୍ଷୀର ସାୟେର ବାସୀଙ୍କି କରଯା ଦର୍ଶନେ ।
ଏତେକହି ରାଜାମାନେ ଅନ୍ତଃପୁରେ ଗଲେ
ରାଣୀମାନେ ଆସିଣ ଦର୍ଶନ ବିଧିକଲେ ।
ବେଶ ହୋଇ ରାଣୀଏ ରାଜାଙ୍କ ପାଶେ ମିଳି
କାହାର ସହସ୍ରେ କାର ଶତେନାରୀ ।
କେଉଁ ରାଜାର ଅଟନ୍ତି ଦଶ ଯେ ପନ୍ଦର
କେଉଁ ରାଜାର ରାଣୀ ଅଟନ୍ତି ଲକ୍ଷେ ସାର ।
ରାଣୀମାନେ ପଚାରିଲେ ସ୍ୱୟମ୍ବର କଥା
ରାଜାମାନେ କହିଲେକ ସକଳ ବ୍ୟବସ୍ଥା ।
ନାରାୟଣଙ୍କ କଥା ରାଣୀହଂସେ ଶୁଣିଲେ
ରାଜାମାନଙ୍କ ଚରଣ ତଳେ ଓଳଗିଲେ ।
ବୋଲନ୍ତି ପ୍ରଭୁ ଆମ୍ଭଙ୍କୁ ଶ୍ରୀରାମେ ଦେଖାଅ
ତୁମ୍ଭ ସକାଶେ ଆମ୍ଭ ପାତକ ହେବକ୍ଷୟ ।
ଯାହାର ନାମ ଗୋଟିକ ମାଳିକରି ଘୋଷି
ସେ ପୁରୁଷ ମର୍ତ୍ତ୍ୟପୁରେ ଜନ୍ମ ହେଲେ ଆସି ।
ଦେଖିଲେ ପାତକ ଯେ ହୋଇବ କ୍ଷୟପୁଣ
ମଲେ ବଇକୁଣ୍ଠ ଯିବା ବିଚାରି ମନେଣ ।
ଆମ୍ଭେ ଯେବେ ଦର୍ଶନ କରିବା ଋପଧାରୀ
ସନ୍ତୋଷରେ ଦୟା ଅବା କରିବେ ଶ୍ରୀହରି ।
ରାଣୀମାନଙ୍କ କାକୁସ୍ଥ ଦେଖି ରାଜାମାନେ
ବିଚାରିଲେ ଏଣେ କାର୍ଯ୍ୟ ଅଛଇଁ ପ୍ରସନ୍ନେ ।
ସମସ୍ତଙ୍କ ସୋରତା ଦେଖିବେ ରାମରାଣ
ମୁକତ ପସରା ଯେ ଅଟନ୍ତି ରାମରାଣ ।
ରାଣୀମାନଙ୍କୁ ରାଜାଏ କହିଲେ ବଚନ
ଆମ୍ଭେ ଯିବା ନିଶ୍ଚେଁ ଏବେ ଅଯୋଧ୍ୟା ଭୁବନ ।

ଅଳପ ଦିନରେ ଆମ୍ଭେ ଏଥୁଁ ଚଳିଯିବା
ବାସୁଦେବଙ୍କୁ ଯାଇଁଣ ଦର୍ଶନ କରିବା ।
ଶୁଣିକରି ରାଣୀମାନେ ହରଷ ହୋଇଲେ
ଦାସୀମାନେ ସରସରେ ସେବାଯାଇଁ କଲେ ।
ଏମନ୍ତରେ ସହସ୍ରେ ବରଷ ବହିଗଲା
ରାଜାପ୍ରଜା ସମସ୍ତଙ୍କ ହୃଦେ ଦୟାହେଲା ।
ରାଜାମାନେ ଧନଦେଇ ଭେଦିଲେ ଦୂତପୁଣ
ଦୂତମାନେ ଶ୍ରୀରାମଙ୍କୁ କଲେ ଦରଶନ ।
ଅକ୍ଷତ ଘେନିଣ ଦୂତେ ଯେଝାପୁର ଗଲେ
ଶ୍ରୀରାମ ଅକ୍ଷତ ନେଇ ରାଜାଙ୍କୁ ସେ ଦେଲେ ।
ଦେଖି ରାଜାମାନେ ବହୁ ହରଷ ହୋଇଲେ
ଆପଣା ରାଜ୍ୟରେ ସେ ଧେଣ୍ଡୁରା ଫେରାଇଲେ ।
ଯେଉଁମାନେ ଯିବ ଆସ ରାମ ଦରଶନେ
ପରଂବ୍ରହ୍ମ ଯେଉଁମାନେ ଦେଖିବ ନୟନେଂ ।
ଚତୁର୍ଦ୍ଧା ମୂରତିଙ୍କି କରିବ ଦରଶନ
ମଲେ ତୁମ୍ଭେମାନେ ଯିବ ଅଚିନ୍ତା ଭୁବନ ।
ଯୁବା ପୁଂଷ ସ୍ତିରୀଏ ରହିବେ କେବଳ
ବୃଦ୍ଧା ପୁଂସସ୍ତିରୀମାନେ ଯିବେ ମୋ ସଙ୍ଗର ।
ହାଟୁଆରୀ ବଜାରୀ ବଣିଜକାରୀ ଲୋକ
ରଜକାରୀ ଲମ୍ବହତା ସହିତେ ସମସ୍ତ ।
ସାମନ୍ତ ପାତ୍ର ରାଉତ ସଙ୍ଗେ ଭଟ୍ଟମିଶ୍ର
ହସ୍ତୀ ରଥୀ ସାରେଣୀ ସାଜିଲେ ପୁଣି ଅଶ୍ୱ ।
ରାଣୀହଂସ ପୁରେ ପଶିଲେକ ନୃପବର
ରାଣୀଙ୍କୁ କହିଲେ ଯିବା ଅଯୋଧ୍ୟାର ପୁର ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଶାକମ୍ଭେରୀ
ଦକ୍ଷିଣ ଦିଗରାଜା ପ୍ରଥମେ ବିଜେକରି ।
ଶୁଣିଣ ଶ୍ରୀରାମ ବଶିଷ୍ଠଙ୍କୁ ଡକାଇଲେ
ଦକ୍ଷିଣ ମଉଡ଼ମଣି କିମର୍ଥେ ଅଇଲେ ।
ବଶିଷ୍ଠ ଋଷି ବୋଲେ ଅଇଲେ ଦରଶନେ
ରାଣୀହଂସ ଆଦି ପ୍ରଜାସଙ୍ଗତରେ ଆଣେ ।
ଶ୍ରୀରାମ ବୋଇଲେ ଯେବେ କରିବେ ମୋ ପୂଜା
ସେମାନଙ୍କୁ ବସାସଞ୍ଜା ଦିଅ ମୁନିରାଜା ।
ରାମ କହିବାରୁ ଯେ ବଶିଷ୍ଠ ଚଳିଗଲେ
ସୁରଭୀଙ୍କି କହିଣ ଅମୃତ ବୃଷ୍ଟି କଲେ ।
ବୋଇଲେ ଯେତେକ ରାଜା ଏପୁରେ ଆସିବେ
ତେତେ ଦିନ ଅମୃତ ତୁ ଦେଉଥିବୁ ଏବେ ।

ଏଥୁ ଅନନ୍ତରେ ଯେ ବଶିଷ୍ଠ ଯାଇ ମିଳି
ଶ୍ରୀରାମଙ୍କୁ ବୋଇଲେ ଶୁଣ ହେ ଚାପଧାରୀ ।
ଚାରିଗୋଟି ସିଂହାସନେ ଚାରିଭାଇ ବସ
ଶ୍ରୀରାମ ବୋଇଲେ କଥା ନୁହଇ ବିଶେଷ ।
ଯେ ଯାହା ନବରେ ସେ ବସନ୍ତୁ ସିଂହାସନେ
ରାଜବେଶ ହୋଇଥିବେ ଦେବତା ସମାନେ ।
ପୁଣିହିଁ ଶ୍ରୀରାମଚନ୍ଦ୍ର ସୁମନ୍ତ୍ରକୁ କହି
ଏପୁର ଶୋଧକର ପୁରୁଷ କେହି ନ ରହି ।
ରାଣୀହଂସ ଆସିବେ ସମସ୍ତେ ଏଥି ଆଜ
ଦୁଆରେ ରହିଣ ଥାଉ ପବନ ଆତ୍ମଜ ।
ଆଜ୍ଞା ପ୍ରମାଣେ ସେଠାରୁ ସର୍ବେ ଚଳିଗଲେ
ମାରୁତି କେବଳ ରାମ ଛାମୁରେ ରହିଲେ ।
ଏଥୁ ଅନନ୍ତରେ ଆଗୋ ଶୁଣ ଭଗବତୀ
ମୋଡ଼ମଣିମାନେ ଆଗେ ଭିତରକୁ ଯାନ୍ତି ।
ରାଣୀହଂସ ଘେନି ବିଜେ ଗଜପତି ବୀର
ଶ୍ରୀରାମ ଛାମୁରେ ମିଳି ଯୋଡ଼େ ବେନିକର ।
କରଯୋଡ଼ି ବୋଲନ୍ତି ଶୁଣ ହେ ବାସୁଦେବ
ଆମ୍ଭର ମାଗୁଣି ଏତେ ହୃଦୟରେ ଥିବ ।
ଯେତେବେଳେ ନିଜପୁରେ ଯିବ ହେ ଶ୍ରୀହରି
ଆମ୍ଭଙ୍କୁ ସଙ୍ଗରେ ନେବ ଦାସଦାସୀ କରି ।
ଶ୍ରୀରାମ ବୋଇଲେ ମୋର ଯିବା ନିକଟରେ
ଡକାଇ ଆଣିବି ତୁମ୍ଭେ ଆସିବ ସତ୍ୱରେ ।
ଅଚିନ୍ତା ପୁରରେ ନିଶ୍ଚିନ୍ତରେ ଦିନ ନେବ
ଶୁଣିକରି ରାଣୀହଂସ ହେଲେ ତୋଷଭାବ ।
ଅର୍ଘ୍ୟ ବନ୍ଦାପନା କଲେ ସର୍ବ ରାଣୀଗଣ
ରାଜାମାନେ ମଙ୍ଗଳ ଆଳତୀ କଲେ ପୁଣ ।
ଦଶଦିନ ପର୍ଯ୍ୟନ୍ତେ ହୋଇଲା ସବୁ ମେଳା
ଫେରିଣ ଦେଖିଲେ ସର୍ବେ ମନମତିଧୀରା ।
ରାମଙ୍କୁ ମେଲାଣି ମାଗି ଗଲେ ଯେଝାସ୍ଥାନ
ହରଷେ ପ୍ରବେଶ ହେଲେ ସକଳ ଭୁବନ ।
ଏଥୁ ଅନନ୍ତରେ ଶୁଣ ଆଗୋ ଶାକମ୍ଭରୀ
ଶ୍ରୀରାମ ଯେ ଚତୁର୍ଦ୍ଧା ରୂପକୁ ତେଜ୍ୟାକରି ।
ପର୍ଶୁରାମ ରୂପ ହେଲେ ଦେବ ଚାପଧାରୀ
ବିଶ୍ୱାମିତ୍ର ବେଶଧରି ଲକ୍ଷ୍ମଣ ବିଚାରି ।
ଭରଥ ଧଇଲେ ପୁଣ ଅଗସ୍ତିଙ୍କ ବେଶ
ଶତ୍ରୁଘନ ହୋଇଲେ ନାରଦ ମୁନି ରୂପ ।

ଏମନ୍ତେ ଚାରିହେଁ ଯତିବେଶ ପୁଣ ହେଲେ
ଏକ ନଗ୍ରେ ଚାରିଭାଇ ଏକତ୍ରେ ରହିଲେ ।
ଚାରୋଟି ମୃଗନାଭୀ କସ୍ତୁରୀ ଛାଲ ପାଡ଼ି
ପଦ୍ମାସନେ ଚାରିଭାଇ ବସି ଛାଲ ମାଡ଼ି ।
ଦଣ୍ଡ କମଣ୍ଡଳ ଯେ ପାଖରେ ନେଇ ରଖି
ସ୍ୱାହା ପ୍ରୋକ୍ଷଣୀ ଆଦି ଅଜପା ନାମେ ପୋଥି ।
ବୀଣାଦି ଡିମ୍ବୁର ଯନ୍ତ୍ରମାନ ପାଶେ ରଖି
ଯତି ବେଶ ହୋଇଣ ବସିଲେ ଦାଶରଥି ।
ମନ୍ତ୍ରୀକି ବୋଲନ୍ତି ସର୍ବେ ଏ ବିପରୀତ ପୁଣ
ଯତି ବେଶ କିମ୍ପାଇଁ ଧଇଲେ ରାମରାଣ ।
ମନ୍ତ୍ରୀ ବୋଇଲେ ଏ ହୁଅନ୍ତି ନାନାବେଶ
ନାରାୟଣ ପୁରୁଷ ସେ ଅଖିଳ ଜଗଦୀଶ ।
ମଣିମା ମଣିମା ବୋଲି ଅଇଲେ ରାଜାଗଣ
ଯତି ରୂପ ଦରଶନ କରିଗଲେ ପୁଣ ।
ରାଜାଗଣେ ଯାଆନ୍ତେ ମଉଳାଗଣେ ଯାନ୍ତି
ଶ୍ରୀରାମଚନ୍ଦ୍ର ଆଗରେ ପରବେଶ ହୋନ୍ତି ।
ମଉଳାମାନଙ୍କୁ ଦେଖି ଉଠି ଚାରିଭାଇ
ନମସ୍କାର କରିଣ ଆଗରେ ଉଭା ହୋଇ ।
କୁଶଳର ବାରତା ସମସ୍ତେ ପଚାରିଲେ
ସମସ୍ତ ଭଲ ଆମ୍ଭର ଶ୍ରୀରାମ କହିଲେ ।
ମାନ୍ୟଧର୍ମ କରିଣ ସେ ଗଲେକ ଭିତର
ଭଗ୍ନୀମାନଙ୍କୁ ଦେଖିଣ ଓଳଗିଲେ ବୀର ।
କେଉଁ ଭଗିନୀମାନେ ହେ ସାନ ପୁଣି ଥିଲେ
ଭାଇଙ୍କର ଚରଣେ ସେମାନେ ଓଳଗିଲେ ।
ମାନ୍ୟ ଧର୍ମ କରିଣ ସେଠାରୁ ଗଲେ ପୁଣ
ବସାଘରେ ପ୍ରବେଶ ହେଲେ ମଉଳାଗଣ ।
ମଉଳା ଆସିବାରୁ ଯେ ଅଜାମାନେ ଗଲେ
ଶ୍ରୀରାମ ଚାରିଭାଇଙ୍କ ପାଶରେ ମିଳିଲେ ।
ଦେଖିକରି ଚାରିଭାଇ ଉଠିଲେ ବହନ
ଅଜାମାନଙ୍କ ପାଦେ ଶୋଇଲେ ଓଳଗିଣ ।
ଚାରି ଭାଇଙ୍କି ଦେଖିଣ ହରଷହୋଇଲେ
ରାମଙ୍କୁ ଅଜାମାନେ ସେଠାରେ ପଚାରିଲେ ।
ନୃପତି ହୋଇ ତୁମ୍ଭେ ହୋଇଛ ଯତିବେଶ
ଶ୍ରୀରାମ ବୋଇଲେ ଅଜା ଗଲୁଁ ବନବାସ ।
ବନରେ ଯତିବେଶ ରୂପରେ ବୁଲୁଥିଲୁଁ
ଅସୁର ଘରଣୀ ନେଲା ତହୁଁ କ୍ଷତ୍ରୀ ରୂପ ହେଲୁ ।

ଏବେ ସେହି ରୂପେ ଯେ ମନରେ ପଡ଼ିଲା
ଚରିଭାଇ ବିଚରିଲୁଁ ଯେ ବେଶ ହେବାପରା ।
ଏମନ୍ତ ବିଚରି ଆମ୍ଭେ ଯତି ବେଶ ଧରୁଁ
ତୁମ୍ଭେ ଆସିବ ବୋଲି ଝାତପନ କରୁ ।
ଶୁଣିକରି ଅଜାମାନେ ସେଠାରୁ ଚଳିଗଲେ
ଜାନକୀ ନବରେ ଯାଇ ପ୍ରବେଶ ହୋଇଲେ ।
ଦେଖିକରି ଜାନକୀ ଚରିଭଗିନୀ ଘେନି
ଚରଣେ ଓଳଗିଲେ ଆସିଣ ବେଗେ ପୁଣି ।
ସୁକଲ୍ୟାଣ କଲେ ଯେ ଅଜାସୁରମାନେ
ହରଷ ହେଲେ ଶୁଣି ବଇଦେହୀ ତେଣେ ।
କକୟିରାଜା ଯାଇ ଜାନକୀ କର ଧରି
ବୋଇଲେ ଚଲ ଯିବା ମୋପୁରେ ସୁନ୍ଦରୀ ।
ଜାନକୀ ବୋଇଲେ ଅଜା ଶୁଣ ମୋ ବଚନ
ରାଜା ହୋଇ ଋଷିର ଭାରିଯାକୁ ମନ ।
କକୟିରାଜା ବୋଲେ ଅସୁର ଘରେ ଗଲ
ମୋର ସଙ୍ଗେ ଯିବାକୁ କିମ୍ପା ଗୋ ନମଙ୍ଗିଲ ।
ଜାନକୀ ବୋଇଲେ ତୁମ୍ଭେ କରିବ ଅବାଦ୍ୱିଜ
କକୟି ବୋଇଲା ନିଶ୍ଚେଁ ନେବି ମୁହିଁ ଆଜ ।
ଜାନକୀ ବୋଇଲେ ଅଜା ଛାଡ଼ ମୋ କର
କକୟି ବୋଇଲେ ଯେ ଶ୍ରୀରାମ ପାଶେ ଚଲ
ଶୁଣିକରି ଜାନକୀ ଚଳିଲେ ଆଗଭର
ଦାସୀମାନେ ସମସ୍ତେ ଯେ ଅଛନ୍ତି ସଙ୍ଗର ।
ଶ୍ରୀରାମଙ୍କ ଆଗରେ ସେ ହେଲେ ପରବେଶ
ଦେଖିଣ ଚାପଧାରୀ ଯେ ମନରେ ହରଷ ।
ଜାନକୀ ବୋଲେ ତୁମ୍ଭେ ଚରିଭାଇ ଥାଉଁ
ପାକୁଆ ପାଚଲା ବୁଢ଼ା ନେବାକୁ ଆସି ଏହୁ ।
ଶ୍ରୀରାମ ବୋଇଲେ ଅଜା ଅବେଭାର କର
ଏକାଳରେ ତୁମ୍ଭର ଲୋଭ ତ ଅଛି ବଡ଼ ।
କକୟି ବୋଇଲେ ତୁମ୍ଭେ ଶୁଣ ହେ ଚାପଧାରୀ
ରାବଣ ହରିନେଲା ତୁମ୍ଭର ମନୋହାରୀ ।
ଏ ଯୁବତୀ ଛଳେ ତୁମ୍ଭେ ମାଇଲ ଅସୁର
ଅଚିନ୍ତା ବଇକୁଣ୍ଠରେ ସ୍ଥାନ ଯେ ତାଙ୍କର ।
ମୁଁ ଏବେ ତୁମ୍ଭ ଯୁବତୀ ଆଣିଅଛି ଧରି
ମୋର ସଙ୍ଗେ ରଣ କର କୋଦଣ୍ଡ ଚାପଧାରୀ
ଶ୍ରୀରାମ ବୋଇଲେ ତୁମ୍ଭେ ଯୁଦ୍ଧରେ ନ ପାରିବ
ନିର୍ଲ୍ଲଜପଣ କଲେ କ୍ଷତ୍ରୀ କି ହୋଇବ ।
କକୟି ରାଜା ବୋଲନ୍ତି ଶୁଣ ହେ ରାମରାଜ
ନୃପତି ଭାରିଯାକୁ ନୃପତି ନେଲେ କାର୍ଯ୍ୟ ।
ଶ୍ରୀରାମ ବୋଲେ ସେ କଥା କହହେ ଫଳାଇ
କକୟି ବୋଇଲେ ଅନ୍ଧଯେମନ୍ତେ କିଛି ପାଇ ।
ଶ୍ରୀରାମ ବୋଇଲେ ଅନ୍ଧ କିଏ ଅଟେ ପୁଣ ।
କକୟି ରାଜା ବୋଇଲେ ଅନ୍ଧଟି ମୁହିଁଜାଣ ।
ଶ୍ରୀରାମ ବୋଇଲେ ଆଜ କିସ ତୁମ୍ଭେ ନେବ
କକୟି ବୋଇଲେ ଦାସପଣରେ ରଖିଥିବ ।
ଶ୍ରୀରାମ ବୋଇଲେ ଅଜା ଆସିଛ ଯେତେପୁଣ
ମାସକରେ ଏ ଦେହକୁ ଛାଡ଼ିବ ପ୍ରମାଣ ।
ଭକ୍ତ ଭାବଗ୍ରାହୀ ଯେ ଅଟନ୍ତି ବାସୁଦେବ
ତାଙ୍କର ବଇକୁଣ୍ଠରେ ତୁମ୍ଭେ ଯେ ରହିବ ।
ଶୁଣିକରି ସର୍ବରାଜା ଆନନ୍ଦ ହୋଇଲେ
ଜାନକୀ ରାମଙ୍କୁ କହି ସେଠାରୁ ଚଳିଗଲେ ।
ଜାନକୀ ନିଜପୁରେ ହୋଇଲେ ପରବେଶ
ତିନିଭଗ୍ନୀ ପାଶେ ଘେନି ବସିଲେ ହରଷ ।
ଏଥୁ ଅନନ୍ତରେ ଯେ ପରଜାଗଣମାନେ
ସକଳ ସଇନ୍ୟ ବଳ ଦେଖିଲେ ପ୍ରସନ୍ନେ ।
ସୈନ୍ୟମାନେ ଦେଖିବାରୁ ରାଜାମାନେ ଆସି
ଦୋହିତାମାନଙ୍କୁ ହରଷେ ଗଲେ ଦେଖି ।
ପ୍ରଜାକୁଳରୁ ଯେତେକ ନାରୀ ଆସିଥିଲେ
ଶ୍ରୀରାମ ଜାନକୀ ଦେଖି ହରଷ ମନକଲେ ।
ରାଣୀମାନେ ଦେଖିଣ ଶ୍ରୀରାମ ଚରିଭାଇ
ଜାନକୀ ଚରି ଭଗିନୀ ଦେଖି ତୋଷ ହୋଇ ।
ମଉଳାଣୀମାନେ ଆସି ରାମଙ୍କୁ ଦେଖିଲେ
ଜାନକୀ ନେଇଣ ନଣନ୍ଦ ଦେଖାଇଲେ ।
ସେମାନେ ଯିବାରୁ ଅଇଲେ ଆଈମାନେ
ଦେଖି ପ୍ରଶଂସା କରନ୍ତି ଶ୍ରୀରାମରାଣେ ।
ଚରି ଭାଇଙ୍କୁ ଦେଖିଣ ଭିତର ପୁର ଗଲେ
ଜାନକୀ ଚରି ଭଗିନୀ ଆଗରେ ମିଳିଲେ ।
ଦେଖିକରି ଚରିଭଗ୍ନୀ ଉଠିଲେ ପଲଙ୍କରୁ
ଆଈ ଶାଶୁଙ୍କ ଚରଣେ ନମିଲେକ ଦୂରୁ ।
ଆଈମାନେ ବୋଇଲେ ଗୋ ଭଲହୋଇଥାଅ
ନିଜ ସ୍ୱାମୀ ଚରଣେ ଭକତି ଭାବହୁଅ ।
ଏତେ କହି ଦୋହିତାମାନଙ୍କୁ ଯାଇ ଦେଖି
ସକଳ ଦୋହିତା ଆସି ଚରଣତଳେ ଲୋଟି ।

ପ୍ରବୋଧ କରିଣ ମାତା ଦୋହିତାଙ୍କୁ ଗଲେ
ନିଜସ୍ୱାମିଙ୍କ ପାଶରେ ତୁରିତେ ମିଳିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ମାସେ ପରିଯନ୍ତେ ରହି ଦେଖିଲେ ଋପଧାରୀ ।
ସକଳ ରାଜା ଆସି ଉପହାର ଦେଲେ
ପାଣିଦ୍ରବ୍ୟ ଦଶସସ୍ର ରଥ ସମର୍ପିଲେ ।
ଅଜାମାନେ ଦେଲେ ପାଞ୍ଚ ସହସ୍ର ରଥ
ଶୁଦ୍ଧ ସୁବର୍ଣ୍ଣ ଯେ ସମର୍ପି ତୁରିତ ।
ମଉଳାମାନେ ଆଣିଣ ପାଣିଦ୍ରବ୍ୟ ଦେଲେ
ଦଶସହସ୍ର ରଥ ରାମଙ୍କୁ ସମର୍ପିଲେ ।
ମେଲାଣି ହୋଇଣ ଯେ ଯାହାପୁରେ ଗଲେ
ରାମ ରାମ ପଦକୁ ସୁମରଣା କଲେ ।
ଗୁହନାମେ ଶବର ଅଇଲା ପୁଣ ଦେଖି
ତାହାର ସଇନ୍ୟ ବଳ ସଙ୍ଗରେ ଅଛନ୍ତି ।
କନ୍ଧ ଶବରଙ୍କୁ ଦେଖିଲେ ରାମରାଣ
ଫଳମାନ ଦରଶନ ଦେଲେ ସେହୁ ପୁଣ ।
ରାମଙ୍କୁ ଦେଖି ଶବରୀମାନେ ତୋଷହେଲେ
ଗୁହନାମେ ଶବର ଅନେକ ଧନ ଦେଲେ ।
ହରଷେ ନିଜ ମନ୍ଦିରେ ଗଲାକ ସତ୍ୱର
ଶ୍ରୀରାମ ପଦ ସେହୁ କଲେକ ଉଚ୍ଚାର ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଯୁଦ୍ଧ କରିବାକୁ ଯାଇଥିଲେ ସେ ଯେତେହରି ।
ଘରଣୀମାନେ ପଋରିବାରୁ ଶ୍ରୀରାମ କଥା କହି
ଶୁଣିକରି ସେମାନେ ସନ୍ତୋଷ ମନ ହୋଇ ।
ଗିରସ୍ତମାନଙ୍କୁ ଧରି ଅଯୋଧ୍ୟା ଅଇଲେ
ଶ୍ରୀରାମ ଚନ୍ଦ୍ରଙ୍କୁ ଦେଖି ହରଷ ହୋଇଲେ ।
ଏହି ଜାନକୀଙ୍କୁ ରାବଣ ନେଇଥିଲା
ତିନିମାସ ଯାଏ ଯୁଦ୍ଧ ଲଙ୍କାଗଡ଼ରେ ହେଲା ।
ଋରି ରାବଣ ମାରି ଜାନକୀ ଘେନି ରାମ
ଅଯୋଧ୍ୟାରେ ପ୍ରବେଶ ହୋଇଲେ ରାମରାଣ
ସକଳ ନୃପତିମାନେ ପାଦରେ ପୂଜାକଲେ
ଆମ୍ଭଙ୍କୁ ଦେଖିଣ ରାମ ହରଷ ହୋଇଲେ ।
ପତ୍ନୀମାନଙ୍କୁ ଏହା କହିଲେ ରାମରାଣ
ଶୁଣିକରି ତୋଷ ହେଲେ ଘରଣୀମାନେ ଜାଣ
ଯତିବେଶ ତେଜ୍ୟାକଲେ ଦଶରଥ ସୁତ
ଦ୍ୱିଜବେଶ ଧରିଣ ବିଜୟେ ରଘୁନାଥ ।
ତିନିଭାଇଙ୍କି ବୋଇଲେ ଯେଯାହା ନଗ୍ରେଯାଅ
ପ୍ରତିଦିନ ଦେଖା ଦେଉଥିବଟି କରି ପ୍ରିୟ ।
ଶୁଣିଣ ତିନିଭାଇ ଯେ ଯାହା ନଗ୍ରେ ଗଲେ
ଜାନକୀଙ୍କି କହି ଭଗ୍ନୀମାନେ ଚଳିଗଲେ ।
ଯେ ଯାହାର ନଗ୍ରେ ଯାଇ ରହିଲେ ସକଳ
ଏଥୁ ଅନନ୍ତରେ ବହିଗଲା କେତେକାଳ ।
ପାର୍ବତୀ ବୋଇଲେ ସେଇଠାରୁ କିସଂ ହେଲା
ସେକଥା ମୋହ ଆଗେ କହହେ ଦେବପରା ।
ଈଶ୍ୱର ବୋଇଲେ ତୁହି ଶୁଣ ହେମବନ୍ତୀ
ପାରିଧିକି ମନ ଯେ କଲେକ ଦାଶରଥି ।
ଆଠଦିନେ ଥରେ ଯେ ଯାଆନ୍ତି ମୃଗମାରି
ଗଣ୍ଡା, ସମ୍ବର ଆଦି ଆଣନ୍ତି ରାମ ଧରି ।
ତିନିଭାଇଙ୍କି ଦଣ୍ଡେହେଁ ନ ଛାଡନ୍ତି ପୁଣ
ଯେଣିକି ଗଲେ ରାମ ସଙ୍ଗରେ ନ୍ୟନ୍ତି ଜାଣ
ଅନେକ ପାରିଧି ଯେ ବନରେ ପଶି କଲେ
ପାରିଧିରୁ ଫେରିଣ ସେ ଆସନ୍ତି ବନରେ ।
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
ପ୍ରବେଶ ହୋଇଲେ ଆସି ଦୁର୍ବାସା ମହାଯତି ।
ଦେଖିକରି ଶ୍ରୀରାମ ଯେ ସନ୍ତୋଷ ହୋଇଲେ
ପାଦପୂଜା କରିଣ ଆସନେଁ ବସାଇଲେ ।
କୁଶଳ ବାରତା ମୁନି ଶ୍ରୀରାମେ ପୁଚ୍ଛିଲେ
ରାମ ବୋଇଲେ ମୁନି ସବୁ କୁଶଳ ଭଲେ ।
ମୁନି ବୋଲେ ତୁମ୍ଭେ ସ୍ୱର୍ଗ ଦିଗବିଜେ କଲ
ସେଠାରୁ ଯାଇଣ ପୁଣ ପାତାଳ ଜିଣିଲ ।
ଏବେ ସପ୍ତ ସାଗର ତୁମ୍ଭେ ଦିଗବିଜେ କର
ଏହାକହି ମହାମୁନି ଚଳିଲେ ସତ୍ୱର ।
ଏଥୁ ଅନନ୍ତରେ ତୁଗୋ ଶୁଣ ଶାକମ୍ଭରୀ
ତିନିଭାଇଙ୍କି ଶ୍ରୀରାମ ଆଣିଲେ ହକାରି ।
ବୋଇଲେ ଶ୍ରୀରାମ ସପ୍ତସାଗର ଦିଗବିଜେ
କରିଯିବା ଚଞ୍ଚଳ ବାହାର ହୁଅ ସଜେ ।
ଶୁଣିଣ ତିନିଭାଇ ଯେ ସନମତ କଲେ
ରଥମାନ ସଜ କରି ବାହାର ହୋଇଲେ ।
ଋରିଭାଇ ସଙ୍ଗ ହୋଇ ବେଗେ ଚଳିଗଲେ
ଦକ୍ଷିଣ ସିନ୍ଧୁ ଜିଣିଣ ଲଙ୍କାରେ ମିଳିଲେ ।
ବିଭୀଷଣ ସିଂହଦ୍ୱାରେ ରଥ ବୁହାଇଲେ
ଆଗପଛେ ଋରିରଥ ଶୋଭାପାଏ ଭଲେ ।

ସପ୍ତ ଘଣ୍ଟି ହନୁମନ୍ତ ଶବଦ ଯେ କଲା
ସମସ୍ତଙ୍କର ନିଦ୍ରା ଆଳସ୍ୟ ଭାଙ୍ଗି ଗଲା ।
ଦ୍ୱାରପାଳ ଦେଖିଲା ଶ୍ରୀରାମଚନ୍ଦ୍ର ବିଜେ
କର ଯୋଡ଼ିଣ ଆଗରେ ଉଭାହେଲେ ସେ ଯେ ।
ଶ୍ରୀରାମ ବୋଇଲେ ହୋ ଭିତର ପୁରେ ଯାଅ
ବିଭୀଷଣ ମନ୍ଦୋଦରୀ ଏଠାକୁ ଅଣାଅ ।
ଏହିକ୍ଷଣି ଆସିବେଟି ନ ରହିବେ ଦଣ୍ଡେ
କଥା ହୋଇଲେ ଆମ୍ଭେ ଚଳିଯିବୁ ଦାଣ୍ଡେ ।
ଶୁଣିଣ ଦ୍ୱାରପାଳ ବେଗେ ଚଳିଗଲା
ଭିତର ଦ୍ୱାରପାଳକୁ ଯାଇଣ ଉଠାଇଲା ।
ତାହା ପଛେ ଶତ୍ରୁଘନ ବେଗେ ଚଳିଗଲେ
ଭିତର ଅନ୍ତଃପୁରରେ ଯାଇଣ ମିଳିଲେ ।
ଦେଖିଲେ ମନ୍ଦୋଦରୀ ପଲଙ୍କେ ଅଛିଶୋଇ
ତାଠାରୁ ଅଳଙ୍କାର କାଢ଼ି ସେ ଆଣିଲେଇଁ ।
ଭିତର ଦ୍ୱାରପାଳ ଦାସୀଙ୍କ ଆଗେ କହି
ଦାସୀମାନେ ଯାଇଣ ଅନ୍ତପୁରେ ରହି ।
ଦେଖିଲେ ଅନ୍ତଃପୁର ବାହାରରେ ପୁଣ
ରଥେକ ଆରୋହିଣ ବସିଛି ଶତ୍ରୁଘନ ।
ଦାସୀମାନେ ଅନ୍ଧାରରେ ଚିହ୍ନି ନ ପାରିଲେ
ଭୟରେ ରାଣୀଙ୍କୁ ଉଚ୍ଚରେ ସେ ଡ଼ାକ ଦେଲେ ।
ଶୁଣି ଚେତି ବିଭୀଷଣ ଶ୍ରୀରାମ ସୁମରିଲା
ବେଗ ହୋଇଣ ରାଜା ଯେ ବାହାରେ ଅଇଲା ।
ଦେଖିଲା ପାଖରେ ବିଜୟ ଶତ୍ରୁଘନ
ରଥ ଚଢ଼ିଣ ଉଭା ଯେ ହୋଇଛନ୍ତି ପୁଣ ।
ବିଭୀଷଣ ନମିଲା ହୋଇ ହେଠମାଥ
ଶତ୍ରୁଘନ ବୋଇଲେ ଚଳହେ ବେଗି ଭ୍ରାତ ।
ସ୍ୱାମୀ ବିଜେ କରିଛନ୍ତି ତୋହରି ସିଂହଦ୍ୱାରେ
ଦରଶନ କର ଯାଇ ସ୍ୱାମୀଙ୍କ ପୟରେ ।
ଚେତି ମନ୍ଦୋଦରୀ ବୋଲେ ଶୁଣ ଦାସୀଗଣ
ମୋର ଅଙ୍ଗୁ ଅଳଙ୍କାର କିଏ ନେଲା ପୁଣ ।
ଦାସୀଗଣେ ବୋଇଲେ ଏପୁରେ କେହୁ ପଶି
ଅପୂର୍ବ କଥା ଶୁଣାଗଲା ରଘୁହଂସୀ ।
ଶ୍ରୀରାମଙ୍କ ଭାଇ ଚୋର ହୋଇବ କିଅର
ସେହି ଏକା ଅଗଣାରେ ଥିଲା ଯେ ତୋହର
ମନ୍ଦୋଦରୀ ବୋଇଲା ସେ ତ୍ରୈଲୋକ୍ୟ ଈଶ୍ୱର
କେମନ୍ତ ପ୍ରକାରେ ତାଙ୍କୁ କରିବଇଁ ଚୋର ।

ଶୁଣିଣ ଦାସୀମାନେ ଅଇଲେ ଅଗଣା
ଶତ୍ରୁଘନ ଚରଣେ ନମିଲେ ଯାଇ କିନା ।
ସଉମିତ୍ରୀ ବୋଇଲେ ତୁମ୍ଭେ ଶୁଣ ଦାସୀଗଣ
ବାହାରକୁ ନ ଆସନ୍ତି ତୁମ୍ଭରାଣୀ କିମ୍ପା ପୁଣ ।
ଦୁଇଘଡ଼ି ହେଲା ଆମ୍ଭେ ଅଛୁ ଯେ ଏଠାରେ
ଲଙ୍କାର ଠାକୁରାଣୀଙ୍କି ଦର୍ଶନ କରିବାରେ ।
ଦାସୀଗଣେ ବୋଇଲେ ଆମ୍ଭରାଣୀ କର୍ମହୀନ
ଚୋର ଘେନିଗଲା ଯେ ତା ଅଳଙ୍କାର ପୁଣ ।
ଶତ୍ରୁଘନ ବୋଇଲେ ଏକଥା ଅଟେ ମିଛ
ମାଛି ପଶିବାକୁ ଯେ ଏ ପୁରେ ନାହିଁ ବାଟ ।
ଅଳଙ୍କାର ଶୂନ୍ୟ ଯେବେ ହୋଇଛନ୍ତି ରାଣୀ
ଆମ୍ଭଠାରୁ ଅଳଙ୍କାର ନିଅ ଗୋ ତୁମ୍ଭେପୁଣି ।
ଦାସୀଗଣେ ବୋଲେ ତୁମ୍ଭେ ଅଇଲ କେଉଁଠାରୁ
ଶତ୍ରୁଘନ ବୋଇଲେ ଅଇଁଲୁ ଅଯୋଧାରୁ ।
ଦାସୀଗଣ ବୋଇଲେ ଦିଅ ହେ ଅଳଙ୍କାର
ଲେଖାରେ ମନ୍ଦୋଦରୀ ଯେ ଭାଉଜ ତୁମ୍ଭର ।
ଦିଅର ପଦାର୍ଥ ସିନା ଭାଉଜ ଲଗାଇବ
ଏଥିରେ ଲାଜ କିମ୍ପାଇଁ ଆମ୍ଭଙ୍କୁ ହୋଇବ ।
ଶୁଣିଣ ଶତ୍ରୁଘନ ଯେ ଅଳଙ୍କାର ଦେଲେ
ସର୍ବ ଅଳଙ୍କାର ଘେନି ଦାସୀ ଚଳିଗଲେ ।
ମନ୍ଦୋଦରୀ ଆଗରେ ସେ ଦେଲେ ନେଇକରି
ଦେଖିଣ ମନ୍ଦୋଦରୀ ଯେ ମନରେ ବିଚାରି ।
ବୋଇଲା ଏ କଥା ଏବେ ବିପରୀତ ହେଲା
କେଉଁବାଟେ ସାନୁଜ ଏ ପୁରରେ ପଶିଲା ।
ଦାସୀମାନେ ବୋଇଲେ ଯେ ହୁଅନ୍ତେ ଏମନ୍ତ
ଯାହା ଆଜ୍ଞାରେ ମାୟାବତୀ ଯେ ସମ୍ଭୁତ ।
ମାୟାରେ ହରିନେଲା ନ ଛୁଏଁ ତୋରଅଙ୍ଗ
ଶୁଣିଣ ସଂପ୍ରତେ ମନେ କଲା ରାଣୀବେଗ ।
ବୋଇଲା ସଙ୍ଗାତୁଣୀ ଏକଥା ଅଟେ ସତ
ଏତେକ କହିଣ ବେଶ ହେଲା ଯେ ତ୍ୱରିତ ।
ସୁବର୍ଣ୍ଣ ଥାଳିରେ ଅର୍ଘ୍ୟ ଅକ୍ଷତ ପୂରାଇଲା
ଧୀର ଧୀର ହୋଇ ରାଣୀ ବାହାରହୋଇଲା ।
ଶତ୍ରୁଘନଙ୍କୁ ବାହାରେ ଦେଖିଣ ବୋଇଲା
ଆଜ ତ ବିପରୀତ କଥାଏ ହୋଇଲା ।
ଶତ୍ରୁଘ୍ନ ବୋଇଲେ ତୁମ୍ଭେ ଚତୁରୀନାରୀପୁଣ
ଏଡ଼େ ନିଦ୍ରା ଯାଇଥିଲ ଲଙ୍କାର ପ୍ରାଣଧନ ।

ମନ୍ଦୋଦରୀ ବୋଲେ ମୋର ଭରସା ଶ୍ରୀରାମ
ମୋରପୁରେ ଅନ୍ୟଛାର କରେ କି ଗମନ ।
ତୁମ୍ଭର ଶରୀରେ ମୁଁ ଦେବି ଅର୍ଘ୍ୟ ପୁଣ
ଶୁଣି ଶତୃଘନ ବୋଲେ ଏ ନୁହେ ବିଧାନ ।
ତ୍ରୈଲୋକରେ ନାଥ ଯେ ଅଟନ୍ତି ରାମରାୟେ
ତାହାଙ୍କୁ ଅର୍ଘ୍ୟ ଦେଲେ ସମସ୍ତ ତୋଷ ହୋଏ ।
ଶୁଣିଣ ମନ୍ଦୋଦରୀ ସନ୍ତୋଷ ହୋଇଲା
ତୁମ୍ଭେ ଆସି ସିଂହଦ୍ୱାରେ ବୋଲିଣ ବୋଇଲା ।
ଧୀର ଧୀର ହୋଇ ରାଣୀ ଚଳେ ସିଂହଦ୍ୱାର
ଦେଖିଲା ବିଜୟ କରିଛନ୍ତି ଚକ୍ରଧର ।
ଶ୍ରୀରାମଙ୍କ ଶିରରେ ନେଇଣ ଅର୍ଘ୍ୟ ଦେଲା
ଦୁର୍ବାକ୍ଷତ ଦେଇଣ ଆଳତୀ ବନ୍ଦାଇଲା ।
ଏ ସମୟେ ବିଭୀଷଣ ଶତୃଘନ ମିଳି
ବିଭୀଷଣ ବୋଇଲେ ଶୁଣରେ ଋପଧାରୀ ।
ନିଶାର ରଜନୀରେ ମୋ ପୁରେ ବିଜେକଲ
ଋରିଭାଇ ସଙ୍ଗ ହୋଇ କି କାର୍ଯ୍ୟେ ଅଇଲ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ଲଙ୍କମଣି
ସାଗର ଦିଗବିଜେ ଆରମ୍ଭ କଲୁ ପୁଣି ।
ଏହିବାଟେ ଯିବାର ଯେ ହୋଇଲା ଆମ୍ଭର
ସାନୁଜ ବୋଇଲେ ପଶିଯିବା ଏ ରାଜ୍ୟର ।
ସେ ହେତୁରୁ ତୁମ୍ଭର ପୁରକୁ ଅଇଲୁଁ
ଶୁଣିଲେ ଦୁଃଖ କରନ୍ତୁ ତେଣୁ ଦେଖା ହେଲୁଁ
ବିଭୀଷଣ ବୋଇଲେ ମୋହର ବଡ଼ଭାଗ୍ୟ
ମୋପୁରେ ଆଜକରହ ଆହେ ଦେବରାଜ ।
ଶ୍ରୀରାମ ବୋଇଲେ ରହିବାକୁ ନାହିଁ ବେଳ
ବୁଲିଣ ଦେଖିବୁଁ ଆମ୍ଭେ ସପ୍ତ ଯେ ସାଗର ।
ଏତେ ବୋଲି ସିଂହଦ୍ୱାରୁ ଋଳିଲେ ରଥଧୀର
ସରିଲା ଦିଗ ବିଜୟ ଦକ୍ଷିଣ ସାହେର ।
ଏଥୁ ଅନନ୍ତରେ ଭଗବତୀ ଶୁଣ ଏବେ
ମନ୍ଦୋଦରୀ ଘେନି ବିଭୀଷଣ ଗଲା ବେଗେ ।
ଅନ୍ତଃପୁରେ ଯାଇଣ ସେ ପ୍ରବେଶ ହୋଇଲା ।
ଶ୍ରୀରାମ ଚରିତ ସବୁ କୁହାକୁହି ହେଲା ।
ଏଥୁ ଅନନ୍ତରେ ଆନ କଥା ରସ ଶୁଣ
ପୂର୍ବଦିଗେ ବିଜେକଲେ ଋରି ଭାଇ ପୁଣ ।
ଆଗରେ ହନୁମନ୍ତକୁ ଦେଲେ ପଠିଆଇ
ରାଜାଙ୍କୁ ବାରତା ତୁ କହରେବେଗେ ଯାଇ ।

ଶୁଣି କରି ହନୁମନ୍ତ ହେଲା ଯେ ହରଷ
ତ୍ରିଜଟା ସୁତ ଦୁଆରେ ହୋଇଲା ପ୍ରବେଶ ।
କେଉଁଠାରୁ କପିରେ ଅଇଲୁ ଏ ପୁର
ହନୁମନ୍ତ ବୋଇଲା ଶୁଣରେ ଦୈତ୍ୟବୀର ।
ଦଶରଥ ନନ୍ଦନ ଅଟନ୍ତି ଦାଶରଥୀ
ଋରି ରାବଣ ମାରି ଅଯୋଧ୍ୟା ପୁରେ ସ୍ଥିତି ।
ସ୍ୱର୍ଗ ଦିଗ ବିଜୟେ କରିଣ ପୁଣ ଗଲେ
ଦେବତାଙ୍କୁ ଜିଣିଣ ସେ ପାତାଳେ ପଶିଲେ ।
ପାତାଳଙ୍କୁ ଜିଣିଣ ସାଗର ବିଜେ କରି
ଦକ୍ଷିଣ ଦିଗ ଜିଣି ସେ ପୂର୍ବ ଦିଗେ ଫେରି ।
ବିଭୀଷଣକୁ ପୁରୁଷାର୍ଥ କରିଣ ବିଶେଷ
ଏବେ ତୋର ସିଂହଦ୍ୱାରେ ହେଲେ ପରବେଶ ।
ମୋର ହସ୍ତେ ମୁଠା ଆଜ୍ଞା ଦେଇଛନ୍ତି ପୁଣ
ଯୁଦ୍ଧକୁ ମନ କଲେ ବାହାର ଏହିକ୍ଷଣ ।
ନୋହିଲେ ତାଙ୍କ ଚରଣେ ପଶ ତୁ ଶରଣ
ତେବେ ତୋତେ ସୁଦୟା କରି ରାମରାଣ ।
ଶୁଣି ଶରଦଧର ବୋଲେ ଏଠାରେ ଥାଅତୁହି
ବିଷ୍ଣୁଙ୍କ ନାରୀଙ୍କି ମୁହିଁ ପଋରି ଆସଇଁ ।
ଏତେ ବୋଲି ସଭାପରୁ ଉଠି ପୁଣ ଗଲା
ସୁବର୍ଣ୍ଣ ଚଉରାଠାରେ ପ୍ରବେଶ ହୋଇଲା
ପାୟେଡ଼ା ଗୋଟିଏକ ସେଠାରେ ପାଡ଼ିପୁଣ
ଶତେବାର ଓଳଗି ଶରଦଧର ଜାଣ ।
କରଯୋଡ଼ି ଆଗରେ ହୋଇଲା ସେ ଉଭା
ବୋଇଲା ବିନା ଦୋଷ ମୋହର ଶତୃପ୍ରଭା ।
ତାହାର ଭକତି ଦେଖି ବୃନ୍ଦାବତୀ ପୁଣ
ଚଉରା ଭିତରୁ ଦେବୀବାହାର ହେଲେ ପୁଣ ।
ହୀରା ନୀଳା ଥାଳୀରେ ସେ ଅର୍ଘ୍ୟ ପୁରାଇଲା
କମଳାର ବେଶ ଗୋଟି ଆପଣେ ଧଇଲା ।
ବୋଇଲା ତୋର ଘରଣୀ ଆଣ ଯା ବେଗକରି
ତୋହର ଦ୍ୱାରେ ବିଜୟ କଲେକ ଶ୍ରୀହରି ।
ଅନେକ କାଳର ପାପ ଦେଖି ତୁ ଉପେକ୍ଷିବୁ
ସ୍ୱୟଂ ପରଂବ୍ରହ୍ମଙ୍କୁ ତୁ ନେତ୍ରରେ ଦେଖିବୁ ।
ଶୁଣିଣ ଶରଦଧର ବେଗେ ଚଳିଗଲା
ଶତେ ନାରୀ ବେଶ କରି ସଙ୍ଗରେ ଆଣିଲା ।
ସମସ୍ତଙ୍କ ହସ୍ତରେ ଅଛଇ ଅର୍ଘ୍ୟସ୍ଥାଳୀ
ଆଗରେ ବୃନ୍ଦାବତୀ ପଛରେ ସର୍ବେ ଚଳି ।

ସିଂହ ଦୁଆରେ ଯାଇଁଣ ହେଲେ ପରବେଶ
ବୃନ୍ଦାବତୀ ଦେଖିଲା ଯେ କାଳନ୍ଦୀ ପୁରୁଷ ।
କରଯୋଡ଼ି ବୃନ୍ଦାବତୀ ନମସ୍କାର କଲା
ମୋହର ଦର୍ଶନ ପାଇଁ ଏଠାରେ ବିଜେ ହେଲା ।
ଶ୍ରୀରାମ ଯେ ବୃନ୍ଦାବତୀ ରୂପକୁ ଚାହିଁଲେ
ଧନ୍ୟରେ ସୁନ୍ଦରୀ ବୋଲି ମନେ ବିଚାରିଲେ ।
ଏ ସମୟେ ରଥରେ ଉଠିଲା ବୃନ୍ଦାବତୀ
ମଙ୍ଗଳ ଆଳତୀ କଲା ଶ୍ରୀରାମଙ୍କ କତି ।
ଅର୍ଘ୍ୟ ବନ୍ଦାପନା କରି ଦୁର୍ବାକ୍ଷତ ଦେଲା
ଧୂପ ଦୀପ ଦେଇଣ ଶ୍ରୀରାମେ ପୂଜାକଲା ।
ଯୂଥପତି ସେନାପତି ତିନିଭାଇ ପୁଣ
ଅସୁର ବଳ ଯେତେକ ନୃପତି ସଙ୍ଗେଣ ।
ସମସ୍ତେ ଶ୍ରୀରାମ ମୁଖକୁ ଚାହିଁଛନ୍ତି
ସୁବର୍ଣ୍ଣ ଝରୀରେ ନୀର ଘେନିଣ ବୃନ୍ଦାବତୀ ।
ଶ୍ରୀରାମର ଚରଣ ବେନି ଧୋଇଦେଲା
ଝୀନ ବସନରେ ଚରଣ ପୋଛିଲା ।
ଶ୍ରୀରାମ ବୋଇଲେ ତୋତେ ଆମ୍ଭେ କଲୁଁ ବଡ଼
କେଉଁ କଥା ଅଭାବ ଦେଖିଲୁ ମୋହର ।
ବୃନ୍ଦାବତୀ ବୋଇଲେ ଯେ କହିଥିଲ ମୋତେ
ମୋର ସଙ୍ଗେ ଲୀଳା ତୁମ୍ଭେ କରିବ ଦିନା କେତେ ।
ରାମ ବୋଇଲେ ଆହୁରି ଷୋଳଯୁଗ ଯିବ
ବୃନ୍ଦାବନେ ଜନମ ତୋହର ହୋଇବ ।
କଂସ କେଶୀ ମାରିବାକୁ ଜନମ ହେବି ମୁହିଁ
ତୋର ଅଂଶେଷୋଳସସ୍ର ଜାତହେବେଗାଇ ।
ମଥୁରାରେ ଜାତ ହୋଇ ଗୋପରେ ରହିବି
ନନ୍ଦ ଗଉଡ଼ର ମୁଁ ପୋଷିଆ ପୁଅ ହେବି ।
ତୁହି ହେବୁ ରାଧିକା ଗୋ ଘେନିତୋର ଅଂଶ
ତୋର ସଙ୍ଗେ ବୃନ୍ଦାବନେ ନିତ୍ୟେ ନୀଳାରସ ।
ତୋର ଅଂଶ ଘେନି ମୁଁ ଯେ ରାସ ତହିଁ କରି
ତୋତେବଳି ସୁନ୍ଦରୀ ଗୋ ନୋହିବେ ତିନିପୁରୀ ।
ଅନେକ ଲୀଳା ହେବତୋର ସଙ୍ଗରେ ମୋର
ଏହି ହନୁମନ୍ତ ହେବ ଗୁରସ୍ତ ତୋହର ।
ନପୁଂସକ ହୋଇବ ଏ ନଥିବ ପୁଂସ ଭାବ
ମୋର ସଙ୍ଗେ ରତିରଙ୍ଗତୋହର ହୋଇବ ।
ଏ ଜନ୍ମେ ତୁ ଆସିଥରେ ମୋର କୋଳେବସ
ଏକବ୍ରତୀ କମଳା କରିଛି ମାନସିକ ।

ଶୁଣିଣ ବୃନ୍ଦାବତୀ ଯେ ହରଷ ମନ ହେଲା
ଶ୍ରୀରାମଙ୍କ କୋଳରେ ସେ ଯାଇଣ ବସିଲା ।
ଦେଖି କରି ପାଟରାଣୀ ରଥରେ ଚଢ଼ିଲେ
ଦୁଇଜଣଙ୍କ ଶିରେ ଅର୍ଘ୍ୟ ବନ୍ଦାଇଲେ ।
ଦେଖିଣ ଲକ୍ଷ୍ମଣ ରଥପରୁ ଓହ୍ଲାଇଲା
ଦୁଇଜଣଙ୍କ ଚରଣେ ଯାଇଣ ଶୋଇଲା ।
ବୃନ୍ଦାବତୀ ବୋଇଲେ ଏ ଅଟନ୍ତି ଅନନ୍ତ
ସବୁ ଦିନେ ତୁମ୍ଭ ସଙ୍ଗେ ଏ ହୁଅନ୍ତି ଆତଯାତ ।
କରଯୋଡ଼ି ଲକ୍ଷ୍ମଣ ଆଗରେ ଉଭାହୋଇ
ବୃନ୍ଦାବତୀ ବୋଲେ ଏ ଜନ୍ମେ ଏ ଦିଅର ଅଟଇ ।
ଏମନ୍ତ ସମୟରେ ଭରଥ ଆସି ମିଳି
ଦୁହିଁଙ୍କ ଚରଣରେ ଶୋଇଲା ଲୋଟଗାଳି ।
ବୃନ୍ଦାବତୀ ବୋଲନ୍ତି ଏ ଅଟନ୍ତି ସୁଦର୍ଶନ
ଏ ଜନ୍ମରେ ବାହନ ଯହୁଁ ନ ଧଇଲ ପୁଣ ।
ଅଷ୍ଟ ସେନାପତି ଯେ ଚରଣେ ଓଳଗି
ଦେଖିଣ ସନ୍ତୋଷ ଯେ ହୋଇଲେ ବୃନ୍ଦାଦେବୀ ।
ପଛରେ ହନୁମନ୍ତ ଦର୍ଶନ କଲା ପୁଣି
ବିନତି କରିଣ ସେ ଲୋଟଗୋଳେ ଜାଣି ।
ବୃନ୍ଦାବତୀ ବୋଲେ ଶୁଣ ମାରୁତି ତୁହି
କେତେକ ବିଶ୍ୱାସ ତୁରେ ଶ୍ରୀରାମରେ ହୋଇ ।
ମୋ ତିନି ଦିଅରଙ୍କ ଠାରୁ ତୁହି ହେଲୁବଡ଼
ଆପଣା ଭାର୍ଯ୍ୟାକୁ ତୋତେ ଦେଲେ ଯେ ଠାକୁର ।
ବୋଇଲେ ପୂର୍ବେହନୁମନ୍ତ ହେବ ତୋରବର
ଚନ୍ଦ୍ରସେଣା ହେବ ଏହି ପବନ କୁମର ।
ଏହାର ତୋର ଉପରେ ହେବ ଅଧିକାର
ରତିରଙ୍ଗ ନ କରିବ କାମରେ ନିର୍ବିକାର ।
ସ୍ୱାମୀର ବୋଲ କେହୁ ଲଙ୍ଘିବରେ ମାରୁତି
ଜନ୍ମ ନେଲା ବେଳେ ମୁଁ ଅଟଇଦୋଷକୃତୀ ।
ଶୁଣିଣ ହନୁମନ୍ତ ଧରଣୀରେ ପଡ଼ି
ଶତୃଘନ ତାହାକୁ ଯେ ବେଗେଯାଇଁ ତୋଳି ।
ଶ୍ରୀରାମ କୋଳରେ ବୃନ୍ଦାବତୀ ବସି ହସି
ସ୍ୱାମୀର ବୋଲ କେହୁ ହେ ଭାଙ୍ଗି ବିଶେଷି ।
ଶତୃଘ୍ନ ବୋଇଲେ ତୁମ୍ଭେ ଶୁଣ ଠାକୁରାଣୀ
ଏଡ଼େ ବଡ଼ପଣ ମାରୁତିକି କିମ୍ପାଦେଲେ ରଘୁମଣି ।
ବୃନ୍ଦାବତୀ ବୋଇଲେ ଶୁଣରେ ସାନୁଜ
ପରମ ଦୟାଳୁ ସେ ଅଟନ୍ତି ରାମରାଜ ।

ଯେତେବେଳେ ମାରୁତି ପ୍ରଥମେ ଲଙ୍କାଗଲା
ଲଙ୍କାଗଡ଼େ ଯାଇଣ ସୀତାଙ୍କୁ ଠାବକଲା ।
ଜାନକୀଙ୍କି ଦେଖିଣ ବିଚାର କଲା ମନେ
ବୋଇଲା ଏ ସୁନ୍ଦରୀକି ମୁଁ ଦେଖିଲି ନୟନେ ।
ଅନେକ ଭାଗ୍ୟ ମୋର ଯେ ଏହାର ଦର୍ଶନେ
ରାମ ପରା ଅନ୍ତର୍ଯ୍ୟାମୀ ଶୁଣ ସୁପ୍ରସନ୍ନେ ।
ବୋଇଲେ ବୃନ୍ଦାବତୀ ରାଧିକା ରୂପ ହେବ
ହନୁମନ୍ତ ଚନ୍ଦ୍ର ସେଣା ହୋଇଣ ବିଭାହେବ ।
ପରକୀୟା ଭାବେ ଆମ୍ଭେ ରମିବୁ ରାଧିକା
ସାକ୍ଷୀହୋଇ ଚନ୍ଦ୍ରସେଣା ଦେଖିବ ସେକଥା
ଶତୃଘନ ବୋଲେ ଯେବେ ଅଟୁବିଷ୍ଣୁ ପ୍ରିୟା
କିମ୍ବା ତ୍ରଇଲୋକ୍ୟନାଥ ତୋତେ କଲା ମାୟା ।
ବୃନ୍ଦାବତୀ ବୋଲେ ତୁମ୍ଭେ ଶୁଣ ହେ ସାନୁଜ
ମାୟାକୁ ମାୟା ଘଟାଇ ପାରନ୍ତି ଦେବରାଜ ।
ଗୋଲେଖ ଦୁଆରେ ମୁଁ ଯେ ଅଟେ ଦ୍ୱାରପାଳ
ମାନବ ରୂପ ଧରିଣ ଗଲେ ଚକ୍ରଧର ।
ମୋତେ ସେବୋଇଲେ ରାଧା କୃଷ୍ଣଲୀଳାଦେଖା
ଶୁଣିଣ ମୋର ମନ ତାଠାରେ ହେଲା ସ୍ରୋତା ।
ମୋହର ରୂପରେ ବେଶ କଲି ଯେ ଭିଆଣ
ନୀଳାରେ ପଶି ଦେଖନ୍ତେ ଜାଣିଲେବେନିଜନ ।
ବୋଇଲେ ମାନବ ବିଷ୍ଣୁ ଆଣି ଦେଖାଇଲୁ
ଆମ୍ଭର ଜ୍ଞାନ ଗୋଟି ତୁହି ଯେ ଲଙ୍ଘିଲୁ ।
ଏ ଦୋଷରେ ମର୍ତ୍ତରେ ହୋଇବୁ ଅବତାର
ମାନବ ବିଷ୍ଣୁ ସଙ୍ଗେ ତୁହି ଯେ ବିହର ।
ଆଗେ ଅସୁର ନାରୀ ହୋଇବୁ ଗୋ ପୁଣ
ଏ ନାରାୟଣ ତୋ ସଙ୍ଗେ ବୈରୀ ରତିଜାଣ ।
ସେଠାରେ ଶାପରେବିଷ୍ଣୁ ହୋଇବେପାଷାଣ
ଏହି ନାରୀ ହୋଇବ ତୁଳସୀ ବୃନ୍ଦା ଜାଣ ।
ରଙ୍ଗା ଅବତାରେ ଏ ହୋଇବ ରାଧିକା
ଏହାକୁ ଘେନି ରାସ କରିବେ କୃଷ୍ଣ ଏକା ।
ଏମନ୍ତ କହିବାରୁ ସେଠାରୁ ମୁହିଁ ଆସି
ଅସୁର ଘରେ ମୁହିଁ ଯେ ଜନ୍ମିଲି ବିଶେଷି ।
ଜଳନ୍ଧର ନାମରେ ଅସୁର ଯେ ଅଟେ
ମୋତେ ବିଭା ହେବାରୁ ତା ଚରଣେ ମୁଁ ଖଟେ ।
ସତୀର ବ୍ରତ ମୁଁ ଯେ ପାଳିଣ ପୁଣଥିଲି
କାହାରି ହସ୍ତେ ଅସୁର ଯୁଦ୍ଧରେ ନ ମରି ।

ଏହି ରାମ ମୋତେ କପଟେ ହରିଲେ
ମୋହର ଶାପରେ ପାଷାଣ ଯେ ହେଲେ ।
ତେବେ ଜଳନ୍ଧରକୁ ମାଇଲେ ସଦାଶିବ
ମୋତେ ବଡ଼କଲେ ହୋଇଣ ଦୟାଭାବ ।
ସେହିଦିନୁ ମୁଁ ଯେ ଏହାଙ୍କର ଅଟେ ଦାସୀ
ଶୁଣିଣ ଶତୃଘନ ହୋଇଲେ ମନେ ଖୁସି ।
ବୃନ୍ଦାବତୀ ବୋଲେ ସ୍ୱାମୀବିଜେ ଏବେକର
ସ୍ନାହାନ ମାଜଣା ତୁମ୍ଭେ ହୁଅ ଏହୁ ପୁର ।
ଏ ଜନ୍ମରେ ଥରେ ମୁହିଁ ପରଶଇ ଅନ୍ନ
ଶୁଣି କରି ସନ୍ତୋଷ ହୋଇଲେ ରଘୁରାଣ ।
ପୁଷ୍ପକ ଯାନର ପରୁ ଉଠେ ଦାଶରଥି
ବୃନ୍ଦାବତୀ ହସ୍ତଧରି ତଳକୁ ଆସନ୍ତି ।
ଗଡ଼ର ଭିତରେ ଯାଇଁ ପ୍ରବେଶ ହୋଇଲେ
ପୂର୍ବ ନିଜ ସ୍ଥାନରେ ଯାଇଣ ବିଜେକଲେ ।
ଶ୍ରୀରାମ ବୋଇଲେ ଦୁ ଶୁଣରେ ସାନୁଜ
ଯେତେବେଳେ ମହାଦେବ ମାଇଲେ ଦନୁଜ
ତେତେବେଳେ ଏସ୍ଥାନରେ ଆମ୍ଭେ ବିଜେକଲୁ
କମଳାଙ୍କୁ ଘେନି ସଙ୍ଗେ ଏପୁରେ ରହିଲୁ ।
ତେତେବେଳେ ବାନ୍ଧବ ଯେ ଆମ୍ଭର ଜଳନ୍ଧର
ଜଳନ୍ଧର ଅଟଇ ଯେ ବରୁଣ କୁମର ।
କମଳାର ଭାଇ ସେ ଯେ ଲେଖାରେ ଦନୁଜ
ତାରସଙ୍ଗେ ଯୁଝିବାରୁ ନୋହିଲା ପ୍ରାଣେବଧ ।
ବୃନ୍ଦାବତୀ କହିବାରୁ ଜାଣିଲେ ସେ କଥା
ସେକାଳୁଁ ତୁଳସୀ ପୁଷ୍ପ ବହୁ ଆମ୍ଭେମଥା ।
ଏତେ କହି ମର୍ଦ୍ଦନ ଯେ ମାଜଣା ଚାରିଭାଇ
ସୁବାସିତ ଜଳ ବୃନ୍ଦାବତୀ ନେଇ ଦେଇ ।
ସେ ଜଳରେ ସ୍ନାହାନ ସେ ଚାରିଭାଇ କଲେ
ସ୍ନାହାନ ସାରିଣ ନିଜ ସ୍ଥାନରେ ମିଳିଲେ ।
ନୂତନ ଅମଳାନ ଦେଲେ ବୃନ୍ଦାଦେବୀ
ସୁକ୍ଷୀନ ବାସ ଯେ ପିନ୍ଧିଲେକ ଦୟାନିଧି ।
ଦେବାର୍ଚ୍ଚନ ବିଧି ଯେ ସାରିଲେ ଦାଶରଥି
କମଳାଙ୍କ ପାକଶାଳେ ପ୍ରବେଶ ବୃନ୍ଦାବତୀ ।
ଷଡ଼ରସରେ ମଣୋହି କଲେ ସେ ଭିଆଣ
ମଣୋହିରେ ବିଜେକଲେ ଚାରିଭାଇ ପୁଣ ।
ମଣୋହି ସମ୍ପୂର୍ଣ୍ଣ କରି ଆଞ୍ଚୋବନ କଲେ
ସିଂହାସନ ଉପରେ ସେ ଯାଇଣ ବସିଲେ ।

ବିଡ଼ିଆ ଲାଗି ନେଇ କଲେକ ବୃନ୍ଦାବତୀ
ବିଡ଼ିଆ ଭୁଞ୍ଜିଣ ନିଦ୍ରାଗଲେ ଦାଶରଥି ।
ବସିଣ ପାଦତଳରେ ବୃନ୍ଦାଦେବୀ ପୁଣ
ବେନି ଚରଣ ମଞ୍ଚାଳେ ହୋଇଣ ତୋଷମନ ।
ସେଠାରୁ ଆଳସ୍ୟ ନିଦ୍ରା ଶ୍ରୀରାମ ଭାଙ୍ଗିଣ
ଚରିଭାଇ ସଙ୍ଗେ ଘେନି ବାହାରିଲେ ପୁଣ ।
ପଚିଶ ଯୂଥପତୀ ଅଷ୍ଟସେନା ଧରି
ଘୃତ ସମୁଦ୍ରରେ ଯାଇଁ ମିଳିଲେ ଚାପଧାରୀ ।
ବାରକୋଟି ଗଡ଼ ଯେ ସେଥିରେ ଅଟେ ଜାଣ
ସବୁ ଗଡ଼ ନୃପତିଙ୍କି ଦେଖିଲେ ରାମରାଣ ।
ସେଠାରୁ ଚିକ୍‌କଣ ଦ୍ୱୀପେ ପ୍ରବେଶ ହୋଇଲେ
ବାରଲକ୍ଷ ରାଜା ଯେ ସେଥିରେ ବନ୍ଦୀକଲେ ।
ପୁଷ୍ପକ ଯାନରେ ରଖିଲେକ ଯତ୍ନ କରି
ସେମାନେ ସୁମରିଲେ ବରୁଣ ନାମଧରି ।
ଜାଣିଣ ବରୁଣ ଯେ ଦେବତା ଅଇଲା
ତରଙ୍ଗ ମନ୍ତ୍ରୀ ଯେ ତାଙ୍କ ସଙ୍ଗତରେ ଥିଲା ।
ବରୁଣଙ୍କୁ ଦେଖି ରାମ ନମସ୍କାର କଲେ
ତିନିଭାଇ ତାହାଙ୍କର ଚରଣେ ନମିଲେ ।
ବରଣ ବୋଇଲେ ନିର୍ଦ୍ଦୋଷୀଙ୍କି ବନ୍ଦୀକର
ଜୀବମାନଙ୍କ ପରାୟେ ଧାରା ଏହାଙ୍କର ।
ଅସତ କରମକୁ ଏ ନ କରନ୍ତି ଗମନ
ଛାଡ଼ିଦିଅ ଏହାଙ୍କୁ ଯାଆନ୍ତୁ ନିଜସ୍ଥାନ ।
ଶୁଣିକରି ଶ୍ରୀରାମ ବନ୍ଧନୁ ଫେଡ଼ିଦେଲେ
ମାନ୍ୟଧର୍ମ କରି ରାଜାଏ ନିଜପୁରେ ଗଲେ ।
ବରୁଣ ବରଣ କରି ନେଲେ ଶ୍ରୀରାମଙ୍କୁ
ନିଜପୁରେ ପ୍ରବେଶ ଅସୁରଙ୍କର ରିପୁ ।
ନୀରବତୀ ରାଣୀ ଆସି ଅର୍ଘ୍ୟ ବନ୍ଦାଇଲା
ମଙ୍ଗଳ ଆଳତୀ କରି ଧୂପ ଦୀପ ଦେଲା ।
ବରୁଣ ପୁରେ ବିଜୟ କଲେ ରାମରାଣ
ଷଡ଼ ରସରେ ଭୋଜନ କଲେକ ସେସ୍ଥାନ ।
ଓଳଗି ମେଲାଇଣ ରଥରେ ବିଜେକଲେ
ଘୃତ ସମୁଦ୍ରୁଁ ରମ୍ୟକଦ୍ୱୀପେ ପହଞ୍ଚିଲେ ।
ଦେଖିଲେ ବିନତା ସୁତ ଗରୁଡ଼ର ପୁର
ଗରୁଡ଼ ଦେଖିଣ ଯେ କଲେ ନମସ୍କାର ।
ଶତେବାରି ପରିଯନ୍ତେ ଓଳଗି ମେଲାଇଲା
ଶ୍ରୀରାମଙ୍କୁ ଦେଖିଣ ସନ୍ତୋଷ ମନ ହେଲା ।

ଶ୍ରୀରାମ ପଚାରିଲେ ଶୁଣ ହେ ଖଗପତି
ଏ ଦ୍ୱୀପରେ କେତେକେତେ ଦୁଷ୍ଟ ଯେ ଅଛନ୍ତି ।
ସେ ବୋଲେ ଏ ଦ୍ୱୀପରେ ଏକା ମୁଁ ଅଟେ ରାଜା
ବାରକୋଟି ପୁର ଏଥିରେ ସମସ୍ତେ ପ୍ରଜା ।
ଏ ପୁରରେ ଦୁଷ୍ଟନାହିଁ ସମସ୍ତେ ଖଗପୁଣ
ଶୁଣିକରି ସନ୍ତୋଷ ହୋଇଲେ ରାମରାଣ ।
ଗରୁଡ଼ଙ୍କୁ ବୋଇଲେ ଏହୁ ଯେ ସାଗର
ଏଥିରେ କିଏ ସେ ଦୁଷ୍ଟ ଅଛିକି ବଳିୟାର ।
ସେ ବୋଇଲା ଦଧି ଯେ ସାଗର ଅଟେ ଏହି
ଏ ସାଗର ଭିତରେ ଅନେକ ଗାଢ଼ ରହି ।
ସେଥିରେ ସର୍ବେ ନିବର୍ତ୍ତ ନୁହନ୍ତି ଦୁଷ୍ଟ ପୁଣ
ଦେବଙ୍କର ଆତଯାତ ଅଟେ ସେହୁସ୍ଥାନ ।
ସେଥର ଉତ୍ତର ଶ୍ରୀହରି ପାଟଣା
କ୍ଷୀର ସାହେରକୁ ଘେ ବେଢ଼ିଅଛି କିନା ।
ସେ ପାଟଣା ଦୁଇ ମୁଣ୍ଡେ ଦେବନାଶନ ବାଟ
ସେ ବଟତଳେ ବିଶ୍ରାମ ବିରାଟ ପୁରୁଷ ।
ସେବଟ ତଳକୁ ଯିବାକୁ କାହାରି ସକ୍ଷନାହିଁ
ବାସୁଦେବ ଗଲେ ଯେ ଭସ୍ମହେବେ ତହିଁ ।
କ୍ଷୀର ସାହେର ଯେ ଅନନ୍ତ ଶୟନ
ସେଠାକୁ ଗଲେ ନଯିବ ଅଯୋଧ୍ୟା ଭୁବନ ।
ନିଜଧାମ ତୁମ୍ଭର ଅଟେ ସେହୁ ପୁଣ
ଏ ଦେହ ଛାଡ଼ି ନିଶ୍ଚେ ହେବ ହେ ପରାୟଣ ।
ଶୁଣିକରି ଶ୍ରୀରାମ ସେଠାରୁ ଫେରିଲେ
ଗରୁଡ଼ଙ୍କୁ ପ୍ରବୋଧନା କରିଣ ଅଇଲେ ।
ଶୂନ୍ୟମାର୍ଗରେ ରଥ ବେଗେ ଗଲା ଚଳି
ଜମ୍ବୁଦ୍ୱୀପ ମଣ୍ଡଳେ ଅଯୋଧ୍ୟା ନଗ୍ରେ ମିଳି ।
ସିଂହଦୁଆରେ ରଥ ଯେ ହେଲା ପରବେଶ
ଦେଖିଣ ଅଯୋଧ୍ୟା ଲୋକେ ହେଲେ ହସହସ ।
ରଥୁଁ ଓହ୍ଲାଇ ଶ୍ରୀରାମ ଭିତରକୁ ଗଲେ
ଚରିଭାଇଯାକ ଚଳିଲେକ ଧୀରେ ଧୀରେ ।
ଜାନକୀ ଆଗରେ ଦାସୀଗଣେ କହି
ସାତମାସେ ସ୍ୱାମୀ ନିଜ ପୁରକୁ ଆସଇ ।
ଶୁଣିକରି ଜାନକୀ ଅର୍ଘ୍ୟସ୍ଥାଳୀ ଘେନି
ଅନ୍ତଃପୁରେ ଶ୍ରୀରାମଙ୍କୁ ବନ୍ଦାଏ ଯାଇ ପୁଣି ।
ଧୂପ ଦୀପ ଦେଇଣ ଯେ ପୂଜାବିଧି କଲେ
ଏ ରଣ ଉଦକ ନେଇ ଗର୍ଭକୁ କ୍ଷେପିଲେ ।

ଧୀରେ ଧୀରେ ପହଣ୍ଡ ମଣାଇଣ ନେଲେ
ଅନ୍ତଃପୁରେ ପଲଙ୍କରେ ଯାଇଣ ବସିଲେ ।
ଛଡ଼ରସେ ଭୋଜନ ଯେ କଲେ ଦେବ ତହିଁ
ବିଡ଼ିଆ ଲାଗି ହୋଇଣ ପଲଙ୍କରେ ଶୋଇ ।
ଏଥୁ ଅନନ୍ତରେ ଶୁଣ ଶାକମ୍ବରୀ
ତିନିଭାଇ ବିଜେକଲେ ଜାନକୀ ଅନ୍ତଃପୁରୀ ।
ମାନ୍ୟଧର୍ମ ଜାନକୀଙ୍କ ଚରଣ ତଳେ କଲେ
ଷଡ଼ରସେ ଭୋଜନ ଜାନକୀ ଆଣିଦେଲେ ।
ଭୁଞ୍ଜିଣ ତିନିଭାଇ ସନ୍ତୋଷ ମନ ହେଲେ
ଆଚମନ ସାରିଣ ପଲଙ୍କେ ବସିଲେ ।
ମାୟାସୀତା ଆଣିଣ ବିଡ଼ିଆ ଲାଗିକଲା
ତିନିଭାଇ ଭୁଞ୍ଜିକରି ମନ ସନ୍ତୋଷ ହେଲା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଯୁଥପତି ସେନାପତି ବାହାରେ ଅଛନ୍ତି ।
ଜାନକୀ ବୋଇଲେ ତୁମ୍ଭେ ସାନୁଜ ଏବେ ଶୁଣ
ଯେଉଁମାନେ ଯାଇଥିଲେ ତୁମ୍ଭ ସଙ୍ଗରେ ପୁଣ ।
ଶତ୍ରୁଘନ ବୋଇଲେ ଯୁଥପତି ସେନାପତି
ପବନର ସୁତ ଯେ ଆମ୍ଭର ସଙ୍ଗେ ଅଛି ।
ଜାନକୀ ବୋଇଲେ ଗୋ ମାୟାଦେବୀ ଶୁଣ
ଏମାନଙ୍କୁ ଏବେ ତୁମ୍ଭେ ଦିଅ ଗୋଭୋଜନ ।
ଶୁଣିକରି ମାୟାସୀତା ବେଗେ ଚଳିଗଲା
ସେନା ଯୁଥପତିଙ୍କି ଅନ୍ନ ପରଷିଲା ।
ଷଡରସେ ଭୋଜନ କଲେ ଯେ ସେମାନେ
ଆଞ୍ଚୋବନ ସାରିଣ ତୃପତ କଲେ ମନେ ।
ରଜନୀରେ ନିଦ୍ରାଗଲେ ସକଳେ ସେ ପୁଣ
ଭୋଜନ ସାରିଣ ସୀତା ବେଶହେଲେ ଜାଣ ।
ରାମ ପାଶେ ଯାଇଣ ହେଲେ ପରବେଶ
ଦେଖିଣ ଶ୍ରୀରାମ ଯେ ମନରେ ହରଷ ।
ଜାନକୀ ରାମ ଏକ ଆସନେ ବସିଲେ
ଚଉଷଠୀ ବନ୍ଧରେ ରତିରଙ୍ଗ କଲେ ।
ଜାନକୀ ପଚାରିଲେ କଲ ତ ଉଚ୍ଛୁର
ରାମଚନ୍ଦ୍ର ବୋଲନ୍ତି ଯେ ସପତ ସାଗର ।
ସପତ ଦ୍ୱୀପ ପୁଣି ସେଥିର ଭିତରେ
ଅନେକ ରଣଗୋଳ ହୋଇଲା ସେଥିରେ ।
ଦୁଷ୍ଟଜନ ମାରିଣ ସନ୍ଥଙ୍କୁ ରକ୍ଷାକଲୁ
ସାତମାସେ ନିଜପୁର ଆସିଣ ଦେଖିଲୁଁ ।

ଜାନକୀ ବୋଇଲେ ତୁମ୍ଭର ତିନିଭାଇ ପୁଣ
ନିଜଘର ନଯାଇ ରହିଲେ ଏହି ସ୍ଥାନ ।
ରାମ ବୋଇଲେ ମୁଁ ତାଙ୍କୁ ଯିବାକୁ ନ କହିଲି
ତେଣୁକରି ରହିଲେ ସେ ନଗରେ ନିଜପୁରୀ
କଥା ହୁଅନ୍ତେ ଯେ ଶର୍ବରୀ ଶେଷ ହେଲା
ଶଯ୍ୟା ଛାଡ଼ି ରାମଚନ୍ଦ୍ର ବାହାରେ ବିଜେକଲା
ଏମନ୍ତ ସମୟରେ ସାମନ୍ତ ପାତ୍ର ଆସି
ବାମଦେବ କଶ୍ୟପ ଦୁର୍ବାସା ଯେ ଋଷି ।
ସୁମନ୍ତ ମନ୍ତ୍ରୀ ଆସିଲେ ଆସିଲେ ସୈନ୍ୟବଳ
ଗହଳରେ ସଭା ଯେ ହୋଇଲା ଚହଳ ।
ଏହି ସମୟରେ ତିନି ଭାଇ ମିଳି
ମାନ୍ୟଧର୍ମ କରିଣ ବସିଲେ ଯାଇକରି ।
ରଥରୁ ଓହ୍ଲାଇ ଭିତର ପୁର ଗଲେ
ଦୁର୍ବାସା ବଶିଷ୍ଠ ଯେ ଆଗରେ ମିଳିଲେ ।
ନମସ୍କାର କରିଣ ବସିଲେ ସିଂହାସନ
ମାନ୍ୟଧର୍ମ କଲେ ଋଷିଙ୍କି ରାମ ପୁଣ ।
ଦୁର୍ବାସା ବୋଇଲେ ଶୁଣ ହେ ରାମରାଣ
ସପ୍ତଦ୍ୱୀପ ଦିଗବିଜେ ସରିଲାକ ପୁଣ ।
ଆହୁରି କଥାଏ ଅଛଇଁ ଏବେ ଶୁଣ
ଚଇତ୍ର ମାସରେ ତୁମ୍ଭର ଜନ୍ମ ପୁଣ ।
ଦୋଳ ପୂର୍ଣ୍ଣୀମାଠାରୁ ଚଇତ୍ରପୂର୍ଣ୍ଣମୀ ଯାଏ
ଯାତ୍ରା ଭିଆଣ ଏଥିରେ କର ହେ ରାମରାୟେ ।
ଦେଖନ୍ତୁ ସକଳ ରାଜ୍ୟ ରାଜା ଯେ ପରଜା
ତୋର ନାମ ତିନିପୁରେ ବିଖ୍ୟାତ ହେଉରାଜା
ଶୁଣି କରି ରାମ ହରଷ ମନ କଲେ
ଯେଉଁରୂପେ ଯାତ୍ରା ହେବ ଭିଆଣ ବୋଇଲେ
ଦୁର୍ବାସା ବୋଇଲେ ଯେ କୃଷ୍ଣ ତ୍ରୟୋଦଶୀ
ସେଦିନ ଜାହ୍ନବୀରେ ସ୍ନାନ କର ଯାସି ।
ପ୍ରୟାଗ ତୀର୍ଥରେ କରିବ ସ୍ନାହାନ
ତ୍ରିକୁଳ ଉଦ୍ଧାରଣ କରିବ ସେଦିନ ।
ଦାନ ପୁଣ୍ୟ ମନଇଚ୍ଛାରେ କର ରଘୁନାନ
ସେଦିନ ଯାତ୍ରା ସାରିଆସିବ ଆପଣ ।
ଶୁକ୍ଳପକ୍ଷରେ ଯେ ଅଷ୍ଟମୀ ଅଶୋକ
ସେଦିନ ଘୋଷଯାତ କର ଦଶରଥ ସୁତ ।
ବାହୁଡ଼ା ବିଜେକରି ଦ୍ୱାଦଶୀର ଦିନ
ପ୍ରଥମଦିନ ଅଶୋକଫୁଲ ଭୁଞ୍ଜିବେ ସର୍ବଜନ

ଯେହୁ ଭୁଞ୍ଜିବେ ଅଶୋକପୁଷ୍ପ ଆଠଗୋଟି
ରୋଗ ଶୋକ ନ ଲାଗିବ ତାଙ୍କ ଦେହରେଟି ।
ଶୁଣିକରି ଶ୍ରୀରାମ ହରଷ ମନ ହେଲେ
ଘୋଷ ଯାତ୍ରାକଲେ ରଥ ଭିଆଣ ହେବ ଭଲେ ।
କେଉଁ ଦେବତା ସେ ରଥରେ ବସିବେ
ଦୁର୍ବାସା ବୋଇଲେ ଶୁଣ ସେଥିର କଥା ତେବେ ।
ପଞ୍ଚାନନ ସେ ରଥରେ ବସିବା ଭାର୍ଜନ
ବରଷକେ ଥରେ ଯାତ୍ରା ହୋଇବଟି ପୁଣ ।
ତୁମ୍ଭର ଇଷ୍ଟଦେବତା ବିରଞ୍ଚି ନାରାୟଣ
ସଦାଶିବ ସଙ୍ଗରେ ସେହି ଥିବେ ପୁଣ ।
ରଥର ଉପରେ ଦୁଇ ଦେବତା ବସିବେ
ପୂର୍ବମୁଖ ହୋଇଣ ନନ୍ଦିଗ୍ରାମ ଯିବେ ।
ସେଠାରେ ସୁବର୍ଣ୍ଣ ଯେ ଦେଉଳ ହୋଇବ
ନାରାୟଣ ପଞ୍ଚାନନ ସେଠାରେ ବସାଇବ ।
ଚାରିଦିନ ରହିଣ ଯେ ରଥରେ ବସିବେ
ଅଯୋଧ୍ୟା ପୁରକୁ ଯେ ବାହୁଡ଼ି ଆସିବେ ।
ବୈଶାଖ ମାସରେ ଗ୍ରୀଷମ ଋତୁ ହେବ
ଚନ୍ଦନ ଯାତ୍ରା କରିବ ସମ୍ଭର୍ବେ ରାମ ଦେବ ।
ତୁମ୍ଭର ରାଜ୍ୟରେ ଯେଉଁ ବଡ଼ ପୁଷ୍କରିଣୀ
ସେଥିରେ ନାବ ବାନ୍ଧି ଚାପକରିବ ରଘୁମଣି ।
ଜ୍ୟେଷ୍ଠ ମାସରେ ଚମ୍ପକ ଦ୍ୱାଦଶୀହୋଏ ଯାତ
ଘୋଷଯାତ୍ରା ସେଥିରେଟି ଦଶରଥ ସୁତ ।
ବିରଞ୍ଚି ନାରାୟଣ ରଥରେ ବସି ପୁଣ
ତିନିଦିନ ଯାତ୍ରା ଯେ କରିବ ଭିଆଣ ।
ଆଷାଢ଼ ମାସରେ ଶୟନ ଯାତ୍ରା କରି
ବିରଞ୍ଚି ନାରାୟଣ ସଙ୍ଗେ ଛାୟା ଯେ ପହୁଡ଼ି ।
ଚାରିମାସ ପର୍ଯ୍ୟନ୍ତେ ଶୟନ ନିଶ୍ଚିନ୍ତରେ
ବିଶାଶତ ଦିନରେ ଉଠିବେ ଉତ୍ସବରେ ।
ଶ୍ରାବଣ ମାସରେ ଅମାବାସ୍ୟା ଦିନ ପୁଣି
ନବ ଅନ୍ନେ ଚିତାଲାଗି ହେବ ରଘୁମଣି ।
ସିଂହାସନେ ଇନ୍ଦ୍ର ଯେ ଉତ୍ସବ ଯାତ୍ରାକରି
ଧବଳ ହସ୍ତୀ ଉପରେ ଅମରୀ ବେହରି ।
ଆଶ୍ୱିନ ମାସରେ ଦେବୀ ପୂଜାକରି
ଛାଗଳ ବୋଦା ଦେଇଦେବୀଙ୍କି ସନ୍ତୋଷକରି ।
କାର୍ତ୍ତିକ ମାସରେ ରାଇ ଦାମୋଦର
ପୂଜା କଲେ ନାରାୟଣ ସନ୍ତୋଷ ମନର ।

ଦଶରଥ ଜ୍ୟେଷ୍ଠ ପୁତ୍ର ଅଟେ ହେ ରାମାୟଣ
ଆଦ୍ୟ ମାସ ପ୍ରଥମାଷ୍ଟମୀ ହେ ରାମରାଣ ।
ସେ ଦିନ ଯାତ୍ରା ତୁମ୍ଭେ କରିବ ଭିଆଣ
ଜାନକୀ ଅଟନ୍ତି ଜ୍ୟେଷ୍ଠ ଜନକର ପୁଣ ।
ଦୁଇଜଣ ସେ ଦିନ ନୂତନ ବସ୍ତ୍ର ପିନ୍ଧି
ବନ୍ଦାପନା ବିଧି ଯେ ହୋଇବ ପ୍ରସିଦ୍ଧି ।
ଧନୁ ମାସରେ ପୁଷ୍ୟା ଯେ ଅଭିଷେକ ହେବ
ଜାନକୀ କୋଳେ ଘେନିଣ ଅଭିଷେକ ଭାବ ।
ମକର ମାସରେ ହେବ ବସନ୍ତ ପଞ୍ଚମୀ
ସେହିଦିନକୁ ଫୁଲ ଦେଉଳ ସଜକର ପୁଣି ।
ବିନୋଦ ରହସ୍ୟ ଲୀଳା ସେଦିନ ହୋଇବ
ସେ ଚଉଦୋଳେ ଇଷ୍ଟ ଦେବତା ବସିଥିବ ।
ଫାଲଗୁନ ମାସରେ ଶିବର ଜନମ ଦିନ
କୃଷ୍ଣ ଚତୁର୍ଦ୍ଦଶୀ ଯେ ସେ ଦିନର ନାମ ।
ତୋହର ରାଜ୍ୟେ ପ୍ରସିଦ୍ଧି ଯେଉଁ ପଞ୍ଚାନନ
ତାହାଙ୍କୁ ଦରଶନ କରିବ ସେ ଦିନ ।
ସେ ସ୍ଥାନରେ ଉଜାଗରେ ଜାଗର ଜାଳିବ
ହର ଗୌରୀଙ୍କି ସେଦିନ ଭେଟ କରାଇବ ।
ପୂର୍ଣ୍ଣମୀ ଦିନ ଯାତ୍ରା କର ହେ ବହନ
ଦୋଳିପରେ ବିଜୟ କର ହେ ନାରାୟଣ ।
ଅବିର ଗୁଣ୍ଡ କରିଣ ପହଞ୍ଚାଇ ଦୋଳି
ବାରମାସେ ତେରଯାତ୍ରା କରହେ ରାବଣାରି ।
ଶୁଣି କରି ଶ୍ରୀରାମ ସନ୍ତୋଷ ମନ ହେଲେ
ଯାତ୍ରା ମାନ ଭିଆଣ କର ସେ ବୋଇଲେ ।
ଦୁର୍ବାସା ବୋଇଲେ ଯେ ଅଛନ୍ତି ବଶିଷ୍ଠ
ସବୁ ବୁଦ୍ଧି ତୁମ୍ଭଙ୍କୁ କହାଇ ଦେବେ ସେତ ।
ଆମ୍ଭେ ଯାଉଅଛୁ ବାବା ନିଜ ଆଶ୍ରମକୁ
ସୁଖରେ ଦିନ ନିଅ ବୋଇଲେ ଶ୍ରୀରାମଙ୍କୁ ।
ବଳରାମ ଦାସ ସେବେ ଶ୍ରୀରାମ ପୟରେ
ଶରଣ ପଶିଲା ସେ ଉଦ୍ଧାର ନିମନ୍ତରେ ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ବାର ମାସରେ ତେରଯାତ୍ରା କହିଲେ ବ୍ରହ୍ମପତି ।
ମୁନିଙ୍କର ମୁଖରୁ ସମସ୍ତେ ଶୁଣିଲେ
ସାମନ୍ତ ପାତ୍ରମାନେ ଶୁଣି ଆନନ୍ଦ ହେଲେ ।
ଯାତ୍ରା ସେହିଠାରୁ ପ୍ରକାଶ ହେଲା ପୁଣ
ଯାତ୍ରା କରିବାକୁ ଶ୍ରୀରାମ ବିଚାରିଲେ ମନ ।

ଦୁର୍ବାସା ଯିବାକୁ ଉଠିଲେ ବହନ
ଶ୍ରୀରାମ ବୋଇଲେ ତୁମ୍ଭେ ଯାନରେ ଯାଅପୁଣ ।
ଲକ୍ଷ୍ମଣଙ୍କୁ ବୋଇଲେ ଅଣାଅ ତୋର ଯାନ
ଦାରୁକଙ୍କୁ କହନ୍ତେ ସେ ଆଣିଲା ବିମାନ ।
ଦୁର୍ବାସା ଋଷିଙ୍କି ରାମଅନେକ ଧନ ଦେଲେ
ସନ୍ତୋଷରେ ମୁନି ଯାଇଁ ରଥରେ ବସିଲେ ।
ଦାରୁକ ରଥରୁ ବାହି ନେଲାକ ଗଗନେ
ଘଡ଼ିକରେ ପ୍ରବେଶ ହେଲେ ଯେ ଆସ୍ଥାନେ ।
ରଥରୁ ଓହ୍ଲାଇ ଯେ ଧନରତ୍ନ ନେଲେ
ଦାରୁକକୁ ବୋଇଲେ ଚଳ ତୁ ଅଯୋଧ୍ୟାରେ ।
ମେଲାଣି ହୋଇଣ ସେ ଦାରୁକ ଚଳିଗଲା
ଅଯୋଧ୍ୟା ନଗ୍ରରେ ଯାଇ ପ୍ରବେଶ ହୋଇଲା ।
ଶ୍ରୀରାମଙ୍କୁ ଯାଇଣ ସେ କଲାକ ଦର୍ଶନ
ଯିବା ଆସିବାକୁ ଯେ ଦୁଇଘଡ଼ି ପୁଣ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଦୁର୍ବାସା କହି କରି ଯିବାରୁ ନିଜପୁରୀ ।
ବଶିଷ୍ଠଙ୍କୁ ଶ୍ରୀରାମ କହିଲେ ଯେ ପୁଣ
ଯାହା କହିଗଲେ ଦୁର୍ବାସା ଋଷି ପୁଣ ।
ସେ କଥାମାନ ଘଟଣ କର ହେ ତୁମ୍ଭେ ଏବେ
ଶୁଣିଣ ବଶିଷ୍ଠ କହନ୍ତି ସଦଭାବେ ।
ବୋଇଲେ ମୀନ ମାସର ଆଜକୁ ଦଶଦିନ
ଅନୁକୂଳ କରିଯାଅ ଜାହ୍ନବୀ ସ୍ନାନେ ପୁଣ ।
ମାତାଗଣ ରାଣୀହଂସ ଘେନି ବେଗେ ଚଳ
ରାଜ୍ୟରେ ଧେଣ୍ଡୁରା ଦିଅ ଦଶରଥ ବାଳ ।
ଶୁଣିକରି ଶ୍ରୀରାମ କଟୁଆଳ ଡାକି
ଧେଣ୍ଡୁରା ଫେରାଅ ଗଙ୍ଗାରେ ବାରେଣୀକି ।
ପ୍ରୟାଗ ତୀର୍ଥରେ ଯାଇଁ କରିବେ ସ୍ନାହାନ
ଶୁଣିକରି କଟୁଆଳ ଗଲା ଯେ ବହନ ।
ନଗ୍ରରେ ଧେଣ୍ଡୁରା ଯାଇଁ ଶୀଘ୍ରେ ଫେରାଇଲା
ପ୍ରୟାଗ ସ୍ନାନକରି ବୋଲିଣ ବୋଇଲା ।
ଶୁଣିକରି ହଟାରି ବଜାରି ଚଳିଗଲେ
ଛତିଶ ପାଟକ ଶୁଣି ବହନ ଅଇଲେ ।
ସାମନ୍ତ ପାତ୍ର ଯେ ବ୍ରାହ୍ମଣ ଋଷି ଜାଣ
ସମସ୍ତେ ଚଳିଗଲେ ପ୍ରୟାଗ ତୀର୍ଥେଣ ।
ଲାଗିଲା ଗହଳ ଘୋଷ ଯାତ୍ରା ଜାଣି
ପ୍ରୟାଗ ତୀର୍ଥକୁ ସର୍ବେ ଚଳିଗଲେ ପୁଣି ।

ମାତାଗଣଙ୍କୁ ଶ୍ରୀରାମ ଯାଇଣ କହିଲେ
ଗଙ୍ଗାସ୍ନାନ ଯିବ ଚ଼ଲ ବୋଲିଣ ବୋଇଲେ ।
ପୁଷ୍ପକ ରଥ ପରେ ବସ ସମସ୍ତେ ଯାଇଁ
ଶୁଣିଣ ମାତାଗଣ ହରଷରେ ଧାଇଁ ।
ପୁଷ୍ପକ ଯାନ ସାଜି ଆଣିଲା ମାତଳି
ସେଥିରେ ମାତାଗଣ ବସିଲେ ଯାଇଁକରି ।
ତିନିଭାଇ ଡକାଇ ରାମ ଆଜ୍ଞାଦେଲେ
ତିନିଭଗ୍ନୀ ମାତା ଘେନି ଚଳ ଯା ରଥରେ ।
ଶୁଣିଣ ତିନିଭାଇ ବେଗ୍ରରେ ଚଳିଗଲେ
ଯେ ଯାହାର ମନ୍ଦିରେ ଯାଇଣ ଜଣାଇଲେ ।
ଊର୍ମିଳାଙ୍କ ଆଗରେ କହିଲେ ସଉମିତ୍ରୀ
ଜାହ୍ନବୀ ଆଗରେ କହିଲେ ଦାଶରଥୀ ।
ଶୁଣି କରି ଊର୍ମିଳା ଦାସୀଙ୍କି ଅଣାଇଲା
ସକଳ ବୃତ୍ତାନ୍ତ ତାହାଙ୍କୁ କହିଲା ।
ବେଶ ଭୂଷଣ ଯେ ହେଲେ ଦାସୀଗଣ
ଊର୍ମିଳା ବେଶ ହେଲେ ପାର୍ବତୀ ପ୍ରାୟେପୁଣ ।
ମାତାଗଣମାନଙ୍କୁ କହିଲେ ଲକ୍ଷ୍ମଣ
ଗଙ୍ଗାସ୍ନାନ କରିଯିବା କହିଲେ ରାମରାଣ ।
ଶୁଣିଣ ଜନନୀମାନେ ହରଷ ହୋଇଲେ
ବେଶଭୂଷଣ ହୋଇଣ ପତନୀ ପିନ୍ଧିଲେ ।
ଲକ୍ଷ୍ମଣ ବେଶ ହେଲେ ଈଶ୍ୱରଙ୍କ ପ୍ରାୟେ
ତାଳଧ୍ୱଜ ରଥ ସିଂହଦ୍ୱାରେ ରହେ ।
ସେ ରତରେ ମାତାଗଣ ପ୍ରଥମେ ବସିଲେ
ଦ୍ୱିତୀୟରେ ଦାସୀଗଣ ରଥରେ ବସିଲେ ।
ତୃତୀୟରେ ଲକ୍ଷ୍ମଣ ଊର୍ମିଳା ହସ୍ତ ଧରି
ରଥର ଉପରେ ବସିଲେ ଯାଇଁକରି ।
ତାଳଧ୍ୱଜ ରଥ ଯେ ସାରଥି ବାହିନେଲା
ଊର୍ମିଳାକୁ କୋଳେଧରି ଲକ୍ଷ୍ମଣ ବସେଦ୍ୱରା ।
ପ୍ରୟାଗ ତୀର୍ଥରେ ହେଲେ ପରବେଶ
ଜାହ୍ନବୀ ଦେଖିଣ ମନରେ ହରଷ ।
ଏଥୁ ଅନନ୍ତରେ ଶୁଣ ଶାକମ୍ଭରୀ
ଶ୍ରୀରାମ ମାତାମାନେ ରଥରେ ବିଜେ କରି ।
ଜାନକୀ ବେଶ ହେଲେ କମଳା ସଦୃଶ
ରଜନୀରେ ଚନ୍ଦ୍ରମା ଯେମନ୍ତେ ପ୍ରକାଶ ।
ଦାସୀମାନେ ବେଶହେଲେ ଅପ୍ସରାଙ୍କ ତୁଲେ
ସୀତାଙ୍କୁ ଘେନିଣ ସେ ବିଜେ ରଥପରେ ।

ବାହାରିଲେ ଭରଥ ଶତୃଘ୍ନ ଏହିପରି
ବେଶଭୂଷା ହୋଇଣ ମାତାଙ୍କୁ ସଙ୍ଗେ ଧରି ।
ମାତାମାନେ ବଧୂମାନଙ୍କୁ ସଙ୍ଗେ ନେଲେ
କଣେଅର ଅସୁର ଦଳନ ରଥରେ ବସିଲେ ।
ଏଥୁ ଅନନ୍ତରେ ରାମଚନ୍ଦ୍ର ଭଲେ
ଯୁଥପତି ସେହ୍ନାପତି ମାନଙ୍କୁ ଅଣାଇଲେ ।
ସେହ୍ନାପତି ଯୁଥପତି ନାଗ ପରେ ବସି
ପ୍ରୟାଗ ତୀର୍ଥକୁ ସର୍ବେ ଚଳିଣ ଯାଆନ୍ତି ।
କଶ୍ୟପ, ବାମଦେବ, ବଶିଷ୍ଠ ତିନିଜଣ
ଶ୍ୱେତ ନାଗ ଉପରେ ଅମରୀ ଟଣାଇଣ ।
ସେ ନାଗ ଉପରେ ବସି ତିନିଜଣ ଚଳି
ପ୍ରୟାଗ ତୀର୍ଥକୁ ଗମନ ସେ କରି ।
ସମସ୍ତେ ଯିବାରୁ ଶ୍ରୀରାମ ଅନ୍ତଃପୁର
ସୀତା ହସ୍ତ ଧରିଣ ବିଜୟ ରଥପର ।
ସୀତାଙ୍କୁ କୋଳେ ଘେନିଣ ସିଂହାସନେ ବସି
ଆଗରେ ଦାସୀ ଉଭା ହୋଇଛନ୍ତି ।
ଆଲଟ ଚାମର ଢାଳନ୍ତି ବିଞ୍ଚଣୀ
ଚାରି ଛତୀ ଟେକି ଯେ ଧରିଛନ୍ତି ପୁଣି ।
ହୁଳହୁଳି ଶବଦ କରନ୍ତି ନିରନ୍ତର
ଆଗରେ ବୀରବାଦ୍ୟ ଶୁଭଇ ଚହଳ ।
ଉଠିଲା ରହୁବର ବାହିଲା ମାତଳି
ଗର୍ଜନର ବାଦରେ ଚମକେ ମେରୁଗିରି ।
ପ୍ରୟାଗ ତୀର୍ଥରେ ହେଲେ ପରବେଶ
ଦେଖିଲେ ଗଙ୍ଗାଯମୁନା ସରସ୍ୱତୀ ଯେ ବିଶେଷ ।
ଅନେକ ଲୋକ ଯେ ସେଠାବରେ ମେଳ
ଦେଖିଣ ହରଷ ଯେ ଦଶରଥ ବାଳ ।
ସେଦିନ ଗଙ୍ଗାକୂଳେ ସମସ୍ତେ ରହିଲେ
ଏଥୁ ଅନନ୍ତରେ ଶୁଣ ଦେବୀ ଭଲେ ।
ଚମ୍ପାବତୀ ଦେଶ ଲୋମପାଦ ରାୟେ
ଶତେ ରାଣୀ ଶତେ କୁମର ଘେନିଯାଏ ।
ଗଙ୍ଗା କୂଳରେ ଯାଇଁ ହେଲେ ପରବେଶ
ଦେଖିଲା ବିଜୟେ କରିଛନ୍ତି ରଘୁନାଥ ।
ରାଣୀହଂସ ଦେଖିଣ ଆନନ୍ଦ ହୋଇଲେ
ରଘୁନାଥ ଠାରେ ଦେଖା ଯାଇଁ ହେଲେ ।
ଉଠି ରଘୁନାଥ ମାନ୍ୟଧର୍ମ କଲେ
ଦେଖିକରି ସମସ୍ତେ ହରଷ ହୋଇଲେ ।

ରଜନୀରେ ସମସ୍ତେ ହେଲେ ଏକମେଳ
ବହୁତ ଦେଶରୁ ଆସିଥିଲେ ମହୀପାଳ ।
ରଜନୀ ଶେଷରେ ଗଙ୍ଗା କୂଳେ ମିଳି
ହୁଳହୁଳି ଶବଦରେ ଗଙ୍ଗା ଯେ ଉଛୁଳି ।
ସେ ସ୍ଥାନେ ଦାନ ପୁଣ୍ୟ ରଘୁନାଥ ଦେଲେ
ଦେବତା ବ୍ରାହ୍ମଣ ଯେ ଅନେକ ତୋଷିଲେ ।
ମାତାମାନେ ଦାନ ପୁଣ୍ୟ କଲେ ସେହିରୂପେ
ଭାଇମାନେ ଦାନ ପୁଣ୍ୟ କଲେ ଯେ ସଂକ୍ଷେପେ ।
ଜାନକୀ ତିନିଭଗ୍ନୀ ଘେନିଣ ଦାନ କଲେ
ମନର ସନ୍ତୋଷ ଧନ ମାନ ବିଳୋହିଲେ ।
ଗଂଗାରେ ପଶି ସର୍ବେ କଲେ ଯେ ସ୍ନାହାନ
ଶୀତଳ ମଣୋହି ଗଂଗାରେ କଲେ ସର୍ବଜନ ।
ଗଂଗାକୂଳୁଁ ସର୍ବ ଜନେ ଯେ ଯାହାପୁରଗଲେ
ଜାନକୀ ଘେନି ରାମ ରଥରେ ବିଜେକଲେ ।
ତିନିଭାଇ ଯେ ଯାହା ରଥପରେ ବସି
ଅଯୋଧ୍ୟା ନଗ୍ରକୁ ଅଇଲେ ରଘୁଶିଷି ।
ଛତିଶ ପାଟକ ଯେ ହଟାରୀ ବଜାରୀ
ଯେ ଯାହା ଅନୁରୂପେ ଅଇଲେ ସର୍ବେ ଚଳି ।
ଅଯୋଧ୍ୟା କଟକରେ ହେଲେ ପରବେଶ
ଜାନକୀ ଘେନି ରାମ ଅନ୍ତଃପୁରେ ପ୍ରବେଶ ।
ତିନିଭାଇ ଯେ ଯାହା ନବରେ ମିଳିଲେ
ମାତାଗଣ ଭିତର ପୁରକୁ ଯେ ଗଲେ
ଦେବତା ବ୍ରାହ୍ମଣ ଋଷିମାନେ ପୁଣ
ଯେ ଯାହା ସ୍ଥାନରେ ମିଳିଲେ ଯାଇଣ ।
ଜାହ୍ନବୀରେ ସ୍ନାହାନ ସାରିଣ ରାମ ରାଣ
ମନରେ ହରଷ ହୋଇଲେ ଆପଣ ।
ବଶିଷ୍ଠ କହିବାରୁ ରଥେକ ତିଆରିଲେ
ଶୁକଳ ଅଷ୍ଟମୀ ଦିନ ଯାତ୍ରା ଭିଆଇଲେ ।
ସେ ରଥରେ ପାଞ୍ଚଦିନ ବିରଞ୍ଚି ନାରାୟଣ
ବସାଇ ଘୋଷଯାତ୍ରା କଲେକ ଭିଆଣ ।
ଅଶୋକ ନାମେ କୁଣ୍ଡରେ ଅଶୋକକଢ଼ୀଖାଇ
ଅନେକ ସମ୍ଭର୍ବରେ ଯାତ୍ରାକୁ ଭିଆଇ ।
ନବମୀ ଦିନ ଯେ ଅଟେ ସ୍ୱନକ୍ଷତ୍ର
ଚାରିଭାଇ ସେଦିନ ହେଲେ ଅଭିଷେକ ।
ମାତାମାନେ ବନ୍ଦାପନା କଲେ ସେଦିନ ପୁଣ
ପାଞ୍ଚଦିନେ ଘୋଷଯାତ୍ରା ହୋଇଲା ସମ୍ପୂର୍ଣ୍ଣ ।

ମେଷମାସ ଅନ୍ଧାର ପକ୍ଷ ପୁଣ ଗଲା
ଶୁକଳ ପକ୍ଷ ତୃତୀୟା ଆସି ପୁଣ ହେଲା ।
ସେଦିନ ଚନ୍ଦନ ଯାତ୍ରା କଲେକ ଭିଆଣ
ଶଉଚ ପୁଷ୍କରିଣୀରେ ଚପ ବାନ୍ଧି ପୁଣ ।
ପାଞ୍ଚ ମହାଦେବ ଯେ ବିରଞ୍ଚି ନାରାୟଣ
ଏକ ଚପରେ ବସି କରନ୍ତି ଭ୍ରମଣ ।
ଏକଚପେ ଶ୍ରୀରାମ ଜାନକୀ ସଙ୍ଗେ ଘେନି
ଅଗୁର ଚନ୍ଦନ ସର୍ବାଙ୍ଗେ ବୋଳି ପୁଣି ।
ତିନିଭାଇ ତିନି ଯେ ଚପରେ ଲୀଳାକଲେ
ଆପଣାର ଘରଣୀମାନଙ୍କ ସଙ୍ଗତରେ ।
ଏମନ୍ତ ଏକବିଂଶ ଦିନ ବହିଗଲା
ତେବେ ସେ ଚନ୍ଦନ ଉତ୍ସବ ସରିଲା ।
ଋଷଭ ମାସରେ ଶୁକଳ ପକ୍ଷେ ପୁଣ
ଚମ୍ପକ ଦ୍ୱାଦଶୀ ହୋଇଲା ଆସି ପୁଣ ।
ସେଦିନ ଘୋଷଯାତ୍ରା କଲେକ ଭିଆଣ
ନନ୍ଦିଘୋଷ ସଦୃଶ୍ୟରେ ରଥକଲେ ପୁଣ ।
ସେରଥେ ବିରଞ୍ଚି ନାରାୟଣ ବିଜେକଲେ
ଛାୟାକୁ ବିଭାହୋଇ ଯାତ୍ରାହିଁ ସାରିଲେ ।
ମିଥୁନ ମାସରେ ଶୟନ ଯାତ୍ରା କଲେ
ଛାୟା ନାରାୟଣଙ୍କୁ ଏକାନ୍ତ କରାଇଲେ ।
ଶ୍ରାବଣ ମାସରେ ହେଲା ଚିତାଲାଗି
ନବାନ୍ନ ସେଦିନ ରାମଚନ୍ଦ୍ର ଭୁଞ୍ଜି ।
ଭାଦ୍ରବ ମାସେ ଇନ୍ଦ୍ର ଉତ୍ସବ ଯାତ୍ରାକଲେ
ଶୁକଳ ନାଗ ପରେ ନଗ୍ର ବିହରିଲେ ।
ଆଶ୍ୱିନ ମାସରେ କଲେ ଦେବୀ ଯାତ
ସତର ଦିନଯାଏ ଦେବୀ ହୃଷ୍ଟଚିତ୍ତ ।
ବୋଦା ଛାଗଳ ଯେ ପୋଡୁଅମାନ ଦେଇ
ଦେବୀମାନଙ୍କୁ ସନ୍ତୋଷ କରାଇଲେ ତହିଁ ।
ଶୁଣିଣ ଗଉରୀ ଯେ ପରମ ତୋଷ ହେଲା
ସପତଣୀଙ୍କର କଥା କର୍ଣ୍ଣରେ ଶୁଣିଲା ।
ବୋଇଲେ ତୁଳମାସେ ପୁଣ୍ୟ ମାସ ପୁଣ
ସେ ମାସରେ ଯେଉଁଯାତ୍ରା କଲେ ରାମରାଣ ।
ଈଶ୍ୱର ବୋଇଲେ ସେମାସେ ରାଇଦାମୋଦର
ବଶିଷ୍ଠ କହିବାରୁ ବିଚାରି ଚପଧର ।
ସୁବର୍ଣ୍ଣରେ ଚଉରା ନବରେ ଭିଆଇଲେ
ଜନନୀମାନଙ୍କୁ ସେକଥା ମଣାଇଁ କହିଲେ ।

ତୁଳସୀ ବୃକ୍ଷ ସେଥିରେ ରୋପିଲେ ଦାଶରଥି
ବୃନ୍ଦାବତୀ ସଙ୍ଗେ ମେଳ ଦାମୋଦର ମୂର୍ତ୍ତି ।
ଜନନୀମାନେ ସେ ବୃକ୍ଷେ ଆରାଧନା କଲେ
ଏକବ୍ରତୀ ହୋଇ ମାସେ ପର୍ଯ୍ୟନ୍ତେ ପୂଜିଲେ ।
ଆଦ୍ୟ ମାର୍ଗଶିରେ ଯେ ପ୍ରଥମା ଅଷ୍ଟମୀ
ସେଦିନ ବନ୍ଦାପନା ହେଲେ ଜାନକୀଙ୍କୁ ଘେନି ।
ଧନୁମାସେ ପୌଷ ପୂର୍ଣ୍ଣମୀର ଦିନ
ସୀତାଙ୍କୁ ଘେନି ରାମ ଅଭିଷେକ ପୁଣ ।
ମକର ମାସରେ ଯେ ବସନ୍ତ ପଞ୍ଚମୀ
ଦକ୍ଷିଣ ପବନ ସେହି ଦିନ ଜନ୍ମ ପୁଣି ।
ବସନ୍ତ ଉପୁଜିବାରୁ କରେ ରାମଲୀଳା
ଫୁଲ ଦେଉଳ ଭିତରେ ରାମ ଦିବ୍ୟନୀଳାକଲା ।
ସତାଇଶ ଦିନ ପରିଯନ୍ତେ ପୁଣ
ଜାନକୀ ଘେନି ସଙ୍ଗେ ହରଷ ରାମରାଣ ।
କୁମ୍ଭମାସେ ଅନ୍ଧାର ଯେ ଚତୁର୍ଦ୍ଦଶୀ ଦିନ
ପଞ୍ଚାନନ ଛାମୁରେ ଚନ୍ଦ୍ର ଦୀପ ଜାଣ ।
ହର ଗଉରୀ ଭେଟ ସେଦିନ କରାଇଲେ
ରଜନୀରେ ଉଜାଗର ହୋଇଣ ରହିଲେ ।
ଶୁକଳ ପକ୍ଷ ଦଶମୀଠାରୁ ରାମ ପୁଣ
ଚଚେରୀ ବୁଲାଇଲେ ବିରଞ୍ଚି ନାରାୟଣ ।
ସଂଗେ ଚନ୍ଦ୍ର ଶିଖା ଛାୟା ଦୁର୍ଗା ଜାଣ
ଏମନ୍ତେ ଚାରି ମୂର୍ତ୍ତି ନିର୍ମାଣ କଲେ ପୁଣ ।
ସରନ୍ତିଦିନ ଦୋଳ ଉତ୍ସବ ଯାତ୍ରା କଲେ
ଦୋଳ ମଣ୍ଡପରେ ଦୋଳି ପହଞ୍ଚାଇଲେ ।
ବାରମାସେ ତେରଯାତ କଲେ ଯେ ସମ୍ପୂର୍ଣ୍ଣ
ଏମନ୍ତେ ଯାତ୍ରା ଭିଆଣ କଲେ ରାମରାଣ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ସେକଥା ଶୁଣିବାକୁ ମୋର ଶ୍ରଦ୍ଧା ହେଲା ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ପ୍ରାଣସହୀ
ଦୁଇ ସହସ୍ର ବର୍ଷ ଏଥିରେ ଗଲା ବହି ।
ଏକଦିନେ ଶ୍ରୀରାମ ଯେ ଶୟନ ପୁଣ କଲେ
ସେଦିନ ଜାନକୀ ନଟବର ବେଶ ହେଲେ ।
ଶ୍ରୀରାମଚନ୍ଦ୍ର ଦେଖିଣ ହରଷ ହୋଇଲେ
ସେଦିନ ଜାନକୀ ସଂଗେ ପଶାଖେଳ କଲେ
ପାଞ୍ଚଥର ସେଦିନ ହାରିଲେ ରାମରାଣ
ମନ ସନ୍ତୋଷରେ କଲେ ରତିଲୀଳା ଜାଣ ।

ନାନା ବିନୋଦରେ କଲେ ରତିରଂଗ
ହରଷରେ ବେନିଜନ ହୋଇଲେ ପ୍ରମୋଦ ।
ଜାନକୀ ହରଷରେ ରାମ ଆଗେ କହି
ବାଞ୍ଛାବଟ ମୂଳେ ଯେ ମାନସ କଲି ମୁହିଁ ।
ସେ ବଟର ନାମ ପୁଣ ବାଞ୍ଛା ସିଦ୍ଧ ଜାଣ
ମୋର ବାଞ୍ଛା କିମ୍ପା ନ ଭେଟିଲା ପୁଣ ।
ଶ୍ରୀରାମ ବୋଇଲେ କେଉଁ କଥା ମନାସିଲ
ସେକଥା କିମ୍ପାଇଁ ଯେ ନୋହିଲା ତୁମ୍ଭର ।
ଜାନକୀ ବୋଇଲେ ମୁଁ ବାଞ୍ଛାବଟ ଗଳି
ତଳରେ ଛିଡ଼ା ହୋଇ ମାନସ ମୁଁ ଯେ କଲି ।
ବୋଇଲି ତିନି ଦିଅର ମୋର ହେବେରାଜା
ମୋହର ସ୍ୱାମୀ ପରାୟେ ପାଇବେ ପାଦପୂଜା ।
ଏହି ବାଞ୍ଛା ମୋହର ନୋହିଲା ଏବେ ପୁଣ
ମୋତ ସେବାକରି ଯେ ରହିଲେ ତିନିଜଣ ।
ଶୁଣି ଶ୍ରୀରାମ କହିଲେ ଜାନକୀଙ୍କି ବାଣୀ
ଅଳପଦିନେ ସେକଥା ହେବ ଗୋସାମଣି ।
ଏମନ୍ତେ ସର୍ବକଥା ହେଲେ ବେନିଜନ
ରଜୀନ ଶେଷ ହେଲା ଉଠିଲେ ରାମରାଣ ।
ସୁବାସିତ ନୀରେ ମୁଖ ପଖାଳିଲେ
ମର୍ଦ୍ଦନ ମାଜଣା ଜଗତି ପରେ ହେଲେ ।
ଗଙ୍ଗାଜଳରେ ରାମ କଲେକ ସ୍ନାହାନ
ଝୀନ ବସନରେ ଅଙ୍ଗ ପୋଛିଲେ ଦାସୀଗଣ ।
ଅମଳାଣ ବସନ ଆଣି ପିନ୍ଧାଇଲେ
ଦେବାର୍ଚ୍ଚନ ଘରକୁ ମଣାଇ ଘେନିଗଲେ ।
ଛତିଶ ନିଯୋଗେ ଖଟିଲେ ଆସି ପୁଣ
ଦାସୀମାନେ ଅନ୍ତଃପୁରେ ଚଳିଲେ ବହନ ।
ଦେବାର୍ଚ୍ଚନ ସାରିଣ ରାମଚନ୍ଦ୍ର ରାୟେ
ବାହାର ଜଗତିରେ ବିଜେ ଯାଇଁ ହୋଏ ।
ଜାଣିଣ ପାତ୍ରମନ୍ତ୍ରୀ ଆସିଣ ମିଳିଲେ
ସେନା ଯୂଥପତି ଓଳଗି ଆସି କଲେ ।
ବଶିଷ୍ଠ, ବାମଦେବ, କଶ୍ୟପ ଆସି ମିଳି
ଦେଖି କରି ଶ୍ରୀରାମ ଯେ ନମସ୍କାର କରି ।
ଚତୁରଙ୍ଗ ବଳ ମିଳିଲେ ଆସି ପୁଣ
ସରଦାରମାନେ ଭେଟେ ନାରାୟଣ ।
ଗହଳରେ ସଭା ସେଦିନ ବଡ଼ ହେଲା
ରାଜ୍ୟର ଭଲମନ୍ଦ ଶ୍ରୀରାମ ବୁଝେ ପରା ।

ଏଥୁ ଅନନ୍ତରେ ଶୁଣ ଭଗବତୀ
ବିଶ୍ୱାମିତ୍ର ମୁନି ତପରେ ବସିଛନ୍ତି ।
ଜାଣିଲେ ଯୋଗବଳେ ଶ୍ରୀରାମର ବଳ
ବିଚାରିଲେ ତିନିପୁର ଦୁଷ୍ଟହେଲେ ସ୍ଥିର ।
ଏମନ୍ତ ବିଚାରି ମୁନି ଚଳିଲେକ ବେଗ
ତକ୍ଷଣେ ମିଳିଲେ ମୁନି ବଶିଷ୍ଠଙ୍କ ଆଗ ।
ଦୁଇ ମୁନି ବସିଣ ବିଚାର ସେ କଲେ
ଜମ୍ବୁଦ୍ୱୀପ ଭିତରେ ଅସୁର ରହିଲେ ।
ବିଶ୍ୱାମିତ୍ର କହିକରି ନିଜପୁର ଗଲେ
ଯିବାବେଳେ ବଶିଷ୍ଠଙ୍କୁ ଗୁପତେ କହିଲେ ।
ବୋଇଲେ ଶ୍ରୀରାମଙ୍କୁ ଦେବଟି ଚେତାଇ
ଭରଥ, ଲକ୍ଷ୍ମଣ, ଶତ୍ରୁଘ୍ନ ଯେମନ୍ତେ ରାଜାହୋଇ
ଛଡ ଅସୁରଙ୍କୁ ମାରନ୍ତି ଯେମନ୍ତେ ପୁଣ
ଜମ୍ବୁଦ୍ୱୀପ ସମ୍ଭାଳ ହୋଏ ତେବେ ଜାଣ ।
ସେ କଥାକୁ ବଶିଷ୍ଠ ରାମଙ୍କୁ ନ କହିଲେ
ଶ୍ରୀରାମ ଅପସନ୍ଦ କରିବେ ବୋଇଲେ ।
ବୋଲିବେ ବଶିଷ୍ଠ ମୋହର ସଙ୍ଗେ ପୁଣ
କେମନ୍ତେ ଜାଣିଲେ ଦିଗ ନକରି ଭ୍ରମଣ ।
ଏମନ୍ତ ବିଚାରି ଯେ ବଶିଷ୍ଠ ନ କହି
ଏଥିର ସକାଶେ ବେନିମାସ ଗଲା ବହି ।
ଅସୁରଙ୍କର ପ୍ରବଳ ହେଲା ବଡ଼ ପୁଣ
ଋଷିଙ୍କୁ ଦିନରେ ସେ ଖାଇଲେ ପୋଡ଼ିଣ ।
ରାଜ୍ୟ ଉଜାଡ଼ିଣ ଯେ ପରଜା ନାଶ କଲେ
ଦେଖିଗୌତମ ସର୍ବଋଷି ଘେନିଅଯୋଧ୍ୟାକୁ ଗଲେ ।
ଶ୍ରୀରାମ ସିଂହଦ୍ୱାରେ ହେଲେକ ପ୍ରବେଶ
ପଡ଼ିହାରୀ ଜଣାଇଲା ଶ୍ରୀରାମଙ୍କ ପାଶ ।
ଶୁଣିକରି ଶ୍ରୀରାମ ଉଠିଣ ବିଜେ କଲେ
ସିଂହଦ୍ୱାରେ ଯାଇଣ ସର୍ବ ଋଷିଙ୍କି ଦେଖିଲେ ।
ନମସ୍କାର କରିଣ ଋଷିଙ୍କି ଘେନିଗଲେ
ସିଂହାସନେ ବସାଇଣ ପୂଜା ବିଧି କଲେ ।
ପୂଜା ବିଧି ପାଇ ସର୍ବେ ସୁସ୍ଥହୋଇ ବସି
ବଶିଷ୍ଠ ପଚାରିଲେ ଶୁଣ ହେ ବ୍ରହ୍ମଋଷି ।
କେଉଁ କାର୍ଯ୍ୟେ ଅଇଲେ ଅହହ୍ଲ ରମଣଟି
ଶ୍ରୀରାମ ପଚାରନ୍ତି ସମସ୍ତ କୁଶଳଟି ।
କ୍ଷମ ହୋଇ ମିଳଇ ନା ଅରଣ୍ୟେ ଫଳମୂଳ
ଋଷିମାନେ କହନ୍ତି ତୁମ୍ଭ ପ୍ରସାଦେ କୁଶଳ ।

ଅରଣ୍ୟରେ ତପ ଆମ୍ଭେ କରୁଁ ଅପ୍ରମାଦେ
ନାନା ସୁଖରେ ଅଛୁଁ ତୁମ୍ଭର ପ୍ରସାଦେ ।
ଏତେକାଳେ ଦେଖି ଭୟ ଆମ୍ଭଙ୍କୁ ହୋଇଲା
ଏହା ଶୁଣି କୋପକଲେ ଦଶରଥ ବଳା ।
ଭୋ ମୁନି ହେ ଆଉବେଳେ କହ ମୋରଆଗେ
ଆବର କି ଦଇତ୍ୟ ଅଛନ୍ତି ମହୀଭାଗେ ।
ଏହା ଶୁଣି ଋଷିମାନେ କହୁଛନ୍ତି ପୁଣ
ତୁମ୍ଭଙ୍କୁ ଭରସା ଆମ୍ଭର ଅଟେ ହେ ରାମରାଣ ।
ଚଉଦ ଭୁବନ ତିନିପୁର ପୁଣ
ସପତ ସାଗର ସପତ ଦ୍ୱୀପ ଜାଣ ।
ଏଥିରୁ ଦୁଷ୍ଟ ଅସୁରଙ୍କୁ ନାଶ କଲେ
ଜମ୍ବୁ ଦ୍ୱୀପ ମଣ୍ଡଳରେ ଅସୁର ରଖିଲେ ।
ଅସୁର ପ୍ରବଳ କଲେ ଯେ ଆମ୍ଭଙ୍କୁ
ଏଥିକି କହୁଛି ଶ୍ରୀରାମଚନ୍ଦ୍ରଙ୍କୁ ।
ଶ୍ରୀରାମବୋଇଲେ ଆଉ କେଉଁଠାରେ ଛନ୍ତିଦୈତ
ତାହା ମୋତେ କହ ହେ ଋଷିମାନେ ତଥ୍ୟ ।
ଋଷିମାନେ ବୋଇଲେ ପଶ୍ଚିମ ସିନ୍ଧୁତଟେ
ମଧୁବନ ନାମେ ଦେଶ ଯମୁନା ନିକଟେ ।
ହିରଣ୍ୟ କଶ୍ୟପର ତନୟ ମଧୁରାୟେ
ପ୍ରହଲାଦ ସାବତ ଜନନୀର ସେ ତନୟେ ।
ଈଶ୍ୱରଙ୍କୁ ସେବାକରି ପାଇଲେ ସେ ଶୂଳ
ପ୍ରସନ୍ନ ହୋଇଣ ବର ଦେଲେ ତିନି ଡୋଳ ।
ବୋଇଲେ ଏ ଶସ୍ତ୍ର ପ୍ରାପତ ହେଉ ତୋତେ
ଅନେକ କ୍ଲେଶରେତୁ ଯେ ସେବାକଲୁ ମୋତେ ।
ଏ ଶୂଳ ପ୍ରସାଦେ ତୁ ଜିଣିବୁ ତିନିପୁର
ଶୂଳଥିଲେ ତୋତେ ଯୁଦ୍ଧ ହାରିବେ ସୁରେଶ୍ୱର ।
ଦୁଇ ପୁରୁଷ ଯାଏ ଏ ଥିବ ତୁମ୍ଭ ତହିଁ
ପୁତ୍ର ତୋର ପ୍ରତାପୀ ହୋଇବ ଶୂଳ ବହି ।
ଶୂଳ କରେ ନଥିଲେ ତୁ ନ କରିବୁ ଯୁଦ୍ଧ
ଶୂଳ ନ ଥିଲେ କରେ ହେବୁ ତୁ ପ୍ରାଣେବଧ ।
ଏତେ ବୋଲି ଅନ୍ତର୍ଦ୍ଧାନ ସଦାଶିବ ହେଲେ
ଶୂଳ ଘେନି ମଧୁରାଜା ମଥୁରା ମିଳିଲେ ।
ଦେବାର୍ଚ୍ଚନର ନବରେ ରଖିଲା ଶୂଳ ନେଇ
ପୂଜାକଲା ନନା ଭୋଗରାଗ କରାଇ ।
ଶିବ ଶୂଳ ପ୍ରସାଦେ ସେ ଜିଣିଲା ସର୍ବରାଜା
ରିପୁମାନେ ପାଦେ ତାର କଲେ ସର୍ବେ ପୂଜା ।

ରାବଣ ମାଉସୀ ଝିଅ ନାମ କୁମ୍ଭଲକ୍ଷି
ମଧୁଦୈତ୍ୟେ ବିଭାକଲେ ବଳବନ୍ତ ଦେଖି ।
କାଳେଣ ପୁଣ ତାର ହେଲା ପୁତ୍ରଜାତ
ପ୍ରସନ୍ନ ହୋଇଣ ବରଦେଲେ ତ୍ରୟନେତ୍ର ।
ମହାଦେବ ଆଜ୍ଞାପାଇ ବହଇ ସେ ଶୂଳ
ଶୂଳ ପ୍ରସାଦେ ସେ ଯେ ସାଧିଲା କ୍ଷତ୍ରୀ କୁଳ ।
ଅରଣ୍ୟରେ ତପୀଜନମାନଙ୍କୁ ମାରିନେଇ
ଘୃତ ଯୋଗ କରି ତା ରନ୍ଧନ କରି ଖାଇ ।
ପିତା ତିଆରିଲେ ତାର ବଚନ ନ କଲା
ସାଧୁ ଲୋକମାନଙ୍କୁ ବହୁତ କ୍ଳେଶ ଦେଲା ।
ଦିନକୁ ଦିନ ତାର ବଢିଲା ଦୁଷ୍ଟପଣ
ପିତାଙ୍କୁ ନ ଦେଇ ଶୂଳ ବହିଲା ଆପଣ ।
ପୃଥ୍ୱୀ ରାଜାମାନଙ୍କୁ ଜିଣିଲା ସେହୁ ଧରି
ଆବରହିଁ ମଉଳା ବିଶେଷେ ଦଶଗିରି ।
ତେଣୁ କରି ପ୍ରତାପ ଯେ ବଢ଼ିଲା ତାହାର
ଯେଉଁ ଶୂଳ ଦେଇଛନ୍ତି ପାର୍ବତୀର ବର ।
ପୁତ୍ର ଦୁଷ୍ଟପୁଣ ଦେଖି ବିଚ୍ଚରଇ ବାପ
ଏ ପୁତ୍ର ଜାତ ହୋଇଲା ମୋହର ପୂର୍ବପାପ ।
ବିଚ୍ଚରି କଲା ଏଥିରେ କିବା କାର୍ଯ୍ୟନାହିଁ
ଅଭିଷେକ କଲା ପିତା ତାକୁ ଶୂଳ ଦେଇ ।
ଏତେ ବୋଲି ପୁତ୍ରକୁ ତା ରାଜ୍ୟ ସମର୍ପିଲା
ଆପଣେ ସାଗର ମଧ୍ୟେ ଯାଇଣ ପଶିଲା ।
ଏଥୁ ଅନନ୍ତରେ ଯେ ରାବଣ ରାଜା ହୋଇ
ପାର୍ଥିବ ଦେହ ଛାଡ଼ି ବରୁଣ ପୁର ଯାଇ ।
ଶୂଳ କରେ ଧରି ରାଜା ସାଧିଲା ଜଗତ
ମାନଧାତା ନୃପତିକି କଲା ପ୍ରାଣେ ହତ ।
ଏହା ଶୁଣି ରାମଚନ୍ଦ୍ର କ୍ରୋଧରେ ପ୍ରଜ୍ୱଳି
ଚ୍ଚହିଁଲେ ଶତୃଘନ ଚ୍ଚମର ଧରିଢ଼ାଳି ।
ଆଜ୍ଞା ଦେଲେ ତାହାଛାଡ଼ି ପାଶକୁମୋରଆସ
ଏହିକ୍ଷଣି ଯାଅ ବାବୁ ମଧୁବନ ଦେଶ ।
ସୁମନ୍ତକୁ ବୋଇଲେ ଅଭିଷେକ ବିଧି ଆଣ
ରାଜ ଅଭିଷେକରେ ଯେତେକ ବିଧାନ ।
ଶୁଣିଣ ମନ୍ତ୍ରୀବର ଆଣିଲା ସର୍ବ ବିଧି
ରାମଚନ୍ଦ୍ର ଆଜ୍ଞାରେ ବଶିଷ୍ଠ ତପୋନିଧି ।
ଋଷିମାନେ ସମସ୍ତେ ବେଦଧ୍ୱନି କଲେ
ଶତୃଘନ ମସ୍ତକରେ ଆଣି ସମର୍ପିଲେ ।

ଶ୍ରୀରାମ ଆଜ୍ଞା ଦେଲେ ମଧୁବନ
ହସ୍ତିନାରେ ରାଜାହୁଅ
ଅନୁକୂଳ କରି ବାକୁ ଏହିକ୍ଷଣି ଯାଅ ।
ଶିରେ ଶାଢୀବାନ୍ଧିବତାଙ୍କ ହସ୍ତରେଖଣ୍ଡାଦେଲେ
ସ୍ୱର୍ଗପୁର ଦେବତା ଏ କୁସୁମ ବରଷିଲେ ।
ମୁନିମାନଙ୍କୁ ରାମ ଯେ କହନ୍ତି ଅନାଇଁ
ସୁଖେ ଅରଣ୍ୟରେ ତୁମ୍ଭେ ତପକର ଯାଇ ।
ଶୁଣି ମୁନିମାନେ ଆନନ୍ଦ ହୋଇଲେ
ଏବେ ଆମ୍ଭ ଶତ୍ରୁନାଶ ହେଲା ବିଚାରିଲେ ।
ଦେଖି ମୁନିମାନେ ହେଲେ ମନରେ ହରଷ
ଶତ୍ରୁଘନଙ୍କୁ ରାମ ଯେ ହକାରିଲେ ପାଶ ।
ଭାଇମାନେ ସମସ୍ତେ ସଭାରେ ଅଛନ୍ତି
ବଶିଷ୍ଠ ଆଦି କରି ସକଳ ପାତ୍ର ମନ୍ତ୍ରୀ ।
ରାମଚନ୍ଦ୍ର କହନ୍ତି ହେ ଶତ୍ରୁଘନ ଶୁଣ
ତିନିଲୋକରେ ପ୍ରତାପୀ ଅଟେ ସେ ଲବଣ ।
ରୁଦ୍ର ଶୂଳ ପ୍ରସାଦେ ସମସ୍ତ ଜିଣିଲା
ଜଗତ ଯାକ ତିରଣ ପରାୟେ ମଣିଲା ।
ଆମ୍ଭର ଉପର ବଂଶେ ପ୍ରତାପୀ ନୃପତି
ମାନଧାତା ନାମରେ ବଡ଼ାଇ ଚକ୍ରବର୍ତ୍ତୀ ।
ଏ ସପତ ଦ୍ୱୀପରେ ଅଟନ୍ତି ନୃପବର
ତାଙ୍କୁ ପ୍ରାଣେ ସମରେ ହେଁ ମାଇଲା ଅସୁର ।
ତେତେ ବଡ଼ ନୃପତି ହୋଇଲ ପ୍ରାଣେ ନାଶ
ସାମାନ୍ୟ ନୁହଇ ରଣେ ମଧୁଦୈତ୍ୟଶିଷ୍ୟ ।
ମାନଧାତା ଆମ୍ଭର କୁଳରେ ଅଧିକାରୀ
ତାହାଙ୍କର ଛଳରେ ଦଇତ୍ୟ ଆସି ମାରି ।
ଶୂଳକରେ ନ ଥିବାର ସମୟ ଜଗିବ
ତେବେ ତାହା ସଙ୍ଗତରେ ଯୁଦ୍ଧ ଆରମ୍ଭିବ ।
ଯାଅ ତୋତେ ସୁକଲ୍ୟାଣ ହେଉ ସଉମିତ୍ରୀ
ରଣେ ମାରି ଆସ ତୁ ଅସୁର କୁଳକ୍ଷତ୍ରୀ ।
ଦୁଇ ଲକ୍ଷ ଅଶ୍ୱ ନିଅ ଚାରି ସସ୍ର ଯାନ
ଦଶ ଲକ୍ଷ ସଙ୍ଗେ ନିଅ ପଦାତି ସଇନ୍ୟ ।
ଆବର ସୁଷେଣ ହନୁମନ୍ତଙ୍କୁ ସଙ୍ଗେ ନିଅ
ଯେମନ୍ତେ ମରଇ ସେ ମଧୁଦୈତ୍ୟ ପୁଅ ।
ଏହାଶୁଣି ଶତ୍ରୁଘନ କଲେ ନମସ୍କାର
ସେଠାରୁ ଚଳିଗଲେ ସେ ଭିତର ନବର ।
ସୀତାଙ୍କ ପାଶରେ ଯାଇ ପ୍ରବେଶ ହୋଇଲେ
ଖଣ୍ଡେଦୂରୁ ଦେଖିସେ ପାୟେ ପଡ଼ିଶୋଇଲେ

ସୀତା ବୋଇଲେ ବାବୁରେ ଚିରଜୀବୀ ହୁଅ
ମଧୁଦୈତ୍ୟ ଜିଣିଣ ହସ୍ତିନା ରାଜା ହୁଅ ।
ଏହା ଶୁଣି ଶତ୍ରୁଘନ ଚଳିଲା ସତ୍ୱର
ଶୁଭ ଯୋଗେ ବାହାର ହେଲେ ବୀରବର ।
ରଥପରେ ଯାଇଣ ସେହି ବିଜେକଲେ
ସୁଷେଣ ହନୁମନ୍ତଙ୍କୁ ସଙ୍ଗତରେ ନେଲେ ।
ମାହେନ୍ଦ୍ର ସମୟରେ ସେଠାରୁ ଚଳିଗଲେ
ସୈନ୍ୟ ସାମନ୍ତ ସର୍ବେ ଯାନରେ ଚଳିଲେ ।
ଭରତ ଲକ୍ଷ୍ମଣ ବେନି ଛାଡ଼ିଣ ଆସନ୍ତି
ସଙ୍ଗତରେ ଘେନିଣ ସକଳ ପାତ୍ରମନ୍ତ୍ରୀ ।
ସୈନ୍ୟ ସଙ୍ଗତରେ ଘେନି ଶତ୍ରୁଘନ ଗଲା
ଦୁଇଦିନେ ଗଙ୍ଗାକୂଳେ ପ୍ରବେଶ ହୋଇଲା ।
ପ୍ରଭାତ ସମୟେ ନଦୀ ପାରି ହୋଇଯାନ୍ତି
ବାଲମିକ ଆଶ୍ରମରେ ପ୍ରବେଶ ହୁଅନ୍ତି ।
ବିମାନୁ ଓହ୍ଲାଇ ଋଷି ଚରଣେ ପଡ଼ିଲେ
ଦେଖି ମୁନିବର ତାଙ୍କୁ ସୁକଲ୍ୟାଣ କଲେ ।
ମହାମୁନି ପଚାରନ୍ତି କୁଶଳ ବାରତା
କ୍ଷମ ହୋଇଛନ୍ତିଟିକି ରାମଚନ୍ଦ୍ର ସୀତା ।
ଭରତ ଲକ୍ଷ୍ମଣ ତୁମ୍ଭର ଯେତେ ଭାଇ
ଦ୍ୱନ୍ଦ୍ୱ ନ କରନ୍ତି ନା ସପତ୍ନୀ ଭାବ ବହି ।
ସୁମନ୍ତ୍ର ଆଦିକରି ସମସ୍ତ ମନ୍ତ୍ରୀ ଗଣ
ସେମାନେ ସମସ୍ତେ ବାବୁ ଛନ୍ତିନା ଶୁଭେଣ ।
ବଶିଷ୍ଠ ଯାବାଳି ବାମଦେବ ଯେ କଶ୍ୟପ
ଏହାଙ୍କର କୁଶଳ ସମସ୍ତ ଟିକି ବାପ ।
ରାଜ୍ୟ ଧନ ଭଣ୍ଡାର ସଇନ୍ୟ ଗଜ ସବୁ
ଏମାନେ କ୍ଷମ ହୋଇଣ ଛନ୍ତି ଟିକି ବାବୁ ।
ଶତ୍ରୁଘନ ବୋଇଲେ ମୁନି ତୁମ୍ଭର ପ୍ରସାଦେ
ଶ୍ରୀରାମଚନ୍ଦ୍ର ରାଜ୍ୟ କରନ୍ତି ଅପ୍ରମାଦେ ।
ଏତେକହି ଶତ୍ରୁଘନ ସେଠାରେ ରହିଲେ
ସୁରଭୀ ପ୍ରସାଦେ ମୁନି ସକଳ ସଞ୍ଚାଦେଲେ ।
ଏଥୁ ଅନନ୍ତରେ ପୁଣ ହୋଇଲା ପାକାନ୍ତି
ଯେ ବିଧି ବେଭାରେ ସେ ସାରିଲେ ସର୍ବନୀତି ।
ଶତ୍ରୁଘନ ନୃପତି ଟମକ ଦିଆଇଲା
ଚତୁରାଙ୍ଗ ବଳ ଘେନି ସଜ ସେ ହୋଇଲା ।
ବାଲମୀକି ମହାମୁନି ଅଇଲେ ରୁହାଇ
ତାହାଙ୍କୁ ମହାବୀର ବିନୟୀ ହୋଇ କହି ।

ଭୋ ମୁନିବର ହେ ମୋତେ କଲ୍ୟାଣ କରିବା
ଲବଣକୁ ମାରିବି ଏ ବର ମୋତେ ଦେବା ।
ମହାମୁନି ବୋଲନ୍ତି ତୋ ବାଞ୍ଛା ସିଦ୍ଧ ହେଉ
ମଧୁଦେଶ ହସ୍ତିନା ପ୍ରାପତ ତୋତେ ହେଉ ।
ଏତେକହି ମୁନିବର ସେଠାରୁ ବାହୁଡ଼ିଲେ
ଚତୁରାଙ୍ଗ ବଳ ଘେନି ଶତୃଘନ ଗଲେ ।
ବନ ନଦୀ ପର୍ବତ ବହୁତ ଜିଣି ଯାନ୍ତି
ବାଟେ ଯାଉ ଯାଉ ରାଜାମାନେ ଦେଖାହୋନ୍ତି ।
ନୃପତିମାନେ ରୁହାଇ ଯୋଗାଣ ମାନଦେଇ
ଶ୍ରୀରାମଚନ୍ଦ୍ର ଭାଇଙ୍କ ଆସନ୍ତି ଗୋଡାଇ ।
ଗିରି ଘୋର କନ୍ଦରେ ସେ ପଥ ବହିଗଲେ
ଅନେକ ଦୁର୍ଗମ ସ୍ଥାନ ମାନ ସେ ଦେଖିଲେ ।
ସାତଦିନ ଯାଇଣ ଯମୁନା କୂଳେ ହୋଇ
ପଥ କଢ଼ାଇଣ ଋଷିମାନେ ଘେନି ଯାଇ ।
ପ୍ରହରକ ସମ୍ପୂର୍ଣ୍ଣେ ସେଠାରେ ଯାଇଁ ପାଇ
ଆନନ୍ଦ ହେଲେ ସୈନ୍ୟ ଯମୁନା ଜଳଖାଇ ।
ବନ ପର୍ବତରେ ଯେତେ ଦୁଃଖ ପାଇ ଗଲେ
ଯମୁନା ଜଳ ପ୍ରସାଦେ ସେ ଶ୍ରମ ହରିଲେ ।
ମୁନିମାନେ ଦେଲେ ସର୍ବ ଥାଟକୁ ଯୋଗାଣ
ମଣୋହି ସାରିଲେ ତହିଁ ଶତୃଘନ ରାଣ ।
ସେଦିନକ ତହିଁ ରହି ବରଗିଲେ ଚର
ଋଷି ଦୁଇଜଣ ଗଲେ ସଙ୍ଗରେ ତାଙ୍କର ।
ରାତ୍ରକାଳେ ପ୍ରବେଶ ହୋଇଲେ ମଧୁଦେଶେ
କେହି ତାହା ନ ଜାଣନ୍ତି ଗଲେ ଯୋଗୀବେଶେ ।
ରାଜାର ସିଂହଦ୍ୱାର ସେ ମିଥ୍ୟାରେ ଗଲେନିଦ
ଏସନକ ସମୟରେ ହେଲା ରାତ୍ରଅର୍ଦ୍ଧ ।
ଘୋଷଣ ଦିଆଇଲା ଲବଣ ନରପତି
ସଜ ହୋଇଣ ଅଇଲେ ସକଳ ପଦାତି ।
ଦିହୁଡ଼ି ଲଗାଇ ରାଜା ମୃଗୟାକୁ ଗଲା
ଶୂଳ ରଖିଥାଅ ବୋଲି ମନ୍ତ୍ରୀକି କହିଲା ।
ସେ କଥା ତଥ୍ୟକରି ଜାଣିଲେ ଚରମାନେ
ଶୂଳ ନଯିବାର କଥା ଜାଣିଲେ ପୁରଜନେ ।
ଏକକୁ ଆରେକ ଯେ କୁହାକୁହି ହୋନ୍ତି
କିମ୍ପାଇଁ ଶୂଳ ଆଜ ନ ନେଲା ନରପତି ।
କେହୁ ବୋଲେ କେଉଁଆଡ଼େ ଶତ୍ରୁକି ଆସୁଛି
ମୃଗ ମାରିବାକୁ ଶୂଳ କି ଲୋଡ଼ା ହେଉଛି ।
କେହୁ ବୋଲେ ଅନ୍ୟବେଳେ ଦଣ୍ଡେ ନ ଛାଡ଼ଇ
ଅନ୍ତଃପୁର ଯିବାବେଳେ କରେ ଘେନିଥାଇ ।
ମହାଦେବ ଆଜ୍ଞାରେ ତା ଅନୁକ୍ଷଣେ ଧରି
ସେ ଶୂଳ ପ୍ରସାଦେ ସୈନ୍ୟ ରିପୁବଳ ମାରି ।
ଏବେ ଛାଡ଼ିଗଲା ତା କେବଣ ଗୁଣପାଇ
କେ ବୋଲଇ ଶୂଳ ଅବା କି କରିବ ନେଇ
ଏହିକ୍ଷଣି ମୃଗୟାରୁ ବାହୁଡ଼ି ଆସିବ
ଦେବାର୍ଚ୍ଚନ ବିଧିକି ଏଠାରେ ବଢ଼ାଇବ ।
ଏସନକ ପୁର ଲୋକେ ହୁନ୍ତି କୁହାକୁହି
ଶତୃଘନ ଡଗରେ ଶୁଣିଲେ ତହିଁ ଥାଇ ।
ଶୂଳ ନ ନେବାର ଜାଣି ବହନ ବାହୁଡ଼ିଲେ
ଶତୃଘନ ଛାମୁରେ ସେ ବାରତା କହିଲେ ।
ଏ ବାରତା ଶତୃଘନ ଡଗର ମୁଖୁଁ ଶୁଣି
ସେହିକ୍ଷଣି ବାହାର ହୋଇଲା ବୀରମଣି ।
ଶୂଳ ଛାଡ଼ି ରାବଣ ମୃଗୟା ଯେବେ ଗଲା
ନିଶ୍ଚୟେ ତା କାଳ ଆସି ପ୍ରବେଶ ହୋଇଲା
ବେଗେ ସଜହୁଅ ଆମ୍ଭେ ଯିବା ମଧୁବନ
ଶୂଳ ନ ଥିବାର ବେଳେ ମାରିବା ରାଜନ ।
ଏମନ୍ତ ସମୟ ଆଉ କେବେହେଁ ନ ପାଇ
ଏତେ କହି ସଜ ହେଲେ ରାମଚନ୍ଦ୍ର ଭାଇ ।
ରଥ ଗଜ ସଇନ୍ୟ ପଦାତି ଅପାର
ସଂଗ୍ରାମକୁ ସଜ ହେଲା ଶତୃଘନ ବୀର ।
ବାଜଣା ନ ବଜାଇ ସେ ରାତ୍ର ଥାଉଁ ଗଲେ
ସୈନ୍ୟ ନିଶବଦ ହୋଇ ରଥରେ ଚଳିଲେ ।
ଏକମନ ହୋଇକରି ପଥ ବହିଗଲେ
ରାତ୍ର ଥାଉ ମଥୁରାରେ ପ୍ରବେଶ ହୋଇଲେ ।
ଋଷି ଚାରିଜଣ ଆଗେ କଢାଉଛନ୍ତି ବାଟ
ମଥୁରାରେ ପ୍ରବେଶ ହେଲେ ସର୍ବଥାଟ ।
ଋଷିମାନେ ଶୂଳଥିବା ଘର ଦେଖାଇଲେ
ଏହିପୁରେ ଶିବ ଶୂଳ ଅଛଇଁ ବୋଇଲେ ।
ଦେଖିକରି ମନରେ ଆନନ୍ଦ ଶତୃଘନ
ଶୂଳଥିବା ଘର ଆବୋରିଲେ ସେ ବହନ ।
ସହସ୍ରେକ ପୁର କରି ବେଢ଼ିଲେ ସେ ଘର
ଯେ ଯାହାର ଶସ୍ତ୍ର ଘେନି ବଜାଇ ବୀରତୁର ।
ନଗ୍ର ନରନାରୀ ସର୍ବେ ରାଜା ରାଣୀହଂସ
ଶତୃଘନ ଉପଗତ ଜାଣି ପାଇଲେ ସେ ତ୍ରାସ ।

ଚର ଜଣାଇଲା ତା ଲବଣ ଆଗେ ଯାଇ
ଶୁଣିକରି ଦଇତ୍ୟ ଅଇଲା କୋପେ ଧାଇଁ ।
ମୃଗ ଶୁକର ମାନସେ ଘେନାଇ ବିନୋଦେ
ସମ୍ଭ୍ରମ ହୋଇ କରି ଗମଇଁ ନଗ୍ରମଧ୍ୟେ ।
ହସ୍ତୀ ଘୋଡ଼ା ରଥୀ ସଙ୍ଗେ ପଦାତି ବହୁତ
ବେଗ ବେଗ କଟକେ ପଶଇ ନରନାଥ ।
ଚର ଜଣାଇଲା ଦେବ ଶୁଣ ନୃପବର
ଶତ୍ରୁଘନ ନାମେ ଦଶରଥଙ୍କ କୁମର ।
ରାମଚନ୍ଦ୍ର ସାନଭାଇ ଅଯୋଧ୍ୟା ନରପତି
ଥାଟ ଘେନି ତୋର ପୁରେ ପଶିଲା ସେ ରାତି ।
ବୀର ତୂର ବଜାଇ କରନ୍ତି ରାଜ୍ୟେ ଗୋଳ
ଶୁଣି କୋପକଲା ମଧୁବନ ମହୀପାଳ ।
ରଥରୁ ଓହ୍ଲାଇଣ ହୋଇଣ ଉଗ୍ରମୂର୍ତ୍ତି
କଦମ୍ବ ବୃକ୍ଷେ ଉପାଡ଼ି ଧଇଲାକ ଧାତି ।
ସଇନ୍ୟଙ୍କୁ ଛାଡ଼ିଣ ଧାଇଁଲା ମହାରାଗେ
ପ୍ରବେଶ ହେଲା ଯାଇଣ ଶତ୍ରୁଘନ ଆଗେ ।
ପିଠିରେ ଲାଗି ଅଛନ୍ତି ଚତୁରାଙ୍ଗ ବଳ
ବେନି ଥାଟ ଭେଟରେ ଲାଗିଲା ମହାଗୋଳ ।
ଦୈତ୍ୟ ବୋଲେ କୋପେ ଶତ୍ରୁଘନ ମୁଖଚାହିଁ
ମରିବା ଜୀଇଁବାକୁ ତୋ ମନରେ ଭୟନାହିଁ ।
ଏ ମୋହର ମହିମା ତୁ ଶୁଣିନାହୁଁ କର୍ଣ୍ଣେ
ପ୍ରତ୍ୟକ୍ଷରେ ଆଜି ତାହା ଦେଖିବୁ ନୟନେ ।
ପୃଥ୍ୱୀ ରାଜାମାନଙ୍କୁ ମୁଁ ଜିଣିଲାଇଁ ଧରି
ମାନଧାତା ନୃପତିକି ଅଛଇଁ ସଂହାରି ।
ସଦାଶିବ ବରେ ମୁଁ କାହାକୁ ନ ଗଣଇଁ
ନ କହିଲା ତୋତେ କି ସେ ତୋ ରାମ ଭାଇ ।
ଯୁଦ୍ଧ କଲେ ତାହା ତୁ ଜିଣିବୁ ଏହିକ୍ଷଣ
ଏମନ୍ତ କ୍ଷତ୍ରୀ ମୁହିଁଟି ନୁହଇଁ ରାବଣ ।
କେତେକ ତୋର ସଙ୍ଗେ ଅଛନ୍ତି ଅଙ୍ଗବଳ
ଏହି ବୃକ୍ଷରେ ପିଟି ମୁଁ ପୁରାଇବି କାଳ ।
କିଞ୍ଚିତ ସମରେ ମୁଁ ଘେନିବି ତୋ ପ୍ରାଣ
ଏତେ ବୋଲି କ୍ରୋଧବହି ଧାଇଁଲା ଲବଣ ।
ଦେଖିଣ ଶତ୍ରୁଘନ ତୀକ୍ଷ୍ଣ ନାରାଚ ପେଶିଲା
ଲବଣ କରୁ ବୃକ୍ଷ ଛିଡ଼ାଇ ପକାଇଲା ।
ବାହୁଡ଼ିଣ ଅସୁର ବସିଲା ଯାଇ ରଥେ
ସାରଥୀ ଧନୁ ନାରାଚ ଦେଲା ନେଇ ହାତେ ।
କନ୍ଧେ ବେନି କ୍ରୋଶ ଭିଡ଼ି ବିନ୍ଧିଲା ନାରାଚ
ଦେଖି ମହା କୋପ କଲେ ଶ୍ରୀରାମ ଅନୁଜ ।
ଦୁଇ କ୍ଷତ୍ରିଙ୍କର ତହିଁ ବାଜିଲା ରଣ ଗୋଳ
ସହସ୍ର ରାମ ମରି ଶବଦ ମହାରୋଳ ।
ବେଳକୁ ବେଳ ଯୁଦ୍ଧ ହୋଇଲା ଅଗୋଚର
ଦୁହିଁଙ୍କର ଶରୀର ରକତେ ଜର ଜର ।
ଆକାଶ ମେଦିନୀ ବେନି ନାରାଚେ ହେଲା ଏକ
ଅସୁର ଯେ ମାୟାଯୁଦ୍ଧ କଲାକ ଅନେକ ।
ଦେଖି ତାହା ଶତ୍ରୁଘନ ବିଶ୍ୱରୂପ ଧରି
ଏକ ପାଦକରେ ଲୁଚାଇଲା ବସୁନ୍ଧରୀ ।
ସ୍ୱର୍ଗପୁରେ ଦେବତାଏ ଦେଖି ଭୟକଲେ
ମେଦିନୀର ଲୋକମାନେ ଦେଖିଣ ଡରିଲେ ।
ନିଃଶ୍ୱାସକେ ଦଶବଳେ ନାରାଚେ ପେଶଇ
ଆଶ୍ଚର୍ଯ୍ୟ ସୁରଗଣେ ଯେ ମେଦିନୀକି ଚାହିଁ ।
ବ୍ରହ୍ମାଙ୍କୁ ପଚାରନ୍ତି ଏ ଅତି ଅସମ୍ଭବ
ଏ ବିଷୟ ଆମ୍ଭଙ୍କୁ କହିବା ହେଉ ଦେବ ।
ରାମଲକ୍ଷ୍ମଣ ବେନି ଲଙ୍କାରେ ଯୁଦ୍ଧକଲେ
ଏଡ଼େ ବିଶ୍ୱରୂପତ ସେମାନେ ନ ଧଇଲେ ।
ବିଧାତା ବୋଲନ୍ତି ଏ ଯେ ସ୍ୱୟଂ ନାରାୟଣ
ପଶୁପତ୍ର ସେମାନେ ଯେ ଏହାଙ୍କର ବାଣ ।
ରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ଚାରିଭାଇ
ଏହାଙ୍କୁ ବେଗଳ ତନୁ କରିତ ନୁହଇ ।
ବିଷ୍ଣୁ ଅର୍ଦ୍ଧ ଆତ୍ମା ବଇକୁଣ୍ଠରେ ରହିଲା
ଅର୍ଦ୍ଧେକ ଦଶରଥ ଚାରି ପୁତ୍ର ହେଲା ।
ଶତ୍ରୁଘନ ଅଟନ୍ତି ଏ ରଣ ଜୟ ଶଙ୍ଖ
ଦୈତ୍ୟକୁଳ ଦେଇଣ ଏ ସମରେ ଅତି ରଙ୍କ ।
ଏହାଙ୍କୁ କି ପଟାନ୍ତର କରି ଆନଜନ
ଶତ୍ରୁ ସଂହାରଣ ଯାର ନାମ ଶତ୍ରୁଘନ ।
ଦଇବଙ୍କର ବଦନରୁ ଏସନେକ ବାଣୀ
ସୁରଗଣେ ଆନନ୍ଦ ହୋଇଲେ ତାହା ଶୁଣି ।
ଧାତା ବିଚାରନ୍ତି ଚାଲ ସଂଗ୍ରାମ ଦେଖିବା
ଶ୍ରୀରାମଚନ୍ଦ୍ର ସାନୁଜ ମହିମା ବିଚାରିବା ।
ଏତେବୋଲି ଯେ ଯାହା ବାହନ ଆରୋହିଲେ
ତେତିଶ କୋଟି ଦେବତା ସମସ୍ତେ ଅଇଲେ ।
ଶୂନ୍ୟରେ ରହି ସର୍ବେ ଯୁଦ୍ଧକୁ ଦେଲେ ଦୃଷ୍ଟି
ଅଯୋଧ୍ୟା ମଥୁରା ସୈନ୍ୟ ବେନି ପିଟାପିଟି ।

ଏଥୁ ଅନନ୍ତରେ ପୁଣ ପାହିଲାକ ରାତି
ନିଶ୍ଚୟ ଏ ପରଥାଟ ବୋଲିଣ ଜାଣନ୍ତି ।
ଛେଲ ଚକ୍ର ନାରାଚ ଯେ ପେଶନ୍ତି ଘନ ଘନ
ମାର ମାର ଶବଦ ଡାକନ୍ତି ଅବିଚ୍ଛିନ୍ନ ।
ଏକକଇଁ ଆରେକ ଯେ ନ ଘୁଞ୍ଚନ୍ତି ପାୟେ
ବେନି ଦିଗ ସୈନ୍ୟ ମହାମତ୍ତେ ରଣ ହୋଏ ।
ରଥୀ ରଥୀ ଯୁଦ୍ଧ ଗଜେ ଗଜେ ହୋଏ ଭେଟ
ଅଶ୍ୱଆରେ ଅଶ୍ୱଆରେ ଲାଗିଲେ ଘଟମୋଟ ।
ପଦାତି ପଦାତିରେ ହୁଅନ୍ତି ହଣାହଣି
ଓପ୍ରୋଧ ନ କରନ୍ତି ସେ ପ୍ରଚଣ୍ଡ ଆରେଣି ।
ଚତୁରଙ୍ଗ ବଳ ଯୁଦ୍ଧ କରନ୍ତି ଅଙ୍ଗଛଳେ
ବ୍ରହ୍ମାଣ୍ଡ ପୁରିଅଛି ଯେ ମୁଖର ଗହଳେ ।
ହନୁମନ୍ତ ଉଠିଲା ବୃକ୍ଷେକ କରେ ଧରି
ଅସଂଖ୍ୟ ସମର ତାର କହିତ ନ ପାରି ।
ଦେବତାଏ ପ୍ରଶଂସା କରନ୍ତି ସ୍ୱର୍ଗେ ଥାଇ
ଧନ୍ୟ ଧନ୍ୟ ସମର ଏ ତୁଲାଇତ ନାହିଁ ।
ଶରେ ଶରେ ମରାମରି ସବୁଙ୍କରି ଦେହ
ମଡ଼ାମାନେ ଭାସିଯାନ୍ତି ରକ୍ତନଦୀ ସୁଅ ।
ପ୍ରଜ୍ୱଳିତ କାଣ୍ଡମାନ ଏଣେତେଣେ ପଡ଼େ
ନିଘାତ ଶବଦ ଜାଣି ପଡ଼େ ଅତିଗାଢ଼େ ।
ଲବଣ ଶତ୍ରୁଘନ ଏ ସମରେ ବିଶେଷ
ନାହିଁ ନାହିଁ ତୁଲାଇତ ଭୁବନ ଚତୁର୍ଦ୍ଦଶ ।
ମାୟା ଯୁଦ୍ଧ ଦଇତ୍ୟ ଅନେକ କରୁଥିଲା
ସଉମିତ୍ରି ବିଶ୍ୱରୂପ ଦେଖି ଭୟେ କଲା ।
ସ୍ୱଭାବରେ ଶିବ ଶୂଳ ନାହିଁ ତାର ହସ୍ତେ
ତାହା ବିନା ସମର କରିବ ଅବା କେତେ ।
ଶକତିଏ ଧରି କୋପେ ମନ୍ତ୍ରିଣ ମାଇଲା
ଦେଖି ଶତ୍ରୁଘନ ତା ନାରାଚେ ନିବାରିଲା ।
ମୁଦ୍‌ଗରେ ପେଶିଲା ସେ ମହା ବିକରାଳ
ନାରାଚେ ତା ଛିଡ଼ାଇଲା ସୁମିତ୍ରାର ବାଳ ।
ଦେଖିଣ ଅସୁରପତି ପାଇଲାକ ଲାଜ
କୋପଭରେ ବିନ୍ଧିଲା ସେ ସହସ୍ରେ ନାରାଚ ।
ପୁଣି କୋପେ ତିନିବାଣ ପେଶିଲା ନିଠାଇ
ଶତ୍ରୁଘନ ଦେହରେ ପଡ଼ିଲା ଶରେ ଯାଇ ।
ତତକ୍ଷଣେ ଫୁଟି ଦେହ ବାହାରେ ରକତ
ମହା କୋପଭର ହୋଇ ସୁମିତ୍ରାର ସୁତ ।

ବାବଲ ନାମେ ନାରାଚ କରେ ବୀର ଧରି
ଧନୁରେ ବସାଇଣ ବିନ୍ଧିଲେ ଯତ୍ନକରି ।
ଚଳିଲାକ ନାରାଚ ଶବଦ କରି ଘୋର
ଯାଇଣ ପଡ଼ିଲା ବେଗ ଲବଣ ଉପର ।
ବୁକୁ ଫୁଟି ପିଠିକି ସେ ବାହାର ହୋଇଲା
ଭୂମିରେ ଗଳି ପାତାଳରେ ସେ ପଶିଲା ।
ପ୍ରାଣ ଛାଡ଼ି ରଥରୁ ପଡ଼ିଲା ଦୈତ୍ୟରାଣ
ନାରାଚ ଆସି ପଶିଲା ଶତ୍ରୁଘନ ତ୍ରୋଣ ।
ଦେବାର୍ଚ୍ଚନ ପୁରେ ତାର ରୁଦ୍ର ଶୂଳ ଥିଲା
ଦୈତ୍ୟ ପଡ଼ିବାର ଦେଖି କଇଳାସ ଗଲା ।
ଅସୁର ମୃତ୍ୟୁ ଦେଖି ତାର ପଳାଇଲେ ସୈନ୍ୟ
ରହ ରହ ବୋଲି ଡାକେ ସୁମିତ୍ରା ନନ୍ଦନ ।
ଦେଖିଣ ଦେବତାମାନେ କୁସୁମ ବରଷିଲେ
ସଉମିତ୍ରୀଙ୍କି ବର ଆନନ୍ଦେ ଯାଚିଲେ ।
ରାମଚନ୍ଦ୍ର ଅନୁଜ ବୋଲନ୍ତି ତୁମ୍ଭେ ଶୁଣ
ଯେବେ ମୋତେ ସୁଦୟା କଲ ହେ ସୁରଗଣ
ଏ ନବରେ ପରଜା ହୋଇବେ କହ ଯାଇଁ
ସୁଖୀ ହେବେ ସମସ୍ତେ ମୁଁ ଏ ବର ମାଗଇ ।
ଏହାଶୁଣି ଦେବତାଏ ବୋଲନ୍ତି ଅସ୍ତୁହେଉ
ମଥୁରା ନାମରେ ଏହୁ କଟକ ବୋଲାଉ ।
ଏତେବୋଲି ବ୍ରହ୍ମାଦି ଦେବତାମାନେ ଗଲେ
ଋଷିମାନେ ସନ୍ତୋଷ ହୋଇଣ ବାହୁଡ଼ିଲେ ।
ମଧୁବନ ରାଜ୍ୟରେ ଯେ ପାତ୍ର ମନ୍ତ୍ରୀଗଣ
ଏକାନ୍ତରେ ବସିଣ କରନ୍ତି ବିଚାରଣ ।
ମାନବ ରାଜ୍ୟ ସିନା ଏ ଦୈତ୍ୟ ଘେନିଥିଲା
ପୁଣି ଯେବେ ଭଗବାନ ଅନୁଗ୍ରହ କଲା ।
ଅଯୋଧ୍ୟାରେ ନୃପତି ଅଟନ୍ତି ସୂର୍ଯ୍ୟବଂଶ
ପୁଣି ତ ରାମଚନ୍ଦ୍ର ସାକ୍ଷାତେ ବିଷ୍ଣୁ ଅଂଶ ।
ତାହାଙ୍କର ସାନୁଜ ଏ ଲକ୍ଷ୍ମଣଙ୍କ ଭାଇ
ଦଶରଥ ରାଜା ପୁତ୍ର ଉତ୍ତମ ଯୋଗାଇ ।
ରାମଚନ୍ଦ୍ର ଏ ରାଜ୍ୟତ ଏହାକୁ ଦେଇଥିଲା
ଯୋଗେ ଯୁଦ୍ଧ କରିଣ ଏ ରାଜାକୁ ମାଇଲା ।
ଆମ୍ଭେ ନାହିଁ କଲେ କି ନୋହିବେ ସେ ରାଜା
ଦେଖିଲ ନା ଦେବତାଏ କଲେ ପାଦପୂଜା ।
ସେ ପୁଣି ମାଗିଲେ ଦେବତାଙ୍କୁ ଏହି ବର
ଏ ରାଜ୍ୟରେ ଯେ ହୋଇବେ ପ୍ରଚୁର ।

ଏବେ ଆମ୍ଭେ ଚାଲ ତାଙ୍କୁ କରିବା ଦରଶନ
ସିଂହଦ୍ୱାରେ ଆସିଣ ଗୁହାଇଲେ ଯାନ ।
ପାତ୍ର ମନ୍ତ୍ରୀ ସମସ୍ତେ ଦର୍ଶନ ଯାଇଁ କଲେ
ଏ ରାଜ୍ୟର ମନ୍ତ୍ରୀ ଆମ୍ଭେ ବୋଲିଣ ବୋଇଲେ
ଶୁଣି ସଉମିତ୍ରି ତାଙ୍କୁ ଗଉରବ କଲା
ଭଣ୍ଡାରୁ ଧନ ବସ୍ତ୍ର ଅଣାଇ ଶାଢ଼ୀ ଦେଲା ।
ବୋଇଲେ ହେ ତୁମ୍ଭମାନଙ୍କର କର୍ମଭଲ
ପୂର୍ବେ ତୁମ୍ଭେ କିଞ୍ଚିତ ପାତକ କରିଥିଲ ।
ତେଣୁକରି ପାଇଥିଲ ଅସୁର ନୃପତି
ଦୁଇ ପୁରୁଷ ଯାଏ ସେ ଭୋଗ କଲା ପୃଥ୍ୱୀ ।
ଏବେ ପୁଣ ଭଗବାନ ଅନୁଗ୍ରହ ହେଲା
ପୁନରପି ମାନବ ନୃପତି ଆଣିଦେଲା ।
ଏବେ ଲବଣକୁ ତୁମ୍ଭେ କରାଅ ଦହନ
ସତ୍ୟ ଥିଲେ ରାଣୀଏ ପଶନ୍ତୁ ହୁତାଶନ ।
ଶୁଣି ପାତ୍ର ମନ୍ତ୍ରୀମାନେ କଢ଼ାଇଲେ ଶବ
ଅନଳେ ପକାଇଣ ଦହିଲେ ତାର ଅଙ୍ଗ ।
ମହାଦେଈମାନେ ତାର ପଶିଲେ ଅନଳେ
ଥୋକାଏକ ପଳାଇଲେ ଜୀବନ ବିକଳେ ।
ଏଥୁ ଅନନ୍ତରେ ପୁଣ ଶତୃଘନ ରାୟେ
ମଧୁବନ କଟକରେ ଘୋଷଣା ଦିଆଏ ।
ପୂର୍ବେ ଯେସନକ ଏଥି ଥିଲ ହେ ପରଜା
ଲବଣକୁ ପ୍ରାଣେ ମାରି ଆମ୍ଭେ ହେଲୁଁ ରାଜା ।
ଶତେ ଗୁଣ କରି ଆମ୍ଭେ ପାଳିବୁ ତୁମ୍ଭଙ୍କୁ
ସତ୍ୟ ସତ୍ୟ ଶଙ୍କା ତୁମ୍ଭେ ନକର ମନକୁ ।
ଏସନେକ ବୋଲିଣ ଘୋଷଣା ଦିଆଇଲେ
ଶୁଣି ରାଜ୍ୟ ଲୋକମାନେ ଆନନ୍ଦ ହୋଇଲେ
ଏଥୁ ଅନନ୍ତରେ ହେଲା ରଜନୀ ପ୍ରବେଶ
ନବରେ ରହି ଯାଇଁ ସୁମିତ୍ରାଙ୍କ ଶିଷ୍ୟ ।
ଫଳ ମୂଳ ଭୋଜନରେ ବଞ୍ଚିଲେ ସେଦିନ
ସିଂହଦ୍ୱାରେ ଆବୋରି ରହିଲେ ସର୍ବ ସୈନ୍ୟ ।
ରଜନୀ ପ୍ରଭାତରୁ ନିତ୍ୟକର୍ମ ସାରି
ରଷ୍ୟଶୃଙ୍ଗ ଗାର୍ଗବଙ୍କୁ ମନରେ ସୁମରି ।
ତତକ୍ଷଣେ ଦୁଇ ମୁନି ହୋଇଲେ ପ୍ରବେଶ
ଉଠିକରି ଶତୃଘନ ଓଳଗେ ବିଶେଷ ।
ଶତୃଘନ ବୋଲେ ମୁନି ପୁର ପ୍ରତିଷ୍ଠା କର
ତେବେ ସିନା ଏପୁରେ ହୋଇବି ନୃପବର ।

ଏତେ କହି ସେ ପୁର ଉଜ କରାଇଲେ
ଚୂନ ପାଣି ପକାଇ ପ୍ରତିଷ୍ଠା ସେ କଲେ ।
ଶୁଭ ଯୋଗେ ନବରେ ରହିବୁଁ ଆମ୍ଭେ ଯାଇ
ଶୁଣିକରି ମଂତ୍ରୀଗଣେ ଗଲେ ବେଗ ହୋଇ ।
ସ୍ୱର୍ଗପୁର ପରକାରେ ମଣ୍ଡିଲେ ସକଳ
ଜଣାଇଲେ ଯାଇଁ ଶତୃଘନଙ୍କ ଆଗର ।
ଶୁଣି ସଉମିତ୍ରି ମନେ ସନ୍ତୋଷ ହୋଇଲା
ଶୁଭ ଯୋଗ ବେଳରେ ନବରେ ବିଜେକଲା ।
ଦୁଇ ମୁନି ତହିଁ ଅଭିଷେକ ବିଧିସାରି
ଦେବାର୍ଚ୍ଚନ ମଣୋହି ସାରିଲେ ଲବଣାରି ।
ସୁପକାରମାନେ ଆସି ପରଶନ୍ତି ଅନ୍ନ
ପିଷ୍ଟକ ପ୍ରପାନକ ଯେ ବିଧି ବ୍ୟଞ୍ଜନ ।
ମଣୋହି ସମ୍ପୂର୍ଣ୍ଣରେ ଆଞ୍ଚୋବନ କଲେ
ତାମ୍ବୁଳ ଲାଗି ହୋଇ ନବର ବୁଲିଗଲେ ।
କଟକ ଶୋଘବନ ମଣ୍ଡନ ମହାଘଞ୍ଚ
ଅପୂର୍ବ ପୁରମାନ ବୃଷାଳ ମହାଉଚ୍ଚ ।
କେଉଁଠାରେ ତୋଟା ପୂର କାହିଁରେ ଜଗତୀ
ମେଢ଼ ମଣ୍ଡପମାନ ଦିଶଇ ପନ୍ତି ପନ୍ତି ।
ନଗ୍ରର ଯୁବତୀମାନେ ରୂପରେ ରୂପବନ୍ତୀ
ରାଜାଙ୍କୁ ଦେଖି ଆନନ୍ଦେ ହୁଳହୁଳି ଦ୍ୟନ୍ତି ।
ଚରଣେ ଶତ୍ରୁଘନ ନଗର ଭ୍ରମି ଯାଇ
ଚତୁରାଙ୍ଗ ସୈନ୍ୟ ତାର ସଙ୍ଗରେ ଗୋଡ଼ାଇ ।
ମଧୁବନ ପାତ୍ର ମନ୍ତ୍ରୀ ଚଉପାଶେ ବେଢ଼ି
ଧୀରେ ଧୀରେ ଆସନ୍ତି ଯେ ପଟୁଆର ମାଡ଼ି ।
କେ ବୋଲଇ ପୂର୍ବେ ଆମ୍ଭେ କେଉଁ ତପକଲୁ
ଦେବଇନ୍ଦ୍ର ସମାନରେ ନୃପତି ପାଇଲୁଁ ।
ନଗ୍ର ନରନାରୀମାନେ ଦେଖି ଆସୁଛନ୍ତି
ଏକକୁ ଆରେକ ଯେ ପ୍ରଶଂସା କରନ୍ତି ।
କେ ବୋଲଇ ଦେହ ଦିଶେ ଚମ୍ପା ପୁଷ୍ପ ବର୍ଣ୍ଣ
କେ ବୋଲେ ପାଶେ ମଳିନ ଦିଶିବ ସୁବର୍ଣ୍ଣ ।
କେ ବୋଲେ ଏ ପାଗ କି ସୁନ୍ଦର ଦିଶଇ
ଧୀରେ ଧୀରେ ଚାଲିବାରେ ମନ ଆକର୍ଷଇ ।
କେ ବୋଲଇ କସ୍ତୁରୀ ପରାୟେ ନିଶ କମ
ତେସନକ ଦିଶଇ ସୁନ୍ଦର ଦାଢ଼ି ଲୋମ ।
କେ ବୋଲଇ କର୍ଣ୍ଣରେ ବେନି କୁଣ୍ଡଳ ଲୁଳେ
କେ ବୋଲଇ ହୃଦୟରେ ସୁନ୍ଦର ମୋତିମାଳେ ।

କେ ବୋଲେ ଶ୍ରୀକରେ ସୁନ୍ଦର ତାଡମୁଦି
ନୀଳବସ୍ତ୍ର ପରିହରଣ ଦୋଷଡା ନେତ ବାନ୍ଧି ।
ତୀର କମାୟଣ କି ସୁନ୍ଦର ଶୋଭା ହାଥ
କି ଜାଣି ପଟାନ୍ତର କି ନବୀନ ମନରଥ ।
କପାଳରେ କସ୍ତୁରୀ ତିଳକ ଠିଆ ଚିତା
କନ୍ଧେ ଶୋଭା ଦିଶଇ ଯେ ସୁବର୍ଣ୍ଣ ପଇତା ।
ନୀଳୋତ୍ପଳ ଫୁଲ ନିନ୍ଦା କରଇ ନୟନ
ଅଧର ବନ୍ଧୁକୁ ନିନ୍ଦେ ମାଣିକରେ ବର୍ଣ୍ଣ ।
ବେନି ପାଦେ ନୂପୁର ଯେ ରୁଣ ଝୁଣ ବାଜେ
ମଧୁବନ ଦେଶକୁ ଏ ରାଜାପଣ ସାଜେ ।
ଏସନକ ବୋଲିଣ ବୋଲନ୍ତି ନରନାରୀ
ବଜାଇ ଶଙ୍ଖ କମ ମହୁରୀ ଭେରୀ ତୂରୀ ।
କଟକ ବୁଲିଯାଇ ନବରେ ପଇବେଶ
ସନ୍ଧ୍ୟା ସୁମରଣା କଲେ ସୁମିତ୍ରାର ଶିଷ୍ୟ ।
ପ୍ରଭାତରେ ନିତ୍ୟକର୍ମ ବିଧାନ ସାରିଲେ
ଦେବତା ପୂଜାସାରି ଆସ୍ଥାନେ ବିଜେକଲେ ।
ପାତ୍ର ମନ୍ତ୍ରୀମାନେ ଦରଶନ କଲେ ଆସି
ରାଜ୍ୟର ଭଲମନ୍ଦ ସବୁ ବିଚାରନ୍ତି ବସି ।
ରଥ, ଗଜ, ଅଶ୍ୱ ସୈନ୍ୟ ପଦାତି ଦେଖିଲେ
ବିଶୋଇମାନଙ୍କ ମୂଳେ ବିଶେଷ ସମର୍ପିଲେ ।
ଏମନ୍ତେ ଦୁଇ ରାଜ୍ୟ ପାଳିଲେ ଶତ୍ରୁଘନ ରାୟେ
ଦୁଇ ରାଜ୍ୟ ଦୁଇ ମନ୍ତ୍ରୀ ରଖାଇ ଶତ୍ରୁଘନଆଏ ।
ଅଯୋଧ୍ୟା ସମାନ କରି ପାଳିଲେ ସେ ପୁରୀ
ଦଶ ଦିଗପାଳେ ଦେଖିଲେ ଭୟକରି ।
ଏମନ୍ତେ ବାରବରଷ ଦୁଇ ନବରେ ରହି
ରାଜ୍ୟର ଭଲମନ୍ଦ ବୁଝନ୍ତି ନିତ୍ୟାନି ହିଁ ।
ରାଜ୍ୟେ ଥୟ କରି ପାତ୍ର ମନ୍ତ୍ରୀଙ୍କି ହକାରି
ପାଶରେ ବସାଇଣ କହନ୍ତି ପ୍ରିୟ କରି ।
ବୋଇଲେ ହେ ତୁମ୍ଭେମାନେ କର ରାଜ୍ୟରକ୍ଷା
ଶ୍ରୀରାମଙ୍କୁ ଦେଖିବାକୁ ବଳିଲା ମୋ ବାଞ୍ଛା ।
ଏତେ ବୋଲି ଥାଟ ସଜକରି ତହୁଁ ଗଲେ
ବାଲମୀକ ମୁନିଙ୍କର ଆଶ୍ରମେ ମିଳିଲେ ।
ବିମାନରୁ ଓହ୍ଲାଇ କରନ୍ତି ନମସ୍କାର
ଦେଖିକରି ସୁକଲ୍ୟାଣ କଲେ ମୁନିବର ।
ମନରେ ବିଚାର କଲେ ଦିବ୍ୟପୁର ହେଉ
ଶ୍ରୀରାମଚନ୍ଦ୍ର ସାନୁଜ ତହିଁରେ ଯାଇ ରହୁ ।
ରଥ, ଗଜ, ଅଶ୍ୱ ସୈନ୍ୟ ପଦାତି ଅନୁରୂପେ
ସଦନ ନିର୍ଭା ହେଲା ସମସ୍ତ ସୀମପେ ।
ସମସ୍ତଙ୍କୁ ସେଠାବରେ ଆହାର ପାଣି ଅଛି
ଦେଖି ଥାଟ ଲୋକଙ୍କୁ ଯେ ନସ୍ଫୁରଇ କିଛି ।
ଶତ୍ରୁଘନ ଯାଇଣ ନବରେ ବିଜେ କଲେ
ମର୍ଦ୍ଦନ ମାଜଣା ବିଧି ମଣୋହି ସାରିଲେ ।
ତାମ୍ବୁଳ ଭୁଞ୍ଜନ୍ତେଣ ମିଳିଲେ ବାଲମୀକ
ସଙ୍ଗତରେ ଅଛନ୍ତି ଅନେକ ଯାଗନୀକ ।
ଦେଖିଣ ଶତ୍ରୁଘନ ଆସନୁ ଉଠିଲା
ନମସ୍କାର କରି ଋଷି ପାଶରେ ବସିଲା ।
ସମସ୍ତେ ହେଁ ବସିଲେ ଯେ ଏକରୁଣ୍ଡ ହୋଇ
ବାଲମୀକ ବୋଲେ ଶତ୍ରୁଘନକୁ ଅନାଇ ।
ସଉମିତ୍ରୀ ତୁମ୍ଭେ ଲବଣକୁ ବଧକଲ
ମଧୁବନ ହସ୍ତୀନା ଲୋକଙ୍କୁ ଜୀବଦାନ ଦେଲ ।
ତୁମ୍ଭଯୋଗୁଁ ଋଷିମାନେ କରିବେ ଏବେ ହୋମ
ଏକଥା କରିବାକୁ ତୁମ୍ଭେ ସେ ଅଟ କ୍ଷମ ।
ଦ୍ୱାଦଶ ବରଷ ହେଲା ଆଜକୁ ତୋର ଗଲା
କେମନ୍ତ ରାଜପଣ ଲବଣ କରୁଥିଲା ।
ତୁମ୍ଭେ ଏବେ କିସ କରି ଅଇଲା ସଉମିତ୍ରୀ
ବୀରଭୋଗ୍ୟା ସବୁ କାଳେ ଅଟଇ ଧରିତ୍ରୀ ।
ଧନଜନ ପୀରତି ବିଦ୍ୟା ଏହୁ ଚାରି
ଆକର୍ଷି ଜାଣ ଏହା ଭୋଗ କରିପାରି ।
ଶୁଣିଣ ସଉମିତ୍ରୀ ଯୋଡ଼ିଣ ବେନିକର
ତୁମ୍ଭ ସୁକଲ୍ୟାଣେ ସର୍ବ ଶୁଭ ମୁନିବର ।
ପୂର୍ବେ ଯେ ଲବଣ ତହିଁ ରାଜ୍ୟ କରୁଥିଲା
ଗତୁଁ ଶତଗୁଣେ ଏବେ ସେପୁର ହୋଇଲା ।
ଏଥୁ ଅନନ୍ତରେ ଆସି ହେଲା ରାତ୍ର ଅର୍ଦ୍ଧ
ସମସ୍ତଙ୍କ ନୟନେ ଘାରିଲା ଆସି ନିଦ ।
ବାଲମିକ ବୋଲନ୍ତି ହେ ଶତ୍ରୁଘନ ଶୁଅ
ପ୍ରଭାତରୁ ଯିବଟି ଅନିଦ୍ରା ଆଉ ନୁହ ।
ଏତେ ବୋଲି ମୁନିମାନେ ଯେଯାହା ପୁରଗଲେ
ଶୁଣ ଚନ୍ଦ୍ରବଦନୀ ଗୋ ଦିଗବାସ ବୋଲେ ।
ଶତ୍ରୁଘନ ଶୁଏ ଯାଇଁ ପଲଙ୍କ ଉପରେ
ଶୁଣିମା ଚରିତ୍ର ଉମା ଏଥୁ ଅନନ୍ତରେ ।
ରଜନୀ ଶେଷ ହୁଅନ୍ତେ ସୂର୍ଯ୍ୟ ଉଇଁଥାଏଁ
ଥାଟ ସଜ କରାଇଲା ଶତ୍ରୁଘନ ରାୟେ ।

ଋଷିଙ୍କି ନମସ୍କାର କରିଣ ଚଳିଗଲା
ଗଙ୍ଗାନଦୀ ପାରହୋଇ ସେକୂଳେ ମିଳିଲା ।
ତହିଁ ରାତ୍ର ବଞ୍ଚିଣ ଯେ ଥାଟ ଗଲେଚଳି
ତିନିଦିନେ ଯାଇଣ ଅଯୋଧ୍ୟାପୁରେ ମିଳି ।
ସରଜୂ କୂଳରେ ଯାଇଁ ମିଳିଲେ ସରାଗ
ଚରଯାଇଁ ଜଣାଇଲା ଶ୍ରୀରାମଙ୍କ ଆଗ ।
ମଧୁବନ ରାଜା ଆସେ ଦରଶନ କରି
ଶୁଣିଣ ପରମ ତୋଷ ହୋଇଲେ ରାବଣାରୀ ।
ସୁମନ୍ତକୁ ବୋଇଲେ ପାଛୋଟି ଯାଇ ଆଣ
ଏହାଶୁଣି ମନ୍ତ୍ରୀବର ଗଲା ତତକ୍ଷଣ ।
ଚତୁରାଙ୍ଗ ବଳ ତାର ସଙ୍ଗରେ ଘେନିଗଲା
ଶତୃଘନଙ୍କୁ କେତେ ଦୂରରେ ଭେଟିଲା ।
ଏକ ସମ୍ଭାଷଣ ଯେ ହୋଇଲେ ବେନିଜନ
କୁଶଳ ପୁଛାପୁଛି ହୁଅନ୍ତି ଅବିଚ୍ଛନ୍ନ ।
ଶତୃଘନ ପଚାରନ୍ତି ସୁମନ୍ତକୁ ଚାହିଁ
କାହିଁ ଅବକାଶ ହୋଇଛନ୍ତି ରଘୁସାଇଁ ।
ସୁମନ୍ତ ମନ୍ତ୍ରୀ କହେ ବିଜୟ ଆସ୍ଥାନରେ
ଏହାଶୁଣି ଶତ୍ରୁଘନ ସନ୍ତୋଷ ମନରେ ।
ରଥ, ଗଜ, ଅଶ୍ୱ ସଙ୍ଗେ କଳନା ନ ଯାଇ
ମଧୁବନ ହସ୍ତୀନାଥାଟ ଅଯୋଧ୍ୟାରେ ମିଶାଇ ।
ଆଲମ୍ବ ବିଲମ୍ବ ପାଟଛତ୍ର ନିରନ୍ତର
ବାଜଇ ଟମକ ଯେ ନିଶାଣ ବୀରତୁର ।
ନଗ୍ର ନରନାରୀମାନେ ଦେଖିଣ ଆସନ୍ତି
ଧନ୍ୟ ଧନ୍ୟ ବୋଲିଣ ସମସ୍ତେ ପ୍ରଶଂସନ୍ତି ।
ସିଂହଦ୍ୱାରୁ ଯାଇଣ ବିମାନୁ ଓହ୍ଲାଇଲା
ସୁମନ୍ତ ଭୁଜ ଧରି ଭିତରକୁ ଗଲା ।
ଉପହାର ଧନବସ୍ତ୍ର ତଳେ ନେଇ ଥୋଇ
ଧାତିକାରେ ବୀର ଯାଇ ପାୟେପଡ଼ି ଶୋଇ ।
ଶ୍ରୀମୁଖ ଦେଖିବାକୁ ସେ ଆତୁର ହେଉଅଛି
ବେଗେ ବେଗେ ଆସଇ ସେ ସୁମିତ୍ରା ବସି ।
ଭଡାଦଶ ଯାଇଣ ଶୋଇଲା ଗଡଘାଲି
ତୋଷେ ରଘୁନାଥ ବୋଲେ ଆସ ଆସ ବୋଲି ।
ବେଗେ ଉଠି ଶତୃଘନ ଶିରେ କର ଦେଇ
ଶ୍ରୀରାମଙ୍କ ନିକଟକୁ ଗଲା ଧୀର ହୋଇ ।
ବଶିଷ୍ଠଙ୍କୁ ଦେଖିଣ ନମସ୍କାର କରି
କଶ୍ୟପ ବାମଦେବଙ୍କୁ ନମସ୍କାର କରି ।
ଭରତ ଲକ୍ଷ୍ମଣ ଚରଣେ କରି ନମସ୍କାର
ଶ୍ରୀରାମ ପଚାରନ୍ତି ଲବଣ ସମାଚାର ।
ରାଜ୍ୟ ପାଳୁଅଛ ନା ଅଯୋଧ୍ୟା ପ୍ରାୟେକରି
ଦେବେ ଉପଗତ କରନ୍ତି ନା ସେହୁ ପୁରୀ ।
ବେଳକାଳ ଜାଣିଣ ବରଷେଟିକି ଇନ୍ଦ୍ର
ଶତ୍ରୁଘନ ବୋଲେ ପ୍ରଭୁ ଶୁଣ ରାମଚନ୍ଦ୍ର ।
ତୁମ୍ଭ ଆଜ୍ଞା ପ୍ରମାଣେ ମୁଁ ଏଠାରୁ ଯେ ଗଲିଁ
ମଧୁବନ ରାଜ୍ୟେ ଯାଇ ପ୍ରବେଶ ହୋଇଲି ।
ଅଯୋଧ୍ୟାରୁ ସୁଲଭ ଯେ ମଧୁବନ ଦେଶ
ପ୍ରଜାଙ୍କ ସାଧୁପଣ କହିବା ଅବା କିସ ।
ସ୍ୱର୍ଗପୁର ସମାନରେ ଦିଶନ୍ତି ନରନାରୀ
କି ଅବା ଅପସରୀ ଗନ୍ଧର୍ବ ବିଦ୍ୟାଧାରୀ ।
ଯଦୁବଂଶ ଭୋଜବଂଶ ଅକଳିତ କ୍ରିୟା
ସମସ୍ତଙ୍କ ଘରେ ବିଜେ ସାଗର ତନୟା ।
ଯମୁନା ନଦୀ ବହେ ପବିତ୍ର ଦିବ୍ୟଜଳ
ଗୋବର୍ଦ୍ଧନ ପର୍ବତ ସୁନ୍ଦର ଦିଶେ ତଳ ।
ବୃନ୍ଦାବନ ନାମେ ବନ ଯମୁନା ନିକଟ
ନାନାତରୁ ବୃଶାଳ କଦମ୍ବ ଶୋଭା ତଟ ।
ଭୋଦେବ ରାବଣକୁ ମାଇଲି ଯେତେବେଳେ
ପ୍ରସନ୍ନେ ବରଦେଲେ ସମସ୍ତ ଦିଗପାଳେ ।
କଟକର ନାମ ଯେ ମଥୁରା କରିଦେଲେ
ପରଜାଏ ଏଥିପାଇଁ ହୋଇବେ ବୋଇଲେ ।
ଦେବତାଙ୍କର ଆଜ୍ଞାରେ ତୁମ୍ଭର ପ୍ରସାଦେ
ମଧୁବନ୍ତ ହସ୍ତୀନା ଦେବ ସୁଖୀ ଅପ୍ରମାଦେ ।
ମୋହର ଯିବାର ହେଲା ଦ୍ୱାଦଶ ବରଷ
ମୁରୁଛି ନ ପାରି ମୁଁ ଅଇଲି ତୁମ୍ଭ ପାଶ ।
ଏହାଶୁଣି ରାମଚନ୍ଦ୍ର ଆନନ୍ଦ ହୋଇଲେ
ପ୍ରଶଂସା କରି ବହୁତ ଅଳଙ୍କାର ଦେଲେ ।
ପୁଣି ଆଜ୍ଞାଦେଲେ ସେ ଭାଇର ମୁଖ ଚାହିଁ
ଆମ୍ଭଙ୍କୁତ ଦେଖିଲୁ ହୋ ମଧୁବନ ସାଇଁ ।
ଆଜକ ରହି ଏଠାରେ କାଲି ତୁହି ଯାଅ
ପରଜାଙ୍କୁ ନିଶ୍ଚିନ୍ତ କରିଣ ପାଳୁଥାଅ ।
ପରରାଜ୍ୟ ବାବୁରେ କେତେ ପୁଣ୍ୟେପାଇ
ତୋହର ଏଠାକୁ ଆଉ ଆସିବା ନ ଯୋଗାଇ ।
ପୃଥ୍ୱୀରେ ଶ୍ରେଷ୍ଠସ୍ଥାନ ସେ ମଧୁବନ ପୁରୀ
କୃଷ୍ଣ ଅବତାର ତହିଁ ହୋଇବେ ମଧୁହାରୀ ।

ପବିତ୍ର ସ୍ଥାନ ସେହୁ ଯମୁନା ନଦୀ କୂଳ
ଅପୂର୍ବ ସ୍ଥାନ ସେହୁ ସେ ଦୁର୍ବାସାଙ୍କ ଆଳ ।
ତୁ ଏବେ ଶତ୍ରୁଘନ ଆଜକ ଏଥି ରହ
ପ୍ରଭାତ ସମୟରୁ ତୁ ବେଗ ହୋଇ ଯାଅ ।
ଏହା ଶୁଣି ଶତ୍ରୁଘନ ଶିରେ କର ଦେଲା
ଯେ ତୁମ୍ଭର ଆଜ୍ଞା ସ୍ୱାମି ବୋଲିଣ ବୋଇଲା ।
ଏସନକ ସମୟରେ ଭାଜିଲା ଆସ୍ଥାନ
ଭିତରକୁ ବିଜେ କଲେ ରଘୁବଂଶ୍ ନାନ ।
ଶତ୍ରୁଘନ ଯାଇଣ ଭିତର ପୁରେ ହେଲେ
ଜାନକୀଙ୍କ ଚରଣରେ ଓଳଗି ଶୋଇଲେ ।
ଠାକୁରାଣୀ ବୋଇଲେ ଅଇଲୁ କିରେ ବାବୁ
ଦୁଇ ରାଜ୍ୟଯାକର କୁଶଳଟିକି ସବୁ ।
ଶତ୍ରୁଘନ ବୋଇଲେ ତୁମ୍ଭର ପ୍ରସାଦେ
ଦୁଇରାଜ୍ୟ ଜିଣିଲି ମୁଁ ଅତି ଅପ୍ରମାଦେ ।
ସୀତୟା ବୋଇଲେ ତୁ ଚଳ ବେଗହୋଇ
ଜନନୀ ଭାରିଯାକୁ ସଙ୍ଗତରେ ନେଇ ।
ଏହା ଶୁଣି ଶତ୍ରୁଘନ ନିଜପୁର ଗଲେ
ଆପଣାର ନାରୀ ଆସି ଅର୍ଘ୍ୟ ବନ୍ଦାଇଲେ ।
ସ୍ନାହାନ ଭୋଜନ କଲେ ଯେ ବିଧି ବେଭାର
ମଧୁବନ ସୈନ୍ୟ ଆସିଥିଲେ ଯେ ଅପାର ।
ତାଙ୍କୁ ଶତ୍ରୁଘନ ଭରି ଭୋଜନ ଆଣିଦେଲେ
ଏଥୁ ଅନନ୍ତରେ ପୁଣି ରାତ୍ର ଶେଷହେଲେ ।
ସନ୍ଧ୍ୟା ସୁମରଣା କଲେ ଦଶରଥ ପୋଏ
ଭାଳୁ ଭାଳୁ ରାତ୍ର ଆସି ଦଶଘଡ଼ି ହୋଏ ।
ଶତ୍ରୁଘନକୁ ରାମ କହିଲେ ରାଜନୀତି
ଏଥୁ ଅନନ୍ତରେ ପୁଣି ଯେ ଯାହାରେ ଯାନ୍ତି ।
ରତ୍ନ ପଲ୍ୟଙ୍କରେ ପହୁଡ଼ିଲେ ଯେ ଯାହାରେ ଯାଇ
କେତେହେଁ ବେଳରେ ରଜନୀଗଲା ପାହି ।
ନିତ୍ୟକର୍ମ ବିଧାନ ସାରିଣ ଶତ୍ରୁଘନ
ଶ୍ରୀରାମଚନ୍ଦ୍ର ଚରଣେ କଲେ ଦରଶନ ।
ମଧୁବନ ଯିବି ମୁହିଁ ବୋଲିଣ ଜଣାଇଁ
ଶ୍ରୀରାମବୋଇଲେ ତୁ ଯାଅଘରଣୀ ମାତାନେଇ
ତହୁଁ ଯାଇ ଶତ୍ରୁଘନ ଭିତର ପୁରେ ହେଲେ
ସୀତାଙ୍କୁ ଓଳଗିଣ ସବୁ ସେ କହିଲେ ।
ସୀତା ବୋଇଲେ ତୁମ୍ଭେ କଳାବତୀ ମାତାଯାନ୍ତୁ
ମଧୁବନ ରାଜ୍ୟ ସେହି ସେ ପାଳନ୍ତୁ ।

ତୁମ୍ଭେ ହସ୍ତିନାରେ ହୁଅ ମହୀପାଳ
ଭାରିଯା ମାତା ଘେନି ଭିତର ପୁରୁଁ ଚଳ ।
ଏତେ ଶୁଣି ସେଠାରୁ ହୋଇଲେ ବାହାର
ଭ୍ରଥ ଲକ୍ଷ୍ମଣଙ୍କୁ ସେ କରଇ ନମସ୍କାର ।
ଅନ୍ତଃପୁରେ ମାତାଙ୍କୁ ନମସ୍କାର କଲା
କଳାବତୀ ଜନନୀଙ୍କି ମୋ ସଙ୍ଗେ ଆସ ବୋଇଲା ।
ତାହା ଶୁଣି ଜନନୀ ଭିତର ପୁରେ ଗଲେ
ସୁକୀର୍ତ୍ତୀ ବଧୁକୁ ଘେନିଣ ବାହାରିଲେ ।
ଶତ୍ରୁଘନ ଯାଇଣ ଶ୍ରୀରାମ ପାଶେ ହେଲା
ଯାଉଛି ବୋଲିଣ ଛାମୁରେ ଜଣାଇଲା ।
ରାମ ବୋଇଲେ ହନୁମନ୍ତ ସୁମନ୍ତ୍ର ସଙ୍ଗେଯାନ୍ତୁ
ମଧୁବନ ହସ୍ତିନାରେ ଛାଡ଼ିଣ ଆସନ୍ତୁ ।
ଏହାଶୁଣି ସୁମନ୍ତ୍ର ରଥ ସାଜି ଆଣି
ଶତ୍ରୁଘ୍ନମାତାଙ୍କୁ ବୋଲେ ବସବଧୂଙ୍କୁ ସଙ୍ଗେଘେନି ।
ଶତ୍ରୁଘନ ହନୁମନ୍ତ ଦୁହେଁ ସେ ବସିଲେ
ସୁମନ୍ତ୍ରୀ ମନ୍ତ୍ରୀଙ୍କି ରଥ ଚଳ ହେ ବୋଇଲେ ।
ରହୁବର ଆରୋହି ଗଲେକ ବେଗ ହୋଇ
ବସନ୍ତ ଖେଚର ରାଗେ ବାଜଣା ବାଜଇ ।
ଅଯୋଧ୍ୟା ଲୋକମାନେ ଯେ ଦେଖନ୍ତି ମହାଶ୍ରଦ୍ଧା
ଚନ୍ଦ୍ରଉଦେ ହେଲାପରି ଦିଶେ ଥାଟ ଶୋଭା ।
ନବର ଜିଣିଯାଇ ସରଜୁ ପାରି ହୋଇ
ଅଗମ୍ୟ ପଥରେ ସେହୁ ପଥ ବହିଯାଇ ।
ଦଶ ଦିନେ ପ୍ରବେଶ ହୋଇଲେ ମଧୁବନେ
ନଗ୍ରରେ ଉତ୍ସବ କରାଇଲେ ଥିଲା ଜନେ ।
ପାତ୍ର ମନ୍ତ୍ରୀ ପଥରୁ ପାଛୋଟି ନେଲେ ଆସି
ମଧୁବନ ନଗ୍ରେ ଯାଇଁ ସମସ୍ତେ ହେଁ ପଶି ।
ନଗ୍ର ପରବେଶରେ ଶୁଭଇ ଶଙ୍ଖଧ୍ୱନି
ହୁଳହୁଳି ଦିଅନ୍ତି ଯେ ସଧବା କାମିନୀ ।
ସମସ୍ତଙ୍କ ଦ୍ୱାରେ ରମ୍ଭାବୃକ୍ଷ ପୂର୍ଣ୍ଣଘଟ
ସିଂହଦ୍ୱାରେ ଯାଇଁ ପରବେଶ ହେଲେ ଥାଟ ।
ଭିତରେ ପଶିଲେ ଯାଇଁ ହୋଇଣ ମୁରାଟ
ସୁମନ୍ତ୍ର ମନ୍ତ୍ରୀ ନେଇ ସମ୍ଭାଳଇ ଥାଟ ।
ମର୍ଦ୍ଦନ ମାଜଣା ଯେ ମଣୋହି ସାରିଲେ
ତାମ୍ବୁଳ ଲାଗି ହୁଅନ୍ତେ ରବି ଅସ୍ତଗଲେ ।
ରାତ୍ର ପ୍ରହରଯାଏ ଆସ୍ଥାନେ ବିଜେକରି
ତହୁଁ ଯାଇ ପଲଙ୍କେ ପହୁଡ଼ି ରାବଣାରି ।

ରଜନୀ ପ୍ରଭାତରୁ ସେ ସାରି ନିତ୍ୟକର୍ମ
ଆସ୍ଥାନେ ବିଜେ କରି କରନ୍ତି ରାଜଧର୍ମ ।
ଏଥୁ ଅନନ୍ତରେ ପୁଣ ଶତ୍ରୁଘନ ରାୟେ
କଳାବତୀ ଜନନୀଙ୍କି ସେଥିରେ ରଖାଏ ।
ଜନନୀଙ୍କି ବୋଇଲେ ତୁମ୍ଭେ ରାଜ୍ୟ ବୁଝ ଏବେ
ପାତ୍ର ମନ୍ତ୍ରୀ ସମସ୍ତ ତୁମ୍ଭ ଆଜ୍ଞାରେ ଥିବେ ।
ମୁଁ ଏବେ ଯାଉଛି ହସ୍ତିନା ପୁର ଦେଶ
ସୁମନ୍ତଙ୍କୁ ବୋଇଲେ ରଥ ଘେନି ଆସ ।
ଏହାଶୁଣି ସୁମନ୍ତ ରଥ ଆଣି କଲେ
ପାଟରାଣୀଙ୍କି ଘେନି ରଥରେ ବସିଲେ ।
ବାଦ୍ୟମାନ ବଜାଇ ବାହାରିଲେ ପୁଣ
ସୈନ୍ୟବଳ ଘେନି ତହୁଁ ଚଳିଲେ ବହନ ।
ହସ୍ତିନା କଟକରେ ଯାଇଁଣ ମିଳିଲେ
ସେ ରାଜ୍ୟ ପାତ୍ରମନ୍ତ୍ରୀ ପାଛୋଟି ଘେନିଗଲେ ।
ସିଂହଦ୍ୱାରେ ଯାଇଁଣ ହେଲେ ପରବେଶ
ରଥ ରୁହାଇଲେ ତହିଁ ଦଶରଥ ଶିଷ୍ୟ ।
ରଥରୁ ଓହ୍ଲାଇଣ ନବରେ ହୋଇଲେ
ସେ ବିଧି ନିତ୍ୟକର୍ମ ସମସ୍ତ ସାରିଲେ ।
ମଣୋହି କରିଣ ସେହୁ ପଲଙ୍କେ ମହୁଡ଼ିଲେ
ପାତ୍ରମନ୍ତ୍ରୀ ସୁମନ୍ତ ଭୋଜନ ସର୍ବେକଲେ ।
ଏଥୁ ଅନନ୍ତରେ ରଜନୀ ଶେଷ ହେଲା
ଶଯ୍ୟା ତେଜି ଉଠିଲେ ଦଶରଥ ବଳା ।
ପାତ୍ର ମଂତ୍ରୀ ସମସ୍ତେ ଦର୍ଶନ କଲେ ଆସି
ରାଜ୍ୟ ଭଲମନ୍ଦ ସବୁ ପୁଛାପୁଛି ହେଲେବସି ।
ଶତ୍ରୁଘନ ବୋଇଲେ ସୁମଂତ୍ର ମୁଖ ଚାହିଁ
ତୁମ୍ଭେ ଦୁଇଜଣ ଚଳିଯାଅ ରାମଚନ୍ଦ୍ର ତହିଁ ।
ଶୁଣି ସୁମଂତ୍ର ହନୁମନ୍ତ ରଥରେ ବସିଲେ
ଅଯୋଧ୍ୟା ରାଜ୍ୟକୁ ବୋଲି ରଥ ଚଳିଦେଲେ
ଏଥୁ ଅନନ୍ତରେ ଶୁଣ ଗୋ ହେମବନ୍ତୀ
ସକଳ ରଷି ଆସି ଅଯୋଧ୍ୟା ମିଳନ୍ତି ।
ଶ୍ରୀରାମ ସିଂହଦ୍ୱାରେ ହେଲେ ପରବେଶ
ପଡ଼ିହାରୀ ଜଣାଇଲା ଶ୍ରୀରାମ ପାଶ ।
ଶୁଣିକରି ଶ୍ରୀରାମ ଉଠି ବିଜେକଲେ
ସିଂହଦ୍ୱାରେ ଯାଇଣ ରଷିଙ୍କି ଦେଖିଲେ ।
ନମସ୍କାର କରିଣ ରଷିଙ୍କି ଘେନିଗଲେ
ସିଂହାସନେ ବସାଇଣ ପୂଜାବିଧି କଲେ ।
ବଶିଷ୍ଠ ପଚାରିଲେ ଶୁଣ ହେ ବ୍ରହ୍ମରଷି
କେଉଁ କାର୍ଯ୍ୟେ ଏଠାକୁ ତୁମ୍ଭେମାନେ ଆସି ।
ବିଶ୍ୱାମିତ୍ର ବୋଇଲେ ଅଇଲୁ ଯହିଁପାଇଁ
ଶ୍ରୀରାମଙ୍କୁ ଭରସା ଆମ୍ଭର ଅଟଇ ।
ଚଉଦ ଭୁବନ ତିନିପୁର ତହିଁ ଜାଣ
ସପତ ସାଗର ଯେ ସପ୍ତଦ୍ୱୀପ ପୁଣ ।
ଏଥିର ଦୁଷ୍ଟ ଅସୁରଙ୍କୁ ନାଶ କଲେ
ଜମ୍ବୁଦ୍ୱୀପ ମଣ୍ଡଳରେ ଅସୁର ରଖିଲେ ।
ଅସୁର ପ୍ରବଳ କଲେ ଯେ ଆମ୍ଭଙ୍କୁ
ଏଥିକି କହୁଛୁ ଆମ୍ଭେ ଶ୍ରୀରାମଚନ୍ଦ୍ରଙ୍କୁ ।
ଶୁଣିକରି ଶ୍ରୀରାମ କହୁଛନ୍ତି ପୁଣ
ଆଉ କେଉଁଠାରେ ଅସୁର ଅଛନ୍ତି ଯେ ପୁଣ ।
ରଷିମାନେ ବୋଇଲେ ଭୂଥମଣ୍ଡଳ ବିଷ୍ଣୁ ପୁର
ଏହା କହି ରଷିମାନେ ହୋଇଲେ ବାହାର ।
ଏଥୁ ଅନନ୍ତରେ ଶୁଣ ଗୋ ହେମବନ୍ତୀ
ଏ ସମୟେ ସୁମନ୍ତ ହନୁମନ୍ତ ଆସି ହୋନ୍ତି ।
ଶ୍ରୀରାମଙ୍କୁ ଦେଖି ହନୁ ପାୟେ ପଡ଼ି ଶୋଇ
ଶ୍ରୀରାମ ବୋଇଲେ ଉଠ ହନୁମନ୍ତ ତୁହି ।
ସେ ରାଜ୍ୟର ବାରତା କିସ କହ ପୁଣ
ମଧୁବନ୍ତ ହସ୍ତୀନାରେ ରାଜା ଶତ୍ରୁଘନ ।
ପାତ୍ର ମନ୍ତ୍ରୀ ଅମନାତ୍ୟ ଚତୁରାଙ୍ଗ ବଳ
ପ୍ରଜାଲୋକମାନଙ୍କର କେମନ୍ତ ବିଚାର ।
ମାରୁତି ବୋଇଲେ ଦେବ ଛଦ୍ମେ ପଚାରୁ
ଶତ୍ରୁଘନ ତୋର ଅଙ୍ଗ ଆମ୍ଭଙ୍କୁ ବିଚାରୁ ।
ଦୁଇ ରାଜ୍ୟ ଲୋକଙ୍କୁ ସେ ପୁତ୍ରପ୍ରାୟେ ପାଳେ
ମାଣକରେ କାହାଣେ ଯେ ଘରକରେ ପଣେ ।
ଏହିପ୍ରାୟେ ତାହାଙ୍କୁ ଯେ ଶ୍ରୀମୁଖଲେଖିଦେଲେ
ଛତିଶ ପାଟକେ ଡାକି ବୁଝାଇ କହିଲେ ।
ବୋଇଲେ ବଣିକାର ଯେତେକ ହାଟକାର
ଜଣକେ ବୋଡ଼ିଏ ମୋତେ ଦେବ ଘାଟକର ।
ମଥୁରାକୁ କଳାବତୀ ଜନନୀ ତୋର ପାଳେ
ଧାରା ବ୍ୟତିରେକେ କେହି କାହାକୁ ନ ବଳେ ।
ଚଉରାଶୀ କୋଟି ଘର ମଥୁରା ନବର
ରାତ୍ର ଦିବସରେ ସେଥି ସର୍ବେ ଯେ ଚହଳ ।
ସେଠାକୁ ତିନିକୋଷ ବୃନ୍ଦାବନ ପୁଣ
ସେଥିରେ ଗୋପପାଟଣା ଗହଳି ଅଟେ ଜାଣ ।

ନବଲକ୍ଷ ଗୋପାଳ ଯେ ସେଥିରେ ଅଛନ୍ତି
ଗୋପାଳୁଣୀମାନେ ସରଲବଣୀ ଘେନିଯାନ୍ତି ।
ତୋର ଜନନୀର ପୁରେ ଦିଅନ୍ତି ଘୃତସରି
ତୋତେ ପ୍ରଶଂସା କରେ କାଶୀରାଜା ଦୁଲାଳୀ
ହସ୍ତୀନା ପଞ୍ଚକଟକ ଏ ରାଜ୍ୟୁ ବାହାର
ଦଶ ଯେ ସାଗରଘର ପଞ୍ଚ କଟକର ।
ବାରସ୍ୱତୀ ଭୁବନକୁ ସେହିପାରେ ଜିଣି
ପାଶରେ ଜାହ୍ନବୀ ଗଙ୍ଗା ବହୁଅଛି ପୁଣି ।
ପ୍ରଭାତରୁ ସନ୍ଧ୍ୟାଯାଏ ଗଙ୍ଗାକୂଳେ ପୂଜା
ସମସ୍ତେ ଭକତି ଅଂଶ ଶୁଣ ହେ ରାମରାଜା ।
ଶୁଣିକରି ଶ୍ରୀରାମ ମନ ସନ୍ତୋଷ କଲେ
ହନୁମନ୍ତ୍ ସୁଷେଣଙ୍କୁ ବହୁତ ପ୍ରଶଂସିଲେ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ଭରତକୁ ଶ୍ରୀରାମ ଡକାଇଲେ କତି ।
ବୋଇଲେ ତୁମ୍ଭେ ଏବେ ବେଗହୋଇ ଚଳ
ଭୃଥମଣ୍ଡଳ ବିଷ୍ଣୁପୁରେ ହୁଅ ମହୀପାଳ ।
ତହିଁରୁ ଦୁଷ୍ଟ ଅସୁରଙ୍କୁ ନିବାରଣ କର
ଏତେବୋଲି ପାଟ ବାନ୍ଧିଲେ ରଘୁବୀର ।
ସୁଷେଣ ହନୁକୁ ବୋଇଲେ ତୁମ୍ଭେ ଦୁହେଁ ଯିବ
ସେ ଦୁଇ ଅସୁରଙ୍କୁ ଯୁଦ୍ଧରେ ମାରିବ ।
ଭୃଥକୁ ମୋର ସେଥିରେ କରାଇବ ରାଜା
ମୋହର ଭୟରେ ଭୃଥ ତନୁକରେ ତେଜ୍ୟା ।
ଚିତ୍ତରେ ବିଋରଇ ମୋ ମାତା ଦୋଷକଲା
ଜାନକୀ ରାମଙ୍କୁତ ବନକୁ ପଠାଇଲା ।
ସେ ଦୋଷରୁ ଶ୍ରୀରାମ ମୋହଠାରେ ରାଗୀ
ଏମନ୍ତ ପ୍ରତିଦିନ ଚିନ୍ତାରେ ଭୃଥ ଭାଜି ।
ଋରିଭାଇ ଏକଅଙ୍ଗ ଅଟୁ ଆମ୍ଭେ ପୁଣ
ସୀତୟା ଋରିଭଗ୍ନୀ ଏକଅଙ୍ଗ ଜାଣ ।
ଜାନକୀ ଅଟେ କମଳା ମୁଁ ଅଟେ ବାସୁଦେବ
ମୋହର ଅଙ୍ଗଗୋଟି ହେଲା ପାଞ୍ଚଭାଗ ।
କମଳାର ଅଙ୍ଗଗୋଟି ପାଞ୍ଚରୂପ ହେଲା
ଋରିଭଗ୍ନୀ ଋରିରୂପ ଏକ ଧରାବତୀ ପରା ।
ମୋ ପାଞ୍ଚରୂପ ଆମ୍ଭେ ଋରିଭାଇ ଋରିରୂପ
ଆଉ ପର୍ଶୁରାମ ଅଟନ୍ତି ମୋହର ଅଂଶରୂପ ।
ହେତୀ ଯେ ପ୍ରହେତୀ କଶ୍ୟପଙ୍କର ନାରୀ
କଉଶଲ୍ୟା କଇକେୟା ଅଟନ୍ତି ଏକପରି ।

ଦଶରଥ ମହାରାଜା ଅଟନ୍ତି କଶ୍ୟପ
ତାର ବୀର୍ଯ୍ୟେ ଦେବତାଏ ହୁନ୍ତି ସର୍ବେଜାତ ।
ଦୁଇନାରୀ ଗର୍ଭରୁ ଯେ ସମସ୍ତେ ଜାତହେଲେ
ଏବେ ସେ ଦୁଇଜଣ ମନୁଷ୍ୟ ରୂପଧରେ ।
ତାଙ୍କ ଅଂଶେ ସାତଶ ପଋଶ ନାରୀଗଣ
ଏକାଳେ ଦଶରଥ ସବୁ ଭୋଗ କରନ୍ତି ଜାଣ ।
ସର୍ବ ଜନନୀ ମୋର ଏକ ସମତୁଲ
ମୋର ଉପରେ ସମସ୍ତଙ୍କର ଅଧିକାର ।
ସେ ଯେଣେ ପେଶିବେ ମୁହିଁ ଯିବି ତେଣେ
ମୋହର ଶରୀର ସିନା ଅର୍ଜିଲେ ସେମାନେ ।
ଆହୁରି କଥାଏ ବାବୁ ଶୁଣରେ ହନୁମନ୍ତ୍
ଲକ୍ଷ୍ମଣ ଜାନକୀ ଗଲେ ମୋ ସଙ୍ଗେ ବନସ୍ତ ।
ଶ୍ୟାମ ବଟକୁ ଆମ୍ଭେ ଗଙ୍ଗାକୂଳରେ ଯାଇଁ
ଦର୍ଶନ କଲୁଁ ଆମ୍ଭେ ମୂଳରେ ଛିଡ଼ାହୋଇ ।
ସେଠାରେ ବିଋରିଲୁଁ ସର୍ବ ଜନନୀ ଥାନ୍ତୁଭଲେ
ବହୁତ ଯଶ ହେବ ତାହାଙ୍କ ସକାଶରେ ।
ଜାନକୀ ବିଋରିଲା ମୋର ଦିଅର ତିନି
ମୋ ସ୍ୱାମୀର ପ୍ରାୟେ ରାଜା ହୋଇବେ ମେଦିନୀ ।
ମୋହର ପ୍ରାୟେ ରାଣୀ ମୋର ଭଗ୍ନୀ ହୋନ୍ତୁ
ଅଯୋଧ୍ୟାକୁ ବଳିଣ ସେ ଯେ ଦେଶ ପାନ୍ତୁ ।
ବନସ୍ତେ ଗଲା ଉତ୍ତାରୁ ନାହିଁ ତର ଛଳ
ସେଦିନୁ ଜଣାଗଲା ସମସ୍ତେ ଏକମେଳ ।
ଲକ୍ଷ୍ମଣ ବିଋରିଲେ ସେ ବଟମୂଳେ ଥାଇ
ଯେତେଦିନ ରାମସୀତା ଥିବେ ରହି ।
ତେତେଦିନ ପରିଯନ୍ତେ ନପୁଂସକ ହେବି
ନିଦ୍ରା ଆହାର ମୁଁ କେବେହେଁ ନ କରିବି ।
ପୁଣି ବିଋରିଲା ମୁଁ ଅଇଲେ ଅଯୋଧ୍ୟାକୁ
ପୁରୁଷ ପଣ ହେବ ରଖିଲେ ଭାରିଯାକୁ ।
ଲକ୍ଷ୍ମଣ ଯେତେବେଳେ ମୋର ସଙ୍ଗେ ଗଲା
ତାହାର ନାରୀପୁଣ ମନରେ ବିଋରିଲା ।
ବୋଇଲା ମୋର ସ୍ୱାମୀ ଭେଟହେବା ଯାଏ
ନପୁଂସକ ଲକ୍ଷଣେ ମୋର ଦିନଯାଏ ।
ଚଉଦ ବରଷ ଯାଏ ନୋହିଲା ରଜସ୍ୱଳା
ସ୍ୱାମୀକି ଦେଖିବାରୁ ସ୍ୱଭାବ ହେଲା ତୋରା ।
ଏମନ୍ତ ପ୍ରକାରେ ଆମ୍ଭେ ଅଟୁଁ ଋରିଭାଇ
ଏକ ଅଙ୍ଗ ଗୋଟିକରେ ମାୟା ମୋର ନାହିଁ ।

ଶୁଣିଣ ଭ୍ରଥ ମାରୁତି ଶୋଇଲେ ପାୟେ ପଡ଼ି
ଉଠିଣ ଭରଥ କହିଲେ କରଯୋଡ଼ି ।
ମାୟାକଥା ଦେବ ଏଠାରୁ ଦୂର ହେଲା
ହୃଦୟରୁ ଚିନ୍ତା ମୋର ଛାଡ଼ି କେଣେ ଗଲା ।
ତୁମ୍ଭେ ମୋତେ ରାଜା କଲ ସେକଥା ଉଚିତ
ଆଗେ ରାଜା କଲେ ଜନକ ଦୋହୀତ ।
ଏତେ କହି ଭରଥ ବେଗେ ଚଳିଗଲେ
ଜାନକୀର ଅନ୍ତଃପୁରେ ପ୍ରବେଶ ଯାଇଁହେଲେ ।
ଦେଖିଲା ମାଜଣା ହେଉଛି ଦେବୀ ସତୀ
ଋରିପାଶେ ଦାସୀଗଣ ବେଢ଼ିଣ ଅଛନ୍ତି ।
ଭ୍ରଥକୁ ଦେଖି ସତୀ ବସନ ଦେଲେ ଦେହେ
ଚରଣ ତଳେ ଭ୍ରଥ ଓଳଗିଣ ଶୁଏ ।
ଜାନକୀ ବୋଇଲେ ଉଠ ଭ୍ରଥ ବେଗ
ରାଘବଙ୍କ ଆଜ୍ଞାରେ ଚଳଯାଇଁ ବେଗ ।
ଶୁଭ ଅନୁକୂଳରେ ଯଶ ଯାଇ କର
ଦୁଇଗଡ଼େ ରାଜା ହୋଇ ପରଜା ପ୍ରତିପାଳ ।
ଦୁଇ ସହସ୍ର ବର୍ଷ ଯେ ଏଠାରେ ଦିନ ଗଲେ
ଏବେ ତ ରାମଚନ୍ଦ୍ର ତୁମ୍ଭଙ୍କୁ ଦୟାକଲେ ।
ଆଠ ସହସ୍ର ସାତଶ ବରଷ ରାଜା ହୋଇ
ପୁତ୍ରମାନ ରାଜାକରି ଆସିବ ଏ ଭୂଇଁ ।
ଯେତେବେଳେ ସମସ୍ତେ ଯେ ଏକମେଳ ହେବ
ବୈକୁଣ୍ଠକୁ ତେତେବେଳେ ଗମନ କରିବ ।
ଆଗ ମୁହିଁ ଯିବି ମୋ ପଛେ ଲକ୍ଷ୍ମଣ
ତୁମ୍ଭେ ତିନିଭାଇ ଯିବ ଲକ୍ଷ୍ମଣ ପଛେଣ ।
ଭରଥ ବୋଇଲେ ମୋତେ ସୁଦୟା ବାରେ କର
ଦୁଇଜଣଙ୍କର ଦାସ ମୁଁ ଅଟେ କିଙ୍କର ।
ଆଗେ ବଟମୂଳେ ଯେଉଁ କଥା ବାଞ୍ଛା କଲୁଁ
ଏବେ ଠାକୁରାଣୀ କି ସେ କଥା ପାଶୋରିଲୁ ।
ଜାନକୀ ବୋଇଲେ ମୋର ମନୋରଥ ପୂର୍ଣ୍ଣ
ଆଉ କେଉଁ କଥା ତୋର ମନରେ ଅଛିଜାଣ
ଭରଥ ବୋଇଲେ ମୋର ଶିରରେ ବାନ୍ଧପାଟ
ଜାନକୀ ବୋଇଲେ ସେ କଥା ନୁହଇ ଉଚିତ ।
ରାଘବ ଠାକୁର ପୁଣି ସମସ୍ତଙ୍କ ସ୍ୱାମୀ
ସେହି ପାଟ ବାନ୍ଧିଛନ୍ତି ତୋ ଶିରେ ପୁଣି ।
ଏତେ ବୋଲି ଜାନକୀ ଯେ ସନ୍ତୋଷ ମନରେ
ପଞ୍ଚବର୍ଣ୍ଣ ମାଳାଦେଲେ ଭରଥ ଗଳାରେ ।

ଦେଖିଣ ଭରଥ ବୀର ନମସ୍କାର କଲା
ସୀତାରାମ ସୀତାରାମ ତୁଣ୍ଡରେ ଉଚ୍ଚାରିଲା ।
ଶୁଭ ଅନୁକୂଳରେ ଭରଥ ବାହାର
ଶ୍ରୀରାମ ଚରଣେ ଭ୍ରଥ କରେ ନମସ୍କାର ।
ମେଲାଣି ମାଗିଣ ସେହୁ ବେଗ୍ରରେ ଗଲା
କଣେୟର ରଥ ସାଜି ସୁମନ୍ତ ଆଣିଲା ।
ସେ ରଥ ଉପରେ ଯେ ବସିଲେ ଭ୍ରଥ ବୀର
କୋଦଣ୍ଡ ଦୁଇଗୋଟି ଯେ ରଖିଲେ ପାଶର ।
ସେ ରଥ ଭୂଷଣ ଯେ ହୋଇଛି ଅତି ଶୋଭା
ତିନିପୁରେ ମୋହୁଅଛି ତେଜରେ ତାର ପ୍ରଭା ।
ଶ୍ରୀରାମ ଯେ ସେହ୍ନାପତି ଯୁଥପତି ଡାକି
ମାରୁତି ସୁଷେଣଙ୍କୁ କହିଲେ ରାମ ହାକି ।
ବୋଇଲେ ତୁମ୍ଭେମାନେ ଭରଥ ସଙ୍ଗେ ଚଳ
ଅସୁରକୁ ମାରିଣ ଭରଥ କର ମହୀପାଳ ।
ଶୁଣିକରି ମାରୁତି ସୁଷେଣ ସଙ୍ଗେ ଗଲେ
ଯୁଥପତି ସେନାପତି ସଙ୍ଗତରେ ନେଲେ ।
କଣୟର ରଥପରେ ତଳ ପୀଢ଼ରେ ବସି
ରାମଚନ୍ଦ୍ର ବିଜେକଲେ ସିଂହଦ୍ୱାର କତି ।
ରଥପରେ ଭରଥ ଯେ ନମସ୍କାର ହେଲା
ଏ ସମୟରେ ସୁମନ୍ତ ରଥକୁ ବାହିନେଲା ।
ଅଯୋଧ୍ୟାରେ ନରନାରୀ ଦେଲେ ହୁଳହୁଳି
ରାମତାଳି ଶବଦରେ ଦାଣ୍ଡଯାକ ପୁରି ।
ନରନାରୀ ବିଋରିଲେ ଶ୍ରୀରାମ ସୁଦୟାରେ
ତିନିଭାଇ ରାଜାହେବେ ଅନ୍ୟ ଯେ ଦେଶରେ ।
ଶତ୍ରୁଘନ ରାଜାହେଲେ ହସ୍ତିନା ମଧୁବନ
ଭରଥ ଯାଉଅଛି ରାଜା ହେବାକୁ ପୁଣ ।
ଏମନ୍ତ ବିଋର କରନ୍ତି ନରନାରୀ
ଚଳଇ ରହୁବର ଗର୍ଜନ ନାଦ କରି ।
ସେଦିନ ଗଙ୍ଗାକୂଳେ ସିଂହିକା ନାମେପୁର
ଗୁହନାମେ ଶବରର ଅଟେ ସେ ନବର ।
ସେହିଠାରେ ରଜନୀରେ ରହିଲେ ଯାଇଁ ଭ୍ରଥ
ଗୁହ ନାମେ ଶବର ହୋଇଲା ଉପଗତ ।
ନମସ୍କାର କରିଣ କୁଶଳ ପଋରି
ସର୍ବ କଥା ଭଲ ବୋଲି ଭରଥ କହେ ତାରି ।
ଅସୁର ପ୍ରବଳ ଆମ୍ଭେ ଯାଉଛୁଁ ମାରିବାକୁ
ରାଘବ ଆଜ୍ଞାଦେଲେ ମୋତେ ସେ ଯିବାକୁ ।

ରଥରୁ ଓହ୍ଲାଇ ସର୍ବେ ଗଙ୍ଗା ସ୍ନାନ କଲେ
ସନ୍ଧ୍ୟା ସୁମରିଣ ରଥ ପରେ ମିଳେ ।
ଶବର ଚଳିଯାଇ କହିଲା ତାର ଘରେ
ଶ୍ରୀରାମ ଭାଇ ଯେ ଆମ୍ଭର ନବରେ ।
ଶୁଣିଣ ଶବରାଣୀ ସମ୍ଭର୍ବ ଘେନି ମିଳି
ଭରଥ ଚରଣରେ ଶୋଇଲା ପାୟେ ପଡ଼ି ।
ଭରଥ ବୋଇଲେ ଯେ ଧର୍ମରେ ଅଟେ ଶ୍ରେଷ୍ଠ
ମୋର ସ୍ୱାମୀ ରଘୁନାଥ ତୋର ସଙ୍ଗେ ମିତ୍ର ।
ଶବର ବୋଇଲେ ତୁମ୍ଭେ ତ୍ରୈଲୋକ୍ୟ ଅଧିପତି
ଘରିଭାଇ ଏକଅଙ୍ଗ ପ୍ରାୟେ ମୋତେ ଦିଶନ୍ତି ।
ଭରଥ ବୋଇଲେ ଆଜ ବେଶତ ନାଶ ଗଲା
ଶବରଣୀ ବୋଲେ ମୋର ପୂର୍ବଭାଗ୍ୟ ଥିଲା ।
ଭରଥ ବୋଇଲେ ତୋର ପୂର୍ବଭାଗ୍ୟ କହ
ଶବରଣୀ ବୋଲେ ଘରଣୀ ଭାଉଜ ଛାଡ଼ିଲ ପ୍ରିୟ ।
ଦେବାଳ ବେଶ ତାଙ୍କର ଯେବେ ନାଶଗଲା
ବନ ମନୁଷ୍ୟର ସିନା ଫୁଲ ଗଭା ମଲା ।
ଭରଥ ବୋଇଲେ କିସ ଆଣିଛୁ ଖାଇବାକୁ
ଶବରଣୀ ବୋଲେ ସକ୍ଷ ନାହିଁ ଯେ ଦେବାକୁ ।
ତୋର ଘରପଦାର୍ଥ ତୁମ୍ଭେ ମୋତେ ସମ୍ପାଦିନେଇଭୁଞ୍ଜ
ତୁମ୍ଭମନେ ଯାହାଅଛି ତୁମ୍ଭେ ମୋତେ ଗଞ୍ଜ ।
ଯେଉଁ ଦ୍ରବ୍ୟ ଆଣିଥିଲା ଶବରଣୀ ପୁଣ
ମାରୁତି ଯାଇଣ ତାହା ଆଣିଲା ବହନ ।
ସମସ୍ତେ ବସିଣ ଭୋଜନ ତହିଁ କଲେ
ଅମୃତ ଭୋଜନ କରି ହସ୍ତ ପଖାଳିଲେ ।
ବିଡ଼ିଆ ଭୁଞ୍ଜିଣ ସର୍ବେ ମନରେ ହେଲେତୋଷ
ରଥପରେ ଶୟନ କଲେକ ଭରଥ ।
ଶୟନ କରିବାରୁ ଶବରଣୀ ଗଲା
ଶବର ଜଗିବସି ରଜନୀ ପୁହାଇଲା ।
ରଜନୀ ଶେଷରେ ଭରଥ କହେ ପୁଣ
ଥାଅ ଯାଉଅଛୁଁ ବୋଲି ଗଲେକ ବହନ ।
ଭୁଥ ଖଣ୍ଡ ମଣ୍ଡଳରେ ଉତ୍କଳ ଦେଶରେ
ଭରଥ ନାମେ ନଗ୍ରରେ ପ୍ରବେଶ ହେଲେ ଖରେ ।
ବନଭାଗେ ରହିଣ ମାରୁତିକି ଭେଦିଲେ
ରାଜାର ନବର ମୋତେ ବୁଝିଣ କହଭଲେ ।
ଶୁଣିକରି ମାରୁତି ବେଗେ ଚଳିଗଲା
ରାଜାର ନବରେ ପଶି ସକଳ ବୁଝିଲା ।
ରାଜନ ଯାଇଛି ଶ୍ରୋଣିତ ନବର
ବଡ଼ଭାଇ ତାର ଯେ ଅଟେ ବାଣାସୁର ।
ଭାଇକି ଦେଖିବା ନିମନ୍ତେ ପୁଣ ଗଲା
ତ୍ରିଶୂଳ ଗୋଟିକ ଘରେ ରଖିକରି ଗଲା ।
ତାହା ଶୁଣି ହନୁ ଯେ ଅଇଲା ଖରରେ
ଭରଥର ଆଗରେ କହିଲେ ସତ୍ୱରେ ।
ବୋଇଲା କେଶୀସୁର ଶ୍ରୋଣିତପୁରଯାଇ
ତ୍ରିଶୂଳ ଗୋଟିକ ସଙ୍ଗରେ ନେଇନାହିଁ ।
ଶୁଣିଣ ଭୁଥବୀର ବେଗେ ଚଳିଗଲା
ଗଡ଼ର ସିଂହଦ୍ୱାରେ ଯାଇଁଣ ମିଳିଲା ।
ମାରୁତିକି ଘେନିଣ ପଶିଲା ଭିତରେ
ଶତେ କବାଟ ଫିଟାଇ ତ୍ରିଶୂଳ ଧରେ କରେ ।
ତ୍ରିଶୂଳ କରେ ଧରି ବେଗରେ ସେ ଚଳି
ଦ୍ୱାରପାଳମାନେ ଯେ ନିରୋଧ ବେଗେ କରି ।
ମାରୁତି ଦେଖିଣ ଯେ ସବୁଙ୍କୁ ନାଶକଲା
ପଥର ଶିଳା ଉପରେ ନେଇ କଚାଡ଼ିଲା ।
ରଥର ଉପରେ ଯେ ଉଠିଲେ ଯାଇଁକରି
ତ୍ରିଶୂଳକୁ ଧରିଣ କଚାଡ଼ି ଦେଲେ ଭିଡ଼ି ।
ତ୍ରିଶୂଳ ବୋଲେ ନାଶ ନ କର ତୁମ୍ଭେ ମୋତେ
ନିୟମ କରିଣ ମୁଁ କହୁଅଛି ତୋତେ ।
ହର ପାର୍ବତୀର ମୋତେ ରାଣ ହେଉ
ହେଲେ ନ ଆସିବି ପ୍ରମାଣ ମୋର ଥାଉ ।
ଭେଦ ମୋତେ କପିଳାସି ଯିବି ମୁଁ ହରପାଶ
ବର ଦେବାର ତାର ହୋଇଲାଣି ନାଶ ।
ଅସୁରକୁ ଦେଲା ବେଳେ ସଦାଶିବ କହି
ଭରଥ ଛୁଇଁଲେ ଆସିବୁ ବେଗହୋଇ ।
ବଳରାମ ଦାସ ସେ କଥା ଜାଣି ପୁଣ
ହର ପାର୍ବତୀଙ୍କ ଚରଣରେ ମୁଁ ଶରଣ ।
ଏଥୁ ଅନନ୍ତରେ ଯେ ଶାକମ୍ଭରୀ ଶୁଣ
କେଶୀସୁର ଅଇଲା ଯେ ଶ୍ରୋଣିତ ପୁରୁ ପୁଣ
ଘର ଜଣାଇଲା ଦେବ କେଉଁ ଦେଶ ଦଣ୍ଡଧର
ଆସିଣ ବହୁତ ସେ କରଇ ସମର ।
ଏହା ଶୁଣି କେଶୀସୁର ବୃକ୍ଷେକ ଉପାଡ଼ିଣ
ଧାଇଁଲା ଅତିବେଗେ ଗର୍ଜନ କରିଣ ।
ବୋଇଲାରେ ମାନବା ନ ଜାଣୁ କି ମୋତେ
ମରିବାକୁ ତୋରରେ ଭୟ ନାହିଁ ଚିତ୍ତେ ।

ଏତେବୋଲି ବୃକ୍ଷ ଆଣି ପିଟିଲା ଉପରେ
ତୀକ୍ଷ୍ଣ ଶରେ ଭ୍ରଥବୀର ତାହା ସେ ନିବାରେ ।
ଏସନକ ସମୟେ ହନୁମନ୍ତ ଧାଇଁ
ଅତିବଡ଼ି ଶାଳବୃକ୍ଷ ଉପାଡ଼ି ଅଣାଇ ।
ନେଇଣ ପିଟିଲା ସେ ସୈନ୍ୟଙ୍କ ଉପରେ
କେତେମଲେ କେତେ ତହିଁ ପକାଇଲେ ଖରେ ।
ଏଣେ ଅସୁରକୁ ଭ୍ରଥବୀର ଗଦାମାରି
ତତକ୍ଷଣେ ଅସୁର ହୋଇଲାକ ଧୂଳି ।
ତାହା ଦେଖି ପାତ୍ର ମନ୍ତ୍ରୀ ସମସ୍ତେ ଅଇଲେ
ଭରଥ ଚରଣରେ ଓଳଗି ଶୋଇଲେ ।
ଦେଖିକରି ଭରଥ ବୋଇଲେ ବେଗେ ଯାଅ
ରଜନୀ ହୋଇଲା ଆସି ଉଜ୍ୱଳ ଲଗାଅ ।
ତାହାଶୁଣି ପାତ୍ର ମନ୍ତ୍ରୀ ବେଗେ ଚଳିଗଲେ
ଦିହୁଡ଼ି ହୁଳାମାନ ଆଣି ଲଗାଇଲେ ।
ହାଟ ଦାଣ୍ଡ ଗହଳ ଯେ ଲାଗିଲା ପୂର୍ବ ପରି
ରଜନୀ ହୁଅନ୍ତେ ଲାଗିଲା ଦୀପାବଳି ।
ଆଲୋକମୟ ଯେ ଦିଶିଲା କଟକ
ହାଟ ବାଟ କଲେ ନଗ୍ରଯାକ ଲୋକ ।
ହାତୀ ରଥୀ ସାରେଣୀ ଗାଈ ଯେ ମଇଁଷୀ
ଏମାନଙ୍କୁ ଘେନିଣ ସମ୍ଭାଳ କଲେ ଆସି ।
ଘୋଡ଼ାଶାଳେ ଘୋଡ଼ାରଖି ହାତୀଶାଳେ ହାତୀ
ସାରେଣୀଶଳେ ନେଇ ସାରେଣିକୀ ରଖି ।
ନିଶ୍ଚିନ୍ତେ ରଥୀ ପଦାତି ରହିଲେ ନିଜପୁରେ
ଗୋପାଳମାନେ ଗୋରୁ ମଇଁଷୀ ରଖୁଆଳେ ।
ବେଶ୍ୟା ସ୍ତିରୀମାନେ ଯେ ବେଶ ହୋଇ ବୁଲି
ନୃତ୍ୟକାରୀମାନେ ବସି ନୃତ୍ୟ ସେହୁକରି ।
ଯୁବାସ୍ତିରୀମାନେ ହେଲେ ବେଶ ପୁଣ
ବୃଦ୍ଧା ନାରୀମାନେ ଭଜେ ରାମନାମ ।
ଶୁଆ ସାରୀମାନେ ଶବଦ ତହିଁ କଲେ
ନାରାୟଣ ନାମ ତୁଣ୍ଡରେ ଉଚ୍ଚାରିଲେ ।
ସେବାକାରୀମାନେ ଯେ ଯାହା ନିଯୋଗରେ
ନୀଚ ଲୋକମାନେ ରହିଲେ ନିଶ୍ଚିନ୍ତରେ ।
ଦେବଆଳେ ଶଙ୍ଖ ଶବଦ ପୁଣି ହେଲା
ପାତ୍ର ମନ୍ତ୍ରୀ ସାମନ୍ତ ସମସ୍ତେ ସୁସ୍ଥ ପରା ।
ପୂର୍ବର ପ୍ରାୟେ ଆନନ୍ଦ ହେଲା ସେହୁପୁରୀ
ଅସୁର ଭୟଛାଡ଼ି ସମସ୍ତେ ବୋଲେ ହରି ।

ସମସ୍ତେ ସୁସ୍ଥହେଲେ ରଜନୀରେ ପୁଣ
ପୂର୍ବର ପ୍ରାୟେ କଟକ ଦିଶେ ଶୋଭାବନ ।
ଶର୍ବରୀ ଶେଷରେ ପାତ୍ର ମନ୍ତ୍ରୀ ଯେ ସାମନ୍ତ
ଭ୍ରଥର ଆଗରେ ଆସି ହେଲେ ଉପଗତ ।
କରଯୋଡ଼ି କହିଲେ କୈକେୟି ଛାମୁରେ
ନିଶ୍ଚଳେ ରହିଲେ ସର୍ବେ ରଜନୀ ଭିତରେ ।
ବୟାଳିଶ ସାଗର ଘର ଅଟେ ଦେବ ଏଥି
ବାଆନ ବଡ଼ଦାଣ୍ଡ ସେଥିରେ ଦେବ ଅଛି ।
ତୋର ସହସ୍ର କନ୍ଦି ବିକନ୍ଦି ତିନିସସ୍ର
ହାଟ ବାଟ ଦାଣ୍ଡ ଯେ ଏଥିରେ ବହୁତ ।
ବାରଯୂଣ ପରିଯନ୍ତେ କଟକ ହୋଏଲଗା
ମଧ୍ୟରେ ଗଡ଼ଗୋଟି ଅଛି ଯେ ଅଲଗା ।
ଚଉରିପାଖେ ରସାଣ ଯେ ପାଚେରୀଅଛି ବେଢ଼ି
ଦୁଇଯୂଣ ଉଚ୍ଚ ଯେ ଯୂଣେ ଓସାର କରି ।
ଚିକ୍କଣରେ କାନ୍ଥ ତେଲପରାୟେ ଦିଶେ ଶୋଭା
ଭିତରେ ସୁବର୍ଣ୍ଣ ପୁର ଦେବତାଙ୍କୁ ଲୋଭା ।
ସାତଗୋଟି ଜଗତୀ ଯେ ଅନ୍ତଃପୁରେ ପୁଣ
ବାହାରେ ବାର ଜଗତୀ ଶୁଣହେ ନୃପରାଣ ।
ଅନେକ ବିପୁଳ ଅଛି ଘର ଭିତରେ ଜାଣ
ଲକ୍ଷେକ ଭଣ୍ଡାରଘର ରତ୍ନରେ ନିର୍ମାଣ ।
ହୀରା ନୀଳା ମୋତି ଯେ ଅଚଳାଚଳ ଧନ
ନଉସସ୍ର ଭଣ୍ଡାର ମୁଦ ଯେ ଅଛି ଜାଣ ।
ଦଶସସ୍ର ଭଣ୍ଡାର ମେଲାରେ ଆତଯାତ
ଦେବା ନେବା ହୁଅଇ କାର୍ଯ୍ୟରେ ଲାଗିଲେତ ।
ଦୁଇଲକ୍ଷ ଘର ଯେ ଅଟେ ଆଠଯୂଣ
ବାହି ଗୋଟିକ ଦୁଇଯୂଣ ଯେ ପ୍ରମାଣ ।
ଚଉରିପାଖେ ପର୍ବତ ଯେ ଅଛି ତିନି ବେଢ଼
ଦୁଇଗୋଟି ଦୁଆର ଯେ ଆଉସବୁ ଗାଢ଼ ।
ଭରଥ ବୋଇଲେ ପଛେ ଦେଖିବା ନବର
ମାହାରକୁ ଡକାଇ ଉଜ୍ୱଳ ବେଗକର ।
ରଣଭୂମି ହୋଇଛି ଗଡ଼ର ଚଉରିପାଖ
ଉଜ୍ୱଳ କରିଣ ବେଗେ ଚନ୍ଦନ ପାଣିସିଞ୍ଚ ।
ଶୁଣିଣ ପାତ୍ରମନ୍ତ୍ରୀ ଯେ କୋକିଷ୍ଟ ଡକାଇଲେ
ରଣଭୂମି ଗୋଟାକୁ ନିର୍ମଳ କରାଇଲେ ।
ଚୂନପାଣି ଗୋମୟ ସିଞ୍ଚିଲେ ନେଇଣ
ପବିତ୍ର ହୋଇଲେ ସ୍ଥାନ ବିରାଜେ ଜ୍ୟୋତିର୍ବର୍ଣ୍ଣ ।

ଗଡ଼ର ଚଉରିପାଶ ଭରଥ ବେଗେ ବୁଲି
ତିନିଦ୍ୱାର ପକାଇଣ ଅର୍ଗଳୀ ଦେଲେ କିଳି ।
ମନ୍ତ୍ରୀକି ବୋଇଲେ ଆଣ ଚତୁରଙ୍ଗ ବଳ
କଟକର ବେନିଦ୍ୱାରେ ଜଗନ୍ତୁ ସୈନ୍ୟବଳ ।
ଗଡ଼ର ଚଉରିଦ୍ୱାରେ ପୁଣି ରହନ୍ତୁ ହସ୍ତୀଅଶ୍ୱ
ପଦାତି ସରଦାର କରନ୍ତୁ ବାଦ୍ୟଘୋଷ ।
ଶୁଣିଣ ପାତ୍ର ମନ୍ତ୍ରୀ ବେଗେ ଚଳିଗଲେ
ଚତୁରାଙ୍ଗ ବଳ ଶୁଣିଣ ସଜହେଲେ ।
ବାରସାଗର ପଦାତ ସର୍ଦ୍ଦାର ସେହ୍ନାପତି
ଘେନିଣ ପାତ୍ର ମନ୍ତ୍ରୀ ଚଳିଣ ଯାଆନ୍ତି ।
ଭରଥ ଆଗରେହେଲେ ପରବେଶ
ଦେଖିଣ ଭରଥ ଯେ ହୋଇଲେ ହରଷ ।
ସେହ୍ନା ଯୁଥପତି ରଥୀ ସରଦାର
ଶାଢ଼ୀ ଦେଲେ ତାଙ୍କୁ ଦଶରଥ କୁମର ।
ବୋଇଲେ ଆଠସାଗର ଘାଟର ଦ୍ୱାରେଯାଅ
ଦ୍ୱାର ଜଗିରହ ଯେ ନିରୋଧ ନ ଦିଅ ।
ଆସନ୍ତା ଆସିବେ ଯାଆନ୍ତା ଯାଉଥିବେ
ଦାଣ୍ଡହାଟ ଚଳୁଥିବେ ନିରୋଧ ନୋହିବେ ।
ଚଉରିସାଗର ଥାଟକୁ ଦେଲେ ଭ୍ରଥ କହି
କଟକର ଗଡ଼କୁ ଜଗି ରହନ୍ତୁ ଯାଇ ।
ଶୁଣିକରି ସମସ୍ତେ ମେଲାଣି ହୋଇଗଲେ
ରାଜା ଆଜ୍ଞାରେ ଘାଟବାଟ ଯେ ଜଗିଲେ ।
ଗଡ଼ର ଚଉରିପାଖେ ବେଢ଼ିଣ ପୁଣି ରହି
ବାଜଣା ଶବଦରେ ଦଶଦିଗ ଗିରି ଚମକଇ ।
କେଉଁ ଘର ଗୋଟି ଯେ ପିତଳରେ ଜଡ଼ିତ
କେଉଁଘର ସୁବର୍ଣ୍ଣ ଯେ କେଉଁଘର ରତ୍ନ ।
କେଉଁଘର ରଙ୍ଗବର୍ଣ୍ଣ ଦିଶେ କେ ଧବଳିତ
ସମସ୍ତ ପୁର ବୁଲି ଦେଖିଲେ ଭରଥ ।
ନାରଦଙ୍କୁ ସୁମରଣା କଲେ ଭ୍ରଥ ବୀର
ଲକ୍ଷେ ଋଷି ଘେନି ନାରଦ ମିଳିଲେ ପାଶର ।
ଦେଖିକରି ଭରଥ ନମସ୍କାର କଲା
ସୁକଲ୍ୟାଣ କଲେ ବ୍ରହ୍ମାଙ୍କର ବଳା ।
ବୋଇଲେ ଭରଥ ହେ ଶୁଣ ଆତ୍ମବାଣୀ
କେଉଁ କାର୍ଯ୍ୟେ ସୁମରିଲ କହ ମୋତେ ପୁଣି ।
ଭରଥ ବୋଇଲେ ଦେବ ଏପୁର ପବିତ୍ର
କଲେ ସିନା ମୁହିଁ ରହିବି ନିଶ୍ଚିନ୍ତ ।

ଶୁଣିକରି ମୁନିମାନେ ସନ୍ତୋଷ ହୋଇଲେ
ସୁରଭୀଙ୍କି ସୁମରଣା ମୁନିମାନେ କଲେ ।
ଅଇଲା ସୁରଭୀ ଯେ ହେଲେ ତୋଷମନ
ସକଳ ପୁର ପବିତ୍ର କଲେ ଋଷି ଜାଣ ।
ସେହ୍ନା ଯୁଥପତି ପାତ୍ରମନ୍ତ୍ରୀ ଜାଣ
ସମସ୍ତେ ସ୍ନାନ କଲେ ପୁଷ୍କରିଣୀରେ ପୁଣ ।
ଦେବାର୍ଚ୍ଚନ ବିଧି ଯେ ଭରଥ ସାରିଲେ
ତିଳକ ଲାଗି ହୋଇ ସେଠାରୁ ଉଠିଲେ ।
ଲକ୍ଷେକ ମୁନି ଯେ ଭୋଜନ ସେଥି କଲେ
ଛଡ଼ରସେ ଭୋଜନ ସୁରଭୀ ଆଣିଦେଲେ ।
ସନ୍ତୋଷ ହୋଇଣ ମୁନି ଗଲେ ଯେଯାହା ସ୍ଥାନ
ଭଣ୍ଡାର ଫେଡ଼ି ରତ୍ନ ଦେଲେକ ଭ୍ରଥ ପୁଣ ।
ସୁରଭୀ ଚଳିଗଲା ଯେ ଗୋମତୀ ଭୁବନ
ପାତ୍ର, ମନ୍ତ୍ରୀ, ସେହ୍ନାପତି ଯୁଥପତି ଜାଣ ।
ଏମାନଙ୍କୁ ଘେନି ଭ୍ରଥ ଭୋଜନ ତହିଁ କଲେ
ପଲଙ୍କ ସୁପାତିରେ ସମସ୍ତେ ଶୋଇଲେ ।
କେତେବେଳେ ଉତ୍ତାରୁ ଉଠିଲେ ଭ୍ରଥ ବୀର
ସମସ୍ତେ ଉଠିଣ ତହୁଁ କଲେ ନମସ୍କାର ।
ଟମକ ଭୋଡ଼ଙ୍ଗ ଯେ ବାଦ୍ୟର ନିଶାଣ
ଶବଦରେ ମେରୁଗିରି ଚମକୁଛି ପୁଣ ।
ପାତ୍ର ମନ୍ତ୍ରୀ ଭରଥଙ୍କୁ ରାଜା ବେଶ କରି
ଅଷ୍ଟରତ୍ନ ମଣ୍ଡିଲେ ଶରୀରେ ତାଙ୍କରି ।
ଶିରରେ ଜରୀ ପାଗ ଅଙ୍ଗରେ ଜ୍ୟୋତି ଜାମା
ନୂପୁର କଙ୍କଣ ଯେ ସାଜେଣୀ ଉପମା ।
ବୀରବଲ୍ଲୀ ମୁକୁତା ଯେ ପଇକ ମନୋହର
ଏମନ୍ତେ ରାଜବେଶ ହେଲେ ଭ୍ରଥ ବୀର ।
ଖଣ୍ଡରାମ ଋଷିଙ୍କି ଯେ ଭରଥ ଅଣାଇଲେ
କୁଳର ପୁରୋହିତ ତାଙ୍କୁ ପୁଣ କଲେ ।
ଛତିଶା ନିଯୋଗ ଯେ ହେଲେ ବେଳ ଜାଣି
ଯେ ଯାହା ଖଠଣୀ ସେବାରେ ଯାଇ ପୁଣି ।
ସୁପକାରମାନେ ପୁଣ ଯାଇଣ ମିଳିଲେ
ରୋଷଶାଳେ ପଶିଣ ମଣୋହି ନିର୍ଭ୍ଭା କଲେ ।
ଚଉରି ଛାତ୍ରୀ ଟେକାଇ ଭରଥ ହେଲେ ଉଭା
ପାଦେ ରତ୍ନ ପାଦୁକା ଲାଗି ପାଏ ଶୋଭା ।
ମଙ୍ଗଳ ଆଳତୀ ଋଷି ଖଣ୍ଡରାମ କଲେ
ଧୂପ ଦୀପ ନେଇଣ ପାତ୍ର ମନ୍ତ୍ରୀ ଦେଲେ ।

ବାହାରେ ଅବକାଶ ହେଲେ ଭ୍ରଥ ରାୟେ
ଜଗତୀ ପରେ ସିଂହାସନ ବିଜୟେ ।
ଥିବା ନ ଥିବାର ଯେ ଭଲ ମନ୍ଦ ପୁଣ
ପରଜାଙ୍କର କୁଶଳ ପଚ୍ଚରେ ଭ୍ରଥ ରାଣ ।
ରହିବା ନ ରହିବା ସକଳ କଥା ପୁଣ
ପଚ୍ଚରିବାରୁ ମନ୍ତ୍ରୀ କହିଲେ ଆଗେଣ ।
କରଯୋଡ଼ି ମନ୍ତ୍ରୀ ଯେ କହେ ଆଗବଢ଼ି
ସବୁ କଥା କୁଶଳ କହେ ଧୀର କରି ।
ଭରତ ବୋଇଲେ ତୁମ୍ଭେ ପାତ୍ରମନ୍ତ୍ରୀ ଚଳ
ହସ୍ତୀ ପରେ ଅମରୀ ତ ଯାଇଁଣ ସଜ କର ।
ବୟାଳିଶ ଅମରୀ ଆଣିବ ସଜକରି
ବେନି ଗୋଟି ଶ୍ୱେତ ହସ୍ତୀ ଅମରୀ ସାଜିକରି ।
ଶୁଣିଣ ପାତ୍ରମନ୍ତ୍ରୀ ବେଗେ ଚଳିଗଲେ,
କଟକରେ ଧେଣ୍ଡୁରା ନେଇଣ ଫେରାଇଲେ ।
ବୋଇଲେ ନୂଆ ରାଜା ଫେରିବେ କଟକ
ଦ୍ୱାରମାନଙ୍କ ଉତ୍ସବ ସର୍ବେ କର ଜାତ ।
ରମ୍ଭା ବୃକ୍ଷ ପୂର୍ଣ୍ଣ କୁମ୍ଭ ଚୂତ ପତ୍ର ଆଣି
ଛାମୁଣ୍ଡିଆ କରି ସର୍ବେ ରଞ୍ଜନ କଲେ ପୁଣି ।
ଶ୍ୱେତହଂସ ଶ୍ୱେତପାରା ଭଦଳୀଆ ପକ୍ଷୀ
ଦଧି ମାଛ ପୂର୍ଣ୍ଣ କୁମ୍ଭ ଦୁଆରେ ପୁଣ ରଖି ।
ଏତେ କହି ଶ୍ୱେତ ହସ୍ତୀ ଅମରୀ ସଜକଲେ
ଗଡ଼ର ଦ୍ୱାରେ ନେଇ ହସ୍ତ ରଖାଇଲେ ।
ଭ୍ରଥ ଆଗେ କରଯୋଡ଼ି କହିଲେ ପାତ୍ରମନ୍ତ୍ରୀ
ବିଜୟେ କର ହେ ଦେବ ଅଇଲେ ଶ୍ୱେତହସ୍ତୀ
ସମସ୍ତଙ୍କୁ ଘେନି ଭ୍ରଥ ରାୟେ ପୁଣ ଗଲେ
ଶ୍ୱେତ ହସ୍ତୀ ଉପରେ ଋଷିଙ୍କି ବସାଇଲେ ।
ଆପେ ଶ୍ୱେତ ହସ୍ତୀ ଉପରେ ବିଜେ କଲେ
ପାତ୍ର, ମନ୍ତ୍ରୀ ଦୁଇଜଣ ସଙ୍ଗରେ ବସିଲେ ।
ଶ୍ୱେତ ଚ୍ଚମର ଯେ ଢାଳନ୍ତି ଦୁଇଜଣ
ଆଗେ ଘଣ୍ଟ ମର୍ଦ୍ଦଳ ବାଜେ ବିତପନ୍ନ ।
ଗାନ୍ଧାର ରାଗେ ନୃତ୍ୟ କରନ୍ତି ନୃତ୍ୟକାରୀ
ବେଶ୍ୟାଏ ବେଶ ହୋଇ ଆଗରେ ବାହାରି ।
ଯୂଥପତି ସେନାପତି ବସିଲେ ହସ୍ତୀପରେ
କାହାରିଆ କାହାଳୀ ବଜାଏ ଆଗରେ ।
ଯୋଡ଼ା ଶଙ୍ଖ ମହୁରୀ ବାଜେ ବୀର ବାଜା
ସମ୍ଭର୍ବରେ ବିଜୟେ କଲେ ଭ୍ରଥ ପୁର ରାଜା ।
ଖଦୀ ପଙ୍ଖା ଆଲଟ ବିଞ୍ଚଣୀ ଆଗେ ପଡ଼ି
ବଂଇରେଖ ଚୀରାଳ ଆଗରେ ପୁଣ ଉଡ଼ି ।
ବଡ଼ଦାଣ୍ଡେ ବିଜେ କଲେ ଭ୍ରଥ ନୂଆ ରାଜା
ଅତି ସମ୍ଭର୍ବରେ ପାଉଣ ଅଛି ଶୋଭା ।
ଶୂନ୍ୟରୁ କୁସୁମ ବୃଷ୍ଟି ଦେବେ କରୁଛନ୍ତି
ଭ୍ରଥ ପୁର କଟକ ଦିଶେ ଶୋଭା ରାଶି ।
ବାଆନେ ବଡ଼ଦାଣ୍ଡ ବୁଲିଲେ ଭ୍ରଥବୀର
ଦେଖିଲେ ସବୁଦାଣ୍ଡେ ଉତ୍ସବ ବେଭାର ।
ନରନାରୀ ଦେଖିକରି ବହୁତ ତୋଷହେଲେ
ବୋଇଲେ ଏମନ୍ତ ରାଜା ଦେଖା ଯେ ନ ଥିଲେ ।
କେ ବୋଲନ୍ତି ଶ୍ୟାମଳ ମୁଖ ଗୋଟି ପୁଣ
କେ ବୋଲଇ ଅଳପ ବୟସ ଅଟେ ଜାଣ ।
କେ ବୋଲଇ ମୁଖଗୋଟି ଚକୋର ପ୍ରାୟେଦିଶେ
କେ ବୋଲଇ ନିଶ ଦାଢ଼ି ଅଳପ ହୋଇକଣ୍ଟେ ।
କେ ବୋଲନ୍ତି ମଦନ କି ବିଜୟ ଏ ପୁର
କେ ବୋଲନ୍ତି ସ୍ୱର୍ଗର ଅଟନ୍ତି ସୁରଧର ।
କେ ବୋଲନ୍ତି ପାତାଳୁ କି ଅଇଲେ ବାସୁକୀ
କେ ବୋଲଇ କପିଳାସୁଁ ସଦାଶିବ ଆସି ।
କେ ବୋଲଇ କ୍ଷୀର ସାୟେର ବାସୁଦେବ
କେ ବୋଲେ ବରୁଣ କି ଏହି ପୁର ମଧ୍ୟ ।
କେ ବୋଲନ୍ତି ଚ୍ଚହାଁଣୀ ଛଟକେ ମୋହକଲା
କେ ବୋଲଇ ଚିତ୍ତ ମନ ଏଠାରେ ନୋହିଲା ।
କେ ବୋଲନ୍ତି ଯୁବାସ୍ତିରୀ ଆମ୍ଭେ ହେଲୁ ହୀନ
କାମ ବାଧା ବାଧିଲା ଦେଖି ଯାଙ୍କ ଗୁଣ ।
ବୃଦ୍ଧା ସ୍ତିରୀମାନେ ଯେ ମନରେ ବିଚ୍ଚରିଲେ
ଏମନ୍ତ ପୁରୁଷ ଆମ୍ଭେ ଦେଖି ନ ଥିଲୁଁ ତୋଳେ ।
ଗତିମୁକ୍ତି ପାଇଲୁଁ ଯେ ଏହାର ଦର୍ଶନେ
ଏମନ୍ତ ବିଚ୍ଚର କରନ୍ତି ସର୍ବ ଜନେ ।
ହୁଳହୁଳି ରାମତାଳି ପଡ଼େ ନିରନ୍ତର
କଟକ ବୁଲିଣ ଭ୍ରଥ ହୋଇଲେ ବାହାର ।
ବନଗିରି ପର୍ବତ ଯେ ବୁଲିଣ ଦେଖିଲେ
ଘାଟ ବାଟ ଦେଖି ସନ୍ତୋଷ ହୋଇଲେ ।
ହଟାରୀ ବଜାରୀ ବଣିଜାରମାନ
ସମସ୍ତଙ୍କୁ ଦେଖିଲା ତୋଷ ଭରତ ରାଜନ ।
ନିଜଗଡ଼େ ପ୍ରବେଶହେଲେ ଯାଇଁକରି
ହସ୍ତୀରୁ ଓହ୍ଲାଇ ବେଗେ ଭ୍ରଥବୀର ଚଳି ।

ଯୂଥପତି, ସେନାପତି ପାତ୍ର, ମନ୍ତ୍ରୀ, ଋଷି
ସମସ୍ତଙ୍କୁ ଘେନି ସଭା କଲେ ଭ୍ରଥ ବସି ।
ସଭା ଭାଙ୍ଗି ସକଳେ ଯେ ଯାହା ପୁର ଗଲେ
ନିତ୍ୟକର୍ମ ସାରି ଭ୍ରଥ ମଣୋହି ସାରିଲେ ।
ଏହିରୂପେ ମାସେକ ସେ ରହିଲେ ସେଠାରେ
ସମସ୍ତଙ୍କୁ ସୁଖୀ କଲେ ଦୁଃଖୀ ନଥାଇ ସେପୁରେ
ସୁମନ୍ତକୁ ବୋଇଲେ ତୁମ୍ଭେ ଏହିଗଡ଼େ ଥାଅ
ପାତ୍ର ମନ୍ତ୍ରୀ ଏ ଗଡ଼ରେ କାହାକୁ ନ ପୁରାଅ ।
ଶ୍ରୀରାମ ଯେ ଆଜ୍ଞାଦେଲେ ଦୁଇଗଡ଼ ମୋର
ଏବେତ ଏ ଗଡ଼ଗୋଟି ହୋଇଲା ମୋହର ।
ମୋହର ଆସିବା ଯାଏ ଥିବୁ ଏ ଗଡ଼ରେ
ବିଷ୍ଣୁ ପୁର ଗଡ଼କୁ ମୁଁ ଦେଖିବଇଁ ଥରେ ।
ପାତ୍ର, ମନ୍ତ୍ରୀଙ୍କୁ ଡକାଇ ଭରତ ବୀର କହି
କିଛିଦିନ ଏ ଗଡ଼କୁ ସମ୍ଭାଳକର ତୁହି ।
ପରଜାମାନଙ୍କ ହାରି ଗୁହାରୀ ବୁଝିବ
ଧର୍ମରେ ପାଳିବ ରାଜ୍ୟ ଅଧର୍ମ ନ କରିବ ।
ଏତେ କହି ରଥପରେ ବସିଲେ ଯାଇକରି
ମନ୍ତ୍ରୀ ପଚାରିଲା କେଉଁ ଦିଗକୁ ବିଜେକରି ।
ଭରତ ବୋଇଲେ ମୁଁ ଯାଉଛି ବିଷ୍ଣୁପୁର
ଅଇଲାବେଳେ କହିଲେ ଶ୍ରୀରାମ ଠାକୁର ।
ବୋଇଲେ ଭ୍ରଥପୁର ବିଷ୍ଣୁପୁର ଦୁଇ
ଦୁଇ ଅସୁରଙ୍କୁ ମାରି ରାଜା ହୁଅ ତୁହି ।
ତାଙ୍କର ବୋଲରେ ମୁଁ ଏପୁର ସାଧକଲି
ଏବେ ବିଷ୍ଣୁ ପୁରକୁ ମୁଁ ଯାଉଛି କହିଲି ।
ସେପୁର ସାଧକରି ଆସଇ ମୁଁ ପୁଣ
ପାତ୍ର ମନ୍ତ୍ରୀ ବୋଲେ ତୁମ୍ଭେ ଶୁଣ ନୃପରାଣ ।
ଏପୁର ସୈନ୍ୟବଳ ସଙ୍ଗରେ ଘେନି ଯାଅ
ଭରତ ବୋଇଲେ ବାବୁ ନୁହେଁ ଏହୁ ପ୍ରିୟ ।
ସେକଥା ଗୁପତ କରିଣ ତୁମ୍ଭେ ଥାଅ
ଯେମନ୍ତେ ଆପଣାର ରାଜ୍ୟରେ ହେବ ପ୍ରିୟ ।
କେତେ ବଳବନ୍ତ ଅଟେ ବଳିରାଜା ସୁତ
ଯୁଦ୍ଧକଲେ ଜାଣିବା ତାହାର ଚରିତ ।
ରାଜ୍ୟର ଭଲମନ୍ଦ ବୁଝିବା ବିଚାରି
ସୁମଂତ୍ର ମନ୍ତ୍ରୀ ରହିଲେ ଗଡ଼କୁ ଆବୋରି ।
ସେନା ଯୂଥପତିଙ୍କି ଭରତ ଡକାଇଲା
ରଥର ଉପରେ ନେଇ ସବୁଙ୍କୁ ବସାଇଲା ।

ସୁଷେଣ ସାରଥୀ ଯେ ହୋଇଲା ସେ ରଥରେ
ଚଳିଗଲା ଯାନ ଯେ ଗଗନ ମାର୍ଗରେ ।
ତିନିଦିନେ ଯାନ ହେଲା ପରବେଶ
ବନରେ ରଖିଲେ ରଥ ଦଶରଥ ଶିଷ୍ୟ ।
ମାରୁତିକି ବୋଇଲେ ଏପୁରେ ବେଗେ ଚଳ
ଶୁଣିକରି ମାରୁତି ଗଲା ଅତି ଖର ।
ଅଞ୍ଚଳ ଚଞ୍ଚଳ ଯେ ନିଶାରେ ବୁଲି ଜାଣେ
ଅସୁର ଶୋଇଛି ନିଜ ପୁରରେ ସେ ତେଣେ ।
ବାସ୍ତରୀ ଦାଣ୍ଡ ଅଠର କୋଟି ଘର
ସମସ୍ତ ପଥର ଯେ ଧବଳ ଚୂନ ପୁର ।
ହାଟ ବାଟ କନ୍ଦି ଯେ ବିକନ୍ଦି ଅକଳିତ
ନୃତ୍ୟ ଗୀତ ଉତ୍ସବ ସେ ରାଜ୍ୟେ ବହୁତ ।
ଅନେକ ସମ୍ପର୍ବରେ ଜଗାଇ ଅଛି ସୈନ୍ୟ
ଚଉରିଦ୍ୱାରେ ବାଜଣା ବାଜଇ ବିତପନ ।
ତାହା ଦେଖି ମାରୁତି ଭରତ ଆଗେ କହି
ଜାଗ୍ରତରେ ଅସୁର ଅଛି ହେ ଦେବ ରହି ।
ଶୁଣିକରି ଭରତ ସେଠାରେ ରହିଲେ
ଏମନ୍ତ ସମୟରେ ରଜନୀ ଶେଷହେଲେ ।
ଦେବଆଳରେ ଶଙ୍ଖ ଶବଦ ହୋଇଲା
ଶୁକ ସାରୀ ଭାଷିଲେ କାକକୁକ୍କୁଟ ରାବଦେଲା ।
ନିଦ୍ରାଭାଙ୍ଗି ସମସ୍ତେ ଶୟନରୁ ଉଠି
ଗଡ଼ଦ୍ୱାରେ ଦୁନ୍ଦୁଭିର ବାଦ୍ୟମାନ ରଟି ।
ଏମନ୍ତ ସମୟରେ ରଜନୀ ଭରତ ରଥ ଗଲା
ଗଡ଼ର ସିଂହଦ୍ୱାରେ ପ୍ରବେଶ ହୋଇଲା ।
ଦ୍ୱାରପାଳକୁ ଭରତ କହିଲେକ ପୁଣ
ତୁମ୍ଭର ରାଜାକୁ ଯାଇ କହରେ ବହନ ।
ବୋଲିବୁ ତୋର ଦ୍ୱାରେ ରିପୁ ପରବେଶ
ଯୁଦ୍ଧକୁ ଆସିଅଛି ଦଶରଥ ଶିଷ୍ୟ ।
ଶୁଣିଣ ଦ୍ୱାରପାଳ ବେଗେ ଚଳିଗଲା
ବାହାର ଅବକାଶରେ ରାଜାଙ୍କୁ ଦେଖିଲା ।
କରଯୋଡ଼ି ଆଗରେ କରଇ ଜଣାଣ
ପରଥାଟ ତୋର ରାଜ୍ୟେ ପ୍ରବେଶ ହେଲେ ଜାଣ ।
ଅଯୋଧ୍ୟା ଦେଶ ରାଜା ଦଶରଥଙ୍କ ପୁଅ
ଯୁଦ୍ଧ କରିବାକୁ ସେ ଅଇଲେ ରିପୁ ପ୍ରାୟ ।
ସୈନ୍ୟବଳ ତାର ସଙ୍ଗରେ କେହି ନାହିଁ
ମର୍କଟ ଗୋଟାକେତେ ରଥରେ ଛନ୍ତିରହି ।

ଅଳପ ବାନର ଦେବ କୋଡ଼ିଏ ବାଆର
ଏକା ଥରକେ ବିଜେକଲେ ସିଂହଦ୍ୱାର ।
ମୋତେ ବୋଇଲେ ତୋର ରାଜାଙ୍କୁ ଯାଇ କହ
ମୋର ସଙ୍ଗେ ଯୁଦ୍ଧକରୁ ବଳିରାଜା ପୁଅ ।
ଦେବତା ବ୍ରାହ୍ମଣ ଯେ ପ୍ରଜାଙ୍କୁ ନାଶ କଲେ
ଋଷିଙ୍କି ମାରଇ ଯେ ଧରିଣ ସେ ବଳେ ।
କେଡ଼େ ବଳବନ୍ତ ଯେ ଅଟଇ ଦନୁଜ
ଏତେବୋଲି କୋଦଣ୍ଡ ଧରିଛି ନର ରାଜ ।
ଶୁଣିଣ ଶ୍ୱେତସୁର କ୍ରୋଧ ମନ ହେଲା
ବାଆନେ ପୁଅଙ୍କୁ ସେ ଡକାଇ ଆଣିଲା ।
ବୋଇଲା ଆମ୍ଭ ଦ୍ୱାରେ ଶତ୍ରୁ ଉପଗତ
ଏକା ଜଣେ ସିନା ସେହୁ ମାରରେ ତୁରିତ ।
ଶୁଣିଣ ପୁତ୍ରମାନେ ରଥସଜ କଲେ
ବାଆନେ ରଥ ଘେନି ସିଂହଦ୍ୱାରେ ହେଲେ ।
ବୋଇଲେ ତୁହି ପରା କରିବୁ ଏବେ ରଣ
ଦେଖିବା ତୋହର ଯେ ବୀର ଶୂରପଣ ।
ଏତେବୋଲି ନାରାଜ ମାରନ୍ତି ତତକ୍ଷଣ
ଭରତ ଛେଦିଲେ ଯେ ଅନୁଜ ବାଣେଣ ।
ବାଆନେ ପୁତ୍ରଙ୍କ ଶିର ଭ୍ରଥ ଏକାଥରେ ଛେଦି
ଦେଖିଣ ଦୈତ୍ୟବଳ ହେଲେ ବଡ଼ରାଗୀ ।
ଅନେକ ଶର ଯେ ବିନ୍ଧିଲେ କୋଟି କୋଟି
ଏକାକେ ଭରଥ ତାହା ପକାଉଛି କାଟି ।
କ୍ରୋଧରେ ଦଇତ୍ୟ ଯେ ମାଇଲେ ତନଘାଇ
ଦେଖି ଭ୍ରଥବୀର ବଜ୍ର କୋଦଣ୍ଡ ଧରଇ ।
ବଜ୍ର ବାଟୁଳି ଯେ ବିନ୍ଧିଲା ବାଆନ
ବାଜନ୍ତେ ବାଟୁଳି ଫୁଟିଲା ତାଳୁ ପୁଣ ।
ବାଆନେ ପୁତ୍ର ରଥରୁ ପଡ଼ିଲେକ ତଳେ
ଦେଖିଣ ଭରଥ ଧନୁ ଧଇଲେକ କରେ ।
ଅଗ୍ନିଶର ପୁରାଇ ଛାଡ଼ିଦେଲେ ବୀର
ବାଆନେ ରଥ ଯେ ଜଳିଗଲା ତାଙ୍କର ।
ଦେଖିଣ ଚର ଯେ ସତ୍ୱରେ ଯାଇ କହି
ବାଆନେ ପୁତ୍ରଙ୍କୁ ତୋର ମାଇଲା ଗୋସାଇଁ ।
ଶୁଣିଣ ଶ୍ୱେତସୁର କ୍ରୋଧ ମନ ହେଲା
ଚରିଶତ ନାତିଙ୍କି ପାଶକୁ ଡକାଇଲା ।
ବୋଇଲା ତୁମ୍ଭ ପିତାଙ୍କୁ ଶତ୍ରୁମାରେ ଆସି
ଏକାକେ ସେ ଶତ୍ରୁ ପକାଉଛି ଧ୍ୱଂସି ।

ଶୁଣିକରି ନାତିମାନେ ରଥପରେ ଚଢ଼ି
ବୀରବେଶ ହୋଇଣ ସିଂହଦ୍ୱାରେ ମିଳି ।
ଶ୍ୱେତସୁର ରଥଚଢ଼ି ହୋଇଲ ବାହାର
ଶକତିଏ ପୁଣ ସେ ଧରିଅଛି କର ।
ଚତୁରାଙ୍ଗ ବଳ ଯେ ତାଙ୍କର ସଙ୍ଗେଆଏ
ତେଇଶି କ୍ଷଉଣି ଯେ ବଳ ତାର ଥାଏ ।
ଦେଖିକରି ହନୁମନ୍ତ ରଥରୁ ଡେଇଁପଡ଼ି
ଅସୁର ସଇନ୍ୟଙ୍କୁ ମାରନ୍ତି କଚାଡ଼ି ।
ରଥକୁ ରଥ ଯେ ତୋଳି କଚାଡ଼ନ୍ତି
ହସ୍ତୀଙ୍କର ଉପରେ ହସ୍ତୀଙ୍କି ନେଇକରି ।
ଦିବସ ଯାଇଣ ଯେ ହୋଇଲା ରଜନୀ
କାଣ୍ଡ ଖଣ୍ଡା ଶାବେଳୀ ନମାନେ କପି ପୁଣି ।
କେଉଁ କପି ଦେହେ କାଣ୍ଡ ଦଶ ବିଂଶ ଲାଗି
କେଉଁ କପିଗୋଟି ଯେ ଘାଆରେ ହୋଏରାଗୀ ।
ମାରନ୍ତି ସେନାପତି ଯୂଥପତି ମିଶି
ତେଇଶି କ୍ଷଉଣୀ ବଳ ପକାଇଲେ ଧ୍ୱଂସି ।
କବନ୍ଧ ଗୋଟି ଗୋଟି ନାଚିଲେ ସେଥିପୁଣ
ଦୁଇ କ୍ଷଉଣୀ ବଳ ଥିଲେ ଯେ ବତିଶ ।
ଧରଣୀଧର ରଥ ଉପରେ ବସି ପୁଣ
ରଣ ଭୂମିରେ ଆସି ମିଳିଲା ତକ୍ଷଣ ।
ଭରଥ ଆଗରେ ରଥ ନେଇ ସେହୁକଲା
ଦେଖିଣ ଭ୍ରଥବୀର କୋଦଣ୍ଡ ଧଇଲା ।
ଚରି ସେହ୍ନାପତିଙ୍କି ଯେ ବେଢ଼ିଲେ ଯୂଥପତି
ରଥର ଉପରେ ରଥ ନେଇ କଚାଡ଼ନ୍ତି ।
ଦିନମଣି ଶରକୁ ଭରତ ବୀର ମାରି
କୁହୁକ ପଳାଇଲେ ରବିତେଜକୁ ଡରି ।
ପର୍ବତା ଶର ଯେ ମାଇଲେ ଅସୁର
ବଜ୍ର ଶରରେ ତାକୁ ନିବାରେ ଭ୍ରଥ ବୀର ।
ଦେଖିଣ ହନୁମନ୍ତ ବେଗେ ଚଳିଗଲା
ଧରଣୀଧର ରଥ ଉପରେ ବସିଲା ।
ଧରିଣ ଚପିଦ୍ୟନ୍ତେ ପଶିଲା ପାତାଳେ
ଅସୁର ଡେଇଁଣ ପଡ଼ିଲା ଆସିତଳେ ।
ସଦାଶିବ ଦେବାର ଶକତି କରେ ଧରି
କ୍ରୋଧରେ ଦୈତ୍ୟ ଯେ ପେଶେ ଶୀଘ୍ର କରି ।
ଶକତି ଆସନ୍ତେ ଭ୍ରଥ ବୀର ପୁଣ
ଅନେକ ନାରାଜ ପେଶିଲେ ତତକ୍ଷଣ ।

କେବେହେଁ ସେ ଶକତି ନୋହିଲା ନିବାରଣ
ଭରତର ଯାନୁରେ ପଡ଼ିଲା ତତକ୍ଷଣ ।
ଯାନୁ ଫିଟି ଶର ଯେ ପାତାଳେ ଯାଇକଣ୍ଟି
ରଥର ଉପରେ ଭରତ ବୀର ଲୋଟି ।
ଭରତ ଶୋଇବାରୁ ବିଋରେ ହନୁମନ୍ତ
ବୋଇଲା କଥା ଏବେ ହୋଇଲା ନିଅଣ୍ଟ ।
ଏତେବୋଲି ହନୁ ଯେ ବିକ୍ରମ ରୂପଧରି
ଅସୁରକୁ ମାଡ଼ି ଯେ ବସିଲା ଯାଇକରି ।
ତଳରେ ଅସୁର ଯେ ପଡ଼ିଲାକ ପୁଣ
ଅଷ୍ଟ ସେନାପତି ଦେଖି ଧାଏଁ ପୁଣ ।
ବେନି ଗୋଡ଼ ତାର ଧଇଲେ ଧାଇଁକରି
ଦୁଇଆଡ଼େ ଦୁଇଗୋଡ଼ ନେଲେ ସେ ଓଟାରି
ହନୁମନ୍ତ ମାଡ଼ି ଯେ ବସିଛି ମସ୍ତକ
ବେନିଗୋଡ଼ ଓଟାରନ୍ତେ ଫାଟି ମଳମୂତ୍ର ।
ବୀର୍ଯ୍ୟ ଭାଗ ତାର ଯେ ହୋଇଗଲା ଚିରି
କଣ୍ଠ ପରିଯନ୍ତେ ବେନି ଫାଳ କରି ।
ଦେଖିଣ ମାରୁତି ଯେ ମସ୍ତକ ଛାଡ଼ିଦେଲା
ଓଟାରି ଧରନ୍ତେ ଯେ ବେନିଫାଳ ହେଲା ।
ଛାଡ଼ିଣ ସକଳେ ଯେ ଗଲେକ ତୁରିତ
ଦେଖିଲେ ଅଚେଷ୍ଟ ହୋଇଛି ଭରତ ।
ଯୂଥପତିମାନେ ଶକତି ଧରି ଟାଣି
ତିଳେହେଁ ନ ହଲିଲା ଶିବ ଶକ୍ତି ପୁଣି ।
ଯୂଥପତି ଛାଡ଼ନ୍ତେ ଯେ ସେନାପତି ଧରି
ସେମାନେ ଓଟାରନ୍ତେ ତିଳେହେଁ ନ ଟଳି ।
ଦେଖିଣ ବିସ୍ମୟ ଯେ ହେଲେ ସର୍ବ ସୈନ୍ୟ
ମାରୁତି କରଯୋଡ଼ି ଶୋଇଲା ଚରଣ ।
ଶତେବାର ପରିଯନ୍ତେ ପାହାଡ଼ ପଡ଼ିଲା
ରାମ, ଲକ୍ଷ୍ମଣ, ସୀତାଙ୍କୁ ମନରେ ସୁମରିଲା ।
ଉର୍ମୀଳାକୁ ଘେନିଣ ଲକ୍ଷ୍ମଣ ଥିଲେ ବସି
ବେଶ କରୁଥିଲେ ଯେ ସୁମିତ୍ରାଙ୍କ ବସି ।
ହୃଦୟ ବିକଳ ଯେ ହୋଇଲା ତାଙ୍କର
କି ବିଷୟ ବୋଲିଣ ସେ ସୁରଇ ସତ୍ୱର ।
ବେଶ ରଖି ଲକ୍ଷ୍ମଣ ଉର୍ମୀଳା ଆଗେ କହି
ବାମ ନୟନ ମୋର କିମ୍ପା ଯେ ଫୁରଇ ।
ଉର୍ମୀଳା ବୋଇଲେ ଦେବ ନ କର ଶୋଚନା
ସାନ ଜ୍ୟେଷ୍ଠଙ୍କୁ ଦୈତ୍ୟ ଶକ୍ତିମାରେ କିନା ।
ଶକତି ଛେଦନ କରି ନ ପାରିଲେ ଜ୍ୟେଷ୍ଠ
ସଦାଶିବଙ୍କର ଶକ୍ତି ଅଟେ ସେ ଗରିଷ୍ଠ ।
ଯାନୁରେ ଫିଟିଲା ଯେ ଶକତି ଯାଇଣ
ବାସୁକୀର ଶିର ପର୍ଯ୍ୟନ୍ତ କଣ୍ଟିଲା ସେ ପୁଣ ।
ଦେଖିଣ ହନୁମନ୍ତ ସେନାପତିଙ୍କି ଘେନି
ଅସୁରକୁ ଚିରି ଯେ ପକାଇଲେ ପୁଣି ।
ଯୂଥପତି ସେନାପତି ଶକ୍ତି ଉପାଡ଼ିଲେ
କେବେହେଁ ସେ ଶକ୍ତିକି ଉପାଡ଼ି ନ ପାରିଲେ ।
ହନୁମନ୍ତ ସ୍ତୁତି କରେ ତିନିଜଣ
ଯେଉଁ ତିନିଜଣ ଗଲେ ଅରଣାକୁ ପୁଣ ।
ମାରୁତୀ ସ୍ତୁତି କରେ ତୁମ୍ଭ ତିନିଜଣଙ୍କୁ
ତୁମ୍ଭେ ଦୟାକର ଦେବ ପବନ କୁମରକୁ ।
ଶୁଣିଣ ସଉମିତ୍ରୀ ଉର୍ମୀଳାକୁ ପଋରି
କାହାକୁ କୋଳେ ଜାତ କେମନ୍ତେ ଶକ୍ତିଧରି ।
ଚରଣେ ଓଳଗି ଉର୍ମୀଳା ନାରୀ କହି
ଅଷ୍ଟବସୁ କୋଳେ ଜାତ ଐଶ୍ୱର୍ଯ୍ୟ ସେ ହୋଇ ।
ସ୍ୱର୍ଗ ଗଙ୍ଗାକୂଳରେ କଲାକ ବହୁତପ
ବିଋରିଲା ମୁଁ ଯେ ହେବି ରବି ରୂପ ।
କଶ୍ୟପ ଋଷି ଜାଣିଣ ତାର ପାଶେ ଗଲେ
କ୍ରୋଧରେ ତାହାକୁ ସେ ଶାପ ପୁଣି ଦେଲେ ।
ବୋଇଲେ ଆଦିତ୍ୟଙ୍କ ସଙ୍ଗରେ ହେଲୁ ରିପୁ
ଅସୁର କୁଳେ ଜାତ ହୁଅରେ କୁଳକେତୁ ।
ଚଉଦ ଯୁଗ ପର୍ଯ୍ୟନ୍ତେ ମଞ୍ଚରେ ରହିବୁ
ନାରାୟଣଙ୍କର ଦୂତଙ୍କ ହସ୍ତେ ନାଶଯିବୁ ।
ପବନର କୁମର ମାରୁତି ତୋତେ ମାରି
ତେବେ ସ୍ୱର୍ଗକୁ ଆସିବୁ ଶାପ ପାଇକରି ।
ଶୁଣିଣ ଅଇଶ୍ୱର୍ଯ୍ୟ ବେଗେ ଚଳିଗଲା
ବଳିର ପତ୍ନୀ ଗର୍ଭେ ଯାଇଣ ଜାତ ହେଲା ।
ସାତଯୁଗ ପରିଯନ୍ତେ ବସି ତପକଲା
ତେବେ ସେ ତ୍ରୟଜଟା ସନ୍ତୋଷେ ବରଦେଲା ।
ଶକତି ତ୍ରିଲୋଚନ ଦେଲେ ତାର କରେ
ବୋଇଲେ ଶକ୍ତିଥିବାଯାକ ହେବୁ ତୁ ଅମରେ ।
ଶୁଣିଣ ଶ୍ୱେତଅସୁର ସନ୍ତୋଷ ହୋଇଲା
ବିଷ୍ଣୁପୁର ଗଡ଼ରେ ସେ ନିଶ୍ଚିନ୍ତେ ରହିଲା ।
ପୁଣି ସାତଯୁଗ ବର୍ତ୍ତିଲା ଅସୁର ଅସୁର
ମୁନିମାନଙ୍କୁ ଖାଏ ପରଜା ନାରଖାର ।

ତା ଅନ୍ୟାୟ ଦେଖି ଗଉତମେ କହି
ଜ୍ୟେଷ୍ଠଭାଇ ଶୁଣି କନିଷ୍ଠେ ଆଜ୍ଞା ଦେଇ ।
ଆଜ୍ଞାପାଇ ତୁମ୍ଭ ଜ୍ୟେଷ୍ଠ ବେଗେ ଚଳିଗଲେ
ଭ୍ରଥପୁରେ ଅସୁରକୁ ନିରୋଧି ମାଇଲେ ।
କେଶୀ ଏକା ହେବାରୁ ସେଠାରୁ ପଳାଇଲା
ହିରଣ୍ୟର ଗର୍ଭରେ ଯାଇଁଣ ରହିଲା ।
ସେଠାରୁ ବିଷ୍ଣୁ ପୁରକୁ ଅଇଲେ ତୁମ୍ଭଜ୍ୟେଷ୍ଠ
ଯୁଥପତିଙ୍କି ଘେନି ଅସୁର କଲେ ହତ ।
ପଶ୍ଚାନ୍ତରେ ଅସୁର ଯୁଦ୍ଧକୁ ଅଇଲା
ପୁତ୍ର ନାତି ସୈନ୍ୟବଳ ମରିବା ଦେଖିଲା ।
ସେ କ୍ରୋଧେ ଶକତି ମାଇଲାକ ପୁଣ
ତୁମ୍ଭ ଜ୍ୟେଷ୍ଠଙ୍କ ଯାନୁରେ ଶକ୍ତି ଭେଦ ପୁଣ ।
ଶକ୍ତି ଶୂନ୍ୟହେବାରୁ ହନୁ ଘେନିଣ ସେନାପତି
ଦୈତ୍ୟର ହୃଦୟ ଦୁଇଫାଳରେ ଚିରନ୍ତି ।
ସେ ଶକ୍ତି ଉପାଡ଼ିବାକୁ କରେ ହନୁ ସ୍ତୁତି
ଶୁଣି କରି ଲକ୍ଷ୍ମଣ ସନ୍ତୋଷ କଲେ ମତି ।
ବୋଇଲେ ପ୍ରସନ୍ନରେ ହୋଇଲି ତୋତେହନୁ
ଶକ୍ତିକି ତୁ ଉପାଡ଼ ଉପୁଡୁ ସେ ଶୂନ୍ୟ ।
ଏମନ୍ତ ବୋଲିବାରୁ ହନୁ ବଳବନ୍ତ
ଶକ୍ତିକୁ ଧଇଲା ହନୁ ଯାଇଣ ତୁରିତ ।
ଲକ୍ଷ୍ମଣ ବୋଲି ତୁଣ୍ଡରେ ଉଚ୍ଚାରଣ କଲା
ଫୁଲ ତୋଳିଲା ପ୍ରାୟେ ଶକ୍ତିକି ଉପାଡ଼ିଲା ।
ତତକ୍ଷଣ ଶକ୍ତି ହସ୍ତରୁ ବେଗେ ଗଲା
କପିଳାସ କନ୍ଦରେ ପ୍ରବେଶ ଯାଇଁ ହେଲା ।
ଦେଖିଣ ସଦାଶିବ ପରମ ତୋଷ ହେଲେ
ଋରି ଆୟୁଧ ଆସିଲା ବୋଲି ବିଋରିଲେ ।
ପାର୍ବତୀ ବୋଇଲେ ଦେବ ସେଠାରୁ କିସ ହେଲା
ଈଶ୍ୱର ବୋଇଲେ ସେକଥା ଶୁଣ ପରା ।
ଶକତି ଆସିବାରୁ ଅସୁର ସ୍ୱର୍ଗେ ଯାଇ
ଅଷ୍ଟବସୁଙ୍କ ଆଗରେ ମିଳିଲା ପୁଣ ସେହି ।
ଦେଖିଣ ପିତା ବଡ଼ ସନ୍ତୋଷ ହୋଇଲେ
ଶାନ୍ତିହୋଇ ରହରେ ବୋଲି ଆଜ୍ଞାଦେଲେ ।
ଏଥୁଅନନ୍ତରେ ଯେ ହନୁମନ୍ତ ପୁଣ
ଘାଆକୁ ଋହିଁ ନିରେଖି କରି ଦେଖେ ଜାଣ ।
ଶଗଡ଼ ତୁମ୍ଭ ପ୍ରାୟେ ଫିଟିଅଛି ଜଳା
ଦେଖିଣ ହସ୍ତ ଭରିଣ ପବନର ବଳା ।
ହସ୍ତ ଗଳି ଯିବାରୁ ତାଟକା ହୋଇଲା
ବୋଇଲା ନବର୍ତ୍ତିବେ ଆଉ ଦଶରଥ ବଳା ।
ସୁଷେଣକୁ ବୋଇଲେ ସରିଲାକ ଭ୍ରଥ
ଆଉକି ବଞ୍ଚିବେ କୈକେୟୀର ସୁତ ।
ସୁଷେଣ ବୋଇଲେ ରଜନୀ ହେଲା ତିନିଘଡ଼ି
ଅଯୋଧ୍ୟା ନଗ୍ରକୁ ତୁ ଚଳ ବେଗକରି ।
ଶ୍ରୀରାମଙ୍କ ଘରଣୀ ଅଟନ୍ତି ଦେବୀ ସୀତା
ପଦ୍ମମୁଖ ବେଶକୁ କରେ ମନୁମାୟା ସୀତା ।
ଅଳକା ଉପରେ ଯେ କେଶର ଫୁଲଖଞ୍ଜି
ସେଥିରୁ ଗୋଟିଏ ଫୁଲଆଣ ଯାଇବେଗି ।
ତାଙ୍କର ମଧୁବନ ଭିତରକୁ ଯିବୁ
ଜାନକୀଙ୍କି ଘେନି ଋପ ପୋଖରୀରେ ହେବୁ ।
ପୂର୍ବପାଖେ ଯେଉଁ ଗଛ ଭୂମିରେ ଥିବମାଡ଼ି
ଜାନକୀଙ୍କି କହିଲେ ସେ ଦେବେ ତୋଳିକରି ।
ସେ ବୃକ୍ଷ ଘେନିଣ ତୁ ଜାନକୀ ସଙ୍ଗେ ଯିବୁ
ଅମଳିଣ ସିନ୍ଦୂର ପୁଷ୍ପ ଘେନିଣ ଆସିବୁ ।
ତେବେ ସେ ଜୀବନ ପାଏ କୈକୟୀର ସୁତ
ଶୁଣିକରି ମାରୁତି ଗଲେକ ତୁରିତ ।
ଶୂନ୍ୟରେ ଗମଇଁ ସେ ଅଯୋଧ୍ୟା ପୁରଗଲା
ଜାନକୀଙ୍କ ପାଶରେ ପ୍ରବେଶ ହୋଇଲା ।
ଜାନକୀ ବୋଇଲେ ମାରୁତୀ ତୁଅଇଲୁକେଣେ
ଭରତ ଅଇଲେ କି ଭାଇର ଦରଶନେ ।
ଦୁଇପୁର ରାଜାଟିକି ହୋଇଲେ କୈକେୟୀ
ସେପୁରମାନ କି ତାର ମନକୁ ନ ଆସଇ ।
ମାରୁତୀ ବୋଇଲେ ତୁମ୍ଭ ପରସନ୍ନେ ପୁଣ
ଭରଥ ପୁରକୁ ଜିଣିଲେ ଭ୍ରଥଜାଣ ।
ବିଷ୍ଣୁ ପୁର ଅସୁରଙ୍କ ସଙ୍ଗରେ କଲେ ଯୁଦ୍ଧ
ଦୈତ୍ୟର କୁଳ ଗୋତ୍ର ନାଶିଲା ସ୍ୱାମୀଅଙ୍ଗ ।
ପଛନ୍ତେ ଅସୁର ଯେ ଶିବ ଶକ୍ତି ମାରି
ଯାନୁରେ ଫିଟନ୍ତେ ସେ ଅଜ୍ଞାନ ହୋଇପଡ଼ି ।
ସୁଷେଣ ପୋଥି ଦେଖି ମୋତେ ଦେଲେଋହିଁ
ବୋଇଲେ ପଦ୍ମମୁଖ ଜନକ ଝିଅହୋଇ ।
ସେମୁଖ ଅଳକା ଉପରୁ ପୁଷ୍ପଆଣ
ଅମଳିଣ ସିନ୍ଦୂର ତୁ ଆଣିବୁ ପୁଣ ।
ଶୁଣିକରି ଜାନକୀ ଦରପଣ ଧରି
ପଦ୍ମମୁଖ ଉପରୁ ପୁଷ୍ପ ବେଗେ କାଢ଼ି ।

ମାରୁତୀର ହସ୍ତରେ ଦେଲେ ନେଇକରି
ଅମଳିଣ ସିନ୍ଦୂର ସୁବର୍ଣ୍ଣ ଫରୁଆରେ ଭରି ।
ମାରୁତୀ ବୋଇଲେ ମାତାଚାଲ ବେଗହୋଇ
ମଧୁବନ ଭିତରେ ବିଜେକର ଯାଇ ।
ଚାପ ପୋଖରୀର ପୂର୍ବଭାଗକୁ ଚାଲ
ମଉଷଧି ବୃକ୍ଷମୋତେ ଦିଅଗୋ ବେଗ୍ରର ।
ଶୁଣିକରି ଜାନକୀ ପାଦୁକା ଲାଗିହୋଇ
ଧୀରେ ଧୀରେ ବିଜୟ ଯେ କଲେ ଚନ୍ଦ୍ରମୁହିଁ
ମଧୁବନ ଭିତରେ ପ୍ରବେଶ ଯାଇଁହେଲେ
ଚାପ ପୋଖରୀ ପୂର୍ବଭାଗେ ବିଜେକଲେ ।
ଦେଖିଲେ ମଉଷଧି ଗଛ ଅଛିମାଡ଼ି
ଶ୍ରୀକରେ ତୋଳିଲେ ଜାନକୀ ଯାଇଁକରି ।
ପତ୍ର ଗୁଡ଼ିଏ ତୋଳି ମାରୁତୀ ହସ୍ତେ ଦେଲେ
କପଟ ଭିତରେ ମାରୁତୀ ସମ୍ଭାଳିଲେ ।
ଜାନକୀ ଚରଣେ ଓଳଗି ହୋଏ ପୁଣ
ହୁଁକାର ନାଦ କରି ଯେ ଗମିଲା ହନୁମାନ ।
ଜାନକୀ ମନୁମାୟା ବେଗରେ ଚଳିଆସି
ଅନ୍ତଃପୁରେ ଯାଇଁଣ ପ୍ରବେଶ ଶଶୀମୁଖୀ ।
ଏଥୁ ଅନନ୍ତରେ ହନୁମନ୍ତ ଚଳିଗଲା
ବିଷ୍ଣୁପୁରେ ଯାଇ ପ୍ରବେଶ ହୋଇଲା ।
ଗଡ଼ର ସିଂହଦ୍ୱାରେ ହେଲେ ପରବେଶ
ଦେଖିକରି ସୁଷେଣ ହୋଇଲା ହରଷ ।
ଅକର୍ମ ଶୀଳାରେ ବାଟିଲେ ପୁଷ୍ପପତ୍ର
ଘାଆରେ ଦିଅନ୍ତେ ସେ ଶୁଖିଲା ତୁରିତ ।
ଅମଳିଣ ସିନ୍ଦୂର ତହିଁ ଉପରେ ଦେଲେ
ଚେତାପାଇ ଭରତ ଉଠିଲେ ତତ୍ପରେ ।
ଉଠିଣ ବସିଲା ବୀର ରଥର ଉପର
କୋଦଣ୍ଡ ସାଉଣ୍ଟିଣ ଧଇଲେ ବେଗ କର ।
ବୋଇଲେ ଅସୁର କେଣିକି ଏବେ ଗଲା
ମାରୁତି ବୋଇଲେ ସେ ଆମ୍ଭର ହସ୍ତେ ମଲା ।
ସମସ୍ତେ ମେଳ ହୋଇ ଧଇଲୁ ତାକୁଯାଇ
ଦୁଇଫାଳ କରିଣ ଚିରି ଯେ ପକାଇ ।
ଶୁଣିଣ ଭରତ ଯେ ତୋଷ ମନହେଲା
ପିଚାଶୁଣି ଯୋଗ୍ନୀବଳ ଆସିହେଲେ ମେଳା ।
ରକ୍ତମାଂସ ଖାଇଣ ଅସ୍ଥିଭସ୍ମ କଲେ
ରଣଭୂମିରେ ଆଉ ସେ ଚିହ୍ନ ନରଖିଲେ ।

ଯୂଥପତି ସେନାପତି ଭରତକୁ ଘେନି
ଚାରିଦ୍ୱାରେ ଜଗି ଯେ ରହିଲେ ରଜନୀ ।
ତିନିଦ୍ୱାରେ ମୁଦଦେଇ ଅର୍ଗଳୀ ଡାଙ୍କି ଦେଲେ
ଅସୁର ମାରିବାର ଖବର ତାର ପୁରେ ।
ଦାସୀମାନେ କହିଲେ ରାଣୀର ଆଗେ ପୁଣ
ପୁତ୍ରନାତି ସୈନ୍ୟ ଘେନି ରାଜାମଲେ ଜାଣ ।
ଗୋଟିଏ ଉବୁରି ଆଉ ନ ଆସେ ଏଣିକି
ଶୁଣିଣ ଅବଳା ନାରୀ ବିଚାରେ ପୁଣି କି ।
ମାୟାଯାନ ସୁମରଣା କଲେ ରାଣୀ ପୁଣ
ତତକ୍ଷଣେ ଆସି ଯାନ ମିଳେ ତା ଆଗେଣ ।
ସେ ଯାନକୁ ଦେଖିଣ ଉପରେ ନାରୀବସି
ଗଗନେ ଚଳିଲା ଯାନ ହିରଣ୍ୟ ଗର୍ଭରେଟି ।
ହିରଣ୍ୟ ଗର୍ଭପୁରେ ହେଲେ ପରବେଶ
ଏଥୁଅନନ୍ତରେ ଶୁଣଗୋ ଦିବ୍ୟରସ ।
ଅଠର କ୍ଷଉଣୀ ଯେ ଅସୁରଙ୍କ ନାରୀ
ପୁତ୍ରନାତି ସ୍ୱାମୀ ମରିବା ଦେଖିକରି ।
ଉଲ୍କା ମନ୍ତ୍ର ସୁମରି ସମସ୍ତେ ଚଳିଗଲେ
ରାତ୍ରେ ବିଷ୍ଣୁପୁର ସମସ୍ତେ ତେଜ୍ୟାକଲେ ।
ଖର୍ବେକ ଘର ଅଶୋଭା ସେହୁପୁର
ବାକି ରହିବାର ଦୁଇକୋଟି ଘର ।
ପାର୍ବତୀ ବୋଇଲେ ଦେବ ପଚାରଇଁ ଏବେ
ସେହିଦିନ ଜାନକୀ ପଦ୍ମବେଶ ଭାବେ ।
ସେହିଦିନ ରଜନୀରେ ଭେଟହେଲେ କି ରାମ
ଜାନକୀ କହିଲେଟିକି ଭ୍ରଥ ଅଭିମାନ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ମନଦେଇ
ସାତଘଡ଼ି ରଜନୀରେ ଶ୍ରୀରାମ ବିଜେହୋଇ ।
ଦେଖିଲେ ଜାନକୀର ହୋଇଛି ପଦ୍ମମୁଖ
ସଙ୍ଗରେ ଛନ୍ତି ତାର ମନୁମାୟାଟି ସ୍ୱଛ ।
ପଲଙ୍କ ଉପରେ ଯେ ବସିଛି ଚନ୍ଦ୍ରମୁଖୀ
ଦେଖିକରି ରାମ ମନରେ ହେଲେ ସୁଖୀ ।
ବୋଇଲା ସଙ୍ଗାତ ଆଜ ବେଶତ ଅତିତୋରା
ମସ୍ତକ ଉପରୁ ଏକଫୁଲ କେଣେଗଲା ।
ଜାନକୀ ବୋଇଲେ ଆଜ ବିପରୀତ ହେଲା
ହନୁମନ୍ତ ମୋର ପୁରେ ଆଜି ଆସିଥିଲା ।
ବୋଇଲା ଭରତ ତୋର ଶକ୍ତି ଭେଦ ହେଲା
ଯାନୁଫିଟି ଶିବଶକ୍ତି ପାତାଳେ କଣ୍ଟିଲା ।

ସୁଷେଣ କହିବାରୁ ମସ୍ତକୁଁ ଫୁଲ ନେଲା
ଭରତ ଜୀଇବ ବୋଲି ଏଠାରୁ ବେଗେଗଲା ।
ଶୁଣିକରି ରାମରାଣ ସନ୍ତୋଷ ହୋଇଲେ
ସୀତାଙ୍କୁ ପଲ୍ୟଙ୍କରେ ଘେନିଣ ଶୋଇଲେ ।
ନାନାବନ୍ଧେ ରତିରସ ବିନୋଦେ ଲୀଳାକରି
ଜାନକୀର ମନତୋଷ କରି ରଘୁପଧାରୀ ।
ଏଥୁଅନନ୍ତରେ ରଜନୀ ହେଲା ଶେଷ
ବାହାରେ ଅବକାଶ କଉଶଲ୍ୟା ସୁତ ।
ମର୍ଦ୍ଦନ ମାଜଣା ଯେ ସ୍ନାନ ବିଧିକଲେ
ଦେବାର୍ଚ୍ଚନ ସାରିଣ ସଭାରେ ବିଜେ ହେଲେ ।
ଏଥୁଅନନ୍ତରେ ଶୁଣ ଗୋ ଭଗବତୀ
ରଜନୀ ଶେଷ ହେଲା ଭରତ ବେଗେ ଉଠି ।
ଦେଖିଲେ କଟକ ଯେ ଦିଶେ ନାରଖାର
ଗୋଟିଏ ଅସୁର ଯେ ନାହାନ୍ତି ସେହୁପୁର ।
ଭରତ ବିରଚିଲେ ଅସୁରେ ପଳାଇଲେ
କେହି ଗୋଟିଏ ଯେ ଏପୁରେ ନ ରହିଲେ ।
ସେହିପୁରେ ଯେତେକ ଥିଲେ ନର ପୁଣ
ପ୍ରଭାତରୁ ଭେଟ ହେଲେ ସମସ୍ତେ ଆସିଣ ।
ଭରତ ପଚାରିଲେ ଏରାଜ୍ୟ ମନ୍ତ୍ରୀ କାହିଁ
ପରଜା ଜଣାଇଲେ ଅସୁର ମନ୍ତ୍ରୀହୋଇ ।
ତୋହର ମାଡ଼ ଦେଖିଣ ସମସ୍ତେ ପଳାଇଲେ
ଅସୁରନରନାରୀ ଯେ ଗୋଟିଏ ନ ରହିଲେ ।
ଭରତ ବୋଇଲେ ପୂର୍ବେ ମନ୍ତ୍ରୀ କେହୁଥିଲେ
ଶୁଣିଣ ପାତ୍ରମନ୍ତ୍ରୀ ଆଗରେ କହିଲେ ।
ବୋଇଲେ ସାତଯୁଗ ଅନ୍ତରେ ଆମ୍ଭବଂଶ
ନରରାଜା ଥିଲାବେଳେ ମନ୍ତ୍ରୀଥିଲଟି ଅବଶ୍ୟ ।
ଶୁଣିକରି ଭରତ ପାଟ ବାନ୍ଧିଲେ ନେଇ
ଆଜଠାରୁ ମୋରପୁରେ ପାତ୍ରମନ୍ତ୍ରୀ ହୋଇ ।
ଯେତେକ ଅସୁର ଘର ପଳାଇ ଏଥୁଁ ଗଲେ
ସେ ଘରମାନଙ୍କରେ ପରଜା ରଖ ଭଲେ ।
ତାଙ୍କର ଧନ ଦ୍ରବ୍ୟ କେହି ଯେ ନ ନେବେ
ସେ ଘରେ ରହିଲାଲୋକେ ତା ଭୋଗକରିବେ ।
ହାତୀ ଘୋଡ଼ା ରଥ ଗାଈ ଯେ ମଇଁଷୀ
ଏମାନଙ୍କୁ ଯତନ କରିଣ ରଖନ୍ତିକି ।
ଗଡ଼ର ଚରିପାଶ ଶଉଚ ବେଗେକର
ଏତେବୋଲି ଆଜ୍ଞାଦେଲେ ଭ୍ରଥ ନୃପବର ।

ଭରତ ଆଜ୍ଞାଦେଲେ ଅଣାଅ ସୈନ୍ୟବଳ
ଅଇଲେ ସୈନ୍ୟବଳ ଲାଗିଲା ଚହଳ ।
ସେନାପତିମାନଙ୍କୁ ଡାକିଣ ଶାଢ଼ୀଦେଲେ
ଏ ପୁରକୁ ଜଗ ବୋଲି ତାହାଙ୍କୁ କହିଲେ ।
ସରଦାରମାନଙ୍କ ଶିରେ ଦେଲେ ପାଟ
ବିଶୋଇମାନଙ୍କୁ ଦେଲେକ ସେହିମତ ।
ପାଦାନ୍ତିମାନଙ୍କୁ ସେ ଡାକିଣ କହିଲେ
ବାହାର ଚରିଦ୍ୱାର ଜଗ ହେ ବୋଇଲେ ।
ଅଠର କ୍ଷଉଣୀ ଯେ ପଦାତି ବଳ ହେଲେ
ଅଠର ଲକ୍ଷ ସେନାପତି ସେଥିରେ ଭଲେ ।
ଏ ସରଦାର ବାସ୍ତରୀ ଯେ ପରମାଣ
ବାରକୋଟି ବିଶୋଇସେଥିରେ ହେଲେଜାଣ ।
ହାଟୁଆ ବାଟୁଆ ପାଟକ ଜାତି ପୁଣ
ବାରକୋଟି ଘର ଅଟନ୍ତି ପରମାଣ ।
ଦେଖିକରି ଭରଥ ଗଡ଼ରେ ପଶିଲେ
ହୀରା ନୀଳା ପୁର ରତ୍ନରେ ଦେଖିଲେ ।
ଜଗତୀ ଅଟ୍ଟାଳି ଯେ ଦେଖିଲେ ଫୁଲବନ
ପୋଖରୀ କୂପ ବାମ୍ଫୀ ବଗିଚ୍ଚ ତୋଟା ଜାଣ ।
ଷୋଳ କ୍ରୋଶ ଆୟତନ ପାଚେରୀ ଅଛିବେଢ଼ି
ମୁଗୁନି ପଥର କଳାମେଘ ଯେହ୍ନେ ଧାଡ଼ି ।
ଦେଖି ଭରତ ବୀର ମନ ସନ୍ତୋଷ କଲେ
ଗଉତମ ଋଷିଙ୍କି ସୁମରଣା କଲେ ।
ଅହଲ୍ୟାର ସ୍ୱାମୀ ମିଳିଲେ ଆସିକରି
ଦେଖିଣ ଭ୍ରଥବୀର ନମସ୍କାର କରି ।
ଭରତବୋଇଲେ ଏ ପୁରେ ତୁମ୍ଭେ ଗୁରୁହେଲ
କୁଳର ପୁରୋହିତ ଆଜଠାରୁ ହେଲ ।
ଶୁଣିଣ ଗଉତମ ପରମ ତୋଷ ହେଲେ
ମନ୍ତ୍ରପଢ଼ି ପଞ୍ଚାମୃତ ପାଣି ସେ ସିଞ୍ଚିଲେ ।
ସକଳ ସ୍ଥାନ ପବିତ୍ର କଲେ ମୁନିବର
ମର୍ଦ୍ଦନ ମାଜଣା ତହିଁରେ ହେଲେ ଭ୍ରଥବୀର ।
ସ୍ନାନ ସାରି ଦେବର୍ଚ୍ଚନ ବିଧି ସେହୁକଲେ
ସୁପକାର ଆସି ପକ୍ୱ ପଦାର୍ଥ ତିଆରିଲେ ।
ଷଡ଼ରସେ ଭୋଜନ କଲେ ଭ୍ରଥବୀର
ସେନା ଯୂଥପତି ଭୁଞ୍ଜିଲେ ସକଳ ।
ସିଂହଦ୍ୱାରେ ସମସ୍ତେ ହେଲେଯାଇଁ ଠୁଳ
ବାଦ୍ୟର ନିଶାଣରେ କମ୍ପେ ତିନିପୁର ।

ଶ୍ୱେତହସ୍ତୀ ଘଳିଶି ଯେ ସିଂହଦ୍ୱାରେ ଉଭା
ଅମରୀ ତାଙ୍କପରେ ପାଉଅଛି ଶୋଭା ।
ଦେଖିଣ ଭ୍ରଥବୀର ମନରେ ସୁଖୀହେଲେ
ଅମରୀ ଉପରେ ରଷିଙ୍କି ବସାଇଲେ ।
ସେନା ଯୂଥପତି ଅମରୀ ପରେ ବସି
ପାତ୍ର ମନ୍ତ୍ରୀ ଦୁଇଜଣ ବସିଲେକ ହସ୍ତୀ ।
ଦେଖିଣ ଭ୍ରଥବୀର ବସିଲେ ହସ୍ତୀପରେ
ଛତିଶାନିଯୋଗ ଟେକି ଧଇଲେ ଛତ୍ରିକରେ ।
ଘରିଘାଟ ଦେଖିଣ ଗିରିମାଳ ଦେଖି
ବଡ଼ଦାଣ୍ଡେ ଫେରିଣ ଅଇଲେ ଲେଉଟି ।
ଗଡ଼ର ସିଂହଦ୍ୱାରେ ହେଲେ ପରବେଶ
ହସ୍ତୀପରୁ ଓହ୍ଲାଇ ଗଲେ ଭିତରେତ ।
ପାତ୍ର ମନ୍ତ୍ରୀ ନୃତ୍ୟକାରୀ ବେଶ୍ୟାମାନେଗଲେ
ଆନନ୍ଦରେ ଯେ ଯାହାରପୁରରେ ହୋଇଲେ ।
ଯୂଥପତି ସେନାପତି ରଷିଙ୍କି ଘେନି ପୁଣ
ଭ୍ରଥ ରାଜା ମଣୋହି ଯେ କଲେକ ବହନ ।
ଶୁପାତି ଶେଯ ଉପରେ ସୁଖେ ନିଦ୍ରାଗଲେ
ରଜନୀର ଶେଷରେ ସମସ୍ତେ ଉଠିଲେ ।
ନିତ୍ୟକର୍ମ ସାରିଣ ସ୍ନାନ ବିଧି କଲେ
ଦେବାର୍ଚ୍ଚନ ସାରିଣ ମଣୋହିରେ ବିଜେକଲେ ।
ଏହିରୂପେ ସେଠାରେ ସଭା ମଣ୍ଡାଇଲେ
ଏମନ୍ତେ ପକ୍ଷେକ ଯେ ଗଲାକ ତହିଁରେ ।
ଭରତ ରାଜାହେଲେ ସେହି ଯେ ରାଜ୍ୟରେ
ଏଥୁ ଅନନ୍ତରେ ଶୁଣ ପାର୍ବତୀ ଗୋ ଧୀରେ ।
ଶ୍ରୀରାମଙ୍କୁ ଦର୍ଶନ କରିବାକୁ ମତି
ଭରତ ଚଳିଗଲେ ଅଯୋଧ୍ୟାର କତି ।
ରଥରୁ ଓହ୍ଲାଇ ଯେ ଭିତରକୁ ଗଲେ
ଶ୍ରୀରାମଙ୍କ ଚରଣେ ମାନ୍ୟଧର୍ମ କଲେ ।
ଶ୍ରୀରାମ ବୋଇଲେ ଶତ୍ରୁ କଲଟିକି ସାଧି
ଭରତ ବୋଇଲେ ଦେବ ଅସୁର କଲି ବଧ
ଶ୍ରୀରାମ ବୋଲେ ବାବୁ ବେଗ ହୋଇଚଳ
ଭାରିଯା ମାତାଙ୍କୁ ସଙ୍ଗରେ ନିଅ ତୋର ।
ଶୁଣିଣ ଭରଥ ଯେ ଜାନକୀ ପୁର ଗଲା
ସୀତା ଚରଣରେ ଓଳଗି ଶୋଇଲା ।
ଜାନକୀ ବୋଇଲେ ବାବୁ କୁଶଳଟିକି ସବୁ
ଭରତ ବୋଇଲେ ତୁମ୍ଭ ଚରଣ ପ୍ରସାଦୁ ।

ଜାନକୀ ବୋଇଲେ ତୁମ୍ଭ ଘରଣୀ ଘେନିଚଳ
ତୁମ୍ଭ ମାତାମାନଙ୍କୁ ନିଅ ଯେ ସଙ୍ଗର ।
ଜାନକୀ ବୁଝିବେ ତୁମ୍ଭର ବଡ଼ ଗଡ଼େ ପୁଣ
ବିଷ୍ଣୁପୁର ଗଡ଼ ତୁମ୍ଭେ ବୁଝିବ ଆପେ ଜାଣ ।
ଶୁଣିଣ ଭରତ ଯେ ବେଗେ ଚଳିଗଲେ
ଜନନୀଙ୍କ ଆଗରେ ସକଳ କହିଲେ ।
ବୋଇଲେ ଶ୍ରୀରାମ ଜାନକୀ ଦେଲେ କହି
ବେଗେ ତୁମ୍ଭେ ଚଳ ଜୟକଲା ଭୂଇଁ ।
ଏତେ କହି ଘରଣୀର ଆଗରେ ମିଳିଲେ
ଦେଖିକରି ମାଳିନୀ ଅର୍ଘ୍ୟ ବନ୍ଦାଇଲେ ।
ସକଳ କଥାମାନ ସେ କହିଲେ ବୁଝାଇ
ଶୁଣି କରି ମାଳିନୀ ସନ୍ତୋଷ ମନ ହୋଇ ।
ଭରତ ବୋଇଲେ ଗୋ ଯିବା ଏହିକ୍ଷଣ
ଜୟକଲା ଭୂମିକି ଅଇଲି ଛାଡ଼ିଣ ।
ଶୁଣିଣ ମାଳିନୀ ଦାସୀଗଣଙ୍କୁ ଡାକିଲା
ସଜହୁଅ ବେଗେ ଆମ୍ଭେ ଯିବାର ହୋଇଲା ।
ଶୁଣିଣ ଦାସୀମାନେ ବେଗେ ବେଶ ହେଲେ
ମାଳିନୀକି ଆସିଣ ରାଣୀ ବେଶ କଲେ ।
ବେଶ ହୋଇ ସମସ୍ତେ ଚଳିଲେ ଅନ୍ତଃପୁରୁ
ଶାଶୁଙ୍କୁ ଓଳଗିଲେ ଦେଖି ସମସ୍ତେ ଦୂରୁ ।
ଶାଶୁଙ୍କର ଦାସୀମାନେ ଷାଠିଏ ଯେ ଶାଶୁ
ହରଷରେ ବେଶହୋଇ ବାହାର ମେଲାକୁ ।
ଭରତ ଦୁଇମାତା ଦୁଇଶତ ଦାସୀଙ୍କି ରଖିଲେ
ଏ ନବର ଜଗି ରହ ବୋଲିଣ ବୋଇଲେ ।
ସିଂହଦ୍ୱାରେ ରଥପରେ ସମସ୍ତେ ବସିଲେ
ଲକ୍ଷ୍ମଣର ନବରେ ପ୍ରବେଶ ହୋଇଲେ ।
ସୁଗ୍ରୀବଙ୍କୁ ଓଳଗି ଯେ ହୋଇଲେ ମାଳିନୀ
କୈକେୟୀଙ୍କୁ ଓଳଗିଲେ ସୁମିତ୍ରା ଉଠିପୁଣି ।
ଉର୍ମିଳା ଉଠିଣ ଯେ ଶାଶୁଙ୍କୁ ଓଳଗିଲେ
ମାଳିନୀର ଚରଣେ ପୁଣ ଓଳଗି ଶୁତିଲେ ।
ହରଷରେ କଥା ଯେହେଲେ ସର୍ବଜନ
ସେ ପୁରୁ ଚଳିଲେ ପୁଣ ହରଷ ମୁଖେଣ ।
କଉଶଲ୍ୟା ପୁରରେ ହେଲେ ପରବେଶ
ଶାଶୁଙ୍କୁ ଓଳଗିଲେ ମାଳିନୀ ବିଶେଷ ।
କଉଶଲ୍ୟା ଉଠି କୈକେୟୀଙ୍କୁ ମାନ୍ୟକରେ
ହରଷରେ କଥା ହେଲେ ସର୍ବେହୋଇମେଳେ ।

ଶ୍ରୀରାମଙ୍କୁ କହିଣ ରଥରେ ଯାଇ ବସି
ସୁମନ୍ତ ବାହିଲେ ରଥ ଗଲା ଶୀଘ୍ର ଗତି ।
ବଡ଼ଦାଣ୍ଡେ ରଥ ଯେ ବାହାର ହୋଇଲା
ଅଯୋଧ୍ୟାରେ ବହୁତ ବିଚ୍ଛୁରି ପଡ଼ିଲା ।
ଅଯୋଧ୍ୟା ନରନାରୀ ବିଚ୍ଛୁରିଲେ ପୁଣ
ଦୁଇଭାଇ ରାଜାହେଲେ ଜିଣିଣ ପୁରମାନ ।
ତିନିଦିନ ରତ ଯାଇ ଭରଥପୁରେ ମିଳି
ଦେଖିଣ ରାଜ୍ୟ ଲୋକେ ଆନନ୍ଦେ ସଙ୍ଖୋଳି ।
ଗଡ଼ର ସିଂହଦ୍ୱାରେ ବିଜୟେ ଯାଇଁକଲେ
ରଥରୁ ଓହ୍ଲାଇଣ ଭିତର ପୁରେ ଗଲେ ।
ଦେଖିଲେ ଭିତର ପୁର ଅତି ପରିମଳ
ଅଯୋଧ୍ୟାକୁ ଶତେଗୁଣ ଦିଶଇ ସୁନ୍ଦର ।
ଦେଖିଣ ସକଳ ମାତା ଆନନ୍ଦ ହୋଇଲେ
ଧନ୍ୟ ଧନ୍ୟ ଶ୍ରୀରାମ ବୋଲି ପ୍ରଶଂସିଲେ ।
ମର୍ଦ୍ଦନ ମାଜଣା ହୋଇଲେ ତତକ୍ଷଣ
ସ୍ନାନ ସାରି ନିତ୍ୟକର୍ମ ସାରିଲେ ବହନ ।
ଏଥୁଅନନ୍ତରେ ମାଳିନୀ କନ୍ୟା ପୁଣ
ଦାସୀଗଣ ଘେନିଣ ସେ ମାଜଣା ହୋଇଣ ।
ସ୍ନାନ ସାରି ନିତ୍ୟକର୍ମ ସାରିଣ ସେ ବେଗେ
ଅମଳାଣ ପିନ୍ଧିଣ ବେଶରେ ସରାଗେ ।
ଏଥୁଅନନ୍ତରେ ଭରତ ରାଜା ପୁଣ
ମର୍ଦ୍ଦନ ମାଜଣା ହୋଇ ସ୍ନାନ କଲେ ଜାଣ ।
ଦେବାର୍ଚ୍ଚନ ସାରିଣ ସଭାରେ ବିଜେକଲେ
ପାତ୍ର, ମନ୍ତ୍ରୀ ଅମନାତ୍ୟ ଆସିଣ ଭେଟିଲେ ।
ରାଜ୍ୟର କୁଶଳ କଥା ସମସ୍ତେ ପଚ୍ଛରି
ହାରି ଗୁହାରୀ ବୁଝି ଗଲେ ଅନ୍ତଃପୁରୀ ।
ଆସିଣ ଦରଶନ କଲେ ହନୁମନ୍ତ
ଭରତ ବୋଇଲେ ଅଟୁତୁ ମୋ ପିତାଦଶରଥ ।
ଗଣ୍ଡରାମ ଋଷି ଯେପରବେଶ ହେଲେ
ଦେଖିଣ ଭରତବୀର ଚରଣେ ନମିଲେ ।
ସୁକଲ୍ୟାଣ କରି ମୁନି ସେଠାରୁ ଚଳିଗଲେ
ଅନ୍ତଃପୁର ଭିତରେ ଯାଇଣ ମିଳିଲେ ।
ଦେଖିଣ ମାଳିନୀ କନ୍ୟା ସକଳ ଦାସୀଘେନି
ଋଷିଙ୍କର ଚରଣେ ନମିଲେ ଆସି ପୁଣି ।
ସୁକଲ୍ୟାଣ କରି ଋଷି ସେଠାରୁ ଚଳିଗଲେ
ମାତାଗଣଙ୍କର ପୁରେ ଯାଇଁଣ ମିଳିଲେ ।

ଦେଖିଣ ମାତାମାନେ ମାନ୍ୟଧର୍ମ କଲେ
ସୁକଲ୍ୟାଣ କରି ମୁନି ସେଠାରୁ ଚଳିଗଲେ ।
କାଞ୍ଚନ ଗିରିରେ ମୁନି କଲେକ ଆଶ୍ରମ
ଗଙ୍ଗାକୁ ନିକଟ ଯେ ଅଟେ ସେହୁ ସ୍ଥାନ ।
ଭରଥପୁର ନଗ୍ରକୁ ଲଗା ସେହୁ ଜାଣ
ଏଥୁଅନନ୍ତରେ ଗୋ ଗଣେଶ ମାତା ଶୁଣ ।
ହନୁମନ୍ତ ଅନ୍ତଃପୁରେ ହେଲା ପରବେଶ
ମାଳିନୀର ଚରଣେ ନମିଲା ବିଶେଷ ।
ମାଳିନୀ ବୋଇଲା ପୁତ୍ରରେ କେତେ ତୁ ମାନ୍ୟକରୁ
ତୋର ଅରଜନ ଆମ୍ଭେ ବୁଝିଲୁଁ ଏଠାରୁ ।
ଧର୍ମରେ ଆମ୍ଭର ପୁତ୍ର ଆମ୍ଭଙ୍କୁ ପୋଷିଲୁ
ଭଲ ସୁଯୋଗରେ ତୁରେ ରାମଙ୍କୁ ସେବିଥିଲୁ ।
ଶୁଣିଣ ହନୁମନ୍ତ ବେଗେ ଚଳିଗଲା
କୈକେୟୀ ଚରଣେ ସେ ଓଳଗି ଶୋଇଲା ।
କୈକେୟୀ ବୋଇଲେ ମୋର ଅଟେ ଏ ଦିଅର
ମୋ ପୁତ୍ରକୁ ଏହି ଜୀଆଏ ଥରେ ଥର ।
ଭଲ ଯୋଗରେ ଶ୍ରୀରାମଙ୍କୁ ଭେଟ ହେଲା
ପିତାରୁ ଅଧିକ ଉପହାର ଏହୁ କଲା ।
ସକଳ ମାତା ଆସି ସୁକଲ୍ୟାଣ କଲେ
ଦେଖି ହନୁମନ୍ତ ମନରେ ତୋଷ ହେଲେ ।
ଶୀତଳ ମଣୋହି ଯେ କଲେ ସର୍ବଜନ
ରାଣୀହଂସ ମାତାମାନେ କଲେକ ଭୋଜନ ।
ଏହିରୂପେ ସେ ପୁରେ ମାସେକ ରହିଲେ
କୈକେୟୀ ମାତାଙ୍କୁ ଭରତ କହିଲେ ।
ବୋଇଲେ ଜନନୀ ଗୋ ଯାଉଛି ବିଷ୍ଣୁପୁର
ଏ ପୁର ବୁଝିବୁ ପ୍ରଜା ପାଳିବୁ ସୁଖର ।
ତିନିପୁରେ ପ୍ରଶଂସା ଯେମନ୍ତେ ପାଇବୁ
ବଡ଼ପୁତ୍ର ଶ୍ରୀରାମରେ ବୁଲ୍ଲଭ ହୋଇବୁ ।
ପକ୍ଷକରେ ଆସିବି ମୁହିଁ ଏହି ପୁର
ପାତ୍ର ମନ୍ତ୍ରୀଙ୍କି ଯାଇଣ କହିଲେ ଭ୍ରଥବୀର ।
ବୋଇଲେ ଏ ପୁରଜନେ ହେବେ ବଡ଼ସୁଖୀ
ସମସ୍ତଙ୍କ ମୁଖରେ ପ୍ରଶଂସା ଶୁଣ ତୁଟି ।
ଆନନ୍ଦରେ ନରନାରୀ କରିବେ ବେହାର
ସାତଯୁଗ ତୋହର ଯିବଟି ପାଶୋର ।
ଜନନୀମାନେ ମୋର ଏ ପୁରେ ରହିଲେ
ପନ୍ଦର ଦିନରେ ମୁଁ ଆସିବି ଏ ପୁରେ ।

ଋଷିଙ୍କି ଡକାଇଣ କହେ ଭ୍ରାଥ ବୀର
ସବୁଦିନ ଭଲ ମନ୍ଦ ବୁଝିବ ଏହୁ ପୁର ।
ଏମନ୍ତେ ସର୍ଦ୍ଦାର ସେନାପତିଙ୍କି ଡାକି
ବୋଇଲେ ପାତ୍ର ମନ୍ତ୍ରୀଙ୍କ ବୋଲରେ ଥିବଟି ।
ଏତେ କହି ଭରତ ରଥରେ ବସିଲେ
ହନୁମନ୍ତକୁ ନେଇଣ ପାଖେ ବସାଇଲେ ।
ସୁମନ୍ତ ବାହେ ରଥ ଚଳେ ଘନ ଘନ
ରାଣୀ ଦାସୀ ଗଣେ ଯେ ରଥରେ ବସିଣ ।
ମାଳିନୀକି ଭରତ ରଥରେ ବସାଇ
ଋରିପାଶେ ଦାସୀଏ ବେଢ଼ିଛନ୍ତି ତହିଁ ।
ବିଷ୍ଣୁପୁର ଗଡ଼ଦ୍ୱାରେ ହେଲେ ପରବେଶ
ରଥରୁ ଓହ୍ଲାଇଲେ କୈକେୟୀର ଶିଷ୍ୟ ।
ଭିତର ଅନ୍ତଃପୁରେ ହୋଇଲେ ପ୍ରବେଶ
ଦେଖିଲେ ଅନେକପୁର ସେଥିରେ ବିଶେଷ ।
ପଞ୍ଚରତ୍ନ ପୁର ଲକ୍ଷେ ସେଥିରେ ପୁଣ
ସମସ୍ତ ଭଣ୍ଡାର ଘର ଅଟନ୍ତିଟି ଜାଣ ।
ସପତଶାଳା ପୁର ଅଛି ଲକ୍ଷେ ଜାଣ
ସେ ପୁରରେ ରାଣୀହଂସ ରହିଲେ ଯାଇଁଣ ।
ନବ ଗୁଞ୍ଜର ପୁର ଅଛି ଲକ୍ଷେ ପୁଣ
ସେଥିରେ ବିଜେ କଲେ ଭରତ ରାଜନ ।
କଟକର ମହିମା କି କହିବା ଅବା
ସୁର ମୁନି ସ୍ୱର୍ଗରେ ଥାଇଣ କଲେ ଲୋଭା ।
ଋଷିଙ୍କି ଦେଖି ଭ୍ରାଥ ମାନ୍ୟ ଧର୍ମ କଲେ
ସିଂହାସନ ଉପରେ ନେଇ ବସାଇଲେ ।
ହନୁମନ୍ତ ଭିତରେ ରାଣୀର ପାଶେ କହି
ଅଯୋଧ୍ୟାକୁ ମୁହିଁ ଯେ ଯାଉଣ ଅଛଇଁ ।
ନଳ ନୀଳ ମାରୁତି ଯେ ଭରତ ଆଗେ କହି
ଅଯୋଧ୍ୟାକୁ ଆମ୍ଭେମାନେ ଯାଉଛୁ ଗୋସାଇଁ ।
ଶୁଣିଣ ଭରତ ଯେ ମେଲାଣି ତାଙ୍କୁ ଦେଲେ
ଯାଅ ବାବୁ ବେଗ୍ରରେ ବୋଲିଣ କହିଲେ ।
ଶ୍ରୀରାମର ଆଗରେ ଯେ କହିବ କୁଶଳ
ଶୁଣିଣ ତିନି ବୀରେ ଚଳିଣ ଗଲେ ଖର ।
ଅଯୋଧ୍ୟା କଟକରେ ହେଲେ ପରବେଶ
ଶ୍ରୀରାମଙ୍କୁ ଦର୍ଶନ କଲେକ ହରଷ ।
ଭରତର କୁଶଳ ସମସ୍ତେ କହିଲେ
ମାତାମାନଙ୍କର କଲ୍ୟାଣ ସମ୍ଭାଦିଲେ ।

ଜାନକୀଙ୍କ ପୁରେ ମାରୁତି ଯାଇଁ ମିଳି
ଜାନକୀ ଚରଣେ ଶୋଇଲେ ପାୟେ ପଡ଼ି ।
ଜାନକୀ ବୋଲେ ଉଠ ଧର୍ମର ନନ୍ଦନ
ଆମ୍ଭଯୋଗୁଁ କେତେ କଷ୍ଟ ପାଇଲୁହନୁମାନ ।
ମାଳିନୀ ଭଗ୍ନୀ ମୋର ଭରତ ଦିଅର
ବଡ଼ଶାଶୁକୈକେୟୀ ମୋରହୋଇଲେ ନିଷ୍କଳ ।
ମାରୁତି ବୋଇଲେ ମାତ ଏବେ ତୁମ୍ଭେ ଶୁଣ
ତୁମ୍ଭ ଭଗ୍ନୀ କହିଲେ ମୋ ଆଗରେ ପୁଣ ।
ବୋଇଲେ ଠାକୁରାଣୀଙ୍କି କହିବ ଆମ୍ଭର
ଏପୁର ମାନ ଥରେ ଦେଖିବେ ନୟନର ।
ଶୁଣିଣ ଜାନକୀ ଯେ ପରମ ତୋଷ ହେଲେ
ହରଷରେ ରହିଲେ ବୋଲିଣ ବିଋରିଲେ ।
ସେଠାରୁ ହନୁମନ୍ତ ବହନ ହୋଇ ଗଲା
କଉଶଲ୍ୟାଙ୍କ ଆଗରେ ଯାଇଁ ଓଳଗିଲା ।
ସକଳ ଜାନକୀ ଏକ ମେଳରେ ଯେ ଥିଲେ
ଅଇଲ କି ମାରୁତି ବୋଲିଣ କହିଲେ ।
ଭାଉଜମାନେ କି ରହିଲେ ନିଶ୍ଚିନ୍ତରେ
ପୁତ୍ର ବଧୂମାନେ ସେ ରାଜ୍ୟରେ ବିହରେ ।
ମାରୁତି ବୋଇଲେ ତୁମ୍ଭର ପରସନ୍ନେ
ତୁମ୍ଭଙ୍କୁ ପ୍ରଶଂସା ଯେ କରନ୍ତି ସର୍ବଜନେ ।
ପାର୍ବତୀ ବୋଇଲେ ଦେବ ଏଥୁଅନନ୍ତରେ
ଶ୍ରୀରାମ ଲକ୍ଷ୍ମଣ କିସ କଲେ ଅଯୋଧ୍ୟାରେ ।
ଈଶ୍ୱର ବୋଲେ ଏଥିରେ ବେନି ମାସ ଗଲା
ଆରଣ୍ୟକ ଋଷି ଆସି ପ୍ରବେଶ ହୋଇଲା ।
ଦଣ୍ଡ କମଣ୍ଡଳ ଯେ ଶ୍ରୁବ ପୋଥି ଧରି
ଅଗ୍ନିର ପ୍ରାୟେ ଋଷିର ତେଜ ଯେ ବିସ୍ତାରି ।
ଶ୍ରୀରାମ ଆଗରେ ଋଷି ହେଲେ ପରବେଶ
ଦେଖି କରି ଶ୍ରୀରାମ ମନରେ ହେଲେ ତୋଷ ।
ଗଙ୍ଗାଜଳ ଆଣିଣ ଚରଣ ଧୋଇ ଦେଲେ
ଝୀନ ବସନେ ପୋଛିସିଂହାସନେ ବସାଇଲେ ।
ଧୂପ ଦୀପ ଦେଇଣ ମୁନିଙ୍କି କଲେ ପୂଜା
ମୁନି ବୋଇଲେ କୁଶଳଟି ହେ ଶ୍ରୀରାମ ରାଜା ।
ଶ୍ରୀରାମ ବୋଇଲେ ତୁମ୍ଭ ପ୍ରସାଦେ ସବୁ ଭଲ
ଶୁଣିଣ ମୁନିବର ବୋଲନ୍ତି ଉତ୍ତର ।
ତିନିପୁର ସପତ ଦ୍ୱୀପ ମହୀ ପୁଣ
ଦୁଷ୍ଟ ମାରି ସନ୍ଥ ରଖିଲା ଶ୍ରୀରମଚନ୍ଦ୍ର ରାଣ ।

ଦେବତାଏ ହେ ସୁଖ ପାଇଲେ ତୁମ୍ଭ ଲାଗି
ଋଷିମାନେ ତପକଲେ ଯୋଗମାନ ସାଧି ।
ରାଜାମାନେ ସୁଖୀ ହେଲେ ପରଜାମାନେଭଲ
କେବଳ ପିତା ଶତୃ ନ ମଲେ ଋପଧର ।
ଦୁଇଗୋଟି ପିତା ଶତ୍ରୁ ଏବେ ନାଶ ଗଲେ
ଆହୁରି ପିତାଶତୃ ଯେ ରହିଲେ ମହୀରେ ।
ତାଙ୍କର ଭୟରେ ଋଷି ଡରିଲେ ବନସ୍ତରେ
ତପସିଦ୍ଧ ନୋହୁ ଯେ ପଳାନ୍ତି ତାଙ୍କ ଡରେ।
ଜମ୍ବୁଦ୍ୱୀପ ଭୃଥ ଖଣ୍ଡ ମଣ୍ଡଳରେ ପୁଣି
ସେ ବେନି ଅସୁରେ ଯେ ଭ୍ରମନ୍ତି ଧରଣୀ ।
ମାନଧାତା ଉପରେ ଯେ ସପତ ବଂଶଠାରେ
ରଘୁନାଥ ନାମରେ ନୃପତି ଶେଖରେ ।
ତାଙ୍କଠାରୁ ତୁମ୍ଭବଂଶ ରଘୁବଂଶ ଜାଣ
ସୂର୍ଯ୍ୟବଂଶ ବୋଲି ତେଣୁ ହେଲା ବିଦ୍ୟମାନ
ମଧୁସୂଦନ ନୃପତିର ନୁହଇ କୁମର
ବେନି ଲକ୍ଷ ବର୍ଷ ରାଜା ଧଇଲେ ମହୀଭାର ।
ପୁତ୍ର ପ୍ରାୟେ କରି ସେ ପ୍ରଜାଙ୍କୁ ପାଳିଲା
ବନସ୍ତରୁ ଫଳ ମୂଳ ଆଣିଣ ବିକିଲା ।
ସେଥିରେ ପେଟ ପୋଷେ ମଧୁସୂଦନ ପୁଣ
ତେଡ଼େ ଧର୍ମବନ୍ତ ରାଜା ନୋହିଲା ନନ୍ଦନ ।
ପ୍ରତିଦିନେ ନାରାୟଣେ ଦେଇଥାଅ ଚିତ୍ତ
ପ୍ରଜାଙ୍କର ଧନୁକୁ ତା ନ ବଳେ ମନତ ।
ସେ କାଳରେ ମୁହିଁ ତପ କରଇ ଜମ୍ବୁଗିରି
ଏକଦିନେ ବ୍ରହ୍ମା ଯାଇ ମୋର ପାଶେ ମିଳି ।
ବୋଇଲେ କୁମରରେ ବେଗେ ଚଳିଯାଅ
ମଧୁସୂଦନ ନୃପତିକି ପୁତ୍ର ଦାନ ଦିଅ ।
ବ୍ରହ୍ମାଙ୍କର ବଚନେ ମୁଁ ଅଯୋଧ୍ୟା ଅଇଲି
ନୃପତିର ନବରେ ମୁଁ ପ୍ରବେଶ ହୋଇଲି ।
ଦେଖିଣ ମଧୁସୂଦନ ନୃପତି ଦେବ ପୁଣ
ଅନେକ ଭକତି ସେ ମୋଠାରେ କଲେଜାଣ ।
ତାହାଙ୍କର ରାଣୀ ଯେ ଶରଦ ମୁକୁତା
ସେ ନାରୀ ଅନ୍ନପୂର୍ଣ୍ଣା ପଦ୍ମିନୀ ଜାତିଜିତା ।
ମୋପାଦେ ଧୋଇବାକୁ ରତ୍ନଝରୀ ଘେନି
ଜଳ ପାଇଁ ଗଲା ସେ ପଦ୍ମ ପୁଷ୍କରିଣୀ ।
ପଦ୍ମପତ୍ରେ ପାଦଦେଇ ଋଲେ ଧୀରେ ଧୀରେ
ପୁଷ୍କରିଣୀ ମଧ୍ୟ ଜଳ ଆଣେ ମୋ ନିମନ୍ତରେ ।
ନୀରଆଣି ମୋର ସେ ଚରଣ ଧୋଇଦେଲା
ଆପଣାର ଅଞ୍ଚଳରେ ସେ ଚରଣ ପୋଛିଲା ।
ଓଳଗି ହୋଇଣ କହିଲା ମୋତେ ପୁଣ
ବୋଇଲା ମୋହରକୁଳହୋଇଲା ଏବେଶୂନ୍ୟ ।
ବାଳକ ଗୋଟିଏ ମୁନି ହେ ମୋତେ ଦିଅ
ମୋହର କୁଳକୁ ତୁମ୍ଭେ ଉଜ୍ଜ୍ୱଳ କରାଅ ।
ଶୁଣିକରି ମୋହରମନ ସନ୍ତୋଷ ହୋଇଲା
ଦେବି ପୁତ୍ର ମୁହିଁ ଚିନ୍ତା ନକର ତୁମ୍ଭେପରା ।
ଶୁଣିଣ ରାଜାରାଣୀ ଫଳମୂଳ ଦେଲେ
ଭୋଜନ କରିଆମ୍ଭେ ସନ୍ତୋଷ ହେଲୁ ଭଲେ ।
ସେହି ରାତ୍ରରେ ରାଣୀ ରଜସ୍ୱଳା ହେଲା
ଋରିଦିନ ପର୍ଯ୍ୟନ୍ତେ ଆଗକୁ ନ ଆସିଲା ।
ଋରିଦିନ ଉତ୍ତାରୁ ଶୁଦ୍ଧସ୍ନାନ କରି ରାଣୀ
ମୋର ଚରଣେ ସେବାକଲେ ଆସିପୁଣି ।
ମୁଁ ବୋଇଲି ଋରିଦିନେ ରହିଲ କିମ୍ପାଲୁଚି
ରାଣୀବୋଲେ ଅଶଉଚ ହେଲି ମହାଋଷି ।
ଏକଥା ଶୁଣି କମଣ୍ଡଳୁଁ ଜଳ ମୁହିଁ ଦେଲି
ଆଜ ଗର୍ଭବାସ ହୁଅ ବୋଲିଣ ବୋଇଲି ।
ଶୁଣି ସନ୍ତୋଷେ ଜଳ କ୍ଷେପିଲେ ସେ ରାଣୀ
ଦଶମାସେ ପୁତ୍ରେକ ଜାତହେଲା ପୁଣି ।
ସେ ପୁତ୍ରର ନାମ ରଘୁନାଥ ଦେବ ହୋଇ
ବାଆନ ବର୍ଷରେ ତାର ପିତା କ୍ଷୟେଯାଇ ।
ସେହୁ ରଘୁନାଥ ଦେବ ସାଧିଲା ଜଗତ
ସେହିଠାରୁ ତୁମ୍ଭେ ଯେ ବୋଲାଅ ରଘୁବଂଶ ।
ଲକ୍ଷେରାଜା ଉପରେ ସେ ହେଲେ ନୃପମଣି
ଋରିଲକ୍ଷ ବରଷ ଭୋଗକଲେ ଧରଣୀ ।
ଯେଉଁ ଶତମୁଖା ରାବଣକୁ ମାରି ଶତ୍ରୁଘନ
ତାହାର ମାଉସୀ ପୁତ୍ର ଗୟଳସେନ ଜାଣ ।
ସେ ଆସି ରଘୁନାଥ ସଙ୍ଗେ ଯୁଦ୍ଧକଲା
ରଣରେ ରଘୁନାଥକୁ ପ୍ରାଣରେ ମାଇଲା ।
ରଘୁନାଥର ଦୁଇପୁତ୍ର ମାତାକୁ ଘେନିଚଳି
ଶବର ସାହିରେ ଲୁଚି ରହିଲେ ବର୍ଷଋରି ।
ସେଠାରୁ ଗୟଳସୁର ତପକରି ଗଲା
ରଘୁନାଥ ନନ୍ଦନ ମରିଚ ରାଜ୍ୟେ ରାଜାହେଲା ।
ସେ ଗୟଳସୁର ଯେ ସାତ ସହସ୍ର ବରଷ
ଏକଲୟ କରିଣ ବ୍ରହ୍ମାଙ୍କୁ କଲେ ତୋଷ ।

ବେଦବର ଆସିଣ ବର ତାକୁ ଦେଲେ
ଅମର ବରଦେଇ ଶସ୍ତ୍ରସବୁ ସମର୍ପିଲେ ।
ବର ପାଇବାରୁ ବଳବନ୍ତ ଯେ ଅସୁର
ଗୟଳ ପୁରରେ ଯାଇଁ କଲାକ ସେ ଘର ।
ସ୍ୱର୍ଗରେ ପଶିଣ ସେ ଦେବଙ୍କୁ ଜିଣିଲା
ବେଦବର ଆସିବାରୁ ଲେଉଟି ଅଇଲା ।
ଏବେ ସେ ଧରଣୀରେ କରେ ଉତପାତ
ତାହାର ସାନଭାଇ ଅଟେ ବଳବନ୍ତ ।
ସେହି ଦେଦବର ପାଦେ ପୁଣ ତପକଲା
ବାରଶତ ବରଷ ଠିଆରେ ସୁମରିଲା ।
ତେବେ ବର ତାକୁ ଦେଲେ ଯେ କୁଶଧର
ନାନାବର୍ଣ୍ଣରେ ସହସ୍ର ଦେଲେ ତାର କର ।
ବରପାଇ ଅସୁର ହେଲେ ଦୁଷ୍ଟପଣ
ପରଜାଙ୍କୁ ମାରିଣ ଖାଏ ପ୍ରତିଦିନ ।
ବିଧାତା ପୁରୁଷ ଯେ ଆସିଣ ମନାକଲେ
ଗଣ୍ଡାସୁର ବୋଲି ନାମମାତା ତା ଦେଇଥିଲେ ।
ତେବେ ପରଜା ରାଜା ରହିଲେ ଦ୍ୱୀପରେ
ନୋହିଲେ ସକଳ ଯେ ଖାଆନ୍ତା ଅସୁରେ ।
ଏବେ ଯେ ଦୁଇ ଅସୁର ମାର ଯାଇ କରି
ଯେବେ ସୁସ୍ଥେ ତପୀ ଜନ ରଖିବୁ ରଘୁଧାରୀ
ଶୁଣିଣ ରଘୁନାଥ ତାଟକା ହୋଇଲେ
ଆହୁରି ଦୁଷ୍ଟ ଅସୁର ଅଛନ୍ତି ବୋଇଲେ ।
ସୁମନ୍ତ୍ରକୁ ବୋଇଲେ ଆଣ ତୀର୍ଥ ଜଳ
ଅମଳାଣ ପତନୀ ଶାଢ଼ୀ ଅଳଙ୍କାର ।
ଶୁଣିଣ ସୁମନ୍ତ ମନ୍ତ୍ରୀ ବେଗେ ଚଳିଗଲା
ଭଣ୍ଡାର ଘରୁ ତୀର୍ଥ ଜଳ ଅଣାଇଲା ।
ଅଳଙ୍କାର ପତନୀ ବେଗେ ଆସେ ଘେନି
ରଘୁନାଥ ଛାମୁରେ ମିଳେ ମନ୍ତ୍ରୀମଣି ।
ଦେଖିଣ ରଘୁନାଥ ସନ୍ତୋଷ ହୋଇଲେ
ଲକ୍ଷ୍ମଣଙ୍କୁ ନେଇଣ କୋଳରେ ବସାଇଲେ ।
ତୀର୍ଥଜଳ ଘେନିଣ କଲେ ଅଭିଷେକ
ପତନୀ ବାନ୍ଧିଲେ ନେଇ ଲକ୍ଷ୍ମଣ ମସ୍ତକ ।
ସକଳ ଅଳଙ୍କାର ଅଙ୍ଗରେ ତାର ଖଞ୍ଜି
ବୋଇଲେରେ ଲକ୍ଷ୍ମଣରାଜା ତୁ ହେଲୁ ଆଜି ।
ଗୟଳସୁର ନବର କାଞ୍ଚିକର୍ଣ୍ଣାଟରେ
ଦୁଇନଗ୍ରେ ତୋତେ ରାଜା କଲି ମୁଁ ସନ୍ତୋଷରେ ।

ଗୟଳ ଗଣ୍ଡାସୁର ଦୁହିଁଙ୍କି କରନାଶ
ଦୁଇନଗ୍ରେ ରାଜାରେ ହୁଅ ତୁ ବିଶେଷ ।
ଯେତେକ ସୈନ୍ୟ ଇଚ୍ଛା ଏଥିରୁ ଏବେ ନିଅ
ତାହାଶୁଣି ବୋଇଲେ ସୁମିତ୍ରାଙ୍କ ପୁଅ ।
ଦୁଇଭାଇ ତୁମ୍ଭର ନ ନେଲେ ସୈନ୍ୟବଳ
ମୋତେ କିମ୍ପା ଏହା ହେ କହିଲ ରଘୁଧର ।
ରଘୁନାଥ ବୋଇଲେ ତୋର ଯେମନ୍ତ ଇଚ୍ଛାପୁଣ
ସେନା ଯୁଥପତିଙ୍କି ନିଅରେ ସଙ୍ଗେଣ ।
ଏତେ ବୋଲି ରଘୁନାଥ ସେହ୍ନାଯୁଥପତିରାଇ
ହନୁମନ୍ତକୁ ଆଶ୍ୱସନା କରିଣ କହଇ ।
ବୋଇଲେ ଦକ୍ଷିଣ ଦିଗରେ ଦୁଇଦୈତ୍ୟ
ଗଣ୍ଡା ଗୟଳ ବୋଲି ଅଟନ୍ତି ଦୁଇଭ୍ରାଥ ।
ବିଧାତାର ବରରେ ହେଲେ ବଳବନ୍ତ
ପରଜା ଋଷିଙ୍କି ଧରିଣ ମାରେ ସେତ ।
ତାହାଙ୍କୁ ତୁମ୍ଭେ ଏବେ କରରେ ବେଗେନାଶ
ଏତେକହି ଶିରେପାଟ ବାନ୍ଧିଲେ ରଘୁଶିଷ୍ୟ ।
ହନୁମନ୍ତକୁ ବୋଇଲେ ସମସ୍ତେ ଚଳିଯାଅ
ତାଳଧ୍ୱଜ ରଥରେ ବସିଣ ସର୍ବେଥାଅ ।
ଜାବଜୀରେ ଦେଖାଦେଇ ଆସରେ ଲକ୍ଷ୍ମଣ
ଶୁଣିଣ ସେହ୍ନାପତି ଯୁଥପତି ପୁଣ ।
ତାଳଧ୍ୱଜ ରଥ ଦାରୁକ ସଜ କଲା
ସେ ରଥରେ ବସିଲେ ପବନର ବଳା ।
ସେନାପତି ଯୁଥପତି ସକଳେ ଯାଇଁବସି
ଏଥୁଅନନ୍ତରେ ଶୁଣ ଗୋ ଶଶୀମୁଖୀ ।
ଲକ୍ଷ୍ମଣ ହସ୍ତଧରି ଶ୍ରୀରାମ ଉଠି ଗଲେ
ଅନ୍ତଃପୁରେ ଜାନକୀ ଆଗରେ ମିଳିଲେ ।
ଜାନକୀ ଯେ ପ୍ରଥମରେ ବେଶ ହେଉଥିଲା
ମନୁମାୟା ଶ୍ୱେତଗଭା ଯୁଡ଼ାରେନେଇ ଦେଲା ।
ଅଳକା କପାଳେ ଖଞ୍ଜିଲା ସୁନ୍ଦରୀ
ତହିଁପରେ ଶ୍ୱେତ ପୁଷ୍ପମାଳା ଖଞ୍ଜେନାରୀ ।
ଏ ସମୟେ ଦୁଇଭାଇ ହେଲେ ପରବେଶ
ଜାନକୀ ବୋଇଲେ ମନୁମାୟା ଶୁଣ ଦୂତ ।
ମୋହର ବାମଅଙ୍ଗ ଆଜିତ ଉଛୁଳିଇ
ବାମ ନୟନ ମୋର ସ୍ଫୁରିଣ ଡିଅଁଇ ।
ଏମନ୍ତ ସମୟରେ ଶୁଭ ମୋତେ ମିଳି
ସଉମିତ୍ରିଙ୍କି ସେ ଆସନ୍ତି ରଘୁଧାରୀ ।

ମନୁମାୟା ବୋଲେ ତୁମ୍ଭେ ଶୁଣ ଠାକୁରାଣୀ
ସଉମିତ୍ରୀ ରାଜାକଲେ ଅଯୋଧ୍ୟା ନୃପମଣି ।
ତୋତେ ଦେଖା ହେବାପାଇଁ ଆସଇଲକ୍ଷ୍ମଣ
ଛପଧାରୀ ସଙ୍ଗରେ ଘେନିଣ ଆସେପୁଣ ।
ଶୁଣିକରି ଜାନକୀ ମନରେ ତୋଷ ହେଲେ
ବାଞ୍ଛାବନ୍ତ ମାନସିକ ମୋହର ହୋଇଲେ ।
ଏତେବୋଲି ଠାକୁରାଣୀ ମସ୍ତକୁଁ ଫୁଲ କାଢ଼ି
ଗଭା ଭାଙ୍ଗି ଫୁଲପୁଣି ରଖିଲେ ସୁନ୍ଦରୀ ।
କଳା ଅମଳାଣ ଶାଢ଼ୀ ଅଣାଏ ବହନ
ସେ ଶାଢ଼ୀ ପିନ୍ଧିଣ ଦେବୀ ପାଲଟେ ବସନ ।
ହୀରା ମାଣିକ୍ୟରେ ଚୂଡ଼ୀ ଅଣାଇବେଗେ ଲାଇ
ନୂତନରେ ବେଶ ଯେହୋଇଲେ ବଇଦେହୀ ।
ଆପଣାର ବେଶ ଯେ ଯତନେ ରଖେ ଧାଇ
ଦୁଇଭାଇ ମିଳିଲେ ଜାନକୀ ପାଶେ ଯାଇ ।
ଦେଖିଣ ଜାନକୀ ପରମ ତୋଷ ହେଲେ
ଶ୍ରୀରାମଙ୍କ ଚରଣେ ଯାଇଣ ଓଳଗିଲେ ।
ଲକ୍ଷ୍ମଣ ଓଳଗିଲେ ଜାନକୀ ଚରଣ
ଯଶ ହେଉ ବୋଲି ବୋଇଲେ ଦେବୀ ପୁଣ ।
ଶ୍ରୀରାମଙ୍କ ଶିରରେ ଅର୍ଘ୍ୟ ଯାଇଁ ଦେଲେ
ଲକ୍ଷ୍ମଣର ଶିରରେ କୁସୁମ ବୃଷ୍ଟି କଲେ ।
ବୋଇଲେ ସଉମିତ୍ରୀରେ ଭଲ ଯୋଗେଭେଟ
ମନୁମାୟା ବୋଇଲେ ଦେବ ଏବେ ସୁଖ ।
ଗଣ୍ଡା ଗୟଳ ବୋଲି ଦୁଇଭାଇ ପୁଣ
ସଂସାରରୁ ଦୈତ୍ୟର ସେ ଅଟନ୍ତି ଅଂଶଜାଣ ।
ମୈଷାସୁର ପୁତ୍ର ଶାର୍ଦ୍ଦୋଳ ବୋଲି ଜାତ
ଶାର୍ଦ୍ଦୋଳର ପୁତ୍ର ଶ୍ରୀକାଳ ସମ୍ଭୁତ ।
ଶ୍ରୀକାଳର କୁମର ଅଟେ ଗଉସୁର
ଗଉସୁର କୁମର ଗୟଳ ଗଣ୍ଡାସୁର ।
ଅରୁଣ ଦ୍ୱୀପରେ ଅଟେ ତାର ଘର
ବ୍ରହ୍ମାର ବରେ ସେହୁ ହୋଇଲେ ଅମର ।
ରାତ୍ର ଦିବସରେ ସେହୁ ନ ମରିବେ ଜାଣ
ପବନେ ନ ଉଡ଼ନ୍ତି ନବୁଡ଼ି ଜଳେ ପୁଣ ।
ଅଗ୍ନିରେ ପୋଡ଼ିଲେ ନୁହନ୍ତି ସେ କ୍ଷୟେ
ଏମନ୍ତେ ବର ତାକୁ ଦେଲେ କୁଶରାୟେ ।
ଗଜେନ୍ଦ୍ର ଦେଶେ ସୁରବନ୍ତ ରାଜାଥିଲା
ଗୟଳସୁର ତାକୁ ମାରି ରାଜା ହେଲା ।
କାବେରୀ କର୍ଣ୍ଣାଟରେ ଚନ୍ଦ୍ରଶେଖର ରାଜା
ତାକୁ ମାରି ଗଣ୍ଡାସୁର ସେଥିରେ ପାଏପୂଜା ।
ଏମନ୍ତେ ବାରଯୁଗ ଏଥିରେ ବହିଗଲା
ତାଙ୍କର ମୃତ୍ୟୁଭେଦ କେହି ନ ପାଇଲା ।
ଆରଣ୍ୟକ ଋଷି ଆସି କହିଲେ ତୁମ୍ଭ ଆଗେ
ମୃତ୍ୟୁଭେଦ ନଜାଣି ଚଳୁଅଛ ତୁମ୍ଭେ ।
ତାଙ୍କର ମାରିବାର ଦିନକୁ ଖୋଜିବା
ତେବେ ସିନା ଅସୁରକୁ ଧରିଣ ଆଣିବା ।
ଶୁଣିଣ ରାମବୋଲେ ବୋଲକାରୀ ପୁଣ
ଯେମନ୍ତେ ମରିବ ତା କର ହେ ଭିଆଣ ।
ମନୁମାୟା ବୋଲେ ଯୁଥପତି ମାରୁତିକି ଆଣ
ଶୁଣିକରି ଶ୍ରୀରାମ ଡକାଇ ବହନ ।
ଯୁଥପତି ମାରୁତି ଯେ ମିଳେ ଆସି ପୁଣ
ଜାନକୀ ଆଜ୍ଞାଦେଲେ ଦାସୀଙ୍କି ଦେଖିଣ ।
ବୋଇଲେ ଏ ପଚିଶ ଜଣଙ୍କୁ ଘେନି ଯାଅ
ସ୍ତିରୀବେଶ ଏହାଙ୍କୁ ଭିନ୍ନ ଭିନ୍ନ ଦିଅ ।
ଶୁଣିଣ ଦାସୀଗଣେ ବେଗେ ଚଳିଗଲେ
ଭିନ୍ନ ଭିନ୍ନ ବେଶ ତାଙ୍କୁ କରିଣ ଆଣିଲେ ।
ସମସ୍ତେ ଅଟନ୍ତି ସ୍ତିରୀ ବେଶ ଭିନ୍ନ ଭିନ୍ନ
ଦେଖିକରି ଜାନକୀ ବୋଇଲେ ତାଙ୍କୁ ପୁଣ ।
ଲକ୍ଷ୍ମଣ ଯିବାଯାଏ ରଥରେ ବସିଥାଅ
ଅଷ୍ଟସେନା ଦାରୁକକୁ ବେଗେ ପଠିଆଅ ।
ଶୁଣିଣ ଯୁଥପତି ବେଗେ ଚଳିଗଲେ
ନୂପୁର ପାହୁଡ ଶବଦ କରେ ଭଲେ ।
ରଥର ଉପରେ ସେ ଯାଇଁଣ ବସିଲେ
ସେନାପତି ଦାରୁକ ଯେ ସେଠାରୁ ଆସିଲେ ।
ନବ ଜଣଙ୍କୁ ଦେଖି ଜାନକୀ ବୋଇଲେ
ଉର୍ମିଳା ପାଶେ ଯାଅ ବୋଲି ବୋଇଲେ ।
ନବଜଣ ଶୁଣିଣ ବେଗେ ଚଳିଗଲେ
ଲକ୍ଷ୍ମଣର ନବରେ ସତ୍ୱରେ ମିଳିଲେ ।
ଦେଖିଣ ଦାସୀଗଣଙ୍କୁ ଉର୍ମିଳା ଆଜ୍ଞାଦେଲେ
ସ୍ତିରୀବେଶ ଏହାଙ୍କୁ କରଲୋ ବୋଇଲେ ।
ଗଣ୍ଡା ଗୟଳ ମଲେ ସରେ ପୃଥିର ସଲ
ସମସ୍ତେ ସ୍ତିରୀବେଶେ ଯିବେ ସେହି ପୁର ।
ଶୁଣିଣ ଦାସୀମାନେ ବେଗେ ବେଶକଲେ
ଆନୁଆନ ବେଶ କରି ନେଇଣ ଦେଖାଇଲେ ।

ଦେଖିଣ ଉର୍ମିଳା କହିଲେ ତାଙ୍କୁ ପୁଣ
ଦେବ କାର୍ଯ୍ୟ କର ବାବୁ ଅସୁର ମାରି ପୁଣ ।
ରଥରେ ବସିଥାଅ ମାରୁତି ଯିବାଯାଏ
ଶୁଣିଣ ସେନାପତି ଦାରୁକ ଚଳିଯାଏ ।
ରଥର ଉପରେ ବସିଲେ ଯାଇଁ କରି
ଯୂଥପତି ସେନାପତି କୋଦଣ୍ଡ କରେ ଧରି
ଜାନକୀ ଉର୍ମିଳା ଯେ ତାଙ୍କୁ ପୁଣ କହି
କୋଦଣ୍ଡମାନ ଆଣି ତାଙ୍କ ହସ୍ତେ ଦେଇ ।
ବୋଇଲେ ଯେଉଁ ଘର ତୁମ୍ଭେ ସୁମରିବ
ତ୍ରୋଣରେ ଆସି ବେଗେ ପ୍ରବେଶ ହୋଇବ ।
ପାର୍ବତୀ ବୋଇଲେ ହନୁ ଲକ୍ଷ୍ମଣ କିସକଲେ
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଏବେଭଲେ ।
ଯୁଥପତି, ସେନାପତି, ସାରଥୀ ତିନିକୁଳ
ସ୍ତିରୀବେଶ ହୋଇ ଧନୁ ଧଇଲେ ସେ କର ।
ତାଳଧ୍ୱଜ ରଥରେ ଯାଇଣ ବସିଲେ
ଅକ୍ଷୟେ ଅସୁର ନାଶ ଯିବ ବିଚରିଲେ ।
ଜାନକୀ ମାରୁତିକି କହିଲେ ବଚନ
କପିଳାସ କନ୍ଦରକୁ ଯାଅରେ ପୁତ୍ର ପୁଣ ।
ବୋଲିବୁ ଶ୍ରୀରାମ ଜାନକୀ ଭେଦିଦେଲେ
ଅଭେଦ କପଚ ତ୍ରିଶୂଳ ଦିଅ ମୋରେ ।
ବଜ୍ର ବିଭୂତିଧନୁ ଯେ ବେଗେ ଦେବମୋତେ
ଅକ୍ଷୟେ ଅସୁରକୁ ମାରିବେ ସୌମିତ୍ରେ ।
ପାର୍ବତୀଙ୍କି ମାଗିବୁ ଅକ୍ଷୟ ତ୍ରୋଣ ଦିଅ
ଅତୁଟ କାଞ୍ଚଲା ତୁମ୍ଭ ଦେହରୁ କାଢ଼ିଦିଅ ।
ଅମଳିଣ ସିନ୍ଦୂର କଜ୍ଜ୍ୱଳ ଦେବ ପୁଣ
ଶୁଣିଣ ମାରୁତି ଚଳିଲା ତତକ୍ଷଣ ।
କପିଳାସ କନ୍ଦରେ ହେଲା ପରବେଶ
ହର ପାର୍ବତୀ ଦେଖିଲା ଆସନେ ବିଶେଷ ।
ସକଳ କଥା ସେ କହିଲା ତାଙ୍କ ଆଗେ
ଅକ୍ଷୟେ ଦୈତ୍ୟ ମାରିବେ ସଉମିତ୍ରୀ ଆଗେ ।
ଶୁଣିଣ ହରପାର୍ବତୀ ତୋଷ ହୋଇଲେ
ସଦାଶିବ ଅଙ୍ଗୁ ବଜ୍ର କାଛଟା କାଢ଼ିଲେ ।
ପାର୍ବତୀଦେଲେ ଅମଳିଣ ସିନ୍ଦୂର କଜ୍ଜ୍ୱଳପୁଣ
ପୁଣି ଆସି ସମର୍ପିଲେ ଅକ୍ଷୟ ଯେ ତ୍ରୋଣ ।
ସଦାଶିବଙ୍କଠାରୁ କପଟ ତ୍ରିଶୂଳ ଆଣିଲା
ସମସ୍ତ ଆୟେମାନ ଏକଠୁଳ କଲା ।

ଘେନିଣ ମାରୁତି ଯେ ବହନ ଚଳିଗଲା
ଅଯୋଧ୍ୟା ନଗ୍ରରେ ଯାଇଁ ପ୍ରବେଶ ହୋଇଲା ।
ସମସ୍ତ ଆୟୋମାନ ସୀତାଙ୍କ ପାଶେ ଦେଲା
ଦେଖିଣ ସୀତା ମନୁମାୟାକୁ କହେ ଭଲା ।
ଲକ୍ଷ୍ମଣକୁ ମନୁମାୟା ବେଶ କଲେ ପୁଣ
ବଜ୍ର ବିଭୂତି ଅଙ୍ଗେ ବୋଳିଲେ ନେଇଣ ।
ବଜ୍ର କାଛଟା ଅଙ୍ଗରେ ଦେଇ ଲଗାଇଲେ
ପାର୍ବତୀଙ୍କ କାଞ୍ଚଲା ଅଙ୍ଗରେ ନେଇ ଦେଲେ ।
ବିଦ ମୁଦି ବାହୁଟି କଙ୍କଣ ନେଇ ଦେଲା
ଚଡ଼ି ତାଡ଼ ତୋଡ଼ର ନେଇଣ ଲଗାଇଲା ।
ବଳା ଯେ ପାହୁଡ଼ ଝୁଣ୍ଟିଆ ନୂପୁର
ହାର ଚଉସରୀ ଗଳାରେ ଖଞ୍ଜେ ତାର ।
ପୁଣି ସିନ୍ଧୁ ଫଳ ନାସାରେ ଦେଲେ ନେଇ
କର୍ଣ୍ଣଫୁଲ ମଲ୍ଲକଢ଼ୀ ଝଲକ କର୍ଣ୍ଣେଦେଇ ।
ପୁଡା ବାନ୍ଧି ବେଢା ଦେଲା ଚଉରିପାଶରେପୁଣ
ଜାନକୀ ରୂପକୁ ଜିଣି ଦିଶେ ଶୋଭାବନ ।
ଅମଳାଣ ଶାଢ଼ୀ ଯେ କୁଞ୍ଚିଣ ପିନ୍ଧାଇଲା
ମସ୍ତକେ ସିନ୍ଦୂର ନୟନେ କଜ୍ଜ୍ୱଳ ରଞ୍ଜିଲା ।
ପିନାକୀ ଧନୁ ତ୍ରିଶୂଳ କରେ ଧରି ପୁଣ
ଅକ୍ଷୟେ ଶର ନେଇ ସମ୍ଭାଳେ ତ୍ରୋଣେଣ ।
ନବ ଯଉବନୀ ବେଶ ଲକ୍ଷ୍ମଣ ପୁଣ ହେଲେ
ଜୟେ ଦୁର୍ଗା ସଦୃଶ୍ୟରେ ଶୋଭା ସେ ଦିଶିଲେ ।
ଜାନକୀ ବୋଇଲେ ମାରୁତିକି ଚହିଁ
ଉର୍ମିଳାର ପୁରକୁ ଚଳରେ ବେଗ ହୋଇ ।
ଉର୍ମିଳାର ବେଶ ଭୂଷଣ ବେଗେ ହୁଅ
ଶୁଣିକରି ଚଳିଗଲା ପବନର ପୁଅ ।
ଉର୍ମିଳା ଚରଣରେ କଲା ନମସ୍କାର
ଉର୍ମିଳା ବେଶ ଅଙ୍ଗୁ ଦେଲେ ଯେ ସତ୍ୱର ।
ଦାସୀଙ୍କି ବୋଇଲେଲୋ ବେଗେ ବେଶକର
ଶୁଣିଣ ଦାସୀମାନେ ବେଶକଲେ ଖର ।
ମୋହିନୀ ବେଶ ଧରିଣ ହେଲେ ବଡ଼ ତୋଷ
ଯେସନେ ଚନ୍ଦ୍ର ଘରଣୀ ରୋହିଣୀ ସଦୃଶ୍ୟ ।
ବେଶ ହୋଇ ମାରୁତି ନମସ୍କାର କଲା
ଉର୍ମିଳା ନାରୀ ତାହାକୁ ଚହିଁଣ ବୋଇଲା ।
ଘୋର ଯୁଦ୍ଧ ବେଳରେ ଦେବୁ ସିଂହରଡ଼ି
ତେବେ ସେ ଅସୁରର ବପୁ ଯିବ ଝଡ଼ି ।

ଅସୁର ମାରି ବାବୁ ଯଶ କରି ଆସ
ତିନିପୁର ଦେବ ନରେ ହୁଅନ୍ତୁ ହରଷ ।
ଶୁଣିଣ ମାରୁତି ଯେ ବେଗେ ଚଳିଗଲା
ଜାନକୀ ରାମ ଛାମୁରେ ନମସ୍କାର କଲା ।
ଲକ୍ଷ୍ମଣର ଚରଣେ ବିନତି ପୁଣ ହୋଇ
ବଇଷ୍ଣବା ଧନୁ ଯେ ଶ୍ରୀରାମ ଦେଲେ ନେଇ
କୋଦଣ୍ଡ ଧରିଣ ହନୁ ହରଷ ହୋଇଲା
ମନରେ ବିଚାରିଲା ଅସୁର ନିଶ୍ଚେଁ ମଲା ।
ମନୁମାୟା ଜାନକୀ ପାଦୁକା ଆଣିଦେଲେ
ଲକ୍ଷ୍ମଣର ଚରଣେ ନେଇଣ ଲଗାଇଲେ ।
ମେଲାଣି ମାଗିଣ ଚଳିଲେ ଧୀର ଧୀର
ହୁଳହୁଳି ଶବଦ ଯେ ହୋଏ ରାମପୁର ।
ଆଗରେ ଶ୍ରୀରାମ ଯେ ପଛରେ ଲକ୍ଷ୍ମଣ
ତହିଁର ପଛରେ ମାରୁତି ଯାଏ ପୁଣ ।
ମାରୁତିର ପଛରେ ମନୁମାୟା ଗଲା
ଭିତର ପୁରୁ ଯାଇ ବାହାର ପୁର ହେଲା ।
ବଶିଷ୍ଠ ବାମଦେବ କଶ୍ୟପ ଆରଣ୍ୟକ
ଦେଖିକରି ଲକ୍ଷ୍ମଣ ଓଳଗେ ଚରଣେକ ।
ହନୁମନ୍ତ ଋଷିଙ୍କର ଚରଣେ ନମିଲା
ଦେଖିକରି ବଶିଷ୍ଠ ରାମଙ୍କୁ ପଚାରିଲା ।
ଜାନକୀ ଉର୍ମିଳା ଏ ଦୁଇ ଯାଏ ପୁଣ
ଅସୁର ମାରିବାକୁ କଲେ କି ଗମନ ।
ମନୁମାୟା ବୋଇଲେ ବେଶ ଯେ ତାଙ୍କରି
ସ୍ୱରୂପ ନୁହନ୍ତି ଋଷି ଶୁଣ ହେ ହେତୁକରି ।
ମାଂଶାସୁର ଅଂଶ ଯେ ଗୟଳ ଗଣ୍ଡା ପୁଣ
ସ୍ତିରୀବେଶେ ସେ ମରିବେ ଅତୁଟ ଅଟେ ଜାଣ ।
ଆରଣ୍ୟକ ଋଷି ଯେ ଶୁଣିଣ ତୋଷ ହେଲେ
ସ୍ତିରୀ ମନ୍ତ୍ରୀ ଏଥିରେ ଅଛନ୍ତି ବୋଇଲେ ।
ବୋଇଲେ ଶ୍ରୀରାମ ହେ ଥାଅ ନିଶ୍ଚିନ୍ତରେ
ଆମ୍ଭେ ଯାଉଅଛୁ ଦକ୍ଷିଣ ଦିଗରେ ।
ଗଣ୍ଡା ଗୟଳ ଦୁଇଭାଇ ମରିବା ଯାଏ
ସୀମାଞ୍ଚଳ ପର୍ବତେ ରହିବା ସୁଖ ହୋଏ ।
ଦୁଇ ଅସୁର ଗଲେ ଗଜେନ୍ଦ୍ର ପୁର ଯିବୁଁ
ସେ ନଗ୍ରେ ଆମ୍ଭେ ତୁମ୍ଭର ପୁରୋହିତ ହେବୁଁ ।
ଏତେ ବୋଲି ମୁନି ବେଗ୍ରରେ ଚଳିଗଲେ
ସୀମାଞ୍ଚଳ ପର୍ବତ ଉପରେ ବିଜେ କଲେ ।

ଶ୍ରୀରାମଙ୍କ ଚରଣରେ କରି ନମସ୍କାର
ରଥ ପରେ ବିଜେ କଲେକ ଲକ୍ଷ୍ମଣ ବୀର ।
ମାରୁତୀକି ଘେନିଣ ରଥରେ ବିଜେ ହୋଇ
ଅଶ୍ୱଙ୍କୁ ଫେଡ଼ିଦେଇ ସିଂହକୁ ଯୋଚେ ନେଇ ।
ଦାରୁକ ରଥକୁ ରଥ ଗମନ କରେ ଭଲା
ଧୀରେ ଧୀରେ ରଡ ଗମନ କରେ ଭଲା ।
ଅଯୋଧ୍ୟା ନରନାରୀ ଦେଖିଣ ବିଚାରିଲେ
ଜାନକୀ ଉର୍ମିଳା କି ଯୁଦ୍ଧକୁ ଆଜ ଗଲେ ।
ହରିବୋଲ ରାମତାଳି ଆନନ୍ଦରେ ଦେଇ
ହୁଳହୁଳି ଶବଦ ନିରନ୍ତରେ ପଡ଼ଇ ।
ଅତି ବେଗ୍ରେ ଦାରୁକ ରଥ ବାହି ନେଲା
ସାତ ସହସ୍ର ଯୁଣ ଏକାଦିନକରେ ଗଲା ।
ଗଜେନ୍ଦ୍ର ନଗର ଲକ୍ଷ୍ମଣ ପରବେଶ
ଗଜପୁର ସିଂହଦ୍ୱାରେ ବୁହାଇଲେ ରଥ ।
ଦେଖିଲେ ଯେ କଟକ ଅତି ବିପରୀତ
ଅମରାବତୀକି ଜିଣି ଶୋଭା ପାଉଛି ତ ।
ଷୋଳ କ୍ରୋଶ ଆୟତନେ ବସିଛି ନଗ୍ରପୁର
ସିଂହଦ୍ୱାର ଗୋଟି ଯେ ଦକ୍ଷିଣ ମୁଖ ତାର ।
ସେ ଦ୍ୱାରେ ଦ୍ୱାରପାଳ ଅତି ବଳବନ୍ତ
ଦ୍ୱାରୀକି ଦେଖି ଲକ୍ଷ୍ମଣ ବୀର ବୋଲନ୍ତିତ ।
ବୋଇଲେ ଏ ଗଡ଼ରେ ରାଜାକୁ କହ ଯାଇ
ଶ୍ରୀରାମର ଦାସ ତୋର ସିଂହଦ୍ୱାରେ ରହି ।
ତୋର ନାମ ଶୁଣି ଯେ ଭେଦିଲେ ଦାସୀଗଣ
ଯୁଦ୍ଧ କରିବାକୁ ବେଗେ ଆସନ୍ତୁ ରାଜନ ।
ନୋହିଲେ ଏ ପୁର ବେଗେ ସେ ଛାଡ଼ିଯାଉ
ନୋହିଲେ ସକଳେ ନାଶଯିବ ତୋତେକହୁଁ ।
ଦ୍ୱାରପାଳ·ବୋଇଲେ ତୁ ଜାତିରେ ଅଟୁସ୍ତିରୀ
ଏଡ଼େ ଗାରିମା ତୋରଲୋ ଆସିଛୁ ଯୁଦ୍ଧେ କରି
ଲକ୍ଷ୍ମଣ ବୋଲେ ଯୁଦ୍ଧବେଳ ଜାଣି ବାସିନାବଳ
ହାରିଲେ ତାର ଘରଣୀ ହୋଇବି ନିକର ।
ଶୁଣି ଦ୍ୱାରପାଳ ବେଗେ ଚଳିଗଲା
ଗୟଳ ରାଜନର ଛାମୁରେ ମିଳିଲା ।
ବୋଇଲେ ତୋର ପୁରେ ଶତ୍ରୁ ଉପଗତ
ଏକ ଗୋଟିଏ ରଥ ଶୁଣ ହେ ନୃପନାଥ ।
ସ୍ତିରୀ ସେ ରଥେଛନ୍ତି କୋଡ଼ିଏ ପନ୍ଦର
ରଥୀ ହୋଇ ଗୋଟିଏ ସ୍ତିରୀ ସରଦାର ।

ସେ ବୋଇଲେ ରାଜାକୁ କହରେ ଯାଇ କରି
ଯୁଦ୍ଧକୁ ଅଇଲେ ତୋପୁରେ ଶ୍ରୀରାମଙ୍କ ନାରୀ ।
ଯେଉଁ ଶ୍ରୀରାମଚନ୍ଦ୍ର ଚାରି ରାବଣ ଗଲେ ମାରି
ସେତୁବନ୍ଧ ଯେଉଁ ରାମ ସମୁଦ୍ରେ ବାନ୍ଧିକରି ।
ସେହି ରାମ ଦାସୀ ଯେ ଅଟୁ ପୁଣ ଆମ୍ଭେ
ପୂର୍ବରେ ପିତା ଶତ୍ରୁ ରାମର ଅଟ ତୁମ୍ଭେ ।
ଶୁଣିଣ ଗୟଳ ରାଜା ମନରେ ବିଚାରି
ବାଇଶି କୋଟି ଅସୁରୁଣୀ ସାଜି ବେଗକରି ।
ବୋଇଲା ସ୍ତିରୀଙ୍କର ସଙ୍ଗରେ ଯୁଦ୍ଧକର
ଧାଇଁଲେ ଅସୁରୁଣୀ କୋଦଣ୍ଡ ଧରି କର ।
ପ୍ରଥମେ ତୀକ୍ଷ୍ଣଶର ପ୍ରହାର ନେଇ କଲେ
ଦେଖି ଲକ୍ଷ୍ମଣ ପିନାକୀଧନୁରେ ଗୁଣ ଦେଲେ ।
ସକଳ ନାରାଚମାନ ଛେଦି ଘନ ଘନ
ବ୍ରହ୍ମଶର ମାଇଲେ ଅସୁରୀଗଣ ପୁଣ ।
ନାରାୟଣ ଶରେ ଯେ ଲକ୍ଷ୍ମଣ ନିବାରି
ଅସୁରାଶର ଅସୁରୀ କଲେ ବେଗକରି ।
ଦେଖିଣ ଲକ୍ଷ୍ମଣବୀର ଛେଦି ବେଗକରି
ଅକ୍ଷୟେ ତ୍ରୋଣନେଇ ଧନୁରେ ବୀରଭରି ।
ବାଇଶି କୋଟି ଅଗ୍ନିଶର ବିନ୍ଧିଦେଲା
ବାଇଶିକୋଟି ସ୍ତିରୀଙ୍କି ଭସ୍ମକର ବୋଇଲା ।
ଚାର ଜଣାଇଲା ଯେ ନୃପତି ଆଗର
ଯେତେ ରଥୀ ନାରୀ ଗଲେ ହାରିଲେ ଯୁଦ୍ଧର ।
ଶୁଣିଣ ଗୟଳ ରାଜା ବାଳକଙ୍କୁ ଡକାଇଲା
ବାରବରଷଠାରୁ କୋଡ଼ିଏ ବର୍ଷ ପରା ।
ବୋଇଲେ ତୁମ୍ଭେ ଯାଇ ଯୁଦ୍ଧକର ଏବେ
ସ୍ତିରୀଙ୍କି ମାରିଣ ଆସିବଟିରେ ବେଗେ ।
ନବସସ୍ର ନାତି ଯେ ତାଙ୍କର ସଙ୍ଗେ ଦେଲା
ଅଠର କ୍ଷଉଣୀ ପିଲା ଯୁଦ୍ଧକୁ ଭେଦିଲା ।
ଯୁଦ୍ଧ ଭୁବନରେ ଯାଇଁ ହେଲେ ପରବେଶ
ସମସ୍ତେ ମଇଁଷିଙ୍କର ପରେ ସିପାହୀତ ।
ରଣ ଭୂମିରେ ଯାଇଁ ହେଲେ ପରବେଶ
ଦେଖିଲେ ଏକରଥୀ ରଣରେ ବିଶେଷ ।
ଲକ୍ଷ୍ମଣ ବୋଇଲେ ଏ ଅଇଲେସାନ ଯୋଦ୍ଧା
ହନୁମନ୍ତ ଯାଙ୍କୁ କରଯା ବେଗେ ଶୋଧା ।
ଏତେବୋଲି ଲକ୍ଷ୍ମଣ ଉଠିଲେ ସିଂହାସନୁ
ହନୁମନ୍ତକୁ ପିନାକୀ ଧନୁ ଦେଲେ ତେଣୁ ।
ରଥୀପଣେ ମାରୁତି ବସିଲାକ ଯାଇଁ
ପିନାକୀ ଧନୁରେ ଅକ୍ଷୟ ତ୍ରୋଣଦେଲା ନେଇ ।
ଟଙ୍କାର ନାଦକରି ଶରକୁ ଯୋଚିଲା
ବାଳକେ ବୋଇଲେ ତୁ ରଥୀ ଅଟୁ ପରା ।
ନାରାଚ ବରଷିଲେ କୁହୁଡ଼ିପ୍ରାୟେ ଜାଣି
ଚାରିପାଶେ କୁମର ମଧ୍ୟରେ ରଥ ପୁଣି ।
ମାରୁତି ବୋଇଲେ ଦାରୁକ ଏବେ ଶୁଣ
ଚାରିପାଶେ ରଥକୁ ତୁ ବୁଲାଅ ଘନ ଘନ ।
ତେବେ ଛେଦନ ହେବ ସମସ୍ତଙ୍କ ଶର
ଦାରୁକ ବୁଲାଏ ରଥ ଚାରି ଯେ ପାଶର ।
ଅନୁକ୍ଷଣରେ ମାରୁତି ଛେଦେ ସବୁଶର
ଦୁଇଘଡ଼ି ପରିଯନ୍ତେ କଲେକ ସମର ।
ବାବଲ ଶରକୁ ମାରୁତି ଗୁଣେ ଲାଇ
ଓଟାରି ବିନ୍ଧିଦେଲା ଶରଗଲା ଶୀଘ୍ରହୋଇ ।
ଅଠର କ୍ଷଉଣୀ କୁମରଙ୍କ ବେକ କାଟି
କନ୍ଧୁଛିଡ଼ି ସର୍ବେ ପଡ଼ିଲେ ମହୀଲୋଟି ।
ସଇନୀ ପଳାଇଲେ ନ ରହେ ଗୋଟିଏ
ବନସ୍ତରେ ପଶିଲେ ସର୍ବେ କରି ଭୟେ ।
ରକତନଦୀ ଯେ ସେଠାରେ ବହିଗଲା ।
କବନ୍ଧ ନାଚିବାର ମୂଳ ଯେ ହୋଇଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ହସ୍ତୀମାନେ ପଳାଇ ପଶିଲେ ବନଗିରି ।
ମାହୁନ୍ତ ସେଥିରେ ଷାଠିଏ ଲକ୍ଷ ମଲେ
ଚାର ଜଣାଇଲାକ ରାଜାର ଆଗରେ ।
ମାହୁନ୍ତ ନାଶଗଲେ ହସ୍ତୀଗଲେ ବନ
ଶୁଣିକରି ରାଜନ ମନେ ହେଲେ ଛନ୍ନ ।
ବୋଇଲେ ଅଶ୍ୱଭୁଅ କର ବେଗେ ଯାଇଁ
ଶୁଣିଣ ପାତ୍ରମନ୍ତ୍ରୀ ବେଗେ ଗଲେ ଧାଇଁ ।
ବାଜେଣୀ ଅଶ୍ୱଭୁଅ ସାଜେଣି ବେଗେ କଲେ
ଅଶ୍ୱଙ୍କର ପରେ ବସି ସିପାହୀ ଚଳିଲେ ।
ପନ୍ଦର କୋଟି ଅଶ୍ୱ ରଣଭୂମିରେ ଛିଡ଼ା
ହ୍ରେସା ରାବେମେଦିନୀହେବେ କିଯୋଡ଼ା ଯୋଡ଼ା ।
ଦୁଇଗୋଟି ରବିକି ଏକାଦ୍ୱୀପରେ ପୁଣ
ଘୋଡ଼ାଙ୍କର ଟାପୁଘାତେ ଅଦୃଶ୍ୟ ଗଗନ ।
ଦେଖିକରି ପଚିଶ ଯୂଥପତିଗଣ
ଧନୁରେ ଗୁଣ ଦେଇ ବିନ୍ଧିଲେ ଶରମାନ ।

ଶରର ଆଡମ୍ବାତେ ମେଦିନୀ କମ୍ପିଲା
ସିପାହୀମାନଙ୍କର ମୁଣ୍ଡ ଛିଡ଼ିଗଲା ।
ଘଉଡ଼ି ଶର ଯୂଥପତିମାନେ ଆଣ୍ଟେ
ପଳାଇଲେ ଅଶ୍ୱ ବନଗିରିତଟେ ।
ଦେଖିଣ ଚାର ଯାଇ ଜଣାଏ ରାଜା ପାଶ
ଗଧପଲ ତୁରିତେ ପେଶିଲା ରାକ୍ଷସ ।
ଗଧଙ୍କର ଉପରେ ଦୈତ୍ୟମାନେ ବସି
ଘୋରରାବ କରିଣ ସଂଗ୍ରାମରେ ପଶି ।
ଦଶଯୂଣ ଆୟତନେ ହେଲେ ସେହିଛାଇ
ମଧ୍ୟରେ ତାଳଧ୍ୱଜ ରଥ ତାଙ୍କ ରହି ।
ଦେଖି ଯୂଥପତି ଯେ ଶର ବୃଷ୍ଟି କଲେ
ବଜ୍ରଶର ପେଶିଣ ସର୍ବ ବିନାଶିଲେ ।
ରକତ ନଦୀରେ ମଡ଼ାମାନ ଭାସିଗଲେ
କେ କୂଳେରହିଲେ କେ ସ୍ରୋତେ ଭାସିଗଲେ ।
ନନ୍ଦୀ, ଭୃକୁଟୀ ଦେଖିଣ ଗର୍ଜନୀ ନାଦକଲେ
କେଶରୀ ସିଂହ ସେଥିରେ ଭୟେ ରଡ଼ିଦେଲେ ।
ଗୟଳାସୁର ମୋର ଭାଗରେ ଆଜଦିନ
ସକଳ ସୈନ୍ୟ ତୁମ୍ଭର ଭାଗେ ହେଲେ ପୁଣ ।
ଶୁଣିଣ ଧନୁଶର ଧରେ ଯୂଥପତି
ସେନାପତିମାନେ ଯେ କୋଦଣ୍ଡ ଧରନ୍ତି ।
ଗୁଣ ଟଙ୍କାରେ କରି ବସାଏ ଶରମାନ
ପାର୍ବତୀଙ୍କି ସୁମରଣା କଲେ ତହିଁ ପୁଣ ।
ଲକ୍ଷ୍ମଣ ଧଇଲେ ଯେ ପିନାକୀ ଧନୁ କରେ
ଅକ୍ଷୟ ତ୍ରୋଣକୁ ଯେ ଯୋଚିଲାକ ଧୀରେ ।
ଏମନ୍ତେ ଜଗାଜଗି ହୋଇ ଦଶପୀଢ଼ରେ ବସି
ତେତେବେଳେ ତାଳଧ୍ୱଜ ମନ୍ଦି ପ୍ରାୟେଦିଶି ।
ଉପରେ ପୀଢ଼ରେ ଯେ ବସିଛି ଲକ୍ଷ୍ମଣ
ତଳ ପୀଢ଼ରେ ନନ୍ଦୀ ଯେ ଭୃକୁଟି ଅଛି ଜାଣ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ଚତୁରଙ୍ଗ ବଳ ଘେନି ଗୟଳ ନୃପପତି ।
ତେଇଶ କ୍ଷଉଣି ଯେ ବଳ ତାର ସଙ୍ଗେ
ଚଉରାଶୀ କୁମର ଯେ ବେଢ଼ିଛନ୍ତି ରଙ୍ଗେ ।
ସିଂହଦ୍ୱାର ବାଟେ ବୀର ହୋଇଲା ବାହାର
ନିବାରଣ ରଥରେ ବିଜେ ଦୈତ୍ୟବୀର ।
ବନସ୍ତରେ ଯେଉଁରୂପେ ଶାର୍ଦ୍ଦୋଳଙ୍କ ମୁଖ
ସିଂହତଳେ ଚାରିଆଖି ଚୌକାନ ପ୍ରତ୍ୟକ୍ଷ ।

ଛଡ଼ଗୋଟି କର ତାର ତିନିଗୋଟି ଗୋଡ଼
ଏକସ୍ଥାନେ ପେଟ ତାର ଦିଶଇ ସୁନ୍ଦର ।
ତିନିଗୋଟି ଧନୁ ସେ ତିନିକରେ ଧରି
ଗୁଣ ଟଙ୍କାର କରି ଧରିଛି ଦୈତ୍ୟବଳି ।
ଶରମାନ ସେଥିରେ ଆୟୁଧ କରି ରଥେ
ରଥଙ୍କର ତେଜରେ ଯେ ରବି ତେଜଲୁଚେ ।
ରଥର ତିନି ଦିଗରେ ଅପସରୀମାନେ
ନୃତ୍ୟ କରୁଛନ୍ତି ଗାୟନ ବାଦ୍ୟ ସ୍ୱନେ ।
ଲକ୍ଷ୍ମଣ ଦେଖି ତାର ପରଶଂସା କଲେ
ଆଗରେ ଚନ୍ଦ୍ର ଦୀପ ଜଳଇ ଦିବସରେ ।
ଦେଖିଣ ଲକ୍ଷ୍ମଣ ବାବଲ ଶର ଧରି
ଗୁଣ ବସାଇଣ ଛାଡ଼ିଲେ ମନ୍ତ୍ରପଢ଼ି ।
ଶୁଣିଣ ବାବଲ ଶର ବେଗେ ଚଳିଗଲା
ସମସ୍ତଙ୍କୁ ଛେଦିଣ ଯେ ଲେଉଟି ଅଇଲା ।
ସମସ୍ତ ଛେଦନ୍ତେ ଯେ ହେଲା ଲଣ୍ଡାବୃକ୍ଷ
ଦେଖିକରି ଅସୁର ମନରେ ବିମୁଖ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ବଜ୍ର ଶର ଲକ୍ଷ୍ମଣ ଧଇଲେ କରେ ତୋଳି ।
ଗୁଣରେ ବସାଇଣ ମନ୍ତ୍ରିଣ ଛାଡ଼ିଦେଲେ
ଅପସରା ନାଶକର ବୋଲିଣ ବୋଇଲେ ।
ଶୁଣିକରି ଶର ବେଗେ ଚଳିଗଲା
ଲକ୍ଷେକ ଅପସରା କାଟି ପକାଇଲା ।
ଗୟଳାସୁର ଦେଖି ତା ମନରେ ବିଚାରି
ଦେଖୁଁ ଦେଖୁଁ ଏ ସ୍ତିରୀ ବଳବନ୍ତ କରି ।
ତିନିଧନୁ ଧରିଣ ଯେ ଶର ତହିଁ ଭରି
ବାରକୋଟି ନାରାଚ କିଞ୍ଚିତେ ବୃଷ୍ଟି କରି ।
ଦେଖିଣ ଲକ୍ଷ୍ମଣ ଫିରିକୀ ଶର ଘେନି
ଏକାଶରେ ସବୁଙ୍କୁ ପକାଇଲେ ହାଣି ।
ଦେଖିଣ ଅସୁର ନାଗପାଶ ଶର ମାରି
ଅଠର କୋଟି ନାଗବଳ ଅଇଲେ ବିଜେକରି ।
ଦେଖିକରି ଲକ୍ଷ୍ମଣ ଗରୁଡ଼ା ଶର ମାରି
ନାଗବଳ ପଳାଇଣ ଗଲେ ପାତାଳ ପୁରୀ ।
ଦେଖିକରି ଅସୁର କୁହୁକ ଶରକଲା
ବସରେ ଯାମିନୀ ଆଣି ଘୋଟାଇଲା ।
ଦେଖିକରି ଲକ୍ଷ୍ମଣ ରବିଶର ପେଶି
ଯାମିନ ତୁଟିବାରୁ ରବି ପରକାଶି ।

ଏମନ୍ତେ ଦିନମଣି ମେରୁ ଉହାଡ଼େ ଗଲେ
ଯାମିନୀ ହୁଅନ୍ତେ ଚନ୍ଦ୍ର ଉଦୟ ହୋଇଲେ ।
ଅସୁର ବିଚାରିଲା ଏ ସ୍ତିରୀ ଅଟେ ଗାଢ଼
ମୋରଶରମାନ ଏ ଯେ ଛେଦୁଛି ବାରମ୍ବାର ।
ଏମନ୍ତ ବିଚାରଇ ଅସୁର ପୁଣି ମନେ
ନେତ୍ର ପିଛଡ଼ାକେ ଶର ବିନ୍ଧୁଅଛି ତେଣେ ।
କ୍ରୋଧଭରେ ଅସୁର ଯେ ବ୍ରହ୍ମଶର ଧରି
ଗୋଟିଏ ବ୍ରହ୍ମଶର ମାରେ ବେଗେକରି ।
ନାରାୟଣ ଶର ଯେ ଲକ୍ଷ୍ମଣ ବିନ୍ଧିଦେଲେ
କୋଟିଏ ଶରକୁ ସେ କାଟି ପକାଇଲେ ।
ଚାରି ମେଘ ଶର ଦୈତ୍ୟ ବିନ୍ଧିଲା ତିନିକୋଟି
ବରଷିଲା ପାଣି ଯେ ବଦଳ ଲେଉଟି ।
ପବନା ଶର ଯେ ଲକ୍ଷ୍ମଣ ଛାଡ଼ିଦେଲେ
ଉତ୍ତରକୁ ମେଘମାଳ ଘୁଞ୍ଚି ପଳାଇଲେ ।
ଦେଖି କରି ଅସୁର ନରାବଳି କଲା
ଲକ୍ଷ୍ମଣ ଦୁର୍ଗାଶର ପେଶିଣ ନାଶିଲା ।
କ୍ରୋଧଭରେ ଲକ୍ଷ୍ମଣ ଯେ ବାସେଳୀ ଶରପେଶି
ଚାରିଗୋଟି ନେତ୍ର ତାର ପକାଇଲେ ନାଶି ।
ଦେଖିଣ ଅସୁର ବ୍ରହ୍ମାଙ୍କୁ ସୁମରିଲା
ନେତ୍ରକୁ ତତକ୍ଷଣେ ଲେଉଟି ଦିଶିଲା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ନବଦିନ ନବରାତ୍ର ଏଥିରେ ଗଲାଟି ।
ସେନାପତି ଯୂଥପତି କରି ଯୁଦ୍ଧ ଘୋର
ପାଦାତି ବଳ ତାର କଲେ ନାରଖାର ।
ଚଉରାଶୀ କୁମରଙ୍କୁ ସେନାପତି ମାରି
ପାଞ୍ଚକ୍ଷଉଣୀ ବଳ ଯୂଥପତିଙ୍କ ହସ୍ତେ ମରି ।
ଏକାଳେ ଗୟଳସେନ ଯୁଦ୍ଧ ଭୂମିରେ ରହି
ଚାହିଁଲା ଅସୁର ଯେ ରୁଧିର ନଦୀ ବହି ।
ଦେଖିଣ ଅସୁର ଯେ ମନରେ ବିଚାରିଲା
ସକଳ ସମ୍ପଦ ମୋର ଏଠାରୁ ସରିଲା ।
ଶୂନ୍ୟରେ ଯାନ ତାର ଟେକିଲାକ ପୁଣ
ଦାରୁକ ଟେକିଲା ଯେ ତାଳଧ୍ୱଜ ଜାଣ ।
ମଧୁବନ ନିକଟରେ ପ୍ରବେଶ ହୋଇଲା
ପ୍ରହରେକ ରଜନୀ ଯେ ହୋଇଅଛି ପରା ।
ମଧୁବନେ ଘଡ଼ିଏ ଯୁଦ୍ଧ ସେହି କରି
ରଥରୁ ଓହ୍ଲାଇଣ ମାରୁତି ଗଲା ଚଳି ।

ଅନ୍ତଃପୁରେ ପଶିଣ କଳାବତୀକି କହି
ଅସୁର ସଙ୍ଗରେ ଲକ୍ଷ୍ମଣ ଯୁଝଇ ।
ଏହା କହି ହନୁମନ୍ତ ଲେଉଟି ଅଇଲା
ତାଳଧ୍ୱଜ ରଥପରେ ବହନ ବସିଲା ।
ସେଠାରୁ ଦଇତ୍ୟ ଯେ ପଳାଇଣ ପୁଣ
ହସ୍ତିନା ସିଂହଦ୍ୱାରେ କଲାକ ମହାରଣ ।
ରଥର ଉପରୁ ଯେ ମାରୁତି ଓହ୍ଲାଇଲା
ଶତ୍ରୁଘନ ଆଗରେ ଯାଇଣ କହିଲା ।
ସକଳ କଥାମାନ କହିଲା ମଣାଇ
ମୁହିଁ ହନୁମନ୍ତ ବଦଳ ବେଶ ହୋଇ ।
ବେଗେ ସେ ଚଳିଯାଇଁ ରଥରେ ବସିଲା
ସେଠାରୁ ଅସୁର ଯେ ପଳାଇ ବେଗେଗଲା ।
ଏଥୁଅନନ୍ତରେ ଶୁଣ ଗୋ ଭଗବତୀ
ଅସୁର ପ୍ରବେଶ ହେଲା ଭରଥ ରାଜ୍ୟରେଟି ।
ଭରତ ସିଂହଦ୍ୱାରେ ଘୋର ରଣ କରେ
ଦେଖି ମାରୁତୀ ବେଗେ ପ୍ରବେଶ ଅନ୍ତପୁରେ ।
ଦେଖିଲା ଭରତ ବୀର ଆସ୍ଥାନେ ବିଜେକରି
କରଯୋଡ଼ି ପ୍ରବେଶ ନିକଟେ ତାହାରି ।
ଚରଣେ ଓଳଗି ହେଲେ ଯାଇଁ ବେଗ
ଭରତ ବୋଇଲେ କେଣେ ଅଇଲ ପ୍ରିୟଭାବ ।
ମାରୁତି ବୋଇଲେ ତୁମ୍ଭଙ୍କୁ କହିବାର ପାଇଁ
ଜାନକୀର ବେଶ ଯେ ଲକ୍ଷ୍ମଣ ଧରଇ ।
ମୁହିଁ ଧରିଅଛି ସାନବୋହୂ ବେଶ
ଯୂଥପତି ସେନାପତି ସମସ୍ତେ ଏହିରୂପ ।
ଅକ୍ଷୟେ ଅସୁର ଯେ କରେ ବଡ଼ଯୁଦ୍ଧ
ଆଜକୁ ତେରଦିନ ସ୍ନାହାନ ନିରୋଧ ।
ଏତେ କହି ହନୁମନ୍ତ ଅଇଲାକ ଫେରି
ତାଳଧ୍ୱଜ ରଥରେ ବସିଲା ଯାଇକରି ।
ସେଠାରୁ ଅସୁର ଯେ ପଳାଇଲା ବେଗେ
ପାତାଳ ପୁରରେ ଯାଇଁ ମିଳିଲା ଉଦ୍‌ବେଗେ ।
ବଳୀରାଜା ଦ୍ୱାରେ ଯାଇଁ ହେଲା ପରବେଶ
ଦେଖିକରି ବାମନକୁ ମନରେ କଲା ତ୍ରାସ ।
ଦ୍ୱାର ପକାଇଣ କିଳିଣୀ ଯହୁଁ ଦେଲେ
ସେଠାରୁ ଅସୁର ପଳାଇଣ ଖରେ ।
ଲଙ୍କାଗଡ଼ରେ ସେ ହୋଇଲା ପରବେଶ
ରାବଣ ସିଂହଦ୍ୱାରେ ଯୁଦ୍ଧ ଯେ ବିଶେଷ ।

ଦେଖିଣ ହନୁମନ୍ତ ଅନ୍ତଃପୁରେ ଚଳି
କାହାକୁ ଭୟନାହିଁ ଭିତର ପୁରେ ମିଳି ।
ମନ୍ଦୋଦରୀ ବିଭୀଷଣ ଆଗରେ ମିଳିଲା
ଚରଣରେ ଓଳଗି ଆଗରେ ଛିଡ଼ାହେଲା ।
ମନ୍ଦୋଦରୀ ବୋଲେ ତୁ ଅଇଲୁ କେଉଁଠାରୁ
ମାରୁତି ବୋଲେ ମୁଁ ଅଇଲି ଅଯୋଧ୍ୟାରୁ ।
ମନ୍ଦୋଦରୀ ବୋଲେ ତୁ କେଉଁକାର୍ଯ୍ୟ ଆସୁ
ମାରୁତି ବୋଇଲେ ଅସୁର ବଳନାଶୁଁ ।
ମାରୁତି ବୋଇଲେ ଜାନକୀ ଦେଶରେ ତୋରା
ସତ୍ତମିତ୍ରି ବଦଳ ରୂପରେ ଯୁଦ୍ଧ ପରା ।
ଚିହ୍ନି ନ ପାରିଲୁ ମୋତେ ମୁଁ ଅଟଇ ମାରୁତି
ଉର୍ମିଳାର ବେଶଧରି ବଦଳ ରୂପଗୋଟି ।
ଶୁଣିଣ ମନ୍ଦୋଦରୀ ଶୀଘ୍ରରେ ଉଠିଲା
ମାରୁତିକି ସ୍ନେହରେ କୋଳରେ ବସାଇଲା ।
ବୋଇଲା ଗୟଳସୁରା ଅଟଇ ଅକ୍ଷୟେ
ତାରସଙ୍ଗେ ସତ୍ତମିତ୍ରି ଯୁଝିଲା କିରେ ପୋଏ ।
ମାରୁତି ବୋଲେ ଆଜକୁ ହେଲା ଷୋଳଦିନ
ଅନେକ ଯୁଦ୍ଧକଲା ଗୟଳ ଦୈତ୍ୟପୁଣ ।
ଏତେକହି ମାରୁତି ସେଠାରୁ ଚଳିଗଲା
ତାଳଧ୍ୱଜ ରଥରେ ଯାଇଁଣ ବସିଲା ।
ଲକ୍ଷ୍ମଣ ବୋଇଲେରେ ଅସୁର ମୂଢ଼ ଶୁଣ
ବୁଲିଲେକି ଆଉରେ ରଖିବି ତୋର ପ୍ରାଣ ।
ମହାକାଳ ଶରକୁ ବିନ୍ଧିଲେ ଲକ୍ଷ୍ମଣ
ବାଜନ୍ତେ ଅସୁର ଯେ ମୋହଗଲା ପୁଣ ।
ଏ ସମୟରେ ଲକ୍ଷ୍ମଣ ଧରିଣ ତ୍ରିଶୂଳ
ତାଳଧ୍ୱଜ ରଥରୁ ଡେଇଁଲା ବେଗେବୀର ।
ଧରଣୀଧର ରଥ ଉପରେ ଉଠିଲା
ବକ୍ଷସ୍ଥଳେ ତ୍ରିଶୂଳ ଦେଇ ମାଡ଼ିଯେ ରହିଲା ।
ଦେଖିଣ ସାରଥୀ ଯେ ରଥ ବାହିନେଲା
ଧରଣୀଧର ରଥରେ ଲକ୍ଷ୍ମଣ ରହିଲା ।
ଆଗରେ ଧରଣୀଧର ରଥଯାଏ ଚଳି
ପଛରେ ଜାଳଧ୍ୱଜ ରଥ ଲାଗିକରି ।
ଆଗପଛେ ଦୁଇରଥ ଯାଏ ଧୀରେ ଧୀରେ
ପ୍ରବେଶ ହୋଇଯାଇ କିଷ୍କିନ୍ଧ୍ୟା ନବରରେ ।
ଏହିକାଳେ ଅସୁର ଛାଡ଼େ ସିଂହରଡ଼ି
ତାରା ସୁଗ୍ରୀବଙ୍କର ତହିଁ ଦୃଷ୍ଟିପଡ଼ି ।
ନୀଳ ଓହ୍ଲାଇଣ କହିଲା ରାଜାରେ
ଗୟଳସୁର ସଙ୍ଗେ ଲକ୍ଷ୍ମଣ ଯୁଦ୍ଧକରେ ।
ସମସ୍ତେ ସ୍ତିରୀ ରୂପରେପାଲଟ ବେଶ ହୋଇ
ଏତେକହି ନୀଳ ଯେ ରଥରେ ମିଳଇ ।
ଟମକ ମନ୍ତ୍ରୀକି ଯେ ବୋଇଲେ ଅସୁର
ଅଯୋଧ୍ୟା ନବରକୁ ରଥ ମୋର ଚାଳ ।
ଶୁଣିଣ ଟମକ ନିଶାଣ ବେନିଜଣ
ଅଯୋଧ୍ୟା ନବରକୁ ରଥେ ନେଲେ ପୁଣ ।
ଶ୍ରୀରାମଙ୍କ ସିଂହଦ୍ୱାରେ ହେଲେ ପରବେଶ
ତ୍ରିଶୂଳ ମାଡ଼ିବସିଛି ଦଶରଥ ଶିଷ୍ୟ ।
ସୁମନ୍ତ କହିବାରୁ ରାମଚନ୍ଦ୍ର ଆସି
ଧରଣୀର ରଥ ଉପରେ ଯାଇଁ ବସି ।
ଦେଖିଲେ ଲକ୍ଷ୍ମଣର ଭଇରବୀ ରୂପ
ଦଶଭୁଜେ ତ୍ରିଶୂଳ ଧରିଛି ପ୍ରତାପ ।
ଅସୁର ବୋଲଇ ଶ୍ରୀରାମ ମୁଖଚାହିଁ
ଆଜ୍ଞାଦେଲେ ମୁହିଁ ଯେ ନିଜଭୂମି ଯାଇ ।
ଆହୁରି କଥାଏ ମୁଁ କହୁଛି ପୁଣ
ସ୍ତିରୀରୂପେ ରାଜାହେବ ସେରାଜ୍ୟେ ଲକ୍ଷ୍ମଣ ।
ଆଠ ସହସ୍ର ସାତଶ ବରଷ ପରିଯନ୍ତେ
ସ୍ତିରୀରୂପେ ରାଜାହେବ ଗଜେନ୍ଦ୍ର କଟକେ ।
ମୋର ଶବ ନେଇଣ ସେ ଦେଶେ ପକାଇବ
ଏହୁରୂପ ଧରିଣ ସେହୁ ରାଜ୍ୟକୁ ଯିବ ।
ଏତେବୋଲି ଦୈତ୍ୟ ଯେ ଛାଡ଼ିଲା ଜୀବନ
ସୁନ୍ଦର ରୂପଧରି ଗଲା ସ୍ୱର୍ଗସ୍ଥାନ ।
କେତୁପିତା ଆଗରେ ଯାଇଣ ମିଳିଲା
ନିଶ୍ଚିନ୍ତରେ ନିଜପୁରେ ଯାଇଣ ରହିଲା ।
ପାର୍ବତୀ ବୋଇଲେ ସେ କେତୁର କୁମର
କେଉଁ ରୂପେ ମର୍ତ୍ତ୍ୟପୁରେ ହେଲା ସେ ଅସୁର ।
ଈଶ୍ୱର ବୋଇଲେ ସେ ଏକଦିନେ ପୁଣ
ସ୍ୱର୍ଗର ଗଙ୍ଗାକୂଳେ ପ୍ରବେଶ ହେଲେ ଜାଣ ।
ଏବେ ସେ ନିଜ ପୁରେ ମିଳିଲା ତତକ୍ଷଣ
ପାର୍ବତୀ ବୋଲେ ସେଠାରୁ କିସହେଲା ପୁଣ ।
ଈଶ୍ୱର ବୋଇଲେ ଶୁଣ ହେମବନ୍ତର ବଳା
ଅଯୋଧ୍ୟା ନବରକୁ ରଥ ଫେରାଇଲା ।
ସେଠାରୁ ଧରଣୀଧର ରଥ ଚଳିଗଲା
ଗଜେନ୍ଦ୍ର ରାଜ୍ୟରେ ଯାଇଁ ପ୍ରବେଶ ହୋଇଲା ।

ପର୍ବତ ତଳରେ ରହିଲା ରଥ ପୁଣ
ତ୍ରିଶୁଳ କାଢ଼ନ୍ତେ ଶବ ବାହାର ହୋଏପୁଣ
ଶବକୁ ସେଠାରେ ପକାଇ ରଥ ଚଳି
ସେ ରଥୁଁ ଲକ୍ଷ୍ମଣ ଯାଇ ତାଳଧ୍ୱଜରେ ମିଳି
ଟମକ ନିଶାଣ ଦୁଇ ମନ୍ତ୍ରୀ ଚଳିଗଲେ
ଗୟଳ ସୁର ରାଣୀକି ଯାଇଣ ଜଣାଇଲେ ।
ରାଜନ ମଲେ ଯେ ମାଇଲେ ସ୍ତିରୀ ପୁଣ
ଏ ରଥରେ ସମସ୍ତେ ବସ ହେ ତକ୍ଷଣ ।
ଅନେକ ଅସୁରୁଣୀ ତହିଁରେ ପୁଣ ଥିଲେ
ବାଳ ବୃଦ୍ଧା ସହିତେ ସମସ୍ତେ ବସିଲେ ।
ବୃତ୍ତାସୁର ନବରେ ହେଲେ ପରବେଶ
ସେଠାରେ ସମସ୍ତେ ରହିଲେ ବିଶେଷ ।
ଏମନ୍ତେ ଗୟଳ ସୁରର କରାମତି
ବଳରାମ ଦାସ ରାମ ଚରଣେ ଭଗତି ।
ଏଥୁଅନନ୍ତରେ ଶୁଣ ଭଗବତୀ
ଅସୁର ବଳ ସେଠାରୁ ହେଲେ ଯେ ନିପାତ ।
ନର ପାତ୍ର ମନ୍ତ୍ରୀ ସମସ୍ତେ ଆସି ଭେଟ
ଦେଖିଣ ଲକ୍ଷ୍ମଣ ତାଙ୍କ ମୁଣ୍ଡରେ ବାନ୍ଧେପାଟ ।
ଶୁଣିଣ ପାତ୍ର ମନ୍ତ୍ରୀ ସମସ୍ତେ ଚଳିଗଲେ
ବଳବନ୍ତ ପରଜା ଆଣି ରଖାଇଲେ ।
ଘରକେ ସ୍ତିରୀ ପୁରୁଷ ଏକେ ଏକେ ରଖି
ଗହଳ କରାଇଲେ ଦୁଇ ନଗ୍ରେ ସେ କି ।
ହଟାରୀ ବଜାରୀ ଯେ ପାଟକ ଜାତି ମାନ
ହାଟ ବାଟ ଦାଣ୍ଡ ଗହଳ ହେଲା ପୁଣ ।
ଗୋପାଳଙ୍କୁ ଡକାଇ ଗାଈ ମଇଷି ଲଗାଇଲେ
ସିପାହୀ ରଖାଇ ଅଶ୍ୱ ଆୟତେ ରଖାଇଲେ ।
ମାହୁନ୍ତ ଡକାଇ ନାଗବଳ ଯେ ସମ୍ଭାଳି
ସିଂହମାନେ ଯାଇ ଶାର୍ଦ୍ଦୋଳ ଓଗାଳି ।
ପୂର୍ବରୁ ପ୍ରାୟେ ନବର କଲେ ତହିଁ ଉଜ
ଦେଖିଣ ପାତ୍ରମନ୍ତ୍ରୀ ସାମନ୍ତ କହେ ତେଜ ।
ନୀଚ ଲୋକ ଡକାଇ ନଗ୍ର ନିର୍ମଳ କଲେ
ରଣ ଭୂମି ଗୋଟି ଉଜ୍ଜ୍ୱଳ କରାଇଲେ ।
ଚୂନ ପାଣି ସଞ୍ଚଣ ପବିତ୍ର କଲେ ସ୍ଥାନ
ସିଂହଦ୍ୱାରେ ବାଜଣା ବାଜେ ବିତପନ ।
ଛତ୍ରୀତ୍ରାସ ଆଲଟ ଚାମର ଧରି ଡାଳି
ନୀରବଦ୍ୟ ବଜାନ୍ତି କମ୍ପେ ସେହୁ ପୁରୀ ।
ପାତ୍ର ମନ୍ତ୍ରୀ ଲକ୍ଷ୍ମଣ ଆଗରେ ପରବେଶ
ରାଜାର ନବରରେ ପଶିଲେ ସମସ୍ତ ।
ରାଜାର ନବର ଯେ ବଡ ଆୟତନ
ବତିଶ କୋଶ ପର୍ଯ୍ୟନ୍ତ ପାଚେରୀ ବୁଲେ ପୁଣ ।
ଲକ୍ଷେ ଭଣ୍ଡାର ଘର ପୂରିଅଛି ଧନ
ଜଉ ମୁଦ ଲକ୍ଷ୍ମଣ ଦେଲେକ ବହନ ।
ଏହି ସମୟେ ଅରଣ୍ୟ ଋଷି ମିଳେ ଆସି
ଦେଖିକରି ଲକ୍ଷ୍ମଣ ନମସ୍କାର ହୋନ୍ତି ।
ପବିତ୍ର ଜଳ ଘେନି ଋଷି ନଗ୍ରେ ବୁଲେ
ସକଳ ସ୍ଥାନକୁ ପବିତ୍ର ମୁନି କଲେ ।
ଛତିଶା ନିଯୋଗ ମିଳିଲେ ବେଗକରି
ଯାହାର ଯେଉଁ ସେବା କଲେ ସେ ଆବୋରି ।
ସେଠାରେ ମର୍ଦ୍ଦନ ମାଜଣା ଯେ ହେଲେ
ନଦୀରେ ସ୍ନାନ କରି ସର୍ବେ ଶୌଚ ହେଲେ ।
ସ୍ତିରୀ ଭୂଷଣ ଯେ ଲକ୍ଷ୍ମଣ ଧରି ପୁଣ
ଦେବାର୍ଚ୍ଚନା ନୀତି ସାରିଲେ ଆପଣ ।
ରତ୍ନ ସିଂହାସନରେ ଯାଇଁ ବିଜେ କଲେ
ଖଟଣୀ ଲୋକମାନେ ପାଶରେ ଖଟିଲେ ।
ଚତୁରଙ୍ଗ ବଳ ଆସି ହେଲେ ଭେଟ
ରଥି ସେନାପତି ସରଦାର ମାହୁନ୍ତ ।
ପାତ୍ର ମନ୍ତ୍ରୀଙ୍କି ବୋଇଲେ ଅମରୀ ସଜକର
ସମସ୍ତେ ଶ୍ୱେତହସ୍ତୀ ଅମରୀ ତିଆର ।
ଶୁଣି ପାତ୍ର ମନ୍ତ୍ରୀ ତୁରିତେ ଚଳିଗଲେ
ସଜକରି ଅମରୀ ଶତେକ ଅଣାଇଲେ ।
ଯୁଥପତି ସେନାପତି ଋଷି ପାତ୍ର ମନ୍ତ୍ରୀ
ସାମନ୍ତ, ସାଧବ, କଟୁଆଳ ଯେ ବସନ୍ତି
ଅମରୀ ଉପରେ ଲକ୍ଷ୍ମଣ ବିଜେକଲେ
ଚତୁରଙ୍ଗ ବଳ ଆଗ ପଛରେ ଚଳିଲେ ।
ନଗ୍ର ବୁଲି ସମସ୍ତ ଦେଖନ୍ତି ଲକ୍ଷ୍ମଣ
ଫେରିଲେ ନବରକୁ ସର୍ବେ ସନ୍ତୋଷ ମନ ।
ମଣୋହି ପଦାର୍ଥମାନ ସେବକେ ଯୋଗାଇଲେ
ସମସ୍ତେ ଭୁଞ୍ଜିଣ ହରଷ ମନ ହେଲେ ।
ବିଡ଼ିଆ ଭୁଞ୍ଜିଣ ହେଲେ ତୋଷ ମତି
ସେହ୍ନା ଯୁଥପତି ଧରି ଲକ୍ଷ୍ମଣ ରାଜାଯାନ୍ତି ।
କାବେରୀ ନଗ୍ରରେ ମିଳିଲେ ଯାଇଁ ପୁଣ
ପୂର୍ବଦିଗେ ଦିନମଣି ଉଦେ ହେଲେ ଜାଣ ।

ସିଂହଦ୍ୱାରେ ରଥ ଉଭାରିଲେ ନେଇ
ଶଙ୍ଖ ଶବଦରେ ପୂରିଲାକ ମହୀ ।
ଦ୍ୱାରପାଳମାନେ ରାଜାଙ୍କୁ ଜଣାଇଲେ
ତୋର ଦ୍ୱାରେ ଶତ୍ରୁ ଆସିଣ ମିଳେ ବଳେ ।
ଶୁଣିଣ ଗଣ୍ଡାସୁର ମନ୍ତ୍ରୀକି ଆଜ୍ଞା ଦେଲା
ଚତୁରଙ୍ଗ ବଳ ସାଜରେ ବୋଇଲା ।
ଶୁଣିଣ ଘୋଷମନ୍ତ୍ରୀ ଅଘୋଷ ଯେ ପାତ୍ର
ଚତୁରଙ୍ଗବଳ ସାଜିଲେ ତୁରିତ ।
ପର୍ବତ ତଳେ ସ୍ଥଳୀ ସାତଯୂଣ ପୁଣ
ପ୍ରଥମେ ବିଜେକଲା ଗଣ୍ଡାସୁର ଜାଣ ।
ଦ୍ୱିତୀୟରେ ପୁତ୍ର ତୃତୀୟେ ନାତି ମିଳି
ଚତୁର୍ଥେ ସେହ୍ନାପତି ପଞ୍ଚମେ ରଥୀଚଳି ।
ଏତେବୋଲି ଅସୁର ବିନ୍ଧେ ଶରମାନ
ଏକାରେ ଲକ୍ଷ୍ମଣ ଛେଦେ ସବୁ ପୁଣ ।
ସେହ୍ନାଯୂଥପତି ମାଇଲେକ ଶର
ତିନିଶତ କୁମରକୁ କଲେ ନାରଖାର ।
ଯେଣେ ଯିଏ ଗଲେ ତେଣେ ମିଳାଇଲେ
ପର୍ବତେ ନାଗବଳ ଯାଇଣ ଉଠିଲେ ।
ଆପଣାର ସୈନ୍ୟ ସେ ଆପଣେ ହତକଲା
ଅନେକ ବିକଳ ଯେ ହେଲେ ସୈନ୍ୟମେଳା ।
ଏମନ୍ତ ସମୟେ ସେନାପତି ଶରବିନ୍ଧି
ଅଶ୍ୱଙ୍କ ଉପରୁ ସିପାହୀ ସବୁ ଛେଦି ।
ଦେଖିଣ ଅସୁର ଅନେକ ଶରକଲେ
ସବୁଙ୍କରି ଶର ଲକ୍ଷ୍ମଣ ଛେଦିଲେ ।
ଯୂଥପତି ସେହ୍ନାପତି କଲେ ଶର ପୁଣ
ପାଦାତି ବଳ ତାର ଛେଦିଲେ ତୁରିତେଣ ।
ଲକ୍ଷ୍ମଣ ମନଭେଦି ଶରକୁ ପ୍ରହାରିଲେ
ସକଳ ପାଦାତି ସେଠାରୁ କ୍ଷୟ ଗଲେ ।
ଆରବେଳେ ଶର କଲେ ପରଚଣ୍ଡ
ଗ୍ରୀଧ ପକ୍ଷୀ ସମସ୍ତେ ହେଲେ ଖଣ୍ଡ ଖଣ୍ଡ ।
ଦେଖିଣ ମାରୁତି ଏକାଏ ଶର ବିନ୍ଧି
ଗଧ ପଲ ଯାକ ପକାଇଲେ ଛେଦି ।
ଦେଖିଣ ଅସୁର ମଇଁଷି ଧୂଆଁଇଲେ
ସେହ୍ନା ଯୂଥପତି ଶର ବରଷିଲେ ।
ମଇଁଷି ଉପରେ ଯେତେକ ସାନଦୈତ୍ୟ
ସେମାନଙ୍କୁ ଛେଦି ପକାଏ ତୁରିତ ।
ଦେଖିଣ ବୋଇଲା ଉପରେ ଅସୁରୁଣୀ
ଦୁଇଦିନ ପରିଯନ୍ତେ ଯୁଦ୍ଧ କଲେ ପୁଣି ।
ରଥର ଭିତରେ ଲୁଚିଲେ ସେନାପତି
ଭୟରେ କୋଦଣ୍ଡ ଯେ ହସ୍ତରେ ନ ଧରନ୍ତି ।
ତୁଣ୍ଡରେ ବୋଇଲେ ଲକ୍ଷ୍ମଣ ବାରେ ରଖ
ଶୁଣିଣ ସଉମିତ୍ରୀ ମନରେ ପାଏ ଦୁଃଖ ।
କାଳୀକା ଦେଲା ଶର ଗୁଣରେ ବସାଇଲେ
ଯେଉଁ ଶର କାଳୀକା ଜିଭ୍ୟାରୁ କାଢ଼ିଥିଲେ ।
ସେହିଶର ଲକ୍ଷ୍ମଣ ମାଇଲେ ସତ୍ୱର
ନଉକୋଟି ନାରୀଙ୍କର ତୋଟି ଧରେ ଶର ।
କଣାକରି ସମସ୍ତଙ୍କ ରୁଧିର ପାନକଲା
ଅସୁରୁଣୀ ଉପଦର୍ପ ସେଠାରୁ ସରିଲା ।
ଲୋଟିଲେ ଅସୁରୁଣୀ ଧରଣୀରେ ପୁଣ
ମଇଁଷି ପଳାଇ ପଶିଲେ ଅରଣ୍ୟ ।
ସେଠାରୁ ଯୂଥପତି ସେନାପତି ମାଇଲେ
ଯେ ଯାହାର ଯାନରେ ଯାଇଣ ବସିଲେ ।
କୋଦଣ୍ଡମାନ ଧରିଣ ବିନ୍ଧିଲେ ବେଗେ ଶର
ବାଜନ୍ତରୀମାନଙ୍କର ଛେଦିଲେ ସେ ଶିର ।
ଆରବେଳେ ଶର ପ୍ରହାର ପୁଣି କଲେ
ଦେଖଣାହାରୀଙ୍କି ଛେଦିଣ ପକାଇଲେ ।
ସେଠାରୁ ସେହ୍ନାପତି ଯୂଥପତି ପୁଣ
ଗଣ୍ଡାସୁର ଲକ୍ଷ୍ମଣର ଦେଖନ୍ତି ଘୋରରଣ ।
ରଣଭୂମି ଶୂନ୍ୟହେଲା ଦୁଇଦିନ ଯୁଦ୍ଧରେ
ସାତଦିନ ସାତରାତ୍ରେ ସମସ୍ତେ କ୍ଷୟଗଲେ ।
ଦୁଇଜଣଙ୍କ ସମର ହେଲା ବଡ଼ଟାଣ
ଅନେକ ଶର ବିନ୍ଧେ ସୁର ରାଜା ପୁଣ ।
ମୃତ୍ୟୁଶର ନେଇଣ ବିନ୍ଧେ ଦୈତ୍ୟ ବୀର
ଲକ୍ଷ୍ମଣ ବିନ୍ଧିଲେ ଯେ ଜୀବନ୍ୟାସ ଶର ।
ବ୍ରହ୍ମଶକ୍ତି ମାରନ୍ତେନାରାୟଣ ଶକ୍ତି ଲକ୍ଷ୍ମଣମାଇଲା
ଦେଖିଣ ବ୍ରହ୍ମଶକ୍ତି ଶୂନ୍ୟରେ ପଳାଇଲା ।
ନାରାୟଣ ଶକ୍ତି ଦେଖିଣ ଦୟାକଲା
ଫେରିଣ ଲକ୍ଷ୍ମଣ ତ୍ରୋଣରେ ସମ୍ଭାଇଲା ।
ଭୁଜବାଣ ନୀଳବାଣ ଦୁହିଁଙ୍କି ଧରିନେଲା
ମହାକାଳ ଘେନିଣ ପାତାଳେ ପଶିଲା ।
ବାରଦିନ ବାରରାତ୍ର ଏଥିରେ ଗଲାବହି
ଦୁହିଁଙ୍କର ହସ୍ତରୁ ଶର ଶୂନ୍ୟ ନୋହି ।

ଦେଖିଣ ଲକ୍ଷ୍ମଣ ମନରେ ବିଋରିଲେ
ବାରଦିନ ହେଲାତ ଅସୁର ନ ତୁଟିଲେ ।
ଏମନ୍ତ ବିଋରି ବୀର କାଂଶିକା ଶର ପେଶି
ବିଶ୍ୱନାଥ ମନ୍ତ୍ର ସୁମରି ଦେଲେ ପେଶି ।
ସେ ଶରକୁ ଅସୁର ନିବାରି ନ ପାରିଲା
କର୍ମର ନିର୍ବଳେ ସେ ଉବୁରି ନ ପାରିଲା ।
ବୁକୁରେ ବାଜନ୍ତେ ଶର ବୁକୁ ଫିଟିଗଲା
ଲେଉଟି କାଂଶିକା ଶର ତ୍ରୋଣରେ ସମ୍ପାଇଲା ।
ଦେଖି ହନୁମନ୍ତ ରଥରୁ ବେଗେ ଡେଇଁ
ଅସୁର ରଥପରେ ବସିଲାକ ଯାଇଁ ।
ଅସୁର ଗୋଡ଼ଧରି ତଳକୁ ଡେଇଁପଡ଼ି
ଏଣେ ଦିନ ଶେଷ ଅସ୍ତ ଅଂଶୁମାଳି ।
ଦେଖିଣ ଲକ୍ଷ୍ମଣ ବୀର ତ୍ରିଶୂଳ ଘେନି ଡେଇଁ
ବୁକୁରେ ତ୍ରିଶୂଳ ଦେଇ ମାଡ଼ିଣ ବସଇ ।
ବୁକୁଫାଟି ପାତାଳକୁ ଗଳିଲା ତ୍ରିଶୂଳ
ଅସୁର ରଡ଼ିନାଦେ କମ୍ପେ ତିନିପୁର ।
ଦେଖିଣ ଲକ୍ଷ୍ମଣ ତଳକୁ ଋପିଦେଲେ
ଭୂମିଫାଟି ଅସୁର ପାତାଳେ ପଶିଲେ ।
ଅସୁର ହୃଦୟରୁ ଜୀବନ ଗଲାଛାଡ଼ି
ଦେଖିକରି ଲକ୍ଷ୍ମଣ ତ୍ରିଶୂଳ ଦେଲେ କାଢ଼ି ।
ପାର୍ଥୀବ ଦେହଛାଡ଼ି ସୁନ୍ଦର ରୂପ ହେଲା
ପୁଷ୍ପକ ଯାନରେ ସ୍ୱର୍ଗକୁ ଚଳିଗଲା ।
ମଙ୍ଗଳର ପୁରେ ଯାଇ ହେଲା ପରବେଶ
ମାତା ପିତାକୁ ଦେଖି ଓଳଗେ ଯାଇଁ ଶିଷ୍ୟ ।
ମାତା ପିତା ହରଷ ହେଲେ ପୁତ୍ର ଦେଖି
ବୋଇଲେ ଅନନ୍ତ ଏବେ କଲେ ଆମ୍ଭଙ୍କୁସୁଖୀ ।
ପୁତ୍ରର ବିହୁନେ ଆମ୍ଭେ ଝୁରୁଥିଲୁଁ ପୁଣ
ଏତେବୋଲି ମାତା ପିତା ହରଣ ହେଲେ ଜାଣ ।
ପାର୍ବତୀ ବୋଇଲେ ସେତ ମଙ୍ଗଳ କୁମର
କେଉଁ ଦୋଷୁଁ ଅସୁର ହେଲା କହ ମୋ ଆଗର ।
ଈଶ୍ୱର ବୋଇଲେ ସେ ଏକ ଦିନକରେ
ବିଜେକଲା ସେଦିନ ପବନ ମନ୍ଦିରେ ।
ବାଟରେ ଯାଉଁ ଯାଉଁ ଗୋଲେଖଙ୍କୁ ଦେଖି
ବିକାର ବାଣୀ ଯେ ସେଠାରେ ପ୍ରକାଶି ।
ଶୁଣିକରି ଗୋଲେଖ ମନରେ ଅବିଗୁଣ
ମଙ୍ଗଳ ପୁତ୍ରକୁ ଦେଲେ ଶାପ ପୁଣ ।

ବୋଇଲା ସିଦ୍ଧ ଋଷି ମୁହିଁ ଅଟେ ପୁଣି
ଦିଗପାଳ କୁମର ତୁ ମୋତେ ଗର୍ବ ଭଣି ।
ଅସୁର ବିକାରେ ଯେ ଦେଖାଇ ମୋତେ ନିନ୍ଦୁ
ଅସୁର ଯୋନିରେ ତୁ ଜନମ ହୁଅ ସିନ୍ଧୁ ।
ଚଉଦଯୁଗ ପର୍ଯ୍ୟନ୍ତେ ତୁ ମର୍ତ୍ତ୍ୟପରେ ରହ
ତ୍ରେତୟା ଯୁଗରେଯେ ଦଶରଥ ପୁଅ ।
ସ୍ତିରୀବେଶେ ତୋତେ ଯେ କରିବେ ସେହିନାଶ
ତେବେ ତୁ ମାତା ପିତାଙ୍କୁ ଦେଖିବୁରେ ଶିଷ୍ୟ ।
ଶାପ ପାଇ ମଙ୍ଗଳା ପୁତ୍ର ବେଗେ ଗଲା
ରଙ୍ଗଲା ଅସୁରୁଣୀ ଗର୍ଭରେ ଜନ୍ମ ହେଲା ।
ଚଉଦ ଯୁଗରେ ଲକ୍ଷ୍ମଣ ତାକୁ ମାରି
ମାତା ପିତାଙ୍କୁ ଲେଉଟି ଦେଖିଲା ତାହାରି ।
ପାର୍ବତୀ ବୋଇଲେ ଏବେ ଲକ୍ଷ୍ମଣ କିସ କଲେ
ଈଶ୍ୱର ବୋଲେ ଲକ୍ଷ୍ମଣ ରଥରେ ଉଠିଲେ ।
ତ୍ରିଶୂଳ ନେଇଣ ସମ୍ପାଳେ ସଉମିତ୍ରି
ସେହ୍ନା ଯୂଥପତି ଘେନି ରଥରେ ଯାଇଁ ବସି ।
କାଞ୍ଚନ ଅସୁର ରଥେ ସାରଥି ହୋଇଥିଲା
ରଜନୀ ଦୁଇ ଘଡ଼ିରେ ନବରେ ମିଳିଲା ।
ରାଜା ମରିବାର କଥା କହିଲା ରାଣୀ
ରାଣୀ ବୋଇଲା ଆମ୍ଭେ ଯିବୁଁ କେଉଁ ଦିଗେ ।
ସାରଥି ବୋଇଲେ ତୋର ନିଜ ରାଜ୍ୟେଋଲ
ନୋହିଲେ ତୁମ୍ଭକୁଟି ମାରେ ଲକ୍ଷ୍ମଣ ବୀର ।
ଶୁଣିଣ ସେ ପୁରରୁ ଯେତେକ ଅସୁରୁଣୀ
ସମସ୍ତେ ରଥରେ ବସିଲେ ବେଗେ ପୁଣି ।
କାବେରୀ ଦେଶକୁ ଛାଡ଼ି କରି ଗଲେ
ଅରୁଣର ଦେଶରେ ପ୍ରବେଶ ହୋଇଲେ ।
ରଜନୀରେ ରଥ ପରେ ରହିଲେ ଲକ୍ଷ୍ମଣ
ରଜନୀ ଶେଷ ହୁଅନ୍ତେ ଦିଶେ ସର୍ବପୁଣ ।
ଦେଖିଲେ ଅସୁର ବଳ ଗୋଟିଏ କେହିନାହିଁ
ନର ଲୋକ କେବଳ ଅଛନ୍ତି ସେଥି ରହି ।
ନର ଲୋକ ଦେଖିଣ ସରିଲାଣି ରଣ
ସେହି ନଗ୍ରରେ ଅସୁର କେହି ନାହିଁ ପୁଣ ।
ସେହି ନଗ୍ରରେ ଲୋକେ ଆସି ଲକ୍ଷ୍ମଣ ପାଶେ ମିଳି
କରଯୋଡ଼ି ଆଗେ ଜଣାଣ ଯାଇ କରି ।
ଋରି ଜଣଙ୍କ ମୁଣ୍ଡରେ ଲକ୍ଷ୍ମଣ ଶାଢ଼ୀ ଦେଲେ
ଦଶ ଜଣ ସାମନ୍ତ ସେଥିରେ ପୁଣ କଲେ ।

ବୋଇଲେ ତିନି ନଗ୍ର ଅଟେ ଏହୁ ପୁରୀ
ତିନିଜଣ ମନ୍ତ୍ରୀ ଦେବ ପାତ୍ର ତିନିଜଣ କରି ।
ତୁମ୍ଭେମାନେ ଯାଇଣ ରାଜ୍ୟକୁ ସମ୍ଭାଳ
ଅସୁର ଘରେ ପରଜା ରଖ ଯା ମୋହର ।
ଅସୁରଙ୍କର ଧନ ପରଜା ବିଳସନ୍ତୁ
ଅଶ୍ୱ, ହସ୍ତୀ, ସାରେଣୀ ସମ୍ଭାଳ ହୁଅନ୍ତୁ ।
ଗାଈ ଯେ ମଇଁଷି ଗଧ ଶ୍ୱାନ ବଳ
ସମସ୍ତଙ୍କୁ ସମ୍ଭାଳ କର ହେ ସତ୍ୱର ।
ଦାଣ୍ଡ ପରିମଳ କରାଅ ଆଗେ ଯାଇଁ
ସମସ୍ତେ ସ୍ଥିର ହେଲେ ସ୍ନାନ କରେ ମୁହିଁ ।
ଶୁଣିଣ ପାତ୍ର ମନ୍ତ୍ରୀ ବେଗେ ଚଳିଗଲେ
ତିନି ପୁରେ ବାଣ୍ଟି ହୋଇ ଯାଇଣ ରହିଲେ ।
ଜଗତୀ ଅଟ୍ଟାଳୀ ଅନେକ ଅଛି ତହିଁ
ବାମ୍ଫୀ ନଣ୍ଡ ଚାରି ପାଶେ ବେଢ଼ି ଅଛି ରହି ।
ଦେଖିଣ ନୂଆ ରାଜା ମନରେ ହେଲେ ତୋଷ
ଭଣ୍ଡାର ଘରମାନ ସେ ଦେଖିଣ ହରଷ ।
ସତୁରୀ ସହସ୍ର ଯେ ଭଣ୍ଡାର ଘର ସେଥି
ମୁଦ ଚିହ୍ନି ଦେଲେ ଯେ ଦଶରଥ ବସି ।
ବିଶ୍ୱାମିତ୍ର ମୁନିଙ୍କି ଯେ ମନରେ ସୁମରିଲେ
ଆସନରେ ଥାଇ ବିଶ୍ୱାମିତ୍ର ତା ଜାଣିଲେ ।
ଘରଣୀ ପୁତ୍ର ଘେନିଣ ଚଳିଗଲେ ବେଗେ
କର୍ଣ୍ଣାଟ ଦେଶରେ ଯାଇ ମିଳେ ଋଷି ବେଗେ ।
ଗ୍ରାମ ମୁଣ୍ଡେ ବୃକ୍ଷ ମୂଳେ ଘରଣୀ ପୁତ୍ର ରଖି
ସଉମିତ୍ରୀ ଆଗରେ ମିଳିଲେ ଋଷି ନିକି ।
ଋଷିଙ୍କି ଦେଖିଣ ଯେ ଲକ୍ଷ୍ମଣ ଓଳଗିଲେ
ସୁକଲ୍ୟାଣ କରି ଋଷି ଲକ୍ଷ୍ମଣେ କହିଲେ ।
କିମ୍ପା ସୁମରିଲୁରେ ସୁମିତ୍ରା କୁମର
ଲକ୍ଷ୍ମଣ ବୋଇଲେ ଦେବ ରହିବ ଏ ପୁର ।
କୁଳର ପୁରୋହିତ ଯେ ହୋଇବ ମୋହର
ବିଶ୍ୱାମିତ୍ର ବୋଲନ୍ତି ଶୁଣ ଦଶରଥ ବାଳ ।
କେଉଁ ସ୍ଥାନେ ରହିବି ମୁଁ ସେ ସ୍ଥାନେ ସ୍ଥାନ କର
ଲକ୍ଷ୍ମଣ ବୋଇଲେ ତୁମ୍ଭପାଇଁ ହୋଇଛି ବିଚାର ।
କୃଷ୍ଣବେଣୀ ତଟେ ଅଛି ଶୁକ୍ଳ ପରବତ
ସେଠାରେ ତୁମ୍ଭ ପାଇଁ ହୋଇଅଛି ମଠ ।
ତପକୁ ହେବ ଭଲ ରାଜ୍ୟକୁ ଲଗା ପୁଣ
ସେ ମଠରେ ବିଶ୍ରାମ କର ହେ ମୁନି ଧନ୍ୟ ।
ଶୁଣିଣ ବିଶ୍ୱାମିତ୍ର ବେଗେ ଚଳିଗଲେ
ମାଗୁଣିକି ଲକ୍ଷ୍ମଣ ମୁନିଙ୍କ ସଙ୍ଗେ ଦେଲେ ।
ଧବଳ ମଠରେ ଯାଇଁ ହେଲେ ପରବେଶ
ଦେଖିଣ ବିଶ୍ୱାମିତ୍ର ମନରେ ହରଷ ।
ଚାରିପୁତ୍ର ଭାରିଯା ସେଠାରେ ରହିଲେସି
ଲକ୍ଷେକ ତନୁ ପୁଣ ଲକ୍ଷ୍ମଣ ଦେଲେ ପେଷି ।
ଅନେକ ଶୀତଳ ସାମଗ୍ରୀ ଭେଦି ଦେଲେ
ଆନନ୍ଦରେ ଘରଣୀ ପୁତ୍ର ସେ ରହିଲେ ।
ଶତେକ ଶ୍ୱେତ ହସ୍ତୀ ଅମରୀ ସଜ କରି
ସିଂହଦ୍ୱାରେ ରଖିଲେ ମନ୍ତ୍ରୀ ନେଇ କରି ।
ଛତିଶ ନିଯୋଗ ଯେ ଚତୁରଙ୍ଗ ବଳ
ରଥୀ ସେନ୍ଥାପତି ଅଣାଇ ସକଳ ।
ପାତ୍ର ମନ୍ତ୍ରୀ ବୋଇଲେ ହେଲା ତେର ଦିନ
ସ୍ନାନ ମାଜଣା ଦେବ ହୋଇନାହିଁ ପୁଣ ।
ଶୁଣିକରି ଲକ୍ଷ୍ମଣ ସନ୍ତୋଷ ମନ ହେଲେ
ସମସ୍ତେ ସଙ୍ଗ ହୋଇ ସ୍ନାହାନ ସାରିଲେ ।
କୃଷ୍ଣ ବେଣୀରେ ସ୍ନାନ ବେଗେ ଯାଇ କଲେ
ପିତୃଙ୍କ ଜଳ ଦେଇ ସନ୍ଧ୍ୟା ସୁମରିଲେ ।
ସ୍ତିରୀ ଭଙ୍ଗୀରେ ଅମଳାଣ ଶାଢ଼ୀ ପିନ୍ଧି
ସ୍ତିରୀ ବେଶ ଗୋଟି ଦେବ ହେଲେ ଛନ୍ଦି ।
ବିଶ୍ୱାମିତ୍ର ବୋଇଲେ ଶୁଣରେ ସଉମିତ୍ରି
ପୁରୁଷ ବେଶ ଛାଡ଼ି ସ୍ତିରୀ ବେଶରେ ମତି ।
ଲକ୍ଷ୍ମଣ ବୋଇଲେ ଶୁଣିବା ଦେବ ହେଉ
ଗୟଳ ଗଣ୍ଡାସୁର ମଂଶାସୁର ଅଂଶ ସେହୁ ।
ସ୍ତିରୀ ହସ୍ତେ ମରିବାକୁ ଶପଥରେ ପାଇ
ସେ ଯୋଗୁଁ ସ୍ତିରୀର ବେଶ ମୁଁ ଧରଇ ।
ଅତି ସମ୍ଭର୍ବରେ ବିଜେ କଲେ ଜାଣ
ହୁଳହୁଳି ରାମତାଳି ପଡ଼େ ଅନୁକ୍ଷଣ ।
ଆଗରେ ନଟକାର ଭାଟ କୟେବାର
ପଞ୍ଚା ପଞ୍ଚା ହୋଇ ବେଶ୍ୟା ନାରୀ ଚଳେଧୀର ।
ଖୁଣ୍ଟିଆ ଆଗେ ଡାକ କରଇ ସଧୀରେ
ମଣିମା ବିଜେ କର ନବର ଦେଖିବାରେ ।
ଆଗରେ ଶଙ୍ଖଚିଲ ଭଦଳିଆ ପକ୍ଷୀ
ଶ୍ୱେତହଂସ ପାରୁଆ ଆଗରେ ଉଡ଼ାନ୍ତି ।
ବାଷଠୀ କାଣ୍ଡ ଯେ କାବେରୀ ନକ୍ର ପୁରେ
ବୁଲିଣ ସଉମିତ୍ରି ଦେଖନ୍ତି ନିଶ୍ଚିନ୍ତରେ ।

ସେ ନଗ୍ର ନରନାରୀ ହୁଅନ୍ତି କଥାପୁଣ
ନାରୀବେଶ ନୂଆ ରାଜା ହୋଇଛି ଭିଆଣ ।
କେ ବୋଲଇ ଅସୁର ଏପୁରେ ପୁଣ ଥିଲେ
ମଲାବେଳେ ଏ ରାଜାକୁ ଶାପ ଦେଇଗଲେ ।
କେ ବୋଲେ ପରମ ବ୍ରାହ୍ମ ମୂରତି ଅଟେ ଏହୁ
ଚାରି ରାବଣକୁ ଯେ ମାଇଲେ ରାମ ରାହୁ ।
ଏମନ୍ତ କୁହାକୁହି ହେଲେ ନଗ୍ରଜନ
କାବେରୀ ଦେଶକୁ ଗଲେ ଲକ୍ଷ୍ମଣ ବେଗେପୁଣ ।
କର୍ଣ୍ଣାଟ ଦେଶରେ ହେଲେକ ପ୍ରବେଶ
ଦେଖିଲେ ସେପୁର ଅଷ୍ଟ ରତ୍ନରେ ନିର୍ମିତ ।
ନଉକୋଟି ଦାଣ୍ଡ ଯେ ଫେରିଣ ପୁଣ ଦେଖି
ସେ ନଗ୍ରରେ ଦେବତା ଗଣେଶ ଅଟନ୍ତି ।
ହସ୍ତୀରୁ ଓହ୍ଲାଇ ଲକ୍ଷ୍ମଣ ବେଗେ ଚଳି
ପାତ୍ରମନ୍ତ୍ରୀ ସେହ୍ନା ଯୁଥପତି ଘେନିଚଳି ।
ସେହ୍ନାପତି ସର୍ବେ ସଙ୍ଗରେ ଗଲେ ପୁଣ
ଦେଉଳ ଭିତରେ ଯାଇ ଦେଖିଲେ ଗଣବ୍ରହ୍ମ ।
ଲକ୍ଷ୍ମଣ ବିଜେକଲେ ପାର୍ବତୀସୁତ ଆଗେ
ଦେଖିଣ ପାର୍ବତୀ ସୁତ ପାଶାଣୁ ଫିଟେ ବେଗେ ।
ଲକ୍ଷ୍ମଣର ଚରଣେ ଓଳଗେ ବେଗେ ଆସି
ଦେଖିକରି ଲକ୍ଷ୍ମଣ ତୋଳିଲେ ଝଟତି ।
କୋଳରେ ନେଇ ଗଣପତିଙ୍କୁ ବସାଇଲେ
ମୁଖରେ ଚୁମ୍ବଦେଇ ବଚନ ବୋଇଲେ ।
ବୋଇଲେ ବଡ଼କଷ୍ଟ ପାଇଲୁ କୁମର
ଅକ୍ଷୟ ଅସୁର ଏଥିରେ କଲାଘର ।
ଗଣେଶ ବୋଇଲେ ପିତା ଶୁଣ ମୋ ବଚନ
ସହସ୍ରେ ଯୁଗ ଏଥିରେ ମୁହିଁ ରହେ ପୁଣ ।
ଚଉଦ ଯୁଗ ହେଲା ଅସୁର ଏଥି ରହି
ଅମୃତ ଲଡୁ ମୋର ନିଷେଧ ହୋଇଲଇଁ ।
ଶୁଣିଣ ସଉମିତ୍ରୀ ମନ୍ତ୍ରୀକି ଭେଦିଦେଲା
ନବରରୁ ଅମୃତ ଲଡୁ ଅଣାଇଲା ।
କୋଳରେ ବସାଇ ଭୁଞ୍ଜାଏ ଲଡୁ ପୁଣ
ଭୁଞ୍ଜିଣ ସନ୍ତୋଷ ଯେ ହେଲେ ଗଣ ବ୍ରହ୍ମ ।
ଆଞ୍ଚୋବନ ସାରିଣ ଆଗରେ ହେଲେ ଛିଡ଼ା
ବୋଇଲେ ଦେବ ମୋତେ ନିତ୍ୟେଲଡୁ ଲୋଡ଼ା ।
ପାତ୍ର, ମନ୍ତ୍ରୀ, ଋଷିଙ୍କି ବସାଇ କହିଲେ
ଅଯୋଧ୍ୟାକୁ ଯାଉଛୁ ବୋଲିଣ ବୋଇଲେ ।
ଶ୍ରୀରାମଙ୍କୁ ଦର୍ଶନକରି ଆଣିବି କୁଟୁମ୍ବ
ପାଞ୍ଚସାତ ଦିନ ତୁମ୍ଭେ ରାଜ୍ୟକୁ ସମ୍ଭାଳିବ ।
ମାରୁତି ତୁମ୍ଭର ସଙ୍ଗେ ରହିଲା ମୋହର
ସୁଷେଣ ସୁସୋଦନ ରହିଲେ ଦୁଇବୀର ।
ଯୂଥପତି ସେହ୍ନାପତିଙ୍କି ବୋଇଲେ ଲକ୍ଷ୍ମଣ
ତାଳଧ୍ୱଜ ରଥେ ସର୍ବେ ବସ ଯାଇ ପୁଣ ।
ଲକ୍ଷ୍ମଣ କହନ୍ତେ ଦାରୁକ ଚାଳେ ଯାନ
ଶୂନ୍ୟରେ ରଥଗୋଟି କଲେକ ଗମନ ।
ଅଯୋଧ୍ୟା ନଗ୍ରରେ ହେଲେ ପରବେଶ
ଶୂନ୍ୟରୁ ଖସି ଯାନ ମିଳିଲା ତୁରିତ ।
ସିଂହଦ୍ୱାରେ ରଥରୁ ହୋଇ ବୀରଗଲା
ସେହ୍ନା ଯୂଥପତିଙ୍କି ସଙ୍ଗତରେ ନେଲା ।
ଶ୍ରୀରାମ ଚରଣରେ କଲା ଦରଶନ
ଶୋଇଲା ପ୍ରାୟେ ପଡ଼ି ବୀରବର ଲକ୍ଷ୍ମଣ ।
ଲକ୍ଷ୍ମଣ କରଧରି ଭିତରପୁରେ ଗଲେ
ଜାନକୀ ଅନ୍ତଃପୁରେ ଯାଇଣ ମିଳିଲେ ।
ମାଜଣା ହେଉଅଛି ଜନକ କୁମାରୀ
ଦେଖିକରି ଲକ୍ଷ୍ମଣ ଶୁଏ ପାଏ ପଡ଼ି ।
ଜାନକୀ ବୋଇଲେ ଉଠ ମୋର ପ୍ରାଣ
କେତେ ତୁ ମାନ୍ୟ କରୁ ମୋହର ଜୀବନ ।
ଶ୍ରୀରାମଙ୍କଠାରୁ ତୁ ମୋତେ ଅଟୁ ବଡ଼
ନିବିଡ଼ କଷ୍ଟରେ ମୋତେ ନ କଲୁ ଦୂର ।
ମୁହିଁ ତୋତେ ଅନେକ ଦୁଃଖ ପୁଣି ଦେଲି
ଭର୍ତ୍ସନା କରିଣ ମୁଁ ଅନେକ ଗାଳିଦେଲି ।
ତୁ ମୋହର ଦୁର୍ଜନ ଯେ ଭାଷା ଶୁଣିକରି
ମୋହଠାରେ ତୋର ମନ ଅନ୍ତର ନ କରି ।
ମୋ ସ୍ୱାମୀ ଦୁର୍ଜନ ଭାଷା କେତେ ତୁ ସହିଲୁ
ତୁ ମୋତେ ଅଯୋଧ୍ୟାରେ ପ୍ରଭୂପଣ ଦେଲୁ ।
ମାଇଲୁ ଅସୁର ଦେବଙ୍କ ଭୟ ଗଲା
ଋଷିମାନଙ୍କର ଯେ ତପସିଦ୍ଧ ହେଲା ।
ଘରଣୀ ମାତାଙ୍କୁ ଘେନି ଚଳତୁ ବହନ
ଜୟକଲା ଭୂମିରେ ରାଜା ହୁଅ ତୁ ପୁଣ ।
ଶୁଣିଣ ଲକ୍ଷ୍ମଣ ବୀର ବେଗେ ଚଳିଗଲା
ଆପଣାର ନବରରେ ଯାଇଣ ମିଳିଲା ।
ମାତାର ଚରଣେ ଯାଇ କଲା ନମସ୍କାର
ବୋଇଲା ଯିବା ଆମ୍ଭେ ଗଜୀନ୍ଦ୍ର ନାମେ ପୁର ।

ଦାସୀଗଣ ମାତାଗଣ ଘେନି ହୁଅ ସଜ
ଏତେ ବୋଲି ମାତାପୁର ଗଲା ସେହି ବେଗ ।
ଉର୍ମୀଳା ନାରୀ ଆଗରେ ହେଲା ପରବେଶ
ଦେଖିଣ ଅନୁଛାୟା ମନରେ ହରଷ ।
ମଙ୍ଗଳ ଆଳତୀ ଉର୍ମୀଳା ଆଣିକଲା
ଦେଖିକରି ସଉମିତ୍ରୀ ସନ୍ତୋଷ ହୋଇଲା ।
ବୋଇଲେ ସଖୀରେ ତୁ ହୁଅ ସଜ
ଗଜୀନ୍ଦ୍ର ଦେଶର ରାଣୀ ହେବ ତୁମ୍ଭେ ଆଜ ।
ଶୁଣିଣ ଉର୍ମିଳା ମାର୍ଜଣା ବେଗେ ହେଲା
ସୁବାସିତ ଜଳରେ ସ୍ନାନବେଗେ କଲା ।
ଛଡ଼ ରସରେ ପାକ କଲେ ସେ ରନ୍ଧନ
କରଯୋଡ଼ି ସ୍ୱାମୀ ଆଗେ ମିଳିଲା ବହନ ।
ବୋଇଲା ଶୁଣିବା ହେଉ ଗଜୀନ୍ଦ୍ର ପୁନରାୟେ
ମାର୍ଜଣା ମର୍ଦ୍ଦନ ହୁଅ ହେ ଦେବରାୟେ ।
ଦାସୀଗଣ ଯାଇଣ ମାର୍ଜ୍ଜଣା କରାଇଲେ
ସୁବାସିତ ଜଳରେ ସ୍ନାନ କରାଇଲେ ।
ନିତ୍ୟକର୍ମ ସାରିଣ ଦେବାର୍ଚ୍ଚନ ସାରି
ଛଡ଼ରସରେ ଭୋଜନ କଲେ ଯାଇଁ କରି ।
ଆଞ୍ଚୋବନ ସାରିଣ ବିଡ଼ିଆ ଲାଗି ହେଲେ
ପଲଙ୍କ ଉପରେ ଯାଇଣ ନିଦ୍ରାଗଲେ ।
ଭୁଞ୍ଜିଣ ଉର୍ମୀଳା ନାରୀ ବିଡ଼ିଆ ଲାଗି ହୋଇ
ଅନୁଛାୟା ଡାକି ଉର୍ମୀଳା ଆଜ୍ଞାଦେଇ ।
ଦାସୀଗଣ ବେଶକରି ଆଣ ଗୋ ବହନ
ଶୁଣିଣ ଅନୁଛାୟା ଚଳେ ତତକ୍ଷଣ ।
ଅନୁଛାୟା ସକଳ ଦାସୀଗଣ ବେଢ଼ି
ଉର୍ମୀଳାଙ୍କୁ ବେଶକଲେ ପାର୍ବତୀ ଦେବୀ ପରି ।
ଏହି ସମୟରେ ଉଠିଲେ ସଉମିତ୍ରୀ
ଅନୁଛାୟା ଉର୍ମୀଳା ଦେବୀ ଆଗରେ ଓଗଳାନ୍ତି ।
ଲକ୍ଷ୍ମଣ ବୋଇଲେ ତୁମ୍ଭେ ବେଗହୋଇ ଚଳ
ତ୍ରୈଲୋକ୍ୟ ଠାକୁରାଣୀଙ୍କ ଦର୍ଶନ ଯାଇଁକର ।
ଯାହାର ପରସନ୍ନେ ସକଳ ମୋର ସିଦ୍ଧି
ଶୁଣିଣ ଉର୍ମୀଳା ନାରୀ ଚଳିଲାକ ବେଗି ।
ଦାସୀଗଣ ଘେନିଣ ବେଗେ ଚଳିଗଲା
ଜାନକୀ ଅନ୍ତଃପୁରେ ଯାଇଁଣ ମିଳିଲା ।
ଓଳଗି ହୋଇଲା ଯାଇଁ ଜାନକୀ ଚରଣ
କୋଳେ ଧରି ଜାନକୀ ଦେଲେକ ଚୁମ୍ବନ ।

କଉଶଲ୍ୟା ଚରଣରେ ସମସ୍ତେ ଓଳଗିଲେ
ବିଶାଶତେ ମାତା ଏକଠାବ ହେଲେ ।
କୌଶଲ୍ୟା ବୋଲନ୍ତି ସୁମୈତ୍ରାକୁ ଚାହିଁ
ଲକ୍ଷ୍ମଣ ପୁତ୍ର ଗୋଟି ମୋ ପ୍ରାଣ ଅଟଇ ।
ନିରାଶ ନ କରିବାକୁ ଭେଦିବୁ ମୋର ପୁର
ବେନିମାସେ ନ ଦେଖିଲେ ଜୀବନ ଯିବ ମୋର ।
ଜାନକୀ ରାମ ସେ ଅଟନ୍ତି ଏକ ଅଙ୍ଗ
ଲକ୍ଷ୍ମଣ ଯିବାରୁ ଚିନ୍ତା କରିବେ ରାମରାଜ ।
ମେଲାଣି ମାଗିଣ ସୁମୈତ୍ରା ଚଳିଗଲା
ଜାନକୀର ଆଗରେ ପ୍ରବେଶ ହୋଇଲା ।
ଉର୍ମୀଳା ନମିଲା କୌଶଲ୍ୟା ଚରଣ
ସକଳ ମାତାଙ୍କୁ ଓଳଗି କଲା ପୁଣ ।
କଉଶଲ୍ୟା ବୋଇଲେ ଶୁଣ ମୋର ମାତ
ବେନିମାସେ ସ୍ୱାମୀକି ଭେଦୁଣ ଥିବ ଏଥ ।
ଉର୍ମୀଳା ବୋଇଲେ ଶୁଣ ମୋର ମାତ
ତ୍ରୈଲୋକ ଠାକୁର ଅଟନ୍ତି ତୁମ୍ଭ ପୁତ୍ର ।
ପୁତ୍ରବଧୂଙ୍କ ଠାରେ କରିବ ସୁଗତି
ସ୍ୱାମୀର ସଙ୍ଗେ ଯିବ ଲଭିବ ସଦ୍‌ଗତି ।
ସେଠାରୁ ଉର୍ମୀଳା ଚଳିଲେ ବେଗକରି
ଜାନକୀ ଆଗରେ ମିଳିଲେ ଶୀଘ୍ରକରି ।
ଜାନକୀ ଚରଣରେ ଓଳଗି କରେ ଯାଇଁ
ଦେଖିକରି ଜାନକୀ କୋଳରେ ବସାଇ ।
ବୋଇଲେ ଜୟକଲା ପୁରକୁ ବେଗେ ଯାଅ
ସେ ପୁରରେ ରାଣୀ ହୋଇ ନିଶ୍ଚିନ୍ତରେ ଥାଅ ।
ବରଷକରେ ଥରେ ଦେଖୁଥିବୁ ମୋତେ
ତୋଠାରେ ମୋର ପ୍ରସନ୍ନ ମନଟି ନିୟତେ ।
ଉର୍ମୀଳା ନାରୀ ବୋଇଲେ ତୁମ୍ଭର ମୁଁ ଦାସୀ
ସବୁଦିନେ ମୁହିଁ ତୁମ୍ଭ ଚରଣରେ ଦାସୀ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ରଥପରେ ଯାଇଁ ବସିଲା ସଉମିତ୍ରୀ ।
ସମସ୍ତ ମାତା ଘରଣୀ ସେଥିରେ ବସିଲେ
ଦାରୁକ ତାଳଧ୍ୱଜ ରଥକୁ ଚାଳିଦେଲେ ।
ଗଜେନ୍ଦ୍ର ପୁରେ ଯାଇଁ ହେଲେ ପରବେଶ
ଗଡ଼ର ସିଂହଦ୍ୱାରେ ରହିଲା ଯାଇଁ ରଥ ।
ରଥପୁର ଓହ୍ଲାଇଣ ଭିତରକୁ ଗଲେ
ଦିବ୍ୟପୁରମାନ ସେ ଭିତରେ ଦେଖିଲେ ।

ମନରେ ତୋଷହୋଇ ଆନନ୍ଦ ହୋଇଲେ
ମାଜଣା ମର୍ଦ୍ଦନ ସ୍ନାନ ବେଗେ କଲେ ।
ଛଡ଼ରସରେ ପାକ କଲେ ତିଆରଣ
ଭୁଞ୍ଜିଣ ସନ୍ତୋଷ ସର୍ବେ ହେଲେ ପୁଣ ।
ଲକ୍ଷ୍ମଣ ମଣୋହି ଯେ ଛଡ଼ ରସରେ କଲେ
ମୁଖ ପଖାଳିଣ ବିଡ଼ିଆ ଭୁଞ୍ଜିଲେ ।
ଉର୍ମୀଳା ଦାସୀଗଣ ଫେରିକରି ଦେଖି
ଋରିଦିନେ ନଦୀ ପୋଖରୀ ଦେଖି ଆସି ।
ଦଶଦିନ ଉତ୍ତାରୁ ପାତ୍ରମନ୍ତ୍ରୀ ଡାକି
ମାତାଗଣ ରଖାଇ ସେଠାରୁ ଚଳିଯାନ୍ତି ।
କାବେରୀ ପୁରରେ ଯାଇଁ ହେଲେ ପରବେଶ
ସିଂହଦ୍ୱାରେ ରଥ ରଖେ ଦଶରଥ ଶିଷ୍ୟ ।
ଭିତର ପୁରକୁ ସେ ଚଳିଲେ ବହନ
ଦିବ୍ୟପୁରେ ଉର୍ମୀଳା ରହିଲେ ଯାଇଁଣ ।
ନବର ବୁଲିକରି ଦେଖିଲେ ଭିତର
ନଦୀ ପୋଖରୀ କୂପ ପର୍ବତ କନ୍ଦର ।
ଦେଖି ଉର୍ମୀଳା ନାରୀ ଅଯୋଧ୍ୟା ପାଶୋରିଲେ
ବିଋରନ୍ତି ଜାନକୀ ପ୍ରସନ୍ନରେ ଦେଲେ ।
ଲକ୍ଷ୍ମଣ ସଭାକରି ବୁଝିଲେ ରାଜ୍ୟ ଭଲ
ଏହିରୂପେ ସାତଦିନ ହୋଇଲା ଗହଳ ।
ଗଜେନ୍ଦ୍ର ଦେଶରେ ହୋଇଲେ ପରବେଶ
ସେ ରାଜ୍ୟ ବୁଝିଲେ ଯେ ଦଶ ହିଁ ଦିବସ ।
ଷଡ଼ ସେନାପତି ସେଠାରୁ ଚଳିଗଲେ
ଶ୍ରୀରାମ ଛାମୁରେ ଦର୍ଶନ ଯାଇଁ କଲେ ।
ସକଳ କୁଶଳ ପଋରିଲେ ଶ୍ରୀରାମ
ନିଶ୍ଚିନ୍ତରେ ଅଯୋଧ୍ୟା ପାଳନ୍ତି ପୁଣ ରାମ ।
ବେନି ମାସ ଯିବାରୁ ସେନାପତିଙ୍କି ଡାକି
ବୋଇଲେ ତିନିଭାଇଙ୍କ ପୁରକୁ ଯାଅଟି ।
ତିନିଭାଇଙ୍କୁ ମୋର କହିବ ବୁଝାଇ
ବାରମାସେ ତେରଯାତ୍ରା କରନ୍ତୁ ଯେଝାଭୂଇଁ ।
ଉତ୍ସବ ଯାତ୍ରା କଲେ ସେ ରାଜ୍ୟ ଆନନ୍ଦ
ଯେମନ୍ତେ ମନେ ତୋଷ ହେବେ ରାଣୀବୃନ୍ଦ ।
ଶୁଣିଣ ଛାଡ଼ ସେନା ବେଗେ ଚଳିଗଲେ
ମଧୁବନରେ ସେ ପ୍ରବେଶ ଯାଇଁ ହେଲେ ।
ଅନ୍ତଃପୁରେ ଯୂଥପତି ମିଳିଲେ ବେଗକରି
ସକଳ ଜନନୀଙ୍କୁ ନମସ୍କାର କରି ।
ଶ୍ରୀରାମର କୁଶଳ କହି ଚଳିଗଲେ
ହସ୍ତିନା ନଗ୍ରରେ ପ୍ରବେଶ ହୋଇଲେ ।
ଶତ୍ରୁଘନଙ୍କୁ ସେ ପୁରେ ଦେଖିଲେ ପୁଣ ଯାଇ
ବୋଇଲେ ଶ୍ରୀରାମଚନ୍ଦ୍ର ଦେଲେ ପଠିଆଇ ।
ବାରମାସେ ତେରଯାତ୍ରା କରିବ ଭିଆଣ
ଉତ୍ସବରେ ଯାତ୍ରାମାନ କରିବଟି ପୁଣ ।
ଜନନୀମାନଙ୍କୁ ସୁଖରେ ପାଳିବ
ରାଣୀହଂସମାନଙ୍କୁ ସନ୍ତୋଷ କରାଇବ ।
ଯେଉଁରୂପେ ରାଜ୍ୟରେ ହେବ ପ୍ରଭୁପଣ
ଏମନ୍ତ କହି ସେଠାରୁ ଗଲେକ ବହନ ।
ଭରତଙ୍କ ପୁରରେ ହେଲେ ପରବେଶ
ଏହିମତେ କହିଲେ ସକଳ ସନ୍ଦେଶ ।
ଜନନୀମାନଙ୍କୁ ଦେଖି ନମସ୍କାର କଲେ
ମାରୁତିକି ଦେଖିଣ କୈକେୟୀ ପଋରିଲେ ।
ମାରୁତି ବୋଇଲେ କୁଶଳ ରାଘବର
ଲକ୍ଷ୍ମଣ ରାଜାହେଲେ ଗଜେନ୍ଦ୍ର ଦେଶର ।
ଏତେ କହି ସେଠାରୁ ବେଗେ ଚଳିଗଲେ
ବିଷ୍ଣୁ ପୁରେ ଯାଇଣ ପରବେଶ ହେଲେ ।
ଅନ୍ତଃପୁରେ ଯାଇଁଣ ପଶିଲେ ଯୂଥପତି
ଭରଥ ମାଳିନୀ ଏକ ଆସନେ ବସିଛନ୍ତି ।
ମାଳିନୀ ରାଣୀ ବୋଲେ ଅଇଲା ହନୁମନ୍ତ
ସଙ୍ଗରେ ସେନାପତି ଅଛନ୍ତି ସମସ୍ତ ।
ଦୁଇଜଣଙ୍କୁ ଦେଖି ନମିଲେ ଚରଣ
ବୋଇଲେ ତୁମ୍ଭ ପୁରକୁ ଭେଦିଲେ ଶ୍ରୀରାମ ।
ବୋଇଲେ ମୋର ଭାଇକି ବୁଝାଇ କହିବ
ବାରମାସେ ତେରଯାତ୍ରା ସେ ରାଜ୍ୟେ କରିବ ।
ମାତାମାନଙ୍କୁ ସୁଖରେ ପାଳିବେ ମୋହର
ରାଣୀଙ୍କ ସଙ୍ଗେ ଘେନି ବିନୋଦ ଅପାର ।
ଭରତ ବୋଲେ ଲକ୍ଷ୍ମଣ କିସ କଲେ
ଅକ୍ଷୟେ ଅସୁର ସଙ୍ଗରେ ଲାଗିଥିଲେ ।
ମାରୁତି ବୋଇଲେ ସେ ନାରୀବେଶ ଧରି
ଗଣ୍ଡା ଗୟଳ ମାଇଲେ ସୌମିତ୍ରୀ ତୁମ୍ଭରି ।
କାଞ୍ଚି ଗଜେନ୍ଦ୍ର ଦେଶେ ହୋଇଲେ ରାଜନ
ଶୁଣିଣ ଭରତ ତୋଷ କଲେ ମନ ।
କହିଣ ସେନାପତି ମାରୁତି ଚଳିଗଲେ
କାବେରୀ ନଗ୍ରରେ ପ୍ରବେଶ ଯାଇ ହେଲେ ।

ଦେଖିଲେ ଲକ୍ଷ୍ମଣ ବସିଛି ସଭା କରି
ସେନାପତିମାନେ ଯାଇଁ ଦର୍ଶନ ତାଙ୍କୁ କରି ।
ଲକ୍ଷ୍ମଣ ପଚରିବେ ରାମଙ୍କୁ କୁଶଳ
ସେନାପତି ବୋଲନ୍ତି ସବୁ ତାଙ୍କର ଭଲ ।
ଆମ୍ଭଙ୍କୁ ପଠାଇଲେ ରାମ ତୁମ୍ଭ ପାଶ
ବୋଇଲେ କହିବ ମୋ ଭାଇକି ସନ୍ଦେଶ ।
ବାରମାସେ ତେରଯାତ୍ରା କରୁଥିବ ନଗ୍ରେ
ଉତ୍ସବ କରାଇ ରାଜ୍ୟେ ପାରିଧି କରିବେ ।
ପରଜାମାନଙ୍କୁ ସେ ପୁତ୍ରପ୍ରାୟେ ପାଳି
ଏମନ୍ତ ଆଜ୍ଞା ଦେଇ ଅଛନ୍ତି ରାବଣାରି ।
ଏତେ କହି ସେ ପୁରୁ ବେଗେ ଚଳିଗଲେ
ଛଡ଼ ସେନାପତି ପଥ ବାହି ଗଲେ ।
ଅଯୋଧ୍ୟା ପୁରରେ ଯାଇଁ ହେଲେ ପରବେଶ
ପାର୍ବତୀ ବୋଇଲେ ସେଠାରୁ ହେଲା କିସ ।
ଈଶ୍ୱର ବୋଇଲେ ସେ କଥା ଶୁଣ ପରା
ଯେମନ୍ତ ବିଧାନ ଏହିଠାରୁ ଯେ ହୋଇଲା ।
ପାର୍ବତୀ ବୋଇଲେ ଭାଇମାନେ ରହିଲେ
ଯେଝା ପୁରେ
ଯା ଆସ କରନ୍ତିଟିକି କହ ମୋ ଆଗରେ ।
ଈଶ୍ୱର ବୋଇଲେ ବରଷକେ ଥରେ
ଭାମା ଜନନୀମାନେ ଆସି ଦେଖନ୍ତି ରଘୁବୀରେ ।
ପାଞ୍ଚ ସାତ ଦିନ ରହି ଯେ ଯାହାପୁରେ ଯାନ୍ତି
ଆଠ ସହସ୍ରେ ସାତଶ ବର୍ଷ ଗଲା ଏଥି ।
ଦୁଇ ସହସ୍ର ବରଷ ଏକାଠାରେ ଥିଲେ
ଏମନ୍ତେ ଦଶ ସହସ୍ର ସାତଶ ବର୍ଷ ଗଲା ଭଲେ ।
ଶତୃଘନର ଭାରିଯା ସୁକ୍ରୀତା ନାମ ପୁଣ
ଦୁଇନଗ୍ରେ ବିହରଇ ପାଟରାଣୀ ଜାଣ ।
ରିଷଭ ମାସରେ ଚମ୍ପକ ଦ୍ୱାଦଶୀ
ସେହିଦିନ ସୁକ୍ରୀତାର ସ୍ନାନ ପାଳି ଆସି ।
ଗର୍ଭ ତାର ସ୍ଥାୟିତ ହେଲା ସେହିଦିନ
ପାଞ୍ଚମାସେ ଜଣା ଯେ ପଡ଼େ ସେହୁ ପୁଣ ।
ଆଷାଢ଼ ମାସରେ ଦଶମୀ ଦିନ ପୁଣ
ଭ୍ରଥ ଭାରିଯା ମାଳିନୀ ଗର୍ଭ ସେହିଦିନ ।
ପାଞ୍ଚମାସେ ଜଣା ଯେ ପଡ଼େ ସେହୁ ପୁଣ
ନିଶ୍ଚଳ ହେଲା ବୋଲି ଜାଣିଲେ ଦାସୀଗଣ ।
ଶ୍ରାବଣ ମାସ ଶୁକଳ ତ୍ରୟୋଦଶୀ ଦିନ
ଲକ୍ଷ୍ମଣ ଭାରିଜା ଉର୍ମୀଳା ଗର୍ଭହେଲା ପଣ ।
ପାଞ୍ଚମାସେ ଦାସୀଗଣ ପ୍ରକାଶ ପୁଣି କଲେ
ଅଷ୍ଟମାସ ଗର୍ଭଦାନ ରଷିଙ୍କି ଆଣିଦେଲେ ।
ଦୁଃଖୀ ଦରିଦ୍ରେ ଧନ ଦେଲେ ଯେ ବହୁତ
ବ୍ରାହ୍ମଣରେ ଅନ୍ନବସ୍ତ୍ର ଦେଲେକ ତୁରିତ ।
ଏମନ୍ତେ ଦଶମାସ ପାଞ୍ଚଦିନ ଗଲା
ଚଇତ୍ର ମାସ ଯିବାରୁ ବୈଶାଖ ମାସ ହେଲା ।
ବୈଶାଖ ଏକଦିନେ ସୁକ୍ରୀତା ଦୁଃଖପାଇ
ଦୁଇଦିନ ପ୍ରଭାତରୁ ପୁତ୍ରେକ ଜନ୍ମ ହୋଇ ।
ଦୁଇଗୋଟି କୁମର ଯେ ଜାତ ହେଲେ ପୁଣ
ଚନ୍ଦ୍ରଙ୍କ ପ୍ରାୟେ ପୁତ୍ର ଦିଶନ୍ତି ଶୋଭାବନ ।
ଲାଭି କଟାଇଣ ଯେ ଇନ୍ତୁଡ଼ି ଲଗାଇଲେ
ଜାଣିବାର ଲୋକେ ନଗ୍ରରେ ମିଳିଲେ ।
ଗଣ୍ଠୁଷ ଭୁଞ୍ଜାଇଣ ରାଣୀକି କଲେ ସୁସ୍ଥ
ପାଞ୍ଚଦିନେ ପଞ୍ଚୁଆତୀ ବୋଲିକଲେ ଜାତ ।
ପାଞ୍ଚଦିନ ବିଧିମତ ସେଦିନ ପୁଣ କଲେ
ଛଡ଼ଦିନେ ଷଠୀଘର ଉତ୍ସବ ଭିଆଇଲେ ।
ସପ୍ତମ ଦିନରେ ଯେ ଉଠିଆରୀ କଲେ
ଧୋବା ତୁଠ ହାଟ ବାଟ ହୁରି ଜୁରି କଲେ ।
ଆରଦିନ ତିନିଭାଇଙ୍କ ଠାକୁ ଚର ଗଲେ
ପାତ୍ର, ମନ୍ତ୍ରୀ, ସାମନ୍ତ ସେ ପୁରୁ ଚଳିଲେ ।
ଅଯୋଧ୍ୟାରେ ଶ୍ରୀରାମ ଛାମୁରେ ପରବେଶ
ପାତ୍ର, ମନ୍ତ୍ରୀ ଜଣାଇଲେ ଶୁଣିବା ରଘୁଶିଷ୍ୟ ।
ତୁମ୍ଭର କନିଷ୍ଠ ଭାଇ ଶତୃଘନ ପୁଣ
ତାଙ୍କର ଦୁଇ ପୁତ୍ର ଜନ୍ମ ହେଲେଟି ଜାଣ ।
ଶୁଣିକରି ରାଘବ ଭିତର ପୁରୁ ଗଲେ
ଜାନକୀ ପାଶରେ ଯାଇଣ ମିଳିଲେ ।
ଦେଖିଲେ ଦାସୀଗଣ ସମସ୍ତେ ଥିଲେ ରହି
ଜାନକୀଙ୍କି ଦେଖି ରାମ ହସ ହସ ହୋଇ ।
ଶ୍ରୀରାମ ବୋଇଲେ ତୁମ୍ଭ ସାନଦିଅର ପୁଣ
ଦୁଇ ପୁତ୍ର ତାଙ୍କର ଜନ୍ମିଲେ ତୁମ୍ଭେ ଶୁଣ ।
ଶୁଣିକରି ଜାନକୀ ଆନନ୍ଦ ହୋଇଲେ
କେ ଆସିଛି ବୋଲି ଶ୍ରୀରାମଙ୍କୁ ପଚାରିଲେ ।
ଶ୍ରୀରାମ ବୋଇଲେ ତାଙ୍କର ପାତ୍ର ମନ୍ତ୍ରୀ ଆସି
ଶୁଭଯୋଗେ ବାରତା କହିଲେ ମାତେଟି ।
ଏମନ୍ତ କହି ଶ୍ରୀରାମ ମାତାଙ୍କ ପୁରେ ଗଲେ
ଜନନୀମାନଙ୍କ ପାଶେ ପ୍ରବେଶ ହୋଇଲେ ।

ବୋଇଲେ ଜନନୀମାନେ ଶୁଣ ମୋ ବଚନ
ଦୁଇଗୋଟି ପୁତ୍ର ଜାତ ଶତୃଘନର ପୁଣ ।
ଶୁଣିକରି ମାତାମାନେ ଆନନ୍ଦ ହୋଇଲେ
ସାନ ଆଡୁ ବିକାଶିଲା ବୋଲିଣ ବୋଇଲେ ।
ଶ୍ରୀରାମ ଫେରିଆସି ସଭାରେ ପରବେଶ
ସଭା ଲୋକମାନେ ଶୁଣି ମନରେ ହରଷ ।
ସୁମନ୍ତକୁ ବୋଇଲେ ଏହାଙ୍କୁ ଦିଅ ଧନ
ଶତେ ସୁନିଆଁ ଆଣି ସୁମନ୍ତ ଦେଲେ ପୁଣ ।
ଧନ ପାଇ ପାତ୍ର ମନ୍ତ୍ରୀ ହରଷ ହୋଇଲେ
ଶ୍ରୀରାମଙ୍କ ଛାମୁରେ ଜଣାଣ ପୁଣ କଲେ ।
ଯେଉଁ ପ୍ରାୟେ ସୁନ୍ଦର ହେବ ରାମାୟଣ
ସେ ପୁରକୁ ବିଜୟେ କରିବ ତୁମ୍ଭେ ପୁଣ ।
ଏତେକହି ପାତ୍ର ମନ୍ତ୍ରୀ ବେଗେ ଚଳିଗଲେ
ବିଷ୍ଣୁ ପୁରେ ଭରତଠାରେ ପ୍ରବେଶ ହୋଇଲେ ।
ସଭା କରି ବସିଛନ୍ତି କୈକେୟୀର ସୁତ
ପାତ୍ର ମନ୍ତ୍ରୀ ଆଗରେ ହେଲେ ଉପଗତ ।
କରଯୋଡ଼ି ଜଣାଇଲେ ଭରତ ଛାମୁରେଣ
ଶତୃଘନଙ୍କର ଦୁଇପୁତ୍ର ଜନ୍ମନେଲେ ପୁଣ ।
ଶୁଣିଣ ଭରତବୀର ମନ୍ତ୍ରୀକି କହିଦେଲେ
ସହସ୍ରେ ସୁବର୍ଣ୍ଣ ଆଣି ଦିଅରେ ବୋଇଲେ ।
ଶୁଣିଣ ମନ୍ତ୍ରୀ ଆଣି ସହସ୍ରେ ସୁନିଆଁ ଦେଲେ
ପାତ୍ର ମନ୍ତ୍ରୀ ମେଲାଣି ହୋଇଣ ଚଳିଗଲେ ।
ସଭାରୁ ଉଠି ଭରତ ଭିତର ପୁର ଗଲେ
ମାଳିନୀଙ୍କ ପାଶରେ ପ୍ରବେଶ ହୋଇଲେ ।
ବୋଇଲେ ଶୁଭ ବାରତା ମିଳିଲେ ଆଜତ
ଶତୃଘନର ଜନମ ହେଲେ ଦୁଇପୁତ୍ର ।
ଶୁଣିକରି ମାଳିନୀ ମନରେ ତୋଷ ହେଲେ
ପରିବାରୀମାନଙ୍କୁ ଧନ ବିଳୋହିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରଥକେ ଚଢ଼ି ଭରତ ଚଳିଲେ ତଡ଼ତି ।
ଭରଥ ପୁରରେ ଯାଇଁ ହେଲେ ପରବେଶ
ରଥରୁ ଓହ୍ଲାଇ ଗଲେ ଜନନୀଙ୍କ ପାଶ ।
ଜନନୀମାନଙ୍କୁ ଯାଇଁ ନମସ୍କାର କଲେ
ବୋଇଲେ ଶୁଭକଥା ଶୁଣ ତୁମ୍ଭେ ଭଲେ ।
ଶତୃଘନର ଦୁଇପୁତ୍ର ହେଲେ ଯେ ଜନମ
କୈକେୟୀ ବୋଇଲେ ଉତ୍ତମ ହେଲା ପୁଣ ।
ଦୁଇ ରାଜ୍ୟେ ଦୁଇଭାଇ ହୋଇବେ ରାଜନ
ଏଥୁ ଅନନ୍ତରେ ଗୋ ଭଗବତୀ ଶୁଣ ।
ଭରତ ଫେରିଆସି ରଥରେ ବସି ପୁଣ
ବିଷ୍ଣୁପୁର ସଭାରେ ମିଳିଲେ ବହନ ।
ସେଠାରୁ ପାତ୍ର ମନ୍ତ୍ରୀ ବେଗେ ଚଳିଗଲେ
ଦକ୍ଷିଣ ଦିଗେ କାଞ୍ଚି ନଗ୍ରରେ ମିଳିଲେ ।
ଲକ୍ଷ୍ମଣଙ୍କ ସଭାଠାରେ ହେଲେ ପରବେଶ
ଦେଖିଲେ ବସିଛନ୍ତି ସୁମିତ୍ରାର ଶିଷ୍ୟ ।
ମାନ୍ୟ ଧର୍ମ କରିଣ ଆଗରେ ଉଭା ହେଲେ
କରଯୋଡ଼ି ଲକ୍ଷ୍ମଣ ଛାମୁରେ ଜଣାଇଲେ ।
ବୋଇଲେ ଆମ୍ଭେ ଯେ ଅଇଲୁଁ ହସ୍ତିନାରୁ
ସାନଭାଇର ଶୁଭକଥା ଶୁଣ ହନ୍ତକାରୁ ।
ଦୁଇଗୋଟି କୁମର ଯେ ଜନମ ତାଙ୍କର
ଶୁଣିକରି ଲକ୍ଷ୍ମଣ ହରଷ ମନର ।
ନାମକରଣ କରିବାକୁ ବେଗେ ଯିବ ଚଳି
ମାତାଗଣ ସହିତେ ସର୍ବେ ହେବେମେଳି ।
ଶୁଣିଣ ସଉମିତ୍ରୀ ଆନନ୍ଦ ହୋଇଲେ
ସହସ୍ରେ ସୁନିଆଁ ଆଣି ବଧାଇ ପୁଣ ଦେଲେ ।
ଘେନିଣ ପାତ୍ରମନ୍ତ୍ରୀ ମେଲାଣି ମାଗିଗଲେ
ଶତୃଘନ ରାଜ୍ୟରେ ପ୍ରବେଶ ହୋଇଲେ ।
ପ୍ରଜାଗଣ ଶୁଣିଣ ହରଷ ମନର
ଧୋବାତୁଠ ହାଟ ବାଟ କଲେ ହୁରି ଯୁର ।
ପୂର ପଦାର୍ଥମାନ ଲେଖି କଲେ ଜାଣ
ଅନ୍ତଃପୁରେ ପ୍ରବେଶ ହୋଇଲେ ଲକ୍ଷ୍ମଣ ।
ଯାଇଣ ଉର୍ମୀଳାଙ୍କୁ ବଚନ ବୋଇଲେ
ଶତୃଘନର ଦୁଇ ପୁତ୍ର ଜନମ ହୋଇଲେ ।
ଶୁଣିଣ ଉର୍ମୀଳା ରାଣୀ ହରଷ ହୋଇଲେ
ନିଜ ଗଳାମାଳା କାଢ଼ି ସ୍ୱାମୀଙ୍କ ଗଳାରେ ।
ତାଳଧ୍ୱଜ ରଥରେ ଲକ୍ଷ୍ମଣ ବିଜେକଲେ
ଗଜୀନ୍ଦ୍ର ନବରରେ ଯାଇଣ ମିଳିଲେ ।
ମାତାଙ୍କର ପୁରରେ ହେଲେ ପରବେଶ
ସକଳ ମାତାଙ୍କୁ ଦେଖି ଓଳଗି ବିଶେଷ ।
ସୁମିତ୍ରା ବୋଇଲେ ଶୁଣରେ ସଉମିତ୍ରି
ବଧୂର ମାଳାଗୋଟି ହୃଦରେ ଲମ୍ବିଅଛି ।
ଜନନୀର ବଚନରେ କହିଲେ ଲକ୍ଷ୍ମଣ
ତୋର ବଧୂ ମୋତେ ବଧାଇ ଦେଲେପୁଣ ।

ତୋର ସାନ ପୁତ୍ରର ହେଲେ ଦୁଇପୁତ୍ର
ଏ ବାରତା କହନ୍ତେ ମୋତେ ବଧାଇ ପ୍ରାପତ ।
ଶୁଣିଣ ମାତାମାନେ ହରଷ ହୋଇଲେ
ଦୁଇ ନଗ୍ର ରକ୍ଷା ହେଲା ବୋଲିଣ ଭାବିଲେ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ଲକ୍ଷ୍ମଣ ଫେରିଲେ ନିଜ ନବରେ ମିଳନ୍ତି ।
ଏଥୁଅନ୍ତେ ଶତ୍ରୁଘନ ରଥରେ ବିଜେକଲେ
ମାତାମାନଙ୍କ ରାଜ୍ୟରେ ପରବେଶ ହେଲେ ।
ମଧୁବନ ଦେଶରେ ପ୍ରବେଶ ହେଲେ ଯାଇଁ
ମାତାମାନଙ୍କ ନବରେ ମଳିଲେକ ତହିଁ ।
ନମସ୍କାର କରିଣ ଆଗରେ ହେଲେ ଉଭା
ବୋଇଲେ ଶୁଭକଥା ହେଲା ମୋର ମାତା ।
ନାତି ଦୁଇଗୋଟି ଜନମ ତୋର ହେଲେ
ଶୁଣିଣ ମାତାମାନେ ହରଷ ମନ କଲେ ।
ଦୁଇ ପୁରେ ଦୁଇପୁତ୍ର ରାଜନ ହୋଇବେ
ଦଶରଥ ରାଜାଙ୍କର ପୂର୍ବର ତପ ଏବେ ।
ଜନନୀମାନଙ୍କୁ କହି ଶତ୍ରୁଘନ ଗଲା
ଅଯୋଧ୍ୟା କଟକରେ ପ୍ରବେଶ ହୋଇଲା ।
ଶ୍ରୀରାମ ଜାନକୀର ଖେଳନ୍ତେ ପଶାଖେଳ
ସେଠାରେ ପ୍ରବେଶହେଲେ ସୁମିତ୍ରାଙ୍କ ବାଳ ।
ଦୁଇଜଣଙ୍କ ଚରଣେ ଶୋଇଲେ ପାୟେ ପଡ଼ି
ଜାନକୀ ଉଠିଣ ଧଇଲେକ ତୋଳି ।
ଶ୍ରୀରାମ ବୋଇଲେ ଅଇଲୁ କିସ ପାଇଁ
ବାଳକ ସ୍ନେହ ଛାଡ଼ି କିମ୍ପା ଅଇଲୁ ତୁହି ।
ଶତ୍ରୁଘନ ବୋଲେ ଦେବ ଶୁଣ ମୋ ବଚନ
ପୁତ୍ରଙ୍କୁ କୋଳେ ଧରି ନାମ ଦିଅ ଭଲ ।
ଶୁଣିଣ ରାମ ଜାନକୀ ମନରେ ତୋଷଭର
ଆମ୍ଭେ ଯିବୁଁ ତୁହି ଯେ ବହନ ହୋଇଚଳ ।
ଶୁଣିଣ ଶତ୍ରୁଘନ ବେଗେ ଚଳିଗଲା
ହସ୍ତିନା କଟକରେ ପ୍ରବେଶ ହୋଇଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ଚରଭେଦେ ସକଳ ବନ୍ଧୁଙ୍କୁ ଚରପଧାରୀ ।
ସୁମନ୍ତ୍ରଙ୍କୁ ଡକାଇ ବୋଲେ ରାମରାହୁ
କିଷ୍କିନ୍ଧ୍ୟା କଟକକୁ ଚଳ ତୁ ବେଗେ ବାବୁ ।
ସୁଗ୍ରୀବକୁ କହିବୁ ମୋର ଶୁଭ କଥା
ଅନୁକ୍ଷଣେ ଶ୍ରୀରାମ ମନରେ ତୁମ୍ଭ ଚିନ୍ତା ।

ଚମ୍ପାବତୀ ଦେଶରେ ହେବ ପରବେଶ
ବୋଲିବ ହସ୍ତିନାକୁ ଯାଅ ହେ ତୁରିତ ।
ସିଂହୀକା ପୁରରେ ଶବରକୁ କହି ଆସ
ଶୁଣି କରି ସୁମନ୍ତ ଚଳିଲା ହରଷ ।
ସିଂହୀକା ପୁରରେ ସୁମନ୍ତ୍ର ମିଳିଲେ
ଶବରକୁ ଡାକିଣ ବଚନ ବୋଇଲେ ।
ବେଗେ ଚଳିଯିବ ହେ ହସ୍ତିନା ଭୁବନ
ଶତ୍ରୁଘନର କୁମର ହୋଇଛନ୍ତି ପୁଣ ।
ଶତ୍ରୁଘନର କୁମର ହୋଇଛନ୍ତି ବେନିଗୋଟି
ଉତ୍ସବ ଯାତ୍ରା ସେଥି କରିବେ ରଘୁପତି ।
ଶବର ଶୁଣିକରି ଯିବି ମୁଁ ବୋଇଲା
ସହସ୍ରେକ ସୁନିଆଁ ବଧାଇ ଆଣିଦେଲା ।
ସୁମନ୍ତ୍ର ସଙ୍ଗେ ଘେନିଣ ବେଗେ ଚଳିଗଲେ
ଚମ୍ପାବତୀ ନଗ୍ରରେ ପରବେଶ ହେଲେ ।
ଲୋମପାଦ ଆଗରେ କହେ ଯାଇଁ କରି
ଶତ୍ରୁଘନର ଦୁଇପୁତ୍ର ରାମଙ୍କୁ ଶୁଭକାରୀ ।
ବେଗେ ଚଳ ତୁମ୍ଭେ ହସ୍ତିନା ନଗର
ଶୁଣିଣ ଲୋମପାଦ ହରଷ ମନର ।
ସହସ୍ରେ ସୁବର୍ଣ୍ଣ ମନ୍ତ୍ରୀକି ଆଣି ଦେଲା
ମେଲାଣି ପାଇ ମନ୍ତ୍ରୀ ସେଠାରୁ ଚଳିଗଲା ।
ଖୀଖୀନା ରାମେଶ୍ୱରରେ ହେଲେ ପରବେଶ
ଅଙ୍ଗଦକୁ ଦେଖିଲେ ଭିତର ଉଆସ ।
ଶ୍ରୀରାମ ଶୁଭବାର୍ତ୍ତା ତାହାକୁ କହିଲେ
ଶୁଣିକରି ଅଙ୍ଗଦ ଶତେକ ହାରଦେଲେ ।
ସୁମନ୍ତ୍ର ବୋଇଲେ ଚଳ ହସ୍ତିନା ନବର
ସେ ନଗ୍ରରେ ଚରି ଭାଇଙ୍କି ଦେଖାକର ।
ସେଠାରୁ ସୁମନ୍ତ୍ର କିଷ୍କିନ୍ଧ୍ୟାରେ ମିଳି
ତାର ସଙ୍ଗେ ସୁଗ୍ରୀବ ଖେଳ ରସ କରି ।
ସେଠାରୁ ସୁମନ୍ତ୍ର ଯାଇଁ ହେଲେ ପରବେଶ
ଶିରେ କର ଦେଇ ନମଇଁ ତାର ପାଶ ।
ସୁଗ୍ରୀବର ବୋଇଲେ କି କାର୍ଯ୍ୟେ ଆଗମନ
ସୁମନ୍ତ୍ର ବୋଇଲେ ଶତ୍ରୁଘନର ପୁତ୍ରଜନ୍ମ ।
ରାମ ଭେଦିଦେଲେ ମିତଙ୍କୁ ମୋର ଆଣ
ପୁତ୍ରଙ୍କୁ ନାମକରଣ ଦେବାର ବିଧାନ ।
ଶୁଣିଣ ସୁଗ୍ରୀବର ଆନନ୍ଦ ହୋଇଲା
ରତ୍ନହାର କଢ଼ି ମନ୍ତ୍ରୀର ଗଳେ ଲମ୍ବାଇଲା ।

ଯୂଥପତି ସେନାପତି ଡକାଇଣ ବେଗେ
ବୋଲେ ମନ୍ତ୍ରୀସଙ୍ଗେ ଯାଅରେ ତୁମ୍ଭେଆଗେ ।
ଶୁଣିଣ ସୁମନ୍ତ ରଥପରେ ବସିଲେ
ଅଯୋଧ୍ୟା ନଗ୍ରରେ ପ୍ରବେଶ ଯାଇଁ ହେଲେ ।
ଶ୍ରୀରାମଙ୍କୁ ଯାଇଣ କଲେ ଦରଶନ
ମାତଳିକି ଚାହିଁ ବୋଇଲେ ରାମରାଣ ।
ରଥ କର ସଜ ଯିବା ହସ୍ତିନାକୁ
ଶୁଣି ମାତଳି ସଜ କଲେ ସେ ଯାନକୁ ।
ପାତ୍ର ମନ୍ତ୍ରୀଙ୍କି ଡାକିଲେ ରାମରାଣ
ବଶିଷ୍ଠ ବାମଦେବ କଶ୍ୟପ ସହିତେଣ ।
ସୁମନ୍ତକୁ ବସାଇ କହିଲେ ଚାପଧାରୀ
ହସ୍ତିନା କଟକ ମୁଁ ଯାଉଛି ବିଜେକରି ।
ନଗ୍ରର ଭିତରେ ମୋର କେହି ନ ପଶିବେ
କଟକ ରକ୍ଷା କରିବ ପୂର୍ବରୁ ସମ୍ଭର୍ବେ ।
ଏତେ ବୋଲି ଭିତର ପୁରକୁ ବିଜେକଲେ
ମାତାଗଣମାନଙ୍କୁ ଯାଇଁ ସେ କହିଲେ ।
ବୋଇଲେ ସଜ ବେଗେ ହୁଅ ମୋ ଜନନୀ
ହସ୍ତିନା ନଗରକୁ ଯିବା ଆମ୍ଭେ ପୁଣି ।
ପାଞ୍ଚଜଣ ଲେଖାଏଁ ଧରି ମାୟେ ଯିବେ
ଆଉ ସର୍ବେ ନଗର ଭିତରେ ରହିବେ ।
ଶୁଣିଣ ରାମମାତା ହରଷ ମନ ହେଲେ
ଜଣକେ ପାଞ୍ଚ ଧାଇ ଘେନି ଚଳିଗଲେ ।
ବାଅାଷଠୀ ଜନନୀ ରଥରେ ଯାଇଁ ବସି
ଆଉ ଛଡ଼ ଜନନୀ ତିନି ନଗ୍ରରୁ ମିଶି ।
ତଳ ପୀଢ଼ରେ ସେନାପତି ଯୂଥପତି ବସି
ଏଥୁ ଅନନ୍ତରେ ଶୁଣ ଗୋ ଶୁଭ୍ରକେଶୀ ।
ଜାନକୀର ଛାମୁରେ ରାମ ପରବେଶ
ବୋଇଲେ ଚାଲଯିବା ହସ୍ତିନା ନାମେ ଦେଶ ।
ପୁତ୍ରଙ୍କୁ ନାମ ଦେବା କଟକ ଦେଖିବା
ଶୁଣିକରି ଜାନକୀ ବୋଇଲେ ଚାଲଯିବା ।
ଦାସୀଙ୍କି ଡକାଇଣ ହେଲେ ବେଶପୁଣ
ଜନକ ନନ୍ଦିନୀ ବେଶ କମଳା ସାଦୃଶ୍ୟେଣ ।
ମାୟାସତୀ ବେଶହେଲେ ଜାନକୀ ସାଦୃଶ୍ୟରେ
ମନୁମାୟା ବେଶକୁ ତୁଳନା ନାହିଁ ବାରେ ।
ଆଉ ଦଶନାରୀ ସଜହେଲେ ସଙ୍ଗେ
ଆଉ ଦାସୀମାନେ ନବରେ ରହି ସର୍ବେ ।
ଦାସୀଙ୍କି ଘେନିଣ ସୀତା ଚଳିଗଲେ ଧୀର
ଶ୍ରୀରାମ ବେଶ ହୋଇ ଚଳନ୍ତି ଆଗର ।
ରଥର ଉପରେ ମଧ୍ୟ ପୀଢ଼ରେ ବସି
ସିଂହାସନ ଉପରେ ବସିଲେକ ହସି ।
ସୀତାଙ୍କୁ କୋଳେ ଧରି ରାମ ବିଜେକଲେ
ସ୍ବର୍ଗରୁ ଦେବଗଣ ପୁଷ୍ପ ବୃଷ୍ଟି କଲେ ।
ନଟବର ବେଶ ସେଦିନ ରାମରାଣ
ସ୍ବର୍ଗରେ ଦେବେ ଦେଖି ମୋହହେଲେ ଜାଣ ।
ସ୍ବର୍ଗର ଅପସରୀ ଆଗରେ ନୃତ୍ୟକରି
ଖଦୀ ଚାମର ଆଲଟ ଲକ୍ଷେ ନାରୀ ଢାଳି ।
ହୁଳହୁଳି ରାମତାଳି ପଡ଼ିଲାକ ଜାଣ
ଉତ୍ସବ ଯାତ୍ରା କରି ଶ୍ରୀରାମ ପୁରାଣ ।
ରାଜହଂସ ଶ୍ୱେତପାରା ଭଦଳିଆ ପକ୍ଷୀ
ଶୁଭକାରୀମାନେ ଆଗରେ ଉଡ଼ନ୍ତି ।
ମାତଳି ବାହେ ଯାନ ଚଳେ ଘନ ଘନ
ବଡ଼ଦାଣ୍ଡ ବାଟେ ଯାନ ଚଳିଲା ବହନ ।
ଶ୍ରୀରାମ ସୀତାଙ୍କୁ କୋଳେ ଘେନି ବସି
ଯାନ ଚଳିଗଲା ବୃନ୍ଦାବନରେ ପଶି ।
ଦେଖିଲେ ବୃନ୍ଦାବନ ଅତି ଶୋଭା ପୁଣ
ସଂସାର ଭିତରେ ଅଟେ ସାର ଜାଣ ।
ସାରୀ ଶୁଆ କୋକିଳ ରାବନ୍ତି ଘନ ଘନ
ସିଂହର କୋଳେ ଶୃଗାଳ ଶୋଇଅଛି ଜାଣ ।
ଶାର୍ଦ୍ଦୂଳ କୋଳେ ଶଶା ଶୋଇଅଛି ତହିଁ
ପେଚା, କାକ ଏକା ଡାଳକେ ବସି ରହି ।
ମଣ୍ଡୁକର ସଙ୍ଗରେ ଖେଳେ ସର୍ପ ପୁଣ
ସମସ୍ତେ ନବଯୁବା ତରୁଣ ତନୁ ବର୍ଣ୍ଣ ।
ଯମୁନା ନଦୀ ଯେ ବହଇ ଖରତର
କାଳିନ୍ଦୀ ହ୍ରଦେ ଅଛି କାଳିୟ ନାଗବର ।
ଯମୁନା ଘାଟରେ ବଂଶୀବଟ ଶୋଭା
ଗୋପ ପାଟଣାରେ ଗୋପାଳଙ୍କର ପ୍ରଭା ।
ଗୋପାଳୁଣୀମାନେ ବଡ଼ ଶୋଭାକରେ
ଦେଖିକରି ସୀତା ପଚାରି ଶ୍ରୀରାମରେ ।
ଏପୁର ଗୋଟିତ ଅତି ଶୋଭା ପୁଣ
ସ୍ୱର୍ଗପୁରକୁ ବାଟ ଫିଟିଛି ଏଥି ଜାଣ ।
ଶ୍ରୀରାମ ବୋଲନ୍ତି ଏ ଅଟେ ବୃନ୍ଦାବନ
ଏ ବନେ ହିଂସା ନାହିଁ ଶୁଣ ତୁମ୍ଭେ ପୁଣ ।

ରଙ୍ଗା ଅବତାର ହେବେ ବାସୁଦେବ
ପରସ୍ତିରୀ ସଙ୍ଗେ କରିବେ ପ୍ରୀତିଭାବ ।
ଗୋପାଳୁଣୀ ଅଂଶେ ମାୟାସୀତା ଜାତହେବ
ରାଧାନାମ ତାର ଏଠାରେ ବୋଲାଇବ ।
ଷୋଳସସ୍ର ଗୋପାଳୁଣୀ ହେବେ ଏଥିଜାତ
ତୋର ଅଂଶ ଘେନି ହେବେ ସେ ସମ୍ଭୁତ ।
ଏଦିଗ ଭୂମିମୟେ ସେହିଟି ଅଟଇ
ଅସୁରଙ୍କୁ ମନା ଯେ ଏପୁର ଅଛଇଁ ।
ଜାନକୀ ବୋଇଲେ ଚଳ ହେ ଦେଖିବା
ଶ୍ରୀରାମ ବୋଇଲେ ଏଜନ୍ମେ ନୋହେ ଶୋଭା ।
ଏମନ୍ତେ କଥା ହୋନ୍ତେ ଯାନରେ ଚଳିଗଲେ
ମଧୁପୁରେ ପଶିଣ କଟକ ଦେଖିଲେ ।
ଦାଣ୍ଡ ନିରିମଳ ଯେ ଶଉଚ ଦିଶେ ପୁର
ସବୁଦ୍ୱାରେ ଉଛବ ଦେଖିଲେ ରଘୁବୀର ।
ହୁଳହୁଳି ରାମତାଳି ପଡ଼େ ନରିନ୍ତର
ସେ ଦେଶ ନରନାରୀ ଦେଖନ୍ତି ରଘୁବୀର ।
ବୋଇଲେ ଏତେକାଳେ ଦଶା ଲେଉଟିଲା
ବ୍ରାହ୍ମଣ ଠାକୁରତ ଏପୁରେ ବିଜେକଲା ।
କେ ବୋଲନ୍ତି କୋଳେ ବସିଛନ୍ତି ଠାକୁରାଣୀ
କେ ବୋଲେ ନାରାୟଣ ମହାଲକ୍ଷ୍ମୀ ଜାଣି ।
କେ ବୋଲେ ଆମ୍ଭେମାନେ ଯିବା ସ୍ୱର୍ଗପୁର
ଏମନ୍ତ ବିଚ୍ଛର କରନ୍ତି ନାରୀନର ।
ମଥୁରାଦାଣ୍ଡେ ରଥ ଧୀରେ ଧୀରେ ଯାଏ
ଯୁବା ସ୍ତିରୀମାନେ ହରଷ ବନ୍ଦାଏ ।
ଲଜ୍ୟାଭାବ ସବୁ ତେଜିଲେ କାମିନୀ
ହୁଳହୁଳି ଦେଇଣ ଅର୍ଘ୍ୟ ଦ୍ୟନ୍ତି ପୁଣି ।
ଚଉରାଶୀ କୋଟି ମଧୁପୁରରେ ଘର
ଲାଗିଲାକ ଚହଳ ଧାଇଁଲେ ସକଳ ।
ପଡ଼ିଲାକ ଭିଡ଼ ଯେ ହେଲ ଯନ୍ତାଯନ୍ତି
ଅଗୁରୁ ଚନ୍ଦନ କସ୍ତୁରୀ ଫିଙ୍ଗନ୍ତି ।
ଜାନକୀ ରାମ ଅଙ୍ଗେ ପଡ଼ଇ ପିଚିକା
ଅଙ୍ଗକୁ ଶୀତଳ ଲାଗେ ରାମର ବନୀତା ।
ବୋଲେ ଗ୍ରୀଷମ କାଳେ କରାଇଲେ ଶାନ୍ତି
ତୁମ୍ଭଠାରେ ନାରାୟଣ ପ୍ରସନ୍ନ ହୁଅନ୍ତି ।
ଧୀରେ ଧୀରେ ରଥ ମାତଳି ବାହିନେଲା
ମଧୁପୁର ଗଡ଼ଦ୍ୱାରେ ନେଇଣ ରଖିଲା ।

ଭିତରେ ଖବର ଯେ ପାଇଲେ ମାତାଗଣ
ଅର୍ଘ୍ୟସ୍ଥାଳୀ ଧରି ଦ୍ୱାରେ ମିଳିଲେ ତକ୍ଷଣ ।
ପୁତ୍ରବଧୂଙ୍କ ଶିରେ ଅର୍ଘ୍ୟ ନେଇ ଦେଲେ
ମଙ୍ଗଳ ବିଧାନରେ ବନ୍ଦାପନା କଲେ ।
ଶ୍ରୀରାମ ସୀତାଙ୍କୁ ହସ୍ତ ଧରି ଘେନି ଗଲେ
ଭିତର ପୁରେ ନେଇ ବିଜେ କରାଇଲେ ।
ଶ୍ରୀରାମ ଓଳଗିଲେ ମାତାଙ୍କର ଚରଣ
ଜାନକୀ ମାନ୍ୟଧର୍ମ ଶାଶୁଙ୍କ ପାଦେପୁଣ ।
ବଇଦୁର୍ଯ୍ୟ ମଣ୍ଡପରେ ନେଇଣ ବସାଇଲେ
ସ୍ଫଟିକ ସିଂହାସନରେ ରାମ ବିଜେ କଲେ ।
ହୀରାର କାନ୍ଥକୁ ଯେ ଆଉଜି ରାମ ବସି
ବିଡ଼ିଆ ଲାଗି ଦାସୀମାନେ ଯେ କରନ୍ତି ।
ଜାନକୀଙ୍କୁ ନେଇଣ ନିଜଘରେ ଥୋଇ
ଚନ୍ଦନ କର୍ପୂର ଅଙ୍ଗରେ ବୋଳାଇ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
କଳାବତୀ ସପତଣୀଙ୍କ ହସ୍ତ ଧରି ।
ମାତାମାନେ ସର୍ବେ ଅଇଲେକ ପୁଣ
ଶୀତଳ ପୁରମାନଙ୍କରେ ବସିଲେ ଯାଇଣ ।
ଯେତେକ ଜନନୀ ମଧୁପୁରରେ ଥିଲେ
କଉଶଲ୍ୟା ଚରଣେ ସମସ୍ତେ ଓଳଗିଲେ ।
କୌଶଲ୍ୟା ବୋଇଲେ ନ ଗଲ ହସ୍ତିନା
ନାତିଙ୍କି ମୋର କେହୁ କରଇ ପାଳଣା ।
କଳାବତୀ ବୋଇଲେ ସାନପୁଅ ତୋର
ବୋଇଲେ ଶ୍ରୀରାମ ଆସିବେ ବାଟର ।
ମାତାଗଣ ଆସିବେ ତାଙ୍କର ସଙ୍ଗତରେ
ସଙ୍ଗ ହୋଇ ସର୍ବେ ଯିବ ହସ୍ତିନାରେ ।
ଏତେକହି କଳାବତୀ ବେଗେ ଚଳିଗଲା
ଛଡ଼ରସେ ଭୋଜନ ଆଣିଣ ତାଙ୍କୁ ଦେଲା ।
ସପତଣୀମାନେ ଭୁଞ୍ଜିଣ ତୋଷ ହେଲେ
ଆଞ୍ଚୋବନ ସାରିଣ ବିଡ଼ିଆ ଲାଗି ହେଲେ ।
କଳାବତୀ ମିଳିଲେ ଶ୍ରୀରାମଙ୍କ ପାଶ
ମର୍ଦ୍ଦନ ମାଜଣା ରାମଙ୍କୁ କରାଏତ ।
ଛଡ଼ରସରେ ଭୋଜନ କରାଏ ଜନନୀ
ଆଞ୍ଚୋବନ କରାଏ ବିଡ଼ିଆ ଦିଏ ପୁଣି ।
ଭୋଜନ ସାରିଣ ମୁଖ ପଖାଳିଲେ
ବିଡ଼ିଆ ଭୁଞ୍ଜିଣ ପଲଙ୍କେ ନିଦ୍ରାଗଲେ ।

ଏଥୁ ଅନନ୍ତରେ ମାତାଗଣେ ପୁଣ
ଜାନକୀଙ୍କି ମର୍ଦ୍ଦନ ମାଜଣା କରିଣ ।
ସୁକ୍ଷୀନ ବସନ ମାନ ଆଣି ପିନ୍ଧାଇଲେ
ଛଡ଼ ରସରେ ମଣୋହି ଆଣି ପରଶିଲେ ।
ଭୋଜନ ସାରିଣ ସୀତା ଆଞ୍ଚୋବନ କଲେ
ବିଡ଼ିଆ ଲାଗି ହୋଇ ସୁଖେ ନିଦ୍ରାଗଲେ ।
ମାତାମାନେ ଆଳସ୍ୟ ଭାଙ୍ଗି ଉଠି ବସି
ବୁଲି ଗଡ଼ ଭିତରେ ଯାଇଣ ଦେଖନ୍ତି ।
ଦେଖିଣ ହରଷ ହେଲେ ମାତାଗଣ
ରାମ ଜାନକୀ ଯାଇ ଦେଖିଲେ ସର୍ବସ୍ଥାନ ।
ନବର ଘର ଦେଖିଣ ପ୍ରଶଂସା କରିଲେ
ବାହାରେ ଶ୍ରୀରାମ ଯାଇଣ ବିଜେକଲେ ।
ପାତ୍ର, ମନ୍ତ୍ରୀ ଆସିଣ ଦରଶନ କଲେ
ପ୍ରଜାଗଣେ ସମସ୍ତେ ଦର୍ଶନେ ଉଭାହେଲେ ।
ପାତ୍ର ମନ୍ତ୍ରୀଙ୍କି ବୋଇଲେ ସମ୍ଭାଳ ଏ ପୁର
ଆମ୍ଭ ସଙ୍ଗେ ମାତାଯିବେ ହସ୍ତୀନା ନଗର ।
ରଜନୀ ବଞ୍ଚିଣ ପ୍ରଭାତୁ ଚଳିଗଲେ
ସକଳ ମାତାଗଣଙ୍କୁ ସଙ୍ଗତରେ ନେଲେ ।
ଦାସୀମାନେ ଜଗିଣ ରହିଲେ ନବର
ଗଗନ ମାର୍ଗରେ ରଥ ଚଳିଲାକ ଖର ।
ପାଞ୍ଚଘଡ଼ି ସମୟରେ ବାରୁଣାବନ୍ତେ ମିଳି
ସେପୁର ଦେଖିଣ ଜଇନ୍ତାପୁର ଚଳି ।
ସେପୁର ଦେଖିଣ ଇନ୍ଦ୍ର ପ୍ରଶସ୍ତକୁ ଗଲେ
ଯମପ୍ରସ୍ଥ ଦେଖିଣ ଭାରତଭୂମି ମିଳେ ।
ଭାରତ ଭୂମିରେ ପରେ ଜାନକୀ
ଏଠାରେ ରଙ୍ଗବର୍ଣ୍ଣ କିମ୍ପା ଦେବ ଦିଶି ।
ଶ୍ରୀରାମ ବୋଇଲେ ଏ ଯେ ଭାରତଭୂମି ସାର
ଅଷ୍ଟମ ଅବତାରେ କୁରୁପାଣ୍ଡବଙ୍କ ସମର ।
ସେଠାରୁ ଯାଇଁ ହସ୍ତୀନା ସିଂହଦ୍ୱାରେ ମିଳି
ଦେଖିଲେ ସେ ପୁରକୁ ପୁରନାହିଁ ବଳି ।
ଚରଯାଇଁ ଜଣାଇଲା ଭିତର ନବରେ
ରାମ ସୀତାଙ୍କୁ ଘେନି ମାତାଗଣ ସକଳେ ।
ସିଂହଦ୍ୱାରେ ପ୍ରବେଶ ହୋଇଲେ ଆସିକରି
ଶୁଣିଣ ଶତ୍ରୁଘନ ହରଷେ ବାହାରି ।
ମାତାଗଣ ସମସ୍ତେ ସଙ୍ଗରେ ଆସିଲେ
ଶ୍ରୀରାମ ସୀତା ସହିତେ ଅନ୍ତଃପୁରକୁ ନେଲେ ।
ମାତାଗଣଙ୍କୁ ନେଇ ଭିତର ପୁରେ ରଖି
ମାତାମାନଙ୍କୁ ଶତୃଘନ ଓଳଗଇ ଆସି ।
ଜାନକୀର ଚରଣ କଲେ ମାନ୍ୟଧର୍ମ
ହରଷ ହୋଇଲେ ତହିଁ ଜନକଝିଅ ପୁଣ ।
ଶ୍ରୀରାମ ଚରଣେ ନମସ୍କାର କଲେ
ଦେଖିକରି ଶ୍ରୀରାମ ହରଷ ହୋଇଲେ ।
ଜାନକୀଙ୍କି ଦାସୀମାନେ କରାଇଲେ ସ୍ନାନ
ବେଶ ଭୂଷଣ ଯେ କରାଏ ଦାସୀଗଣ ।
ମଳୟ ଚନ୍ଦନପୁରେ ନେଇ ବସାଇଲେ
ମାତାଗଣମାନେ ଯାଇ ସ୍ନାହାନ ସର୍ବେ କଲେ ।
ଯୁଥପତି ସେନାପତି ନିତ୍ୟକର୍ମ ସାରି
ଶ୍ରୀରାମ ସ୍ନାନ ମାଜଣା ନିତ୍ୟକର୍ମ କରି ।
ଜାନକୀ ପାକକଲେ ସମସ୍ତେ ଭୁଞ୍ଜିଲେ
ସନ୍ତୋଷ ମନରେ ଭୋଜନ ସର୍ବେ କଲେ ।
ପଞ୍ଚକଟକରେ ଉତ୍ସବ କହିଲେ ନସରି
ପ୍ରତିଦ୍ୱାରେ ପୂର୍ଣ୍ଣକୁମ୍ଭ ଚିତ୍ରପଟ କରି ।
ଗଡ଼ର ଚଉପାଶେ ସେ ଗଡ଼ର ଭିତର
ବାଦ୍ୟର ନିଶାନରେ କମ୍ପେ ତିନିପୁର ।
ଠାବେ ଠାବେ ନୃତ୍ୟକାରୀମାନେ ନୃତ୍ୟକରି
ନାନାରଙ୍ଗେ ଉତ୍ସବ ହେଉଛି ସେହିପୁରୀ ।
ଏହି ସମୟରେ ମିଳିଲେ ଭ୍ରଥ ଆସି
ମାତାଗଣ ମାନ ଘେନି ନବରେ ସେ ପଶି ।
ସକଳ ମାତାଙ୍କୁ ନମସ୍କାର କଲେ ଯାଇ
ମାତାଗଣେ ହରଷେ ଆଶିଷ୍ୟ ବାଞ୍ଛଇ ।
ଜାନକୀର ଚରଣେ କଲେ ମାନ୍ୟଧର୍ମ
ହରଷ ହୋଇଲେ ଜନକ ଝିଅ ପୁଣ ।
ଭ୍ରଥ ରାମଙ୍କ ଚରଣେ କଲେ ନମସ୍କାର
ଦେଖିକରି ସନ୍ତୋଷ ହେଲେ ରଘୁବୀର ।
ଜାନକୀ ବୋଲନ୍ତି ତୁମ୍ଭ ରାଣୀ କେଣେ ଛନ୍ତି
ମୋର ପାଶକୁ କିମ୍ପା ନ ଆସେ ଶୁଭ୍ରକେଶୀ ।
ଭରତ ବୋଇଲେ ତାର ଗର୍ଭ ନବମାସ
ଆସି ନ ପାରନ୍ତି ଦେହରେ ଆଳସ୍ୟ ।
ଶୁଣିକରି ଜାନକୀ ପରମ ସନ୍ତୋଷ ହେଲେ
ଆଜ କୁଳ ମୋହର ଉଜ୍ଜ୍ୱଳ ଦିଶିଲେ ।
କୈକେୟୀ କହିଲେ କଉଶଲ୍ୟାଙ୍କ ଆଗ
ମଝିଆଣୀ ବୋହୁ ତୁମ୍ଭର ଗର୍ଭଯୋଗ ।

ଶୁଣିଣ କଉଶଲ୍ୟା ହରଷ ହୋଇଲେ
ଶ୍ରୀରାମଙ୍କ ଆଗରେ ଜାନକୀ କହିଲେ ।
ମୋ ମଝିଆଣୀ ଭଗ୍ନୀ ଗର୍ଭବାସ ହେଲା
ନବମାସ ତାହାର ସେ ଆସି ନ ପାରିଲା ।
ଶୁଣିଣ ଶ୍ରୀରାମ ମନରେ ହେଲେ ତୋଷ
ଜାନକୀ କୋଳେ ଧରି ହୋଇଲେ ହରଷ ।
ଏମନ୍ତ ସମୟରେ ମାତୁଳ ଗଣ ମିଳି
ଦେଖିଣ ଚରଣେ ତାକୁ ଶତ୍ରୁଘନ କରି ।
ଭଯେଣୀମାନଙ୍କୁ ସର୍ବେ ନମସ୍କାର କଲେ
ନବରରେ ସହସ୍ରେ ମଉଳା ରହିଲେ ।
ଯେ ଯାହା ଭଗ୍ନୀ ନବରେ କରନ୍ତି ଭୋଜନ
ଶତେ ପୁତ୍ର ଘେନି ମିଳେ ଲୋମପାଦ ରାଜନ ।
ସୁଗ୍ରୀବର ଅଙ୍ଗଦ ଯେ ମିଳିଲେ ତୁରିତ
ଗୁହନାମେ ଶବର ହୋଇଲା ଉପଗତ ।
ଲୋମପାଦ ରାଜାର ଶତେକ ଶଳା ଆସି
ବାହାର ନବରେ ରଖେ ସୁମୈତ୍ରାର ଶିଷି ।
ଏସନକ ସମୟରେ ମିଳେ ଋଷିଗଣ
ପ୍ରବେଶ ହୋଇଲେ ଲକ୍ଷେ ଋଷି ପୁଣ ।
ଏମନ୍ତ ସମୟରେ ମିଳିଲେ ଲକ୍ଷ୍ମଣ
ସଙ୍ଗରେ ମାତାଗଣ ଅଛନ୍ତି ସର୍ବେ ପୁଣ ।
ନବର ଭିତରେ ଯାଇଁ ପଶିଲେକ ବେଗ
ଜନନୀଙ୍କି ଓଳଗିଲେ ଦର୍ଶନରଭାବ ।
ମଉଳାମାନଙ୍କୁ ସେ ନମସ୍କାର ହେଲେ
ଜାନକୀଙ୍କର ଚରଣେ ଯାଇଁଣ ଶୋଇଲେ ।
ଜାନକୀ ବୋଇଲେ ତୁମ୍ଭେ ଶୁଣ ସଉମିତ୍ରୀ
ଉର୍ମିଳା ଭଗ୍ନୀ ମୋର କେଉଁଠାରେ ଅଛି ।
ଲକ୍ଷ୍ମଣ ବୋଇଲେ ସେ ଅଛନ୍ତି କାଞ୍ଚିରେ
କାବେରୀ ଦେଶରେ ବିଚିତ୍ର ନବରେ ।
ଜାନକୀ ବୋଲନ୍ତି ସେ କିମ୍ପା ନ ଆସିଲା
ଲକ୍ଷ୍ମଣ ବୋଇଲେ ସେ ଗର୍ଭବାସ ହେଲା ।
ଆଠ ମାସ ଗର୍ଭବାସ ହୋଇଲା ତାହାର
ତେଣୁ କରି ସଙ୍ଗରେ ନ ଆସି ମୋହର ।
ଶୁଣିକରି ଜାନକୀ ପରମ ତୋଷ ହେଲେ
ତିନିକୁଳ ମୋର ଉଜ୍ଜ୍ୱଳ ଦିଶିଲେ ।
ଲକ୍ଷ୍ମଣ ବୋଇଲେ ସବୁତ ତୁମ୍ଭର
ସୂର୍ଯ୍ୟବଂଶ ଉଦୟେ ତୁମ୍ଭ ସନ୍ତୋଷର ।

ଶୁଣିଣ ଜାନକୀ ବେଗେ ଉଠିଗଲେ
ଲକ୍ଷ୍ମଣଙ୍କୁ ସଙ୍ଗରେ ଘେନିଣ ଚଳିଲେ ।
ଶ୍ରୀରାମଙ୍କ ଆଗରେ ହେଲେ ପରବେଶ
ଦେଖିକରି ଶ୍ରୀରାମ ହୋଇଲେ ହରଷ ।
ରାମ ବୋଲନ୍ତି ଆଜ ତୁମ୍ଭର ଆନନ୍ଦ ବଡ଼
ସଉମିତ୍ରୀ ସଙ୍ଗରେ ଅଛନ୍ତି ତୋହର ।
ଜାନକୀ ବୋଇଲେ ପରମ ସୁଖ ମୋର
ଭଲଯୋଗେ ନବରୁ ଅଇଲ ଏ ପୁର ।
ଲକ୍ଷ୍ମଣର ଘରଣୀ ଗର୍ଭ ଆଠ ମାସ
ଶୁଣିଣ ଶ୍ରୀରାମ ହୋଇଲେ ହରଷ ।
ଉଠିଣ ଜାନକୀଙ୍କି କୋଳରେ ବସାଇଲେ
ବେନି ଜଣଙ୍କ ଚରଣେ ଲକ୍ଷ୍ମଣ ଓଳଗିଲେ ।
କୈକେୟୀ, କୌଶଲ୍ୟା, ସୁମିତ୍ରାଙ୍କୁ କହି
ଗୁଣ ସାଗର ବଧୂ ମୋର ଅଛି କାହିଁ ।
ପଚାରିଲେ କହଇ ସକଳ ବୃତ୍ତାନ୍ତ
ଜାନକୀ ପାଶକୁ କି ଗଲେ ଆମ୍ଭ ମାତ ।
ସୁମିତ୍ରା ବୋଇଲେ ସେ ନବରୁ ଆସି ନାହିଁ
ଆଠମାସ ତାର ଗର୍ଭ ଶୁଣ ସର୍ବେ ରହି ।
ଶୁଣିଣ ମାତାଗଣ ହରଷ ହୋଇଲେ
ଜଳକ୍ରୀଡ଼ା କରିବାକୁ ସମସ୍ତେ ଚଳିଗଲେ ।
ଏମନ୍ତ ସମୟରେ ମିଳେ ଋଷିଶୃଙ୍ଗ
ଜାନକୀ ରାମଙ୍କୁ ଦେଖିଲେ ଏକଠାବ ।
ଲକ୍ଷ୍ମଣ ଯାଇଣ ଚରଣ ଧୋଇ ଦେଲେ
ଜାନକୀ ଯାଇଣ ଚରଣେ ନମିଲେ ।
ଋଷିଶୃଙ୍ଗ ବୋଇଲେ ସୁକଲ୍ୟାଣ ହେଉ
ଦୁଇଗୋଟି କୁମର ତୋ ଗର୍ଭରୁ ଜାତହେଉ ।
ଚାରି ଭାଇଙ୍କର ଯେ ହେବେ ଅଷ୍ଟପୁତ୍ର
ଚାରି ଭାଇଙ୍କର ଚାରି ଦୋହିତା ହେବେ ଜାତ ।
ଶୁଣିକରି ଶ୍ରୀରାମ ହରଷ ହୋଇଲେ
ମୁନିଙ୍କର ଚରଣେ ନମସ୍କାର କଲେ ।
ଋଷିଶୃଙ୍ଗ ବୋଇଲେ ଶୁଣ ହେ ରଘୁନାଥ
ଦୁଇଜଣ ଅଛ ତୁମ୍ଭେ ଦେବ ମୋତେ ସତ୍ୟ ।
ଜାନକୀ ବୋଇଲେ ଅଟେ ସତ୍ୟ ବାଣୀ
କିସ ମାଗ ଋଷି କହ ମୋତେ ପୁଣି ।
ଋଷିଶୃଙ୍ଗ ବୋଇଲେ ମୋର ଚାରିଗୋଟି ପୁତ୍ର
ତୁମ୍ଭ ଚାରି ଭାଇଙ୍କର ଚାରି ନନ୍ଦିନୀ ସମ୍ଭୁତ ।

ଝରିଯାଅ ଝରି ଦୋହିତା ପୁରେ ପୁତ୍ରେଦେବ
କାଳ ଯୁଗକୁ କଥା ତୁମ୍ଭେ ରଖିଥିବ ।
ଜାନକୀ ବୋଇଲେ ମୁଁ ସତ୍ୟକଲି ପୁଣ
ଭଣଜାଙ୍କୁ ଝରି ଦୁହିତା ଦେବି ପରମାଣ ।
ଏଥୁ ଅନନ୍ତରେ ଯେ ଦିନ ତିନିଗଲା
ପୁତ୍ରଙ୍କର ଏକୋଇଶ୍ୟା ଦିନ ଯେ ହୋଇଲା
ଅନେକ ଉତ୍ସବ ଯେ ଆନନ୍ଦ ସର୍ବଜନ
ଗାର୍ଗବ ଋଷି ଯେ ପ୍ରବେଶ ହେଲେ ପୁଣ ।
ଦେଖି କରି ରାମ ନମସ୍କାର କଲେ
ଜାନକୀ ଆସିଣ ଚରଣେ ଓଳଗିଲେ ।
ଶ୍ରୀରାମ ବୋଇଲେ ତୁମ୍ଭେ ଦୁଇ ମୁନି ପୁଣ
ଶତୃଘନ ଅଂଶରେ ପୁରୋହିତ ଜାଣ ।
ପୁତ୍ରଙ୍କର ବିଧିମତ କର ଯେ ଆଜଦିନ
ଦୁଇନଗ୍ରେ ଦୁଇପୁତ୍ର ହୋଇବେ ରାଜନ ।
ଏମନ୍ତ ସମୟେ ଜନକ ବାଲମୀକ
ପ୍ରବେଶ ହୋଇଲେ ଶ୍ରୀରାମଙ୍କ ପାଖ ।
ଉଠିକରି ଶ୍ରୀରାମ ନମସ୍କାର କଲେ
ଜାନକୀ ପିତାଙ୍କର ଚରଣେ ଓଳଗିଲେ ।
ଋଷିଶୃଙ୍ଗ ବୋଲନ୍ତି ଶୁଣ ରାମନାରୀ
ମାଜଣା ସ୍ନାହାନ ସାର ହୋ ବେଗକରି ।
ନୂତନ ବେଶ ହୋଇ ନୂତନ ବସ୍ତ୍ର ପିନ୍ଧ
ସୁବର୍ଣ୍ଣ ଗରିଆ ଘେନି ଚଳ ହେ ତୁମ୍ଭେ ଆଜ ।
ପଦ୍ମ ପୁଷ୍କରିଣୀ ତଟକୁ ଚଳିବ
ପତ୍ରର ଉପରେ ଝଲି ମଧ୍ୟରେ ମିଳିବ ।
ଗରିଆର ମଧ୍ୟରୁ ନୀର ଯେ ଆଣିବ
ଦୁଇ ପୁତ୍ରଙ୍କୁ ସେଥିରେ ସ୍ନାନ କରାଇବ ।
ଦୁଇଜଣ ଧରି ବସିବ ଦୁଇ ସୁତ
ତେବେ ଦୁଇପୁତ୍ର ହେବେ ନାମ ଶ୍ରେଷ୍ଠ ।
ଜାନକୀ ବୋଇଲେ ତାଙ୍କର ମାତା ପିତା ଛନ୍ତି
ଋଷିଶୃଙ୍ଗ ବୋଲେ ତୋର ଏକନଙ୍ଗ ସେ ଅଟନ୍ତି
ଶୁଣିଣ ଜାନକୀ ମନରେ ତୋଷ ହେଲେ
ମର୍ଦ୍ଦନ ମାଜଣା ହୋଇ ସ୍ନାନ ବେଗେକଲେ ।
ଅମଳାଣ କଳାଶାଢ଼ୀ ପିନ୍ଧିଲେକ ବାଛି
ନବଗୁଞ୍ଜର ବେଶ ଯେ ହେଲେ ଶୁଭ୍ରକେଶୀ ।
ମାଜଣା ହୋଇ ପୁଣ ଝରି ଭାଇ ଗଲେ
ସୁବାସିତ ଜଳରେ ସ୍ନାନ ଯାଇଁ କଲେ ।
ନୂତନ ବସ୍ତ୍ର ପିନ୍ଧିଣ ଦେବାର୍ଚ୍ଚନ ସାରି
ରାଜବେଶ ଝରିଭାଇ ହେଲେ ଯାଇଁକରି ।
ବ୍ରାହ୍ମଣ ଋଷିଗଣ ରାଜାଗଣ ପୁଣ
ମାତାଗଣ ସେନାପତି ଯୂଥପତିଗଣ ।
ପାତ୍ର, ମନ୍ତ୍ରୀ, ସାମନ୍ତ ଦେଖଣାହାରୀମାନେ
ସମସ୍ତେ ସ୍ନାନସାରି ମିଳିଲେ ତତ୍‌କ୍ଷଣେ ।
ବୋଇଲେ ଜାନକୀ ଯେ ପୋଖରୀ ମଧ୍ୟରୁ
ସୁବର୍ଣ୍ଣ ଗରିଆରେ ନୀର ଆଣିବେ ସେଠାରୁ ।
ସମସ୍ତେ ଯାଇଣ ପୋଖରୀ ଝରିପାଶ
ଦେଖିବାକୁ ବେଢ଼ିଲେ ସମସ୍ତେ କରି ଆଶ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ରତ୍ନ ପାଦୁକା ଚଢ଼ି ଯେ ଜନକ କୁମାରୀ ।
ସୁବର୍ଣ୍ଣ ଗରିଆ କାଖରେ ଘେନିଚଳି
ପଦ୍ମ ପତ୍ର ଉପରେ ଧୀରେ ଧୀରେ ଝଲି ।
ପୁଷ୍କରିଣୀ ମଧ୍ୟରେ ମିଳିଲେକ ଯାଇଁ
କାଖରେ ଧବଳାଙ୍ଗୀ କୁମ୍ଭ ଘେନିଯାଇ ।
ସୁବାସିତ ଜଳ ସେ ଭରତିକରି ଦେଲେ
ଘେନି ଜାନକୀ କୂଳରେ ମିଳିଲେ ।
ହୁଳହୁଳି ରାମତାଳି ଅନେକ ଶବଦ
ନବରେ ପ୍ରବେଶ ଜାନକୀଙ୍କ ଶୁଭ ।
ବେନି ଗୋଟି ବାଳକ ସ୍ନାନ କରାଇଲେ
ନୂତନ ପଲ୍ୟଙ୍କରେ ନେଇଣ ଶୁଆଇଲେ ।
ଶ୍ରୀରାମଙ୍କୁ ବୋଇଲେ ବଡ଼କୁ କୋଳେଧର
ଶୁଣି କରି ଶ୍ରୀରାମ ଧଇଲେ ନେଇ କୋଳ ।
ଋଷିଗଣ ମିଳିଣ ବେଦ ଉଚ୍ଚାରିଲେ
ଶିବେ ବେଦେ ତାଙ୍କ ଅଙ୍ଗ ପବିତ୍ର କରାଇଲେ ।
ହୋମ ପଞ୍ଚାମୃତ ବିଧାନ ସବୁ କରି
ଶ୍ରୀରାମ ବୋଇଲେ ଏ ପୁତ୍ର ସମସରି ।
ଋଷି ବୋଇଲେ ନାମ କହ ଝପଧାରୀ
ଶ୍ରୀରାମ ବୋଇଲେ ନାମ ଶୁଣ ହେ ତପଝରୀ ।
ଧରିବା ବେଳରୁ ମୋତେ ଶୀତ ଲାଗେପୁଣ
ତେଣୁ କରି ଏହାର ନାମଟି ଚନ୍ଦନ ।
ସାନପୁତ୍ର ଜାନକୀ କୋଳରେ ଧଇଲେ
ଗାର୍ଗବ ଋଷି ବେଦ ଆଧାନ ତହୁଁ କଲେ ।
ଜାନକୀଙ୍କୁ ବୋଇଲେ ନାମ କହ ତୁହି
ତୁମ୍ଭ ତୁଣ୍ଡରୁ ଶୁଣିଲେ ମନ ସନ୍ତୋଷ ହୋଇ ।

ଜାନକୀ ବୋଇଲେ ଏ ଦିଶେ ବସନ୍ତବର୍ଣ୍ଣ
ଯାର ନାମଗୋଟି ବସନ୍ତ ହେଉ ପୁଣ ।
ଋଷିମାନେ ବୋଲନ୍ତି ଭଲ ନାମ ହେଲା
ଚନ୍ଦନ ବସନ୍ତ ଯେ ନାମ ଦିଆଗଲା ।
ଦୁର୍ବାସା ଗାର୍ଗବ ମୁନିଙ୍କି ଦେଲେ ପୁଣ
ଦୁଇଲକ୍ଷ ମୁନିଆଁ ମେଲାଣି କଲେ ଜାଣ ।
ଋଷିଶୃଙ୍ଗ ବୋଇଲେ ଶୁଣ ହେ ଶତୃଘନ
ମୁଦଘର ଦୁଆର ଫିଟାଅ ବହନ ।
ଶତୃଘନ ବୋଇଲେ ସେ ଘର ଦେଖାନାହିଁ
ଋଷିଶୃଙ୍ଗ ବୋଇଲେ ବିଧାତା ମୁଦଦେଇ ।
ସେ ଘର ଭିତରେ ବତ୍ରିଶ ସିଂହାସନ
ସେଥିରେ ବିଜେ କରିବେ ଶ୍ରୀରାମ ରାଜନ ।
ଶୁଣିଣ ଶତ୍ରୁଘନ ଋଷିଙ୍କି ସଙ୍ଗେ ନେଲା
ମୁଦଘର ଦ୍ୱାର ଯେ ଯାଇଁଣ ଫେଡ଼ିଲା ।
ସେଥିରେ ଭିତରକୁ ଯିବାକୁ କ୍ଷମ ନାହିଁ
ସହସ୍ର ଫଣା ଆହୀ ଜଗିଅଛି ତହି ।
ଲେଉଟି ଯାଇଣ ଶ୍ରୀରାମ ଆଗେ କହି
ବତ୍ରିଶ ସିଂହାସନକୁ ବିଜେ କର ତୁହି ।
ଶୁଣିଣ ଶ୍ରୀରାମ ସୀତା ବେଗେ ଚଳିଗଲେ
ସୁମାଳୀକି କଳାବତି କୋଳରେ ପୁତ୍ର ଦେଲେ ।
ସବୁ ଜନନୀମାନେ ଧଇଲେ କୋଳରେ
ପୁତ୍ରଙ୍କୁ ଶୁଆଇଲେ ପଲଙ୍କ ଉପରେ ।
ଜାନକୀ କର ଧରିଣ ଚଳିଲେ ଶ୍ରୀରାମ
ବତ୍ରିଶ ସିଂହାସନ ଦେଖିଲେ ରାମରାଣ ।
ସିଂହାସନ ଉପରେ ବିଜେ ଶ୍ରୀରାମ ସୀତା
ଅନ୍ୟଜନ ଯିବାକୁ ନୋହେ ଯେ ଶକତା ।
ଜାନକୀ କୋଳେ ଧରି ବସିଲେ ରାମରାଣ
ଉପରେ ସହସ୍ର ଫଣା ଟେକେ ଅହୀ ପୁଣ ।
ଜାନକୀ ଚହିଁଲେ ଭରତ ଶତୃଘନ
ଶଙ୍ଖ ଚକ୍ର ପ୍ରାୟେ ଦୁଇଭାଇ ଦିଶେ ପୁଣ ।
ଆରବେଳେ ଜାନକୀ ଚହିଁଲେ ନିରୋଳେ
ଲକ୍ଷ୍ମଣ ଦିଶିଲେକ ସର୍ପର ଆକାରେ ।
ଆରବେଳେ ସ୍ୱାମୀକି ଦେଲେ ପୁଣ ଦୃଷ୍ଟି
ଅନନ୍ତ ବାସୁଦେବ ପ୍ରାୟେ ଶ୍ରୀରାମ ଦିଶନ୍ତି ।
ଆରବେଳେ ଶ୍ରୀରାମ ଦେହକୁ ଦୃଷ୍ଟିଦେଲେ
ନିଜ ରୂପ ପ୍ରକାଶ ହୋଇଛି ଦେଖିଲେ ।

ଶ୍ରୀରାମଙ୍କୁ ଜାନକୀ ବୋଇଲେ ଧୀର କରି
ଏ ସିଂହାସନ ପରେ ମାୟା ମୋହ ଛାଡ଼ି ।
ଶ୍ରୀରାମ ବୋଇଲେ ତୁ ପ୍ରକାଶ ନ କର
ଏ ଜନ୍ମେ ସାତଦିନ ଦୁଇପ୍ରହର ତୋର ମୋର ।
ରଙ୍ଗା ଅବତାରେ ଧର୍ମ ପରାୟଣ
ଯୁଧିଷ୍ଠି ରାଜା ବସିବେ ଏହି ସିଂହାସନ ।
ପଞ୍ଚସ୍ତରୀ ବରଷ ସେହୁ ଭୋଗ କରିବେ
ମୋହର ଅଂଶେ ସିନା ଏ ଗାଦି ଲଭିବେ ।
ଏତେ କହି ଜାନକୀର କର ଧରି ପୁଣ
ସିଂହାସନୁ ଉଠି ଦ୍ୱାର ନିରୋଧ କଲେ ପୁଣ ।
ଅନ୍ତଃପୁର ଭିତରେ ଯାଇଁଣ ମିଳିଲେ
ମନୁମାୟା ହସ୍ତେ ଋଷିଶୃଙ୍ଗଙ୍କୁ ଡକାଇଲେ ।
ଜାନକୀ ପାଶେ ଋଷିଶୃଙ୍ଗ ହେଲେ ପରବେଶ
ଦାସୀଙ୍କି ବୋଲେ ମୁନିଙ୍କ କର କୁଙ୍କୁମ ଭବିଷ୍ୟ ।
ଦାସୀମାନେ କୁଙ୍କୁମ ଋଷିଙ୍କ ଅଙ୍ଗେ ବୋଳି
ଋଷିଶୃଙ୍ଗ ମୁନି ଯେ ଆନନ୍ଦ ଦେଖି କରି ।
କୌଶଲ୍ୟା ଡକାଇଲେ ସକଳ ଋଷିଗଣ
କୁଙ୍କୁମ ଚନ୍ଦନ ଯେ ଲେପିଲେ ଅଙ୍ଗେ ପୁଣ ।
ଜାନକୀ ଝରିଭାଇଙ୍କି ଡକାଇ ଘେନିଗଲେ
କୁଙ୍କୁମ ଅଣାଇ ଝରିଭାଇଙ୍କ ଅଙ୍ଗେ ବୋଳେ ।
ମଉଳା ସୁଗ୍ରୀବର ଯୁଥପତି ସେନାପତି
ସମସ୍ତେ କୁଙ୍କୁମ ବର୍ଣ୍ଣ ହେଲେ ଜ୍ୟୋତି ।
ପଞ୍ଚକଟକ ସହିତେ କୁଙ୍କୁମ ବର୍ଣ୍ଣ ହେଲେ
ଧୋବା ତୁଠ ହାଟ ବାଟ ଯୁର କରାଇଲେ ।
ସମସ୍ତେ ଛତ୍ରରସରେ ଭୋଜନ ତହିଁ କଲେ
ମିଷ୍ଟାନ୍ନ ଦ୍ରବ୍ୟମାନ ବ୍ରାହ୍ମଣରେ ଦେଲେ ।
ଦାନ ପୁଣ୍ୟ ଅନେକ ଦେଲେ ତହିଁ ପୁଣ
ବ୍ରାହ୍ମଣର ସନ୍ତୋଷ ଦେଲେ ଧନ ପୁଣ ।
ବ୍ରାହ୍ମଣ ମେଲାଣି ହୋଇ ଯେଝା ପୁର ଗଲେ
ଦୁଃଖି ଦରିଦ୍ରଙ୍କୁ ବାଣ୍ଟିଣ ଧନ ଦେଲେ ।
ଏଥୁଅନନ୍ତେ ସାତଦିନ ଦୁଇ ଯେ ପ୍ରହର
ସିଂହାସନେ ବିଜେ କଲେ ଜାନକୀ ଚାପଧର ।
ସିଂହାସନ ଦୁଆର ଭରତ ମୁଦ ଦେଲେ
ଲକ୍ଷ୍ମଣ ଭରତ କହି ନିଜ ରାଜ୍ୟ ଗଲେ ।
ଏମନ୍ତେ ଦିନାକେତେ ରହିଲେ ହସ୍ତୀନାରେ
ଜ୍ୟେଷ୍ଠ କୃଷ୍ଣପକ୍ଷ ପଞ୍ଚମୀ ଦିନରେ ।

ଭରତର ଦୁଇ ପୁତ୍ର ହେଲେ ପୁଣି ଜାତ
ପାତ୍ର ମନ୍ତ୍ରୀ ସାମନ୍ତ ଅଇଲେ ହସ୍ତୀନାତ ।
ତିନି ଭାଇଙ୍କର ଆଗେ କହିଲେ ଯାଇ ପୁଣ
ଭରତ ରାଜାଙ୍କର ଦୁଇ କୁମର ହେଲେ ଜାଣ
ଦୁଇଭାଇ ଅନେକ ବଧାଇ ଧନ ଦେଲେ
ଧୋବା ତୁଠ ହାଟ ବାଟ ଯୂର କରାଇଲେ ।
ଜାନକୀ ଆଗରେ କହିଲେ ଶତୃଘନ
ମଝିଆଁ ଭାଇଙ୍କର ଦୁଇ ପୁତ୍ର ହେଲେ ଜନ୍ମ ।
ଶୁଣିଣ ଜାନକୀ ପରମ ତୋଷ ହେଲେ
ଶାଶୁ ମାନଙ୍କ ଆଗରେ ଯାଇଣ ଜଣାଇଲେ ।
ବୋଇଲେ ଶୁଭକଥା ହୋଇଲା ଆମ୍ଭର
ଦୁଇ ପୁତ୍ର ଜନମିଲେ ବଡ଼ ମଝିଆଁଙ୍କର ।
ଶୁଣିଣ କଉଶଲ୍ୟା ପରମ ତୋଷ ହେଲେ
ସେ ଦୁଇ ନଗ୍ର ମୋର ସମ୍ଭାଳ ବୋଇଲେ ।
ଜାନକୀ ସୁମାଳିନୀ ଦୁଇଜଣ ଦାସୀ
ମାତାଗଣଙ୍କଠାରୁ ବଧାଇ ନିଅନ୍ତି ।
ତିନି ଭାଇ ବଧାଇ ଅନେକ ପୁଣ ଦେଲେ
ଜାନକୀ ସୁମିତ୍ରା ଯେ ଧନ ବିହୋଳିଲେ ।
ସେଦିନ ପାକାସ୍ବରଶ ଜାନକୀ ହୋଇଲେ
ପାଞ୍ଚଦିନେ ରାଘବ ପାଶକୁ ପୁଣ ଗଲେ ।
ନାନାବନ୍ଧେ ରତି ଲୀଳା କଲେ ସେଥି
ସେଦିନ ଦଶମୀ ହୋଇଅଛି ତିଥି ।
ସେଦିନ ଗର୍ଭସ୍ଥିତ ଜାନକୀ ହୋଇଲେ
ସେକଥା ଗୁପ୍ତହେଲା କେହି ନ ଜାଣିଲେ ।
ଦ୍ୱାଦଶୀ ଦିନ ପୁଣି ଅଇଲେ ଭ୍ରଥ ବୀର
ଶ୍ରୀରାମ ଚରଣରେ କଲେ ନମସ୍କାର ।
ବୋଇଲେ ଦେବ ସମସ୍ତଙ୍କୁ ଘେନି ବେଗେଆସ
ଦୁଇ ପୁତ୍ର ନାମକରଣ କରଯା ବିଶେଷ ।
ଜାନକୀ ଆଗରେ ଯାଇ ପ୍ରବେଶ ହୋଇଲ
କରଯୋଡ଼ି ଜାନକୀ ଚରଣେ ଶୋଇଲା ।
ବୋଇଲେ ଦୁଇ ପୁତ୍ରଙ୍କୁ ଧର ଯାଇଁ କୋଳେ
ଜାନକୀ ବୋଇଲେ ଆମ୍ଭେ ଯିବୁଁ ତତକାଳେ
ଦୁଇ ନଗ୍ର ଉତ୍ସବ କରାଇ ରହ ପୁର
ବେଗେଣ ଚଳିଯାଅ ହେଳା ତୁ ନ କର ।
ସେଠାରୁ ଭରତ ଜନନୀ ପୁର ଗଲେ
ଜନନୀମାନଙ୍କ ପାଦେ ଯାଇଁ ଓଳଗିଲେ ।

କଉଶଲ୍ୟା ବୋଇଲେ ଶୁଣରେ କୁମର
ବେଗେ ଚଳିଯାଅ ନବରେ ତୋହର ।
ଶୁଣିକରି ଭରତ ରାମ ଆଗେ ମିଳି
ରାମଚନ୍ଦ୍ର ବୋଇଲେ ଯାଅ ବେଗେ କରି ।
ଦୁଇ ନଗ୍ର ମଣ୍ଡଣି କର ତୁ ବେଗ୍ରରେ
ଦୁଇ ନଗ୍ରେ ଉତ୍ସବ ଯାତ୍ରା କର ଖରେ ।
ଶୁଣିକରି ଭରତ ବେଗେ ଚଳିଗଲେ
ଭ୍ରଥ ନଗ୍ର ବିଷ୍ଣୁପୁର ଉତ୍ସବ କରାଇଲେ ।
ଅନେକ ପଦାର୍ଥ ସଞ୍ଚିଲେ ତହିଁ ପୁଣ
ଚିତ୍ରପଟେ ସ୍ଥାନମାନ କଲେ ବିଚକ୍ଷଣ ।
ଜ୍ୟେଷ୍ଠ ଶୁକଳ ଯେ ଦ୍ୱିତୀୟା ଦିନ ପୁଣ
ସମସ୍ତଙ୍କୁ ଘେନିଣ ବାହାରେ ରଘୁରାଣ ।
ଭ୍ରଥପୁର କଟକରେ ହେଲେ ପରବେଶ
ଦେଖିଲେ ସେ କଟକ ହୋଇଛି ସରସ ।
ଭରତ ଆସିଣ ସେ ପୁରେ ମିଳିଲେ
ସମସ୍ତଙ୍କୁ ଚରଣ ବିଧିମତରେ କଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ହସ୍ତୀନା ନବରେ କିଏ ରହିଲାକ ପୁଣ ।
ଈଶ୍ୱର ବୋଇଲେ ଶତୃଘନର ପୁତ୍ର ଦାସୀ
ଏମାନେ ସେପୁରରେ ରହିଲେ ଶୁଭ୍ରକେଶୀ ।
ପାର୍ବତୀ ବୋଇଲେ ମଧୁପୁରେ କିଏ ରହି
ଧାଇମା ଗାର୍ଗିବ ଋଷି ତହିଁରେ ରହି ।
ପାର୍ବତୀ ବୋଇଲେ ଦୁର୍ବାସା କେଣେ ଗଲେ
ଈଶ୍ୱର ବୋଇଲେ ହସ୍ତୀନାରେ ସେ ରହିଲେ ।
ପାର୍ବତୀ ବୋଇଲେ ଲକ୍ଷ୍ମଣ ଭାଇକି ପୁଣ
ଭରତ କିମ୍ପା ନ ଗଲେ କହିବାକୁ ଜାଣ ।
ଈଶ୍ୱରବୋଇଲେ ଭରତ ଶ୍ରୀରାମଙ୍କୁ କହିଗଲେ
ଲକ୍ଷ୍ମଣ ପୁରକୁ ପାତ୍ର ମନ୍ତ୍ରୀ ଭେଦି ଦେଲେ ।
ଶୁଣିଣ ଲକ୍ଷ୍ମଣ ପରମ ତୋଷ ହେଲେ
ସହସ୍ରେ ସୁନିଆ ଯେ ମେଲାଣି କରି ଦେଲେ ।
ଧୋବା ତୁଠ ହାଟ ବାଟ ନବରେ ଯୂରକଲେ
ହାଟୁଆ ବାଟୁଆଙ୍କୁ ଲେଖିଣ ଧନ ଦେଲେ ।
ପାର୍ବତୀ ବୋଇଲେ ଶ୍ରୀରାମ ଭ୍ରଥ ପୁରେ ଯିବେ
ସେ କଥା ମୋର ଆଗରେ କହ ଦେବ ଏବେ ।
ଈଶ୍ୱର ବୋଲନ୍ତି ଯେ ଭରଥ ଗଡ଼େ ପୁଣ
ନବଦିନ ପରିଯନ୍ତେ ରହିଲେ ରାମ ପଣ ।

କଟକ ଭିତରେ ପଶିଣ ଦେଖିଲେ
କୂପ, ବାମ୍ପୀ, ପୋଖରୀ ବନମାନ ଭଲେ ।
ଲକ୍ଷେକ ଭଣ୍ଡାର ଘର ଲକ୍ଷେକ ପ୍ରବାଳ
ସମସ୍ତେ ଧବଳ ବର୍ଣ୍ଣ ଦିଶନ୍ତି ସୁନ୍ଦର ।
ଅନ୍ତଃପୁରେ ପ୍ରବେଶ ହୋଇଲେ ବେନିଜନ
ମର୍ଦ୍ଦନ ମାଜଣା ହୋଇ ସ୍ନାନ କଲେ ପୁଣ ।
ମାତାଗଣ ଋଷିଗଣ ବନ୍ଧୁ ଗଣମାନେ
ପାତ୍ର, ମନ୍ତ୍ରୀ, ସେନ୍ସାପତି, ଯୂଥପତି ସୈନ୍ୟେ ।
ମାଜଣା ହୋଇଣ ସର୍ବେ ସ୍ନାନ ପାଣି କଲେ
ଯେ ଯାହା ନିତ୍ୟକର୍ମ ବେଭାର ସାରିଲେ ।
ଋଷି ଗଣମାନଙ୍କୁ ଫଳ ମୂଳ ଦେଲେ
ଗଉତମ ଋଷି ଚରଣ ବିଧି କଲେ ।
ଦେଖଣାହାରୀଙ୍କି ଚରଣ କଲେ ପାତ୍ରମନ୍ତ୍ରୀ
ମାତାଙ୍କ ପୁରେ ମାତୁଳମାନେ ଯେ ଭୁଞ୍ଜନ୍ତି ।
ନିତ୍ୟକର୍ମ ସାରିଲେ ଜାନକୀ ଦେବୀ ପୁଣ
ପାକ କରି ଛଡ଼ ରସେ କଲେ ଯେ ଭିଆଣ ।
ଏହି ସମୟରେ ଲକ୍ଷ୍ମଣ ଆସି ମିଳି
କର ଯୋଡ଼ି ଶ୍ରୀରାମଙ୍କୁ ଦର୍ଶନ ଯାଇଁ କରି ।
ଜାନକୀଙ୍କ ଚରଣରେ କଲେ ନମସ୍କାର
ଦେଖିଣ ଜନକ ସୁତା ମନରେ ସୁଖ ଘୋର ।
ତିନି ଭାଇ ମାଜଣା ହୋଇଣ ସ୍ନାନ କଲେ
ଷଡ଼ରସେ ଭୋଜନ ଶ୍ରୀରାମ ସଙ୍ଗେ କଲେ ।
ଆଞ୍ଚୋବନ ସାରିଣ ଭୁଞ୍ଜିଲେ ଗୁଆପାନ
ସୁପାତି ପଲ୍ୟଙ୍କରେ ନିଦ୍ରାଗଲେ ଜାଣ ।
କୈକେୟୀ ମାତା ଆସି ଜାନକୀ ପାଶେ ମିଳି
ଜାନକୀଙ୍କି ଅନ୍ନ ଯେ ପରଶେ ଜଟାଳୀ ।
ଭୋଜନ ସାରି ଜାନକୀ ଆଞ୍ଚୋବନ କଲେ
ବିଡ଼ିଆ ଭୁଞ୍ଜିଣ ଦେବୀ ପଲଙ୍କେ ନିଦ୍ରାଗଲେ ।
ଶଙ୍ଖ ମହୁରୀ ବାଦ୍ୟ କୋଳାହଳ ବାଜେ
ନୃତ୍ୟକାରୀ ଅପସରୀ ନୃତ୍ୟ କରେ ଆଗେ ।
ଚତୁରଙ୍ଗ ବଳ ଯେ କଟକେ ଗହଳ
ଯିବା ଆସିବାରେ ଶବଦ ଚହଳ ।
ସେ ନଗ୍ର ସ୍ତିରୀମାନେ ଦେଶରେ ବଡ଼ ତୋରା
ବାଳବୃଦ୍ଧମାନେ ସମସ୍ତେ ଯୁବା ପରା ।
ଏଥୁ ଅନନ୍ତରେ ଶୁଣ ଭଗବତୀ
କଟକ ବୁଲିଣ ଯେ ସମସ୍ତେ ଦେଖନ୍ତି ।

ଏହି ରୂପେ ଦୁଇଦିନ ସେଠାରେ ବହିଗଲା
ପଞ୍ଚମୀରେ ନାମକରଣ ଦେଲେ ଭଲା ।
ରଜନୀ ଦୁଇଘଡ଼ି ଥାଉଁ ସର୍ବେ ଚେତା
ମାଜଣା ମର୍ଦ୍ଦନ ହୋଇ ସ୍ନାନ କଲେ ସୀତା ।
ଶ୍ରୀରାମ ଚାରିଭାଇ ମାଜଣା ସେଥି ହେଲେ
ସୁବାସିତ ଜଳରେ ସ୍ନାନ ଯାଇ କଲେ ।
ଦେବାର୍ଚ୍ଚନ ସାରିଣ ବିଜେ ରାମ କଲେ
ଏଥୁ ଅନନ୍ତରେ କଥା ଶୁଣ ଭଲେ ।
ପାତ୍ର, ମନ୍ତ୍ରୀ, ସାମନ୍ତ ଚତୁରଙ୍ଗ ବଳ
ଯୂଥପତି, ସେନାପତି ଏ ସର୍ବେ ସକଳ ।
ରାଜ୍ୟର ନରନାରୀ ମାତାଗଣ ସର୍ବେ
ରଜନୀ ଥାଉଁ ସ୍ନାନ ତାଙ୍କର ଉଦବେଗେ ।
ଋଷିମାନେ ସ୍ନାନ କରିଣ ବିଜେ କଲେ
ଦୁଇଲକ୍ଷ ବ୍ରାହ୍ମଣ ଆସିଣ ମିଳିଲେ ।
ସାମ ବେଦ ଗାୟନ କଲେ ସେହୁ ଧୀରେ
ଚାରିବେଦ ଧ୍ୱନି ଋଷିମାନେ କଲେ ।
ଗଣ୍ଡରାମ ଗଉତମ ତିନି ଋଷି ମିଳି
ସମସ୍ତେ ଯାଇ ପଦ୍ମ ପୋଖରୀକି ବେଢ଼ି ।
ଜାନକୀଙ୍କ ଆଗରେ କହିଲେ ଋଷିଶୃଙ୍ଗ
ସୁବର୍ଣ୍ଣ ଗରାଆ ଘେନି ଚଳ ଗୋ ସୀତା ବେଗ ।
ନୂତନ ଅମଳାଣ ପିନ୍ଧିଲେ ସୁନ୍ଦରୀ
ନଟବର ବେଶ ଯେ ହେଲେ ରାମ ନାରୀ ।
ମନ୍ଦମାୟା ରତ୍ନ ଯେ ପାଦୁକା ନେଇ ଦେଲା
ଜାନକୀ ସେ ପାଦୁକା ଚରଣେ ଲଗାଇଲା ।
ଦାସୀଗଣ ସଙ୍ଗେ ଘେନି ଚଳିଲେ ଚଞ୍ଚଳା
ପଦ୍ମ ପୁଷ୍କରିଣୀ ତଟେ ପ୍ରବେଶ ହେଲେ ପରା ।
ରାମ ନାମ ସୁମରି ଚାଲନ୍ତି ଧୀରେ ଧୀରେ
ହୁଳହୁଳି ଶବଦରେ ମେଦିନୀ ଉଛୁଳେ ।
ପଦ୍ମ ପତ୍ର ଉପରେ ଚାଲିଗଲେ ସୀତା
ପୋଖରୀ ମଧ୍ୟରେ ପ୍ରବେଶ ଜଗଜ୍ଜିତା ।
କାଖରୁ ଗରାଆ କାଢ଼ି ଜଳେ ଥୋଇ
ଧବଳ ମୁଖୀ ଗଙ୍ଗାକୁ ଭରିଲେ ବଇଦେହୀ ।
ଗଙ୍ଗା ବୋଇଲେ ମାତ କଲ ଯେ ପବିତ୍ର
ନମସ୍କାର ଶତେବାର କଲେ ପାଦଗତ ।
କାଖରେ କୁମ୍ଭ ଘେନି ଜନକ କୁମାରୀ
ଅନ୍ତଃପୁରେ ପ୍ରବେଶ ହେଲେ ଯାଇଁ କରି ।

ଦୁଇ ପୁତ୍ର କୋଳେ ଧରି ସ୍ନାନ କରାଇଲେ
ମାଳିନୀରେ ପାଣି ତୋଳି ଜାନକୀଙ୍କୁ ଦେଲେ ।
ସ୍ନାନ କରାଇଣ ପୋଛିଲେ ଝୀନ ବାସେ
ନୂତନ ପଲଙ୍କରେ ଶୁଆଇଲେ ହରଷେ ।
ଏଥୁ ଅନନ୍ତରେ ରାମଚନ୍ଦ୍ର ପୁଣ
ରାଜବେଶ ଛରିଭାଇ ହୋଇଲେ ବେଗେଣ ।
ବାଳକଙ୍କ ପାଶରେ ହେଲେ ପରବେଶ
ବଡ଼ ପୁତ୍ରଙ୍କୁ ଧରି ରାମ ମନରେ ହରଷ ।
ସାନ ପୁତ୍ରଙ୍କୁ ଜାନକୀ କୋଳରେ ଧଇଲେ
ତିନି ଋଷି ବସିଣ ବେଦ ଉଚ୍ଚାରିଲେ ।
ପବିତ୍ର ହୋମ କରି ପାଞ୍ଚମୃତ କରି
ଯେ ବିଧି ବିଧାନ ସକଳ କାର୍ଯ୍ୟ ସାରି ।
ଶ୍ରୀରାମଙ୍କୁ ବୋଲନ୍ତି ଗଉତମ ପୁଣ
ପୁତ୍ର ନାମ ଗୋଟି ଦିଅ ତୁମ୍ଭେ ଜାଣ ।
ରାମ ବୋଲନ୍ତି ଯା ନାମ ମଳୟ ହୋଇଲା
ମଳୟ ପବନ ପ୍ରାୟେ ମୋ ଦେହ ଲାଗିଲା ।
ଜାନକୀ ବୋଇଲେ ଏ ପୁତ୍ର ନାମ ଶୁଣ
ମଦନ ଏହାର ନାମ ମୁହିଁ ଦେଲି ପୁଣ ।
ନାମ ଦେଇ କରିଣ ଉଠିଲେ ରଘୁନାଥ
ପୁତ୍ରଙ୍କୁ ଦେଲେ ନେଇ କୈକେୟୀ କୋଳରେତ ।
ସେଠାରୁ ଶ୍ରୀରାମ ବେଗେ ଚଳିଗଲେ
ରତ୍ନ ସିଂହାସନ ଉପରେ ବିଜେ କଲେ ।
ତିନିଭାଇ ଚାମର ଢାଳନ୍ତି ନିରନ୍ତର
ହୁଳହୁଳି ରାମତାଳି ଶୁଭଇ ଗହଳ ।
ବାହାରେ ଅବକାଶ ଶ୍ରୀରାମ ଯାଇ ହେଲେ
ଋଷି ବ୍ରାହ୍ମଣଙ୍କୁ ଯେ ଅନେକ ଦାନ କଲେ ।
ଋଷିଙ୍କି ଫଳ ମୂଳ ପାଚିଲା କଦଳୀ ପୁଣ
ବନ୍ଧୁଙ୍କୁ ଛଡ଼ ରସରେ ଦେଲେକ ଭୋଜନ ।
ପାତ୍ରମନ୍ତ୍ରୀ ସାମନ୍ତ ଯୂଥପତି ସେହ୍ନାପତି
ସମସ୍ତଙ୍କୁ ଛଡ଼ ରସରେ ଭୋଜନ କରାନ୍ତି ।
ଧୋବା ତୁଠ ହାଟ ବାଟ ଯୂର ରାମ୍ କଲେ
ଗଲା ଲୋକଙ୍କର ଧନ ଲେଖି କରି ଦେଲେ ।
ଦୁଃଖୀ ଦରିଦ୍ରଙ୍କୁ ଦେଲେ ଅନ୍ନ ବସ୍ତ୍ର
ଦେବା ଦେବୀଙ୍କୁ ପୂଜା କରାଇ ବିଶେଷ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଜାନକୀ ପୁତ୍ରଙ୍କୁ ଘେନିଣ ବେଗେ ଉଠି ।

ମାଳିନୀଙ୍କ କୋଳରେ ଦେଲେ ବେଗ କରି
ହରଷ ହୋଇଲେ ଜନକ କୁମାରୀ ।
ଛଡ଼ ରସରେ ପାକ କଲେ ଯାଇ ପୁଣ
ଦୁଇପୁତ୍ର ପଲଙ୍କେ ଶୁଆଇ ବହନ ।
ଶ୍ରୀରାମ ଛରିଭାଇ ଗଲେ ଅନ୍ତଃପୁର
ଛଡ଼ରସେ ଭୋଜନ କଲେ ଦୁଗ୍ଧ ସର ।
ଜାନକୀ ପରଶନ୍ତି ଭୁଞ୍ଜନ୍ତି ଛରିଭାଇ
ଆଞ୍ଚୋବନ ସାରିଣ ବିଡ଼ିଆ ଲାଗି ହୋଇ ।
ପଲଙ୍କର ଉପରେ ଯାଇଣ ନିଦ୍ରାଗଲେ
ଦାସୀଙ୍କି ଘେନି ଜାନକୀ ମଣୋହି ସାରିଲେ ।
ଏହି ସମୟରେ ଦିନ ହେଲା ଆସି ଶେଷ
ହଳଦୀ ଲାଗି ହେଲେ ରାତ୍ରରେ ସମସ୍ତ ।
ଗହଳରେ ରଜନୀ ହେଲେ ଆସି ଶେଷ
ସୀତା ରାମଙ୍କୁ କହି ଲକ୍ଷ୍ମଣ ଗଲେ ଦେଶ ।
ପକ୍ଷେକ ସେଠାରେ ଯେ ସମସ୍ତେ ରହିଲେ
ଦଶଦିନ ଏଠାରେ କାଳ ବହି ଗଲେ ।
କୃଷ୍ଣ ତ୍ରୟୋଦଶୀ ଦିନ ଦଶଘଡ଼ି ଠାରେ
ଲକ୍ଷ୍ମଣର ଦୁଇ ପୁତ୍ର ଜନ୍ମ ହେଲେ ଭଲେ ।
ପାତ୍ରମନ୍ତ୍ରୀ ସାମନ୍ତ ଲକ୍ଷ୍ମଣ ଡକାଇଲେ
ବିଷ୍ଣୁପୁର ନଗ୍ରକୁ ସେ ବେଗ୍ରରେ ଭେଦିଦେଲେ ।
ଶ୍ରୀରାମ ଛାମୁରେ ପାତ୍ରମନ୍ତ୍ରୀ ଜଣାଇଲେ
ଲକ୍ଷ୍ମଣଙ୍କର ଦୁଇପୁତ୍ର ଜନମ ହୋଇଲେ ।
ଶ୍ରୀରାମ ବୋଇଲେରେ ଶତ୍ରୁଘନ ଶୁଣ
ଧୋବାତୁଠ ହାଟବାଟ ପୂରକର ପୁଣ ।
ଦୁଃଖୀ ଦରିଦ୍ରକୁ ଦିଅ ଅନ୍ନ ବସ୍ତ୍ରନେଇ
ଶୁଣିଣ ଶତ୍ରୁଘନ ବେଗେ ଚଳିଯାଇ ।
ଶ୍ରୀରାମର ଆଜ୍ଞାରେ ସକଳ ଯୂରହେଲା
ଦରିଦ୍ରଙ୍କୁ ତୋଷ ଯେ କରାଇଲେ ଭଲା ।
ଭରତଙ୍କୁ ଛହିଁ ରାମ ଆଜ୍ଞା କଲେ ପୁଣ
ସେଠାରୁ ଶ୍ରୀରାମ ଚଳିଲେ ବହନ ।
ଜାନକୀ ଅନ୍ତଃପୁରେ ହେଲେ ପରବେଶ
ମନୁମାୟା ଜାନକୀଙ୍କି ତୋଳିଲେ ବିଶେଷ ।
ଜାନକୀଙ୍କି ଛହିଁଣ ବୋଲନ୍ତି ରାମରାଜ
ଲକ୍ଷ୍ମଣର ଦୁଇଗୋଟି ହୋଇଲେ ତନୁଜ ।
ଜାନକୀ ବୋଇଲେ ମାଳିନୀ ଏବେ ଶୁଣ
ଭଣ୍ଡାର ଫେଡ଼ି ଦାସୀଙ୍କୁ ବଧାଇ ଦିଅ ପୁଣ ।

ଶୁଣିକରି ମାଳିନୀ ବେଗେ ଚଳିଗଲା
ଭଣ୍ଡାର ଫେଡ଼ି ଧନ ଅନେକ ଆଣିଦେଲା ।
ମାଳିନୀକି ଘେନିଣ ସେ ଶାଶୁଙ୍କ ପାଶେ ଗଲେ
ଓଳଗି ମେଲାଇଣ ଦରଶନ କଲେ ।
କୈକେୟୀଙ୍କ ଆଗରେ ଯେ ରହିଲେ ଜାନକୀ
ଲକ୍ଷ୍ମଣର ଦୁଇପୁତ୍ର ହୋଇଲେ ମାତଟି ।
ଶୁଣିଣ ମାତଗଣେ ସର୍ବେ ତୋଷ ହେଲେ
ଅନେକ ଧନବସ୍ତ୍ର ଦୁଃଖୀ ଦରିଦ୍ରେ ଦେଲେ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ପଞ୍ଚୁଆତୀ ଷଠୀଘର ଉଠିଆରୀ ଯାନ୍ତି ।
ଯାନଚଢ଼ି ଲକ୍ଷ୍ମଣ ବିଷ୍ଣୁପୁର ଗଲା
ଶ୍ରୀରାମ ଆଗରେ ଯାଇଁ ପ୍ରବେଶ ହୋଇଲା ।
ବୋଇଲେ କାଞ୍ଚୀପୁରକୁ କର ହେ ଗମନ
ଦୁଇପୁତ୍ରଙ୍କୁ ନାମ ଦେବ ହେ ଯାଇ ପୁଣ ।
ଶ୍ରୀରାମ ବୋଇଲେ ଆମ୍ଭେ ଯିବୁ ପରିଦିନ
ଦୁଇପୁର ଉଛବ କରାଅ ଯାଇପୁଣ ।
ସମସ୍ତଙ୍କୁ ଘେନି ଆମ୍ଭେ ହେବୁଁ ପରବେଶ
ଶୁଣିଣ ଲକ୍ଷ୍ମଣ ଯେ ଗଲେ ଜାନକୀର ପାଶ ।
ମାତାଗଣେ ଦେଖିଣ ଆନନ୍ଦ ତାଙ୍କୁ ହେଲେ
ଯାଅ ନିଜପୁରେ ଆମ୍ଭେ ଯାଉଛୁଁ ବୋଇଲେ ।
ଶୁଣିଣ ସଉମିତ୍ରୀ ଯାନପରେ ବସି
କାବେରୀ ପୁରରେ ପ୍ରବେଶ ହେଲେ ଆସି ।
କାଞ୍ଚି ତିନିନଗ୍ର ଯେ ଉତ୍ସବ କରାଇଲେ
ପାତ୍ରମନ୍ତ୍ରୀ ସାମନ୍ତ ଡାକିଣ ଆଜ୍ଞାଦେଲେ ।
ଗଜେନ୍ଦ୍ର ଦେଶରେ ହେଲେ ପରବେଶ
ପାତ୍ରମନ୍ତ୍ରୀ ଡକାଇ କହିଲେ ସମସ୍ତ ।
ବୋଇଲେ ରଘୁନାଥ ଏଥିରେ ବିଜେ ହେବେ
ତୁମ୍ଭମାନଙ୍କର ପାତକ କ୍ଷୟଯିବେ ।
ମହାଲକ୍ଷ୍ମୀ ଜାନକୀ ଆସିବେ ଏ ପୁର
ସମସ୍ତେ ଖୁସି ହେବେ ଦୁଃଖ ଯିବ ପାର ।
ରାଜ୍ୟରେ ମଙ୍ଗଳ ଉତ୍ସବ କରାଅ ସତ୍ୱର
ଯେମନ୍ତେ ପ୍ରଶଂସା ପାଇବ ଶ୍ରୀରାମ ମୁଖର ।
ଶୁଣିଣ ପାତ୍ରମନ୍ତ୍ରୀ ଉତ୍ସବ କରାଇଲେ
ଦେଶୁଆର ଭେଦିଣ ଧେଣ୍ଡୁରା ଫେରାଇଲେ ।
ସମସ୍ତଙ୍କ ପୁର ଯେ ଉଜ କରାଇଲେ
ନବର ଚଉରିପାଶ ସୁସ୍ଥେ ଜଗାଇଲେ ।

ନୀଳବର୍ଣ୍ଣ ନବର ଦିଶିଲାକ ପୁଣ
ବାରସ୍ୱତୀ ଭୁବନ ପ୍ରାୟେ ହେଲା ଜାଣ ।
ସେପୁର ଯୁବାନାରୀ ସମସ୍ତେ ଅପସରୀ
ପୁରୁଷମାନେ ସେଥିରେ ମଦନ ରୂପଧରି ।
ସେ ପୁରେ ସଜକରି ଲକ୍ଷ୍ମଣ ଚଳିଗଲେ
କାଞ୍ଚି ନଗରରେ ଯାଇଁ ପ୍ରବେଶ ହୋଇଲେ ।
କାଞ୍ଚୀ ତିନି କଟକ ଦିଶିଲା ଶୋଭାବନ
ମୁକୁତା ରଶାଣିଲା ଦିଶେ ରଙ୍ଗବର୍ଣ୍ଣ ।
ଏଥୁ ଅନନ୍ତରେ ଶୁଣ ଶାକମ୍ବରୀ
ଆଷାଢ଼ ଦ୍ୱିତୀୟା ଦିନ ରାମ ବିଜେକରି ।
ସମସ୍ତଙ୍କୁ ଘେନିଣ ଅଇଲେ ରାମଚଳି
ଗଜୀନ୍ଦ୍ର କଟକରେ ମିଳିଲେ ରାବଣାରୀ ।
କଟକ ବୁଲି ସେ ଯେ ଦେଖିଲେ ଚଉପାଶ
ବରୁଣର ପୁର ପ୍ରାୟେ ଏପୁର ସାଦୃଶ୍ୟ ।
ଚଉରିପାଶ ଦେଖିଣ ହରଷମନ ହେଲେ
ଅଯୋଧ୍ୟାର ପୁର ସେଠାରୁ ପାଶୋରିଲେ ।
ଗଡ଼ର ନବରେ ପ୍ରବେଶ ହେଲେ ଯାଇ
ଭିତରେ ବୁଲିଣ ଦେଖିଲେ ରଘୁସାଇଁ ।
ଜାନକୀ ଦେଖିଣ ବହୁତ ତୋଷ ହେଲେ
ଭରତ ପୁରେ ସଉମିତ୍ରି ଆସିଣ ରହିଲେ ।
ସମସ୍ତେ ସନମାନ ହେଲେ ଯେ ସେଠାରେ
ନଟକାରୀମାନେ ଦର୍ଶନ ଆସି କଲେ ।
ଚତୁରାଙ୍ଗ ବଳ ଦେଖିଲେ ଆସି ପୁଣ
ସେହ୍ନାପତି ସରଦାର ଭେଟ ହେଲେଜାଣ ।
ପାତ୍ରମନ୍ତ୍ରୀ ସାମନ୍ତ ଆସିଣ ଦେଖାହେଲେ
ଅରନ୍ୟକ ଋଷି ଆସିଣ ମିଳିଲେ ।
ରାମ ଦେଖି ନମସ୍କାର କଲେ ଯାଇ
ଜାନକୀ ଆସିଣ ଓଳଗିଲେ ତହିଁ ।
ଶ୍ରୀରାମ ବୋଲନ୍ତି ଶୁଣ ପ୍ରାଣସହୀ
ଏହିରଷି ଲକ୍ଷ୍ମଣଙ୍କୁ ଆସିଣ ଏଥେ ଥୋଇ ।
ଜାନକୀ ବୋଲନ୍ତି ମୋର ମନ ସନ୍ତୋଷ ହେଲା
ଶାମବଟ ତଳେ ବାଞ୍ଛା ମୋର ସିଦ୍ଧ ହେଲା ।
ମାତାଗଣମାନେ ନିଶ୍ଚିନ୍ତେ ରହିଲେ
ଋଷିଗଣମାନେ ଚରଚ୍ଚ ସେଥିହେଲେ ।
ଭରତ, ଶତ୍ରୁଘନ ସବୁଙ୍କୁ କଲେ ବଶ
ପାକ ସମ୍ପାଦିଲେ ଜନକ ଦୋହୀତ ।

ସମସ୍ତେ ମାଜଣା ହୋଇ ସ୍ନାନ କଲେ
ଜାନକୀ ବିଜେକରି ପାକ ତିଆରିଲେ ।
ଶ୍ରୀରାମ ଚାରିଭାଇ କଲେକ ସ୍ନାହାନ
ନିତ୍ୟକର୍ମ ସାରିଣ ଭୁଞ୍ଜିଲେ ଯାଇ ପୁଣ ।
ଆଞ୍ଚୋବନ ସାରିଣ ବିଡ଼ିଆ ଲାଗିକଲେ
ଶୀତଳ ପଲଙ୍କର ଉପରେ ନିଦ୍ରାଗଲେ ।
ଜାନକୀ ଭୁଞ୍ଜିଣ ମନରେ ତୋଷ ହେଲେ
ବିଡ଼ିଆଲାଗି ହୋଇ ଆଳସ୍ୟ ଭାଙ୍ଗିଲେ ।
ପ୍ରହରେ ବେଳଅଛି ବିଜେ ରଘୁନାଥ
ବାହାର ଜଗତୀପରେ ବିଜେ ରାମନାଥ ।
ରାଜ୍ୟରେ ଭଲମନ୍ଦ ଯେ ବୁଝିଲେ ସକଳ
ଗୁହାରି ହାରି ନ୍ୟାୟ ଅନ୍ୟାୟ ବିଚାର ।
ଏଥୁ ଅନନ୍ତରେ ରଜନୀ ଶେଷ ହେଲା
ପୂର୍ବଦିଗରେ ଭାନୁ ଉଦୟ ହୋଇଲା ।
ସ୍ନାହାନ ନିତ୍ୟକର୍ମ ସାରିଲେ ରାମରାଣ
ସର ଲବଣୀ ଯେ କଲେକ ଭୋଜନ ।
ସେଦିନ ଫେରି ସର୍ବେ ସେପୁର ଦେଖିଲେ
ଲଙ୍କାଗଡ଼ ବିଭୀଷଣ ଆସିଣ ମିଳିଲେ ।
ଶ୍ରୀରାମଙ୍କୁ ଯାଇ ସେ କଲେ ଦରଶନ
ହରଷ ମନରେ ରାମର ତୋଷମନ ।
କୁଶଳ ବାରତା ତାରେ ପଚାରିଲେ
ସବୁଭଲ ବୋଲିଣ ବିଭୀଷଣ ବୋଇଲେ ।
ଏମନ୍ତ ସମୟରେ ମିଳିଲେ ସ୍ୱୟଂମନୁ
ସୁବାହୁ ସୁକର୍ଣ୍ଣ ନାଦ ମିଳେ ରେଣୁ ।
ସମସ୍ତଙ୍କର କୁଶଳ ରାମ ପଚାରିଲେ
ସବୁତୁମ୍ଭ ପ୍ରସାଦରେ ରାମ ଯେ ବୋଇଲେ ।
ଦୁଇଦିନ ସେଠାରେ ରହିଲେ ରଘୁନାଥ
ଚତୁର୍ଥ ଦିନ ଚଳେ କାଞ୍ଚି ଯେ କର୍ଣ୍ଣାଟ ।
ରଥଙ୍କର ମଣ୍ଡଣି କହିଲେ ନ ସରଇ
ହାଟ ବାଟ ଲୋକେ ଦେଖନ୍ତି ଚହିଁରହି ।
ଏହି ସମୟରେ ଚଳିଲେ ଶ୍ରୀରାମ
ବୈକୁଣ୍ଠପୁର ନାଥଙ୍କୁ ଦିଶେ ଶୋଭାବନ ।
ସମସ୍ତେ ସ୍ନାନକରି ଭୋଜନ ତହିଁକଲେ
ଜାନକୀଙ୍କ ସହିତେ ସକଳ ଦାସୀଗଲେ ।
ମାତାଗଣ ସମସ୍ତେ ମିଳିଲେ ଯାଇପୁଣ
ବିଶ୍ୱାମିତ୍ର ମୁନିଆସି ମିଳିଲେ ତକ୍ଷଣ ।

ପୁତ୍ରଙ୍କୁ ନାମ ଦେବାର ବିଧାନ ସର୍ବକଲେ
ଋଷିଶୃଙ୍ଗ ମୁନି ଜାନକୀଙ୍କି ବୋଇଲେ ।
ପୂର୍ବର ବିଧାନରେ ନୀର ଯାଇଆଣି
କୋଳେ ଧରି ସ୍ନାନ କରାଇ ପୁତ୍ରମଣି ।
ବିଶ୍ୱାମିତ୍ର ଆରନ୍ୟକ ବେଦ ଆରମ୍ଭିଲେ
ଯେ ବିଧି ବିଧାନେ ହୋମ ପଞ୍ଚାମୃତ କଲେ ।
ବଡ଼ ପୁତ୍ରକୁ ଜାନକୀ ରାମଙ୍କ କୋଳେ ଦେଲେ
ସାନପୁତ୍ରକୁ ଜାନକୀ କୋଳରେ ଧଇଲେ ।
ଶ୍ରୀରାମଙ୍କ କୋଳରେ ବଡ଼ପୁତ୍ର ରହି
ଅରୁଣ ବର୍ଣ୍ଣ ତେଜ ତାହାର ପ୍ରକାଶଇ ।
ଜାନକୀ କୋଳରେ ଯେ ସାନପୁତ୍ର ଥିଲା
ପିତା ବରୁଣ ତେଜ ଦେବୀଙ୍କି ଦୃଶ୍ୟ ହେଲା ।
ଜାନକୀ ବୋଇଲେ ଅସମ୍ଭବ କଥାପୁଣ
ଶ୍ରୀହରି ଶ୍ୱଶୁର ପ୍ରାୟେ ଦିଶଇ ମୋତେ ଜାଣ ।
ଶ୍ରୀରାମଚନ୍ଦ୍ର ବୋଇଲେ ସେ କଥା ଅଟେ ସତ
ତାଙ୍କର ଅଂଶରେ ଜାତ ଅଟେ ଏହୁ ସୁତ ।
ମୁନିମାନେ ବେଦ ଯେ ଉଚ୍ଚାରଣ କଲେ
ବିପ୍ରମାନେ ଚାରିବେଦ ଯେ ପଢ଼ିଲେ ।
ଋଷିମାନେ ବୋଇଲେ ହେ ଶ୍ରୀରାମଚନ୍ଦ୍ର ଶୁଣ
ପୁତ୍ରଙ୍କର ନାମ ଦିଅ ହେ ବହନ ।
ଶ୍ରୀରାମ ବୋଇଲେ ଏପୁତ୍ର ଅରୁଣ ବର୍ଣ୍ଣଦିଶି
ଅରୁଣ ନାମ ଏହାର ଦେଲୁଁ ଯେ ପ୍ରଶଂସି ।
ଜାନକୀବୋଇଲେ ମୋପିତା ବରୁଣପ୍ରାୟେ ଦିଶି
ଏହାର ନାମ ବରୁଣ ହେଉ ହେ ମହର୍ଷି ।
ନାମ ଦେବାରୁ ମୁନି ସନ୍ତୋଷ ମନ ହେଲେ
ସୁକଲ୍ୟାଣ କରିଣ ପାଦାର୍ଘ୍ୟ ସମର୍ପିଲେ ।
ସେଠାରୁ ଶ୍ରୀରାମ ଉଠିଲେ ବହନ
ସୁମିତ୍ରାଙ୍କ କୋଳରେ ଦେଲେକ ନନ୍ଦନ ।
ଜାନକୀ ଉଠିଲେ ପୁତ୍ରକୁ କୋଳେ ଧରି
ଉର୍ମିଳାଙ୍କ କୋଳରେ ଦେଲେ ହସିକରି ।
ବୋଇଲେ ଏ ଧାଇମାତା ଅଟନ୍ତି ତୋହର
ଏହାର କୋଳରେ ବଡ଼ ନିଶ୍ଚିନ୍ତେ କୁମର ।
ଦାସୀଗଣଙ୍କୁ ଆଖିଠାରି ଦେଲେ ସୀତା
କୁଙ୍କୁମ ଲେପନ ଗୋ କର ଜଗଜିତା ।
ଶୁଣିଣ ମନୁମାୟା ବେଗେ ଚଳିଗଲା
ଦାସୀଗଣ ମେଳରେ କୁଙ୍କୁମ କଲେ ଲୀଳା ।

ଧୋବାତୁଠ ହାଟ ବାଟ ଯୂର ହେଲା
ଯେ ଯାହା ଦେଖିଲା ତାହା ଘେନିଗଲା ।
ଦାନପୁନ୍ୟ ଘରିଭାଇ ଦେଲେକ ବହୁତ
ଦୁଃଖୀ ଦରିଦ୍ରଙ୍କୁ ଯେ ଦେଲେ ଅନ୍ନବସ୍ତ୍ର ।
ସରଦାର ସେହ୍ନାପତିଙ୍କୁ ଦେଲେ ଯାନ ମାନ
ରକ୍ଷାପାଳମାନଙ୍କୁ ଦେଲେ ଧନପୁଣ ।
ସେଠାରୁ ଶ୍ରୀରାମ ନବରକୁ ଗଲେ
ଋଷି ବିପ୍ରମାନଙ୍କୁ ଭୁରି ଭୋଜନ ଦେଲେ ।
ଏଥୁ ଅନନ୍ତରେ ସପ୍ତଦିନ ବହିଗଲା
ସମସ୍ତଙ୍କୁ ମେଲାଣୀ କଲେ ଦଶରଥବଳା ।
ସେଠାରେ ସେଦିନ ରହିଲେ ଚାପଧାରୀ
ସୁମିତ୍ରାଙ୍କୁ ବୋଇଲେ ସମ୍ଭାଳ ତୁମ୍ଭପୁରୀ ।
ପ୍ରଭାତରୁ ଜାନକୀ ଘେନି ରଥେ ବସି
କଉଶଲ୍ୟା ସଙ୍ଗରେ ଷାଠିଏ ମାତାଯାନ୍ତି ।
ଅଯୋଧ୍ୟା ନବରେ ଯାଇ ହେଲେ ପରବେଶ
ଦେଖିଣ ସକଳେ ଯେ ହୋଇଲେ ହରଷ ।
ମାତାଗଣମାନେ ଘେନି ନବରେ ମିଳିଲେ
ଜାନକୀର କର ଧରି ରାମ ବିଜେକଲେ ।
ମର୍ଦ୍ଦନ ମାଜଣା ହେଲେ ସର୍ବେ ଜାଣ
ସୁବାସିତ ଜଳରେ କଲେକ ସ୍ନାହାନ ।
ଜାନକୀ ମାଜଣା ହୋଇଣ ସ୍ନାନକଲେ
ଛଡ଼ରସ ପ୍ରକାରେ ପାକ ସମ୍ପାଦିଲେ ।
ଅମୃତ ଯୋଗାଡ଼ କଲେକ ବଇଦେହୀ
ଦେବାର୍ଚ୍ଚନ ସାରିଣ ରାମ ବେଗେଯାଇ ।
ଛଡ଼ରସେ ଭୋଜନ କଲେ ରାମରାଣ
ଫଳମୂଳ ଭୁଞ୍ଜିଲେ ଋଷ୍ୟଶୃଙ୍ଗ ପୁଣ ।
ବିଡ଼ିଆ ଭୁଞ୍ଜିଣ ପଲଙ୍କେ ନିଦ୍ରାଗଲେ
ଆଳସ୍ୟ ଭାଙ୍ଗିଣ ବାହାରେ ସଭାକରି ।
ପାତ୍ରମନ୍ତ୍ରୀ ସାମନ୍ତ ସମସ୍ତେ ଆସିମିଳି
ଗହଳରେ ସଭା ହେଲା ଦିନ ଚାରି ।
କଶ୍ୟପ ବିମାନରେ ସକଳ ଥୋଇଲେ
ଋଷିଶୃଙ୍ଗ ଯାଇଣ ରଥରେ ବିଜେକଲେ ।
ମାତଳିକି ବୋଇଲେ ଛାଡ଼ି ଆସ ଯାଇଁ
ଶୁଣି କରି ମାତଳି ରଥବାହି ନେଇ ।
ସରଜୁ ଗଙ୍ଗା କୂଳେ ଋଷିର ମଠ ପୁଣ
ଛାଡ଼ି କରି ମାତଳି ଅଇଲେ ତତକ୍ଷଣ ।

ଏଥୁ ଅନନ୍ତରେ ଭଗବତୀ ପୁଣ
ଶ୍ରୀରାମ ଜାନକୀରେ ଅତି ସ୍ନେହ ପୁଣ ।
ଆନନ୍ଦରେ ରଜନୀ ଦିବସ ଯାଏ ପୁଣ
ବସନ କାଢ଼ି କୁଚ ଦେଖିଲେ ରାମରାଣ ।
କୁଚର ଉପରେ ଦିଶେ କଳା ତାଳ
ସୀତାର ମୁଖଗୋଟି ନିରସ ପ୍ରକାର ।
ଶ୍ରୀରାମ ପଚାରନ୍ତି ଶୁଣ ସଙ୍ଗାତୁଣୀ
ଅନୁଆନ ପ୍ରକାର ଦିଶେ ହେବେ ପୁଣି ।
ଜାନକୀ ବୋଇଲେ ଶୁଣ ପ୍ରାଣନାଥ
ଯେଉଁଦିନ ବରଦେଲେ ବିଭାଣ୍ଡକ ସୁତ ।
ବୋଇଲେ ଦୁଇ ପୁତ୍ର ତୁମ୍ଭେ ଜାତକର
ଚାରିହେ ଚାରି ଦୋହୀତା ଦେବ ମୋ କୁମର ।
ସେହିଠାରୁ ତିନିଦିନ ଉତ୍ତାରୁ ଯେ ଜାଣ
ରଜସ୍ବଳା ହୋଇଲି ସେହିଦିନ ପୁଣ ।
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ସପ୍ତମୀ ଦିନେ
ସେହିଦିନ ଗର୍ଭ ସ୍ଥାୟୀତ ହେଲା ମୋରେ ।
ଦୁଇମାସ ବାରଦିନ ଆଜକୁ ହୋଇଲା
ଏକଥାକୁ ମନୁମାୟା ଜାଣେ ଏକା ପରା ।
ଶୁଣିକରି ଶ୍ରୀରାମ ମନରେ ତୋଷ ହେଲେ
ପାର୍ବତୀ ଆଗେ ସଦାଶିବ ଯେ କହିଲେ ।
ବଳରାମ ଦାସ ମୁଁ ଯେ ଦାସୀ ହୋଇଥିଲି
ମନୁମାୟା ଠାରୁ ଯେ ଏକଥା ଶୁଣିଲି ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ଶ୍ରୀରାମ ଜାଣିକରି ବିଚାର କରନ୍ତି ।
ବୋଇଲେ ଋଷିଶୃଙ୍ଗ ଅଟନ୍ତି ତପେ ଟାଣ
ମୋ ପିତାକୁ ଚାରିପୁତ୍ର ଦେଲେ ସେହୁପୁଣ ।
ଏବେ ସେହି ମୋତେ ପୁତ୍ରଦାନ ଦେଲେ
ବତ୍ରିଶସିଂହାସନ ଉପରେ ଚଢ଼ାଇଲେ ।
ମନୁଷ୍ୟ ଜନ୍ମେ ଅହୀ ଟେକିଲା ଶିରେ ଫେଣ
ମୋ ବେନିପୁତ୍ରେ ମୋ ସଙ୍ଗେ କରିବେ ପୁଣ ରଣ ।
ଯାତନା ପୁରେ ମହିମା ହେବ ବଡ଼ଟାଣ
ଶ୍ରୀରାମଚନ୍ଦ୍ର ଚିତ୍ତେ କଥାକୁ ଚେତିଣ ।
ପ୍ରକାଶ ନ କରିଣ ଗୁପତ ଦେବ କଲେ
ସ୍ନେହରେ ଜାନକୀ କୋଳରେ ବସାଇଲେ ।
ଶ୍ରୀରାମ ବୋଇଲେ ସଖୀ ଉଦ୍ଧାରିଲୁ ମୋରବଂଶ
ବିରାଧିବୀର ପୁତ୍ର ତା ଗର୍ଭରୁ ହେବଜାତ ।

ଯାହାଇଚ୍ଛା ସଖୀରେ ତୋ ମନରେ ହେଲା
ସୂର୍ଯ୍ୟବଂଶ ସଖୀରେ ଉଦିତ ହୋଇଲା ।
ରଘୁବଂଶ ଗୋତ୍ରକୁ ଉଜ୍ଜ୍ୱଳ କଲୁ ସଖୀ
ସତମନେ ଦେଲେ ମୋତେ ଜନକ ମହର୍ଷି ।
ତେଣୁ ବିସ୍ତାର ହୋଇଲା କାକୁସ୍ଥ କୁଳ
ଧନ୍ୟ ଧନ୍ୟ ଜାନକୀ ତୋ ଜୀବନ ସୁଫଳ ।
ମୋହରେ ସୁଭାଗୀ ହେଲୁ ଆବର ପୁତ୍ରବନ୍ତୀ
ତୋର ନାମ ସୀତା ଦେଲେ ଲେଖି ପ୍ରଜାପତି ।
ତୁ ଏବେ ଜାନକୀ ଗୋ ହେଲୁ ଗର୍ଭବାସ
କେବଣ ପଦାର୍ଥକୁ ତୋହର ମୁହାଁସ ।
ଅପୂର୍ବ ପଦାର୍ଥ ସଖୀ ମାଗ କିନା ମୋତେ
ତିନି ଭୁବନରୁ ମୁଁ ଆଣି ଦେବି ତୋତେ ।
ସ୍ୱଭାବେ ବଶ୍ୟ ମୁଁ ଯେ ତୋହର କିନା
ପୁଣି ଶଶୀମୁଖୀ ଗୋ ପଦାର୍ଥ ମାଗ କିନା ।
ହସିଣ ଜାନକୀ ଯେ ବୋଲନ୍ତି ସ୍ୱାମୀକି
ବନ ପର୍ବତ ଭ୍ରମି ମୁଁ ଅଇଲି ଏଥିକି ।
ଅନେକ ଦୁଃଖରେ ଯେ ସେଥିରେ ନେଲିଦିନ
ଏବେ ଅନେକ ସମ୍ପଦ ଭୋଗକଲି ଜାଣ ।
ବିଚାରୁଛି ଥରେ ମୁଁ ବନକୁ ଯାଆନ୍ତି
ଋଷି ପୁତ୍ରମାନଙ୍କୁ ଦେଖି ମୁଁ ଆସନ୍ତି ।
ଗଙ୍ଗା କୂଳରେ ଋଷିମାନେ ଯେ ଅଛନ୍ତି
ଫଳ ମୂଳ ଖାଇଣ ତପରେ ଦିନ ନ୍ୟନ୍ତି ।
ସେମାନଙ୍କୁ ଦେଖିବାକୁ ଶରଧା ମୋହର
ଯେବେ ଆଜ୍ଞାଦେବ ହେ ହୋଇଲା ତୁମ୍ଭର ।
ସେ ଋଷିମାନଙ୍କୁ ଯେ ଫଳ ମୂଳ ଦେବି
ପାୟେପଡ଼ି ଶୋଇ ମୁଁ ସଦୟେ ମାଗିବି ।
ଜାହ୍ନବୀ ଜଳରେ ମୁଁ କରିବି ସ୍ନାହାନ
ପଞ୍ଚୁବିଧି ପ୍ରକାରେ ଦେବଇଁ ତହିଁ ଦାନ ।
ଦୁଇଦିନେ ଦେଖି ମୁଁ ଲେଉଟି ଆସିବି
ଏକଥା ସୁଲଭ ମୁଁ ଦେଖିଲେ ଭଲହେବି ।
ପ୍ରସନ୍ନ ହୋଇଲ ଯେବେ ଏକଥା ଆଜ୍ଞାକର
ଶୁଣି ଟହ ଟହ ହସିଲେ ରଘୁବୀର ।
ହଉ ହଉ ଜାନକୀ ଗୋ ଦିନାକେତେ ଯାଉ
ଲକ୍ଷ୍ମଣ ଆସିଲେ ବନ ସେ ଦେଖାଉ ।
ଏତେକହି ମଧୁବନ ଭିତରକୁ ଗଲେ
ତୋଟାରେ ପଶି ଫଳ ମୂଳ ସେ ତୋଳିଲେ ।
ଜାନକୀ ପିନ୍ଧିବାର ବସନ ଅଞ୍ଚଳ
ସେଥିରେ ରଘୁନାଥ ବାନ୍ଧିଲେ ଫଳମୂଳ ।
ବୋଇଲେ ଜାନକୀ ଗୋ ଭିତର ପୁରେ ନିଅ
ଯାହାକୁ ଇଚ୍ଛା ତୁମ୍ଭର ତାକୁ ନେଇ ଦିଅ ।
ଆମ୍ଭେ ଅବକାଶ ଯେ ବାହାର ଜଗତୀରେ
ତୁମ୍ଭେ ଚନ୍ଦ୍ର ବଦନୀ ଗୋ ଚଳ ଅନ୍ତଃପୁରେ ।
ଶୁଣିକରି ବଇଦେହୀ ଭିତରପୁର ଗଲେ
ଦାସୀଙ୍କି ଡାକିଣ ସେ ଫଳମୂଳ ଦେଲେ ।
ବେଶମାନ ମଳିଣ ବେଶ ଫିଟିଲଇଁ
ସଖୀମାନେ ହସନ୍ତି କୁହାକୁହି ହୋଇ ।
ଶୁଣିଣ ବଇଦେହୀ ପାଇଲେ ଯେ ଲାଜ
ଚନ୍ଦ୍ର ଦେଖି ଯେହ୍ନେ ମଳିଣ ସରୋଜ ।
ଶଙ୍କର ବୋଇଲେ ଗୋ ହେମବନ୍ତୀ ଶୁଣ
ବାହାରେ ଅବକାଶେ ହେଲେ ରାମରାଣ ।
ମର୍ଦ୍ଦନ ମାଜଣା ସାରି ମଣୋହି ଯାଇଁକଲେ
ଆଞ୍ଚୋବନ ସାରିଣ ତାମ୍ବୁଳ ଭୁଞ୍ଜିଲେ ।
ରବି ଅସ୍ତ ହୁଅନ୍ତେ ସନ୍ଧ୍ୟା ଦେବ ସାରି
ନିଅବକାଶେ ବିଜେକଲେ ରାବଣାରୀ ।
ବେଶ ହୋଇ ଜାନକୀ ମିଳିଲେ ରାମପାଶ
ଚନ୍ଦନ କର୍ପୂର ଶଯ୍ୟା ଯାକ ବାସ ।
ସୁବର୍ଣ୍ଣ ଡୁବାଇରେ ଚତୁଃସମ ଗୋଳି
ଶ୍ରୀରାମର ଅଙ୍ଗେ ନେଇ ଜନକ ଝିଅ ବୋଳି ।
ଶ୍ରୀଭୁଜ ଚରଣ ଯେ ପିଠି ପେଟ ହିଆ
ଶରଧାରେ ବୋଳି ନେଇଣ ଦେବୀ ପ୍ରିୟା ।
ଝୀନ ବସନରେ ମୁଖ ପୋଛି ନେଇ
କର୍ପୂର କସ୍ତୁରୀ ପାଣି ନେଇଣ ଘଷଇ ।
ବସନ୍ତ ତପନୀ ଯେ ପିନ୍ଧାଏ ଦେବୀ ଦେଇ
ଶ୍ରୀରାମଙ୍କର ଗଭା ବାନ୍ଧେ ଚାନ୍ଦମୁହୀଁ ।
ବିବିଧ ଅଳଙ୍କାର ଲାଇଲେ ରାମ ଅଙ୍ଗେ
ହାସ ପରିହାସ୍ୟେ ଯେ ହୁଅନ୍ତି ନାନାରଙ୍ଗେ ।
କପୋଳେ ମୃଗମଦ ଚିତା ନେଇ ଦେଲା
ଶ୍ରୀରାମଙ୍କ ମୁଖରେ ଚୁମ୍ବନ ରଞ୍ଜିଲା ।
ଦେଖିଣ ରଘୁନାଥ କୋଳ ନେଇ କଲେ
ମଦର ଉଚ୍ଛନ୍ନରେ ରଜନୀ ବଞ୍ଚିଲେ ।
ରଜନୀର ଶେଷ ସୀତା ଭିତର ପୁରଗଲେ
ଦାସୀଗଣେ ଆସିଣ ପ୍ରବେଶ ହୋଇଲେ ।

ଦାସୀମାନେ ବୋଲନ୍ତି ପୁତ୍ର ଜାତ ହୋନ୍ତୁ
ଲବ କୁଶ ମାତା ବୋଲି ସମସ୍ତେ ଡାକନ୍ତୁ ।
ଏ ବଚନ ଶୁଣିଣ ହସିଲେ ଦେବୀ ସୀତା
ଲାଜଭରେ ଜାନକୀ ନ କହିଲେ କଥା ।
ଶ୍ରୀରାମ ରହସ୍ୟରେ ସେଠାରୁ ଉଠିଗଲେ
ଶତେକ ଶାସନ ଦାନ ଦେବା ଯେ ବୋଇଲେ
ଅନ୍ନ ବସ୍ତ୍ର ପୁଣି ଯେ ପାଣି ପଣା ମାନ
ଦେଶେ ଦେଶେ ଶ୍ରୀରାମ ଦେଲେ ଅବିଚ୍ଛିନ୍ନ ।
ଦେବ ଆଳେ ପୂଜା ବ୍ରାହ୍ମଣେ ଭୋଜନ
ହୋମ ବିଧି ଦେବ କଲେ ସେ ଭିଆଣ ।
ଶ୍ରୀରାମ କହିଲେ ଯେ ଜାନକୀଙ୍କି ପୁଣ
ପୀରତି ଲୋକଙ୍କୁ ତୁମ୍ଭେ ନେଇ ଦିଅ ଦାନ ।
ଏତେ ବୋଲି ଶ୍ରୀରାମ ଦାନ ପୁଣ୍ୟ କଲେ
ସୀତାର ନିମନ୍ତେ ଧନ ବିଳୋହିଲେ ।
ଶ୍ରୀରାମ କହିବାର ସୀତା ଦେଲେ ଧନ
ଦୁଃଖୀ ହେ ଦରିଦ୍ରଙ୍କୁ ତୋଷ କଲେ ପୁଣ ।
ବଡ଼ ଦାଣ୍ଡମାନଙ୍କରେ ସୁବର୍ଣ୍ଣ ବୃଷ୍ଟି କଲେ
ଦେବତା ବ୍ରାହ୍ମଣରେ ଅନେକ ଦାନ କଲେ ।
ସକଳ ରାଜ୍ୟରେ ଦେଲେ ସଦାବର୍ତ୍ତ
ଲେଖିକରି ଦେଲେ କଉଶଲ୍ୟା ସୁତ ।
ଜନକ ରାଜା ଦେଇଥିଲେ ଯେତେ ଧନ
ଦୁଃଖୀ ଲୋକଙ୍କୁ ମହୀସ୍ଥଳୀ ନେଇ ଦେଲେଦାନ ।
ସାତଘଡ଼ି ରଜନୀ ସୁବର୍ଣ୍ଣ ଦାନ ଦେଲେ
ଅନ୍ନ ବସ୍ତ୍ର ବହୁତ ଘୃତ ବିଳୋହିଲେ ।
ଏଥୁ ଅନନ୍ତରେ ଯେ ଦଶରଥ ସୁତ
ନିତ୍ୟକର୍ମ ବିଧିମାନ ସାରିଲେ ତୁରିତ ।
ରାଜବେଶ ହେଲେ ରାମ ଦଣ୍ଡଧାରୀ
ଶିରେ ଶ୍ୱେତ ଛତ୍ର ସୁମନ୍ତ ତୋଳି ଧରି ।
ଶୂନ୍ୟରେ ଦୁନ୍ଦୁଭୀ ଯେ ଦେବେ ବଜାଇଲେ
ପାରିଜାତକ ପୁଷ୍ପ ହରଷେ ବରଷିଲେ ।
ଦେବନାରୀ ବୋଲନ୍ତି ଶ୍ରୀରାମଙ୍କୁ ଚାହିଁ
ଏଡ଼େ ପ୍ରଭୁ କିମ୍ପା ମଞ୍ଚରେ ଛନ୍ତି ରହି ।
ଅବିଚାରେ ବାସୁଦେବ ଅଯୋଧ୍ୟା ରହିଲେ
ଦେବତାମାନେ ଆମ୍ଭର ଅଜ୍ଞାନ ହୋଇଲେ ।
ବ୍ରହ୍ମାଣ୍ଡ ଠାକୁର ଏ ମନୁଷ୍ୟ ରୂପେ ରହି
ନର ବାନରଙ୍କର ଏ ସଙ୍ଗରେ ଅଛଇ ।

ଏହାଙ୍କୁ ଦେବେ ଯେବେ କରିବେ ଦୟାପୁଣ
ତେବେ ସ୍ୱର୍ଗପୁର ଆସିବେ ନାରାୟଣ ।
ଏମନ୍ତ ବଚନ ଯେ ଦେବୀଙ୍କ ଠାରୁ ଶୁଣି
ଜଗତ ପିତାମହ ବୋଲନ୍ତି ଯେ ପୁଣି ।
ଦଶ ସହସ୍ର ସାତଶ ବରଷ ଏବେ ଗଲା
ତିନିଶତ ବରଷ ରହିବେ ଦେବ ପରା ।
ଶୁଣିଣ ଦେବୀମାନେ ସନ୍ତୋଷ ହୋଇଲେ
ଦେବତାଙ୍କର ଆଗରେ ବିଧାତା କହିଲେ ।
ବୋଇଲେ ତାରାସତୀ ଦେଇଅଛି ଶାପ
ଚଉଦନ ବର୍ଷ ଶ୍ରୀରାମଙ୍କୁ ସୀତା ନୋହିବେ ପ୍ରାପ୍ତ ।
ଏଠାରେ ବାର ବରଷ ଅନ୍ତର କରାଇବା
ବୟାଳିଶି ବର୍ଷ ଥିବ ଆସିବେ ଦେବୀ ପରା ।
ବିଧାତାଠାରୁ ଏକଥା ଶୁଣିଲେ ଦେବତାଏ
ଏ ମଞ୍ଚରେ ରାଜାପଣ କରିବେ ଦେବରାୟେ ।
ଜନକ ଝିଅ ତ ହୋଇଛି ଗର୍ଭବାସ
ମା ଗର୍ଭରୁ ଶ୍ରୀରାମର ହୋଇବେ ଦୁଇ ଶିଷ୍ୟ ।
ସନ୍ତତି ଥୋଇଣ ଯେ ଆସିବେ ସ୍ୱର୍ଗ ପୁଣ
ଏତେ ବୋଲି ବିଧାତା କହିଲେ ବଚନ ।
ଦେବତାଏ ବୋଇଲେ ବିଧାତା ଅଟ ମନ୍ଦ
ଅସୁରଙ୍କୁ ବର ଦେଇ କଲ ନାନା ଛନ୍ଦ ।
ପରମବ୍ରହ୍ମ ପୁରୁଷଙ୍କୁ ମାନବେ ଜାତ କଲେ
ବନବାସ କରାଇ ଘରଣୀ ହରାଇଲେ ।
ଏବେ ସେ ଅଯୋଧ୍ୟା କଟକ ଭରା ଲଦି
ଏକଥା ଦେବ ତୋର ନୋହେ ଭଲ ବୁଦ୍ଧି ।
ଏହାଶୁଣି ବୋଇଲେ ସେହୁ ବେଦପତି
ମୁଁ ଛାର କିସ କରିବି ସେ ଅନନ୍ତ ମୁରତି ।
ତୁମ୍ଭେମାନେ ପରା ଶ୍ରୀରାମ କଥା ଜାଣ
ମୋତେ କିମ୍ପା ଦୋଷ ଦିଅ ହେ ଦେବଗଣ ।
ଶୁଣିଣ ଦେବତାଏ ବୋଇଲେ ବଚନ
ତୁମ୍ଭେ ଜଗତର ପିତା ଅଟ ଆହେ ପୁଣ ।
ଶୁଣି ପିତାମହ ବୋଲନ୍ତି ଯେ ହସି
ଅଳପ ଦିନେ ସ୍ୱର୍ଗକୁ ଆସିବେ ରଘୁବଂଶି ।
ନାରାୟଣ ମନ୍ତ୍ର ସୁମରଣା କରିବି
ବୈକୁଣ୍ଠ ଠାକୁରଙ୍କୁ ସ୍ୱର୍ଗକୁ ଆଣିବି ।
ଏମନ୍ତ ବିଚାର କରି ଭାଙ୍ଗିଲେ ସୁର ସଭା
ପିତାମହଙ୍କୁ ଚାହିଁଣ ବୋଇଲେକ ରମ୍ଭା ।

ଭୋଦେବ ବିଧାତା ଶ୍ରୀରାମଙ୍କୁ ବେଗେ ଆଣ
ବ୍ରହ୍ମା ବୋଇଲେ କିଛି ଦିନ ଗଲେ ପୁଣ ।
ଏଥୁ ଅନନ୍ତରେ ଅଯୋଧ୍ୟା କଟକରେ
ଶୂନ୍ୟରେ ସୁରଲୋକେ ଦେଖନ୍ତି ନିରନ୍ତରେ ।
ଆଗରେ ଶଙ୍ଖ ମହୁରୀ ବାଦ୍ୟ କୋଳାହଳ
ଖଦୀ ଚାମର ଆଲଟ ପଡ଼େ ନିରନ୍ତର ।
ସଧବା ସ୍ତିରୀମାନେ ହୁଳହୁଳି ଦ୍ୟନ୍ତି
ପାତ୍ରମନ୍ତ୍ରୀମାନେ ପଟୁଆର ଯେ କରନ୍ତି ।
ବାମେ କୋଦଣ୍ଡ ଦକ୍ଷିଣ କରେ ଖଡ଼୍ଗଧରି
ସିଂହାସନ ଉପରେ ବିକ୍ରମ ଗତି କରି ।
ସେଠାରେ ସଭା କରି ଭିତର ପୁର ଗଲେ
ନେତ ଶୁପାତି ସେ ଯାଇଣ ଯେ ବସିଲେ ।
ଧନୁଶର ଥୋଇଣ ବଶିଷ୍ଠଙ୍କୁ ଚାହିଁ
ତୁମ୍ଭେ ଋଷିମାନେ ନ ବସ କାହିଁ ପାଇଁ ।
ଯାବାଳି ମୂଳରେ ସାମନ୍ତ ଭଟ୍ଟମିଶ୍ର
ବାଜପେଇ ଯାଗ କଲେ ବ୍ରାହ୍ମଣ ସମସ୍ତ ।
ଶ୍ରୀରାମ ଆଜ୍ଞାରେ ବସିଲେ ସର୍ବଜନ
ଆବରହିଁ ଯେତେକ ଥିଲେ ତପୀଜନ ।
ପାତ୍ରମନ୍ତ୍ରୀମାନେ ସେ ସଭାରେ ବସିଛନ୍ତି
ନାନାରଙ୍ଗରେ କଥା କୁହାକୁହି ହୋନ୍ତି ।
ଶ୍ରୀରାମ ବୋଲନ୍ତି ତୁମ୍ଭେ ସମସ୍ତେ ହେ ଶୁଣ
ଆମ୍ଭେ ରାଜ୍ୟ କଲୁ ଦଶସସ୍ର ସାତଶ ବର୍ଷଜାଣ ।
ଦଶସସ୍ର ବରଷ ଯେ ଅଟଇ ପ୍ରମାଣ
ଅଧିକ ସାତଶ ବର୍ଷ କିମ୍ପା ହେଲା ଆମ୍ଭରେଣ ।
ବଶିଷ୍ଠ ବୋଇଲେ ଶୁଣ ହେ ରାମ ରାହୁ
ପିତା ନାଶ ଗଲେ ନବସସ୍ର ବରଷରେ ସେହୁ ।
ସହସ୍ରେ ବରଷ ପିତାର ଆମ୍ଭେ ଭାଗ
ଆହୁରି ତିନିଶତ ବରଷ ଅଛି ଯୋଗ ।
ଅକଣ୍ଟକ ରାଜ୍ୟ ତୁ ଅଯୋଧ୍ୟା ଭୋଗ କଲୁ
ତିନିପୁର ଲୋକଙ୍କୁ ଅଭୟେ ବର ଦେଲୁ ।
ମହା ସୁଖରେ ବଞ୍ଚିଲେ ଅଯୋଧ୍ୟା ନରନାରୀ
ତୋତେ ସେବା କରନ୍ତି ଲକ୍ଷେ ଦଣ୍ଡଧାରୀ ।
ରଘୁକୁଳ ମଣ୍ଡନ ତୁମ୍ଭେ ଅଟ ହେ ରଘୁନାଥ
କେତେ ତପ ପୂର୍ବେ କରିଥିଲେ ଦଶରଥ ।
ତୁମ୍ଭ ପରା ପୁତ୍ରଯେ ପାଇଲେ କଉଶଲ୍ୟା
ଅଯୋଧ୍ୟା ଲୋକଙ୍କର ପଣ୍ୟ ବିକଶିଲା ।

ସମସ୍ତେ ପ୍ରଶଂସା କଲେକ ଅନେକ
ରହ ବୋଇଲେ ଯେ ଅଯୋଧ୍ୟା ନାୟକ ।
ଏତେକାଳ ମୁଁ ଯେ ଏଥିରେ ରାଜା ହେଲି
କାହାରି ତୁଣ୍ଡରେ ମୁଁ ଯେ ନିନ୍ଦା ନ ଶୁଣିଲି ।
ତୁମ୍ଭେ ଶୁଣିଥିଲେ କହ ଦୋଷ ନାହିଁ କିଛି
ସମସ୍ତେ ବୋଇଲେ ତୋତେଦେବକେ ଅପଖ୍ୟାତି ।
ତୁମ୍ଭେ ପୁଣ୍ୟ ପୁରୁଷ ହେ ପାପ ପୁଣ୍ୟ ଜାଣ
କେ ତୋତେ ମନ୍ଦ ଯେ ବୋଲିବ କେଉଁ ଗୁଣ ।
ଶ୍ରୀରାମ ବୋଲନ୍ତି ହେ ଏହି ନଗ୍ର ମଧେ
କେଉଁମାନେ ହିଂସା ଯେ ବିଚାରେ ମନ ମଧେ ।
ନାହିଁ ଦେବ ବୋଲି ଯେ କହିଲେ ସଭାଜନ
ଶ୍ରୀରାମ ବୋଇଲେ ତୁମ୍ଭେ ସମ୍ଭାଳ ସାଧୁଜନ ।
ବଶିଷ୍ଠ ବୋଇଲେ ତୁମ୍ଭେ ଅଟ ଯେ ଶୀତଳ
ତୁମ୍ଭର କୁଳକୁ ନିନ୍ଦା କରିବେ କେଉଁ ଛାର ।
ଯେବଣ କୀରତି ରାଜ୍ୟେଣ ତୁମ୍ଭେ କଲ
ଉପର ତଳକୁ ଯେ କଥା ରୁହାଇଲ ।
ଶ୍ରୀରାମ ବୋଇଲେ ତୁମ୍ଭେ କହିଲ ଯାହା ସତ
ଗୁଣ କଲେ ଅବିଗୁଣ ପାଆନ୍ତି ଲୋକେତ ।
ଚନ୍ଦ୍ର ଦେବତା ଯେ କଳଙ୍କ ବହିଲେ
ତୀର୍ଥର ଜଳ ସମୁଦ୍ର ଅଭକ୍ଷ ହୋଇଲେ ।
ପବନ ଦେବତା ଯେ ଅଟନ୍ତି ଅସୁନ୍ଦର
ଶୁଖିଲା କଅଁଳଇ ବହିଲେ ଶୀତଳ ।
ଏପୁର ମେଦିନୀ ଯେ ଗରଳ ଦେହ ବହେ
କୌଣସି ପ୍ରକାରେ ନିଷ୍କଳଙ୍କ ନୋହେ ।
ଅବଶ୍ୟ ଅବିଗୁଣ ଯେ ଅଛଇ ମୋହର
ମୁହିଁକି ଏ ସଂସାରୁ ହୋଇଲି ବାହାର ।
ଅବଶ୍ୟ ମୋରଠାରେ ଥିବ ଅବିଗୁଣ
ଡରି ତୁମ୍ଭେମାନେ କେ ନକହ ଆଗେଣ ।
ଏକଥା ମାନ ଯହୁ କହିଲେ ରାବଣାରି
କରଯୋଡ଼ି ଆଗେ ସୁମନ୍ତ କହେ ଫେରି ।
ଏ ପୃଥିବୀ ମଧରେ ତୋତେ ଅପଖ୍ୟାତି ନାହିଁ
କଥା ଏକ କେବଳହେ ଅଛି ରଘୁସାଇଁ ।
ନୀଚ ଲୋକମାନେ ହେ କରନ୍ତି ପ୍ରକାଶ
ସେ କଥା କହିଲେ ଲାଗିବ ମୋତେ ଦୋଷ ।
ଭଲ ଲୋକଙ୍କ ମୁଖୁ ଶୁଣିଲାତ ନାହିଁ
ଖୁନ୍ଦର ଲୋକ ବେଢ଼ି କହନ୍ତି ଗୋସାଇଁ ।

ଶୁଣିଣ ଶ୍ରୀରାମ କମ୍ପିଲା ଶରୀର
ସାକ୍ଷାମେ ପୁଚ୍ଛାକଲେ କହ ମନ୍ତ୍ରୀବର ।
ନ କର ଗୁପତ ତୁ କହ ଭୟ ଛାଡ଼ି
ଶୁଣି କରି ସୁମନ୍ତ୍ର କହେ କରଯୋଡ଼ି ।
ଶ୍ରୀରଘୁନନ୍ଦନ ଯାହା ପଚ୍ଚରିଲେ ଶୁଣ
ସମୁଦ୍ରେ ସେତୁବନ୍ଧ ବାନ୍ଧିଛ ଆପଣ ।
ଜମ୍ବୁଦ୍ୱୀପରେ ତୋତେ ପ୍ରଶଂସା କରନ୍ତି
ତିନିପୁରେ ସାଧୁ ରାମ ବୋଲିଣ କହନ୍ତି ।
ଚ୍ଚରି ରାବଣର ବଂଶ ଆପଣେ ନାଶ କଲ
ସ୍ୱର୍ଗରେ ଦେବତାଙ୍କୁ ଅଭୟ ବର ଦେଲ ।
ସେ କଥାକୁ ଲୋକେ ସୁମରନ୍ତି ଏଥି
ସୀତାଙ୍କୁ ଆଣିବା କଥା ମନ୍ଦ ଯେ ବୋଲନ୍ତି ।
ଶୁଣିଣ ଶ୍ରୀରାମ ବୋଲନ୍ତି ଏତେ କହ
ସେକଥା ଶୁଣିଲେ ମୋର ସ୍ଥିର ହେବ ଦେହ ।
ମନ୍ତ୍ରୀ ବୋଇଲେ ଦେବ ଶୁଣ ରଘୁପତି
ଲୋକେ ବୋଲନ୍ତି ସୀତା ଦିଶିଲା ଯୁବତୀ ।
ରାବଣର ଘରେ ଚଉଦମାସ ଥିଲା
ଅସୁରଙ୍କ ସଙ୍ଗରେ ଏକାରେ ଦିନ ନେଲା ।
ସେ ପୁରରେ ଭଲାରେ ସୀତା ଥିଲେ ରହି
ସେ ଗରିଷ୍ଠ ଅସୁର ନେଲା ଲୋଭବହି ।
ଠାକୁରାଣୀ ବୋଲି ନ ଚିହ୍ନନ୍ତି ଲୋକମାନେ
ପାଞ୍ଚସାତ ବସିଣ ବିଚ୍ଚର କଲେ ମନେ ।
ରାଜା ମନ କଲେ କି ନ ମିଳେ ତାକୁ ରାଣୀ
ଯାଚି ଝିଅ ଦିଅନ୍ତେ ଋଷିମାନେ ପୁଣି ।
କେଉଁ ଗୁଣରେ ଶ୍ରୀରାମ ଜାନକୀରେ ବଶହେଲେ
ରଘୁବଂଶ କୁଳରେ କଳଙ୍କ ଲଗାଇଲେ ।
ଏମନ୍ତ ବଚନ ଯେ ବୋଲନ୍ତି କ୍ଷୁଦ୍ରଜନ
ଶୁଣି ଅଳ୍ପ ହସିଲେ ଦଶରଥ ନାନ ।
ବୋଇଲେ ଏ କଥା ମୁଁ ପୂର୍ବରୁ ଅଛି ଜାଣି
ଏକବ୍ରତୀ ସକାଶେ ଆଣିଲି ଜନକ ନନ୍ଦିନୀ ।
ଏ ଜନ୍ମରେ ଅନ୍ୟ ଭାରିଯା ନାହିଁ ଯେଣୁ
ତାରଠାରେ ଶରଧା ମୋର ଅଟେ ତେଣୁ ।
ଦିନେକ କଟକ ମୁହିଁ ଯେ ବୁଲିଗଲି
ରଜନୀରେ ବୁଲି ମୁଁ ସବୁ ଯେ ଜାଣିଲି ।
ସାତପାଞ୍ଚ ବସିଣ କୁହା କୋହି ହୋନ୍ତି
ସେମାନେ ଯାହା କହିଲେ ସେକଥା ମୁଁ ଚେତି ।

ଏକଥା କହିଲୁ ତୋର କିଛି ଦୋଷ ନାହିଁ
ଏତେ ବୋଲି ଆସ୍ଥାନରୁ ଉଠିଲେ ରଘୁସାଇଁ ।
ବେହେରା ଖୁଣ୍ଟିଆକୁ ହକାରିଲେ ପାଶ
ବୋଇଲେ ଲକ୍ଷ୍ମଣକୁ ଯାଇଣ ଘେନି ଆସ ।
ଶୁଣିଣ ଦ୍ୱାରପାଳ କହନ୍ତି ଉତ୍ତର
କାଞ୍ଚି କାବେରୀରେ ଅଛି ଲକ୍ଷ୍ମଣ ଭାଇ ତୋର ।
ଶୁଣିଣ ଶ୍ରୀରାମ ଯେ ମାରୁତିକି ଚ୍ଚହିଁ
ବୋଇଲେ ଲକ୍ଷ୍ମଣକୁ ଘେନି ଆସ ଯାଇଁ ।
ଶୁଣିଣ ମାରୁତି ଯେ ବେଗ ହୋଇଗଲା
କାବେରୀ ଦେଶରୁ ଲକ୍ଷ୍ମଣଙ୍କୁ ଆଣିଲା ।
ଅଯୋଧ୍ୟା କଟକରେ ହେଲେ ପରବେଶ
ଶ୍ରୀରାମଙ୍କୁ ଦର୍ଶନ କଲେ ସୁମିତ୍ରାର ଶିଷ୍ୟ ।
ଦେଖି କରି ରୋଦନ କଲେ ରଘୁରାଣ
ଲକ୍ଷ୍ମଣ ବୋଇଲେ ଦେବ କିମ୍ପାଇଁ କାରୁଣ୍ୟ ।
କର ଦୁଇ ଯୋଡ଼ିଣ ବୋଇଲେ ଲକ୍ଷ୍ମଣ
କେବଣ କାରଣେ ଶୋକ କର ହେ ରଘୁରାଣ ।
କିସ ଯେ ଉତପାତ ଜନମ ହେଲା ଆଜ
ତୁମ୍ଭ ନୟନରୁ ଲୋତକ ପଡ଼େ ରଘୁରାଜ ।
ଶ୍ରୀରାମ କହନ୍ତି କାନ୍ଦିବାର ଛାଡ଼ି
ବିକଳ ହୋଇଣ କହନ୍ତି ଆଗ ଚଢ଼ି ।
ବୋଇଲେ ଲକ୍ଷ୍ମଣରେ ଶୁଣ ମୋର ବୋଲ
ତୁମ୍ଭେ ତିନି ଭାଇରେ ଏକୁ ଏକେ ବଳ ।
ମୋତେ ବଳବନ୍ତ ପଣରେ ନୋହେ ସରି
ତିନି ଭୁବନରେ ମୋର ମହିମା ବିସ୍ତାରି ।
ଐଶ୍ୱର୍ଯ୍ୟ ଭୋଗରେ ତିନି ଦିଗରେ ରାଜା
ଉତ୍ତମ କରି ମୁହିଁ ପାଳଇ ପରଜା ।
ମୁହିଁ ଦେବଙ୍କର ପାଇଁ ବହେ ରାଜ୍ୟଭାର
ଏଥିରେ କିସ କାର୍ଯ୍ୟ ଅଛଇ ମୋହର ।
ବନ ଯେ ପର୍ବତ ରାଜ୍ୟର ସୁଖଶିରୀ
ମୁହିଁ ଏହା ମଣଇ ସଭିଏଁ ଏକ କରି ।
ଦେବଙ୍କର ଉପକାରେ ରାଜ୍ୟ ମୁଁ ପାଳଇ
ସର୍ବଦାକାଳେ ମୁଁ ଅପକୀର୍ତ୍ତିକୁ ଡରଇ ।
ଏ ରାଜ୍ୟେ ଅଦୋଷେ ହେଲେ ମୋତେ ଦୋଷ
ତୁମ୍ଭେମାନେ ଯହିଁ ମୋର ଭାଇ ଯେ ବିଶ୍ୱାସ ।
ସୀତାର ପାପ ପୁଣ୍ୟ ତୁହି ସିନା ଜାଣୁ
ଚଉଦ ବର୍ଷ ତୁ ଲକ୍ଷ୍ମଣ ସଙ୍ଗରେ ଥିଲୁ ଯେଣୁ ।

ସ୍ନେହକରି ଜାନକୀ ତୋତେ ନ କହଇ କଥା
ମୋତେ ଯେତେବେଳେ କହେ ଟେକିଣହିଁମଥା ।
ରାବଣ ଆସିଣ ଯେ କପଟେ ଘେନିଗଲା
ଅଶୋକ ବନରେ ନେଇ ଘେରାଇ ଥୋଇଲା ।
ବିଭୀଷଣ ଝିଅ ଯେ ତ୍ରିଜଟା ଥିଲା ରଖି
ମୁଦି ନେଇ ହନୁମାନ ଲଙ୍କାଗଡ଼େ ଦେଖି ।
ଉତ୍ତରକୁ ମୁଖ କରି କାନ୍ଦୁଥିଲା ସୀତା
ଅବିଚ୍ଛନ୍ନେ ଚିନ୍ତାକରେ ଜନକ ଦୁହିତା ।
ସହେସ୍ର ଅସୁରୀ ଯେ କହନ୍ତି ମଣାଇ
ଏହି ସମୟରେ ଯେ ମିଳେ ଲଙ୍କସାଇଁ ।
ବିଶ୍ରବାର ନନ୍ଦନ ବିନୋଇ କହିଲା
କେଭେ ବଇଦେହୀ ତାକୁ କଥା ନ କହିଲା ।
କୋପଭରେ ରାବଣ ଖଡ଼ଗ ଉଞ୍ଚାଇ
ବିଭୀଷଣର ଝିଅ ତ୍ରିଜଟା ଜଗଇ ।
ଦୁଇମାସକୁ ରାବଣ ସୀତାକୁ କଣ୍ଟକରି
ବୋଇଲା ନିଶ୍ଚୟ ତୋତେ ଖାଇବି ମୁଁ ମାରି ।
ଘରଣୀ ମୋର ହୁଅ ନୋହିଲେ ସ୍ୱାମୀ ଦେଖା
ଏ ଦୁଇକଥା ନକଲେ ପ୍ରାଣ ତୋର ମୂର୍ଚ୍ଛା ।
ଏତେ କହି ରାବଣ ନିଜପୁର ଗଲା
ଏକଥା ହନୁମନ୍ତ ସେଠାରେ ଶୁଣିଥିଲା ।
ଆରଦିନ ମୁଦି ଦେଇ ଆଣିଲାକ ମଣି
ପାପ ପୁଣ୍ୟ ସବୁ ତାର ହନୁମନ୍ତ ଜାଣି ।
ବେନି ମାସକୁ କଣ୍ଟ ଦେଲା ଦଶଗିରି
କଣ୍ଟ ନ ପୁରୁଣୁ ମୁଁ ରାବଣ ଦେଖିଲି ।
ଘରି ରାବଣଙ୍କୁ ମାରି ଆଣିଲି ମୁଁ ସୀତା
ରଣ ସରିବାରେ ଜାନକୀକି କହିଲେ ମନ୍ଦକଥା ।
ଦୋଷୀ ହେଲା ଭାରିଯାକୁ କେମନ୍ତେ ମୁଁ ନେବି
କେମନ୍ତେ ସତୀକି ମୁଁ ନେଇ ବିଳସିବି ।
ଏକଥା ଶୁଣି ତ୍ରିଜଟା ନିୟମ ଆସି କଲା
ସୀତାର ଦୋଷ ନାହିଁ ବୋଲିଣ ବୋଇଲା ।
ସହସ୍ରେ ଅସୁରୁଣୀ ଜଗି ତାକୁ ଥିଲେ
ସେହି ମୋର ମସ୍ତକ ଛୁଇଁଣ କହିଲେ ।
ବିଭୀଷଣ ମନ୍ଦୋଦରୀ ଦଇତ୍ୟ ଦଇତୁଣୀ
ମୋର ପାଦ ଛୁଇଁଣ କହିଲେ ସେହି ପୁଣି ।
ବୋଇଲେ ଅପାପୀ ଏ ଜନକ କୁମାରୀ
ନାନ ପରକାରେ କହିଲେ ଘଟୁ କରି ।

ତାଙ୍କର ବୋଲକୁ ମୁଁ ନ ମଣିଲି ହିତ
କୋପରେ ଲକ୍ଷ୍ମଣକୁ ମୁଁ ବୋଇଲି ସତ ।
ସଉମିତ୍ରୀ ତୁହିରେ ଅଗ୍ନି ଜାଳି ଦିଅ
ଯେମନ୍ତେ ପ୍ରତେ ଯାନ୍ତି ସକଳ ରାଜା ପ୍ରିୟ ।
ଶୁଣିକରି ଜାନକୀ ବୋଇଲେ ବଚନ
ନର ବାନର ଅସୁର ଅଛନ୍ତି ଏହି ସ୍ଥାନ ।
ତ୍ରିଦଶ ଦେବତାଏ ପିତୃଲୋକ ପୁଣ
ଶୁଣି କରି ଦେବତାଏ ଅଇଲେ ତତକ୍ଷଣ ।
ପିତୃ ଲୋକ ନାଗ ଦେବତା ବ୍ରହ୍ମାଶିବ
ଘରି ସଭା ଲଙ୍କାରେ ବୋଇଲାକ ଭାବ ।
ତୁ ଯାଇ ଧରଣୀକି ଧଇଲୁ ପାତାଳେ
ଜାନକୀ ଅଗ୍ନିରେ ଯେ ପଶିଲେ ସେ କାଳେ ।
ନୀଳାବତୀ ମାତା ଆମ୍ଭ ସଙ୍ଗତରେ ଥିଲା
ମୋ ପିତା ସଙ୍ଗରେ ସ୍ୱର୍ଗକୁ ସେ ଗଲା ।
ଅଯୋଧ୍ୟାରେ ଆସି ଯେ ହେଲୁଁ ପରବେଶ
ନର ବାନର ଅସୁର ଦେବତା ପିତୃଲୋକ ।
ଅଭିଷେକ ବେଳରେ ସମସ୍ତେ ଥିଲେ ପୂରିଣ
ମୋ ମାତା ପିତା ସଙ୍ଗେ ସ୍ୱର୍ଗ ଗଲେ ଜାଣ ।
ଦୁଇସହସ୍ର ବରଷ ଏଥିରେ ବହିଗଲା
ତିନି ଭାଇଙ୍କି ଜାନକୀ ରାଜାପଣ ଦେଲା ।
ଦଶସସ୍ର ସାତଶ ବରଷ ଗଲା ପୁଣ
ଛଡ ପୁତ୍ର ଜାନକୀ ଧଇଲେ କୋଳେଣ ।
ଏବେ ଗର୍ଭବାସ ଯେ ହୋଇଲା ଜାନକୀ
ରାଜ୍ୟରେ ଅପଖ୍ୟାତି ଦେଲେରେ ସୌମିତ୍ରୀ ।
ବୋଇଲେ ଅସୁର ଯେ ଜାନକୀ ହରିନେଲା
ଚଉଦ ମାସ ନେଇ ଲଙ୍କାରେ ରଖିଲା ।
ସେ ଭାରିଯାକୁ ରାମ ଆଣିଲେ କିସ ପାଇଁ
ଅସୁରର ପୁରେ କି ଜାନକୀ ସ୍ଥିର ହୋଇ ।
ଜଣେ ଥିଲେ ସିନା ଗୁପତ କଲେ ପୁଣ
ସେ ଭାରିଯା ଆଣି ବିଳସେ ରାମରାଣ ।
ଏ ନଗ୍ର ଲୋକ ମୋତେ ଏମନ୍ତ ବାଣୀ କହି
ଗର୍ଭ ଭାରି ନ ଥିଲେ ଅଗ୍ନି ପରୀକ୍ଷା ହୁଅନ୍ତାଇ ।
ଦେଖୁ ଦେଖୁ ଅନ୍ଧ ଯେ ଅଯୋଧ୍ୟା ପୁରବାସି
ନୀଚ ଲୋକ ସିନାରେ ନୁହନ୍ତି ଘରୁହଂସୀ ।
ଏହାଙ୍କର ଯୋଗରୁ ସୀତା ମାଗିଲାମୋତେ ପୁଣ
ବୋଇଲା ଋଷିମାନଙ୍କୁ ଦେଖିବି ଥରେ ଜାଣ ।

ଋଷିମାନଙ୍କୁ ଫଳ ମୂଳ ମୁଁ ଦେବି ପୁଣ
ଗଙ୍ଗାରେ ସ୍ନାନ କରି ଆସିବି ଭୁବନ ।
ଲୋକ ନିନ୍ଦା ମୋତେରେ ହୋଇଲା ବଡ଼ ଗରୁ
ଲୋକ ଅପବାଦରେ ନ ସହେ ମହାମେରୁ ।
ଗର୍ଭ ପାଞ୍ଚ ମାସରେ ଅଟଇ ତାହାର
ବାଲମିକ ମଠେ ରଖି ଆସି ଯା ସତ୍ୱର ।
ଜନକର ଭାଇ ଯେ ବାଲମୀକ ଋଷି
ଜାନକୀଙ୍କ ସୋଦର ସେ ଅଟେ ସୋଦରଟି ।
ଗଙ୍ଗା ପାରି କରିଣ ଛାଡ଼ିଆସ ବେଗ
ଶୁଣିକରି ଲକ୍ଷ୍ମଣ ହୋଇଲେ ସ୍ତବଦ ।
ବୋଇଲେ ଶ୍ରୀରାମ ହେ ଜାନକୀ କିମ୍ପା ଯିବେ
ତୋତେ ଯେବେ ଦାଶରଥି ଲଜ୍ୟାହେଲା ଏବେ ।
ଶତେ କଟକ ଯେ ଅଟଇ ତୋହର
ହସ୍ତୀନା ମଧୁପୁରରେ ରହ ରଘୁବୀର ।
ନୋହିଲେ ଭରଥପୁରେ ବିଷ୍ଣୁପୁରେ ରହ
ନୋହିଲେ ଗଜୀନ୍ଦ୍ରପୁରେ କାଞ୍ଚିରେ ଦିନ ନିଅ ।
ଶ୍ରୀରାମ ବୋଇଲେ ଶୁଣରେ ଲକ୍ଷ୍ମଣ
ଜାନକୀ ଦେବାରେ ସିନା ତୁମ୍ଭର ବଡ଼ପଣ ।
ପଞ୍ଚମ ବଟ ମୂଳରେ ଯେ ଜାନକୀ ମନାସିଲା
ମୋ ତିନି ଦିଅର ରାଜା ହୁଅନ୍ତୁ ବୋଇଲା ।
ଦୁଇ ସହସ୍ର ବରଷ ଏଥିରେ ଦିନ ଗଲା
ଜାନକୀ ମନାସରେ ତୁମ୍ଭଙ୍କୁ ସେପୁର ଦିଆଗଲା ।
ଏପରି ପିତା ଯେ ସନ୍ତୋଷେ ଦେଲେ ମୋତେ
ଦେବକାର୍ଯ୍ୟ ନିମନ୍ତେ ଗଲା ଦିନା କେତେ ।
ପିତାର କହିବା କଥା ଅଟଇ ମୋର ମୂଳ
ଶୁଣିକରି ଲକ୍ଷ୍ମଣ ହୋଇଲେ ଶୀତଳ ।
ବିଚାରିଲେ ଦେବେ ଏବେ କୂଟକୁ ରଞ୍ଚିଲେ
ବୈକୁଣ୍ଠକୁ ନେବା ପାଇଁ ସଙ୍ଗ ଛଡ଼ାଇଲେ ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ବାର ବରଷ ବନକୁ ଯିବେ କମଳାଟି ।
ଏତେ କହି ଶ୍ରୀରାମ ବିଜେ କରି ଗଲେ
ଅନ୍ତଃପୁରେ ଯାଇଣ ପ୍ରବେଶ ହୋଇଲେ ।
ଦୂରୁ ଦେଖି ଜାନକୀ ସ୍ୱାମୀରେ ଓଳଗିଲେ
ନିକଟକୁ ଆସିଣ ଚରଣ ଧୋଇଦେଲେ ।
ଆପଣେ ଶ୍ରୀରାମ ତୋଳିଲେ ହସ୍ତ ଧରି
ପ୍ରିୟ କଥାମାନ ଯେ କହନ୍ତି ପ୍ରିୟକରି ।

ଜାନକୀ ବୋଇଲେ ତୁମ୍ଭେ ଶୁଣହେ ରାମରାଣ
ଆଜତ ଶ୍ରୀମୁଖଟି ଶୁଖିଅଛି ପୁଣ ।
ଶ୍ରୀରାମ ବୋଇଲେ ତୁମ୍ଭେ କାଲି ଯିବ ବନ
ଗଙ୍ଗାକୂଳେ ଋଷିଙ୍କି ଦେଖିବ ତୁମ୍ଭ ମନ ।
ତେଣୁ ଆକୁଳରେ ଭୋଳ ମୋର ଚିତ୍ତ
କାଲି ଦିବସ ମୋତେ ହେବ ପୁଣ ସାତ ।
ତୋତେ ନଦେଖି ସଖୀ କେମନ୍ତେ ଦେହ ଧରିବି
ସାତପାଞ୍ଚ ନାହିଁ ଯେ ଏକା ତୁ ସୁଲୁଭୀ ।
ତୋତେ ନଦେଖି ଦେହ ମୁଁ କେମନ୍ତେ ଧରିବି
ତୋହର ଅଇଲେ ମୁଁ ଅନ୍ନ ଯେ ଭୁଞ୍ଜିବି ।
ତୋହର ଆସିବା ଯାଏ ମୋର ଫଳ ମୂଳ
ଶୁଣିକରି ଜାନକୀ ହୋଇଲେ ବିକଳ ।
ତୁମ୍ଭର ଯେବେ ବ୍ୟାକୁଳ ହେଉଛି ମନ
ମୁହିଁ ସେ ବନକୁ ଯିବାର ଅକାରଣ ।
ମୁହିଁ ସେ ତପୀମାନଙ୍କୁ ନ ଦେଖଇ କିନା
ସବୁ ଧର୍ମ ମୋହର ପାଦପଦ୍ମ ସିନା ।
ରାଘବ ବୋଇଲେ ମୁଁ ସତ୍ୟ କରିଅଛି
ଅବଶ୍ୟ ବନକୁ ଗୋ ଯିବୁ ମୃଗାକ୍ଷୀ ।
ତପୀମାନଙ୍କୁ ଦେଖ ତୁ ବେଗେ ଯାଇ
ଏ ଶ୍ରଦ୍ଧା ତୋହର ଗୋ ମୋର ହିତ ହୋଇ ।
ଶୁଣିଣ ମହୀସୁଳୀ ଯେ ଆନନ୍ଦ ହୋଇଲା
ମର୍ଦ୍ଦନ ମାଜଣା ଦେବୀ ବହନ ହୋଇଲା ।
ଦାସୀମାନେ ଆସିଣ ମାଜଣା କରାଇଲେ
ଦେବାର୍ଚ୍ଚନ ସାରିଣ ମଣୋହି ଯାଇ କଲେ ।
ଛଡ଼ରସେ ଭୋଜନ କରି ସନ୍ତୋଷ ହୋଇଲେ
ମୁଖ ପଖାଳିଣ ଆଞ୍ଚୋବନ କଲେ ।
ଦାସୀମାନେ ଆସିଣ ବିଡ଼ିଆ ଭୁଞ୍ଜାଇଲେ
ଜନକ ଦୋହିତା ଅନ୍ତଃପୁରକୁ ଯେ ଗଲେ ।
ଏଥୁଅନନ୍ତରେ ପ୍ରଭୁ ରାମରାଣ
ସୁଖାସନ ଉପରେ ବିଜୟ ଯାଇଣ ।
ନବର ଫେରିବାକୁ ରାମ ବିଜେ କରି
ବାଜଇ ଟମକ ନିଶାଣ ମଙ୍ଗଳ ମହୁରୀ ।
ପଛେ ପଛେ ଲକ୍ଷ୍ମଣ ଆଗରେ ପାତ୍ର ମନ୍ତ୍ରୀ
ସଙ୍ଗରେ ସାମନ୍ତମାନେ ବିଜେ କରିଛନ୍ତି ।
ଆଲମ୍ବ ପାଟଛତ୍ର ବିମଳ ପନ୍ତି ପନ୍ତି
ବିଶିଷ୍ଟ ଚଉଦୋଳେ ବିଜେ କରିଯାନ୍ତି ।

ସୁମନ୍ତ ପୁତ୍ର ଯେ ଚିତ୍ରସେନ ବୀର
ଅଗୁରୁ ଧୂପକାଠି ଧରିଅଛି କର ।
ସେବାକାରୀମାନେ ଛତ୍ର ଯେ ଧଇଲେ
ଖୁଣ୍ଟିଆ ପଢ଼ିହାରୀ ହେଲୁ ହେଲ ବୋଲେ ।
ଆବର ଅମନାତ୍ୟ ଚାମର ଧରିଛନ୍ତି
ଯାବାଳି ପୁତ୍ର ବିଡ଼ିଆ ଲାଗି ଯେ କରନ୍ତି ।
ଧୀର ଧୀର ହୋଇ ବିଜେ ରାମରାୟେ
ନଗ୍ରର ନରନାରୀ ଦେଖିବାକୁ ଧାଏଁ ।
ରଥ ଗଜ ଘୋଡ଼ା ଗହଳ ପଦାତି
ଯାନ୍ତେଣ କୁସୁମ ପାଖୁଡ଼ା ଆଗରେହୋଏ ବୃଷ୍ଟି
ପାନୀର ପାଣି ଗୋଳିଣ ଚନ୍ଦନ ଛେରା ଦ୍ୟନ୍ତି ।
ଶୀତଳ ପାଇବାକୁ ରାମ ବୋଲି ହୋନ୍ତି ।
ଦେଖିଣ ସାଧୁ ସାଧୁ କଲେ ପୁରଜନ
ଯୁବତୀ ହୁଳହୁଳି ଦିଅନ୍ତି ଅବିଚ୍ଛନ୍ନ ।
କଟକ ବୁଲି ରାମ ନବରେ ପରବେଶ
ଯାନରୁ ଓହ୍ଲାଇଲେ ଦଶରଥ ଶିଷ୍ୟ ।
ରଜନୀ ସମୟରେ ଲାଗିଲା ପୁଣ ହୁଳା
ସନ୍ନିଧକୁ ରାଇଲେ ସୁମିତ୍ରାର ବଳା ।
ଶୁଣ ବାବୁ ଲକ୍ଷ୍ମଣରେ ମୋ ବୋଲ କରିବୁ
କାଲି ପ୍ରଭାତରେ ଜାନକୀ ନେଇଯିବୁ ।
ବାଲମୀକ ମଠରେ ଆସିବୁ ନେଇ ଥୋଇ
ଏ କଥାରେ ତୋହରରେ କିଛି ଦୋଷ ନାହିଁ
ଶୁଣିଣ ଶିରେ କର ଦେଲେ ସଉମିତ୍ରି
ତୁମ୍ଭର ଆଜ୍ଞା ମୁଁ କରିବି ରଘୁପତି ।
ଏତେ କହି ରାମ ଭିତର ପୁର ଗଲେ
ସମସ୍ତେ ବେଳ ଜାଣିଣ ବାହୁଡ଼ିଲେ ।
ନିଅବକାଶ ଘରେ ବିଜେ ରାମ ଯାଇ
ଜାନକୀ ଦର୍ଶନକଲେ ପାଦେ ଯାଇ ।
ଶ୍ରୀରାମ ପାଦତଳେ ନମଇ ଦେବୀ ସୀତା
ହସିଣ କୋଳକରି ବସାଏ ଜଗଜ୍ଜିତା ।
ନିକାଞ୍ଚନେ କଥା ଦେଲେକ ଶ୍ରୀରାମ
ବଇକୁଣ୍ଠ ନାଥ ଯେ ଅଟନ୍ତି ପରଂବ୍ରହ୍ମ ।
ବିବିଧ ଋଟଚ୍ଚରେ ତୋଷିଲେ ସୀତାମନ
ବୋଇଲେ ସଖୀ ଗୋ କାଲି ଯିବୁ ତୁ ବହନ ।
ଜାନକୀ ବୋଇଲେ ମୁଁ ତୁମ୍ଭ ଆଜ୍ଞାରେ ଯିବି
ତପୀଜନମାନଙ୍କୁ ଦେଖିଣ ଆସିବି ।

ଏସନ ସମୟରେ ରଜନୀ ପ୍ରଭାତ
ଶଯ୍ୟା ତେଜିଣ ଯେ ଉଠିଲେ ରଘୁନାଥ ।
ଜାନକୀ ଯାଇଣ ସାରିଲେ ନିତ୍ୟକର୍ମ
ଯିବାକୁ ଉଦବେଗ ଜାନକୀର ମନ ।
ବନ୍ଦଇ ଜଗନ୍ନାଥ ହେ ନୀଳଗିରି ବାସୀ
ବଳରାମ ଦାସ ମୁଁ ଚରଣେ ସେବାସି ।
ରାମ ଅବତାରେ ଯେତେ କୃତ୍ୟ କଲେ
ଯାହା ସେ ବାଲମୀକ ମୁନି ବଖାଣିଲେ ।
ଯେଉଁ ମହାରଷି ଜଗତ ସାଧିଲେ
ତେଣୁ ସେ ଲୋକଙ୍କୁ ଗତି ମୁକ୍ତି ଦେଲେ ।
ମୁଁ ତାହା ବଖାଣଇଁ ଶରଧା ନିମନ୍ତେ
ତୁମ୍ଭ ଆଜ୍ଞାରେ ଗ୍ରନ୍ଥ ମୁଁ କରିବି ସମାପତେ ।
ତେଣୁ ମୁଁ ରାମାୟଣ ସୁମରିଲି ମନେ
ଏବେ ସେ କଥା ମୋର ଲେଖିଲେ ଭଗବାନେ ।
ଜନକ ଦୋହୀତା ବାଲମୀକ ଘର ଯିବେ
ଏ କଥା କହିବାକୁ ଲୟେ କରଇଁ ଦେବେ ।
ବନକୁ ନ ଗଲେ ଗ୍ରନ୍ଥ ନୋହିବ ସମ୍ପୂର୍ଣ୍ଣ
ପିତା ପୁତ୍ରଙ୍କର ରଣ ଦେଖିବେ ଦେବଗଣ ।
ଦୋଷ କ୍ଷମା କର ମୋର ଜଗତ ମୋହନ
ତୁମ୍ଭର ଚରଣରେ ରହୁ ମୋର ମନ ।
ବନ୍ଦଇ କମଳା ମାଗୋ ବିଷ୍ଣୁର ପାଟରାଣୀ
ଦୈତ୍ୟକୁଳ ଧ୍ୱଂସିନୀ ତୁ ଜଗତ ଠାକୁରାଣୀ ।
ଦେବରଷି ଶତ୍ରୁ ଯେ ମାରିବାର ପାଇଁ
ପତିଙ୍କି ରଖିଲୁ ଯେ ଲଙ୍କା ଗଡ଼ରେ ନେଇ ।
ପୁଣି ମନ କଲୁ ଯେ ବନ ଯିବା ପାଇଁ
ନୋହିଲେ କେହ୍ନେ ତୁ ଚଞ୍ଚଳା ବୋଲାଇ ।
ଚଉଦ ଭୁବନ ତୁ ଇଛାରେ ବିହରୁ
ଯହିଁକି ମନକରୁ ତହିଁକି ଯାଇପାରୁ ।
ଏବେ ଗଙ୍ଗା କୂଳରେ କରିବି ଭ୍ରମଣୀ
ସଦାଶିବ ପାର୍ବତୀ ତୋ ରାମନାମ ଭଣି ।
ଏବେ କହିବାକୁ କରଇ ମୁଁ ଭୟେ
ମୋହର ଦୋଷ ଏବେ ନ ଧର ଗୋ ମାୟେ ।
ନ କହିଲେ ଗ୍ରନ୍ଥ ନୋହେ ସମାପତ
ତେଣୁ ମୁଁ ଆକୁଳରେ ଭାଳେ ମୋର ଚିତ୍ତ ।
ଶୁଣି ଅନୁଗ୍ରହ ଯେ କଲେ ଜଗନ୍ନାଥ
ମୋହର ମନ ସେ ଜାଣି କହିଲେ କହ ତୁତ ।

ସିନ୍ଧୁର ଦୁଲଣୀ ପ୍ରସନ୍ନ ହୋଇଲେ
ରାମାୟଣ ଗ୍ରନ୍ଥ ପୂର୍ଣ୍ଣ କରରେ ବୋଇଲେ ।
ଜାନକୀ ରାମର ଯେ ଆଜ୍ଞା ମୁହିଁ ପାଇ
ମହାନାଟକ କାବ୍ୟ ଯେ ବଖାଣ କଲିମୁହିଁ ।
ପାର୍ବତୀ ଆଗରେ ଏହା କହିଲେ ତ୍ରିଲୋଚନ
ଲକ୍ଷ୍ମଣଙ୍କୁ ଯାହା ବୋଇଲେ ରାମ ପୁଣ ।
ଲକ୍ଷ୍ମଣ ଦର୍ଶନ ଯାଇଣ ବେଗେ କଲେ
ରାମର ଚରଣରେ ଓଳଗି ହୋଇଲେ ।
ବୋଇଲେ ରଥ ବେଗେ ସଜ କରିଆଣ
ସୀତାଙ୍କୁ ଗଙ୍ଗାକୂଳ ନିଅରେ ଏହିକ୍ଷଣ ।
ଶୁଣିଣ ମାତେଳି ଯେ ସାକ୍ଷେ ରଘୁବର
ସୁମିତ୍ରାର ତନୟେ ପଶିଲେ ଅନ୍ତଃପୁର ।
ଜାନକୀଙ୍କ ଛାମୁରେ ଦର୍ଶନ ଯାଇକଲେ
ଗଙ୍ଗା କୂଳକୁ ତୁମ୍ଭେ ଯିବକି ବୋଇଲେ ।
ଶୁଣିଣ ମହାସ୍ୱତୀ ପରମ ତୋଷ ମନ
ସର୍ବାଙ୍ଗ ଭୂଷଣ ହେଲେ ବେଗ ପୁଣ ।
ମନୁମାୟା ମାୟା ସୀତା ପଞ୍ଚଦାସୀ ପୁଣ
ଆଜ୍ଞାଦେଲେ ବେଶ ହୋଇ ଆସଗୋ ବହନ ।
ପାଞ୍ଚଲକ୍ଷ ସୁବର୍ଣ୍ଣ ରଥରେ ନେଇରଖି
ଲକ୍ଷେ ଅମଳାଣ ଶାଢ଼ୀ ନେଲେ ବାଛି ।
ପାଟେକ ପିନ୍ଧି ପାଟେକ ଉପରାଣ ଦେଲେ
ଶାଶୁମାନଙ୍କୁ ଜାନକୀ ଓଳଗି ହୋଇଲେ ।
ଶାଶୁଗଣେ ଦେଖି ବିରସ ମନରେ
ସମସ୍ତେ ପଚାରନ୍ତି ଜାନକୀ ଛାମୁରେ ।
ଆଜ ଏଡ଼େ ଉସ୍ତୁକ ହେଲ କାହିଁପାଇଁ
କେଣେ ଯିବ ବୋଲି ପଚାରନ୍ତି ସେହି ।
ଜାନକୀ ବୋଇଲେ ମୁଁ ଯାଉଛି ଗଙ୍ଗାକୂଳ
ଜାହ୍ନବୀରେ ସ୍ନାନ କରିବ ମନ ମୋର ।
ଶୁଣିକରି ଶାଶୁମାନେ ମନରେ ବିଚାରିଲେ
ଏକଥା ଭଲ ତ ନୁହଇ ବୋଇଲେ ।
କେ ବୋଲନ୍ତି ଚଉଦ ବରଷ ବନଗଲା
ଏବେ ବନ ବୁଲିବାକୁ ମନରେ ଇଚ୍ଛାହେଲା ।
ବିଶେଷେ ସପତଣୀ ନାହାନ୍ତି ଏହାର
ଶ୍ରୀରାମର ମନ ଏ ମୋହିଛି ନିରନ୍ତର ।
ଚତୁର ଯୁବତୀ ଏ ଅଟଇ ନାଗରୀ
ପତି ଭଗତା ପଣେ ସ୍ୱାମୀର ମନହାରୀ ।
ଏବେ ଗର୍ଭବାସ ଦୁର୍ଗୁଣ ସବୁ ମଣି
ଯେଣୁ ରଘୁନାଥ ଶରଧା ଏହୁ ପୁଣି ।
କେ ବୋଲନ୍ତି ଏକଥା ଅଶୁଭ ନୁହଇ
ରାଜାର ରାଣୀ ହେଲେ ସକଳ ମନାସଇ ।
ଆବର ଚେରଷ୍ଟାତ ଦିଶୁଛି ବିପରୀତ
ଉଦ୍ଦେଶ୍ୟ ଚିତ୍ତ ଏହାର ହେଉଛି ଯିବାକୁତ ।
ରଜନୀ ଶେଷ ଯହୁଁ ଶୁଚିମନ୍ତ ଏହୁ
ଦିଅର ସଉମିତ୍ରି ଆସିଛି କାଲିଠଉଁ ।
ଏତେ ବୋଲି ଶାଶୁମାନେ କୁହା କୋହି ହୋନ୍ତି
ଜାନକୀ ମୁଖ ଚାହିଁ କୌଶଲ୍ୟା ବୋଲନ୍ତି ।
ଅତି ଶୁଭ୍ରବେଶ ହୋଇଛ ଗୋ ମାୟେ
ଉଦ୍‌ବେଗ ମନ ଥରହର କାୟେ ।
ସୀତୟା ବୋଇଲେ ମୁଁ ଋଷିଙ୍କି ଦେଖିବି
ଧନରତ୍ନ ମୁଁ ଯେ ମୁନିଙ୍କି ବିଳୋହିବି ।
ଆଜର ମଧ୍ୟେ ମୁହିଁ ଆସିବି ବାହୁଡ଼ି
ସଉମିତ୍ରି ସଙ୍ଗରେ ଯିବ ରଥଚଢ଼ି ।
ଶାଶୁମାନଙ୍କର ଶୁଣି ଉଡ଼ିଲା ସାହସ
ବୁକୁ ହେଲା ଦମ ଦମ ଖର ନିଶୁଆସ ।
ଜାନକୀଙ୍କ ଶାଶୁମାନେ ବୋଲନ୍ତି ଶୁଣି ତୁହି
ଏକଥା ମାନତ କେଭେ ଭଲ ଦିଶୁନାହିଁ ।
ଏକବ୍ରତୀ ଶ୍ରୀରାମ ସ୍ୱାମୀ ତୋର ଥାଉଁ
ଆଉ ଧର୍ମ ଲୋଡ଼ିଲେ ସେଥିରୁ କିସ ପାଉ ।
ପତିପାଦେ ସେବାକଲେ ଅଛି ସବୁ ଧର୍ମ
ଯେଝାପତି ଯେଝାକୁ ଅଟେ ନାରାୟଣ ।
ପାର୍ବତୀ ନାମରେ ଦେଖ ପ୍ରଜାପତି ଝିଅ
ଶିବଙ୍କୁ ସେ ବିଭା ହୋଇ ଧର୍ମରେ ହେଲେ ପ୍ରିୟ ।
ପୁଣି ସାବିତ୍ରୀ ନାମରେ କୁଶକେତୁ ଝିଅ
ବିଭା ହୋଇଲେ ତାଙ୍କୁ ଧର୍ମଙ୍କର ପୁଅ ।
କାଳେ ସତ୍ୟବନ୍ତ ରାଜା ବନ ଗମନ କଲା
ଭାରିଜା ସଙ୍ଗେ ଘେନି ବନସ୍ତକୁ ଗଲା ।
ସ୍ନେହରେ ଧନ ସେ ନ ନେଲାକ କିଛି
କ୍ଷୁଧାରେ ବିକଳ ହେଲା ତାଙ୍କମତି ।
ହସ୍ତରୁ ଚୁଡ଼ି ଭାଙ୍ଗି ବିକିକରି ଖାଇ
ପୂର୍ବର କଥାମାନ ମନରେ ସୁମରଇ ।
ବିକଳ ଦେଖି ଜନ୍ତୁପତି ଦୟାକଲା
ସାବିତ୍ରୀ ସମାନେ ସତୀ ମନରେ ବିଚାରିଲା ।

ଏହାର ସ୍ୱାମୀର ଅଳପ ଅଟେ ଆୟୁଷତ
ଏତେ ବୋଲି ଚିତ୍ର ଗୁପତ ପେଶେ ସେତ ।
ସାବିତ୍ରୀଠାରୁ ସେ ଅଧା ଆୟୁଷ ଦେଲା
ଦୁହେଁ ଏକାବେଳକେ ମର ସେ ବୋଇଲା ।
ଘରଣୀ ଆୟୁଷରୁ ଜୀଇଲା ସ୍ୱାମୀ ତାର
ପୁରାଣରେ ସେହୁକଥା ହେଲା ସାରୋଦ୍ଧାର ।
ନଳରାଜା ଏ ନଗ୍ରରେ ରାଜା ହୋଇଥିଲା
ଖେଳରେ ଏହୁ ରାଜ୍ୟ ହାରିଣ ବନଗଲା ।
ଘରଣୀକି ସଙ୍ଗରେ ନେଲାକ ସେହୁପୁଣ
ବନସ୍ତରେ ଛାଡ଼ିଣ ବୁଲିଲା ରାଜନ ।
ଘରଣୀ ଦମୟନ୍ତୀ ତାର ବାପାଘର ଗଲା
ମଦନା ଅପଛରୀ ତାହାକୁ କହିଲା ।
ସ୍ୱାମୀ ତୋର ମୋର ବନସ୍ତରେ ପୁଣ
ଶୁଣିଣ ଦୟମନ୍ତୀ ହରାଇଲା ପ୍ରାଣ ।
ନାଗୁଣୀ ଆସିଣ ତାକୁ ଜୀଆଇଲା
ସ୍ୱାମୀ ସଙ୍ଗେ ଭେଟ ହୋଇ ନିଜରାଜ୍ୟ ଗଲା ।
ଏକଥା ମନ ସବୁ କହିଲେ ଶାଶୁପୁଣ
ନମାନିଲେ କେଭେ ସତୀ ଶାଶୁର ବଚନ ।
ପାର୍ବତୀ ବୋଲନ୍ତି ଦେବ ସେଠାରୁ କିସହେଲା
ଈଶ୍ୱର ବୋଇଲେ ଜାନକୀ ଚଳିଗଲା ।
ସାତଜଣ ଦାସୀ ଯେ ସଙ୍ଗରେ ସେହୁ ନେଲା
ଲକ୍ଷ୍ମଣର ପାଶରେ ପ୍ରବେଶ ହୋଇଲା ।
ଶ୍ରୀରାମ ଚରଣେ ଓଳଗେ ଯାଇ କରି
ପୁଷ୍ପକ ବିମାନରେ ବସିଲେକ ନାରୀ ।
ମାତେଳୀ ସାରଣୀ ଶିରେ ଦେଲାକର
ଲକ୍ଷ୍ମଣ ବସିଲେ ଜାନକୀଙ୍କ ପାଶର ।
ପୁଷ୍ପକ ଯାନକୁ ମାତଳି ବାହିନେଲା
ବଡ଼ଦାଣ୍ଡ ଭିତରେ ରଥ ଚଳିଗଲା ।
ରାଜ୍ୟରେ ନରନାରୀ ସମସ୍ତେ ଦେଖିଲେ
ବିକଳ ହୋଇଣ ସେ ମନରେ ବିଚାରିଲେ ।
କେ ବୋଲନ୍ତି ଏକଥା କେବଣ ଚରିତ
ସୀତାଙ୍କୁ ନେଉଅଛି ସୁମିତ୍ରାଙ୍କର ସୁତ ।
କେ ବୋଲନ୍ତି ଗଙ୍ଗାରେ କରିବେ ସ୍ନାହାନ
କେ ବୋଲନ୍ତି ଦେଖିବେ ସେଠାରେ ଋଷିମାନ ।
ଏମନ୍ତ ବିଚାରି ଯେ ଦେଖନ୍ତି ରଥବେଢ଼ି
ନିଦାଘର କୋଳେ ଦେଖ ମାରେ ଘଡ଼ଘଡ଼ି ।
ନିର୍ଘାତ ପଡ଼ଇ ଯେ ପଥର ବରଷି
କୁହୁଡ଼ି ଆଛାଦିଲା କିଛି ତ ନ ଦିଶି ।
ଦେଖିକରି ଜାନକୀ ବିଚାରିଲେ ମନେ
ମୁହିଁ ଚାଣ୍ଡାଳୁଣୀ ତ ମାଗିଲି ଦୁଷ୍ଟପଣେ ।
ବୋଇଲି ବନକୁ ମୁଁ ଯିବି ଆଉଥରେ
ସେଥିର ସକାଶେ କ୍ରୋଧ ଶ୍ରୀରାମ ମନରେ ।
ଏମନ୍ତ ବିଚାରି ଦେବୀ ଲକ୍ଷ୍ମଣଙ୍କୁ ଚାହିଁ
ନପୁଣ ବଇରାଗ ପାଇବେ ତୁମ୍ଭ ଭାଇ ।
ଏମନ୍ତ ଅରିଷ୍ଟି ଦେଖିଲାଇ ହାଦେ
କେମନ୍ତେ ଯିବା ଆମ୍ଭେ ଏଡ଼େକ ପରମାଦେ ।
ଶ୍ରୀରାମଙ୍କୁ ବିଘ୍ନ ଯେ ପଡ଼ଇ ନିକି ବାବୁ
ତାଙ୍କର ଭଲଥିଲେ ଆମ୍ଭର ଭଲସବୁ ।
ଯେଉଁଦିନ ବାବୁରେ ଲଙ୍କାଗଡ଼କୁ ଗଲି
ବରଷେ ପରିଯନ୍ତେ ତହିଁରେ ରହିଲି ।
ରାବଣ ମାରିଣ ସ୍ୱାମୀ ଆଣିଲେକ ମୋତେ
ସମୟରେ ଅଯୋଧ୍ୟା ଭୋଗକଲି ଏତେ ।
ଏସୁଖ ମୋର ବିଧାତା ସହି ନ ପାରିଲା
କିପାଇଁ ଆଣି ମୋତେ ଏବୁଦ୍ଧି ପୁଣ ଦେଲା ।
ସ୍ୱାମୀଙ୍କି ଛାଡ଼ି ଏବେ ବନକୁ ମୁଁ ଯାଇ
ବୁକୁଥାଉଁ ପିଠିକୋଳ କରି ମୁଁ ଲୋଡ଼ଇ ।
କେଡ଼େ ମନ୍ଦ ବୁଦ୍ଧି କଲି ମୁହିଁ ପୁଣ
ଏସନକ ବୋଲି ଭାଳେ ଦେବୀ ଜାଣ ।
ମାତେଳୀ ଯେ ରଥ ବାହେ ଘନଗନ
ନଗ୍ରରୁ ବାହାର ହୋଇଗଲେ ଦଶଜଣ ।
ଲକ୍ଷ୍ମଣ ବୋଇଲେ ଯେ ମାତେଳୀକି ଚାହିଁ
ପାତାଳ ପୁରକୁ ଯେ ରଥବାହା ତୁହି ।
ଦେଖନ୍ତୁ ପାତାଳ ମନରେ ହୋନ୍ତୁ ତୋଷ
ସ୍ୱର୍ଗଦେଖି ଜାନକୀ ଆସିଛନ୍ତି ପ୍ରତ୍ୟକ୍ଷ ।
ଶୁଣିଣ ମାତଳି ପାତାଳପୁରକୁ ବାହିଲା
ସକଳ ସ୍ଥାନମାନ ଦେବୀଙ୍କି ଦେଖାଇଲା ।
ଧରାବତୀ ପୁରରେ ହେଲେ ପରବେଶ
ଦେଖି ଧରାବତୀ ମିଳେ ଆସିପାଶ ।
ଦୁଇଭଗ୍ନୀ ଆନନ୍ଦରେ କଥା ତହିଁ ହେଲେ
ତୋର ପ୍ରସନ୍ନରେ ମୋର ସଫଳ ବୋଇଲେ ।
ଶତେକ ସୁନିଆଁ ଦେଲେ ତାକୁ ପୁଣ
ପର୍ଶୁରାମ ଦେଖିଣ କହିଲେ ସନ୍ତୋଷେଣ ।

ସେଠାରୁ ଜାନକୀ ଅଇଲେ ବେଗେଚଳି
ପାତାଳ ପୁର ଦେଖି ସନ୍ତୋଷ ହୁଲାଳୀ ।
ଫେରିଣ ସପତ ସାଗର ଯେ ଦେଖି
ଲକ୍ଷ୍ମଣ ବୋଲେ ଶ୍ରୀରାମ ଏମାନେ ଦେଖିଛନ୍ତି
ଦିଗବିଜୟ ବେଳେ ଅଇଲେ ସ୍ୱାମୀତୋର
ଏ ସପ୍ତ ସାଗର ଥିଲେ ଅସାଧ ବଳୀୟାର
ଦୁଷ୍ଟଙ୍କୁ ନାଶକରି ସନ୍ଥଙ୍କୁ ରଖିଲେ
ପୁଣି ସପତ ଦ୍ୱୀପ ଫେରିଣ ଦେଖିଲେ ।
ଜାନକୀ ପଚ୍ଚରିଲେ ଦ୍ୱୀପମାନଙ୍କ ନାମ
ଚିହ୍ନାଇ ଦିଅନ୍ତି ଯେ ସୁମିତ୍ରା ନନ୍ଦନ ।
ଜମ୍ବୁଦ୍ୱୀପ ମଣ୍ଡଳରେ ପ୍ରବେଶ ଆସିହେଲେ
ଯେତେଠାରେ ଶ୍ରୀରାମ ବୁଲିଣ ଯାଇଥିଲେ ।
ତେତେ ସ୍ଥାନମାନ ଯେ ଦେଖାଏ ଲକ୍ଷ୍ମଣ
ଦେଖିଣ ସନ୍ତୋଷ ହେ ଜାନକୀଙ୍କ ମନ ।
ଲକ୍ଷେ ଋଷିଙ୍କି ତହିଁ ସୁବର୍ଣ୍ଣ ଦାନ ଦେଲେ
ସଖୀମାନଙ୍କୁ ଦେଖି ପରମ ତୋଷ ହେଲେ ।
ଗଙ୍ଗାକୂଳରେ ଯାଇଁ ମିଳିଲେ ସର୍ବେ ପୁଣ
ଗଙ୍ଗାରେ ପଶିଣ କଲେକ ସ୍ନାହାନ ।
ଦିବସ ଶେଷ ହୋନ୍ତେ ସେଠାରୁ ଚଳିଗଲେ
ବାଲମୀକ ମଠରେ ଜାନକୀ ମିଳେଭଲେ ।
ଦେଖି ବାଲମୀକ ପରମ ତୋଷ ହେଲେ
ସମ୍ଭାବନା କରିଣ ମଠକୁ ଘେନିଗଲେ ।
ଫଳମୂଳ ଆଣିଦେଲେ ଋଷିପୁଣ
ନିଶ୍ଚିନ୍ତେ ଭୋଜନ ଯେ କଲେ ସର୍ବଜନ ।
ନିଦ୍ରାଯାଇ ସେଠାରେ ବଞ୍ଚିଲେ ରଜନୀ
ପ୍ରଭାତୁଁ ମୁଖପଖାଳି ବସିଲେ ସର୍ବେପୁଣି ।
ବାଲମୀକ ବୋଇଲେ ଲକ୍ଷ୍ମଣଙ୍କୁ ଚ୍ଚହିଁ
ତ୍ରୈଲୋକ୍ୟ ଠାକୁରାଣୀ ଆସିଅଛି କିସପାଇଁ ।
ଲକ୍ଷ୍ମଣ ବୋଇଲେ ଋଷି ସେଠାରୁ ତୁମ୍ଭେଶୁଣ
ଜାନକୀ ଗର୍ଭବାସ ପାଞ୍ଚମାସ ଜାଣ ।
ଶ୍ରୀରାମଙ୍କୁ ଦିନେ ତୁମ୍ଭ ଦୋହିତା ମାଗିଲେ
ବନକୁ ମୁଁ ଯିବି ହରଷେ ବୋଇଲେ ।
ସେଥି ସକାଶରେ ପେଶିଲେ ରାମ ବନ
ଜାନକୀ ଦେଖିଲେ ଯାଇଁ ପାତାଳ ଭୁବନ ।
ସପତଦ୍ୱୀପ ମହୀ ଯାଇଣ ଦେଖିଲା
ଜମ୍ବୁଦ୍ୱୀପେ ଲକ୍ଷେ ଋଷି ଦରଶନ କଲା ।
ଗଙ୍ଗାରେ ସ୍ନାନ ଆସି କଲେ ଠାକୁରାଣୀ
ରଜନୀ ହୋନ୍ତେ ଅଇଲୁଁ ତୋର ପୁରେ ପୁଣି ।
ଅଯୋଧ୍ୟାରେ ନରନାରୀ କରନ୍ତି ବିଚ୍ଚର
ଜାନକୀ ନେଲା ଅସୁର ରହିଲେ ତାରପୁର ।
ଚଉଦ ମାସନେଇ ରଖିଲା ଲଙ୍କାଗଡ଼ର
କେମନ୍ତେ ରାମଚନ୍ଦ୍ର ଆଣିଲେ ସଙ୍ଗର ।
ନୀଚଲୋକମାନଙ୍କର ବୁଦ୍ଧି ଅଟେ ଊଣା
ଜାନକୀଠାରେ କଳଙ୍କ ସେକଲେ କଳଣା ।
ତୁମ୍ଭେ ଦେଖିଅଛ ତିନିପୁର ଋଷି
ଦେବତା ତ୍ରୀଦଶ ଯେ ବ୍ରହ୍ମାରୁଦ୍ର ଆସି ।
ନାଗବଳ ସହିତେ ନର ଯେ ବାନର
ଅସୁର ସହିତରେ ସିନ୍ଧୁ ମହାଜଳ ।
ସତଷଠୀ ପୁରୁଷ ପିତୃଆସି ପୁଣ
ଅଗ୍ନିରେ ପଶେ ଜାନକୀ ସମସ୍ତେ ଦେଖିଣ ।
ଲକ୍ଷେରାଜା ସହିତେ ଜାନକୀ ହସ୍ତେଖାଇ
ଅଭିଷେକ ବେଳେ ସମସ୍ତେ ଆଇଲଇଁ ।
ପିତୃଲୋକ ଆସିଣ ମାତାଙ୍କୁ ନେଲେ
ସ୍ୱଦେହ ଘେନିଣ ସ୍ୱର୍ଗପୁର ସେହୁଗଲେ ।
ଏତେକଥା ଜାନକୀର ଦେଖିଲେ ରାମରାଣ
ନୀଚଲୋକ ବୋଲକୁ ଲଜ୍ୟାକଲେ ପୁଣ ।
ଜାନକୀଙ୍କି ତେଜ୍ୟାକଲେ ରାମରାହୁ
ଶୁଣିକରି ଜାନକୀ ଶୋଇକଲେ ତହୁଁ ।
ଲକ୍ଷ୍ମଣ ବୋଇଲେ ପ୍ରଥମେ ସ୍ୱାମୀଙ୍କି ଶ୍ରଦ୍ଧାକଲୁ
ସ୍ୱାମୀଙ୍କ ସଙ୍ଗତରେ ଗୋଡ଼ାଇ ତୁହିଗଲୁ ।
ଶ୍ରଦ୍ଧାରୁ ଅବିଗୁଣ ହେଲା ପିଣ ଜାତ
ଅସୁରପୁରେ ଯାଇହେଲେ ଉପଗତ ।
ଏବେ ଆଉବେଳେ ନ କରିବୁ ଇଚ୍ଛା
ଇଚ୍ଛାକଲେ ତେଜିବେ ଦଶରଥ ବତ୍ସା ।
ସେକଥାକୁ ପାଶୋରି ରାମଙ୍କୁ ମାଗିଲୁ
ବାର ବରଷ ଏବେତ ଅନ୍ତର ହୋଇଲୁ ।
ବାର ବରଷ ଏଠାରେ ଥାଅରେ ଚନ୍ଦ୍ରମୁଖୀ
ଦୁଇଥରେ ସମ୍ପୂର୍ଣ୍ଣ ବନବୁଲା ନିକି ।
ଏହିଠାରେ ଏବେତୋର କଷ୍ଟଯେ ସରିଲା
ବାର ବରଷ ଅଯୋଧ୍ୟାରେ ଯିବୁ ପରା ।
ପୁଣି ଦୁଇଶତ ଛୟାଳିଶ ଯେ ବରଷ
ପୁତ୍ରବଧୂ ଘେନିଣ ହେବୁ ତୁ ହରଷ ।

ଶ୍ରୀରାମ ଯେ ତୋତେ ଲଙ୍କାରେ କହେ ପୁଣ
ଅଗ୍ନିରେ ପୂରାଇଲା ଆପଣେ କରି ମନ ।
ଆଉବେଳେ ଯେବେ କହିବେ ତୋତେ ଥରେ
ତେତେବେଳେ ବଇକୁଣ୍ଠ ଯିବୁ ତୁହି ହେଲେ ।
ଶୁଣିଣ ଜାନକୀ ମନରେ ତୋଷ ହେଲେ
ପୂର୍ବରେ ଫଳ ମୋତେ ପ୍ରାପତ ହୋଇଲେ ।
ଲକ୍ଷ୍ମଣଙ୍କୁ ବୋଇଲେ ଶୁଣ ହେ ସଉମିତ୍ରି
ଶ୍ରୀରାମଙ୍କୁ ସଙ୍ଖୋଳୁ ଥିବ ବାବୁ ନିତି ।
ମୋତେ ପଚ୍ଚରିବ ବାବୁ ମୁହିଁଟି ତୁମ୍ଭର
ଏବେ ସୁସ୍ଥ ଯାଅ ବାବୁ ଅଯୋଧ୍ୟା ନଗ୍ରର ।
ଶୁଣି କରି ଲକ୍ଷ୍ମଣ ପରମ ତୋଷ ହେଲେ
ମୁନିଙ୍କ ଚରଣେ ଯାଇଣ ଓଳଗିଲେ ।
ବୋଇଲେ ପିତା ହେ ଜାନକୀଙ୍କି ପାଳ
ଶରଧା କଲେ ଜାନକୀ ଆମ୍ଭଙ୍କୁ ସୁମର ।
ଜାନକୀର ଚରଣେ ଓଳଗେ ଲକ୍ଷ୍ମଣ
ସତୀକି ବୋଧିଲେ କହି ସେ ବଚନ ।
ବୋଇଲେ ସ୍ୱାମୀଙ୍କର ଆଜ୍ଞା ନ ମେଣ୍ଟିବୁ
ଆମ୍ଭର ପୁରକୁ ମାତ କେବେହେଁ ନ ଯିବୁ ।
ଗଲେ ଅବିଗୁଣ କରିବେ ରଘୁବଂଶି
ଜାନକୀ ବୋଲନ୍ତି ମୋର ସକଳ ନୋହେକି ।
ଛଡ଼ ପୁତ୍ର ତିନି ଦିଅର ତିନି ଯାଆ
ସମସ୍ତ ମୋହରଟି କାହାର ନାହିଁ ମାୟା ।
କହି କରି ଲକ୍ଷ୍ମଣ ରଥରେ ବସେ ଯାଇଁ
ଅଯୋଧ୍ୟା ନଗ୍ରରେ ପ୍ରବେଶ ହେଲେ ସେହି ।
ଦିନ ତିନି ରହି ସେ ରାମଙ୍କୁ କହିଲେ
ମୋର ପୁର ଯାଉଅଛି ବୋଲିଣ ବୋଇଲେ ।
ଚ୍ଛପଧାରୀ ତାହାକୁ ଆଜ୍ଞା ଦେଲେ ପୁଣ
କାବେରୀ ଦେଶକୁ ଚଳିଲେ ଲକ୍ଷ୍ମଣ ।
ବାଲମୀକ ମଠରେ ପ୍ରବେଶ ଯାଇଁ ହେଲେ
ଜାନକୀର ଚରଣେ ଦର୍ଶନ ଯାଇଁ କଲେ ।
ବୋଇଲେ ମୋ ପୁରକୁ ଯାଉଛି ଠାକୁରାଣୀ
କିଛି ଚିନ୍ତା ନ କରି ଥାଅ ଏହିଠାର ପୁଣି ।
ଦୁଇ ଭାଇଙ୍କି ମୁଁ ଯେ କହିବି ତୁମ୍ଭ କଥା
ଜାନକୀ ବୋଇଲେ ସୁଖେ ଯାଅ ମହାରଥା ।
ଶୁଣିକରି ଲକ୍ଷ୍ମଣ ଯେ ବେଗେ ଚଳିଗଲେ
କାବେରୀ ଦେଶରେ ଯାଇଁ ପ୍ରବେଶ ହୋଇଲେ ।

ଜନନୀ ଘରଣୀଙ୍କି ବସାଇ କହିଲେ
ଜନକ ଦୋହୀତାଙ୍କୁ ଶ୍ରୀରାମ ତେଜ୍ୟାକଲେ ।
ଉର୍ମୀଳା ବୋଇଲେ କିମ୍ପା ନଆଣ ଏ ପୁର
ଲକ୍ଷ୍ମଣ ବୋଲନ୍ତି ଯେ ନୁହେ ସେ ବେଭାର ।
ସ୍ୱାମୀର ଆଜ୍ଞା ପୁଣି ହୋଇବ ଲଘିତ
ସେଥିରେ ଯେତେ ଗୁଣ ଅଛି ଗୋ ଶୁଣତ ।
ଉର୍ମୀଳା ବୋଇଲେ ପିତା ପୁତ୍ରରେ ରଣ ହେବ
ହାରିଲେ ଠାକୁର ଜାନକୀ ପୁଣ ନେବ ।
ଏବେ ହେ ପ୍ରାଣନାଥ ମୋର ବୋଲ କର
ସକଳ ସାମଗ୍ରୀ ଜାନକୀ ପୁରେ ଚ୍ଛଳ ।
ଶୁଣି ଲକ୍ଷ୍ମଣ ଯେ ପରମ ତୋଷ ହେଲେ
ଧନ ରତ୍ନ ଅନ୍ନ ବସ୍ତ୍ର ସକଳ ସଜକଲେ ।
ପଲଙ୍କ ସୁପାତି ବସି ଉଠିବା ଆସନ
ବାଟି ଗରୀଆ ଝରୀ ନାନା ବର୍ଣ୍ଣରେ ପୁଣ ।
ରଥପରେ ଘେନିଣ ବେଗେ ଚଳିଗଲେ
ବାଲମୀକ ମଠରେ ଯାଇଣ ମିଳିଲେ ।
ସକଳ ଦ୍ରବ୍ୟମାନ ଜାନକୀ ଠାରେ ଦେଲେ
ଜାନକୀ ଦେଖିଣ ମନରେ ତୋଷ ହେଲେ ।
ଲକ୍ଷ୍ମଣ କହି କରି ଚଳିଗଲେ ବେଗେ
ମଧୁବନ କଟକରେ ମିଳିଲେ ଉଦବେଗେ ।
ଜନନୀମାନଙ୍କୁ ବସାଇ କହିଲେ
ଶ୍ରୀରାମ ଜାନକୀଙ୍କୁ ବନକୁ ପେଶିଦେଲେ ।
ସେଦିନ ସେଠାରେ ରହି ଆରଦିନ ଗଲେ
ହସ୍ତୀନା ନଗ୍ରରେ ଯାଇଁ ପ୍ରବେଶ ହୋଇଲେ ।
ଶତୃଘନ ଦେଖିଣ ନମସ୍କାର କଲେ
ଲକ୍ଷ୍ମଣ ସବୁ କଥା ବୁଝାଇ କହିଲେ ।
ଜାନକୀ ବନଗଲେ ତେଜିଲେ ରାମ ପୁଣ
ଶୁଣିଣ ଶତୃଘନ ବିରସ କଲା ମନ ।
ବୋଇଲା ସେ ପ୍ରଭୁର ବିଚ୍ଚର ଯେ ନାହିଁ
ନୀଚ ଲୋକ କଥାରେ ଦେବତା ନିନ୍ଦଇ ।
ସେଠାରୁ ଲକ୍ଷ୍ମଣ ଯେ ଭରଥ ପୁର ଗଲା
ଶତୃଘନ ଯାଇଣ ଅନ୍ତଃପୁରରେ କହିଲା ।
ଧନ ରତ୍ନ ବସ୍ତ୍ର ଚିକ୍କଣ ଘୃତ ସର
ଘେନିଣ ଶତୃଘନ ହୋଇଲେ ବାହାର ।
ବାଲମୀକ ମଠରେ ହୋଇଲେ ପ୍ରବେଶ
ମନମାୟା କହିଲା ଜାନକୀର ପାଶ ।

ବୋଇଲା ସାନ ଦିଅର ସଙ୍ଖୋଳି ଅଇଲା
ଶୁଣିଣ ଜାନକୀ ପରମ ତୋଷ ହେଲା ।
ଶତ୍ରୁଘନ ମୁନିଙ୍କି କଲା ନମସ୍କାର
ଜାନକୀଙ୍କ ଚରଣେ ନମିଲା ଶତେବାର ।
ରୋଦନ କରନ୍ତି ଯେ ନୀଳାବତୀଙ୍କ ସୁତ
ଉଠିଣ ଜାନକୀ କରେ କୋଳାଗ୍ରତ ।
ବୋଇଲେ ସାନୁଜରେ କିମ୍ପାଇଁ ଶୋକ କରୁ
କର୍ମର ଲିଖନ କଥା ମନରେ ନ ବିଚାରୁ ।
ଛଡ଼ ପୁତ୍ର ମୋର ତିନି ଦିଅର ତିନିଯାଆ
ଏମାନେ ଥିଲେ କି ମୋତେ ହେବ ଗରୁଆ ।
ଶୁଣିଣ ଶତ୍ରୁଘନ ସନ୍ତୋଷ ମନ ହେଲେ
ଧନ ଦ୍ରବ୍ୟ ନେଇଣ ଜାନକୀ ପାଶେ ଦେଲେ ।
ଜାନକୀ ଋଷିଙ୍କ କହି ନିଜ ପୁର ଗଲେ
ସଦାଶିବଙ୍କୁ ଯାଇ ପାର୍ବତୀ ପଚାରିଲେ ।
ଲକ୍ଷ୍ମଣ ଗଲେ ଭ୍ରଥ ପୁର ସନ୍ତୋଷରେ ।
କିସ କହିଲେ ଯାଇ ଭରତ ଆଗରେ ।
ଈଶ୍ୱର ବୋଇଲେ ସଉମିତ୍ରି ଗଲେ
ଜନନୀମାନଙ୍କୁ ସେ ଓଳଗି ହୋଇଲେ ।
କୈକେୟୀ କୋଳରେ ବସାଏ ନେଇ ଜାଣ
ଲକ୍ଷ୍ମଣ ବୋଇଲେ ଶୁଣ ମାତା ପୁଣ ।
ଶ୍ରୀରାମ ଜାନକୀଙ୍କି ବନକୁ ପେଶି ଦେଲେ
ନୀଚ ଲୋକ ବୋଲରେ ଏମନ୍ତ କୃତ୍ୟ କଲେ ।
ଶୁଣିଣ ଜନନୀମାନେ ବିକଳ ହୋଇଲେ
ସେଠାରୁ ଲକ୍ଷ୍ମଣ ଯେ ବିଷ୍ଣୁ ପୁର ଗଲେ ।
ଭରତଙ୍କୁ ଦେଖିଣ ନମସ୍କାର କଲେ
ବୋଇଲେ ଶ୍ରୀରାମ ବଡ଼ ଅନ୍ୟାୟ ପଣ କଲେ ।
ନୀଚଲୋକବୋଲରେ ଜାନକୀ ବନକୁତେଜିଲେ ।
ମୋତେ ଡକାଇ ଆଣି ସଙ୍ଗରେ ଛାଡ଼ିଲେ ।
ବନକୁ ପେଶିବାରୁ ବାଲମୀକ ମଠେ
ମୁହିଁ ରଖି ଆସିଛି ଶୁଣ ହେ ପ୍ରତ୍ୟକ୍ଷେ ।
ଭରତ ବୋଇଲେ ଭାଇ ନୁହଇ ଏମନ୍ତ
ନାରାୟଣ ପ୍ରଭୁ ସେ ଅଟନ୍ତି ରଘୁନାଥ ।
ଅନୁଗ୍ରହ କରି ଯେ ମନଇଚ୍ଛା ତାର
ଜାନକୀଙ୍କି ଏବେ ଭେଦିଲେ ପିତାପୁର ।
ଶୁଣିକରି ଲକ୍ଷ୍ମଣ ନିଜପୁର ଗଲେ
ଭରତ ସକଳ ପଦାର୍ଥ ଠୁଳ କଲେ ।

ଅନ୍ତଃପୁରେ କହିଲେ ଭାରତ ଯାଇଣ
ଜାନକୀଙ୍କି ବନକୁ ପେଶିଲେ ଶ୍ରୀରାମ ।
ଶୁଣିକରି ମାଳିନୀ ବିକଳ ମନ ହେଲେ
ଭରଥ ରଥ ଚଢ଼ି ବାଲ୍ମୀକ ମଠ ମିଳେ ।
ଋଷିଙ୍କି ନମସ୍କାର କରିଣ ଭରତ ଗଲେ
ଜାନକୀର ଚରଣରେ ପ୍ରଣାମ ହୋଇଲେ ।
ଦେଖିଣ ଜାନକୀ ବିରସ ଅଟେ ମନ
ମନୁମାୟା ଆସିଣ କହିଲେ ବଚନ ।
ବୋଇଲେ ଜାନକୀଙ୍କି ତେଜିଲେ ରାମରାଣ
ଭରତ ବୋଇଲେ ସେ କଥା ନୋହେ ପୁଣ ।
ଦେବତାଙ୍କ କଥାକୁ ନମାନି ଠାକୁରାଣୀ
ଶାଶୁମାନଙ୍କର କଥା ନକଲେ ସେହୁ ପୁଣ ।
ପିତାଘରେ ସେ ଦୋଷେ ରହିଲେ ବଇଦେହୀ
ଏଥିପାଇଁ କିମ୍ପା ମନେ ବିରସ ଯେ ହୋଇ ।
ପିତାର ଘରକୁ କି ନ ଯାନ୍ତି ଦୋହିତା
ଶୁଣିକରି ଜାନକୀ ଛାଡ଼ିଲେ ମନୁ ଚିନ୍ତା ।
ସକଳ ପଦାର୍ଥ ନେଇ ଭରତ ସମର୍ପିଲେ
ବୁଝାଇ ଭରତ ବୀର ନିଜପୁର ଗଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ଅଯୋଧ୍ୟାରେ ପୁର ଲୋକେ କି ବୋଇଲେ ପୁଣ ।
ଈଶ୍ୱର ବୋଇଲେ ଏବେ ସେ କଥାଇଁ ଶୁଣ
ଅଯୋଧ୍ୟା ନରନାରୀ ବୋଇଲେ ଯାହା ଶୁଣ ।
ସନ୍ଥ ଜନମାନେ ଶ୍ରୀରାମଙ୍କୁ ନିନ୍ଦା କଲେ
ନୀଚ ଲୋକମାନେ ପ୍ରଶଂସା ପୁଣ କଲେ ।
ସାମନ୍ତ ପାତ୍ରମନ୍ତ୍ରୀ ଯେ ବୋଇଲେ ମନ୍ତ୍ରୀଙ୍କୁ
ଠାକୁରାଣୀ ଏବେ କିମ୍ପା ଗଲେ ବନସ୍ତକୁ ।
ଶ୍ରୀରାମ ବୋଇଲେ ପିତାଘର ଗଲେ ଏବେ
ଶରଧା ହେଲା ତାହାଙ୍କର ମନ ଯେବେ ।
ମାତାଗଣମାନେ ଯେ ପଚାରିଲେ ପୁଣ
ଜାନକୀ ନ ଆସିଲେ ଏବେ କି କାରଣ ।
ଗଙ୍ଗାସ୍ନାନ କରିବାକୁ ଆମ୍ଭଙ୍କୁ କହିଗଲା
ଋଷିମାନଙ୍କୁ ଦେଖିବି ବୋଲିଣ ବୋଇଲା ।
ଶ୍ରୀରାମ ବୋଇଲେ ସେ ଗଲେ ପିତାଘର
ବାର ବରଷ ଗଲେ ଆସିବେ ଏହୁ ପୁର ।
ମାତାମାନେ ବୋଲନ୍ତି ସେ କେଉଁ ଦୋଷକଲା
ଶ୍ରୀରାମ ବୋଲନ୍ତି ଏଥି ମନ୍ଦ ଯେ ଶୁଣିଲା ।

ଶୁଣି ମାତାମାନେ ଶୋକ କରନ୍ତି ଯେ ପୁଣ
ଆମ୍ଭଙ୍କୁ ଛାଡ଼ି ଜାନକୀ କେଣେ ଗଲୁ ପୁଣ ।
ବୃଦ୍ଧାକାଳେ ଆମ୍ଭଙ୍କୁ ଅନ୍ନ କେହୁ ଦେବ
ଶୁଦ୍ଧ ଜଳରେ କେହୁ ଚରଣ ଧୋଇ ଦେବ ।
ଦିନକେ ତିନିବେଳ କେ କରିବ ସଙ୍ଖୋଳା
ଆମ୍ଭେ ତା ଚନ୍ଦ୍ରବଦନ ଦେଖି ସୁଖୀ ପରା ।
ଏମନ୍ତେ ରୋଦନ କରନ୍ତି ମାତାଗଣ
ରୋଦନ ଦେଖି ଚିନ୍ତା କଲେ ରାମରାଣ ।
ଦିବସେ ସଭାରେ ନିଶ୍ଚିନ୍ତେ ବସିଥାନ୍ତି
ରାତ୍ରଯାକ ଜାନକୀ ଜାନକୀ ବୋଲୁଥାନ୍ତି ।
ଦାସୀମାନେ ଦେଖିଣ ହୁଅନ୍ତି ବିକଳ
ଯେସନେ ବୁଡ଼ିଲା ନଦୀ ଶୁଖଇ ତତ୍‌କାଳ ।
ଏମନ୍ତେ ତିନିମାସ ଏଥିରେ ବହିଗଲା
ଜାନକୀର ଗର୍ଭ ସେ ଅଷ୍ଟମାସ ହେଲା ।
ଦିନଲେଖି ତିନିଭାଇ ଆସିଲେ ତତକ୍ଷଣ
ବାଲମୀକ ମଠଠାରେ ପ୍ରବେଶ ହେଲେ ଜାଣ ।
ଋଷିଙ୍କି ନମସ୍କାର ହେଲେ ତିନି ଭାଇ
ଦେଖିଣ ବାଲମୀକ ସନ୍ତୋଷ ମନ ହୋଇ ।
ତିନିଭାଇ ବୋଲନ୍ତି ଋଷିଙ୍କ ଛାମୁର
ଜାନକୀ ଗର୍ଭଦାନ ନେବେ ଯେ ଏଠାର ।
ଅଷ୍ଟମାସ କାଲିକି ହୋଇବ ସଂପୂର୍ଣ୍ଣ
ଧନୁ ମାସରୁ ସତାଇଶ ଦିନ ହେବ ପୁଣ ।
ଋଷିଗଣମାନଙ୍କୁ ଅଣାଅ ବେଗ କରି
ଶୁଣିଣ ସନ୍ତୋଷ ହେଲେ ବ୍ରହ୍ମଚାରୀ ।
ନବସସ୍ର ଋଷିଙ୍କି ସୁମରଣା କଲେ
ଜାଣିଣ ଋଷିମାନେ ସେଠାରେ ରୁଣ୍ଡ ହେଲେ ।
ଚାରିବେଦ ଆଧ୍ୟାନ କଲେ ମୁନି ପୁଣ
ଅଗ୍ନି ସ୍ଥାପନ କରି ଘୃତ ଦେଲେ ଆଣି ।
ଜାନକୀ ପଚାରନ୍ତେ ମନୁମାୟାକୁ ପୁଣ
ଏଠାରେ ମୁନିମାନେ ଗହଳ ବଡ଼ ଜାଣ ।
ମନୁମାୟା ବୋଇଲେ ଶୁଣରେ ଚନ୍ଦ୍ରମୁଖୀ
କାଲି ଗର୍ଭଦାନ ତୋର ହେବନିକି ।
ଜାନକୀ ବୋଲନ୍ତି ମୁଁ ନିରାଶ ନାରୀ ସିନା
ଏଡ଼େବଡ଼ ଭାଗ୍ୟ ମୋତେ କେ ଦେବଇଁ କିନା
ପିତା ମୋର ତପୀ ଯେ କାହୁଁ ଦେବେ ଧନ
ମନୁମାୟା ବୋଇଲେ ଚିନ୍ତା ନକର ପୁଣ ।

ଅନେକ ଧନ ଘେନି ଆସେ ସଉମିତ୍ରି
ଜାନକୀ ବୋଇଲେ ମୋର ଦେଖିନୋହେ ମତି ।
ମନୁମାୟା ବୋଲେ ସେ ଋଷିଙ୍କ ଜଞ୍ଜାଳ
ଜଞ୍ଜାଳ ସାରି ଆସିବେ ତୋ ତିନି ଦିଅର ।
ଶୁଣିଣ ଜାନକୀ ପରମ ତୋଷ ହେଲା
ଚନ୍ଦ୍ରମା ପରାୟେ ତାର ମୁଖ ବିକଶିଲା ।
ଏହି ସମୟରେ ଅଇଲେ ତିନିଭାଇ
ଜାନକୀ ଚରଣରେ ଓଳଗିଣ ଶୋଇ ।
ଅନ୍ନ ବସ୍ତ୍ର ଧନ ଯାହା ନେଇଥିଲେ
ଜାନକୀର ଛାମୁରେ ନେଇଣ ସବୁ ଦେଲେ ।
ଦାସୀଗଣ ମାନେ ରଖିଲେ ସାଇତି
ଶୀତଳ ପଦାର୍ଥମାନ ଜାନକୀ ପରଶନ୍ତି ।
ଭୋଜନ ସାରିଣ ସେ ଆଞ୍ଚୋବନ କଲେ
ବିଡ଼ିଆ ଲାଗିହୋଇ ଋଷିଙ୍କ ଆଡ଼େ ଗଲେ ।
ଜାନକୀ ମଣୋହି କଲେ ମିଷ୍ଟ ଅନ୍ନ
ପଲ୍ୟଙ୍କରେ ନିଦ୍ରାଗଲେ ଜନକ ଝିଅ ପୁଣ ।
ଦାସୀମାନେ ପାଦ ମଞ୍ଚାଳିଲେ ବସି
କୁଙ୍କୁମ ଚନ୍ଦନ ଅଙ୍ଗରେ ନେଇ ଘଷି ।
ଏମନ୍ତେ ରଜନୀ ହେଲା ଶେଷ ଜାଣ
ପଲଙ୍କରୁ ଉଠିଲେ ରାମନାରୀ ପୁଣ ।
ମାଜଣା ମର୍ଦ୍ଦନ ସ୍ନାହାନ ବେଗେ କଲେ
ଝୀନ ବସନରେ ଦାସୀ ଯେ ପୋଛିଲେ ।
ପାଟେକ ପିନ୍ଧିଣ ପାଟେ ପହୁରଣ କରି
ଆଉଯାଇ ବସାନ୍ତି ଯେ ଜନକ କୁମାରୀ ।
ଏଥୁ ଅନନ୍ତରେ ଶୁଣ ଶାକମ୍ଭରୀ
ଋଷିମାନେ ସ୍ନାନକରି ନିତ୍ୟକର୍ମ ସାରି ।
ତିନିଭାଇ ଗଙ୍ଗାରେ ସ୍ନାନ ଯାଇଁ କଲେ
ଋଷିଙ୍କର ମଢ଼ିଆରେ ପ୍ରବେଶ ହୋଇଲେ ।
ଅମଳାଣ ପିନ୍ଧିଣ ହେଲେ ବେଗେ ସଜ
ଋଷିମାନଙ୍କୁ ନମସ୍କାର କଲେ ବେଗ ।
ଚାରି ବେଦ ରୁଷିମାନେ କଲେକ ଗାୟନ
ଅଗ୍ନିରେ ହବିର୍ଭାଗ ଦେଲେ ତତକ୍ଷଣ ।
ଏଥୁଅନନ୍ତରେ ତିନିଭାଇ ଗଲେ
ଜାନକୀର ଚରଣେ ନମସ୍କାର କଲେ ।
ଜାନକୀ ବୋଲନ୍ତି ତିନିଭାଇ ଶୁଣ
କାହାକୁ ଆଚାର୍ଯ୍ୟରେ କରିବ ବରଣ ।

ଜାନକୀ ବୋଲନ୍ତି ପିତାଙ୍କୁ ମୋର ବର
ତିନିଭାଇ ବୋଲନ୍ତି ନୋହେ ଏ ବେଭାର ।
ତୁମ୍ଭର ପିତା ଅଟେ ଆମ୍ଭର ଅଟେ ବାପ
ସେ କଥା ମତେ ଋଷିମାନେ ହେବେକୋପ ।
ଜାନକୀ ବୋଲନ୍ତି ତୁମ୍ଭେ ମାରକଣ୍ଡଙ୍କୁ ବର
ଶୁଣିଣ ତିନିଭାଇ ଡକାଇ ଋଷିବର ।
ବାଲମୀକ ମାରକଣ୍ଡ ପ୍ରବେଶ ହେଲେ ଆସି
ମାର୍କଣ୍ଡଙ୍କ ହସ୍ତେ ଗୁଆ ଦିଅନ୍ତି ଶୁଭ୍ରକେଶୀ ।
ପିତାଙ୍କୁ ବୋଇଲେ ତୁମ୍ଭେ ଯାଙ୍କର ସଙ୍ଗେ ଥାଅ
ଯାହାଙ୍କୁ ଯେଉଁ ଦାନ ପ୍ରାପତ କରାଅ ।
ଜାନକୀ ବୋଇଲେ ତୁମ୍ଭେ ଶୁଣରେ କୈକେୟି
ସେହି ରୂପେ ଦକ୍ଷିଣା ଦିଅ ତୁମ୍ଭେ ନେଇ ।
ଲକ୍ଷ୍ମଣଙ୍କୁ ବୋଇଲେ ଶୁଣରେ ସଉମିତ୍ରି
ତିନିଗୋଟି ଅମଳାଣ ଋଷିକେ ଦେବୁଟି ।
ଋଷିଙ୍କର ପାଇଁ ଦୁଇଗୋଟି ଦେବୁ ବସ୍ତ୍ର
ଋଷିଆଣୀଙ୍କ ପାଇଁ ଗୋଟିଏ ଶାଢ଼ୀ ପାଟ ।
ଶତ୍ରୁଘନେ ବୋଲନ୍ତି ଶୁଣରେ ସାନୁଜ
ଏହୁ ସ୍ଥାନ କୋଦଣ୍ଡ ଧରିଣ ଜଗ ବେଗ ।
ଗହଳ ଦେଖିଣ ଦୈତ୍ୟ ଆସନ୍ତଟି ଏବେ
ଏଥିକି ସାବଧାନ ଯାଇ ହୁଅ ତୁମ୍ଭେ ।
ଶୁଣିଣ ଶତ୍ରୁଘନ ବେଗେ ସଜ ହେଲା
କାଣ୍ଡ ଯେ କୋଦଣ୍ଡ ଧରି ରଥରେ ବସିଲା ।
ଲକ୍ଷ୍ମଣ ସଜ ହୋଇ ବସିଲେକ ଯାଇଁ
ଅମଳାନ ପାଟ ପତନୀ ଘେନି ରହି ।
ରତ୍ନ ବାକସ ଘେନି ଭରତ ବସେ ପୁଣ
ମାର୍କଣ୍ଡ ସଂକଳ୍ପ କରେ ଜାନକୀ ଚରଣେ ।
ଶ୍ରୀରାମଙ୍କର ଗୋତ୍ର ଉଚ୍ଚାରଣ କଲେ
ତମ୍ବା ପାତ୍ରୀ କୁଶ ପାଣି ଜାନକୀ ହସ୍ତେଦେଲେ
ଋଷିଙ୍କି ଡାକିଣ ସେ କଲେ ପ୍ରତିଗ୍ରହ
ଶତେ ସୁବର୍ଣ୍ଣ ତିନିଗୋଟି ବସ୍ତ୍ର ସ୍ନେହ ।
ନବସସ୍ର ଋଷିଙ୍କର ହସ୍ତରେ ପାଣିଦେଲେ
ଶତେକ ସୁବର୍ଣ୍ଣ ଭରତ ବାଣ୍ଟି ଦେଲେ ।
ତିନି ଶାଢ଼ୀ ଲେଖାଏଁ ଦେଲେକ ଲକ୍ଷ୍ମଣ
ଋଷିମାନେ ନେଇଣ ହେଲେ ତୋଷମନ ।
ମାର୍କଣ୍ଡଙ୍କ ହସ୍ତରେ ଜାନକୀ ଦେଲେ ପାଣି
ସହସ୍ରେ ସୁବର୍ଣ୍ଣ ଦଶଗୋଟି ବସ୍ତ୍ର ପୁଣି ।

ଭରତ ସୁବର୍ଣ୍ଣ ଦେଲେ ଶାଢ଼ୀ ଯେ ଲକ୍ଷ୍ମଣ
ବାଲମୀକଙ୍କୁ ବୋଲନ୍ତି ଜାନକୀ ଦେବୀ ପୁଣ ।
ତୁମ୍ଭେ ଦାନ ଘେନ ପିତା ଦେବି ମୁଁ କୁଶପାଣି
ବାଲମୀକ କହେ ସୀତା ଏକଥା ନୋହେପୁଣି ।
ଦୋହିତାର ଧନ କି ପିତା ନ୍ୟନ୍ତି ଦାନ
ଦୋହିତାଙ୍କୁ ଦେବାର ମୋରଅଟେ ଯେ ବିଧାନ ।
ଜାନକୀଙ୍କି ବୋଇଲେ ତୁମ୍ଭେ ଏଠାବରୁ ଚଳ
ଋଷି ଯିବା ଯାଏ ତୁ ଗୁପତେ କର ମେଳ ।
ଦାନ ଦେଲା ଲୋକ ପୁଣି ମୁଖକୁ ନ ଉହିଁ
ଶୁଣିଣ ଜାନକୀ ଦେବୀ ଗଲେ ଆଡ଼ହୋଇ ।
ସେଠାରୁ ବାଲମୀକ ବହନ ଆସିଲେ
ଋଷିଗଣମାନଙ୍କୁ ଫଳ ମୂଳ ଦେଲେ ।
ଭୋଜନ ସାରି ଋଷି ମେଲାଣି ହୋଇଲେ
ଜାନକୀଙ୍କି ସୁକଲ୍ୟାଣ କରି ଚଳିଗଲେ ।
ଉଠିଣ ଜାନକୀ ପାକଯାଇଁ କଲେ
ଛଡ଼ରସେ ଭୋଜନ ତିନି ଦିଅର କଲେ ।
ଏମନ୍ତ ପାଞ୍ଚଦିନ ସେଥିରେ ଗଲା ବହି
ଜାନକୀ ଆଗରେ ଯାଇ ତିନିଭାଇ କହି ।
ଆମ୍ଭେମାନେ ଯାଉଛୁଁ ନିଜ ଦେଶ ପୁଣ
ଦୁଇ ତିନିମାସେ ଆସୁଥିବୁଁ ଜାଣ ।
ସଂକଳ କଥାରେ ତୋର ପିତା ପ୍ରତିପାଳି
ଜାନକୀ ବୋଇଲେ ତୁମ୍ଭେ ଅଯୋଧ୍ୟା ଯାଅଚଳି
ତ୍ରୈଲୋକ୍ୟ ଠାକୁର ଯେ ଅଟନ୍ତି ଛତ୍ରପଧାରୀ
ଆଗରେ କହିବା କଥା ପଛରେ ହୋନ୍ତିଘାରି ।
ମୋତେ ବନକୁ ପେଶିଣ ଚିନ୍ତା କରୁଥିବେ
ତାହାଙ୍କୁ ତୁମ୍ଭେ ଯାଇ ସମ୍ଭାଳ କର ଏବେ ।
ଜାନକୀର ବଚନରେ ତିନିଭାଇ ଗଲେ
ମାତାମାନଙ୍କୁ ଯାଇ ଦର୍ଶନ ବେଗେକଲେ ।
ମାତାମାନେ ବୋଇଲେ ଜାନକୀ କେଣେଗଲା
ବୃଦ୍ଧକାଳେ ଆମ୍ଭଙ୍କୁ ସେ ଛାଡ଼ି ପଳାଇଲା ।
ଭରତ ବୋଇଲେ ମାତ ସେ ଗଲେ ପିତାଘର
ଏ ରାଜ୍ୟର ଲୋକେ ଦୁଷ୍ଟ ଅଟନ୍ତି ପ୍ରବଳ ।
କଉଶଲ୍ୟା ବୋଇଲୋ ରେ ବଧୂକୁ ମୋର ଆଣ
ଭରତ ବୋଲେ ଜାନକୀ ସତ୍ୟକଲେ ପୁଣ ।
ବୋଇଲେ ବାରବରଷ ମୁଁ ପିତାଘରେ ଥିବି
ବାରବରଷ ପୂରିଲେ ଅଯୋଧ୍ୟାକୁ ଯିବି ।

ଧୋବଣୀ ବୋଲରେ ମୋତେ ଛାଡ଼ିଲେ ରାମରାଜ
ମୁହିଁ ଅଟେ ଗର୍ଭସ୍ତିରୀ ନୋହିଲା ଦୟାଭାବ ।
ଏତେକହି ତିନିଭାଇ ସେଠାରୁ ଚଳିଗଲେ
ଶ୍ରୀରାମ ଚରଣେ ଯାଇଁ ଦରଶନ କଲେ ।
ଦେଖିକରି ଶ୍ରୀ ରାମଚନ୍ଦ୍ର କଲେ ଯେ ରୋଦନ
ଜାନକୀ କେଣେଗଲା ଦେଖିଛ କିରେ ପୁଣ ।
ତିନିଭାଇ ପ୍ରବୋଧନା କରନ୍ତି ଶ୍ରୀରାମରେ
ଆରତ କିପାଇଁ ହୁଅ ପ୍ରଭୁ ଏ କଥାରେ ।
ସ୍ତିରୀଲାଗି ସୁଗ୍ରୀବର ରହିଲା ପର୍ବତରେ
ସ୍ତିରୀ ଲାଗି ବାଳି ମଲା ତୁମ୍ଭର ହସ୍ତରେ ।
ସ୍ତିରୀ ଲାଗି ରାବଣର କୁଳ କ୍ଷୟେ ଗଲା
ପୁତ୍ର ନାତି ମରାଇ ଆପେ ନାଶ ହେଲା ।
ସ୍ତିରୀ ଲାଗି ନଳରାଜା ହୋଇଲେ ବାତୁଳ
ସ୍ତିରୀ ଲାଗି ଇନ୍ଦ୍ରରାଜା ଯୋନି ଯେ ଶରୀର ।
ସ୍ତିରୀ ଲାଗି ଚନ୍ଦ୍ର ଦେବତା ଅଧାଚନ୍ଦ୍ର ହେଲା
ସ୍ତିରୀ ଲାଗି ଶ୍ରଦ୍ଧାକଲେ ଦେବ ନର ହେବ ପରା
ଜାନକୀ ଯେ ଶ୍ରଦ୍ଧାକରି ତୁମ୍ଭ ସଙ୍ଗତରେ ଗଲା ।
ପତି ଶ୍ରଦ୍ଧା କଲାଠାରେ ଦୟା ଯେ ନୋହିଲା ।
ପରବୋଲେ ଶତେମୁଖା ରାବଣ ଯୁଦ୍ଧକଲା
ବଂଶ ମରାଇଣ ସେ ଆପଣେ ନାଶଗଲା ।
ରାବଣର ବୋଲରେ ଯେ ସସ୍ରମୁଖା ପୁଣ
ପୁତ୍ର ନାତି ଘେନିଣ ସେ ନିଶ୍ଚିନ୍ତ ହେଲାଜାଣ ।
କୁବଳୟା ବୋଲେ ଇନ୍ଦ୍ର ଅଇଲାକ ଯୁଝି
ଦୁଇମାସ ପର୍ଯ୍ୟନ୍ତେ ହୋଇଲ ସେ ବନ୍ଦୀ ।
ମାରୁତି ଯାଇଣ ପୁଣ ସ୍ୱର୍ଗରେ ରାଜାହେଲା
କପିଇନ୍ଦ୍ର ବୋଲିଣ କାଳଯୁଗକୁ ରହିଲା ।
ପରବୋଲ କଲେ ଦେବ ଆପେ ହୋନ୍ତିନାଶ
ପରଦାରା ପାପକଲେ ହରାଇ ସେ ଅଂଶ ।
ଆପଣା ବୁଦ୍ଧିରେ ଦେବ ଜଗତ ସାଧିପାରି
ଧର୍ମହିଁ ପ୍ରାପତ ହୋଏ ଯଶତାର ଶିରୀ ।
ଶ୍ରୀରାମ ବୋଲନ୍ତି ଭାଇରେ ଏକଥା ଏବେ ମୂଳ
କେଉଁ ଲୋକ ଧର୍ମକରି ଗଲେ ସ୍ୱର୍ଗପୁର ।
କେଉଁ ଲୋକ ନିଷ୍କଳରେ ଅଛନ୍ତିଟିକି ରହି
ଏହିକଥା ଗୋଟି ମୋତେ ଦେବରେ ଭାଇକହି ।
ଶତୃଘନ ବୋଲେ ଦେବ ନଳରାଜା ଥିଲେ
ମରିବା ଠାବରୁ ତାର ଭାରିଯା ବଞ୍ଚିଲେ ।

ଆଉ ଅନଳେ ପୁଣି ଛୁଇଁଲା ପର୍ବତ
ସେ ପଥରେ ଯାଇଣ ମାଇଲେ ଦଇତ୍ୟ ।
ଆରେକ ନଳ ଯେ ସମସ୍ତେ ହ୍ରଦ କଲି
ଆରେକ ନଳ ପୁଣି କିରାତ ଘେନି ବୁଲି ।
ଧର୍ମବଳେ ଭାଗିରଥୀ ଗଙ୍ଗାଙ୍କୁ ଆଣିଲେ
ଧର୍ମରେ ଶଚୀଦେବୀ ସ୍ୱର୍ଗରେ ରହିଲେ ।
ଧର୍ମରେ ଅହଲ୍ୟା ପାଷାଣୁ ନିସ୍ତରିଲା
ଧର୍ମରେ ଜାନକୀ ଯେ ପିତାଘର ଗଲା ।
ଦେବତାଙ୍କ ବୋଲେ ଯେ ଜନମ ତୁମ୍ଭେ ହେଲ
ଦୈତ୍ୟଙ୍କୁ ନାଶକରି ସ୍ୱର୍ଗକୁ ରକ୍ଷାକଲ ।
ସେହି ଦେବତାଏ ଯେ ତୁମ୍ଭରେ ପୁଣ ବାଦୀ
ଜାନକୀ ଘେନି ଯାଇ ଅସୁର ଘରେ ବନ୍ଦୀ ।
ଏବେ ସେହି ଦେବତାଏ କୂଟ ଭିଆଇଲେ
ଜାନକୀ ନେଇଣ ବନସ୍ତରେ ରଖାଇଲେ ।
ସେହି ଦେବତାଙ୍କୁ ଯେ ରାବଣ ଘେନିଗଲା
ଦୁଷ୍ଟପଣ ଦେଖାଇ ପାଦେ ଖଟାଇଲା ।
ଶୁଣିଣ ଶ୍ରୀରାମ ଯେ ସନ୍ତୋଷ ହୋଇଲେ
ଦେବତାଙ୍କର ଗୁଣ ଏ ମୋତେ ଦେଖାଇଲେ ।
ପାର୍ବତୀଙ୍କୁ ବୋଲେ ଦେବ ଭାଇ ଯେ ବୋଧିବାରୁ
ଶ୍ରୀରାମ ବୋଧ ହେଲେ ଶୋକ ଯେ ସାଗରୁଁ ।
ସେଠାରେ ତିନିମାସ ରହିଲେ ତିନିଭାଇ
ଏକଦିନେ ଶ୍ରୀରାମ ଯେ ତିନିଭାଇଙ୍କି କହି ।
ଯେଉଁ କଥାମାନ ଭାଇ ମୋତେ କହିଲେ ପୁଣ
ସେକଥା ପରୀକ୍ଷା ଆଜ କରିବାରେ ଜାଣ ।
ଏତେବୋଲି ଶତେକ ଚରର ଡକାଇଲେ
ଶତେକ ନଟକାରୀ ଡକାଇ ଆଣିଲେ ।
ଚରଙ୍କୁ ବୋଇଲେ ତୁମ୍ଭେ ଯାଅ ନଗ୍ରଫେରି
ଜାନକୀ ଗଲାକୁ କି ବିଚାର କରନ୍ତି ମେଳିକରି
ଶୁଣିକରି ଚରମାନେ ବେଗେ ଚଳିଗଲେ
ନଗ୍ର ବୁଲିଯାଇ ରାମ ଛାମୁରେ ଜଣାଇଲେ ।
ବୋଇଲେ ଏଥିରେ ଦେବ ଯେତେକ ପୁରୁଷ
ସମସ୍ତଙ୍କର ବିକଳ ହେଉଅଛି ଚିତ୍ତ ।
ବୋଇଲେ ଜାନକୀଙ୍କି ତେଜିଲେ ଯେବେ ରାମ
ଅଯୋଧ୍ୟାରେ ଆଜ୍ଞ ନିଶ୍ଚେ ଘୋଟିଲା ଅଧର୍ମ ।
ନଟକାରୀମାନେ ଯାଇ ନଗ୍ରରେ ବୁଲିଲେ
ଶ୍ରୀରାମ ଆଗେ ସେହି ବାରତା କହିଲେ ।

ବୋଇଲେ ସବୁନାରୀ ନିନ୍ଦନ୍ତି ବିଧାତାକୁ
ଜାନକୀ ପରନାରୀ ଯେ ପେଶିଲେ ବନକୁ ।
ଧୋବଣୀ ଲୁଗାନେଇ ଧୋବ ଯେ କରଇ
ଜାନକୀର କଥାକୁ ଗୁରସ୍ତ ଆଗେ କହି ।
ଧୋବଣୀ କଥାକୁ ରାଘବ ଏଡ଼େ କର୍ମକଲେ
ପର ବୋଲେ ଆପଣ ଭାରିଜା ତେଜ୍ୟାକଲେ ।
ଏଥୁ ଅନନ୍ତରେ ଶୁଣ ରାମ ପୁଣ
ଆହୁରି କଥାଏ ନଗ୍ରରୁ ଶୁଣୁ ଜାଣ ।
କେ ବୋଲନ୍ତି ଶ୍ରୀରାମ କେଡ଼େ ନିଦାରୁଣ
ମିଥିଳାରେ ଧନୁଭାଙ୍ଗି ବିଭା ଜାନକୀ ପୁଣ ।
ଧନୁଭାଙ୍ଗି ଏହି ରାମ ସୀତା ବିଭାହେଲେ
କୁଳଦୀପ ଛୁଇଁ ମଧୁଶଯ୍ୟାରେ ସତ୍ୟକଲେ ।
ଦେଖ ଏହି ରାମ ପିତାସତ୍ୟ ପାଳିକରି
ରାଜ୍ୟଘୋଷ ଛାଡ଼ି ବନେ ବୁଲିଲେ ଜଟାଧାରୀ ।
ଏହି ରାମ ଦେଖ ଏବେ କେଡ଼େ କୃତ୍ୟ କଲେ
ଜାନକୀ ପରା ଭାରିଜା ବନକୁ ପେଶିଲେ ।
ସତ୍ୟଶୀଳ ବୋଲିଣ ଯେ ବୋଲିବା କାହାକୁ
ବିହିବାମ ହେଲା ବେଳେ ଧର୍ମଛାଡ଼େ ତାକୁ ।
ଶୁଣିଣ ଶ୍ରୀରାମ ଯେ ମନରେ ବିଚାରିଲେ
ଭାଇମାନଙ୍କର କଥା ସତ୍ୟ ଯେ ମଣିଲେ ।
ଏଥୁ ଅନନ୍ତରେ ତିନିଭାଇ କହି
ଆମ୍ଭର ରାଜ୍ୟକୁ ଆମ୍ଭେ ଯିବୁ ରଘୁସାଇଁ ।
ଶୁଣିକରି ରାମଚନ୍ଦ୍ର ବୋଲନ୍ତି ବେଗେ ଯାଅ
ପରରାଜ୍ୟକୁ ପାଳିତୁମ୍ଭେ ସୁଖରେ ଦିନନିଅ ।
ଶୁଣିଣ ତିନିଭାଇ ବେଗ୍ରରେ ଚଳିଗଲେ
ବାଲମୀକି ମଠେ ସେଦିନ ରହିଲେ ।
ଋଷିଙ୍କି ନମସ୍କାର ଜାନକୀରେ ମାନ୍ୟ
ରଜନୀ ସେଠାରେ ରହିଲେ ତିନିଜଣ ।
ଫାଲଗୁନ ମାସର ଯେ ଶୁକ୍ଳ ତ୍ରୟୋଦଶୀ
ସେଦିନ ରଜନୀରେ ସୀତାର ଦେହ ଚଳିଲାଟି ।
ଋଷିଙ୍କ ଆଗରେ ଆସି ଦାସୀମାନେ କହି
ଜାନକୀ ଦୁଃଖପାଏ ବିକଳ ଚିତ୍ତ ହୋଇ ।
ସେକଥା ଶୁଣି ମୁନି ମନ୍ତୁରା ପାଣି ଦେଲେ
ଦାସୀମାନେ ନେଇଣ ସୀତାଙ୍କୁ ପିଆଇଲେ ।
ପିଅନ୍ତେ ସୀତାର ଜନମ ଦୁଇପୁତ୍ର
ଖୁଡୁତା ଋଷିଙ୍କି ଦାସୀ କହିଲେ ତୁରିତ ।

ନାଭିଛେଦନ କରି ଇଛାରିଲେ ପୁଣ
ଇନ୍ତୁଡ଼ି ଲଗାଇଲେ ଅଗୁରୁ ଚନ୍ଦନ ।
ଏମନ୍ତ ପାଞ୍ଚଦିନରେ ପଞ୍ଚୁଆତି କଲେ
ଷଷ୍ଠଦିନେ ଷଷ୍ଠୀଘରେ ସେଥିରେ ଭିଆଇଲେ ।
ସପତ ଦିନରେ ଇନ୍ତୁଡ଼ି ଉଠାଇଲେ
ତିନିଭାଇ ବାଲମୀକ ଋଷିଙ୍କୁ କହିଲେ ।
ବୋଇଲେ ନାମକରଣକୁ ଲକ୍ଷେ ଋଷି ଆଣ
ଏତେକହି ଚଳିଗଲେ ନିଜପୁର ଶୁଣ ।
ମାତାଗଣଙ୍କ ଆଗରେ ଯାଇଁ ଜଣାଇଲେ
ଜାନକୀର ଦୁଇପୁତ୍ର ହୋଇଛି ବୋଇଲେ ।
ଶୁଣିଣ ମାତାମାନେ ହରଷ ମନହେଲେ
ଅନ୍ତଃପୁରେ ଯାଇଣ ବାରତା କହିଲେ ।
ବୋଇଲେ ଠାକୁରାଣୀ ହେଲେ ଦୁଇପୁତ୍ର
ପିତାଘରେ ଅଛନ୍ତି ଜଗତର ମାତ ।
ହାଟବାଟ ଧୋବାତୁଠ ଯୂର ଛଡ଼ପୁର
ଲେଖିକରି ଧନ ଦେଲେ ସବିଙ୍କ ସକଳ ।
ସତର ଦିନରେ ସକଳ ଦ୍ରବ୍ୟ ଘେନି
ବାଲମୀକ ମଠରେ ପ୍ରବେଶ ଭାଇତିନି ।
ଦେଖିଣ ଋଷି ତାଙ୍କୁ ହରଷ ହୋଇଲେ
ଋଷିଙ୍କର ଚରଣେ ନମସ୍କାର କଲେ ।
ଜାନକୀ ଚରଣେ ଓଳଗିଲେ ଯାଇଁ
ଜାନକୀ ଦେଖିଣ ସନ୍ତୋଷ ମନ ହୋଇ ।
ଋଷିଙ୍କର ପାଶରେ ହେଲେ ପରବେଶ
ବୋଇଲେ ସକଳ ଋଷି ଅଣାଅ ତୁରିତ ।
ଶୁଣିଣ ବାଲମୀକ ସୁମରଣା କଲେ
ନବକୋଟି ଋଷି ଆସିଣ ମିଳିଲେ ।
ତରୁଲତା ବନରେ ଋଷି ହେଲେ ଛାଇ
ମନୁମାୟା ଯାଇଣ ଜାନକୀ ଆଗେ କହି ।
ଅନେକ ଋଷି ଯେ ଅଇଲେ ସର୍ବେଜାଣ
ପୁତ୍ରଙ୍କର ନାମକରଣ ପରଦିନ ପୁଣ ।
ଶୁଣିକରି ଜାନକୀ ପରମ ତୋଷ ହେଲେ
ଖୁଡୁତାମାନେ ମେଲାଣି କରିବେ ବୋଇଲେ ।
ଋଷିମାନଙ୍କ ଆଗରେ ଚନ୍ଦନ ନେଇ ଦେଲେ
ଋଷିମାନେ ସକଳ ହୋମବିଧି କଲେ ।
ଅନେକ ଘୃତ ନେଇ ଦେଲେ ତିନିଭାଇ
ଆହୂତି ଦେଲେ ଋଷି ସନ୍ତୋଷ ମନଦେଇ ।

ଏମନ୍ତେ ତିନିଦିନ ସେଠାରେ ରହିଗଲା
ମୀନ ଆଠ ଦିନରେ ଦ୍ୱିତୀୟା ହୋଇଲା ।
ଚଇତ୍ର ଶୁକଳ ତୃତୀୟାର ଦିନ
ନାମକରଣ ବିଧିହେଲା ଯୋଗ ପୁଣ ।
ରଜନୀ ଥିଲା ତିନିଘଡ଼ି ଜାନକୀ ଚଳିଗଲେ
ଦାସୀଙ୍କି ଘେନି ଜାହ୍ନବୀ ସ୍ନାନ କଲେ ।
ମଢ଼ିଆରେ ପ୍ରବେଶ ହେଲେ ଆସି ପୁଣ
ନୂତନ ପାଟଶାଢ଼ୀ ପିନ୍ଧିଲେ ବହନ ।
ପତନି ଗୋଟିଏକ ଉପରାଣ ଦେଲେ
ନୂତନ ପଲଙ୍କରେ ପୁତ୍ରଙ୍କୁ ଶୁଆଇଲେ ।
ଦାସୀମାନେ ପାଟପିନ୍ଧି ପହୁରିଣ
ବେଶହୋଇ ଜାନକୀ ବସିଲେ ସିଂହାସନ ।
ରତ୍ନର ପାଦୁକା ଚରଣେ ଲଗାଇଲେ
ମନର ଉଲ୍ଲାସ ଜାନକୀ ଦେବୀ ହେଲେ ।
ତିନିଭାଇ ସ୍ନାନକରି ଅଇଲେକ ପୁଣ
ନିତ୍ୟକର୍ମ ସାରିବେଗେ ଋଷିଙ୍କ ଆଗେଣ ।
ସକଳ ଋଷିଯାଇଁ ଗଙ୍ଗାରେ ସ୍ନାନ କଲେ
ନିତ୍ୟକର୍ମ ସାରିଣ ମଠରେ ମିଳିଲେ ।
ହୋମବିଧି କରିଣ ପଢ଼ିଲେ ଚଉରିବେଦ
ସ୍ୱର୍ଗପୁର ଯାଏ ଶୁଭିଲା ଶବଦ ।
ଜାଣିଣ ଦେବତାଏ ଶୂନ୍ୟରେ ଗୁଣ୍ଡହେଲେ
ଅମଳିଣ ପୁଷ୍ପବୃଷ୍ଟି ସେଥିରେ ଆଣି କଲେ ।
ଅପସରୀମାନେ କଲେ ନୃତ୍ୟରଙ୍ଗ
ଶୂନ୍ୟରୁ ଦେବତାଏ ମିଳିଲେ ସେ ସର୍ବ ।
ଋଷି ଦେବତାଏ ହେଲେ ଏକମେଳ
ବାଲମୀକ ବୋଲନ୍ତି ପବିତ୍ର ରାମକୁଳ ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ଅଗସ୍ତୀ ଆଶ୍ଚର୍ଯ୍ୟ ହେଲେ ଯାଇଁ ସେଥି ।
ଶ୍ରୀଫଳ ଟେକାଇଣ ନେଲେ ସୀତାଠାରୁ ପୁଣ
ହୋମ ସେଠାରେ ଯେ କଲେ ଆରୋପଣ ।
ହୋମ ବିଧି ସାରିଣ ପଞ୍ଚାମୃତ କଲେ
ବେନି ପୁତ୍ରଙ୍କର ଅଙ୍ଗ ପବିତ୍ର କରାଇଲେ ।
ଅଗସ୍ତୀ ବୋଲନ୍ତି ଜାନକୀଙ୍କି ଚାହିଁ
ଗଙ୍ଗାରୁ ଜଳ ଗରିଆଏ ଘେନିଆସ ଯାଇଁ ।
ଶୁଣି କରି ଜାନକୀ ବେଗ୍ରରେ ଚଳିଗଲେ
ଗଙ୍ଗାର କୂଳରେ ଯାଇ ପ୍ରବେଶ ହୋଇଲେ ।

ଦେଖିଣ ଧବଳମୁଖୀ ଚରଣେ ନମେ ପୁଣ
ବୋଇଲେ ମଧ୍ୟରୁ ଜଳ ଆଣ ଗୋ ବହନ ।
ଜାନକୀ ବୋଲନ୍ତି ନୋହେ ଏହୁ କଥାତ
ମୋତେ ବନେ ପେଶିଛନ୍ତି କଉଶଲ୍ୟା ସୁତ ।
ଜଳରେ ବୁଡ଼ଇ କି ମାରିବୁ ମୋତେ ନେଇ
ଦୁଇଗୋଟି ବାଳକ ଅନାଥ ହେବାପାଇଁ ।
ଜାନକୀର କ୍ରୋଧ ଶୁଣି ଧବଳାଙ୍ଗୀ ଯାଇ
କନ୍ଧରେ ବସାଇଁ ମଧ୍ୟରେ ଘେନି ଯାଇ ।
ଗଙ୍ଗା ମଧ୍ୟେ ଜାନକୀ ବୁଡ଼ାଇଲେ କୁମ୍ଭ
କୂଳରେ ଛାଡ଼ିଦେଲେ ହେଲେ ସେ ଆନନ୍ଦ ।
ଉଦକ ଘେନି ଜାନକୀ ହେଲେ ପରବେଶ
ଦୁଇ ବାଳକଙ୍କୁ ସ୍ନାନ କରାଇ ବିଶେଷ ।
ପୁତ୍ରଙ୍କୁ ପୋଛି ଅଳଙ୍କାର ଖଞ୍ଜିଦେଲେ
ରତ୍ନ ପଲଙ୍କରେ ନେଇଣ ଶୁଆଇଲେ ।
ଅଗସ୍ତୀ ବୋଇଲେ କେହୁ ଧରିବ ବଡ଼ପୁତ୍ର
ଜାନକୀ ବୋଲନ୍ତି ବଡ଼ ଖୁଡୁ ତାଙ୍କୁ ଡାକ ।
ଶୁଣି କରି ଭ୍ରଥବୀର ଧଇଲେ ନେଇ କୋଳେ
ସାନ ପୁତ୍ରକୁ କୋଳରେ ଜାନକୀ ଧରିଲେ ।
ଅଗସ୍ତୀ ବୋଲନ୍ତି କୈକେୟୀ ଏବେ ଶୁଣ
ପୁଅଙ୍କର ନାମ କିସ ଦେବ ପୁଣ ।
ଭରତ ବୋଲନ୍ତି ଏ ରାମ ପ୍ରାୟେ ଦିଶି
ନବୀନ ସୁନ୍ଦର ନାମ ହେଉ ଯା ନାମଗୋଟି ।
ଜାନକୀ ବୋଲନ୍ତି ଏ ପୁତ୍ରର ନାମ ଦିଅ
ଏହାର ଅକୃତି ମୋ ଖୁଡୁତା ପ୍ରାୟେ ଦେହ ।
ମୋ ଖୁଡୁତା ନାମ ଯେ ଅଟେ କୁଶଧ୍ୱଜ
ଏହାର ନାମ ହେଉ ହେ ଋଷିରାଜ ।
ନବ କୁଶ ନାମ ଯେ ହେବ ଏହାଙ୍କର
ଶୁଣି କରି ସନ୍ତୋଷ ହେଲେ ମୁନିବର ।
ଦେବତାଏ ଆଣିଣ ଉପହାର ଦେଲେ
ଅଜୟ ଅତୁଟ ମଣିମାଳ ହୃଦେ ଲମ୍ଭାଇଲେ ।
ସକଳ ଆୟୁଧ ଦେଇ ଗଲେ ଦେବଗଣ
ସେ ଆୟୁଧ ସମ୍ଭାଳିଲେ ବାଲମୀକ ପୁଣ ।
ଜାନକୀ ବୋଲନ୍ତି ଋଷିଙ୍କି ଧନ ଦିଅ
ବେଗ ଯାଇ ତିନି ଖୁଡୁତାଙ୍କୁ କହ ।
ଶୁଣି ତିନି ଖୁଡୁତା ଧନ ବିଳୋହିଲେ
ଋଷି ଗୋଟିକେ ସହସ୍ରେ ସୁନିଆଁ ନେଇଦେଲେ ।

ଆନନ୍ଦ ହୋଇଲେ ଯେ ଋଷିଗଣେ ପୁଣ
ପାଦାର୍ଘ୍ୟ ଦେଲେ ପୁତ୍ରଙ୍କର ଶିରେ ଜାଣ ।
ଯେ ଯାହାର ଆସ୍ଥାନକୁ ଋଷି ବିଜେ କଲେ
ଅଗସ୍ତିଙ୍କି ଜାନକୀ ଲକ୍ଷେ ସୁନିଆଁ ଦେଲେ ।
ବାଲମୀକ ଋଷିଙ୍କି ଲକ୍ଷେ ଦେଲେ ପୁଣ
ଦାସୀଙ୍କି ଦେଲେ ଲକ୍ଷେ ବଧାଇ କରିଣ ।
ପାକକରି ଷଡ଼ରସେ କଲେକ ରନ୍ଧନ
ତିନିଭାଇ ଭୁଞ୍ଜିଲେ ଭୁଞ୍ଜିଲେ ଆପେ ପୁଣ ।
ପାଞ୍ଚଦିନ ରହିଣ ତିନିଭାଇ ଗଲେ
ଯେ ଯାହା ନିଜଦେଶେ ପ୍ରବେଶ ହୋଇଲେ ।
ମାତାମାନଙ୍କୁ କହିଣ ଅନ୍ତଃପୁରରେ କହି
ଜାନକୀର ପୁତ୍ର ନାମ ଲବ କୁଶ ହୋଇ ।
ଭଗବତୀ ବୋଇଲେ ଶୁଣ ହେ ଈଶାନ୍ୟ
ସେଠାରୁ କିସ କଲେ ରାମ ଯେ ରାଜନ ।
ଈଶ୍ୱର ବୋଇଲେ ସେ କଥାହିଁ ଶୁଣ
ଯମଦଗ୍ନି ଋଷି ପ୍ରବେଶ ଅଯୋଧାରେ ପୁଣ ।
ଶ୍ରୀରାମଙ୍କ ଆଗରେ ଯାଇଣ ମିଳିଲେ
ମୁନିଙ୍କି ଦେଖି ଶ୍ରୀରାମ ନମସ୍କାର କଲେ ।
ଗଙ୍ଗା ଜଳରେ ମୁନି ଚରଣ ପଖାଳିଲେ
ସିଂହାସନରେ ମୁନିଙ୍କି ନେଇଣ ବସାଇଲେ ।
ମୁନି ବୋଲନ୍ତି ଶ୍ରୀରାମ ସବୁଟି କୁଶଳ
ଶ୍ରୀରାମ ବୋଇଲେ ମୋ ଜନ୍ମ ହୋଇଲା ନିଷ୍ଫଳ
ଏକା ଭାରିଯାକୁ ମୁଁ ଲଭି ନ ପାରିଲି
ନୀଚଲୋକ ବଚନରେ ବନେ ନିବାସିଲି ।
ଋଷି ବୋଲନ୍ତି ଶ୍ରୀରାମ ହେ ଗଲା ମଲାସରି
ଆଗକରି ତେଜ୍ୟାକଲେ ପଛନ୍ତେ କିମ୍ପାଭାଳି ।
ତ୍ରିଗତ ବୋଲି ଯେ ଥିଲେ ଏକ ରାୟେ
ବ୍ରାହ୍ମଣମାନଙ୍କୁ ଗୋରୁଦାନ ସେହୁ ଦିଏ ।
ଦାନଦେଲା ଗୋରୁଗୋଟି ମିଶିଲା ତା ପଲେ
ନଜାଣି ରାଜା ସେଗୋରୁ ବ୍ରାହ୍ମଣେ ଦାନଦେଲେ
ଉତ୍ସର୍ଗ କରିଣ ସେ ବ୍ରାହ୍ମଣ ନେଲା ଗୋରୁ
ଗୋଷ୍ଠରେ ପଶିଲା ସେ ପଲେ ମିଶିବାରୁ ।
କ୍ଷୀନ୍ନ କ୍ଷୀନ୍ନ ଶାସନ ବ୍ରାହ୍ମଣ ଖୋଜି ଯାଇ
ସୁରସ୍ତ ଶାସନରେ ଠାବ କଲା ଯାଇ ।
ସେ ଦ୍ୱିଜ ବୋଲେ ବ୍ରାହ୍ମଣ ମୋତେ ଦାନଦେଲା
କଳି କରି ସିଂହଦ୍ୱାରେ ଦୁଇ ହେଲେ ପରା ।

କଳି ଦେଖି ରାଜନ ବ୍ରାହ୍ମଣଙ୍କୁ ବୋଲଇ
ନ ଜାଣି ସେ ଗୋରୁକୁ ପୁନରପି ଦାନ ଦେଇ ।
ତାର ବଦଳରେ ତୁମ୍ଭେ ଲକ୍ଷେ ଗୋରୁ ନିଅ
ଶୁଣିକରି ବ୍ରାହ୍ମଣ ହୋଇଲାଟ କୋହ ।
ବୋଇଲା ମୋର ଗୋରୁକୁ ନେବଇଁ ଯେ ମୁହିଁ
ନଦେଲେ ତୋତେ ଆଜ ଶାପ ଦେବି ମୁହିଁ ।
ଏହା ଶୁଣି ରାଜନ ଶାପକୁ ଦେଖି ଡରି
ନୃପତିକି ରହିଁଣ ବ୍ରାହ୍ମଣ ଦିଏ ଗାଳି ।
ବୋଇଲେ ମୋହର ଯେ ଶାପ ଏବେ ଘେନ
ପନ୍ଦର ଯୁଗ ଏଥିରେ ବଞ୍ଚିବୁ ରାଜନ ।
ସେଠାରୁ ପିହୁଳା ଏଣ୍ଡୁଅ ଯେ ହୋଇବୁ
ବେନି ଯୁଗ ମଧ୍ୟରେ ତୁ ବିଷ୍ଣୁଙ୍କୁ ଦେଖିବୁ ।
ଏ କଥାକୁ ହେତୁ କରି ରାଜନ ରହିଥିବୁ
ନାରାୟଣ ଛୁଇଁଲେ ତୁ ମୁକତ ହୋଇବୁ ।
ମହତ ଲୋକଙ୍କ କଥା କେବେହେଁ ନୋହେ ଆନ
ଶୁଣିଣ ଶ୍ରୀରାମ ଯେ ତ୍ରିପୁତି କଲେ ମନ ।
ବୋଇଲେ ଭୋ ମୁନି ତ୍ରିଜଗତ କିସ କଲା ।
ବ୍ରହ୍ମଶାପ ପାଇ ସେ ନିଜପୁର ଗଲା ।
ପନ୍ଦର ଯୁଗ ଅନ୍ତରେ ପିହୁଳାଏଣ୍ଡୁଅ ସେହୁହେବ
ନାରାୟଣ ଛୁଇଁଲେ ସେ ମୁକତ ହୋଇବ ।
ଶୁଣ ହେ ଶ୍ରୀରାମ ପୂର୍ବର ବିଧାନ
ନିମିରାଜା ବୋଲି କରି ଏକଇ ରାଜନ ।
ଯାଗ କରିବ ବୋଲି ବଶିଷ୍ଠଙ୍କୁ ବରି
ରହିଁଣ ରାଜନ ଯେ ବୋଇଲେ ତପଚାରୀ ।
ଦେବଇନ୍ଦ୍ର ବୋଲି ଯେ ବରିଥିଲେ ଆଗେ
ଏବେ ମୁଁ ଆଚାର୍ଯ୍ୟ ହେବି ତାର ଯାଗେ ।
ସେଠାରୁ ଆସିଲେ ତୋତେ ହୋମ କରାଇବି
ଆଗେ ବରିଲା ଦେବତା ପୁରକୁ ମୁଁ ଯିବି ।
ଶୁଣିଣ ନିମିରାଜା ବାହୁଡ଼ି ପୁଣି ଗଲା
ଗଉତମ ଋଷିଙ୍କି ଯାଇଣ ବରିଲା ।
ଶୁଚିବନ୍ତେ ବସିଲେ ନିମି ଯେ ରାଜନ
ସେ ଯୋଗେ ଆଚାର୍ଯ୍ୟ ଯେ ହେଲେ ଗଉତମ ।
ହେମଗିରି ନିକଟରେ ଯାଇ ଯାଗ କଲା
ପାଞ୍ଚବରଷ ଯାଗ କରିବ ସେ ରାଜା ମନାସିଲା ।
ଅଗ୍ନିରେ ହୋମକରେ ବେଦମନ୍ତ୍ର ପଢ଼ି
କୁଶ ସମୀଧରୁ ପକାଏ ଯୋଡ଼ି ଯୋଡ଼ି ।

ବଶିଷ୍ଠ ଇନ୍ଦ୍ରଙ୍କୁ କରାଇଲେ ଯାଗ
ସକଳ ଦେବଙ୍କୁ ସେ ଦେଲେ ହବିର୍ଭାଗ ।
ତିନି ବରଷରେ ସେହୁ ସମାପତ କଲେ
ମହେନ୍ଦ୍ରର ବେଳେ ଯହୁଁ ଆହୁତି ସମର୍ପିଲେ ।
ସୁରରାଜା ଯେ ସନ୍ତୋଷ ମନ ହେଲେ
ବଶିଷ୍ଠଙ୍କୁ ଅନେକ ଦକ୍ଷିଣା ଦାନ ଦେଲେ ।
ଇନ୍ଦ୍ରଙ୍କୁ ଯାଗ ଯେ ପ୍ରାପତ କରାଇଲା
ସେଠାରୁ ଅଇଲେ ଅଦିତି ସୁତ ପରା ।
ନିମିରାଜା କଟକରେ ପରବେଶ ହେଲେ
ଯାଗ କଥା ଶୁଣିଣ ମନରେ କ୍ରୋଧହେଲେ ।
ହେମଗିରି ନିକଟରେ କରିଛି ଯାଗଶାଳ
ସେଠାରେ ମିଳିଲେ ଯେ ବ୍ରହ୍ମାଙ୍କ ଦୁଲାଳ ।
ନିମିରାଜାକୁ ସେ ବୋଇଲେ ମୁନି ଚହିଁ
ମୋତେ ଯେ ବରିଲୁରେ ଆଚାର୍ଯ୍ୟପଣେ ତୁହି
ଶୁଣିଣ ନିମିରାଜା ନ ଦେଲେ ଉତ୍ତର
ଅଗ୍ନିରେ ହୋମ ଯେ କରନ୍ତି ନୃପବର ।
ବୋଇଲେ ଗର୍ବ ତୁରେ କଲୁ ନରପତି
ତୋହର ଶରୀର ହେଉରେ ଶିବ ଗୋତ୍ରି ।
ଆଚାର୍ଯ୍ୟ କରିଣ ତୁ ଯାଗରେ ନ ବରି
ଏବେ ସେ ଗଉରବ ନ କଲୁ ବିଚାରି ।
ଆଜ ତୋର ଶରୀର ହେଉ ଖଣ୍ଡ ଖଣ୍ଡ
କ୍ଷୟ ରୋଗରେ ନାଶ ଯାଉରେ ତୋର ପିଣ୍ଡ ।
ଶୁଣିଣ ମହାରାଜା ପାଇଲାକ ଭୟେ
ଭୟରେ ଥର ହର କମ୍ପିଲା ତାର କାୟେ ।
ବଶିଷ୍ଠଙ୍କୁ ବୋଲେ ତୁ ଯେ ଅବେଭାର କଲୁ
ଅଦୋଷେ ଅକାରଣେ ମୋତେ ଶାପ ଦେଲୁ ।
ତୁହି ମୂର୍ଖ ହୁଅ ହୋ ନ ଆସୁ ତୋତେବେଦ
ଶୁଣିଣ ବଶିଷ୍ଠଙ୍କୁ ଲାଗିଲା ମନେ ଖେଦ ।
ବ୍ରହ୍ମାଙ୍କୁ ମହାମୁନି ଯେ ଜଣାଇଲେ ଯାଇ
ନିମି ରାଜନ ଶାପ ଦେଲେ ଯହିଁ ପାଇଁ ।
ଶୁଣିଣ ପିତାମହ ବଶିଷ୍ଠରେ କହି
ବରୁଣର ଶରୀରେ ପଶ ଏବେ ଯାଇ ।
ଏହି ଦେହ ଘେନି ତୁ ହେବୁ ଉତପତ୍ତି
ଶିଖିବୁ ଚାରିବେଦ ଜାଣିବୁ ନ୍ୟାୟ ନୀତି ।
ଶୁଣିଣ ବରିଷ୍ଠ ଯେ ସେଠାରୁ ଚଳିଗଲେ
ବରୁଣର ଶରୀରେ ଯାଇଣ ପଶିଲେ ।

ଏସନ ସମୟରେ ଉର୍ବଶୀ ଅପସରୀ
ସଖୀଙ୍କି ଘେନିଣ ଗଲା ଜଳକ୍ରୀଡ଼ା କରି ।
ଅଷ୍ଟ ଅପସରୀଙ୍କର ଉପରେ ଯେ ଶ୍ରେଷ୍ଠ
ରୂପରେ ଯଉବନ ସୁନ୍ଦରେ ଗରିଷ୍ଠ ।
ଦେବେ ବଶ ହୋନ୍ତି ଯେ ତାର ମୁଖ ଚହିଁ
ତିନି ପୁରେ ତାକୁ କେ ପଟାନ୍ତର ନାହିଁ ।
ବରୁଣର ପିତା ଦେଖିଲେ ବଶ ହୋନ୍ତି
କାମରେ ଉତକର୍ମ ବୀଜ ଯେ ଛାଡ଼ନ୍ତି ।
ବରୁଣଠାରେ ଅଗସ୍ତୀ ପରକାଶ ହେଲେ
ବରୁଣଠାରୁ ଜାତ ସେ ପର୍ବେ ହୋଇଥିଲେ ।
ଉର୍ବଶୀକି ଦେଖିଣ ବରୁଣ କାମେ ବାଇ
ବୀର୍ଯ୍ୟ ଉଛୁଳନ୍ତେ ଜଳରେ ପଡ଼ଇ ।
ସେହି ବୀର୍ଯ୍ୟୁ ପୁତ୍ରେକ ହେଲା ଉତପତ୍ତି
ସେହି ପୁତ୍ର ବରୁଣର ବଶିଷ୍ଠ ଅଟନ୍ତି ।
ମାତା ନ ଥାଇ ଯେ ବଶିଷ୍ଠ ଜାତ ହୋଏ
ସେହି ଦେହ ଗୋଟି ହେଲା ବେନିକାୟେ ।
ବେଦ ତାକୁ ଆସିଲା ବଢାର କଲେ ମନ୍ତ୍ର
ଧ୍ୟାନରେ ଧାରଣା ଜାଣିଲେ ତପୋବନ୍ତ ।
ତେବେ ଋଷିମାନେ ଯେ ଶାପକୁ ଭୟେ କଲେ
ଶ୍ରୀରାମ ବୋଇଲେ ନିମିରାଜା କିସ କଲେ ।
ବଶିଷ୍ଠ ତାହାଙ୍କୁ ଯେ ଦୁର୍ଭାର ଶାପ ଦେଲେ
ସେକଥା ମୋର ଆଗେ କହ ଋଷି ଭଲେ ।
ଋଷି ବୋଇଲେ ସେ ହରାଏ ପୁଣ ପ୍ରାଣ
ଯାଗନୀକ ଦେଖିଣ ବିହିଲେ କାରଣ ।
ଧର୍ମବନ୍ତ ଦେଖିଣ ଆନନ୍ଦେ ଦେହ ଦେଲେ
ଦେବତାମାନେ ଦେଖି ସ୍ୱର୍ଗରେ ଭୟକଲେ ।
ଯଯାତି ସୁମରିଲେ ପାର୍ବତୀଙ୍କ ପତି
ଦୋହିତୀ ନିମନ୍ତେ ତାକୁ ଦେବେ ଶାପ ଦ୍ୟନ୍ତି ।
ବୃଦ୍ଧକାଳେ ଧୂର୍ଜଟି ପୁତ୍ରେକ ତାକୁ ଦେଲା
ପୁତ୍ରଠାରୁ ଯୁବା ଯେ ଅବସ୍ଥା ଘେନିଲା ।
ଆବର ପୁତ୍ରମାନେକ କଲେ ପିତା ବୋଲ
ବହନ୍ତି ପାଣିରେ ଯେହ୍ନେ ଭାସିଯାଏ ସୋଲ ।
ବୋଇଲେ ଯୁବା ଦେହ କିମ୍ପା ତୁମ୍ଭଙ୍କୁଦେବୁ
ଯୁବା ଶରୀରେ ଆମ୍ଭେ ସୁଖ ବିଳସିବୁଁ ।
କୋପରେ ପିତା ଯେ ପୁତ୍ରକୁ ଶାପ ଦେଲା
ରାଜାପଣକୁ ଭାଜନ ନୁହରେ ବୋଇଲା ।

ପୂର୍ବକର୍ମେ ପୁତ୍ରରେ ପିତାରେ ଭଗତି
ଯୁବା ପାଲଟଇ ସେ ଘେନିଲା ପିତା ନିକି ।
ଯଯାତି କୁମରକୁ ଅଭିଷେକ ସେ କଲା
ଏହାର ଅଙ୍ଗ ଏକାରେ ନୃପତି ହୋଇଲା ।
ଆପଣା ଭୋଗ ନିମନ୍ତେ ଯଯାତି ଯୁବା ହୋଇ
ପୁତ୍ରମାନେ ରାଜା ଯେ ନୋହିଲେ ଶାପ ପାଇ ।
ଯେଉଁ ପୁତ୍ର ଯୁବା ସ୍ୱରୂପ ଦେଇଥିଲା
ସେ ତ୍ରୀଜଟା କୁମର ରାଜା ଯେ ହୋଇଲା ।
ଶୁଣିଣ ରାମ ହେଲେ ପୂର୍ବ ବ୍ୟବସ୍ଥା ମନ
ତାରାର ଶାପ ତୋତେ ଭୋଗ ହେଲା ପୁଣ ।
ବାର ବରଷ ପର୍ଯ୍ୟନ୍ତ ଏଠାରେ ଭୋଗନାହିଁ
ଏଗାର ବରଷ ଛଡ଼ମାସେ ଦେଖିବୁ ବଇଦେହୀ
ପୁଣି ଦୁଇଶତ ଛୟାଳିଶି ଯିବ ଯେ ବରଷ
ପୁତ୍ର ବଧୂ ଘେନି ଭୋଗ କରିବ ଜାନକୀ ବିଳାସ
ଏତେ କହି ମୁନି ଯେ ନିଜପୁର ଗଲେ
ସିଂହଦ୍ୱାରେ ଗୁହାରିଆ ଉଚ୍ଚରେ ରାବ ଦେଲେ
ସୁମନ୍ତକୁ ବୋଇଲେ ନ ଶୁଣ କିମ୍ପା କର୍ଣ୍ଣେ
ସିଂହଦ୍ୱାରକୁ ଏବେରେ ଯାଅ ତତକ୍ଷଣେ ।
କାହିପାଇଁ ଗୁହାରିଆ ଆସିଅଛି ଏବେ
ପଚାରି ଆସ ଏବେ ବୋଇଲେ ରାଘବେ ।
ଶୁଣିଣ ସୁମନ୍ତ ଯେ ବେଗେ ଚଳିଗଲା
କେହିନାହିଁ ବୋଲିଣ ବାହୁଡ଼ି ଅଇଲା ।
ଶ୍ରୀରାମର ଛାମୁରେ ଜଣାଇଲେ ଯାଇ
ସିଂହଦୁଆରେ କେହି ନାହାନ୍ତି ଗୋସାଇଁ ।
ଶ୍ରୀରାମ ବୋଇଲେ ତୁରେ ବାହୁଡ଼ି ବେଗେଯାସି
ଅପାର ବେଳରୁ ସେ ଗୁହାରୀ କରୁଅଛି ।
ଶୁଣିକରି ସୁମନ୍ତ ବେଗେ ଚଳିଗଲା
ସିଂହଦ୍ୱାରେ ଗୁହାରିଆ କାହାକୁ ନ ଦେଖିଲା ।
ନିରୋପି ରହିଲା ରାମର ଆଜ୍ଞା ଘେନି
ଶ୍ୱାନ ଗୋଟିଏ କାନ୍ଦୁଅଛି ଦ୍ୱାରେ ପୁଣି ।
ମନରେ ବିଚାରିଲା ଏହିତ ଗୁହାରିଆ
ସର୍ବଜ୍ଞ ପୁରୁଷତ ଅଟନ୍ତି ରଘୁନାହା ।
ଏମନ୍ତ ବିଚାରି ଶ୍ୱାନକୁ ପଚାରେ ପୁଣଯାଇ ।
ଲୋତକ ବୁହାଇ କିପାଁ ହୋ ବସିଅଛୁ ତୁହି ।
କେବଣ କାର୍ଯ୍ୟେ ତୋରରେ କହ ତୁ ନିକର
ତୋହର ଦୁଃଖକୁ ତ ଜାଣିଲେ ରଘୁବୀର ।

ମୋତେ ପେଶିଛନ୍ତି ତୋତେ ଘେନିଯିବା ପାଇଁ
ଶୁଣିକରି ଶ୍ୱାନ ବୋଲେ ତାକୁ ଚାହିଁ ।
ଶ୍ୱାନ ବୋଲେ ତୁମ୍ଭେ ଶୁଣ ହେ ମନ୍ତ୍ରୀବର
ଯାହାଇଛା ମୋତେ ଦେଇଛନ୍ତି କୁଶଧର ।
ଦ୍ୱାରଢ଼େଇଁ ମୁଁ ଯେ ନ ଯାଏ ଘରକୁ
ଯାଗଶାଳ ଦେଖିଲେ ଆବୋରେ ମୁଁ ତାକୁ ।
କେମନ୍ତେ ଯିବି ମୁଁ ରାଜାର ନବରକୁ
ଏକଥା ମନ୍ତ୍ରୀ କହୁଛ କେଉଁ ବେଭାରକୁ ।
ତୁମ୍ଭେଯାଇ ଶ୍ରୀରାମରେ କହ ହେ ମଣାଇଁ
ପୂର୍ବରୁ ସତ୍ୟଅଛି କାହାର ଗୃହେ ନ ପଶଇଁ ।
ଶୁଣି ସୁମନ୍ତ ଯେ ବେଗେ ବାହୁଡ଼ିଲା
ଶ୍ରୀରାମଙ୍କ ଆଗରେ କର ଯେ ଯୋଡ଼ିଲା ।
ଭୋଦେବ ସିଂହଦ୍ୱାରେ ରୋଦନକରେ ଶ୍ୱାନ
ଭଲାଏତେ ଦୂରେ ଜାଣିଲ ରଘୁନାନ ।
ମୁହିଁ କହିଲେ ଶ୍ୱାନ କେବେହେଁ ନ ଆସିଲା ।
ଯିବାର ଅବେଭାର ବୋଲିଣ ବୋଇଲା ।
ଶ୍ରୀରାମ ବୋଇଲେ ତୁହି ଆମ୍ଭ ଆଜ୍ଞା କହି
ସେ ଶ୍ୱାନ ମହାତମାକୁ ଘେନିଆସ ଯାଇଁ ।
ଶୁଣିଣ ସୁମନ୍ତ ମନ୍ତ୍ରୀ ବେଗେ ଚଳିଗଲା
ଶ୍ରୀରାମଙ୍କ ଆଜ୍ଞାରେ ଶ୍ୱାନକୁ ଅଣାଇଲା ।
ଛାମୁରେ ଦରଶନ କରାଇଲେ ନେଇ
ହସ୍ତଯୋଡ଼ି ଶ୍ୱାନ ଛାମୁରେ ଉଭାହୋଇ ।
ରାଘବକୁ ଚାହିଁଣ ବୋଲେ ଶ୍ୱାନବୀର
ମୋ ଗୁହାରି ଦାଶରଥୀ ବୁଝୁହେଁ ନିକର ।
ଅଯୋଧ୍ୟା ନଗ୍ର ଯେ ତୁମ୍ଭେ ପାଳୁଛ ଧର୍ମରେ
ଅଷ୍ଟାଦଶ ଜାତି ଯେ ଅଛନ୍ତି ଏପୁରେ
ଦିଗପାଳଙ୍କର ଭୋଗ କରନ୍ତି ଏପୁରେ ।
ଯମଦଣ୍ଡ ନ ଲାଗଇ ଏହୁ ଯେ ନଗ୍ରରେ ।
ବେଳକାଳ ଜାଣି ବୃଷ୍ଟିକରେ ଚାରିମେଘ
ମୋତେ ଏଡ଼େଦଣ୍ଡ କିମ୍ପା ହେଲା ରାମରାଜ ।
ପ୍ରମାଣ ସିଦ୍ଧ ନାମରେ ବ୍ରାହ୍ମଣ ଭିଖାରୀ
ସେହି ମୋତେ ଭୋଦେବା ହେ ଅକାରଣେମାରି ।
ମୋହର ବସାରେ ଯେ ମୁହିଁଥିଲି ଶୋଇ
ତୁମ୍ଭରାଜ୍ୟରେ ବଡ଼ଅନ୍ୟାୟ ହୋଇଲା ଗୋସାଇଁ ।
ଶୁଣି ଶ୍ରୀରାମ ଖୁଣ୍ଟିଆ ମୁଖକୁ ଚାହିଁଲେ
ବେଗକରି ସେ ବ୍ରାହ୍ମଣକୁ ଘେନିଆଣ ବୋଲେ ।

ଶୁଣିକରି ଖୁଣ୍ଟିଆ ବେଗେ ଚଳିଗଲା
ସେ ବ୍ରାହ୍ମଣକୁ ଆଣିଣ ଛାମୁରେ ଉଭାକଲା ।
ଶ୍ରୀରାମ ବୋଇଲେ ସେ ବ୍ରାହ୍ମଣକୁ ଚାହିଁ
ଶ୍ୱାନ ଶୋଇଥିଲା ତୁମ୍ଭେ ମାଇଲ କିପାଇଁ ।
ବ୍ରାହ୍ମଣ ବୋଇଲା ତୁମ୍ଭେ ଶୁଣ ରାମରାୟେ
କ୍ଷୁଧାରେ ପ୍ରଜ୍ୱଳିତ ହୋଏ ମୋର କାୟେ ।
ସ୍ନାହାନ ସାରିଣ ଯେ ଦ୍ୱାରକୁ ମୁଁ ଯାଇଁ
ଚିହ୍ନିଲା ଲୋକଙ୍କୁ ଏଯେ ତେରଛ କରିଚାହିଁ ।
ବାଟରେ ଶୋଇଥିଲା ଯେ ଯାକୁ ମୁଁ ଛୁଇଁଲି
ମୋ ଦେହ ରାଗ ହେଲା ଯାକୁ ବାଡ଼ିଏ ମାଇଲି ।
ଦ୍ୱିଜବର ମୁଖରୁ ଏ ବଚନ ଶୁଣି
ବଶିଷ୍ଠଙ୍କ ମୁଖକୁ ଚାହିଁଲେ ରଘୁମଣି ।
ଆଉ ଯେତେ ଥିଲେ ସାମନ୍ତ ପାତ୍ରଗଣ
ଶ୍ରୀରାମ ବୋଲନ୍ତି ଏ କେବଣ କାରଣ ।
ସର୍ବଜନେ ବୋଇଲେ ଏ ଦ୍ୱିଜ ବଡ଼ଦୋଷୀ
ଅକାରଣେ ଶ୍ୱାନକୁ ଏ କିମ୍ପା ହେଲା ରୋଷୀ ।
ବ୍ରାହ୍ମଣ ବୋଲନ୍ତି ମୋର ନ ଜାଣିମା ପଣ
ବିଚାରି ଦଣ୍ଡ ମୋତେ ଦିଅ ରଘୁରାଣ ।
ଶୁଣିଣ ଶ୍ରୀରାମ ଯେ ଶ୍ୱାନକୁ ପଚାରି
ତୁହି ହୋ ମହାତମା କହସି ବିଚାରି ।
ଆପେ ତ କାଇଲ୍ୟା ହେଲେଣି ବ୍ରାହ୍ମଣ
ଦୋଷକୁ ଉଚିତ ଦଣ୍ଡ ଦେବାର କାରଣ ।
କିସ ଶାସ୍ତି ଦେବାରେ କହ ଶ୍ୱାନ ବୀର
ଶ୍ୱାନ ବୋଇଲା ପ୍ରଭୁ ଶୁଣ ହେ ଚାପଧର ।
କାଳୀଞ୍ଜନ ପର୍ବତେ ଯେ ଅଛନ୍ତି ସଦାଶିବ
ସେ ଦେଉଳେ ଏହାକୁ ପରୀକ୍ଷାପଣ ଦେବ ।
ଶୁଣିଣ ରଘୁନାଥ କର୍ଣ୍ଣରେ ହସ୍ତଦେଲେ
କାଳୀଞ୍ଜନ ପର୍ବତରେ ଅଧିଷ୍ଠାନ କଲେ ।
ଶାଢ଼ୀ ଚନ୍ଦନ ଯେଦେଲେ ରତ୍ନହାର
ପାଲିଙ୍କୀ ପାଟ ଛତା ସଙ୍ଗରେ ବାଦ୍ୟକାର ।
ସମ୍ପଦେଣ ବ୍ରାହ୍ମଣ ସେଠାରୁ ଚଳିଯାଇ
ନଗ୍ର ଲୋକେ ଦେଖିଣ ନାକରେ ହସ୍ତଦେଇ ।
ଭଲ ଦଣ୍ଡ ପାଇଲା ବୋଲି ସେ ବୋଲନ୍ତି
ଦରିଦ୍ର ହୋଇଣ ଭିକ୍ଷା ମାଗୁଥିଲା ଏଥି ।
ଅନ୍ୟାୟ କରି ଏଡ଼େ ସମ୍ପଦ ପାଇଲା
ଏହାର କର୍ମଟି ଏତେ କାଳରେ ଫେରିଲା ।
ଶ୍ରୀରାମ ରାଜା ହେବାରୁ ବାବୁ ଭଲ ଏ ବିଚାର
ଏହାକୁ ସମ୍ପଦ ଯେ ଦେଲେକ କୁକୁର ।
କୁକୁର ବୋଇଲା ତୁମ୍ଭେ କେହି ନଜାଣ କିଛି
ପଛନ୍ତେ ଏ ବ୍ରାହ୍ମଣ ହୋଇବ ବଡ଼ଦୁଃଖୀ ।
ମୁହିଁ ଶିବ ଦେଉଳରେ ପରୀକ୍ଷା ହୋଇଥିଲି
ସେ ଦୋଷରୁ ମୁହିଁ ଏବେ କୁକୁର ଜନ୍ମହେଲି ।
ରୁଦ୍ର ଦେବତାଙ୍କର ଯେ ନିର୍ମାଲ୍ୟ ଖାଆନ୍ତି
ଶିବସ୍ୱ କେତେବେଳେ ପାର ଯେ ନଯାନ୍ତି ।
ମୁହିଁ ରାମଙ୍କୁ କହି କଲି ଏହି କଥା
ତେଣୁ ସେ ବ୍ରାହ୍ମଣର ଏଡ଼େକ ସାମର୍ଥା ।
ଶୁଣିଣ ନଗ୍ରଲୋକେ ଚକିତ ହୋଇଲେ
ସାଧୁ ସାଧୁ କୁକୁର ବୋଲିଣ ବୋଇଲେ ।
ଶ୍ରୀରାମ ଦର୍ଶନେ ସେ ମୁକତ ହୋଇଲା
ଶିବ ଦ୍ରୋହ କଲା ପାପ ତାଠାରୁ ଛାଡ଼ିଗଲା ।
ପାର୍ବତୀ ବୋଇଲେ ହେ ଶୁଣ ଈଶାନ ଏବେ
ଆମ୍ଭର ପଦାର୍ଥରେ ଏଡ଼େ ଦୋଷ ଯେବେ ।
ଈଶ୍ୱର ବୋଇଲେ ମୋର ପଦାର୍ଥ ନିଷ୍ଠୁର
ଅଜ୍ଞାତରେ ହରିଲେ କେବେ ନୋହେପାର ।
ଏଥୁ ଅନନ୍ତରେ ଶୁଣ ଦିବ୍ୟରସ
ଅଯୋଧ୍ୟା କଟକ ପାଳନ୍ତି ରଘୁଶିଷ୍ୟ ।
ଦିନେକ ମୃଗୟାକୁ କଲେ ରାମ ମନ
ଚତୁରାଙ୍ଗ ବଳ ସାଜିଲେ ସେହୁ ପୁଣ ।
ସୁମନ୍ତ୍ରକୁ ବୋଇଲେ ଥାଟ ଘେନି ଚଳ
ବନସ୍ତେ ମାରିବା ଆଜ ମୃଗ ଯେ ଶୁକର ।
ଲୋଧା ପାରଧିଆଙ୍କୁ ବୋଲନ୍ତି ଯେ ଜନ
ବେଣ୍ଟମାନ ଘେନିଣ ଆସନ୍ତୁ ସେ ବନ ।
ଶାବେଳିଆମାନେ ହୋନ୍ତୁ ଆଗୁଁସାର
ବୋଲ ଆଗ ହୋଇ ହେ ବାଡ଼ିମାନ ଧର ।
ଫାଶିର ଦଉଡ଼ି ପିଟଣା କିଳା ପରା
ବନ ପୋଡ଼ିବାକୁ ସଞ୍ଚିଥାନ୍ତୁ ହୁଳା ।
ଶୁଣିଣ ମନ୍ତ୍ରୀବର ସକଳ ନିର୍ଭା କଲେ
ଅଗମ୍ୟ ବନକୁ ବୋଲି ଚଳିଗଲେ ।
ଶ୍ରୀରାମ ସଜକଲେ ସାଞ୍ଜୁ ପୁରାଇଣ
ବାରୁ ପରେ ବିଜେକଲେ ରଘୁରାଣ ।
କରରେ କମୟଣ ଶାବେଳୀ ଖଣ୍ଡା କୋନ୍ତ
କପୋଳେ କସ୍ତୁରୀ ଚିତା ଦିଶେ ସୁନ୍ଦରତ ।

କର୍ଣ୍ଣରେ କର୍ଣ୍ଣଫୁଲ ବିରାଜଇ ହୀରା
ଗଳାରେ ଚଉସରି ଲମ୍ୱଇ ହାର ପରା ।
ସାଞ୍ଜୁ ଗନ୍ତା ଲାଗି ଯେ ହୋଇଲେ ରାବଣାରି
ନବରତ୍ନରେ ଯେ ପିନ୍ଧିଲେ ପାଟ ଯୋଡ଼ି ।
ହୟର ପିଠିରେ ବିଜେ ରଘୁପତି
ସୁମନ୍ତ ଦ୍ୱୟ ଚଢ଼ି ରାମ ସଙ୍ଗେ ଯାନ୍ତି ।
ନଗ୍ର ନରନାରୀ ଆନନ୍ଦେ ଦେଖନ୍ତି
ଗୋଡ଼ାଇ ଯୁବତୀମାନେଁ ହୁଳହୁଳି ଦ୍ୟନ୍ତି ।
ଆଗରେ ବଜାଇ ଯେ ଟମକ ନିଶାଣ
ସରଯୁ ପାର ହୋଇ ଗଲେ ରଘୁରାଣ ।
ଅଗମ୍ୟ ବନରେ ପଶିଲେ ରାମ ଯାଇ
ଚନ୍ଦ୍ର, ସୂର୍ଯ୍ୟ ଦେବଙ୍କର ତହିଁରେ ତେଜନାହିଁ ।
ପ୍ରଖର ହୋଇ ସେଥିରେ ନ ବହେ ପବନ
ଦେଖି ଭୟ ପାଇଲେ ଗହନ ବିପିନ ।
ଲତା କୁଦା କୁଦା ଯେ ଲୋଉ ଲୋଉ ଗୋଟା
ଭିତରେ ପଡ଼ିଅଛି ପଥର ଗୋଞ୍ଜଗୋଟା ।
ପଥର ସନ୍ଧିରେ ଯାଇତ ବାଟ ନାହିଁ
ଫଳଭରେ ଡାଳମାନେ ଲାଗୁଛନ୍ତି ଭୂଇଁ ।
ଧଳା ଆଙ୍କୁ ଫଣାଫଣା କୋଚିଲା ମୁଣ୍ଡା ମୁଣ୍ଡା
ଜଝାଙ୍ଗୀ ପାଳଧୂଆ ଆଙ୍କୁ କୋଳି କେରଣ୍ଡା ।
ଶାଳ ସିମୂଳି ଗଛ ଶୀଳ ଖଣ୍ଡ ଖଣ୍ଡ
କେବଣ ଠାବରେ ଖାଲ କେଉଁଠାରେ ଗଣ୍ଡ ।
ସାହାଡ଼ା ଭଇଞ୍ଚ ଯେ ବେତ ଲଇ ତହିଁ
ଶାଳ ସିମୂଳି ଗଛ ଶୂକର ଛନ୍ତି ଶୋଇ ।
ଜାଣିଣ ବେଣ୍ଟକାର ବେଢରେ ଛନ୍ଦି ତାହା
ଏହି ସମୟରେ ମିଳିଲେ ରଘୁନାହା ।
ରାଉତମାନଙ୍କୁ ଯେ ଆଡି ବାଣ୍ଟିଦେଲେ
ଗଜ ଯୋଦ୍ଧାମାନଙ୍କୁ ଆଡକରି ଯେ ରଖିଲେ ।
ଲୋଧା ଶବର କନ୍ଧଙ୍କୁ ଆଡେକ ଆବୋରଇ
ସେମାନେ ରହିଲେ ଜାଲ ବାଡ ଦେଇ ।
କିଳାମାନ ପୋତି ପୋତିଛନ୍ତି ଜାଲ
ବୋଲନ୍ତି ଶାର୍ଦ୍ଦୋଳ ହୋ ପଡିଲା ଜାଲର ।
ଶ୍ୱାନକୁ ରସିରେ ଧରି ଯତନରେ
ଅଗ୍ନି ଲଗାଇଲେ ସେ ବନର ମଧ୍ୟରେ ।
ବନଜୀବେ ଅଗ୍ନି ଦେଖିଣ ବୁଣନ୍ତି
ଆଢେଣୀରେ ଥାଇ ଲୋଧା ରାବଦ୍ୟନ୍ତି ।

ଚଉପାଶ ଲଗ୍ନ ଆସେ ଅଗ୍ନି ଜଳି
ଜୀବକୁ ଦେଖିଣ କୁକୁର ଦ୍ୟନ୍ତି ଛଳି ।
ଜାଲ ଫାଶରେ ଜୀବେ ଆସନ୍ତି ଫେରି ଫେରି
ବେଣ୍ଟକାରମାନେ ଯେ ବଧନ୍ତି କାଣ୍ଡଧରି ।
ଅହୀ ସହିତରେ ଆସନ୍ତି ଶଶା ମୂଷା
ମତ୍ତନାଗ ସହିତେ ସିଂହ ଶାର୍ଦ୍ଦୋଳ ମିଶା ।
ବରେହା ଶୂକର ଯେ ମୃଗ ପଲ ପଲ
ଗଣ୍ଡ ସ୍ୱୟମ୍ୱର ଖରୁଙ୍ଗ ହଳ ହଳ ।
ନେଉଳ ନେପାଳୀ ଯେ ହରିଣ ବାହୁଟିଆ
ବଣ ଗୋରୁମାନେ କରନ୍ତି ଭୟ ନିଆଁ ।
ପାଦାତିଙ୍କ ବୋଇଲେ ଆଣରେ ତୁମ୍ଭେଫାଶୀ
ଲୋଧାଙ୍କୁ ବୋଇଲେ ପକାଅ ତୁମ୍ଭେ ଭୂଷି ।
ଏତେ ବୋଲି ରାମ ଆପଣେ ବାଣବିନ୍ଧି
ବାଣ ବାଜିବାରେ ଜନ୍ତୁ ହୋନ୍ତି ଗଳଗାଜି ।
ଏକା କାଣ୍ଡକରେ ପାଞ୍ଚ ସାତ ଫୁଟି
ଏକ ହସ୍ତୀକି ମାଇଲେ ଆରେକ ହସ୍ତୀ ତୁଟି ।
ଦେଖିକରି ଆଶ୍ଚର୍ଯ୍ୟ ହେଲେ କ୍ଷତ୍ରୀମାନେ
ବୋଲନ୍ତି ଭଲ ଯୋଦ୍ଧା ଅଟ ହେ ରଘୁନାନେ ।
ଏଥୁ ଅନନ୍ତରେ ରାମଚନ୍ଦ୍ର ରାୟେ
ସିଂହ ଯୂଥକୁଇଁ ଯେ ତୀକ୍ଷ୍ଣ ବାଣ କୟେ ।
ଦୁଇ ତିନି ଫୁଟିଣ ଗର୍ଜିଣ ପ୍ରାଣ ହାରି
ସବୁଶର ଚଳନ୍ତେ ଶୁଭେ କାଣ୍ଡ ରଡି ।
କେ ଖଣ୍ଡାରେ ହାଣେ କେହୁ ମାରଇ ଶାବେଳି
କେହୁ କୋନ୍ତ ମାରନ୍ତେ ଦେହେ ଯାଏ ଗଳି ।
ଗୁରୁଜରେ ପିଟନ୍ତି ଭୂଷନ୍ତି କେହୁ ଭାଲୀ
ଶାର୍ଦ୍ଦୋଳ ମରୁଛନ୍ତି ପଶିଣ ମୃଗ ପଲି ।
କୁକୁର ଘାଉଆ କଲେ ଅନେକ ବରେହା
ବାଉରୀ ଲୋଧା ନେଲେ ଅନେକ ଶାଳେହା ।
ବଣିଜାର ପଦାତି ନେଲେ ଯୁଆଦ କସ୍ତୁରୀ
ରାଉତ ମାହୁନ୍ତ ବରେହାମାନ ଧରି ।
ହୁରିଆମାନେ ଶଶା ଖୁରୁଙ୍ଗ ଧରି ନେଲେ
ଘଣ୍ଟାଳେ ଧଇଲେ କଟାସ ହରଷରେ ।
ବନେ ଜନ୍ତୁ ମରିବାର ଦେଖନ୍ତି ରଘୁସାଇଁ
ପାଞ୍ଚ ସାତ ମେଳ ହୋଇ ନେଉଛନ୍ତି ବହି ।
ସୁମନ୍ତ ଧରାଇଲେ ମତ୍ତଗଜମାନ
ମୃଗ ଶୁକର ଯେ ଆବର କୃଷ୍ଣାଜିନ ।

କଟକକୁ ଚଳାଇଲେ ରକ୍ଷା ଲୋକ ଦେଇ
ଏହି ସମୟରେ ବାହୁଡ଼େ ରଘୁସାଇଁ ।
ଲକ୍ଷେକ ଅସୁଆର ମଧ୍ୟରେ ଦାଶରଥୀ
ଆଗ ପଛରେ ଛନ୍ତି ଦଶସହସ୍ର ହସ୍ତୀ ।
ଦୁଇ ପାଖରେ ଛନ୍ତି ପଦାତି ଗୋଟି ଦଶ
ବାଜଇ ବାଜଣା ଟମକ ବିଜିଘୋଷ ।
ଶିରେ ଶ୍ୱେତଛତ୍ର ଧରାଏ ରାମ ରାୟେ
ପାରିଧି କରି ସାରି ବାହୁଡ଼ି ପୁଣ ଯାଏ ।
ଏହି ସମୟରେ ଆସେ ଗ୍ରୀଧ ଖଗ
ଶ୍ରୀରାମ ଆଗରେ ମିଳିଲା ଆସି ବେଗ ।
ପାୟେ ପଡ଼ି ଶୋଇ ବୋଲଇ ଗୋସାଇଁ
ଅନ୍ୟାୟ ଉପଦେଶ ତୁମ୍ଭର ରାଜ୍ୟେ ନାହିଁ ।
ଆୟୁଷ ପୂରିଲା ଲୋକଙ୍କୁ ଭୟ କରଇ ଯମ
ଏହ୍ନେକ ବଡ଼ପଣ ଅର୍ଜିଛ ଶ୍ରୀରାମ ।
ତୁମ୍ଭର ଦେଶେ ଥାଇ ମୁଁ ହୋଇଲି ଦୁଃଖୀ
ମୋହର ଘରକୁ ଘେନି ଯାଉଛି ପେଚାପକ୍ଷୀ ।
ମୋ କଥା ନ ବୁଝିଲେ ନିଶ୍ଚେ ମରିବି ମୁହିଁ
କାହାର ମୁଖକୁ ମୁଁ ଚାହିଁବି ଏଥେ ଥାଇ ।
ଶୁଣିଣ ରଘୁନାଥ ଘୋଡ଼ାରୁ ଓହ୍ଲାଇଲେ
ଏ କଥାକୁ ନ୍ୟାୟେକରି ଯିବା ସେ ବୋଇଲେ ।
ଏହି ସମୟରେ ଦର୍ଶନ କଲା ପେଚା
ଜାଣି ଅଛି ବୋଲି ନ ଦେଲା ପଛଘୁଞ୍ଚା ।
ରମା ପଚାରିଲେ ତୋର କି କଥାହିଁ
ତୋ ନାମେ ଗ୍ରୀଧ ପକ୍ଷୀ ଗୁହାରି କରଇ ।
କିମ୍ପାଇଁ ଏହାଘର ତୁହି ନେଲୁ ବଳେ
ବଡ଼ ଅନ୍ୟାୟ ତୁ କଲୁ ମୋର କାଳେ ।
ପେଚା ପକ୍ଷୀ ବୋଲେ ଦେବ ସାବଧାନେ ଶୁଣ
ସତ୍ୟକରି ଏହାକୁ ପଚାର ରଘୁରାଣ ।
କେତେକାଳ ଠାରୁ ଏ ଏଥିରେ ବସାକଲା
ଏ ବଚନ ଶୁଣି ଗୃଧ୍ର ପକ୍ଷୀ ଯେ ବୋଇଲା ।
ଏ ପୃଥ୍ୱୀରେ ଯେତେଦିନୁ ଜୀବଜନ୍ତୁ ହେଲେ
ସେଦିନୁ ମୋର ଏ ବୃକ୍ଷରେ ବସା ଭଲେ ।
ପେଚା ବୋଲେ ଶାର୍ଗୁଣା ଅଛି ଯେ ବୋଇଲା
ମୁଁ ବସା କଲିଣି ଗଛ ଯେଉଁ ଦିନୁ ହେଲା ।
ଶୁଣିଣ ବଶିଷ୍ଠଙ୍କୁ ବୋଇଲେ ରଘୁସାଇଁ
ଯାବାଳି କଶ୍ୟପ ବାମଦେବ ହକରାଇ ।
ସୁମନ୍ତକୁ ଚାହିଁଣ ବୋଲନ୍ତି ରାବଣାରି
କାହାର ହାରକ କାହାର ଜିଣା ପରି ।
ସଭାରେ ତୁମ୍ଭେ କହିବ ନାହିଁ ପକ୍ଷାପକ୍ଷ
ଧର୍ମ ଶାସ୍ତ୍ର ପ୍ରମାଣେ ଯାହା ଶୁଣିଅଛ ।
ସଭାରେ ବସି ଯେବେ କହନ୍ତି ଜନେ ମିଛ
ତାହାକୁ ଧର୍ମଦେବତା ଛାଡ଼ଇ ପ୍ରତ୍ୟକ୍ଷ ।
ନାନାଦି ଶ୍ରୋଣିତ ସେ ରକ୍ତ ମାଂସ ଖାଇ
କଳ୍ପେ ପରିଯନ୍ତେ ନଯାଏ ନରଦେହୀ ।
ତୁମ୍ଭେ ହେ ମନ୍ତ୍ରୀମାନେ ବିଚାରିଣ କହ
ବିଚାରି ବୁଝି କହ ନ୍ୟାୟ ଯେ ଅନ୍ୟାୟ ।
ସମସ୍ତ ମନ୍ତ୍ରୀ ପାତ୍ରେ ସମସ୍ତେ ବୋଇଲେ
ପେଚାର ଜିଣାହେଲା ଶାର୍ଗୁଣା ହାରିଲା ନ୍ୟାୟରେ ।
ଶାର୍ଗୁଣା ବୋଇଲା ମୁଁ ମନୁଷ୍ୟ ଯେଉଁକାଳୁ
ବୃକ୍ଷରେ ରହିଅଛି ନଯାଇ ସେଠାରୁ ।
ଉଲୁକ ବୋଇଲା ବୃକ୍ଷ ଯେଉଁ କାଳରୁ ହୋଏ
ସେଦିନୁ ବସାକରି ତହିଁ ମୁହିଁ ରହେ ।
ଦେଖୁକରି ପେଚାର ଜିଣା ଯେ ନିୟତ
ବଶିଷ୍ଠ ବୋଇଲେ ଶୁଣ ଦଶରଥ ସୁତ ।
ଏ ପୃଥ୍ୱୀ ଜନମ ହେଲା ହେ ଯେଉଁକାଳେ
ବାସୁଦେବ ଶୟନ ବଟ ଯେ ପତ୍ରରେ ।
ସୃଷ୍ଟି କରିବେ ବୋଲି ମନରେ ଇଛା କଲେ
ନାଭିରୁ ପଦ୍ମ ବୃକ୍ଷ ଗୋଟିଏ ଭିଆଇଲେ ।
ଆଦ୍ୟରେ ଏ ସଂସାର ବୃକ୍ଷ ଉତପତି
ସେ ପଦ୍ମ ଗୋଟି ଯେ ଅଟେ ପୁଣ ପୃଥ୍ୱୀ ।
ସେହିରୂପେ ସାତପଦ୍ମ ସାତବୃକ୍ଷ ହୋଇ
ସାତ ପଦ୍ମସ୍ଥଳୀ ସାତପୁରକୁ କହି ।
ପ୍ରଜାପତି ବିହି ଯେ ବିଧାତା ଧାତ ପୁଣ
ଦଇବ ବେଦବର କୁଶପତି ଜାଣ ।
ସାତପୁରେ ସାତଜଣ ପଦ୍ମରୁ ଜନ୍ମ ହେଲେ
ପଦ୍ମ ପୁଷ୍କରକୁ ସେ ନିରୋପି ଚାହିଁଲେ ।
ଚାରିବେଦ ଦେଇ ସେ ପାଖୁଡ଼ାରେ ଦେଖିଲା
ତାହା ଆଣି ବ୍ରହ୍ମା ସଂସାର ସୃଜିଲା ।
ସେ ସପତ ପଦ୍ମ ଯେ ବ୍ରହ୍ମାଣ୍ଡ ପାତିଲା
ପଦ୍ମ ଗୋଟିକରେ ସପତ ଦ୍ୱୀପ ହେଲା ।
ସପତ ସାଗର ସେଠାରୁ ହେଲା ପୁଣ
ସେଠାରୁ ବୃକ୍ଷମାନେ ହେଉଛନ୍ତି ଜାଣ ।

ଝୀଙ୍କାରୀ ପୁଷ୍କରରୁ ହେଲା ବନଗିରି
ସପତପୁରରେ ପୂରିଲା ବନଗିରି ।
ତ୍ରୀଦଶ ଦେବତାଏ ହୋଇଲେ କେଶର
ପରିମଳ ଜଳ ଯେ ସିଞ୍ଚିଲେ ଆକାଶର ।
ଝଡ଼ିଲା କେଶରରୁ ଜୀବଜନ୍ତୁ ହେଲେ
ଯେଉଁ ରସ ଗଳିଲା ସପ୍ତସାଗର ହେଲେ ।
ପାଞ୍ଚ କୋଟି ଯୋଜନ ଅଟେ ଯେ ମୂଳଗୋଟି
ଚଉଦ ଭୁବନ କରି ଭିଆଣ କଲେ ସୃଷ୍ଟି ।
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ସପତପୁର କଲା
ଉପରପୁରେ ଦେବତାମାନଙ୍କୁ ଦେଖିଲା ।
ତଳରେ ନାଗବଳ ସେ ମଧରେ ମନୁଷ୍ୟ
ସଂସାର ସର୍ଜିଣ ବ୍ରହ୍ମା ବୋଇଲେ ଉଦାସ ।
ଆଗେ ସେ ପଦ୍ମଗଛ ହେଲା ଉତପନ୍ନ
ସେହିଦିନୁ ପେଚ୍ଚ ପକ୍ଷୀ ରହିଅଛି ଜାଣ ।
ପଛରେ ମନୁଷ୍ୟ ସିନା ହେଲେକ ଉତ୍ପତି
କେମନ୍ତେ ଗ୍ରୀଧ ପକ୍ଷୀ କ୍ରୋଡ଼ରେ ହେଲାସ୍ଥିତି ।
ଶାର୍ଗୁଣା ହାରିଲା ଦେବ ଜିଣିଲାକ ପେଚ୍ଚ
ଏକଥା ବିଚ୍ଚର କର କଉଶଲ୍ୟା ବତ୍ସା ।
ଶୁଣିଣ ରଘୁନାଥ ବୋଇଲେ ଯେ ହୋଇ
ଶାର୍ଗୁଣାରେ ଏକଥା ଉଚିତ ନୁହଇ ।
ଆଗକରି ଶାର୍ଗୁଣା ଗୁହାରି ଏବେ କଲା
କେମନ୍ତେ ଆଗରେ ମିଛ ସେ କହିଲା ।
ଏକଥାକୁ ଦଣ୍ଡ ଦେବାର ଉଚିତ
ଏତେ କହି ଦଣ୍ଡ ଦେଲେ ରଘୁନାଥ ।
ଶୁଣିକରି ଦେବେ ଡାକିଲେ ସ୍ୱର୍ଗେ ଥାଇ
ଏ ଖଗକୁ ଶାପ ତୁମ୍ଭେ ନ ଦିଅ ଗୋସାଇଁ ।
ବ୍ରହ୍ମତେଜ ନାମରେ ଏକଇ ରାଜା ଥିଲା
ଅତିଥିଙ୍କି ଆଣି ସେ ଭୋଜନ କରାଇଲା ।
ସେ ମହାତପୀ ଯେ ଆଚ୍ଚରେ ମହାସ୍ଥିତି
ଆମିଷ ଭୋଜନ ତାକୁ ଦେଲା ଏ ନୃପତି ।
ଏକାଦଶୀ ଦିନ ଉପବାସ କଲା
ବନସ୍ତେ ଉଜାଗର ହୋଇ ସେ ବଞ୍ଚିଲା ।
ଆରଦିନ ଦ୍ୱାଦଶୀ ପାଳିଣ ବେଳ ଆଣି
ରାଜାର ପଦାର୍ଥକୁ ନ ଭୁଞ୍ଜେ ତପୀମଣି ।
ଶୁଣିଣ ନୃପବର ପ୍ରସନ୍ନ ହୋଇଲା
ସୁପକାରକୁ ସେ ରାଇଣ ବୋଇଲା ।
ବ୍ରାହ୍ମଣଙ୍କୁ ନେଇ ଭରି ଭୋଜନ ଦିଅ
ସୁପକ୍ୱ ଆହାର ଦେଇ ଭୋଜନ କରାଅ ।
ଶୁଣିଣ ସୁପକାର ଯେ ତପୀକି ବେଗେ ନେଲା
ଛଡ଼ରସେ ଭୋଜନରେ ଶାଳି ଅନ୍ନ ଦେଲା ।
ମୃଗ ଶୂକର ଯେ ମାଂଏସରେ ବିଧି
ନ ଜାଣି ବ୍ୟଞ୍ଜନ ଭୁଞ୍ଜେ ତପୋନିଧି ।
ଆମିଷ ବୋଲିଣ ଜାଣିଲା ଯହୁଁ ପୁଣ
ଭୋଜନ ଛାଡ଼ି ତପୀ କଲା ଆଞ୍ଚୋବନ ।
ରାଜାର ଛାମୁରେ କହିଣ ଶାପ ଦେଲା
ତପକ୍ଷୟ ମୋରରେ କଲୁ ତୁ ବୋଇଲା ।
ଦ୍ୱାଦଶୀ ପାଳନାରେ ଭୁଞ୍ଜାଉ ଆମିଷ
କହିଲେ ନ ସରଇ ଏଥିର ଯେ ଦୋଷ ।
ଏଡ଼େକ ଧର୍ମ ମୋରରେ ଅକାରଣେ ଗଲା
ଏତେବୋଲି ତପୀ ଯେ କ୍ରୋଧରେ ଶାପଦେଲା ।
ମୋତେ ତୁ ଆମିଷ ଭୁଞ୍ଜାଇଲେ ରାଯେ
ମୋହର ଦେଖନ୍ତେ ତୁ ହୁଅ ଗ୍ରୀଧ କାଯେ ।
ଶାର୍ଗୁଣା ରୂପ ହୋଇଣ ଅନେକ କାଳ ଥାଅ
ଏ ସୃଷ୍ଟିରେ ଯେତେ ଜୀବ ସବୁଙ୍କୁ ତୁ ଖାଅ ।
ଶୁଣିକରି ନୃପତି କମ୍ପେ ଥରହର
ବୋଇଲା ହୋ ପିତା ମୋତେ କୋପ ତୁ ନକର ।
ମୋର ଦୋଷ ନାହିଁ ସୁପକାର ତୋତେ ଦେଲା
ରାଜାର ବାଣୀ ଶୁଣି ଅତିଥି ବୋଇଲା ।
ସୁପକାର ପେଚ୍ଚ ଜନ୍ମ ପାଉ ହାଦେ ପୁଣି
ଏସନେକ ଶାପ ବିହିଲେ ତପୀମଣି ।
ଭୃତ୍ୟ ଦୋଷ କଲେ ସ୍ୱାମୀକି ଲାଗଇ
ପିତା ଋଣ କରିଥିଲେ ପୁତ୍ରରେ ସୁଝାଇ ।
ତୁମ୍ଭେ କିମ୍ପା ବିଚ୍ଚର ନ କର ନୃପମଣି
ରାଜାର ବ୍ରହ୍ମ ସ୍ଥାନ କମ୍ପିଲା ତାହା ଶୁଣି ।
କରଯୋଡ଼ି ବୋଇଲେ ତୁମ୍ଭେ ପ୍ରତିକାର କହ
ମୁଁ ଯେବେ ତୋତେ ଦୋଷକଲିହେ ତପୀଦେହ ।
ତପୀ ବୋଇଲାରେ ଶାର୍ଗୁଣା ହୋଇଥିବୁ
ଶ୍ରୀରାମଙ୍କୁ ଦେଖିଲେ ତୁ ମୁକତ ହୋଇବୁ ।
ସୁପକାର ବୋଇଲେ ମୁଁ କରିବି କିସ ପୁଣ
ତପୀ ବୋଇଲେ ମୁଁ କରିବି ଶ୍ରୀରାମ ଦରଶନ ।
ତତକ୍ଷଣେ ସୁପକାର ଉଲ୍ଲୁକ ହୋଇଲା
ନୃପତି ଶାର୍ଗୁଣା ହୋଇ ତକ୍ଷଣେ ଉଡ଼ିଗଲା ।

ନଉ ସମ୍ବତ୍ସର ରହିଲେ ଦୁଃଖ ସହି
ତୁମ୍ଭଙ୍କୁ ଦେଖିଣ ଏବେ ମୁକତ ଲଭିଲେହିଁ ।
ଶ୍ରୀରାମ ଶାପ ଏବେ ନ ଦିଅ ଏହାକୁ
ବ୍ରହ୍ମ ତେଜ ନୃପତିକି ରାଜ୍ୟ ଦିଅ ତାକୁ ।
ଆକାଶର ବାଣୀ ଉଚ୍ଚ ସ୍ୱରେ ଶୁଭେ
ତ୍ରୈଲୋକ୍ୟର ନାଥ ତୁ ଜନମ ମହୀଭାଗେ ।
ତକ୍ଷଣେ ନିଜଦେହ ପାଇଲେ ବେନିଜନ
ଶ୍ରୀରାମର ଚରଣେ ନମିଲେ ସେହୁ ପୁଣ ।
ଏସନକ ସମୟରେ ମିଳେ ଦେବଯାନ
ଯାଇଣ ଦୁଇଜଣ ବସିଲେ ବିମାନ ।
ଅନ୍ତରୀକ୍ଷ ମାର୍ଗରେ ସ୍ୱର୍ଗପୁର ଗଲେ
ଦେବତାଙ୍କ ଆଳରେ ଯାଇଣ ବସିଲେ ।
ଏଥୁ ଅନନ୍ତରେ ରାମଚନ୍ଦ୍ର ରାୟେ
ମୃଗୟା ବିନୋଦ ସାରି ନବରକୁ ଯାଏ ।
ବାଜଇ ଟମକ ନିଶାଣ ବୀର ତୂର
ଶିର ପରେ ଶ୍ୱେତଛତି ଉଡ଼େ ଫରହର ।
ଉଦଣ୍ଡ ଆଲମ୍ବ ବିମଳ ପନ୍ତି ପନ୍ତି
ଆଗରେ ରାହୁତ ମାହୁନ୍ତ ଝମକନ୍ତି ।
ଶ୍ରୀରାମ ବାରୁ ପରେ ଚଳନ୍ତି ଧୀର ଧୀର
ଯାଇଣ ମିଳିଲେ ସରଯୂ ନଦୀ ତୀର ।
ଦେଖିଲେ ମୃଗ ଶୂକର ଲୋକେ ବହିନ୍ୟନ୍ତି
ଏକକୁ ଆରେକ ବଳି ପୁଣ ଯାନ୍ତି ।
ସରଯୂ ପାରି ହୋଇ ସମସ୍ତେ ଚଳିଗଲେ
ଅଯୋଧ୍ୟା ଲୋକମାନେ ଆନନ୍ଦ ମନ ହେଲେ ।
କଉଣସି କାଳରେ ଏମନ୍ତ ବେଶ ନାହିଁ
ଭଲା ପାରିଧିଆରେ ରଘୁକୁଳ ସାଇଁ ।
ଏମନ୍ତ ବିଚାରନ୍ତେ ଯେ ଦିଶେ ଶ୍ୱେତଛତ୍ର
ହୟପରେ ବିଜୟ ଯେ ଦଶରଥ ସୁତ ।
ସମ୍ଭର୍ବରେ ପ୍ରବେଶ ଅଯୋଧ୍ୟା ନଗ୍ରରେ
ଯାଇଣ ପ୍ରବେଶ ହେଲେ ଆପଣା ସିଂହଦ୍ୱାରେ
ବାରୁପରୁ ଓହ୍ଲାଇ ଆପଣା ପୁର ଗଲେ
ମର୍ଦ୍ଦନ ମାଜଣା ସାରି ସ୍ନାନ ପୁଣି କଲେ
ଦେବାର୍ଚ୍ଚନ ବିଧି ଯେ ସାରିଲେ ତତକ୍ଷଣ
ଭୋଜନ ସାରିଣ କଲେ ଆଚମନ ।
ବେଳ ଅସ୍ତ ହୁଅନ୍ତେ ସନ୍ଧ୍ୟା ସୁମରିଲେ
ନିଅବକାଶ ହୋଇଣ ଶଯ୍ୟାରେ ନିଦ୍ରାଗଲେ ।
ଜାନକୀ ରୂପ ଚିନ୍ତି ରଜନୀ ପୁହାଇଲେ
ନିଦ୍ରାରୁ ଉଠିକରି ମୁଖ ପଖାଳିଲେ ।
ବାହାର ଅବକାଶରେ ହେଲେ ଦାଶରଥୀ
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ ।
ଦିନେକ ଆସ୍ଥାନରେ ଶ୍ରୀରାମ ବିଜୟେ
ସିଂହଦ୍ୱାରେ ବ୍ରାହ୍ମଣ ଗୁହାରୀ ଆସି କହେ ।
ସପତ ବରଷର ଖେଳନ୍ତା ପୁଅ ମୋର
ମୃତ୍ୟୁ ତାକୁ ହେଲା କହ କେଉଣ ପ୍ରକାର ।
ଗହଳ ଦେଖିଣ ଉଚ୍ଚରେ ରାବ ଦେଇ
ଶ୍ରୀରାମ ରାଜ୍ୟରେ କେବେହେଁ ରହି ନୋହି ।
ଅଯୋଧ୍ୟା କେମନ୍ତେ ପାଳେ ଦଶରଥ ପୁତା
ଏତେକାଳରେ ଆସି ଲାଗିଲା ଯମ ଚିନ୍ତା ।
ଏବେ ଦେଖ ବାପ ଥାଉଁ ପୁଅ ନାଶଗଲା
କିସ ଅଧର୍ମ ଦେଖିଣ ଯମ ଅନ୍ୟାୟ କଲା ।
ଦଶରଥ ରାଜାଙ୍କର ରୋହିଣୀ ନକ୍ଷତ୍ର
ତହିଁ ଆକର୍ଷିଲା ଆଦିତ୍ୟର ସୁତ ।
ବଶିଷ୍ଠ କହନ୍ତେ ଯେ ନୃପତି କୋପ କଲା
ତାର ସଙ୍ଗେ ଯାଇଣ ଯୁଦ୍ଧ ଆରମ୍ଭିଲା ।
ରଣରେ ଶନି ଦେବଙ୍କୁ ଜିଣେ ନୃପବର
ରୋହିଣୀ ନକ୍ଷତ୍ରରେ ନପଶେ ଶନିଶ୍ଚର ।
ଅଶ୍ୱମେଧ ଯାଗ କରିବାକୁ ସେ ବିଚାରି
ଲକ୍ଷଣବନ୍ତ ଘୋଡ଼ାକୁ ମେଲିଲେ ସଜକରି ।
ପୃଥିବୀ ବୁଲାଇଲା କେହୁ ଓଗାଳନ୍ତା ନୁହେ
ଅଯୋଧ୍ୟାରେ ପଶନ୍ତେ ରଘୁରାୟେ ।
ଅଜରାଜା କୁମରକୁ ଯୁଝି ସେ ପଠିଆଏ
ରଣରେ ଜିଣି ପୁତ୍ର ଘୋଡ଼ାକୁ ଘେନିଯାଏ ।
ଦେଖିଣ ନୃପତି ବାନ୍ଧଇ ନେଇ ଶାଳ
ପୁଣି ଘୋଡ଼ା ଗୋଟିଏ ମେଲେ ମହୀପାଳ ।
ତାହାଜାଣି ଅଜରାଜା କୁମର ଘେନିଗଲା ।
ଅନେକ ଅଶ୍ୱ ଯେ ପୁଣି ମେଲି ଦେଲା ।
ରହିକରି ଜଗିଣ ନେଲେ ରଘୁସୁତ
ପୁଣ ପୁଣ ରାଜା ଯେ ମେଲିଲେକ ଦୂତ ।
ସବୁସୀମା ଜାଣିଣ ଅଯୋଧ୍ୟା ଅଇଲା
ପରଥାଟ ଅଇଲା ବୋଲି ଡଗରା କହିଲା ।
ଏମନ୍ତେ ଗ୍ଭରିଉଣା ଶତେବେଳ ରାଜାନେଲେ
ଏକା ରଣର ମଧ୍ୟେ ଶତେ ଯାଗକଲେ ।

ଏବେ ଅଯୋଧ୍ୟାକୁ ଯେ ମେଲେ ସିନ୍ଧୁ ଘୋଡ଼ା
ତୁମ୍ଭସଙ୍ଗେ ଥାଇଣ ବୁଲୁ ପୃଥ୍ୱୀବେଢ଼ା ।
ଆମ୍ଭଙ୍କୁ ସାମାନ୍ୟଟି ନାହିଁ ଆନରାୟେ
ଆଉ ଅଶ୍ୱମେଧ ଯେ ସମ୍ପୂର୍ଣ୍ଣ ହେଉ ରାୟେ ।
ଏତେବୋଲି ଅଶ୍ୱ ଶାଳେକ ଧୂଆଇଲା
ଉତ୍ସବ ଆନନ୍ଦରେ ସକଳ ସଞ୍ଚାକଲା ।
ଅନେଶ୍ୱତ ଘୋଡ଼ା ଯେ ମେଲିଲେ ସିନ୍ଧୁଜାତି
ପଛରେ ପାଟଚଢ଼ିଣ ଆସଇ ନୃପତି ।
ନାନାରାଜ୍ୟରେ ଅଶ୍ୱଯେ ସୁଖରେ ବୁଲିଗଲେ
କେହୁଣିସି କଟକରେ ଓଗାଳି ନପାରିଲେ ।
ଇନ୍ଦ୍ର ବିଚାରିଲେ ଯେ ସ୍ୱର୍ଗପୁରେ ଥାଇ
ଶତେ ଯାଗକରି ମୁଁ ହୋଇଲି ଶଚୀସାଇଁ ।
ଏବେ ରଘୁରାଜା ଯେ ସକଳ ନୃପମଣି
ଏକାରେ ଅଶ୍ୱମେଧକୁ ହେଲେ ସେ କାରେଣି ।
ସତ୍ୟ ଧର୍ମପଣ ଯେ ଯିବଟି ମୋହର
ସ୍ୱର୍ଗରେ ଇନ୍ଦ୍ର ଯେବେ ହେବ ନୃପବର ।
ଯେତେ ବେଳରେ ଘୋଡ଼ା ମେଦିନୀ ବୁଲିଯିବ
ଆଜ ବାପ ରଘୁରାଜା ଯେ ଯାଗ ଆରମ୍ଭିବ ।
ଶତେ ଅଶ୍ୱମେଧ ଯାଗର ପାଇବ ଏ ମୂଳ
ମୋହର ଇନ୍ଦ୍ର ପଦ ଯେ ହୋଇବ ନିଷ୍ଫଳ ।
ମୁହିଁ ଏ ଘୋଡ଼ାକୁ ଯେ ଓଗାଳିବି ଯାଇଁ
ଅନେଶ୍ୱତ ଯାଗଫଳ ଘେନିବି ଛଡ଼ାଇ ।
ଏମନ୍ତ ବିଚାରି ବଜ୍ର ଧଇଲେ ନେଇକରେ
ଯାଇଣ ବସିଲେ ଐରାବତ ଗିରିପରେ ।
ଗନ୍ଧର୍ବବଳ ଘେନି ସେ ମଞ୍ଚକୁ ଅଇଲା
ଘୋଡ଼ା ଆସନ୍ତେ ଯେ ଆଗରେ ଓଗାଳିଲା ।
ଦେଖିଣ ଅଜପୁତ୍ର ଆଗରେ ମିଳେ ଆସି
ଦୁହିଁଙ୍କର ଭେଟରେ ଶରହେଲା ବୃଷ୍ଟି ।
ଅନେକ ସମର ଯେ ବଢ଼ିଲା ଦୁହିଁଙ୍କରି
କର୍ମର ବିପାକରେ ଦେବରାଜା ହାରି ।
ନିସତ ହୋଇଣ ସ୍ତୁତି ଦେବେ କଲେ
ଶୁଣିକରି ଅଜରାୟେ ସନ୍ତୋଷ ହୋଇଲେ ।
ଶଚୀପତିକି ବୋଇଲେ ମାଗରେ ତୁ ବର
ଅର୍ଦ୍ଧେକ ଧର୍ମଦିଅ ବୋଇଲେ ବଜ୍ରଧର ।
ଶୁଣିକରି ବୋଲନ୍ତି ଦିଲ୍ଲୀପ ରାଜାନାତି
ଦୁହେଁ ଦିନେ ଦିନେ ହେବା ସୁରପତି ।
ପଞ୍ଚାଶ ଅଶ୍ୱମେଧ ଯଜ୍ଞ ତୋତେ ଦେଲି
ତୁ ଅବା ନ ଜାଣିଲୁ ଦୟା ତୋତେ କଲି ।
ଏତେବୋଲି ଦୁଇଜଣ ଐରାବତେ ବସି
ବାରସ୍ୱତୀ ଭୁବନରେ ପ୍ରବେଶ ଯାଇହୋନ୍ତି ।
ଦିନେ ଦିନେ ପାଳିକରି ହୁଅନ୍ତି ସୁରପତି
ଉର୍ବଶୀ ରମ୍ଭାକୁ ଭୋଗକଲେ ରାଜା ସେଥି ।
ଉର୍ବଶୀ ରମ୍ଭାଠାରେ ଦୁଇପୁତ୍ର ହେଲେ
ଅଲଙ୍ଗ ପଲଙ୍ଗ ବୋଲି ନାମ ତାଙ୍କର ଦେଲେ ।
ବରଷକରେ ଯେ ଅଯୋଧ୍ୟାପୁର ଆସି
ପିତାର ଆଗରେ ଦର୍ଶନ କଲାସେଟି ।
ରଘୁରାଜା ବୋଇଲେ ତୁ କେଣେ ଯାଇଥିଲୁ
କୁମର ବୋଇଲେ ଦେବ ସ୍ୱର୍ଗରେ ରାଜାହେଲୁଁ ।
ସୁରରାଜା ଆସି ମୋର ସଙ୍ଗେ କଲେ ରଣ
ହାରିଲେ ସୁରରାଜା ଜିଣିଲେ ତାକୁ ପୁଣ ।
ନିଉନ ହୋଇ ମୋତେ ବରଷେ ମାଗିଲା
ଅର୍ଦ୍ଧେକ ଯାଗ ସାମଗ୍ରୀ ତାକୁ ମୁଁ ଦେଲିପରା ।
ଭାଗହୋଇ ସ୍ୱର୍ଗରେ ଇନ୍ଦ୍ରପଣ କଲୁଁ
ତୁମ୍ଭଙ୍କୁ ଦେଖିବାକୁ ଏଥକୁ ଅଇଲୁଁ ।
ଶୁଣିକରି ରଘୁରାଜା ସନ୍ତୋଷ ହୋଇଲା
ଶତେକ ଯାଗରୁ ଯେ ଅର୍ଦ୍ଧେକ ପୁଣ ଥିଲା ।
ସ୍ୱର୍ଗରେ ରାଜା ହୋଇ ମୋର ଭାଗ ଯାଉ
ଏକା ସୁରପତି ସେଥିରେ ଭାଗପାଉ ।
ଏତେ ବୋଲି କରରେ ଯେ କୁଶଜଳ ଘେନି
ଦେଲି ଦେଲି ବୋଲିଣ ଯେ ପକାଏ ମେଦିନୀ ।
ଶତେ ଯାଗର ଫଳ ବାସବ ପାଇଲା
ସ୍ୱର୍ଗରେ ରାଜାହୋଇ ଆନନ୍ଦ ହୋଇଲା ।
ଏଡ଼େ ଏଡ଼େ ରାଜା ଯେ ଏ ବଂଶରେ ଥିଲେ
ନିଜ ଭୁଜବଳେ ସୀମାପଣ ସେ ରଖିଲେ ।
ଏବେ ଶ୍ରୀରାମଙ୍କୁ ଯେ ଦେଖିଲେ ନିର୍ବଳ
ଅନ୍ୟାୟ ଉପଦ୍ରବ ହେ କଲେ ଦିଗପାଳ ।
ଏତେକେ ଦ୍ୱିଜବର ପାଡ଼ିଲେ ବୋବାଳି
ଅଯୋଧ୍ୟା ଲୋକଯାକ ହେଲେ ହାଳହୋଳି ।
ଅପୂର୍ବ କଥାଶୁଣି ଯେ ଲୋକେ ଦେଖିଯାନ୍ତି
ସିଂହଦ୍ୱାରେ ଯାଇ ବିପ୍ରେ ଯୂଇ ଯେ ଲଗାନ୍ତି ।
ଶୁଣିକରି ଶ୍ରୀରାମ ଉଠିଲେ ଆସନୁ
ମାତଳୀକି ବୋଇଲେ ରଥଆଣ ତେଣୁ ।

ଅଜୟେ ବେନି ଦ୍ରୋଣ କନ୍ଧତଟେ କଷି
ସିଂହଦ୍ୱାରେ ରାମ ଯେ ବିଜେକଲେ ଆସି ।
ରାମଙ୍କୁ ଦେଖି ବିପ୍ରେ କଲେ ଯେ ବୋବାଳି
ରହ ରହ ବୋଇଲେ ବଶିଷ୍ଠ ତପଚାରୀ ।
ଖୁଣ୍ଟିଆ ପଡ଼ିହାରୀ ପଟୁଆରୀ ରହିଲେ
ବାର୍ତ୍ତା ଘେନିଯାଇ ବ୍ରାହ୍ମଣେ କହିଲେ ।
ଭୋ ରଘୁନନ୍ଦନ ତୁମ୍ଭେ ବିବେକ ଚୂଡ଼ାମଣି
ଗଙ୍ଗା ଯମୁନା ମହୋଦଧି ସଙ୍ଗତେ ତୋଡେଗଣି ।
ମହିମାରେ ମେରୁ ଯେ ବିଚାରରେ ଗରୁ
ତିନିପୁରେ ତାର ନାମ ହୋଇଛି ମହାମେରୁ ।
ତୁମ୍ଭର ପାପ କି ମୋହର ଦୁର୍ଭାଗ୍ୟ କର୍ମ
କିଅବା ଛାଡ଼ିଲା ଧର୍ମ କର୍ମ ହୋଇ ବାମ ।
ମାତା ପିତା ଥାଉଁ ଯେ ପୁତ୍ର ଯାଇ ମରି
ଏଡ଼େ ଉପଦର୍ପି ଯେ ଯମ କିମ୍ପା ବରି ।
ଦଶ ସହସ୍ର ବରଷ ବର୍ତ୍ତନ୍ତି ଏଥି ଲୋକ
ଅକାରଣେ ବ୍ୟାଧି ହୋଏ ନାହିଁ ରୋଗ ଶୋକ ।
ଏତେକାଳ ପର୍ଯ୍ୟନ୍ତେ ଏଥିରେ ସୁସ୍ଥ ଥିଲା
ଏବେ ଆସି ବାଳୁତ ତନୟ ନାଶ ଗଲା ।
ପୁତ୍ର ନ ଜୀଇଲେ ମୋର ମରିବୁ ଦୁଇପ୍ରାଣୀ
ଅଗ୍ନିରେ ପଶିବୁ ଆମ୍ଭେ ପୁତ୍ରକୁ ସଙ୍ଗେ ଘେନି ।
ଏତେ ବୋଲି ବ୍ରାହ୍ମଣ ଶୋକ ତହିଁ କରି
ପୁତ୍ର ଘେନିଣ ସେ ଯୁଇ ସଜକରି ।
ଶ୍ରୀରାମ ବୋଇଲେ ତୁମ୍ଭେ ରହ ଏହିଠାରେ
ଏପୁତ୍ର ନ ଜୀଇଁଲେ ଆମ୍ଭେ ନରହିବୁଁ ଏ ରାଜ୍ୟରେ ।
ତୁମ୍ଭେ ଦେଖନ୍ତେ ଦେଶାନ୍ତର ଯେ କରିବି
ଏଡ଼େ ଅନ୍ୟାୟୀ ଯମକୁ ଆଜ ଯେ ନାଶିବି ।
ଏତେବୋଲି ବିପ୍ରକୁ ରଖିଲେ ଦାଶରଥୀ
ଘରକୁ ବୋଇଲେ ବ୍ରାହ୍ମଣ ସଙ୍ଗରେ ଥାଆଟି ।
ଏବେ ଯମ ଭୁବନକୁ ଯାଉଛି ପୁତ୍ର ପାଇଁ
ଜନ୍ତୁପତି ଆସିଲେ ଦେବ ସେ ଜୀଆଇଁ ।
ଏତେବୋଲି ରଥରେ ବିଜୟ ଯାଇ କଲେ
ସରଯୂ ପାରି ହୋଇ ବନରେ ବୁଲିଲେ ।
ପଶ୍ଚିମ ଦିଗ ବନସ୍ତ ଭିତରେ ପଶିଲେ
ଉତ୍ତର ଦିଗକୁ ପୁଣ ଫେରିଣ ବିଜେ କଲେ ।
ପୂର୍ବଦିଗ ଦେଖିଣ ଦକ୍ଷିଣେ ମିଳିଲେ
ଯାନ୍ତେଣ ବାଟରେ ସେ ଦେଖିଲେ ସରୋବରେ ।
କୂଳରେ ଉପବନ ଯେ ଅଛଇ ଅପାର
ନାନାବର୍ଣ୍ଣ ଶୋଭା ପାଉଅଛି ତରୁବର ।
ସେ ତୋଟା ଭିତରେ ପଶିଲେ ପୁଣ ଯାଇ
ବୃଦ୍ଧ ତପସୀ ଯେ ଦେଖିଲେ ରଘୁସାଇଁ ।
ଊର୍ଦ୍ଧ୍ୱ ମୁଖ ହୋଇଣ ସେ କରୁଅଛି ତପ
ମନରେ ବିଚାରଇ ହୋଇବି ସ୍ୱର୍ଗେନୃପ ।
କୂଳରେ ଅଗ୍ନି ଯେ ଜଳେ ପ୍ରଜ୍ୱଳିତ
ସେ ଧୂମ ଭକ୍ଷଇ ଯେ ତପସିଦ୍ଧ ମତ ।
ଦୁଇ ସ୍ତମ୍ଭପୋତି ଯେ ଉପରେ କାଠଲଦି
ତହିଁରେ ଦୁଇଗୋଡ଼ ଦଉଡ଼ିରେ ବାନ୍ଧି ।
ଓହଳି ପଡ଼ି ସେଥିରେ ଭକ୍ଷଇ ଅନଳ
ମୁଖବାଟେ ରୁଧିର ଯେ ବହେ ଖଳ ଖଳ ।
ଦୁଇନାସା ପୁଡ଼ା ଯେ ଦୁଇଚକ୍ଷୁକର୍ଣ୍ଣ
ମୁଖ ସହିତରେ ଯେ ବାହାରେ ସାତସ୍ଥାନ ।
ସପ୍ତଧାରା ରୋଧିର ବହେ ଖରତର
ଦାବାନଳ ଅନଳ ଜଳଇ ମହାଘୋର ।
ପବନ ପିଅଇ ଯେ ମୁଖତା ବିସ୍ତାରି
ଦୁତିଇନ୍ଦ୍ର ପ୍ରାୟେ ଦିଶଇ ତପସ୍ଥଳି ।
ଇନ୍ଦୁର ରୂପରେ ବୃକ୍ଷରୁ ଡେଇଁଲେ
ବଳରାମ ଦାସ ଯେ ସେ ବନରେ ଥିଲେ ।
ଶ୍ରୀରାମ ସେଠାରେ ପ୍ରବେଶ ହେବା ଦେଖି
ଶ୍ରୀରାମ ଚରଣେ ଶରଣ ପଶେ ସେଥି ।
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ଶ୍ରୀରାମ ଯାଇ ସେ ଶୁଦ୍ରମୁନି ପାଶେ ମିଳି ।
ଏହି ସେ ଦେବ ବୋଲି ବୋଲିଣ ବୋଇଲେ
ଦେଖିଣ ତପ ତାର ସନ୍ତୋଷ ହୋଇଲେ ।
ତାହାକୁ ପଚାରିଲେ କାହିଁକି ତପକରି
ଏଘୋର ବିପିନେ ଯେ ଏକାନ୍ତେ ଦୁଃଖପଡ଼ି ।
ବ୍ରାହ୍ମଣ, ଶୂଦ୍ର, ବୈଶ୍ୟ କେବଣଟି ଜାତି
ମୋହର ଆଗରେ ତୁ ସ୍ୱରୂପ କହଟି ।
ମୁହିଁ ଅଯୋଧ୍ୟାରେ ରାମଚନ୍ଦ୍ର ରାଜ
ଦଶରଥ ରାଜାଙ୍କର ଅଟେ ମୁଁ ତନୁଜ ।
ମୃଗୟା ନିମନ୍ତେ ମୁହିଁ ଆସିଥିଲି ବନ
ତୁମ୍ଭଙ୍କୁ ଦେଖିଲି ମୁଁ ସୁଫଳ ଆଜଦିନ ।
ଶୁଣିଣ ତପୁସୀ ରାମଚନ୍ଦ୍ରଙ୍କୁ କହି
ବ୍ରାହ୍ମଣ, କ୍ଷତ୍ରୀ, ବୈଶ୍ୟ ନୁହଇ ଯେ ମୁହିଁ ।

କର୍ମରେ ଉତ୍ତମ ଅଟଇ ଶୂଦ୍ରଜାତି
ପୁରାଣେ ଶୁଣିଲି ଯେ ହୋଇବା ମୁକତି ।
ସେ କଥାକୁ ହେତୁକରି ତପମୁହିଁ କଲି
ସହସ୍ରେ ବରଷ ହେଲା ବନରେ ରହିଲି ।
ଇନ୍ଦ୍ରିନିଗ୍ରହଣ କଲି ସଞ୍ଚାଇଲି କାୟେ
ଏହାଦେଖି ଇନ୍ଦ୍ର ଯେ ଅଇଲା ମୋର ଯାଏ ।
ଅନେକ ଉପାୟକରି ତପ ମୋ ଭଗ୍ନକଲା
ସେ ସକାଶୁଁ ମୋର ଦେହୁଁ ରିପୁ ଉପୁଜିଲା ।
ବିଷ୍ଣୁ ନାମ ଗୋଟି ଯେ ମୁ କରୁଥିଲି ଧ୍ୟାନ
ମୋ ସଙ୍ଗେ ବାଦୀହେଲା କଶ୍ୟପ ନନ୍ଦନ ।
ସେ ସକାଶୁଁ ଇନ୍ଦ୍ରହେବି ମନେ ବିଚାରିଲି
ଉର୍ଦ୍ଧ୍ୱମୁଖୀ ତପଗୋଟି ଆରମ୍ଭ ଏଥିକଲି ।
ବିଚାରିଲି ନିକଟରେ ହେବି ସୁରଇନ୍ଦ୍ର
ଏତେବୋଲି ଶୂଦ୍ରମୁନି କହିଲା ରାମଆଗ
ଶ୍ରୀରାମ ବୋଇଲେ ଇନ୍ଦ୍ର ପଣରେ କିସକାର୍ଯ୍ୟ
ମୁକୁତ ଲଭିଲେ ତୁ ଯେ ହୋଇବୁ ଦୁର୍ଲ୍ଲଭ ।
ତପୀ ବୋଇଲେ ମୋତେ ନାରାୟଣ ଗତି
କେଉଁଠାରେ ଦେଖିବି ମୁଁ ଅନନ୍ତ ମୁରତି ।
ଶ୍ରୀରାମ ବୋଲନ୍ତି ମୁଁ ଅଟେ ନାରାୟଣ
ଶୂଦ୍ରମୁନି ବୋଲେ କାହିଁ ଶଙ୍ଖଚକ୍ର ଚିହ୍ନ ।
ଶୁଣିଣ ଶ୍ରୀରାମ ବିଶ୍ୱରୂପ ଦେଖାଇଲେ
ସେ ବୋଲେ ମୋତେ ମାର ତୁମ୍ଭର ହସ୍ତରେ ।
ତପୀଠାରୁ ଶୁଣିମୁଣ୍ଡ କାଟିଲେଂରଘୁସାଇଁ
ଗଣ୍ଡିମୁଣ୍ଡ ପଡ଼ିଲା ଜଳନ୍ତା ଅଗ୍ନିରେ ଯାଇ ।
ତତ୍‌କ୍ଷଣେ ମୁନିଙ୍କି ଭସ୍ମ ବୈଶ୍ୱାନରକଲା
ଦେବଙ୍କର ସାଧୁ ସାଧୁ ଶବ୍ଦ ସେଠାରେ ଶୁଭିଲା ।
ବ୍ରାହ୍ମଣର ପୁତ୍ରଜୀଉ ବୋଲିଣ ବୋଇଲେ
ତପୀଙ୍କି ପ୍ରାପତ ହେଉ ସ୍ୱର୍ଗପୁର ଭଲେ ।
ପୁଷ୍ପବୃଷ୍ଟି କରିଣ ଦୁନ୍ଦୁଭୀ ବଜାନ୍ତି
ଅପସରୀମାନେ ଯେ ହୁଳହୁଳି ଦ୍ୟନ୍ତି ।
ଏଥୁ ଅନନ୍ତରେ ଶୁଦ୍ର ମୁନି ଦେହୁଁ
ଦିବ୍ୟ ପୁରୁଷ ଯେ ବାହାର ହେଲା ତହୁଁ ।
ରାମଙ୍କୁ ବୋଇଲେ ଯୋଡ଼ିଣ ବେନିକର
ଇନ୍ଦ୍ର ପଦରୁ ମୋର ହେଲା ଏବେ ବଡ଼ ।
ଏବେ ହେ ରଘୁନାଥ ଛେଦିଲି ମୋର ମୁଣ୍ଡ
ସବୁ ପାପ ଗଲା ହେ ଖଣ୍ଡିଲ ଯମଦଣ୍ଡ ।

ତୁମ୍ଭ ହସ୍ତେ ମୁଁ ମୁକତି ଲଭିଲି
ଦୂତ ହୋଇ ବିଷ୍ଣୁର ଆଜହୁଁ ରହିଲି ।
ଅନେକ ଜନ୍ମରେ ଦେଖିଲଇଁ ମୁଁ ତୋତେ
ଯିବଇଁ ବଇକୁଣ୍ଠ ଆଜ୍ଞା ଦିଅ ମୋତେ ।
ଶ୍ରୀରାମ ବୋଇଲେ ତୁ ହେଲୁ ଦୋଷୁଁ ପାର
ପୁରାଣରେ ତୋର କଥା ହୋଇଲା ଯେ ସାର ।
ଆଜ ଯେ ଭଦ୍ର ମାସ ଶୁକଳ ପଞ୍ଚମୀ
ତୋତେ ନାଶ ଆମ୍ଭେ କଲୁ ହୋ ଶୂଦ୍ରମୁନି
ଆଜର ଦିନ ତୋତେ ପୂଜିବେ ସର୍ବନାରୀ
ସ୍ୱାମୀରେ ସଉଭାଗୀ ହେବେ କୁଳସ୍ତିରୀ ।
ତୋତେ ସେବା କଲାର ଯେ କାରଣ ପାଇବେ
ମୋହର ପ୍ରମାଣେ ତୋତେ ଭଗତି ହୋଇବେ ।
ପ୍ରତିମା ଏକଇ ଯେ ତପୁସୀ ସଞ୍ଜାତ
ଦୁର୍ବା ଅକ୍ଷତ ଦେଇ ଯେ ପୂଜିବେ ସମସ୍ତ ।
ତୋତେ ସେବାକରି ଯେ କାରଣେ ପାଇବେ
ଦୋଚାରିଣୀ ହୋଇଥିଲେ ବୈକୁଣ୍ଠ ଲଭିବେ ।
ଆନନ୍ଦରେ ଶୂଦ୍ରତପୀ ପାର୍ଥିର ଦେହ ତେଜି
ବିଜୁଳୀ ପ୍ରମାଣେ ଶୂନ୍ୟରେ ଗଲା ମଜ୍ଜି ।
ଦେବେ ଶ୍ରୀରାମଙ୍କୁ ବହୁତ ସ୍ତୁତି କଲେ
ନିକଟକୁ ଆସିଣ ବଚନ କହିଲେ ।
ଶୁଣ ଆହେ ଶ୍ରୀରାମ ଆମ୍ଭର ସିଦ୍ଧାନ୍ତ
ଜଳରେ ପଶିଥିଲେ ଅଗସ୍ତୀ ତପୋବନ୍ତ ।
ବାର ବରଷ ଯାଏ ବାହାର ନୋହିଲେ
ଆଜ ଦିନ ନିଜ ଆଶ୍ରମକୁ ସେ ଅଇଲେ ।
ଅକ୍ଷତ ଘେନିଣ ଆମ୍ଭେ ତାଙ୍କୁ ଦେଖିଯିବୁ
ତୁମ୍ଭେ ତହିଁକି ଏବେ ଯାଅ ହେ ଦୈତ୍ୟରିପୁ ।
ସେ ବ୍ରହ୍ମ ଋଷିଙ୍କି ଦେଖିଲେ ବଡ଼ଫଳ
ଯେ ଦେଖଇ ତାଙ୍କୁ ଜୀବନ ତାର ସାର ।
ଏତେ ବୋଲି ଦେବେ ଦକ୍ଷିଣ ଦିଗେ ଗଲେ
ଅଗସ୍ତିଙ୍କ ଆଶ୍ରମରେ ପ୍ରବେଶ ହୋଇଲେ ।
ଦେଖିଣ ମହାତପୀ ଆନନ୍ଦେ ପୂଜାକଲେ
ଆସନ ଆପଣ ତାଙ୍କୁ ବସିବାକୁ ଦେଲେ ।
ବ୍ରହ୍ମ, ରୁଦ୍ର, ଇନ୍ଦ୍ର ଯେ ଦଶ ଦିଗପାଳ
ତେତିଶ କୋଟି ଦେବେ ଅଛନ୍ତି ସକଳ ।
ଏଥୁ ଅନନ୍ତରେ ଯେ ରାମଚନ୍ଦ୍ର ରାୟେ
ଶୂଦ୍ରତପୀକି ମାରି ଅଗସ୍ତୀ ଠାକୁ ଯାଏ ।

ଯାନରୁ ଓହ୍ଲାଇ ଯେ ଋଷିଙ୍କି ନମସ୍କାର
ଅଗସ୍ତି ଦେଖି ତୋଷ ହେଲେ ଯେ ମନର ।
ଶ୍ରୀରାମଙ୍କୁ କୁଶଳ ଯେ ପଚ୍ଛରେ ମହଋଷି
ଶୁଣିକରି ଶ୍ରୀରାମ ବୋଇଲେକ ହସି ।
ସବୁ ମୋର ଭଲ ଯେ ତୁମ୍ଭ ପ୍ରସାଦରେ
ଅଗସ୍ତି ବୋଇଲେ ତୁମ୍ଭେ ଯାଅ ନିଜପୁରେ ।
ଶୁଣି କରି ଶ୍ରୀରାମ ଯେ ବେଗେ ଚଳିଗଲେ
ଅଯୋଧ୍ୟା ନଗ୍ରରେ ଯାଇଁ ପ୍ରବେଶ ହୋଇଲେ ।
ବଶିଷ୍ଠ ବାମଦେବ କଶ୍ୟପ ଅଇଲେ
ସରଜୁ କୂଳରେ ଶ୍ରୀରାମଙ୍କୁ ଭେଟ ହେଲେ ।
ବ୍ରାହ୍ମଣର ତନୟେ ଜୀଇଲା ବୋଲି କହି
ଶୁଣିଣ ରଘୁନାଥ ମନରେ ତୋଷ ହୋଇ ।
ଆନନ୍ଦ ହୋଇଲେ ଯେ ପୁତ୍ର ମାତା ପିତା
ତୁମ୍ଭରେ ଏକଥା ଯେ ହେଲା ଜଗଜ୍ଜିତା ।
ରାଜ୍ୟ ଲୋକଙ୍କର ଯେ ଭୟ ଦୂର ହେଲା
ଆମ୍ଭ ରାଜା ମଲା ମନୁଷ୍ୟକୁ ଜୀଆଇଲା ।
ନ ଯଶ ରଘୁନାଥ ହେ ରହିଲା ରବିତଳେ
ତୁମ୍ଭଙ୍କୁ ପଟାନ୍ତର ନାହିଁ ବ୍ରହ୍ମାଣରେ ।
ହନୁମନ୍ତଙ୍କୁ ଚାହିଁ ହସିଲେ ମହାପ୍ରଭୁ
ଏସନେକ ବାରତା ଶୁଣିଣ ରାମରାହୁ ।
ଶୁଣିଣ ପବନ ସୁତ ଶିରେ କରଦେଲା
ଭୋଦେବଏତୋତେ ବଡ଼ନୋହେଯେବୋଇଲା ।
ଦେଖନ୍ତା ଲୋକମାନେ କହିବେ ସିନା ଏହା
ଯେଉଁମାନେ ନ ଦେଖିଲେ ଅପୂର୍ବ ରାମନାହା ।
ଅଯୋଧ୍ୟା ପ୍ରଜାଜନ ଅଟନ୍ତି ବଡ଼ ଦୁଷ୍ଟ
ଉତ୍ପାତ ପଡ଼ିଲେ ବୋଲନ୍ତି ଶ୍ରୀରାମ ରାଜାରଖ ।
ଏ ସର୍ବେ ସତୀ ଦେବ ଜାନକୀ ଅସତୀ
ତିନି ଭୁବନ ଯାହାର ମନରୁ ଉତ୍ପତ୍ତି ।
ଏମାନଙ୍କ ବୋଲରେ ସୀତାଙ୍କୁ ତେଜ୍ୟାକର
ଏମାନଙ୍କ ଠାରୁ କିଛି ସନ୍ଦେହ ନ ଦେଲ ।
ଶ୍ରୀରାମ ବୋଇଲେ କିସ ଦେବେ ଏ ସନ୍ଦେହ
ହନୁମନ୍ତ ବୋଇଲେ ଦେବେ ଅଗ୍ନିରେ ପରୀକ୍ଷ ।
ତେବେ ସିନା ଜାଣିବା ଯାଙ୍କର ସତୀ ପଣ
ଶ୍ରୀରାମଚନ୍ଦ୍ର ବୋଲନ୍ତି ସମସ୍ତେ ସତୀଜାଣ ।
ସୀତା ଗଲାରୁ ପ୍ରବେଶ ଦୁର୍ବାଦ ତାଙ୍କୁଦେଲେ
ତାର ସଙ୍ଗେ ସରିକି ଏମାନେ ହୋଇଲେ ।

ସଞ୍ଚାଣ ସଙ୍ଗତରେ କି ପାରୁଆ ହେବ ସରି
ଜାନକୀ ଯାଙ୍କୁ ତୁ ମଣିଲୁ ଏକ କରି ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ଉତ୍ତର
ବ୍ରାହ୍ମଣର ପୁତ୍ର ଯିଏ କେବଣ ପ୍ରକାର ।
ଈଶ୍ୱର ବୋଇଲେ ସେ ମରି ପଡ଼ିଥିଲା
ଦେବେ କହିବାରୁ ସେ ଜୀଇଣ ଉଠିଲା ।
ହରଷରେ ଘରକୁ ଗଲେ ସର୍ବଜନ
ବିଚ୍ଛରିଲେ ଆମ୍ଭ ଶ୍ରୀରାମ ଜୀଆନ୍ତି ମଲା ପୁଣ ।
ପାର୍ବତୀ ବୋଇଲେ ସେଠାରୁ କିସ କଲେ
ଈଶ୍ୱର ବୋଇଲେ ସରଜୁ କୂଳେ ଥିଲେ ।
ନଦୀରୁ ବାହାର ଯେ ମଣ୍ଡୁକୀ ଏକ ହେଲା
ଶ୍ରୀରାମ ଚରଣେ ସେ ଓଳଗି ଶୋଇଲା ।
ସେ ମଣ୍ଡୁକୀ ବୋଇଲା ଅଧର୍ମ ହେଲା କାଳ
ବିଧାତା କହିବାର ଲଙ୍ଘିଲେ ଅହୀକୁଳ ।
ବିଧାତା ଯେତେବେଳେ ପୃଥ୍ୱୀକି ସର୍ଜିଲେ
ଅହୀକି ଦିବସ ଦେଇ ଆମ୍ଭଙ୍କୁ ରାତ୍ର ଦେଲେ ।
ସେ କଥାକୁ ନ ମାନି ରାତ୍ର ଦିବସ ସେହୁଚରେ
ତାହାର ଭୟରେ ଆମ୍ଭେ ବୁଡ଼ିଲୁ ଜଳରେ ।
ଏମନ୍ତ ସମୟେ ଅହୀ ହେଲା ପରବେଶ
ଶ୍ରୀରାମ ବୋଇଲେ କିମ୍ପା ଧର୍ମ କଲୁ ନାଶ ।
ଅହୀ ବୋଇଲା ମୋର ରାତ୍ରିଟି ଦିବସ
ଶ୍ରୀରାମ ବୋଇଲେ ତୋର କେଉଁଠାରେ ବାସ ।
ଅହୀ ବୋଇଲେ ମୋର ଧରଣୀ ବିମ୍ୱରେ
ଶ୍ରୀରାମ ବୋଇଲେ ତୋ କଥା ହେଲା ନିଅଣ୍ଟରେ ।
ଅହୀ ବୋଇଲା ମୁଁ ଦିବସେ ହେଲି ଜାତ
ଧର୍ମବଳେ ଜାତହେବାରୁ ମୁଁ ହେଲି ବଳବନ୍ତ ।
ଶ୍ରୀରାମ ବୋଲନ୍ତି ଯେବେ ବଳବନ୍ତ ତୁହି
ରାତ୍ରରେ ଦିନକରି ଲୁଚନ୍ତି କିମ୍ପା ଯାଇ ।
ରଜନୀରେ ଚନ୍ଦ୍ର କରନ୍ତି କିମ୍ପା ଭୋଗ
ଜଣାଗଲା ରଜନୀ ନୁହେଁ ତୋର ଭାଗ ।
ଆଜ ଦିନଠାରୁ ତୋତେ ମୋର ଶାପ ହେଉ
ରାତ୍ରରେ ମୁଣ୍ଡବ୍ୟଥା ଶରୀର ରୋଗ ରହୁ ।
ମଣ୍ଡୁକୀ ବୋଇଲେ ଆମ୍ଭେ ଦିବସେ ଲୁଚିବୁ
ତୋର ନାମ କଣ୍ଠ ତଟରେ ଭଜିବୁ ।
କେଶରୀ ସଙ୍ଗରେ ହୋଇବୁ ତୁ ସଙ୍ଗ
ରଜନୀ କାଳରେ ଦେହର ତୁ ପତଙ୍ଗ ।

ମଣ୍ଡୁକୀ ଅହୀ ଦୁହେଁ ଶୁଣି ଚଳିଗଲେ
ଯେ ଯାହାର ବେଳକାଳ ଆଦରି ରହିଲେ ।
ଏଥୁ ଅନନ୍ତରେ ଶୁଣ ଶାକମ୍ଭରୀ
ଚାରି ଜାତିଙ୍କର ନ୍ୟାୟ ବୁଝିଲେ ରାବଣାରି ।
ବୁଝିଣ ଶ୍ରୀରାମ ଯେ ପରମ ତୋଷ ଚିତ୍ତ
ସୈନ୍ୟବଳ ସହିତେ ସମସ୍ତେ ତୋଷିତ ।
ଏଥୁ ଅନନ୍ତରେ ଆହାର୍ଣ୍ଣିକ ସାରି ପୁଣ
ସୈନ୍ୟବଳ ଚାହିଁଣ ବୋଲନ୍ତି ଆପଣ ।
ହନୁମନ୍ତ ସୁମରି ବଶିଷ୍ଠ ତୁମ୍ଭେ ଯାଅ
ଅଯୋଧ୍ୟା ପୁରେ ଯାଇ ନିଶ୍ଚିନ୍ତରେ ଥାଅ ।
ପାଦାନ୍ତୀ ବଳ ଯେ ରହିଲେ ଆମ୍ଭ ସଙ୍ଗେ
ବେଗେଣ ଆସିବୁଁ ଯେ ଯିବୁଁ ଯଥା ଭାଗେ ।
ଏହିକ୍ଷଣି ବାହୁଡ଼ି ଆସିବୁଁ ବନସ୍ତରୁ
ମଣୋହି କରିବୁ ଆମ୍ଭେ ଯାଇ ଆସିବାରୁ ।
ଏତେ ବୋଲି ବସିଲେ ଯେ ପୁଷ୍ପକ ବିମାନେ
ଅନେକ ବନ ଯେ ବୁଲିଲେ ଯାଇ ତେଣେ ।
ବଶିଷ୍ଠ ସଙ୍ଗେ ଘେନି ଅଯୋଧ୍ୟା ପରବେଶ
ଶ୍ରୀରାମ ମଣୋହି କଲେସଂଯୋଗର ବଶ ।
ଫେରିବ ଶ୍ରୀରାମ ନବରେ ଯାଇ ମିଳି
ଚରଣ ପଖାଳି ମଣୋହିକି ବିଜେ କରି ।
ଛଡ଼ ରସରେ ଭୋଜନ କଲେ ରାମରାଣ
ଆଞ୍ଚୋବନ ସାରି ବିଡ଼ିଆ ଲାଗି ପୁଣ ।
ପଲଙ୍କର ଉପରେ ଯାଇ ନିଦ୍ରା ଗଲେ
ଆଳସ୍ୟ ନିଦ୍ରା ତେଜି ସଭାରେ ବିଜେକଲେ ।
ଏହି ମତେ ଦଶ ବରଷ ବହିଗଲା
ଶ୍ରୀରାମ ମନରେ ବହୁତ ଚିନ୍ତା ହେଲା ।
ପାର୍ବତୀ ବୋଇଲେ ଦେବ ଶୁଣ ହେ ତ୍ରିଲୋଚନ
ଜାନକୀଠାରୁ ଜାତ ଦୁଇପୁତ୍ର ପୁଣ ।
ଖୁଡୁତାମାନେ ଆସି ଧଇର୍ଯ୍ୟ କରାଇଲେ
ଜାନକୀ କିସ କଲେ ପିତାର ଘରରେ ।
ଈଶ୍ୱର ବୋଇଲେ ସେ ପିତାର ଘରେ ରହି
ଦୁଇଗୋଟି ପୁତ୍ରଙ୍କୁ ଯତନେ ପାଳଇ ।
ମାସକେ ତିନିଭାଇ ସଙ୍ଗୋଳି ଆସି ପୁଣ
ଧନ, ବସ୍ତ୍ର, ଅନ୍ନ ଦିଅନ୍ତି ସର୍ବ ଜାଣ ।
ଦୁଇ ବରଷ ଛଅମାସେ ଅନ୍ନ ଛୁଆଇଁଲେ
ପାଞ୍ଚ ବରଷରେ ବିଦ୍ୟା ଆରମ୍ଭ କଲେ ।
ବାଲମୀକ ପ୍ରସାଦରୁ ଅନେକ ବିଦ୍ୟା ହେଲା
ବେଦମନ୍ତ୍ର ବେଶ ଭାଷା ଶିଖି ହେଲେ ତୋରା ।
ନବ ବରଷର ସୁଜାଣ ପଣ କଲେ
ଖୁଡୁତାମାନେ ଗାରଡ଼ି ଦୁଇଗୋଟି ଦେଲେ ।
ମେଣ୍ଢାପରେ ଚଢ଼ିଣ ସିପାହୀ ହୁଅନ୍ତି
ଦମ୍ଭ ହୋଇ କୁମରେ ନବରେ ଫେରନ୍ତି ।
ପୁଣି ଦୁଇ ହୟ ଯେଦେଲେ କକାମାନେ
ବାରୁ ପରେ ବିଜୟ କଲେ ସେ ବହନେ ।
ବାରୁ ସାଧ କରିଣ ଧଇଲେ ଧନୁଶର
ମୃଗ ସ୍ୱୟମ୍ଭର ମାଇଲେ ଅପାର ।
ସିଙ୍ଘ ଯେ ଶାର୍ଦ୍ଦୋଳ ବରେହାଶୂକର
ଦେବତାର ଆୟୁଧ ଧଇଲେ ନେଇକର ।
ମନ୍ତ୍ର ପଢ଼ିଣ ସେ କଲେ ଆତଯାତ
ତେତିଶ କୋଟି ଦେବତା ଦେବାର ଯେଉଁଶସ୍ତ୍ର ।
ଋଷିମାନେ ଦେବା ଶସ୍ତ୍ର ପରୀକ୍ଷା ନେଇକଲେ
ଈଶ୍ୱର ଦେବାର ଧନୁ କରରେ ଧଇଲେ ।
ବେଦବରଙ୍କର ଶର ଶକତି କରେ ଧରି
ପ୍ରତିଦିନ ପାରଧି ବନରେ ଯାଇକରି ।
ଏମନ୍ତେ ଏକାଦଶ ବରଷ ହୋଇଲେ
ଏକଦିନେ ତିନିଭାଇ ପ୍ରବେଶ ହୋଇଲେ ।
ଜାନକୀର ଚରଣେ ନମସ୍କାର କଲେ
ଦେଖିକରି ଜାନକୀ ପରମ ତୋଷ ହେଲେ ।
ଦୁଇ ପୁତ୍ରେ ଆସିଣ ଖୁଡୁତାଙ୍କ କୋଳେବସି
ଖୁଡୁତାମାନେ ଦେଖିଣ ମନରେ ହେଲେଖୁସି ।
ଧନବସ୍ତ୍ର ଅଳଙ୍କାର ଯେତେ ଆଣିଥିଲେ
ଜାନକୀର ଭଣ୍ଡାରେ ନେଇଣ ରଖାଇଲେ ।
ମନୁମାୟା ବୋଇଲେ ଶୁଣ ହେ ତିନିଭାଇ
ବରଷେ ପରିଯନ୍ତେ ନ ଆସ ଏ ଭୂଇଁ ।
ଆସିଲେ ପ୍ରମାଦ ଯେ ପଡ଼ିବ ତୁମ୍ଭଙ୍କୁ
ମନା କଲି ଏବେ ଯେ ନ ଆସ ଏଠାକୁ ।
ଶୁଣିଣ ତିନିଭାଇ ସେଠାରୁ ଚଳିଗଲେ
ଋଷିଙ୍କର ଆଗରେ ଯାଇଣ ମିଳିଲେ ।
ଋଷିଙ୍କି ଦେଖିଣ ସେ ନମସ୍କାର କଲେ
ମେଲାଣୀ ହୋଇଣ ସେ ନିଜପୁର ଗଲେ ।
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ବାଲମୀକ ମୁନି ମାରୁତିକି ଯେ ସୁମରି ।

ରଜନୀ ଅର୍ଦ୍ଧରେ ଯେ ପବନ କୁମର
ବାଲମୀକ ମୁନି ପାଶେ ମିଳିଲା ସତ୍ୱର ।
ଋଷି ଦେଖିଣ ସେ ଚରଣେ ନମିଲା
ଋଷି ବୋଇଲେ ଶୁଣ ପବନର ବଳା ।
ରାମାୟଣ ଯୁଦ୍ଧରେ ତୁହି ପୁଣ ଥିଲୁ
ମହାନାଟକ କାବ୍ୟ ତୁ ସେଠାରେ ରଚ୍ଛିଲୁ ।
ପ୍ରକାଶ ନ କରି କିମ୍ପାରେ ରଖିଲୁ ଗୁପତ
ଶ୍ରୀରାମ ନ ଶୁଣିଲେ ସେ ହୋଇଲା କେମନ୍ତ ।
ମାରୁତି ବୋଇଲା ମୁଁ ନ କଲି ପ୍ରକାଶ
ଶ୍ରୀରାମ ଦାସ ମୁଁ ଅଟଇ ମୋତେ ପ୍ରାଶ ।
ବାଲମିକ ବୋଇଲେ ତୋତେଯେବେ ଲଜ୍ଜାହେଲା
ସେ ନାଟକ ଆଣରେ ଆମ୍ଭେ ଦେଖିବା ଭଲା ।
ଶୁଣିଣ ହନୁମନ୍ତ ବେଗେ ଚଳିଗଲା
ସୁବଳୟା ଗିରିରେ ଯାଇଣ ମିଳିଲା ।
ସମୁଦ୍ରରେ ଲେଖା ବୁଡ଼ାଇ ଥିଲା ପୁଣ
ଘେନି କରି ହନୁମନ୍ତ ଅଇଲା ବହନ ।
ବାଲ୍ମୀକି ମୁନିଙ୍କ ପାଶେ ହେଲା ପରବେଶ
ଦେଖିକରି ଋଷି ଯେ ହେଲେ ହସହସ ।
ମହାନାଟକ ଶ୍ଳୋକ ଦେଖିଲେ ଋଷି ପୁଣ
ବୋଇଲେ ମାରୁତିରେ ଧନ୍ୟ ତୋ ଜୀବନ ।
ଏତେ ବୋଲି ଋଷି ପ୍ରଶଂସା ତାକୁ କଲେ
ଶୁଣିଣ ମାରୁତି ଅଯୋଧ୍ୟା ଚଳେ ଭଲେ ।
ସେ କାବ୍ୟ ନାଟକ ଦେଖିଣ ଋଷି ପୁଣ
ସାତଶ ପଚ୍ଚଶ ଶ୍ଳୋକ ପଢ଼ିଣ ବୁଝିଣ ।
ପଦ ନିଅଣ୍ଟ ବୋଲି ତାହାକୁ ମୂଳ କରି
ସେଥିରୁ ଝାଳ ଋଷି ମେଲିଲେକ ଧରି ।
ସାତଶହ ପଞ୍ଚାଶ ଶ୍ଳୋକ ସେ ଲେଖିଲେ
ଦୁଇ ନାତିଙ୍କି ଡକାଇ ସେ ପୁସ୍ତକ ଦେଲେ ।
ପଢ଼ିଣ ଦୁଇଭାଇ ହୋଇଲେ ନିରସ
ବୋଇଲେ ଏ ପାଠ ଆମ୍ଭଙ୍କୁ ଭବିଷ୍ୟ ।
କରଯୋଡ଼ି ଋଷିର ଆଗରେ ଉଭାହେଲେ
ଦୋଷ କ୍ଷମା ହେଲେ ଆମ୍ଭେ କହିବୁଁ ବୋଇଲେ ।
ଏ ପୁରାଣ ଗୋଟି ଯେ ଆମ୍ଭଙ୍କୁ ଅଭୂଷଣ
ମାତା ପିତା ବିଡ଼ମ୍ବିଣ ଏଥିରେ ଲେଖାଜାଣ ।
ଆମ୍ଭେ ପ୍ରକାଶ କରିବାର ନୁହଇଁ ଉଚିତ
ଶୁଣିଲେ ରାଜ୍ୟଲୋକେ କରିବେ ଅପଖ୍ୟାତ ।
ପୁଣି ସେ ବ୍ରହ୍ମ ମୁନିଙ୍କି ବାଳକେ କହିଲେ
ସୀତା ତୁମ୍ଭ ଦୋହିତା ରାମ ଯୁଆଇଁ ଭଲେ ।
କେମନ୍ତେ ଏକଥାକୁ ପ୍ରସନ୍ନ ଦେବକଲ
ତୁମ୍ଭର ବିହିତ ଏ ନୁହଇ ପ୍ରକାର ।
ଶୁଣିଣ ବାଲମୀକ ସ୍ତମ୍ଭୀଭୂତ ହେଲେ
ବାଳକ ଦୁହିଁଙ୍କି ସେ ଗଉରବ କଲେ ।
ସେ ବୋଇଲେ ଆମ୍ଭେତୁମ୍ଭରେ ନୋହେ ପରକାଶ
ଶୁଣିଲେ ନିନ୍ଦାକରିବେ ଦେବତା ତ୍ରିଦଶ ।
ନର ବାନର ରାଜା ଶୁଣିଲେ ନିନ୍ଦାହେବ
ଅସୁରମାନେ ଶୁଣିଲେ ହାସ୍ୟ ଉପୁଜିବ ।
ବୋଲିବେ ମାତା ପିତା ଅବିଦ୍ୟା ପୁତ୍ର କହି
ଆମ୍ଭର ଗର୍ଭରୁ କି ଜାତ ଯାଙ୍କର ନାହିଁ ।
ତୁମ୍ଭେ ଯେବେ ଏ ପୁରାଣ କରିବ ପ୍ରକାଶ
ତପୁସୀ ହୋଇଲେ ତୁମ୍ଭେ ଯିବ ଯମପାଶ ।
ରାଜ୍ୟର ନିନ୍ଦା ଦେବ ମରଣ ସଙ୍ଗେ ସରି
ବିଚ୍ଚରି କାର୍ଯ୍ୟକର ତୁମ୍ଭେ ବ୍ରହ୍ମଚାରୀ ।
ଶୁଣିଣ ମୁନି ମନେ ନିରସ ହୋଇଲା
ସପତ ଋଷିଙ୍କି ଯେ ମନେ ସୁମରିଲା ।
ସନନ୍ତ ସନାତନ ମାର୍କଣ୍ଡ ଅଇଲେ
ଅଗସ୍ତି, ଅଙ୍ଗୀରା ଯେ ପାରେଶ୍ୱର ତୁଲେ ।
ବାଲମୀକ୍ ମଠରେ ହେଲେ ପରବେଶ
ଶଉଚ ନିର୍ମଳ ହୋଇ ବସିଲେ ସମସ୍ତ ।
ରାମାୟଣ ଚରିତ୍ର ଯେ ବାଲମୀକ କହି
ଆଦ୍ୟ ଅନ୍ତ ପରିଯନ୍ତେ ଶୁଣିଲେ ମୁନି ତହିଁ ।
ଋଷିଙ୍କି ବୋଇଲେ ଗ୍ରନ୍ଥ କଲକି ସମ୍ପୂର୍ଣ୍ଣ
ତୁମ୍ଭେ ପ୍ରକାଶ କରିବାର ନୁହଇ ଉତ୍ତମ ।
ଋଷି ବୋଇଲେ ମୁଁ ଯେ ସୀତାର ପୁତ୍ରେଦେଲି
ସେହି ଫେରି ଦେଲେ ତୁମ୍ଭଙ୍କୁ କହିଲି ।
ଅଗସ୍ତି ବୋଇଲେ ତାଙ୍କର ନୁହଇ ଉଚ୍ଛିତ
କେହୁ ପ୍ରକାଶ କରିବ ବୋଇଲେ ତପୋବନ୍ତ ।
ସପତ ଋଷି ବୋଇଲେ ଅଛଇ ପୁଣ ଜଣେ
ତାରଠାରେ ଦୋଷ ନାହିଁ ସେ ପଢ଼ିବେ ଏଣେ ।
ଅଗସ୍ତି ବୋଇଲେ ତୁମ୍ଭେ ଋଷିଶୃଙ୍ଗଙ୍କୁ ବର
ଶୁଣିଣ ବାଲମୀକ ସୁମରେ ତତ୍ପର ।
ବାଲମୀକ ସୁମରନ୍ତେ ଜାଣିଲେ ଋଷିଶୃଙ୍ଗ
ଆସିଣ ମିଳିଲେ ସେ ସପତ ଋଷି ଆଗ ।

ଦେଖିଣ ମାନ୍ୟକଲେ ବିଭାଣ୍ଡକ ସୁତ
ଅଙ୍ଗୀରା ବୋଇଲେ ତୁମ୍ଭେ ଶୁଣ ତପୋବନ୍ତ ।
ବାଲମୀକ ଋଷି ଯେ ରାମାୟଣ କଲେ
ପ୍ରକାଶ କରିବାକୁ ସାମର୍ଥ ନୋହିଲେ ।
ଝିଅ ଜ୍ୱାଇଁ ବିଡ଼ମ୍ବଣ କେମନ୍ତେ କହିବେ
ନର ନାରୀମାନଙ୍କରେ ନିନ୍ଦା ଯେ ପାଇବେ ।
ଶ୍ରୀରାମର ପୁତ୍ରେ ଯେବେ କରିବେ ପ୍ରକାଶ
ସେହି ପଢ଼ିବାର ଯେ ନୁହଇ ଉଚିତ ।
ତୁମ୍ଭେ ଏ ପୁରାଣକୁ ପ୍ରକାଶ କରିବ
ସମସ୍ତେ ତୁମ୍ଭର ଯେ ଅଟନ୍ତି ହାସ୍ୟଭାବ ।
ଦୁଇଶତ ଚୌରାଳିଶ ବରଷ ଗଲେ ପୁଣ
ଏ ପୁରାଣ ତୁମ୍ଭେ ଯେ କରିବ ଗାୟନ ।
ଘରିଭାଇ ପାତ୍ରମନ୍ତ୍ରୀ ସାମନ୍ତ ଋଷି ଥିବେ
ଚତୁରଙ୍ଗ ବଳରେ ନାରୀ ଯେ ଶୁଣିବେ ।
ଜାନକୀ ଘରିଭଗ୍ନୀ ଯେ ଦାସୀଗଣ ଘେନି
ତାହାଙ୍କୁ ଶୁଣାଇବ କହିଲୁ ଆମ୍ଭେ ପୁଣି ।
ବାଲମୀକ ରାମାୟଣ ଋଷିଶୃଙ୍ଗରେ ଦେଲେ
ସେ ପୁରାଣ ରଖି ଋଷି ନିଜ ସ୍ଥାନ ଗଲେ ।
ବାଲମୀକ ବୋଇଲେ ଅଗସ୍ତି ମୁଖ ଚାହିଁ
ପିତା ପୁତ୍ର କିରୂପେ ଚିହ୍ନାଚିହ୍ନି ହୋଇବଇଁ ।
ଅଗସ୍ତି ବୋଇଲେ ଯୁଦ୍ଧ ପିତା ପୁତ୍ରରେ ହେବ
ପିତା ହାରିବେ ପୁତ୍ରେ ଜିଣିବେ ଏହିଠାବ ।
ଅଶ୍ୱମେଧ ଯାଗ ଯେ କରିବେ ରାମରାଣ
ଏଗାର ଅଶ୍ୱମେଧ ଯେ କରିବେ ପ୍ରମାଣ ।
ଦଶ ଅଶ୍ୱମେଧ ଯେ ଦୁଇପୁତ୍ରେ ନେବେ
ପିତା ଖୁଡୁତାଙ୍କୁ ଏଥି ଯୁଦ୍ଧରେ ଜିଣିବେ ।
ଏକ ଅଶ୍ୱମେଧ ଯେ କରିବେ ରାମରାଣ
କହିଣସପତଋଷି ଗଲେ ନିଜ ସ୍ଥାନ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ଶ୍ରୀରାମ ଯେ ଅଯୋଧ୍ୟା ପୁରରେ ରହିଲା ।
ଈଶ୍ୱର ବୋଇଲେ ସେକଥା ଶୁଣ ଏବେ
ରାଜ୍ୟର ଭଲମନ୍ଦ ବୁଝନ୍ତି ରାଘବେ ।
ଦିନେକ ଶ୍ରୀରାମ ଯେ ବିଜେକରି ଗଲେ
ଅଗସ୍ତିଙ୍କ ମଠରେ ପ୍ରବେଶ ହୋଇଲେ ।
ଦେଖିଣ ଅଗସ୍ତି ତୋଷ ହେଲେ ପୁଣ
ଶ୍ରୀରାମ ନମିଲେ ଯେ ଅଗସ୍ତି ଚରଣ ।
ଏମନ୍ତ ସମୟେ ଅଇଲେ ଦେବଗଣ
ବ୍ରହ୍ମା ରୁଦ୍ର ସହିତେ ତ୍ରିଦଶ ଦେବଗଣ ।
ଦେବତାଙ୍କ ସଙ୍ଗରେ ବିଜୟ ରାମକଲେ
ଆନନ୍ଦରେ ସଭାରେ ପାଇଣ ବସିଲେ ।
ଶ୍ରୀରାମଙ୍କୁ ଚାହିଁଣ ଅଗସ୍ତି ବୋଇଲେ
କୁଶଳରେ ଏବେକି ଅଛି ହେ ରଘୁବୀରେ ।
ପ୍ରତିଦିନ ଶସ୍ୟ ଦିଅଇଟିକି ପୃଥ୍ୱୀ
ଧନ ଦେଇ ନାଗରାଜା ସଙ୍ଖୋଳେଟିକି ନିତି ।
ଅଯୋଧ୍ୟାରେ ପ୍ରଜାଙ୍କର ନାହିଁନା ଆନଚିନ୍ତା
ଇଚ୍ଛାରେ ଅଛନ୍ତିଟିକି କନିଷ୍ଠ ଭାଇ ଶ୍ରୋତା ।
ଶୁଣିକରି ଶ୍ରୀରାମ ଯୋଡ଼ନ୍ତି ବେନିକର
ବୋଲନ୍ତି ତୁମ୍ଭ ପ୍ରସାଦେ କୁଶଳ ମୁନିବର ।
ସମସ୍ତ ସୁଲଭ ହୋଇଅଛି ଏବେ
ନୋହିବ କିମ୍ପା ତୁମ୍ଭଙ୍କୁ ସେବାକଲି ଯେବେ ।
ଶୁଣିଣ କୁମ୍ଭସୁତ ହୋଇଲେ ସନ୍ତୋଷ
ଦେବତାମାନେ ରାମଙ୍କୁ କଲେ ପଉରଷ ।
ମୋହର ମନେ ଯେ ଲାଗିଲାକ ଭୀତି
ପୂର୍ବକଥା ଶ୍ରୀରାମଙ୍କୁ କହିଲେ ମହାଯତି ।
ଏ ଧନ ପରିଗ୍ରହ କରିବ କେମନ୍ତେ
ତୋତେ ହୋ ରଘୁନାଥ ଦେଲଇଁ ଯେମନ୍ତେ ।
ଯେବଣ ଆୟମୋତେ ତୁ ପୂର୍ବରେ ଦାନଦେଲୁ
ସେ ପାପ ଥିଲା ବୋଲି ଦେହରୁ ଛଡ଼ାଇଲୁ ।
ଏ ପାପ ମୋର ଦେହରେ ଏତେକାଳ ଥାଇ
ତୋହର ଆସିବାକୁ ଯେ ଥିଲି ବାଟ ଚାହିଁ ।
ବାରବରଷ ଜଳସାହୀରେ ସୁଫଳ ମୋରହେଲା
ତୋତେ ଦେଖି ମୋର ଯେ ସକଳ ପାପଗଲା ।
ତୁହୋ ରଘୁନାଥ ଧନ ଛାଡ଼ି ଲୋଡ଼ୁ
ଜଗତ ହିତ ନିମନ୍ତେ ତୁହି ଦୁଃଖ ପଡୁ ।
ତୋତେ କି ଅସୁରେ କରନ୍ତି ଘଞ୍ଚାଳ
ମୋହ ନିମନ୍ତେ ତୁ ଯେ ଦଶରଥ ବାଳ ।
ଆମ୍ଭେ ତୁମ୍ଭ ଭରସାରେ ଘେନୁ ସିନା ଦାନ
ପର ପାପ ବହିବାକୁ ଯେ ନୋହେ ଭାଜନ ।
ଜଗତ ଜନଙ୍କୁ ଆମ୍ଭେ ମୁକତ କରାଉଁ
ଆମ୍ଭେ ତରିବା ନିମନ୍ତେ ତୋର ନାମଗାଉଁ ।
ଅଳଙ୍କାରରେ ଦେଇ ଯେ ତୋତେ କଲୁପୁଜା
ଅନୁଗ୍ରହ କର ହେ ଦେବାଧି ଦେବରାଜା ।

ଅଗସ୍ତି ମୁନି ଯହୁଁ ଏମନ୍ତ ବୁଝାଇଲେ
ସ୍ୱର୍ଗରେ ସୁରଗଣେ ସାଧୁ ସାଧୁ କଲେ ।
କଥା ହୁଅନ୍ତେ ଯେ ପାହିଲା ରଜନୀ
ସ୍ୱର୍ଗପୁରକୁ ଯେ ଚଳିଗଲେ ଦେବେ ପୁଣି ।
ଶ୍ରୀରାମ ଆରୋହିଲେ ପୁଷ୍ପକ ବିମାନ
ସଙ୍ଗରେ ଅଛନ୍ତି ଯେ ପୟେକାର ସୈନ୍ୟ ।
ଉତ୍ତର ମୁଖ ହୋଇଣ ବେଗେ ଚଳିଗଲେ
ଅଯୋଧ୍ୟା କଟକେ ଯାଇଁ ପ୍ରବେଶ ହୋଇଲେ ।
ବଡ଼ଦାଣ୍ଡରେ ବିଜେ କୋଦଣ୍ଡ ଚାପଧାରୀ
ବୀରବାଦ୍ୟ ଶବଦରେ ଆକାଶ ଯେ ପୁରି ।
ନଗ୍ର ନରନାରୀ ହେ ଆନନ୍ଦେ ଦେଖନ୍ତି
ଏ ସେ ରଘୁନାଥ ବୋଲି ପ୍ରଶଂସନ୍ତି ।
ମଲା ଲୋକ ଏହାଙ୍କର ବୋଲରେ ଜୀଅଇଁ
ଏହାଙ୍କ ବୋଲେବିଧାତା ଆନ ସୃଷ୍ଟି ଯେ କରଇ ।
ବାବୁ ମଞ୍ଚପୁରେ ଏହା ଶୁଣି ଯେ ନ ଥିଲୁ
ଏବେ ଯେ ଶ୍ରୀରାମ ରାଜା ନୟନେ ଦେଖିଲୁ ।
ଅନେକ ନୃପତି ଯେ ମଞ୍ଚପୁରେ ଥିଲେ
ଏଡ଼େ ପାରିବାରପଣ କେହି ଯେ ନକଲେ ।
ଯମ ନେଲା ଲୋକକୁ କେ ଆଣିବ ଲେଉଟାଇ
ଶ୍ରୀରାମର ପ୍ରାୟେ ରାଜା ତିନିପୁରେ ନାହିଁ ।
ଏସନେକ ବୋଲି ଯେ ବୋଲନ୍ତି ନରନାରୀ
ଏଥୁ ଅନନ୍ତରେ ଦେବ ରାବଣାରି ।
ନିଜ ନବରେ ଯେ ଯାଇଣ ମିଳିଲେ
ପହଣ୍ଡ ମଣାଇ ଖୁଣ୍ଟାଇ ଘେନି ଗଲେ ।
ଅଗସ୍ତି ଦେଇଥିଲେ ଯେବଣ ଅଳଙ୍କାର
ଭୂଷଣ ହୋଇଛନ୍ତି କୋଦଣ୍ଡ ଚାପଧର ।
ଅକଣ୍ଟକ ରାଜ୍ୟ ସର୍ବ ସମ୍ପଦ ଅଛି
ଅମୂଲ୍ୟ ଦିବ୍ୟଧନ ଯେ ଭଣ୍ଡାରେ ପୂରିଅଛି ।
ନାହିଁ ବୋଲିଣ ସେଥିରେ ଜଣଏକ ନାହିଁ
ଦେବେ ପ୍ରଶଂସା କରନ୍ତି ସେ ନଗ୍ରକୁ ଚାହିଁ ।
ମରଣ ବୋଲିଣ ଯେ ଶୁଣିଲା ତହିଁ ନାହିଁ
ଯେହୁ ମରଇ ତାକୁ ଜୀଆଇ ଦିଅଇ ।
ଦଶ ସହସ୍ର ବରଷ ଯାହାର ପୁରଇ
ସେମାନେ ମୃତ୍ୟୁପାନ୍ତି ଶ୍ରୀରାମ ନ ଜୀଆଇ ।
ଭରତ, ଲକ୍ଷ୍ମଣ, ଶତୃଘନ ଚାରିଭାଇ
ଏ ଚାରି ଭାଇଙ୍କର ପୁତ୍ର ଦୁଇ ଦୁଇ ।

ଏଥୁ ଅନନ୍ତରେ ଯେ ଶୁଣ ଶାକମ୍ଭରୀ
ଶ୍ରୀରାମ ଯେ ମନରେ କଥାଏ ବିଚାରି ।
ପାପ ନକଲେ ତ କାର୍ଯ୍ୟ ନୋହେ କିଛି
ରାଜାପଣ କଲେତ କେତେ ପାପଅଛି ।
ପର ପାପର ଯେ ଭଗାରି ହୋଏ ରାଜା
କିଞ୍ଚିତ ଧର୍ମ ଯେ ନକରେ ପୁଣ ପ୍ରଜା ।
ଏମନ୍ତ ବିଚାରି ଯେ ବଶିଷ୍ଠଙ୍କୁ କହି
ଶୁଣିଣ ବଶିଷ୍ଠ ବୋଇଲେ ଶୁଣ ତୁହି ।
ତିନି ଭାଇଙ୍କି ତୋର ଡକାଇ ପୁଣ ଆଣ
ତାହାଙ୍କୁ ପଚାରି କରିବା ଯାଗ ପୁଣ ।
ଶୁଣି କରି ଶ୍ରୀରାମ ମନରେ ତୋଷହେଲେ
ହନୁମନ୍ତ ସୁଷେଣ ସୁମନ୍ତ ଡାକିଲେ ।
ବୋଇଲେ ତିନିଭାଇଙ୍କୁ ଡକାଇ ଆଣ ପୁଣ
ସେ ଆସିଲେ ଯାଗ କରିବା ବିଚାରିଣ ।
ଶୁଣିଣ ତିନିଜଣ ବେଗେ ଚଳିଗଲେ
ଲକ୍ଷ୍ମଣ ପୁରେ ସୁଷେଣ ପ୍ରବେଶ ହୋଇଲେ ।
ବୋଇଲେ ରାମ ଦେବ କହିଲେ ବେଗେଯିବ
ଶୁଣିଣ ଲକ୍ଷ୍ମଣ ସଜହେଲେ ବେଗ ।
ପାତ୍ର ମନ୍ତ୍ରୀଙ୍କି ଡକାଇଣ ରାଜ୍ୟ ସମର୍ପିଲେ
ସୁଷେଣକୁ ଘେନିଣ ରଥରେ ବସିଲେ ।
ଶ୍ରୀରାମ ସିଂହଦ୍ୱାରେ ହେଲେ ପରବେଶ
ଦର୍ଶନ କଲେ ଯାଇଁ ଶ୍ରୀରାମର ପାଶ ।
ଦେଖିଣ ଶ୍ରୀରାମ ଯେ ପରମ ତୋଷହେଲେ
ହନୁମନ୍ତ ଯାଇଣ ଭରତପୁରେ ମିଳେ ।
ବୋଇଲା ବେଗେ ଯିବ କହିଲେ ଚାପଧାରୀ
ଶୁଣିଣ ଭରତ ପାତ୍ରମନ୍ତ୍ରୀଙ୍କି ଡାକି କରି ।
ରାଜ୍ୟଭାର ଦେଇଣ ହନୁକୁ ସଙ୍ଗେ ଧରି
ରଥେ ବସି ପ୍ରବେଶ ଅଯୋଧ୍ୟା ନଗରୀ ।
ଶ୍ରୀରାମ ସିଂହଦ୍ୱାରେ ହେଲେ ପରବେଶ
ରଥରୁ ଓହ୍ଲାଇଣ ଗଲେ ଶ୍ରୀରାମ ପାଶ ।
ଦେଖିକରି ଶ୍ରୀରାମ ସନ୍ତୋଷ ହୋଇଲେ
ଚରଣେ ଓଳଗିଲା କୈକେୟୀ କୁମରେ ।
ଏଥୁ ଅନନ୍ତରେ ସୁମନ୍ତ ମନ୍ତ୍ରୀ ଯାଇ
ଶତୃଘନ ଆଗରେ ମିଳିଲେକ ସେହି ।
ବୋଇଲେ କୋଦଣ୍ଡ ଚାପଧାରୀ କହି
ଅଯୋଧ୍ୟାକୁ ଚଳ ହେ ନୀଳାବତୀ ତନୟୀ ।

ଶୁଣିଣ ଶତୃଘନ ମନ୍ତ୍ରୀ ସାମନ୍ତ ଡାକି
ବୋଇଲେ ଏପୁରେ ଯେମନ୍ତେ ପରଥାଠ ନପଶି ।
ତେମନ୍ତେ ରକ୍ଷାକର ଶ୍ରୀରାମଙ୍କୁ ଭେଟି
ଆସିବଇଁ ଫେରି ଅଳପ ଦିନରେଟି ।
ଏତେ ବୋଲି ବୀର ଚଢ଼ିଲା ରଥେ ଯାଇଁ
ସୁମନ୍ତ୍ରଙ୍କୁ ଘେନିଣ ଅଯୋଧ୍ୟା ମିଳେ ସେହି ।
ରଥରୁ ଓହ୍ଲାଇଣ ଶ୍ରୀରାମଙ୍କୁ ମାନ୍ୟକଲେ
ଦେଖିଣ ଚାପଧାରୀ ମନରେ ତୋଷହେଲେ ।
ତିନିଭାଇଙ୍କି ବୋଇଲେ କୋଦଣ୍ଡ ଚାପଧାରୀ
କଥାଏ କହିବି ମୁହିଁ ଯେ କହିବ ବିଚାରି ।
ଅଶ୍ୱମେଧ ଯାଗ ଯେ କରିବାକୁ ମନ
ତୁମ୍ଭମାନଙ୍କୁ ଡକାଇଲି ଏ କାରଣ ।
ତିନିଭାଇ ବୋଇଲେ ତୁମ୍ଭର ମନଇଚ୍ଛା
ଆମ୍ଭେ ତୋର ଦାସ ପଚାରୁ କିମ୍ପାକଥା ।
ଶ୍ରୀରାମ ବୋଇଲେ ରାଜାପଣ କଲେ ଦୋଷୀ
ପରଜା ପାତକ କଲେ ରାଜାଙ୍କୁ ଫଳେ ଆସି ।
ଏଣୁ ମୁଁ ମନରେ ଭୟ ଯେ କରଇ
ନପୁଣ ଯୋଗ ନୁହଇ ବୋଲିଣ ଡରଇ ।
ବ୍ରାହ୍ମଣର ମଲା ପୁତ୍ର ଯହୁଁ ଜୀବପାଏ
ବିଚାରିଲି ଯାଗ ଯେ ପ୍ରାପତ ମୋତେହୋଏ ।
ଶୁଣିଣ ଭ୍ରତବୀର କରଯୋଡ଼ି କହେ
କର ଦେବ ଯାଗ ଶରଧା ଯେବେହୋଏ ।
ତୁ ଯଜ୍ଞ ପୁରୁଷ ଯେ ହବିର୍ଭାଗ ଭୁଞ୍ଜୁ
ଯାଗ କରି ଆପଣେ ଦେବଙ୍କ ମନରଞ୍ଜୁ ।
ଯାହା ଆଜ୍ଞା ଦେବୁ କରିବୁଁ ସର୍ବ ସିଦ୍ଧି
ତୁମ୍ଭର ଭଣ୍ଡାରେ ଅଛି ସକଳ ଯାଗବିଧି ।
କେବଣ ଯାଗକୁ ମନ କହ ହେ ଗୋସାଇଁ
ରାଜୁସି ଯାଗରେ ତ ପ୍ରୟୋଜନ ନାହିଁ ।
ତାମସ ଗୁଣ ହେବ ହିଂସା ହେବ ତହିଁ
ନରମେଧ ଯାଗ ଯେ କରିବା କାହିଁପାଇଁ ।
ମେଷବଧ ଯାଗ ଆମ୍ଭର ନୁହେ ଯେ ଉଚିତ
ତପୀ ଆଉ ବିପ୍ରମାନଙ୍କର ସେ ମତ ।
ଅଶ୍ୱମେଧ ଯାଗ କର ଜାନକୀ ରମଣ
ଅନ୍ୟ ଯାଗରେ ଆମ୍ଭର ନାହିଁ ପ୍ରୟୋଜନ ।
ଯେବଣ ଯାଗରେ ସର୍ବେ ପ୍ରଶଂସା କରନ୍ତି
ଦେବେ ତୋଷ ହୁଅନ୍ତି ହୋଏ ବହୁ କୀର୍ତ୍ତି ।

ଶୁଣିଣ ରାମଚନ୍ଦ୍ର ବଶିଷ୍ଠଙ୍କୁ ପୁଚ୍ଛି
କେବଣ ଯାଗ କଲେ ଧର୍ମ ତହିଁରେ ଅଛି ।
ଋଷି ବୋଇଲେ ଅଶ୍ୱମେଧ ଯାଗର ଫଳ
ସବୁ ଯାଗଠାରୁ ଅଟଇ ସେ ମୂଳ ।
ସାତ୍ତ୍ୱିକ କର୍ମ ଏଥିରେ କେଭେ କ୍ଷୟେନାହିଁ
ଏହି ଯାଗ ଏବେ କର ରଘୁସାଇଁ ।
ଶ୍ରୀରାମ ବୋଇଲେ ଏ ଯାଗର ବିଧି କହ
ସୁମନ୍ତ୍ର ମନ୍ତ୍ରୀ ତାହା ପାଞ୍ଜିରେ ପୁଣଲିହ ।
ବଶିଷ୍ଠ କହନ୍ତେ ତା ସୁମନ୍ତ୍ର ଲିହନ୍ତି
ଯେ ଯାହା ଭିଆଇବ ସେ ଲୋକ ଡକାନ୍ତି ।
ଲକ୍ଷ୍ମଣଙ୍କୁ ଚାହିଁଣ ବୋଲେ ରଘୁବୀର
ତିନିଭାଇ ରାଜାଙ୍କୁ ବରଣ ବେଗେ କର ।
ବଶିଷ୍ଠଙ୍କୁ ବୋଇଲେ ଋଷିଙ୍କୁ ନିମନ୍ତ୍ର
ସୁମନ୍ତ୍ରଙ୍କୁ ବୋଇଲେ ସକଳ ତିଆରତ ।
ହନୁମନ୍ତଙ୍କୁ ବୋଇଲେ ଲଙ୍କାଗଡ଼ ଯାଅ
ବିଭୀଷଣକୁ କହି ପାଞ୍ଚରାଜାଙ୍କୁ ଅଣାଅ ।
ସୁଷେଣ ବୋଇଲେ ଚଳ ତୁ କିଷ୍କିନ୍ଧ୍ୟା
ସୁଗ୍ରୀବ ଅଙ୍ଗଦଙ୍କୁ ଅଣାଅ କିଷ୍କିନ୍ଧ୍ୟା ।
ଯେଉଁଦିନ ଯା ବେଦ ପତ୍ରରେ ଥିବୁଲିହି
ସେଦିନକୁ ସମସ୍ତଙ୍କୁ ଅଣାଅ ଯାଇ ତୁହି ।
ସିଂହବେଶୀ ପୁରକୁ ଦୂତ ବେଗେ ଯାଉ
ଗୁହ ନାମେ ଶବରକୁ ଏଠାକୁ ଅଣାଉ ।
ମଉଳା କୁଳ ମୋର ଅଛନ୍ତି ଯେତେ ରାୟେ
ଏମାନଙ୍କୁ ଡକାଅ ଦୂତ ଯାଉ ସ୍ନେହେ ।
ସୁମନ୍ତ୍ର ଭଟ୍ଟ ମିଶ୍ର ଆବର ବିପ୍ରଗଣ
ସନ୍ନ୍ୟାସୀ ଦୀକ୍ଷା ଘେନି ଅଛନ୍ତି ଯେତେ ପୁଣ ।
ସେମାନେ ଆସିବାକୁ ଚାର ପେଶ ପୁଣି
ଅନେକ କାଳ ମୁଁ ଅଛଇଁ ଯେ ଶୁଣି ।
ସମ୍ପୂର୍ଣ୍ଣ କରି ପାରଇ ଯେବେ ମୁହିଁ ଯାଗ
ତେବେ ସେ ମୋହର ରହଇ ପୂର୍ବ ଭାଗ୍ୟ ।
ଯାଗଶାଳ ଆରମ୍ଭ କର ଗୋମତୀ ନଦୀତୀରେ
ପବିତ୍ର ସ୍ଥାନ ବୋଲି ବୋଲନ୍ତି ସକଳେ ।
ସୁମନ୍ତ୍ରଙ୍କୁ ଚାହିଁଣ ଯେ ଆଜ୍ଞା ଦେଲେ ସ୍ୱାମୀ
ଲଙ୍ଗଳେ ସୋଧାୟ ଯାଇ ଯାଗଶାଳା ଭୂମି ।
ରତ୍ନମୟେ କରି ଯେ ପୁରେକ ନିର୍ଭାକର
ଯିଶ ଯିଶ ପଦାର୍ଥ ଯେ ଯାଗର ସମ୍ଭାର ।

ଘୃତ, ଚାଉଳ, ମୁଗ, ବିରି, ଯବଧାନ
ବସ୍ତ୍ର, ମଧୁ, ଶାକର ନାନାଦି ଦ୍ରବ୍ୟମାନ ।
ଚେରା ଚାନ୍ଦୁଆ ଯେ ଆୟେ ଅଳଙ୍କାର
ଯାଗ ବିଧି ବେଭାର ସମସ୍ତ ସଜକର ।
ଭାଇମାନଙ୍କୁ ବୋଇଲେ ଚଳ ନିଜପୁର
ପୁତ୍ର ଭାରିଯା ମାତା ଅଣାଅ ଯାଗଶାଳ ।
ଆବର ଲୋକମାନଙ୍କୁ ଅନୁରୂପେ ବାସ
ସୁମନ୍ତ ଏମାନ ଯେ ନିର୍ଭର କରି ରଞ୍ଚ ।
ଏମନ୍ତ ବଚନ ତହୁଁ ବୋଲନ୍ତି ରାମରାହୁ
ବଶିଷ୍ଠ ଶୁଣିଣ ବୋଲନ୍ତି ଆରେ ବାବୁ ।
ଅଶ୍ୱମେଧ ଯାଗର ଅଛି ବିଧିମତ
ଲକ୍ଷଣବନ୍ତ ଘୋଡ଼ା ଫେରାଅ ରାଜ୍ୟରେତ ।
ଯେବେ ତୋତେବଳବନ୍ତ ନୋହିବେକେହିପୁଣ
ତେବେ ଯାଗର ସମ୍ପର୍ବ କରିବୁ ରାମରାଣ ।
ଶୁଣି କରି ଶ୍ରୀରାମଚନ୍ଦ୍ର ଅଶ୍ୱଶାଳାରେ ପଶି
ଏଗାରଗୋଟି ଲକ୍ଷଣବନ୍ତ ଘୋଡ଼ା ବାଛି ।
ରତ୍ନ ମୁକୁଟ ଯେ ବାନ୍ଧିଲେ ତାଙ୍କ ଶିରେ
ମଣ୍ଡଣି କଲେ ତାଙ୍କୁ ରତ୍ନ ଅଳଙ୍କାରେ ।
ବଶିଷ୍ଠଙ୍କ ଛାମୁରେ ନେଇଣ ଛିଡ଼ାକଲେ
ଦେଖି ବଶିଷ୍ଠ ମୁନି ବୋଇଲେ ତାଙ୍କୁଭଲେ ।
ଚାରିହେଁ ଘୋଡ଼ାକୁ ଘେନିଣ ଏକଆଡ଼େ
ଜଣଙ୍କର ଛଡ଼ାରେ ଯିବ ତୁମ୍ଭେ ଗାଡ଼େ ।
ଯେହୁ ଓଗାଳିବ ଯେ ବାଟରେ ତୁମ୍ଭଙ୍କୁ
ଯୁଦ୍ଧକରି ଜିଣିଲେ ହେବ ଯାଗ ବପୁ ।
ଶୁଣି କରି ଶ୍ରୀରାମ ସନ୍ତୋଷ ହୋଇଲେ
ସୁମନ୍ତ ଲକ୍ଷ୍ମଣଙ୍କୁ ଯେ ତିନିଘୋଡ଼ା ଦେଲେ ।
ଏକ ଏକ ଦ୍ୱୟ ଯେ ଚଢ଼ିଣ ଦୁହେଁ ଗଲେ
ଅନେକ ସଇନ୍ୟ ଯେ ସଙ୍ଗରେ ଘେନିଲେ ।
ଗଙ୍ଗାକୂଳରେ ଯାଇଁ ହେଲେ ପରବେଶ
ଏଥୁ ଅନନ୍ତରେ ଯେ ଶୁଣ ଦିବ୍ୟରସ ।
ବାଲମୀକ ମୁନି ଯେ ଜାଣିଲେ ତାହାଭଲେ
ଜାନକୀଙ୍କ ପାଶକୁ ସେ ବହନ ଚଳିଗଲେ ।
ଦେଖିଣ ଜାନକୀ ଯେ ଓଳଗି ମେଲାଇଲେ
ବାଲମୀକ ବୋଇଲେ ଶୁଣ ଗୋ ଦୁଲାଳେ ।
ତୋ କୁମର ଦୁହେଁ ତ ବୁଲନ୍ତି ବନସ୍ତରେ
ଆୟେ ଅଳଙ୍କାର ଯେ ଅଛି ତାଙ୍କଠାରେ ।

ଶୁଣିଣ ଜାନକୀ ଦୁଇ ପୁତ୍ରଙ୍କୁ ଡାକିଲେ
ବନସ୍ତରେ ବୁଲ କିମ୍ପା ବୋଲିଣ ବୋଇଲେ ।
ବନ ବୁଲିବାକୁ ଯେବେ ମନରେ ତୁମ୍ଭର
ଆୟ ଅଳଙ୍କାରରେ କାଢ଼ି ଥୁଅ ଘର ।
ଶୁଣିଣ କୁମରମାନେ ଅଳଙ୍କାର କାଢ଼ି
କିରାତ ରୂପ ଧରିଣ ବନକୁ ଗଲେ ଚଳି ।
ଗଙ୍ଗାକୂଳେ ବନସ୍ତରେ ହେଲେ ପରବେଶ
ଦେଖିଲେ ସେ ବନସ୍ତରେ ଗହଳ ବିଶେଷ ।
ନବକୁଶ ଦୁଇଭାଇ ବିଚାରନ୍ତି ମନ
ଗହଳ ତ ଶୁଭୁଅଛି ଏବନରେ ପୁଣ ।
ଏମନ୍ତ ବିଚାରନ୍ତେ ତିନିଘୋଡ଼ା ଦେଖି
ରତ୍ନରେ ଭୂଷଣ ସେ ଘୋଡ଼ା ହୋଇଛନ୍ତି ।
ଦୁଇଭାଇ ଯାଇଣ ଓଗାଳେ ତିନିଅଶ୍ୱ
ବନଲଟି ଛିଣ୍ଡାଇ ବାନ୍ଧିଲେ ହରଷ ।
ସୁମନ୍ତୀ ବୋଇଲେରେ କିମ୍ପାଇ ଘୋଡ଼ାନିଅ
ତୁମ୍ଭେ କି ଆମ୍ଭ ସଙ୍ଗରେ କରିବ କଳହ ।
ବାଳକେ ବୋଇଲେ ଯେବେ ଅଛ ବଳୀୟାର
ଆମ୍ଭର ସଙ୍ଗରେ ଆସିଣ ଯୁଦ୍ଧକର ।
ଶୁଣିଣ ଲକ୍ଷ୍ମଣ ଯେ ହେଲେ କ୍ରୋଧମନ
କୋଦଣ୍ଡରେ ନେଇଣ ଚଢ଼ାଇଲେ ପୁଣ ।
ଆରେ କିରାତ ବାଳକ ସମ୍ଭାଳ ମୋର ଶର
ଆଜ ଯମଦେବ ପୋଛିବେ ପାଞ୍ଜି ତୁମ୍ଭର ।
ଶୁଣି ଦୁଇଭାଇଣ କୋଦଣ୍ଡ ସଜକଲେ
ଗୁରୁଠାରୁ ଶିଖିଥିଲେ ଯେ ବାଣ ସେ ବିନ୍ଧିଲେ ।
ଯମଆଳ ଆଜରେ ଯିବୁଟି ତୁହିପୁଣ
ଏଜନ୍ମ ତେଜିଣ ତୁ ଲଭିବୁ ଆନଜନ୍ମ ।
ଶୁଣି ଲକ୍ଷ୍ମଣ ଯେ ମନରେ କ୍ରୋଧହେଲା
ଫିରୀକି ନାରାଜ ଯେ ସହସ୍ରେ ଯୋଚିଲା ।
ନବ ବୋଲଇ କୁଶରେ ଶୁଣ ମୋ ବଚନ
ତୋର ଭାଗେ ସୈନ୍ୟ ମୋରଭାଗେ ଏହୁପୁଣ ।
ସହସ୍ରେ ଶର ଯେ ଲକ୍ଷ୍ମଣ ବିନ୍ଧିଥିଲେ
ଏକା ଶରକେ ନବ ଛେଦି ପକାଇଲେ ।
ସୈନ୍ୟମାନେ ମାଇଲେ ଗଦା ଯେ ମୁଦ୍‌ଗର
ବାବଲ ଶରରେ ଯେ ଛେଦିଲେ କୁଶବୀର ।
ଛେଲଚକ୍ରନ୍ତେ ଯେ ମାରନ୍ତି ସୈନ୍ୟଘେରି
ଅନୁଜ ବାଣେ ତାକୁ କୁଶ ଯେ ନିବାରି ।

ଶତେପୁର କରି ସୈନ୍ୟ ବେଢ଼ିଲେ ଦୁଇଭାଇ
ମଧ୍ୟେ ବିକ୍ରମସିଂହ ପ୍ରାୟେଁ ଦିଶନ୍ତି ରହି ।
ଲକ୍ଷ୍ମଣର ଶର ଛେଦଇ ନବପୁଣ
କ୍ଷଣକରେ ଲକ୍ଷେଶର ବିନ୍ଧଇ ଲକ୍ଷ୍ମଣ ।
ଛଡ଼ଗୋଟି ରଥୀ ଯେ ପଦାତି ବଳପୁଣ
କୁମରଙ୍କ ସଙ୍ଗେ ଏହୁ କରନ୍ତି ଘୋର ରଣ ।
କଟାଳ ଦେଖିଣ କୁଶ ମୋହଶର ମାରି
ଛଡ଼ଗୋଟି ରଥୀ ସେନାପତି ପଡ଼ିଲେ ଢ଼ଳି ।
ପାଞ୍ଚସାତ ଉବୁରି ପଳାଇ ସେ ଗଲେ
ଲକ୍ଷ୍ମଣ ସଙ୍ଗେ ନବ ଯୁଝେ ନବରଙ୍ଗରେ ।
ବ୍ରହ୍ମଶର, ବଜ୍ରଶର, ବାବଲଶର ପୁଣ
କୁହୁକ ପବନା ଯେ ବାରୁଣା ଶର ପୁଣ ।
ଅନେକ ଶର ପୁଣ ମାରଇ ଲକ୍ଷ୍ମଣ
ଦେଖିଣ ଛେଦିଲେ ତାହା ଜାନକୀ ନନ୍ଦନ ।
ଯମୁନାଶର ମୋହଶର ଗୁଣରେ ବସାଇଲା
ସମ୍ଭାଳରେ ରାଉତ ବୋଲିଣ ଛାଡ଼ିଦେଲା ।
ବାଜନ୍ତେ ଲକ୍ଷ୍ମଣ ଯେ ଘୋଡ଼ାରୁ ଟଳିପଡ଼ି
ଦେଖିକରି ସୁମନ୍ତ୍ର ଯେ ପଳାଇଲା ଛାଡ଼ି ।
ଶ୍ରୀରାମ ଆଗରେ ଯାଇଁ ବାରତା କହିଲା
ଲକ୍ଷ୍ମଣ ଭାଇ ତୋର ରଣରେ ପଡ଼ିଲା ।
ଏଗାର ବାର ବରଷ ଦୁଇ ଯେ କୁମର
ତିନି ଅଶ୍ୱମେଧ ଘୋଡ଼ା ବାନ୍ଧିଲେ ତୋହର ।
କହିଲାରୁ ଗୋଳକରି ମାଇଲେ ଭାଇ ତୋର
ଶୁଣିଣ ରଘୁନାଥ ହୋଇଲେ କାତର ।
ବୋଇଲେ ଯେଉଁ ଭାଇକି ଦିଗପାଳେ ଡରି
ବାଳକ ଦୁଇଗୋଟି ତାହାକୁ ବଧକରି ।
ଛଡ଼ଗୋଟି ରଥୀ ସୈନ୍ୟବଳ ମାରି
ମୋତେ ଏ ରାଜ୍ୟରେ କିଏ ଅଛି ବଳି ।
କ୍ରୋଧରେ ଜରଜର ଶ୍ରୀରାମର କାୟେ
ଭରତକୁ ବୋଇଲେ ଚଳ ନ କରି ସଦୟେ ।
ସେ ଦୁଇ ବାଳକଙ୍କର ଶିର କାଟିଆଣ
ନୋହିଲେ ସେ ଦୁହିଁଙ୍କି ବନ୍ଧନ କରପୁଣ ।
ଶୁଣିକରି ଭରତ ବେଗେ ସଜହେଲା
କଣୟର ରଥଧ୍ୱଜ ଉପରେ ବସିଲା ।
ଛଡ଼ଗୋଟି ରଥୀ ଯେ ପଦାତି ଅପ୍ରମିତ
ଅନେକ ସମ୍ଭର୍ବରେ ଚଳଇ ଭରତ ।

ବାଦ୍ୟର ନିଶାଣରେ ପୁରେ ମେଦିନୀ ଜାଣ
ସୁମନ୍ତ୍ର ମନ୍ତ୍ରୀ ଯେ ସଙ୍ଗରେ ଅଛି ପୁଣ ।
ମୁକୁଟ ବନ୍ଧା ଘୋଡ଼ା ତିନିଗୋଟି ଆଗେ
ଗଙ୍ଗାକୂଳେ ପ୍ରବେଶ ହେଲେ ମନୁ ବେଗେ ।
ସୁମନ୍ତ୍ର ମନ୍ତ୍ରୀ ନେଇ ଦେଖାଇଣ ଦେଲା
ଏହିଦୁଇ ବାଳକେ ତୁମ୍ଭ ଭାଇଙ୍କି ମାରେପରା ।
ଦେଖିଣ ନବକୁଶ କୋଦଣ୍ଡ ଧରିଛିଡ଼ା
ତିନି ଘୋଡ଼ାଙ୍କୁ ବାନ୍ଧିଲେ ନମାନି ଅମଡ଼ା ।
ବୋଇଲେ ଭାଇଛଳେ ଅଇଲୁ କିରେ ତୁହି
ପଡ଼ିଛି ତଳରେ ଦେଖକିନା ରେ ତୁହି ।
ସେ ରାଉତ ପୁଅ ଦିଶୁଣ ଥିଲାଗୋରା
ତୁହିତ ନୀଳବର୍ଣ୍ଣ ତା ଭାଇ ନୋହୁପରା ।
ବାପ ଏକ ବର୍ଣ୍ଣରେ କାୟା ତୁମ୍ଭର ଭିନ୍ନ
ଦେଖିବା କର ରଣ କେ ଜିଣିବ ପୁଣ ।
ଶୁଣିକରି ଭରତ କ୍ରୋଧଭର ହେଲେ
ମାରରେ ବୋଲି ସୈନ୍ୟମାନଙ୍କୁ ଆଜ୍ଞାଦେଲେ ।
ଶୁଣିଣ ସକଳ ସୈନ୍ୟ ବେଢ଼ିଲେ ଚଉପାଶ
ସିନ୍ଧୁ ମଧରେ ଯେହ୍ନେ ବାଲିବନ୍ଧ ଦୃଶ୍ୟ ।
ତେସନେକ ପ୍ରାୟେ ଯେ ଦୁଇଭାଇ ଦିଶି
ସୈନ୍ୟବଳ ସମସ୍ତ ମାଇଲେ ଆକର୍ଷି ।
ଦେଖିଣ ନବକୁଶ ଯେ କୋଦଣ୍ଡ ଧରିଛହିଁ
କୁଶ ବୋଇଲା ଏ ରାଉତ ମୋରଭାଗ ହୋଇ ।
ଶୁଣିକରି ନବ ଗୁଣ ଟଙ୍କାର କଲେ
ହାବୋଡ଼ା ମୋହଶର ଗୁଣରେ ବସାଇଲେ ।
ମନ୍ତ୍ରକୁ ପଢ଼ିଣ ଯେ ଓଟାରି ଛାଡ଼ିଦେଲା
ଏକାଶରେ ରଥୀ ପଦାତି ମୋହକଲା ।
ଦେଖିଣ କୁଶ ସଙ୍ଗେ ଭରତ କଲେ ରଣ
ନବ ବୋଲେ ଏକାଜଣକୁ ନ ପାରୁ କେଉଁଗୁଣ ।
କୁଶ ବୋଇଲେ ଏ ବଳରେ ଯୋଦ୍ଧା ବଡ଼
ବଜ୍ର ବାଟୁଳି ଯେ ମାରଇ କରି ଖର ।
ଏକା କାଣ୍ଡକେ ଭାଇରେ କରିବି ଆଜ ନାଶ
ବୁଝିଥିଲି ଏହାର କେଡ଼େକ ସାହସ ।
ଗଙ୍ଗା ଦେଇଥିଲେ ଯେଉଁ ମୋହ ଶର
ଓଟାରି ବିନ୍ଧିଲା କୁଶ ବସାଇ ଗୁଣର ।
ଭରତ ଉପରେ ପଡ଼ନ୍ତେ ମୋହଗଲା
ରଥର ଉପରେ ବୀର ଢ଼ଳିଣ ପଡ଼ିଲା ।

ରଥର ତଳେ ଖସି ପଡ଼ିଲେକ ଯାଇ
ସୁମନ୍ତ ପଳାଇଲା ଏକମୁଖ ହୋଇ ।
ଶ୍ରୀରାମ ଆଗରେ ଯାଇଁଣ କହିଲା
ଚତୁରଙ୍ଗ ବଳ ତୋରଭାଇ ମଲେ ପରା ।
ବେନିଗୋଟି ବାଳକେ କଲେ ରଣ ଘୋର
ତିନିପୁରେ ସରି ତାଙ୍କୁ ନୋହିବେ ସୁରନର ।
ଶୁଣିକରି ରାମ ଶୋକ ବହୁତ କଲେ
କିମ୍ପା ଅଶ୍ୱମେଧ ଯଜ୍ଞ ଆରମ୍ଭକଲି ଭଲେ ।
ଭାଇମାନେ ମଲେଯାଗ ନିଷ୍ଫଳ ହୋଇଲା
ଏ ଯଶ ଗୋଟି ମୋର କାହିଁରେ ନୋହିଲା ।
ବଶିଷ୍ଟ ବୋଇଲେ ନୁହସି ଆରତ
ଜନମ ହୋଇଲେ ମୃତ୍ୟୁ ହୁଅଇ ଅବଶ୍ୟତ ।
କ୍ଷତ୍ରୀର ପୁତ୍ରସିନା ରଣକରି ମରେ
ଏଥିପାଇଁ ଶୋଚନା ନକର ରଘୁବୀରେ ।
ଏହାଶୁଣି ଶ୍ରୀରାମ ଯେ ହେଲେ କୋପାନଳ
ସାରଙ୍ଗ ଧନୁ ତୋଳି ଧଇଲେ ହସ୍ତର ।
ହନୁମନ୍ତ ସୁଷେଣ ସଙ୍ଗେ ଘେନିଚଳି
ପୁଷ୍ପକ ବିମାନରେ ବସିଲେ ରାବଣାରି ।
ଶତ୍ରୁଘନ ବୋଇଲେ ବସରେ ବେଗେରଥ
ସୁମନ୍ତକୁ ବୋଇଲେ କଢ଼ାଅ ବେଗେପଥ ।
ସୈନ୍ୟବଳଙ୍କୁ ବୋଇଲେ ଚଳରେ ବହନ
ଋରିଘୋଡ଼ାଙ୍କୁ ଆଗେ ଚଳାଇଲେ ପୁଣ ।
ଜିଣିଲେ ଅଶ୍ୱମେଧ ଯାଗ ମୋର ହୋଇ
ହାରିଲେ ସେ ବାଳକେ ମୋର ଧର୍ମ ନେଇ ।
ଉଠିଲେ ଚତୁରାଙ୍ଗ ବଳ ହୋଇସଜ
ବାଦ୍ୟର ନିଶାଣରେ ଜଗତ ଆଶ୍ଚର୍ଯ୍ୟ ।
ସଜହୋଇ ସମସ୍ତେ ହେଲେ ଯେ ବାହାର
ଗଙ୍ଗାକୂଳେ ପ୍ରବେଶ ହେଲେ ଶ୍ରୀରାମବଳ ।
ସୁମନ୍ତ ଯେ ଆଗରେ ଘୋଡ଼ାଙ୍କୁ ନେଉଥିଲା
ବେନି ବାଳକଙ୍କୁ ସେ ଆଗରେ ଦେଖିଲା ।
ବୋଇଲେ ଶ୍ରୀରାମହେ ଏହି ଦୁଇବାଳ
ଏ ଦୁଇଭାଇ ମାଇଲେ ତୋର ସୈନ୍ୟବଳ ।
ଦେଖିକରି ଶ୍ରୀରାମ ହୋଇଲେ କାତର
ଭରତ ଲକ୍ଷ୍ମଣଙ୍କୁ ଦେଖିଲେ ଆଗର ।
ତଳରେ ଦୁଇଭାଇ ଶୋଇଛନ୍ତି ପୁଣ
ଧନୁଶର ମାନ ଯେ ପଡ଼ିଛି ଅଲଗେଣ ।
ସକଳ ସୈନ୍ୟଙ୍କୁ ଯେ ଋହିଁଲେ ଋପଧାରୀ
ପଡ଼ିଛନ୍ତି ସକଳେ ଭୂମିକି ଶଯ୍ୟାକରି ।
ମୁକୁଟ ବନ୍ଧା ଘୋଡ଼ା ଯେ ଛଡ଼ଗୋଟି ପୁଣ
ସେ ଛଡ଼ ଘୋଡ଼ାଙ୍କ ପଛେ ବନ୍ଧା ସର୍ବଜାଣ ।
ଦେଖିକରି ରାମ କ୍ରୋଧରେ ଜର୍ଜର
ଏ ଛାର କୁମରେ କଲେ ଏତେଦୂର ।
ଛାର ବୋଲିବାରୁ ସେ ନବକୁଶ ଦୁଇ
ଧନୁଶର ଧରି ଆଗରେ ଉଭାହୋଇ ।
ବୋଇଲେ ତୁ କେତେ ଅଟୁରେ ପାରିବାର
ଆମ୍ଭଙ୍କୁ ବୋଇଲୁ ଛାର ବେନିବାଳ ।
କେତେ ବଳୀୟାରରେ ଅଟୁ ତୁହି ବୀର
ସୁରନର କିନ୍ନର ଦଶଦିଗପାଳ ।
ଏମାନଙ୍କୁ ଘେନି କରିବୁ ଯେବେ ରଣ
ଲେଉଟି କି ଯାଇ ହେ ଦେଖିବୁ ଜନ୍ମସ୍ଥାନ ।
ଏ ଦୁଇଜଣ ବୀର ତୋର ଅଟନ୍ତି କିସ
ଏତେ ସୈନ୍ୟବଳରେ କାର ଗଲେ ନାଶ ।
ରାମବୋଲେ ମୁଁ ଅଟେ ରାଜାଧୀରାଜେଶ୍ୱର
ଏ ଯେଉଁ ଦୁଇଜଣ ଅଟନ୍ତି ଭାଇ ମୋର ।
ଏଗାର ଅଶ୍ୱମେଧ ଯାଗରେ ମୋର ଇଚ୍ଛା
ଲକ୍ଷଣବନ୍ତ ଅଶ୍ୱ ପେଶିଲେ ମୋର ଦୀକ୍ଷା ।
ନବ ବୋଇଲା ତୁରେ ଅଟୁ ଯେ ଅଜ୍ଞାନ
କେତେଠାରେ ତୁହିରେ ଜିଣିଅଛୁ ପୁଣ ।
ରାମ ବୋଇଲେ ମୁଁ ଯେ ଜିଣିଲି ତିନିପୁର
ସମସ୍ତଙ୍କୁ ସାଧିଲି ଶୁଣରେ ଦୁଇବାଳ ।
ନବକୁଶ ବୋଇଲେ ରାଜ୍ୟ କେମନ୍ତେ ପାଳୁ
ମାତାପିତା ଭାରିଜାଙ୍କୁ କେମନ୍ତେ ପ୍ରତିପାଳୁ ।
ପରବୋଲେ କରୁକିରେ ଆପଣା ବୋଲେ ଥାଉ
ଶ୍ରୀରାମ ବୋଲନ୍ତି ସକଳ ଗୁଣେ ପ୍ରଭୁ ।
ପୁତ୍ରର ସମାନେ ପରଜା ପାଳେ ପୁଣି
ମାତାମାନଙ୍କୁ ପାଳେ ଉତ୍ତମ ସୁଖ ଜାଣି ।
ମୋହର ରାଜ୍ୟରେ ନ ଲାଗଇ କଳି
ପରର ଭାଷା ମୋତେ ଲାଗେ ଖଳପରି ।
ଦଶଗ୍ରୀବ ନାମରେ ରାଜା ଏକ ଥିଲା
ପିତା ସତ୍ୟ ପାଳି ମୁଁ ବନକୁ ଗଲିପରା ।
ମୁହିଁ ମୃଗ ମାରିଯାନ୍ତେ ଘରଣୀ ହରିନେଲା
ସମୁଦ୍ର ଭିତରେ ଲଙ୍କାଗଡ଼ରେ ଲୁଚାଇଲା ।

ସେ ଖବର ପାଇ ମୁଁ ତାକୁ ନାଶକଲି
ଦଶଦିଗପାଳେ ଥିଲେ ଅଗ୍ନିପରୀକ୍ଷା ଦେଲାନାରୀ ।
ସେଠାରୁ ଜାନକୀ ଘେନି ଅନେକ ଭୋଗକଲି
ନୀଚଲୋକଙ୍କର ବୋଲେ ତାକୁ ମୁଁ ତେଜ୍ୟାକଲି ।
ଗର୍ଭବନ୍ତ ନାରୀକି ମୁଁ ପେଶିଲି ଘୋରବନେ
ଶୁଣିଣ ଦୁଇପୁତ୍ର କହନ୍ତି ତୋଷମନେ ।
ଏକାତୋର ଆଗେ କି ଅଗ୍ନିରେ ପଶେନାରୀ
ଏକାରେ ରାବଣକୁ ତୁହି ଯାଇକି ମାରି ।
ଶୁଣିକରି ରାମଚନ୍ଦ୍ର ବୋଲନ୍ତିରେ ଶୁଣ
ନଉସାଗର ବାନର ଭାଲୁ ନେଲି ପୁଣ ।
ଯୁଦ୍ଧକରି ଦଶାନନ ମାଇଲି ଲଙ୍କାଗଡ଼େ
ଲକ୍ଷେରାଜା ତିନିଭାଇ ଗଲେ ଯେ ସେଠାରେ ।
ତ୍ରୀଦଶ ଦେବତା ଯେ ସ୍ୱର୍ଗରୁ ଅଇଲେ
ବ୍ରହ୍ମାରୁଦ୍ର ନାଗବଳା ସେଠାରେ ମିଳିଲେ ।
ଏମାନଙ୍କ ଆଗେ ସତୀ ଅଗ୍ନିରେ ପଶିଲା
ଅଗ୍ନିରୁ ବାହାରି ମୋର ସଙ୍ଗରେ ଅଇଲା ।
ତାକୁ ଦୁର୍ବାଦ ଦେଲେ ଅଯୋଧା ନରନାରୀ
ସେ ଭାଷା ଶୁଣି ତାକୁ କଲି ବନଚରୀ ।
ଦୁଇପୁତ୍ରେ ବୋଇଲେ ହେ ଅନ୍ୟାୟ ଯେ କଲ
ସ୍ୱର୍ଗର ଦେବତାଙ୍କ ବୋଲ ନ ମାନିଲ ।
ତଳପୁର ନାଗର ବୋଲ ତୁ କଲୁହୀନ
ପିତୃଲୋକଙ୍କ ବଚନ ନ ମାନିଲୁ ପୁଣ ।
ରାଜାମାନେ ତୋରଜାତି ନ କଲୁ ତାଙ୍କବୋଲ
ବାନର ଭାଲୁଙ୍କୁ ମେଳ ଆଗରେ ଭାଙ୍ଗିଲ ।
ଦେବତାଙ୍କ ବୋଲରେ ଯେ ବାସୁଦେବ ଥାଇ
ସେ ଯାହା କହନ୍ତି ସେ କଥା କରଇ ।
ସତ୍ୟରେ ଦେଖୁଛୁତ ହେଉଛି ଦିବସ
ଅନ୍ଧାର ରଜନୀକି ଯେ ଚନ୍ଦ୍ରକରେ ଦୃଶ୍ୟ ।
ବେଦବର ଯେତେବେଳେ ସୃଷ୍ଟିକି ସର୍ଜିଲେ
ବିପ୍ର ତପୀଙ୍କର ହସ୍ତେ ବେଦଶାସ୍ତ୍ର ଦେଲେ ।
ସେହି ବେଦ ପଢ଼ି ତପୀ ବିପ୍ରେ ହୋମକଲେ
ସକଳ ଦେବତାଙ୍କୁ ଆହାର ସେ ଦେଲେ ।
ପିତାମାତା ପୁତ୍ରଙ୍କୁ ଜନମ କରନ୍ତି
ପିତୃହୋଇ ପିଣ୍ଡ ସେ ତାର ହସ୍ତୁଁ ନ୍ୟନ୍ତି ।
ସତ୍ୟରେ ନାଗଦେବତା ଧରଣୀ ଶିରେ ବହି
ଛାଡ଼ିଲେ ରସାତଳେ ପଡ଼ିବ ଯାଇମହୀ ।

ରାଜାମାନେ ପରଜା ପାଳନ୍ତି ନାନାଦେଶ
ଦୁଷ୍ଟଶାନ୍ତି ସମସ୍ତଙ୍କୁ ରଖନ୍ତି କରିତ୍ରାସ ।
ବାନରଯେ ତୋର ବୋଲେ ସିନ୍ଧୁ ପାରିହେଲେ
ଅସୁର ମାରିଣ ତୋତେ ଘରଣୀ ଆଣିଦେଲେ ।
ତାଙ୍କର କଥାମାନ ଯେ ନିଷ୍ଫଳକୁ ଗଲା
ଏତେ ଲୋକଙ୍କର ବୋଲ ତୁ ଭାଙ୍ଗୁପରା ।
ବିଟପୀ ନରନାରୀଙ୍କ ବଚନ ତୁ ଯେ କଲୁ
ଏବେ ଅଶ୍ୱମେଧ ତୁ କରିବୁ ବିଚାରିଲୁ ।
ବଡର ବୋଲ ଯେବେ ଭାଙ୍ଗିଦିଏ ସାନ
ସେମାନେ କେମନ୍ତେରେ ପ୍ରସନ୍ନ ହୋନ୍ତେପୁଣ ।
ଦେବତା ଋଷିବିପ୍ର ପିତୃରାଜା ପୁଣ
ଏମାନେ ତୋର ହବି ନକରେ ଗ୍ରହଣ ।
ସୁଖରେ ନ କହିବେ ନ ଭକ୍ଷିବେ କେହୁ
ସେମାନଙ୍କ ଶତୃ ତୁ ହେଲୁରେ କହୁଁ କହୁଁ ।
ଅଧକୁ ତୋର ଦେହେ ରହିଲାକ ଘୋଟି
ଧର୍ମଛାଡ଼ି ଗଲାରେ କନ୍ଧରୁ ତୋହରଟି ।
ବଳବପୁ କ୍ଷୀନ୍ନହେଲା ଧର୍ମ ଗଲାଦିନୁ
ବାଳକଙ୍କ ହସ୍ତରେ ତୋ ପ୍ରାଣ ଯିବ ଏଣୁ ।
ଆଗେବଡ ହୋଇଥିଲୁ ଏବେତ ହେଲୁ ସାନ
ଯେଉଁମାନେ ଏ ବୁଦ୍ଧି ତୋତେରେ ଦେଲେପୁଣ ।
ସେମାନେ ତୋତେ ଯେବେ ଜୀଆଇ ଏଥୁନେବେ
ଜାଣିବା ତୋରଧର୍ମ ଅଛଇଁରେ ତେବେ ।
ନରନାରୀ ବୋଲି ଯେଉଁ କଥା ତୁ କହୁ ବଢି
ଖାଇଲେ ସମସ୍ତେଭଲ ନ ଖାଇଲେନିନ୍ଦା କରି ।
ଦେଖିଲୁ ଘରଣୀ ତୋର ଅଗ୍ନିରେ ଝାସଦେଲା
ତିନିପୁର ଚଉଦ ଭୁବନ ମଧ୍ୟେ ପରା ।
କହିବ ନରନାରୀଙ୍କ ସଙ୍କେତ ନେଇଥାନ୍ତୁ
ଅଗ୍ନିରେ ପୁରାଇ ତାକୁ ସଙ୍କେତ କରାନ୍ତୁ ।
ଗର୍ଭହେଲା ସ୍ତିରୀକିରେ ରଖିଥାନ୍ତୁ ପୁଣ
ଗର୍ଭପ୍ରସବ ସରିଲେ ପେଶିଥାନ୍ତୁ ବନ ।
ତେବେ ତୋରଧର୍ମବଳ ଉଦେ ହୋଇଥାନ୍ତା
ଅବିଚାରେ ନ୍ୟସ୍ତହେଲୁ ଶୁଣ ରାଜାପୁତା ।
ଏବେଂତୋର ଜୀବନରେ ଅଟେ ଅସାର୍ଥକ
ସ୍ତିରୀ ବାଳକ ହତ୍ୟା କଲୁରେ ସାକ୍ଷାତ ।
ନରବାନର ଦେବତା ତପୀ ଯେ ଅସୁର
ଦଶଦିଗପାଳ ବ୍ରହ୍ମ ,ବିଷ୍ଣୁ ଯେ ଶଙ୍କର ।

ନୃପତି ପିତୃଲୋକ ଧରଣୀଧର ନାଗ
ଏମାନଙ୍କୁ ନ ମାନିଲେ ଯିବୁ କେଉଁବାଗ ।
ନିଶ୍ଚୟେ ଯମକୁ ତୁ କରିବୁ ଦରଶନ
ଆତ୍ମହସ୍ତେ ତୁହିରେ ପାଇବୁ ମରଣ ।
ଏତେବୋଲି ନବ କୁଶକୁ କହେ ବାଣୀ
ଆଉ ଘରିଟା ଘୋଡ଼ା ବାନ୍ଧ ନଇରେ ପୁଣି ।
ଘରିଘୋଡ଼ା ବାନ୍ଧିବାରୁ ରାମ କୋପାନଳ
ରେରେ ବାଳକ ବୋଲି ବିନ୍ଧିଲେକ ଶର ।
ଏହାଶୁଣି ନବ ଯେ କୁଶକୁ କହେ ବାଣୀ
କେଉଁ ଭାଗ ତୋରରେ ଆଗରେ ନିଅପୁଣି ।
କୁଶ ବୋଇଲା ମୋର ଭାଗରେ ସୈନ୍ୟବଳ
ତୋରଭାଗେ ଦୁଇରଥୀ ହୋଇଲା ନିକର ।
ନବ ବୋଇଲା ତୁରେ ଧର ଧନୁଶର
କେମନ୍ତେ ରଖିବେ ତାଙ୍କୁ ନର ନାଗ ସୁର ।
ଜିଣିଲେ ଯାଇ ଯାଗ କରିବୁରେ ତୁହି
ମଲେ ସର୍ବ ଫଳ ତୋହର ଆମ୍ଭେନେଇ ।
ଶୁଣିକରି ଶ୍ରୀରାମ ମନରେ ବିଚାରିଲେ
ନିଶ୍ଚୟେ ଆଜ ମୃତ୍ୟୁ ହୋଇବ ବୋଇଲେ ।
ଏଗାର ବାରବରଷ ପୋଏ ଯେ ବଳିଲେ
ଅଯୋଗ୍ୟ ତଳରେ ମୋତେ ଏ ସରି କଲେ ।
ହାରିବା ଜିଣିବା ଯେ କ୍ଷତ୍ରୀଙ୍କ ବ୍ୟବହାର
ଆଗ ପଛରେ ମୋର ମରଣ ନିକର ।
ଦୁଇଭାଇ ମୋର ମଲେ ମୁଁ କି କରିବି ଏକା
ଏତେ କହି ଧନୁଶର ଧଇଲେ ରଣରଙ୍କା ।
କୋଟିଏ ଶର ଯେ ଗୁଣରେ ବସାଇ
ମାଇଲେ ଶ୍ରୀରାମ ଯେ କ୍ରୋଧଭର ହୋଇ ।
ଗୋଟିଏ ଶରରେ ତା ନବ ନିବାରିଲା
ଶତୃଘନ ପାଞ୍ଚକୋଟି ଶର ନିବେଶିଲା ।
ଏକା ବାଣକରେ ନବ ପକାଇଲା ହାଣି
ଦେଖି ଦୁଇଭାଇ ବ୍ରହ୍ମଶର କଲେ ପୁଣି ।
ନାରାୟଣୀ ଶରରେ ନବ ତା ନିବାରି
ବଜ୍ରଶର ଗୋଟିଏ ବିନ୍ଧିଲେ କୋପ କରି ।
ପବନା ଶରେ ତାହା ନବ ନିବାରିଲା
ବଜ୍ରଶୁଚୀ ଚଡକ ଶତୃଘନ ଯେ ମାଇଲା ।
ବଜ୍ରଶରରେ ତାହା ନବ ନିବାରଇ
କାଣ୍ଡର ରଡ଼ି ଘାତରେ ଜଗତ ପୁରଇ ।

ବାମଦେବ ବୋଲନ୍ତି ଶୁଭେ ଘୋରରଡ଼ି
ଶ୍ରୀରାମଙ୍କ ସଙ୍ଗରେ କିଏ ଯୁଦ୍ଧ କରି ।
ବଶିଷ୍ଠ ବୋଲନ୍ତି ପିତା ପୁତ୍ରଙ୍କର ରଣ
ହାରିବେ ଶ୍ରୀରାମଚନ୍ଦ୍ର ଜିଣିବେ ପୁତ୍ର ପୁଣ ।
ଏମନ୍ତ ବିଚାର ଯେ କରନ୍ତି ଦୁଇଜଣ
କାଣ୍ଡର ଗର୍ଜନ ଶୁଭଇ ବଡ଼ ଟାଣ ।
ବାମଦେବ ବୋଇଲେ ସୀତା କେଉଁଠାରେ ଅଛି
ବଶିଷ୍ଠ ବୋଇଲେ ବାଲମୀକ ମଠରେଟି ।
ବାମଦେବ ବୋଲେ ପୁତ୍ରେ କେତେ ଯେ ବୟସ
ବଶିଷ୍ଠ ବୋଇଲେ ତାଙ୍କୁ ବାର ଯେ ବରଷ ।
ବାମଦେବ ବୋଇଲେ ପାଇଲେ ଶର କାହୁଁ
ବଶିଷ୍ଠ ବୋଇଲେ ଦେବେ ଦୟାକଲେ ଯହୁଁ ।
ଋଷିମାନେ ମନ୍ତ୍ର ଦେଲେ ଦେବେ ଦେଲେ ଶର
ବ୍ରହ୍ମା ରୁଦ୍ର ଦିଗପାଳେ ତାଙ୍କୁ ଦେଲେ ବର ।
ଆଜ ସେ ପିତା ପୁତ୍ରେ ହେବେ ଚିହ୍ନାଚିହ୍ନି
ଅଯୋଧ୍ୟାକୁ ଜାନକୀ ଆସିବେ ରାମ ଘେନି ।
ଏମନ୍ତ ବୋଲି ବଶିଷ୍ଠ କହିଲେକ ପୁଣ
ନବ କୁଶ ରାମଙ୍କର ହେଲା ଘୋର ରଣ ।
ଶତେ ପୁର କରି ଯେ ବେଢ଼ିଲେ ସୈନ୍ୟବଳ
ମାରନ୍ତି ଶକତି ଫିଙ୍ଗନ୍ତି ମୁଦୁଗର ।
ସମସ୍ତଙ୍କର ଶର ଯେ ଛେଦଇ କୁଶ ରହି
ବେଳକୁ ବେଳ ସମର ଅତି ଘୋର ହୋଇ ।
କୁହୁଡ଼ି ପରାୟ ଯେ ବରଷିଲେ ଶର
ସ୍ୱର୍ଗ ମର୍ତ୍ତ୍ୟ ଅନ୍ଧାର କରିଲେ ତିନିପୁର ।
ସେ ଶରମାନ ଛେଦେ ଏକାରେ ପୁଣି କୁଶ
କାଣ୍ଡର ରଡ଼ିରେ ପୁରେ ଦଶଦିଶ ।
ବାଲମୀକ ମଢ଼ିଆକୁ ଅଟେ କୋଶେଛଡ଼ା
ଘଡ଼ଘଡ଼ି ରଡ଼ି ଜାନକୀ କର୍ଣ୍ଣକୁ ଶୁଭିଲା ।
ବୋଇଲେ ମନୁମାୟା ଗୋ ବିଚିତ୍ର କଥା ଆଜ
ଯୁଦ୍ଧ ହେଲା ପରାୟେତ ଶୁଭୁଛି ଶବଦ ।
ଅସୁର କି ଏ ବନରେ ପ୍ରବେଶ ହୋଇଲେ
ପାରିଧିକି ଆସି ରାଜାମାନେ ଭେଟହେଲେ ।
ଅଦଭୁତେ କାଣ୍ଡରଡ଼ି ଯେ ଶୁଭୁଅଛି ପୁଣ
କେଣେ ଗଲେ ମୋର ଯେ ବାଳୁତ ନନ୍ଦନ
କହି ଝରି ଜାନକୀ ଉଠିଲେକ ବେଗ
ପିତାଙ୍କର ଛାମୁରେ ମିଳିଲେ ଦୁଃଖଭାଗ ।

ଓଲଗି ମେଲାଇ ଶୋଇଲେ ପାଦତଳେ
ଦେଖିକରି ଋଷି ବୋଲନ୍ତି ସୀତାରେ ।
ଆଜ କିମ୍ପା କାତର ଦିଶୁଅଛି ମାଯେ
ଜାନକୀ ବୋଲନ୍ତି ପିତା ମୋ ମନଦୁଃଖ ହୋଏ ।
ତୁମ୍ଭର ଦୁଇନାତି ପ୍ରଭାତରୁ ଗଲେ
ଦୁଇ ପ୍ରହର ବେଳ ହେଲା କିମ୍ପାଇ ନ ଆସିଲେ ।
ଅରଣ୍ୟରେ କାଣ୍ଡରଡି ଶୁଭୁଛି ରଣଗୋଳ
ସେକଥା ଶୁଣି ମୋତେ ଭୟ ଯେ ଅପାର ।
ବାଲମୀକ ବୋଇଲେ ତୁ ନ ବିଚର କିଛି
ତୋ ପୁତ୍ରଙ୍କୁ ଜିଣିବାକୁ କେ ସାମର୍ଥ ଅଛି ।
ଦେବତା ନାଗବଳ ନର ଯେ ବାନର
ଅସୁରେ ଯୁଦ୍ଧକଲେ ମରିବେ ନିକର ।
ଜାନକୀ ବୋଇଲେ ମୋ ଚୂଡ଼ୀ ମଳିଣ ଦିଶେପୁଣି
କେଉଁ ବନ ଯାଇଛନ୍ତି ଆସିବେ ଏହିକ୍ଷଣି ।
ଋଷି ବୋଲନ୍ତି ତୁ କିଛି ନ ବିଚର
ତିନି ପ୍ରହରକୁ ତୋର ଆସିବେ କୁମର ।
ଶୁଣିକରି ଜାନକୀ ନିଜ ସ୍ଥାନେ ଗଲା
ପାର୍ବତୀ ବୋଇଲେ ରାମ ଯୁଦ୍ଧରେ କିସକଲା ।
ଈଶ୍ୱର ବୋଇଲେ ସେ ପୁତ୍ରଙ୍କ ସଙ୍ଗେ ରଣ
ସୈନ୍ୟବଳ ଯୁଝନ୍ତି କୁଶର ସଙ୍ଗେଣ ।
ଯୁଦ୍ଧ ଦେଖି କୁଶ ଯେ ମନଭେଦି କାଢ଼ି
ଯେଉଁ ଶର ପବନ ଦେଲେ ଆଣିକରି ।
ସେ ଶର ପଢ଼ି କରି ଗୁଣରେ ବସାଇଲେ
ଭିଡ଼ି ଛାଡ଼ିଦ୍ୟନ୍ତେ ସେ ଅନେକ ରୂପ ହେଲେ ।
ବାଜନ୍ତେ ସକଳ ସୈନ୍ୟ ଯେ ମୋହଗଲେ
ଧନୁଶର ଛାଡ଼ିଣ ସକଳେ ଶୋଇଲେ ।
ମାହୁନ୍ତମାନେ ଯେ ହସ୍ତୀ ପରେ ଶୋଇ
ହସ୍ତୀମାନେ ଭୂମିରେ ପଡ଼ନ୍ତି ଘୁମାଇ ।
ଘୋଡାମାନେ ଶୋଇଲେ ସିପାହୀଙ୍କି ଘେନି
ରଥୀମାନେ ରଥରେ ଶୋଇଲେକ ପୁଣି ।
ଭାଗିଲା ଗହଳ ଯେ ରହିଲେ ଚରିଜଣ
ଦେଖିଣ ଶ୍ରୀରାମ ଯେ ବିନ୍ଧେ ତୀକ୍ଷଣ ବାଣ ।
ଶତୃଘନ ବିନ୍ଧଇ କୋଟି କୋଟି ଶର
ନବ ଏକା ଛେଦଇ ଯେ ସେ ସମସ୍ତ ଶର ।
ଦେଖିଣ ଶ୍ରୀରାମ ଯେ ବିଶ୍ୱରୂପ ହେଲେ
ସୂର୍ଯ୍ୟ ମଣ୍ଡଳକୁ ସେ ଶିର ଲଗାଈଲେ ।
ଦେଖିଣ ନବ ଯେ ହୋଇଲାକ କ୍ରୋଧ
ବୋଲଇ ରୂପ ଦେଖାଇଲେ କି ଯିବୁ ଆଜ ।
କୁଶ ଡାକ ଦେଲା ଯେ କି କରୁ ତୁ ଭାଇ
ଦୁଇଜଣ ରଥୀଙ୍କି ନ ମାରୁ କିମ୍ପାଇଁ ।
ଶୁଣିକରି ନବ ମନଭେଦୀ ଧରି
ଯେଉଁ ଶର ସ୍ୱାହାପତି ଦେଲେ ଯେ ଆଗକରି ।
ସେ ଶରକୁ ନେଇ ଗୁଣରେ ବସାଇଲା
ମନ୍ତ୍ର ପଢ଼ି ଶରକୁ ଓଟାରି ଛାଡ଼ିଦେଲା ।
ଦେଖିଣ ଦୁଇଭାଇ ଅନୁଜ ଶର କଲେ
କଉଣସି ପ୍ରକାରେ ଛେଦି ନ ପାରିଲେ ।
ଯାଇଣ ଶରୀରେ ଶର ଭେଦ କଲା
ଦୁଇ ରଥରେ ଦୁହେଁ ଶୋଇଲେ ଥାଇପରା ।
ଦେଖିଣ ନବକୁଶ ବେଗେ ରଥରେ ଚଢ଼ି
ଶାରଙ୍ଗ ଧନୁ ଧରେ ନବ ଶ୍ରଦ୍ଧା କରି ।
କୁଶକୁ ବୋଇଲା ନେବୁରେ ତୁ କିସ
ବେଳତ ଉଛୁର ହେଲା ଯିବା ନିଜବାସ ।
କୁଶ ବୋଇଲା ମୁଁ ଏ ମାଙ୍କଡ଼ ଗୋଟା ନେବି
ପ୍ରଭାତ ସନ୍ଧ୍ୟାବେଳେ ଏହାକୁ ନଚଇବି ।
ମଣ୍ଡା ଲଇ ଖଣ୍ଡକରେ ବାନ୍ଧିଲା ହନୁକୁ
ଯେମନ୍ତେ ନାଟକାରୀ ଆଣେ ଖେଳାଇବାକୁ ।
କାଣ୍ଡ କୋଦଣ୍ଡକୁ କୁଶ ଧରିଣ କର
ଦଶ ଅଶ୍ୱ ଆଗରେ ଅଡ଼ାଏ ନବବୀର ।
ନିଜ ନବରରେ ହେଲେ ପରବେଶ
ଦଶ ଘୋଡ଼ା ବାନ୍ଧି ନବ ହୋଇଛି ହରଷ ।
ମାତା ପଚରିଲେ ଅଶ୍ୱ କାହାର ଆଣୁ
ନବ ବୋଲେ ଜନନୀ ଗୋ କହୁଅଛି ଶୁଣୁ ।
ଅଶ୍ୱମେଧ ଯାଗ ଯେ କେଉଁ ରାଜା କରି
ଦଶଗୋଟି ଅଶ୍ୱ ଘେନି ଅଇଲାକ ଫେରି ।
ଏ ଅଶ୍ୱଙ୍କୁ ଦେଖି ମୋର ଶରଧା ବଳିଲା
କୁଶକୁ କହନ୍ତେ ଦଶ ଅଶ୍ୱଙ୍କୁ ବାନ୍ଧିଲା ।
ଚରି ରାଉତେ ଯେ ସଙ୍ଗରେ ଥିଲେ ପୁଣ
ଅଶ୍ୱଙ୍କୁ ବାନ୍ଧିବାରୁ ଆରମ୍ଭ କଲେ ରଣ ।
ସୈନ୍ୟବଳ ଅକଳିତ କଳିତ ନୁହଇ
ଅଠର କୋଟି ରଥୀ ଯେ ସଙ୍ଗରେ ଅଛଇ ।
ଅନେକ ପ୍ରକାରେ ବହୁତ ଯୁଦ୍ଧ କଲେ
କର୍ମର ଅବଳେ ପ୍ରାଣ ସେ ହାରିଲେ ।

ଦଶ ଅଶ୍ୱଙ୍କୁ ଯେ ଆଣିଲି ଦେଖି ଶୋଭା
ଆୟେ ଅଳଙ୍କାର ମଣ୍ଡିଛନ୍ତି ଗଭା ।
ଏମନ୍ତ ସମୟେ କୁଶ ଯାଇ ମିଳି
ଶାରଙ୍ଗ ଧନୁ ଗୋଟିକି ଜନନୀ ପାଶେ ଡେରି ।
ମାଙ୍କଡ଼ ଗୋଟିକି ହସ୍ତରେ ଧରିଥିଲେ
ହନୁମନ୍ତକୁ ଦେଖି ଜାନକୀ ତାଟକା ହୋଇଲେ ।
ଶାରଙ୍ଗ ଧନୁକୁ ନିରେଖି କରି ଚାହିଁ
ବୋଇଲେ ରାଘବଙ୍କ ଧନୁ ଯେ ଅଟଇ ।
ପୁତ୍ରଙ୍କୁ ବୋଲେ ଜାନକୀ ଶୁଣରେକୁମର
ଅଯୋଧ୍ୟା ଠାକୁରତ ଅଟନ୍ତି ରଘୁବୀର ।
ତାଙ୍କର ଧନୁ ପ୍ରାୟେ ଦିଶୁଅଛି ମୋତେ
ପିତା ଖୁଡୁତାଙ୍କୁ ତୁମ୍ଭେ ମାଇଲ ବନପଥେ ।
କୁଶ ବୋଇଲେ ସେତ ଅଟନ୍ତି ପାରିବାର
ବୋଇଲେ ରାବଣ ମୁଁ ମାଇଲି ଦରିଆର ।
ତ୍ରିଦଶ ଦେବତାଙ୍କୁ ସ୍ୱର୍ଗରେ ଜିଣିଲି
ପାତାଳେ ପଶିଣ ମୁଁ ଅସୁର ନାଶକଲି ।
ଏମନ୍ତ ପ୍ରତିଜ୍ଞା କରି ଆମ୍ଭ ସଙ୍ଗରେ ରଣକଲା
ଆମ୍ଭର ହସ୍ତରେ ସେ ପ୍ରାଣ ହରାଇଲା ।
ଶୁଣିକରି ଜାନକୀ କମ୍ପେ ଥରହର
ବୋଇଲେ ପିତା ସେହି ଅଚିହ୍ନା ତୋହର ।
ଖୁଡୁତାମାନେ ତ ଅଟନ୍ତି ଚିହ୍ନା ପୁଣି
ତାଙ୍କୁ ଚିହ୍ନି କେମନ୍ତରେ ମାଇଲ ପୁତ୍ରମଣି ।
ହନୁମନ୍ତକୁ ଜାନକୀ ପଚାରନ୍ତି ପୁଣ
ଶ୍ରୀରାମଙ୍କ ସଙ୍ଗରେ ତୁ ଥିଲୁଟିକି ରଣ ।
କେବଣ କାରଣ କଥା କହ ମୋର ଆଗେ
ହନୁମନ୍ତ ଓଳଗି ବୋଲେ ଶୁଣ ମାତ ତୁମ୍ଭେ ।
ଅଶ୍ୱମେଧ ଯାଗକୁ ତୁମ୍ଭ ସ୍ୱାମୀକି ଇଛାକଲେ
ଏଗାର ଅଶ୍ୱମେଧ କରିବି ବୋଇଲେ ।
ଭରତ ଲକ୍ଷ୍ମଣ ଯେ ଅଇଲେ ରଥ ଘେନି
ସେ ଦୁହିଁଙ୍କି ମାଇଲେ ଅଶ୍ୱଙ୍କୁ ବାନ୍ଧି ପୁଣି ।
ରାମ ଶତୃଘନ ଅଇଲେ ଶୁଣି ତାହା
ଅନେକ ଯୁଦ୍ଧକରି ପଡ଼ିଲେ ରାମନାହା ।
ଶତୃଘନ ଶ୍ରୀରାମ ନାଶଗଲେ ପୁଣ
ସୈନ୍ୟବଳ ସମସ୍ତେ ଲୋଟିଲେ ଭୂମିରେଣ ।
ମୋତେ ବାନ୍ଧି ଆଣିଲେ ହୋଇ ବଡ଼ରାଗ
ହନୁମନ୍ତଠାରୁ ଶୁଣି ଜାନକୀ କଲେ ରାବ ।

ବୋଇଲେ ମାରୁତି ମୋତେ ଦେଖାଅ ରାମଙ୍କୁ
କି କଲରେ ବାଳକେ ମାରିଲ ପିତାଙ୍କୁ ।
ଶୁଣିକରି ମାରୁତି ଆଗରେ ଚାଲଇ
ଜାନକୀ ସଙ୍ଗରେ ଦୁଇ ପୁତ୍ରେ ଯେ ଗୋଡ଼ାଇ ।
ରଣ ଭୂମିରେ ଯାଇ ହେଲେ ପରବେଶ
ରଥପରେ ଉଠି ସୀତା ମିଳିଲେ ରାମପାଶ ।
ଦେଖିଲେ ଶ୍ରୀରାମ ଶୋଇଛନ୍ତି ରଥପରେ
କେଣେ ଛାଡ଼ିଗଲ ସ୍ୱାମୀ ହତଭାଗିନୀରେ ।
ସେଠାରୁ ଆସି ଦେବୀ ଲକ୍ଷ୍ମଣ ରଥେ ଉଠି
ପଡ଼ିଛି ସଉମିତ୍ରି ଚେତନା ନାହିଁ କିଛି ।
ଲକ୍ଷ୍ମଣଙ୍କୁ ଦେଖିଣ ଭରତ ରଥେ ଗଲେ
ଭରତଙ୍କୁ ଦେଖିଣ ବ୍ୟାକୁଳ ଦେବୀହେଲେ ।
ଶତୃଘନଙ୍କୁ ଯାଇଁ ଦେଖିଲେ ରଥରେ
ରୋଦନ କଲେ ସତୀ ବସି ସେ ରଥରେ ।
ହନୁମନ୍ତ ଜାନକୀ ସଙ୍ଗରେ କାନ୍ଦଇ
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭେରୀ ତୁହି ।
ମନୁମାୟା ମୁନିଙ୍କର ଆଗରେ ମିଳିଲା
କରଯୋଡ଼ି ମୁନିଙ୍କ ଛାମୁରେ ଜଣାଇଲା ।
ଭୋ ମୁନିବର ମୋର ଶୁଣିବା ହେଉ ରୀତି
ଚାରି ଯୁଆଇଁଙ୍କୁ ମାଇଲେ ତୁମ୍ଭ ନାତି ।
ଜାନକୀ ଶୁଣିକରି ସେଠାକୁ ଗଲେ
ହନୁମନ୍ତଠାରୁ ଶୁଣି ଜାନକୀ ପ୍ରତେଗଲେ ।
ଦୁଇ ପୁତ୍ର ଘେନି ଦେବୀ ମିଳିଲେ ରଣସ୍ଥାନ
ସ୍ୱାମୀ ଦିଅରକୁ ଦେଖି କଲେ ସେ ରୋଦନ ।
ମୁନି ବୋଇଲେ ତାଙ୍କୁ ଜିଆଇ ଆମ୍ଭେ ଦେବା
ଏତେ କହି ଋଷି ଭାଙ୍ଗିଲେ ଯୋଗନିଦ୍ରା ।
କମଣ୍ଡଳରେ ଜଳ ମନ୍ତ୍ରି ପୁରାଇଲେ
ରଣ ଭୂମିରେ ଯାଇଁ ପରବେଶ ହେଲେ ।
ଶତୃଘନ ରଥରେ ଚଢ଼ିଲେ ମୁନି ଯାଇଁ
ଜାନକୀଙ୍କି ବୋଇଲେ ନ କାନ୍ଦ ବଇଦେହୀ ।
ଏତେ ବୋଲି ଜଳ ଯେ ସିଞ୍ଚିଲେକ ଅଙ୍ଗ
ନିଦ୍ରା ତେଜି ଶତୃଘନ ଉଠିଲେକ ବେଗ ।
ଦେଖିଲେ ବାଲମୀକ ସଙ୍ଗରେ ଜାନକୀ
ଚରଣେ ଓଳଗି ଶୋଇଲେ ସଉମିତ୍ରୀ ।
ଜାନକୀ ବୋଇଲେ ତୁମ୍ଭେ ପୁତୁରା ନ ଚିହ୍ନିଲ
ଭାଇ ସଙ୍ଗେ ପଡ଼ିକରି ଅଚିହ୍ନା ହୋଇଲ ।

ଶତୃଘନ ବୋଇଲେ ମାତ ତୁମ୍ଭେ କଲ ଛନ୍ଦ
ଆମ୍ଭେ ଅଳଙ୍କାର କିମ୍ପା କାଢ଼ିଲ ପୁତ୍ରଅଙ୍ଗ ।
କିରାତ ପିଲା ପ୍ରାୟେ କରି ବନକୁ ପେଶିଦେଲ
ଏବେ କହୁଛ ପୁତୁରାଙ୍କୁ ଚିହ୍ନି ନ ପାରିଲ ।
ସେଠାରୁ ଯାଇ ମୁନି ଶ୍ରୀରାମ ରଥେ ଚଢ଼ି
ଶତୃଘନ କୋଳେ ପୁତ୍ରେ ବସିଲେ ଯାଇଁକରି ।
ଶ୍ରୀରାମର ଅଙ୍ଗେ ପାଣି ସିଞ୍ଚିଲେ ଋଷି ପୁଣ
ଚେତା ପାଇ ଉଠି ବସିଲେ ରାମ ପୁଣ ।
ଦେଖିଲେ ଶାରଙ୍ଗ ଧନୁ ନାହିଁ ଯେ ପାଖର
ମୋ ଧନୁଶର କେହୁ ନେଲା ହେ ମୁନିବର ।
ଶ୍ରୀରାମ ବୋଲନ୍ତେ ମୁନି କହନ୍ତି ବଚନ
ବଡ଼ ପୁତ୍ର ତୋର ଧନୁ ଘେନିଗଲା ପୁଣ ।
ଆମ୍ଭଙ୍କୁ ଦେଖାନ୍ତେ ଜାଣି ଅଇଲୁ ଏଠାକୁ
ଅଚେତା ହୋଇଲ ତୁମ୍ଭେ ଚେତନା କରିବାକୁ ।
ରାମ ବୋଲନ୍ତି କାହାନ୍ତି ସେ ଦୁଇଗୋଟି ବାଳ
ବାଲ୍ମୀକି ବୋଲନ୍ତି ଶତୃଘନର କୋଳ ।
ଶ୍ରୀରାମ ବୋଲନ୍ତି ମୋ ପିତା ଦଶରଥ
ମୋତେ କେତେ କଥା କହିଥିଲେ ଧର୍ମପଥ ।
ମୁଁ ଚଣ୍ଡାଳ ତାଙ୍କ କଥା ନ ମାନି ଯୁଦ୍ଧକଲି
ଏତେବେଳେ ସେକଥା ମନରେ ଚିନ୍ତାକଲି ।
ମୁନି ବୋଇଲେ ରାମ ଯେ ଦୁଷ୍ଟପଣ କଲ
ବେଶ୍ୟାସ୍ତିରୀଙ୍କର ବୋଲେ ଘରଣୀ ହରାଇଲ ।
ଏତେ କହି ରାମ ପାଶୁଁ ମୁନି ଚଳିଗଲେ
ଭରତର ରଥରେ ଯାଇଣ ବିଜେ କଲେ ।
ପାଣି ମନ୍ତ୍ରି ଉପରେ ସିଞ୍ଚନ୍ତେ ଭ୍ରଥ ଚେତି
ମୁନିଙ୍କ ଚରଣେ ଭ୍ରଥ କଲା ପ୍ରଣାମଟି ।
ତହୁଁ ମୁନି ଲକ୍ଷ୍ମଣ ରଥରେ ବିଜେ କଲେ
ପାଣି ମନ୍ତ୍ରି ଲକ୍ଷ୍ମଣଙ୍କ ଉପରେ ସିଞ୍ଚିଲେ ।
ଚେତାପାଇ ଲକ୍ଷ୍ମଣ ଯେ ଉଠିଲା ବେଗକରି
ଋଷିଙ୍କି ଦେଖି ପାଦେ ପ୍ରଣାମ ସେ କରି ।
ଋଷି ବୋଲନ୍ତି ଜାନକୀ ଯାଅ ନିଜ ସ୍ଥାନ
ସୈନ୍ୟବଳ ଜୀଇ ତୋର ଉଠିବେ ଏହିକ୍ଷଣ ।
ଶୁଣିକରି ଜାନକୀ ମନୁମାୟାକୁଘେନି
ନିଜ ଆଶ୍ରମରେ ପ୍ରବେଶ ହେଲେ ପୁଣି ।
ଏଥୁ ଅନନ୍ତରେ ମନପବନ ଦଣ୍ଡ ଚଢ଼ି
ଶୂନ୍ୟରେ ରହିଲେ ମୁନି ରଣଭୂମି ମାଡ଼ି ।

ମନ୍ତ୍ର ପାଣି ନେଇ ସିଞ୍ଚିଲେ ଉପରେଣ
ଉଠିଲେ ସୈନ୍ୟବଳ ସକଳ ତତ୍କ୍ଷଣ ।
ଋଷି ବୋଇଲେ ରାମ ଗଙ୍ଗାରେ ସ୍ନାନକର
ଶଉଚ ହୋଇ ଆସ ଆମ୍ଭର ମଠର ।
ଆଜ ରଜନୀରେ ଏଠାରେ ରହିବ
କାଲି ପ୍ରଭାତରୁ ହେ ଅଯୋଧ୍ୟାପୁରକୁ ଯିବ ।
ଶୁଣି କରି ସମସ୍ତେ ଗଙ୍ଗା କୂଳକୁ ଗଲେ
ସ୍ନାହାନ ନିତ୍ୟକର୍ମ ଗଙ୍ଗାରେ ବଢ଼ାଇଲେ ।
ବାଲମୀକ ମଠରେ ହେଲେ ପରବେଶ
ସୁରଭୀର ପ୍ରସାଦରେ ସକଳ ବିଶେଷ ।
ମନ ଇଛା ଭୋଜନ ଯେ ଋଷି ଭିଆଇଲେ
ଯେ ଯାହା ମନ ସୁଖେ ଭରି ଭୋଜନ କଲେ ।
ଋଷି ଯାଇ ଜାନକୀଙ୍କ ପାଶରେ କହିଲେ
ମଣୋହି କରିବେ ରାମ ପାକ କର ଭଲେ ।
ଶୁଣିଣ ଜାନକୀ ପାକ ସମ୍ପାଦିଲେ
ଛଡ଼ରସରେ ଜାନକୀ ରାନ୍ଧଣା ବିଧି କଲେ ।
ନବ କୁଶ ପିତା ଖୁଡ଼ୁତାଙ୍କ ପାଶେ ଥିଲେ
ଜାନକୀଙ୍କ ପାଶରେ ପ୍ରବେଶ ହୋଇଲେ ।
ମନୁମାୟା ସୀତାୟା ପୁତ୍ରଙ୍କୁ ବେଶକଲେ
ଆୟ ଅଳଂକାର ପୁତ୍ରଙ୍କ ଅଙ୍ଗେ ଦେଲେ ।
ବୋଇଲେ ବାପ ଖୁଡ଼ୁତାଙ୍କୁ ଡାକିଆଣ
ତାଙ୍କ କୋଳେ ବସିଣ ଭୋଜନ କର ପୁଣ ।
ଜାନକୀ ବେଶ ହେଲେ ପୂର୍ବପରି ଜାଣ
ବିଭା କାଳ ବଶ ଧଇଲେ ସତୀ ପୁଣ ।
ବେନି ପୁତ୍ରେ ପିତାଙ୍କ ପାଶରେ ପରବେଶ
ଚନ୍ଦ୍ରରୁ ଉଜ୍ଜ୍ୱଳ ଦିଶଇ ପୁଣି କୁଶ ।
ନୀଳମଣି ରୂପ ଯେ ନବ ବିରାଜଇ
ଦେଖିଣ ପ୍ରସନ୍ନ ମନ ହେଲେ ରଘୁସାଇଁ ।
ଶ୍ରୀରାମ ଋଷିଙ୍କୁ ଯେ ପଚାରିଲେ ପୁଣ
ଏ ଦୁଇ ନାତିଙ୍କର ଦେଲ କିସ ନାମ ।
ଋଷି ବୋଇଲେ ବଡ଼ ନାମ ନବହୋଇଲା
ସାନ ନାମ କୁଶ ଶୁଣ ଦଶରଥ ବଳା ।
ରାମଚନ୍ଦ୍ର ବୋଇଲେ ଏ ପାଇଲେ କାହୁଁଶର
ବାଲମୀକ ବୋଇଲେ ଶୁଣହେ ରଘୁବୀର ।
ନାମକରଣ ଦିନ ଦେବତା ସର୍ବେ ମିଳି
ନବକୋଟି ଋଷି ଯେ ହୋଇଲେ ଏକମେଳି ।

ତୁମ୍ଭର ତିନିଭାଇ ଏଠାକୁ ଆସିଥିଲେ
ଉତ୍ସବ ଆନନ୍ଦରେ ନାମ ଭିଆଇଲେ ।
ଅନେକ ଧନରତ୍ନ ଋଷିରେ ଦେଲେ ଦାନ
ଦେବତାଏ ଅକ୍ଷତ ଦେଲେ ପୁତ୍ରଙ୍କ ଶିରେ ପୁଣ ।
ଆୟୁଧ ମାନ ଦେଇ ସ୍ୱର୍ଗକୁ ଚଳିଗଲେ
ସମସ୍ତଙ୍କର ମନ୍ତ୍ର ଯେ ଋଷି ଶିଖାଇଲେ ।
ବିଦ୍ୟାରେ ବିର୍ଜୀତ ଯେ ତୋହର ବେନିବାଳ
କ୍ଷତ୍ରୀପଣେ ସରି କେହି ନୁହନ୍ତି ଆଗର ।
ଶୁଣିଣ ଶ୍ରୀରାମ ପରମ ତୋଷ ହେଲେ
କେଉଁଗୁଣେ ଏତେଦଶା ହୋଇଲା ବୋଇଲେ ।
ଋଷି ବୋଇଲେ ଧର୍ମ ଦେବତା କହିଲେ
ଆଉ ଥରେ ଜାନକୀ ଯିବଟି ବନରେ ।
ବାଳି ରାଜା ଭାରିଜା ନାମ ତାର ତାରା
ତୋତେ ଶାପ ଦେଲା ଭୋଗ ନୋହୁଭାରିଜାପରା ।
ବାର ବରଷ ରାମ ଏଠାରେ ଭୋଗକଲା
ବୟାଳିଶ ବରଷ ଯେ ଶେଷକୁ ରହିଲା ।
ଏବେ ଯାଅ ବାବୁ ମଣୋହି ବେଗେକର
ପ୍ରଭାତୁ ପୁତ୍ର ଭାରିଜା ଘେନି ସଙ୍ଗରେ ଚଳ ।
ଜାନକୀର ଦୋଷ ନାହିଁ ତୋହର ସବୁ ଦୋଷ
ତ୍ରୈଲୋକ୍ୟ ଠାକୁର କରୁ ଖଳଲୋକଙ୍କୁବିଶ୍ୱାସ ।
ପୁତ୍ରମାନେ ହସ୍ତଧରି ଉଠାଇ ଘେନିଗଲେ
ଚରିଭାଇ ଦୁଇପୁତ୍ର ମିଳେ ଜାନକୀ ପାଶରେ ।
ଚରିଭାଇ ଆସନରେ ବସିଲେକ ପୁଣ
ଦୁଇ ପୁତ୍ର କୋଳେ ଧରି କଲେକ ଭୋଜନ ।
ଆଚମନ ସାରିଣ ପଲଙ୍କପରେ ବସି
ମାୟାସୀତା ଦେଲେ ବିଡ଼ିଆ ନେଇ ହସି ।
ପୁତ୍ରଙ୍କୁ ଘେନି କୋଳେ ଶ୍ରୀରାମ ନିଦ୍ରାଗଲେ
ନିଦ୍ରାର ଆଳସ୍ୟରେ ରଜନୀ ପୁହାଇଲେ ।
ଶଯ୍ୟାରୁ ଉଠି ରାମ ପଖାଳିଲେ ମୁଖ
ଋଷିଙ୍କି ଦର୍ଶନ ଯାଇଁ କଲେ ରାମ ନୃପ ।
ସୁମନ୍ତକୁ ଆଜ୍ଞାଦେଲେ ସୈନ୍ୟ ସଜକର
ତିନି ଭାଇ ବୋଇଲେ ବସରେ ରଥର ।
ଲକ୍ଷ୍ମଣଙ୍କ କୋଳରେ ବସିଲେ ଯାଇ କୁଶ
ଭରତଙ୍କ କୋଳରେ ନବ ବସିଲେ ହରଷ ।
ଜାନକୀର ଯେତେ ଆୟଦ୍ରବ୍ୟମାନ ଥିଲା
ଶତୃଘନ ନେଇଣ ରଥରେ ରଖିଲା ।

ଶ୍ରୀରାମ ବୋଲନ୍ତି ଶୁଣ ହେ ପିତାମହ
ଯାଗ କରିବାରେ ମୋର ହେଲା ବଡ଼ ସ୍ନେହ ।
ମର୍ତ୍ତ୍ୟପୁର ଋଷିଙ୍କି ଘେନିଣ ବେଗେ ଆସ
ସ୍ୱର୍ଗ ପାତାଳରୁ ଋଷି ଅଣାଅ ବିଶେଷ ।
ଆଚାର୍ଯ୍ୟ ବରଣ ହୋଇବକି ତୁମ୍ଭେ
ଋଷି ବୋଇଲେ ଦକ୍ଷିଣା ପ୍ରାପତନୋହେଯୋଗେ ।
ଝିଅ ଦେବା ଲୋକ ନ ହରନ୍ତି କାହିଁ ଦ୍ରବ୍ୟ
ଆନ ଋଷିଙ୍କି ବର ଆମ୍ଭଠାରେ ନାହିଁ କାର୍ଯ୍ୟ ।
ଶୁଣିକରି ରାମଚନ୍ଦ୍ର ଓଳଗି ମେଲାଇଲେ
ଶ୍ରୀରାମଙ୍କୁ ଘେନି ସୀତା ନିକଟେ ମିଳିଲେ ।
ଋଷି ବୋଲନ୍ତି ଜାନକୀ ସ୍ୱାମୀଙ୍କ ସଙ୍ଗେ ଚଳ
ମନରୁ ସବୁ ଚିନ୍ତା ଏବେ ଦୂରକର ।
ଜାନକୀ ବୋଇଲେ ମୋତେ ବିନା ଦୋଷରେ ଦଣ୍ଡ
ଋଷି ବୋଇଲେ ତୋ କର୍ମେ ଥିଲା ଭବିଷ୍ୟଖଣ୍ଡ ।
ଶୁଣିକରି ଜାନକୀ ଓଳଗି ମେଲାଇଲେ
ଯାଉଛି ଦୟା ମୋତେ କରିବ ପିତା ଭଲେ ।
ଉଠିଲାକ ଯାନ ଯେ ଗର୍ଜନ ନାଦ କରି
ଆଗରେ ତିନିଭାଇ ପଛରେ ସୈନ୍ୟ ଚଳି ।
ମଧ୍ୟରେ ବିଜୟ ଯେ ବ୍ରହ୍ମାଣ୍ଡର ନାଥ
ଅଯୋଧ୍ୟା ବଡ଼ ଦାଣ୍ଡରେ ଚଳିଲେ ସମସ୍ତ ।
ସିଂହଦ୍ୱାରେ ରାମ ଯେ ହେଲେ ପରବେଶ
ରଥରୁ ଉତୁରି ଜାନକୀ ଗଲେ ଭିତରେତ ।
ଶାଶୁମାନଙ୍କ ଚରଣେ ଯାଇଁ ଓଳଗି କଲେ
କଉଶଲ୍ୟାଙ୍କ ଚରଣ ଧରିଣ ନମିଲେ ।
କଉଶଲ୍ୟା ବୋଇଲେ ତୁ କେଣେ ଯାଇଥିଲୁ
ବୃଦ୍ଧ କାଳରେ ମୋତେ କେତେ ଦୁଃଖ ଦେଲୁ ।
ଏହି ସମୟରେ ବେନି ନାତି ମିଳି
ଚରଣ ତଳରେ ଶୋଇଲେ ଶିର ଢାଳି ।
ଦେଖିଣ କଉଶଲ୍ୟା ଆନନ୍ଦ ହୋଇଲେ
ବେନି ନାତିଙ୍କି ନେଇ କୋଳରେ ବସାଇଲେ ।
ରଥରୁ ଓହ୍ଲାଇଲେ ଚରିଭାଇ ପୁଣ
ବାହାରେ ଅବକାଶ ହେଲେ ରାମରାଣ ।
ଅନ୍ତଃପୁରେ ଜାନକୀ ହେଲେ ପରବେଶ
ଦାସୀମାନେ ଆସିଣ ଖଟିଲେ ତାଙ୍କପାଶ ।
ହନୁମନ୍ତକୁ ଚହିଁଣ ରାମ ଆଜ୍ଞା ଦେଲେ
କିଷ୍କିନ୍ଧ୍ୟା ନଗ୍ରକୁ ତୁ ଚଳରେ ବୋଇଲେ ।

ସୁଗ୍ରୀବର ଅଙ୍ଗଦକୁ କହିବୁ ମୋର କଥା
ଗୋମତୀ କୂଳେ ଯାଗ କରନ୍ତି ଦଶରଥ ପୁତା ।
ସେନା ଯୂଥପତିଙ୍କି କହିଣ ଘଳିଦେବୁ
ଲଙ୍କାଗଡ଼ରେ ବିଭୀଷଣକୁ କହିବୁ ।
ବୋଲିବୁ ପାଞ୍ଚରାଜା ଘେନି ବେଗେ ଯାଅ
ଗୋମତୀ କୂଳେ ଯାଗ କରନ୍ତି ଦଶରଥ ପୁଅ ।
ଶୁଣିଣ ହନୁମନ୍ତ ସୁବର୍ଣ୍ଣ ରଥେ ଚଢ଼ି
କିଷ୍କିନ୍ଧ୍ୟା କଟକରେ ପ୍ରବେଶ ବେଗକରି ।
ସୁଗ୍ରୀବର ଚରଣେ ଓଳଗି ହୋଇଲା
ଶ୍ରୀରାମ ଯାଗ କରନ୍ତି ଯିବ ଯେ ବୋଇଲା ।
ଯୂଥପତି ସେନାପତି ବେଗେ ପେଶିଦେଲା
ସେହିଦିନ ଅଙ୍ଗଦର ନଗ୍ରରେ ମିଳିଲା ।
ଅଙ୍ଗଦକୁ ବୋଇଲା ଶ୍ରୀରାମ ପାଶେ ଚଳ
ଯାଗ କରିବେ ଯେ ଦଶରଥଙ୍କ ବାଳ ।
ସେଦିନ ରହିଣ ଯେ ଆରଦିନ ଚଳି
ଜ୍ୟୋତି ଲଙ୍କାରେ ଯାଇ ଦୁଇ ଘଡ଼ିରେ ମିଳି ।
ନାଦକ ବୋଇଲା ତୁରେ ଅଯୋଧ୍ୟାବେଗେଚଳ
ଯାଗ କରୁଛନ୍ତି ଯେ କୋଦଣ୍ଡ ଚାପଧର ।
ସୈନ୍ୟବଳ ଘେନିଣ ଯିବଟି ତୁରିତ
ଏତେ ବୋଲି ସେଠାରୁ ଚଳିଲା ହନୁମନ୍ତ ।
ସୁଲଙ୍କାରେ ଯାଇଣ ପରବେଶ ହେଲା
ସୁବାହୁ ବସିଅଛି ଯାଇଣ ଦେଖିଲା ।
ବୋଇଲା କୁମରରେ ଅଯୋଧ୍ୟାପୁର ଯାଅ
ଯାଗ କରୁଛନ୍ତି ଯେ ରଘୁବଂଶ ପ୍ରିୟ ।
ଏତେ କହି ସେଠାରୁ ବେଗେ ଚଳିଗଲା
ବିଲଙ୍କା ଗଡ଼ରେ ସେ ପ୍ରବେଶ ହୋଇଲା ।
ଅନ୍ତଃପୁରେ ମିଳିଲେ ପବନର ଶିଷ୍ୟ
ଦେଖିକରି ତ୍ରୀଜଟା ମନରେ ହେଲେ ତୋଷ ।
ସ୍ୱୟଂ ମନୁ ତାର ପାଶରେ ଅଛି ବସି
ଦେଖି ପବନ କୁମର କହିଲା ତାଙ୍କୁ ହସି ।
ଶ୍ରୀରାମଚନ୍ଦ୍ର ଅଶ୍ୱମେଧ ଯାଗ ଆରମ୍ଭିଲେ
ଅଯୋଧ୍ୟା ନଗରକୁ ଚଳ ବ୍ୟଗ୍ରେ ଭଲେ ।
ଏତେ କହି ସେଠାରୁ ହୋଇଲେ ବାହାର
ଅଲଙ୍କା ଗଡ଼ରେ ମିଳିଲା ବୀରବର ।
ସୁବର୍ଣ୍ଣକୁ ବୋଇଲେ ଚଳ ଅଯୋଧ୍ୟା ପୁରୀ
ଅଶ୍ୱମେଧ ଯାଗ କରନ୍ତି ଚାପଧାରୀ ।
ଶ୍ରୀରାମର ଯାଗ ଯାଇ ନେତ୍ରରେ ତୁମ୍ଭେ ଦେଖ
ଏ ଜନ୍ମର ପାତକ ହେଲେଣ ନ ରଖ ।
ଏତେ କହି ସେଠାରୁ ହୋଇଲେ ବାହାର
ଲଙ୍କାରେ ପ୍ରବେଶ ହେଲା ପବନ କୁମର ।
ମନ୍ଦୋଦରୀ ବିଭୀଷଣ ଏକାନ୍ତ ଠାବେ ଗଲା
ପଶାଖେଳ ଖେଳିବାରେ ହୋଇଛନ୍ତି ଭେଳା ।
ହନୁମନ୍ତକୁ ଦେଖିଣ ମନ୍ଦୋଦରୀ କହି
ଶ୍ରୀରାମଙ୍କ ଦୂତ ଆସି ଆମ୍ଭ ପାଶରେ ହୋଇ ।
ମାରୁତି ବୋଇଲେ ଶ୍ରୀରାମ ଯାଗରେ ଉପଗତ
ସୈନ୍ୟବଳ ଘେନିଣ ଚଳ ହେ ତୁରିତ ।
ବିଭୀଷଣ ବୋଇଲେ ଭୋଜନ ଏଥିକର
ମାରୁତି ବୋଇଲା ଯେ ଯିବାକୁ ଉଚ୍ଛୁର ।
ଫଳମୂଳ ଅଣାଇ ବିଭୀଷଣ ଦେଲା
ଭୋଜନ କରି ମାରୁତି ବେଗେଣ ଚଳିଲା ।
ରଜନୀ ପ୍ରହରକର ଅଯୋଧ୍ୟା ପରବେଶ
ଶ୍ରୀରାମ ଚରଣେ ନମେ ପବନର ଶିଷ୍ୟ ।
ଭୋଜନ କରିଣ ସେ ସୁଖେ ନିଦ୍ରାଯାଇ
ରଜନୀ ପ୍ରଭାତରେ ଶ୍ରୀରାମ ତାଙ୍କୁ କହି ।
ପାତାଳ ପୁରକୁ ଚଳ ମାରୁତି ଏବେ
ପର୍ଶୁରାମ ଜମ୍ବେବଙ୍କୁ ଘେନିଆସ ବେଗେ ।
ଶୁଣିଣ ମାରୁତି ଯେ ବେଗ୍ରରେ ଚଳିଗଲା
ନିର୍ମଳ ପୁରେ ଯାଇଁ ପ୍ରବେଶ ହୋଇଲା ।
ପର୍ଶୁରାମ ଚରଣେ କଲେକ ନମସ୍କାର
ବୋଇଲା ରଘୁନାଥ ଯାଗରେ ତତ୍ପର ।
ବେଗ୍ରରେ ଯିବ ତୁମ୍ଭେ କହିଲେ ଚାପଧାରୀ
କହିଣ ଚଳିଗଲା ଯେ ଜମ୍ବେବର ପୁରୀ ।
ଦର୍ପଣ ସ୍ଫଟିକ ପୁରେ ହୋଇଲା ପରବେଶ
ଦେଖିକରି ଜମ୍ବେ ମନରେ ହରଷ ।
ବୋଇଲେ ମାରୁତି ତୁ ଅଇଲୁ କେଣେ
ମାରୁତି ବୋଇଲାତୋତେନେବାକୁ ଆସେ ଏଣେ ।
ଅଶ୍ୱମେଧ ଯାଗ ଯେ ଶ୍ରୀରାମ କରିବେ
ବେଗେ ଯିବ ତୁମ୍ଭେ କହିଛନ୍ତି ଯେ ରାଘବେ ।
ଏତେ କହି ମାରୁତି ଆସିଲାକ ବେଗେ
ଶ୍ରୀରାମ ଚରଣେ ନମେ ପବନ ଆତ୍ମଜେ ।
ଭରତ, ଲକ୍ଷ୍ମଣ ଯେ ଶତ୍ରୁଘନ ତିନି
ଘେନିଣ ଶ୍ରୀରାମ ଯେ ବୋଇଲେ ତାଙ୍କୁ ପୁଣି ।

ତିନି ଅଶ୍ୱ ଘେନିଣ ତିନି ଭାଇ ଚଳ
ଜମ୍ବୋଦ୍ୱୀପ ମଣ୍ଡଳରେ ଘୋଡ଼ାଙ୍କୁ ଘେନି ବୁଲ ।
ଉତ୍ତର ପଶ୍ଚିମ ଯେ ଦକ୍ଷିଣ ଦିଗ ଜାଣ
ଯେବେ ଘୋଡ଼ା ଅଟକିବ କରିବ ରଣ ପୁଣ ।
ଶୁଣିଣ ବେନିଭାଇ ବେଗରେ ଚଳିଗଲେ
ତିନି ଦିଗ ବୁଲିଲେ କେହି ଅଟକ ନ କଲେ ।
ଫେରିଣ ତିନିଭାଇ ଛାମୁରେ ମିଳିଲେ
କାହାକୁ ବଳବାନ ନ ଦେଖୁ ବୋଇଲେ ।
ଶ୍ରୀରାମଚନ୍ଦ୍ର ବୋଇଲେ ବେଗ ହୋଇ ଚଳ
ଲକ୍ଷେ ନୃପତିଙ୍କି ବରଣ ଯାଇ କର ।
ଅକ୍ଷତ ଗୁଆ ଚନ୍ଦନ ଦେଇ ତାଙ୍କୁ ଆଣ
ବୋଲିବ ଗୋମତୀକୂଳେ ଚଳ ହେ ବହନ ।
ଶୁଣିଣ ତିନିଭାଇ ତିନିଦିଗକୁ ଗଲେ
ଚନ୍ଦନ ପାନ ଦେଇ ରାଜାଙ୍କୁ ବରିଲେ ।
ଶ୍ରୀରାମ ଛାମୁରେ ଆସି କଲେ ଦରଶନ
ବୋଇଲେ ପୂର୍ବଦିଗ ରହିଲା ଦେବ ଜାଣ ।
ଶ୍ରୀରାମ ବୋଇଲେ ଦିଗକୁ ନ କର ତୁମ୍ଭେ ଶଙ୍କା
ଏ ସମୟେ ଯୂଥପତି ମିଳିଲେ ରଣରଙ୍କା ।
ଶ୍ରୀରାମ ପାଦତଳରେ କଲେ ନମସ୍କାର
ଶ୍ରୀରାମ ବୋଇଲେ ଚଳରେ ତୁମ୍ଭେ ଘର ।
ନଉ ସାଗର ବାନର ଭାଲୁ ଲଙ୍କା ଗଲେ
ସମସ୍ତଙ୍କୁ ଘେନି ଆସ ମୋର ଯାଗଶାଳେ ।
ଶୁଣି ଯୂଥପତି ସେନ୍ାପତି ଚଳିଗଲେ
ସମସ୍ତ ଭାଲୁ ବାନରଙ୍କୁ ଯାଇଣ କହିଲେ ।
ବୋଇଲେ ଗୋମତୀକୂଳେ ରାମ କରନ୍ତି ଯାଗ
ସେଠାବକୁ ତୁମ୍ଭେରେ ସମସ୍ତେ ଯିବ ବେଗ ।
ଏତେ କହି ସେନାପତି ଲେଉଟି ଅଇଲେ
ଶ୍ରୀରାମ ଛାମୁରେ ଆସି ଦରଶନ କଲେ ।
ନାରଦ ମାରକଣ୍ଡ ସୁମରେ ରାମରାଣ
ଜାଣିଣ ଦୁଇଋଷି ମିଳିଲେ ଆସି ପୁଣ ।
ଦେଖିକରି ଶ୍ରୀରାମ ନମସ୍କାର କଲେ
ଗୋମତୀ କୂଳେ ଯାଗ କରିବି ବୋଲେ ।
ତୁମ୍ଭେ ମୋତେ ସାହା ହୁଅ ହେ ବ୍ରହ୍ମମୁନି
ସ୍ୱର୍ଗକୁ ବିଜୟ ଯେକର ଏହିକ୍ଷଣି ।
ଦେବତା ଦେବଋଷି ବ୍ରହ୍ମ ଯେ ରୁଦ୍ରଗଣ
ଚଉରିମେଘ ଦିଗପାଳ କର ହେ ବରଣ ।
ଶୁଣିଣ ଦୁଇମୁନି ସ୍ୱର୍ଗପୁର ଗଲେ
ଋଷି ଦେବତା ଦିଗପାଳଙ୍କୁ ବରିଲେ ।
ଦଶରଥଙ୍କୁ ବୋଇଲେ ସକଳ ପିତୃଘେନି
ଗୋମତୀକୂଳେ ଆସ ରାମ ଯାଗ କରନ୍ତି ପୁଣି ।
ଏତେ କହି ବେନି ଋଷି ପ୍ରବେଶ ଅଯୋଧ୍ୟାରେ
ପାତାଳକୁ ମାରକଣ୍ଡ ଗଲେ ପୁଣି ଥରେ ।
ସିଦ୍ଧଋଷି ନାଗଋଷି ନାଗ ଦେବତା ବରିଲେ
ଅଯୋଧ୍ୟାରେ ଆସିଣ ପରବେଶ ହେଲେ ।
ଗୋମତୀକୂଳେ ରାମ ହେଲେ ପ୍ରବେଶିତ
ବିଶ୍ୱକର୍ମାଙ୍କୁ ରାମ ସ୍ମରିଲେ ଅନ୍ତର୍ଗତ ।
ଲକ୍ଷେକ ବିଶ୍ୱକର୍ମା ମିଳେ ଆସି ପୁଣ
ରାମ ବୋଲନ୍ତି ଯାଗକୁ କରିବି ଭିଆଣ ।
ଋଷି ଦେବତା ଅସୁର ନର ଯେ ବାନର
ସାମନ୍ତ ପାତ୍ର ମନ୍ତ୍ରୀ ରାଜା ଆସିବେ ବହୁବଳ ।
ଋଷିମାନଙ୍କ ପାଇଁ ଶଉଚ ସ୍ଥାନ କର
ନର ବାନରଙ୍କ ପାଇଁ ଛାମୁଣ୍ଡିଆ ଘର ।
ପାତ୍ର ମନ୍ତ୍ରୀ ସାମନ୍ତ ଉଆସରେ ରହି
ରାଜାମାନଙ୍କ ପାଇଁ ନବର କର ତହିଁ ।
ମଧ୍ୟରେ ଯାଗଶାଳ କରିବ ଭିଆଣ
ଚଉରିପାଖେ ଚଉରିସଭା ବସିବାକୁ ଥିବ ଗୁଣ ।
ଶୁଣିଣ ବିଶ୍ୱକର୍ମା ସକଳ ଭିଆଇଲେ
ରଜନୀର ଶେଷରେ ସ୍ୱର୍ଗକୁ ଚଳିଗଲେ ।
ସକଳ ଦ୍ରବ୍ୟ ଯେ ସଞ୍ଚିଣ ଥୋଇଗଲେ
ଶ୍ରୀରାମଙ୍କ ନବରକୁ ଜ୍ୟୋତିର୍ବର୍ଣ୍ଣ କଲେ ।
ପ୍ରଭାତୁ ଶ୍ରୀରାମ ଯେ ଦେଖିଲେ ଯାଇକରି
ସବୁସ୍ଥାନ ନିର୍ମଳ ଉଜ୍ଜ୍ୱଳ ଦ୍ରବ୍ୟ ଭରି ।
ଯେ ଯାହା ଲୋଡ଼ିବ ଯେ ସବୁଠାରେ ପାଇ
ଦେଖିକରି ରାମ ଯେ ସନ୍ତୋଷମନ ହୋଇ ।
ତିନିଭାଇଙ୍କି ଚଉହିଁଣ ବୋଇଲେ ରାମରାଣ
ମାତା ଘରଣୀ ପୁତ୍ର ଆଣରେ ଯାଇ ପୁଣ ।
ଶୁଣିଣ ତିନିଭାଇ ବେଗେ ଚଳିଗଲେ
ମନ୍ତ୍ରୀମାନଙ୍କୁ ସେ ରାଜ୍ୟ ସମର୍ପିଲେ ।
ଛଡ଼ଶଷି ମାତାଗଣ ଘରଣୀ ସଙ୍ଗେ ଘେନି
ଅଯୋଧ୍ୟାର କଟକେ ପ୍ରବେଶ ହେଲେ ପୁଣି ।
ଶ୍ରୀରାମଙ୍କ ନବରେ ସମସ୍ତେ ମିଳିଲେ
ଏକଳ ଶାଶୁଙ୍କୁ ଯାଇ ସୀତୟା ଓଳଗିଲେ ।

ତିନି ଭଗ୍ନୀ ସୀତୟାର ଚରଣେ ନମି ପୁଣି
ଛଡ଼ପୁତ୍ର ସୀତୟା କୋଳରେ ବସେ ଜାଣି ।
ନବ କୁଶ ବୋଇଲେ ଶୁଣ ଗୋ ଜନନୀ
ଏମାନେ ଆମ୍ଭର ଅଟନ୍ତି କିସ ପୁଣ ।
ଜାନକୀ ବୋଲନ୍ତି ଏ ଖୁଡୁତା ପୁଅ ଭାଇ
ଏ ଛଡ଼ଭାଇ ତୁମ୍ଭଙ୍କୁ ଅଟନ୍ତି ବଡ଼ହିଁ ।
ଶୁଣିଣ ନବ କୁଶ ନମସ୍କାର କଲେ
ବସନ୍ତ ଚନ୍ଦନ ଉଠି ଦୁହିଁଙ୍କି କୋଳ କଲେ ।
ଶ୍ରୀରାମର ମାତାମାନେ ଧଇଲେ କୋଳେ ପୁଣି
କୈକେୟୀ ସୁମିତ୍ରା ଯେ କଳାବତୀ ରାଣୀ ।
ଜାନକୀ ଆସିଣ ଯେ କଲେ କୋଳାଗ୍ରତ
ବୋଇଲେ ସୂର୍ଯ୍ୟ ବଂଶର ଚନ୍ଦ୍ରମା ଏହିତ ।
କେହି ଆଉଁସିଣ କେ ମୁଖରେ ଚୁମ୍ବଦେଲେ
ତିନି ଭଗ୍ନୀ ଆସିଣ ପାଦ ମଞ୍ଜାଳିଲେ ।
ସ୍ନାହାନ ଭୋଜନ ଯେ କଲେକ ସର୍ବେ ପୁଣ
ଏଥୁ ଅନନ୍ତରେ ଯେ କଥା ରସ ଶୁଣ ।
ଗୋମତୀକୂଳୁଁ ଶ୍ରୀରାମ ଆସିଲେ ନବର
ଧେଣ୍ଡୁରା ଫେରାଇଲେ ଅଯୋଧ୍ୟା କଟକର ।
ଧେଣ୍ଡୁରିଆ ଡାକ ଦେଲା ଗୋମତୀକୂଳେ ଯାଅ
ଯାଗ କରିବେ ସେଥିରେ ଦଶରଥଙ୍କ ପୁଅ ।
ଦୁଃଖୀ ଲୋକମାନେ ତହିଁ ଧନ ମାଗି ନିଅ
ଥିଲା ଲୋକମାନେ ସର୍ବେ ଯାଗ ଦେଖି ଯାଅ ।
ଏମନ୍ତ ବୋଲି ବାଜା ବଜାଇ ଡାକିଲା
ଶ୍ରୀରାମ ମୁଖକୁ ଦର୍ଶନ ଯାଇ କଲା ।
ସାମନ୍ତ ପାତ୍ର ମନ୍ତ୍ରୀ ଡକାଇ ରାମ ପୁଣ
ବୋଇଲେ କୁଟୁମ୍ବ ଘେନି ଯାଅ ଯଜ୍ଞସ୍ଥାନ ।
ତିନିଭାଇଙ୍କି ବୋଇଲେ ଚଳରେ ଉଦ୍‌ବେଗ
ଆସନ୍ତା ଲୋକମାନଙ୍କୁ ଚରଚ କର ବେଗ
ଋଷିମାନଙ୍କୁ ମଢ଼ିଆ ରାଜା ପାତ୍ରଙ୍କୁ ନବର
ବଶିଷ୍ଠଙ୍କୁ ଘେନି ଚଳିଲେ ସେଠାବର ।
ଶ୍ରୀରାମ ମାରୁତିକି ସଙ୍ଗତରେ ଘେନି ଶୁଣ
ଭୂଷଣ ଅଶ୍ୱଗୋଟି ନେଲେ ସେ ସଙ୍ଗେଣ ।
ପୁଷ୍ପକ ଯାନରେ ଯାଇଁ ବେଗେ ସେ ବସିଲେ
ସମୁଦ୍ର ଭିତରକୁ ମାତେଳି ବାହିଁନେଲେ ।
ବରୁଣର ପୁରରେ ହେଲେ ପରବେଶ
ତତକ୍ଷଣେ ବରୁଣ ଆସିଲେ ରାମ ପାଶ ।

ବୋଇଲେ ଯାଗ ଯେ କରିବୁଁ ଆମ୍ଭେ ପୁଣ
ଘୃତସମୁଦ୍ରରୁ ଘୃତ ଦେବ ହେ ଆପଣ ।
ବାର ବରଷ ପର୍ଯ୍ୟନ୍ତ ନିରୋଧ ନ କରିବ
ଏତେ କହି ସେଠାରୁ ଚଳିଲେ ରାଘବ ।
ପୂର୍ବ ଦିଗଯାକ ଯେ ଘୋଡ଼ା ଘେନି ବୁଲି
ବଳିଷ୍ଠ ଲୋକ ସେଥିରେ ନ ଦେଖି ରଥଧାରୀ ।
ସମସ୍ତଙ୍କୁ ଚନ୍ଦନ ଗୁଆ ପାନ ଦେଲେ
ଗୋମତୀ କୂଳକୁ ତୁମ୍ଭେ ଚଳିବ ବୋଇଲେ ।
ଆମ୍ଭେ ଯାଗ ସେଠାରେ କରୁଅଛୁଁ ପୁଣ
ଶୁଣିଣ ରାଜାମାନେ ସନ୍ତୋଷ ହେଲେ ପୁଣ ।
ଅଶ୍ୱ ଫେରାଇ ଆସନ୍ତି କୋଦଣ୍ଡ ରଥଧାରୀ
ସମନିକ ପୁରେ ପ୍ରବେଶ ଆସି କରି ।
ସମନିକ ରାଜ୍ୟ ଯେ ଅନେକ ବିସ୍ତାର
କଟକକ୍ଷା ବୋଲିଣ ନବର ଅଟେ ବଡ଼ ।
ଶମ୍ଭୁ ରାଜାର ନାତି ଯେ ଅଟଇ ସୁରଶମ୍ଭ
ପ୍ରତାପି ଅସୁର ସେହି ବଳରେ ସୁରଇନ୍ଦ୍ର ।
ଦେବ ଅସୁର ଯେ ନର ବାନର ଜାଣ
କାହାକୁ ନ ମାନଇଁ ପ୍ରତାପିସୁର ଜାଣ ।
ଶ୍ରୀରାମଚନ୍ଦ୍ର ଘୋଡ଼ାକୁ ଦେଖିଣ ଓଗାଳିଲା
କେଉଁ ଦେଶର ରାଜା ତୁ ବୋଲିଣ ପଚରିଲା ।
ଶ୍ରୀରାମ ବୋଇଲେ ମୁଁ ଅଯୋଧ୍ୟା ଠାକୁର
ଯାଗ କରିବା ନିମନ୍ତେ ବୁଲୁଛି ଦେଶାନ୍ତର ।
କିଏ ଅବା ମୋର ସଙ୍ଗେ କରିବ ସମର
ଜମ୍ବୁଦ୍ୱୀପ ବୁଲିଣ ମୁଁ ନ ପାଇଲି ବୀର ।
ସୁରଶମ୍ଭୁ ବୋଇଲା ମୋ ସଙ୍ଗେ କର ରଣ
ମୋତେ ଜିଣିଲେ ଯାଗ କରରେ ଯାଇଣ ।
ନୋହିଲେ ତୋ ଯାଗ ମୁଁ କରିବି ରଣଭଣ
ବୀରବର ବାନା ତୋର ଛଡ଼ାଇ ନେବି ଜାଣ ।
ଶୁଣି କରି ରାମ ଯେ ବୋଇଲେ ଚଢ଼ ଯାନ
ଗୃଧ୍ର ଶୃଗାଳ ମନ୍ତ୍ରୀଙ୍କି ଡାକିଲା ଦୈତ୍ୟରାଣ ।
ଅଦୃଶ୍ୟ ଯାନରେ ଯେ ଯାଇଣ ବସିଲା
ଧନୁଶର ନାରାଜ କରରେ ଧଇଲା ।
ଦେଖିଣ ଶ୍ରୀରାମ ଅଶ୍ୱକୁ ଘେନିଗଲେ
ରଥର ଉପରେ ନେଇଣ ସାଇତିଲେ ।
ଶାରଙ୍ଗ ଧନୁ କରେ ଧଇଲେ ରାମରାଣ
ରଥପରେ ବସିଣ ଟଙ୍କାରିଲେ ପୁଣ ।

ଦେଖି କରି ଅସୁର ପାଞ୍ଚବାଣ ମାରି
ଅନୁଜ ଶରେ ତାହା ଶ୍ରୀରାମ ନିବାରି ।
କୁହୁକ ଶର ଯେ ଅସୁର ବିନ୍ଧେ ଟାଣି
ରବିଶର ମାରନ୍ତେ ପଳାଇ ଗଲା ପୁଣି ।
ଦେଖିକରି ଅସୁର ଯେ ପର୍ବତାଶର କଲେ
ପବନାଶରେ ଶ୍ରୀରାମ ଉଡ଼ାଇଣ ଦେଲେ ।
ଅଗ୍ନିଶର ମାଇଲା ଯେ ଦୈତ୍ୟ କରି କୋପ
ଜଳଶରେ ନିବାରଣ କଲେ ରାମନୃପ ।
ଦେଖିଣ ବ୍ରହ୍ମଶର ଅସୁର ବିନ୍ଧିଲା
ନାରାୟଣ ଶରେ ନିବାରେ କଉଶଲ୍ୟା ବଳା ।
ବଜ୍ରଶର ଅସୁର ମାରେ କୋପକରି
ବାବଳ ଶରରେ ତାହା ଶ୍ରୀରାମ ନିବାରି ।
ସମର ଦେଖିଣ ଯେ ସୈନ୍ୟବଳ ଆସି
ବାରଗଣ୍ଡା କୁମର ଯେ ପନ୍ଦରପଣ ନାତି ।
ତେରଗୋଟି ସେନାପତି ଶତକୋଟି ରଥୀ
ବତିଶ କ୍ଷଉଣୀ ବଳ ପ୍ରବେଶ ହେଲେ ଆସି ।
ଚଉଦ ପୂଣ ପର୍ଯ୍ୟନ୍ତେ ହେଲେ ଦୈତ୍ୟଛାଇ
ଅସୁରଙ୍କର ମଧ୍ୟରେ ସୀତାପତି ଥାଇ ।
ଶ୍ରୀରାମ ବୋଇଲେ ହେ ହନୁମନ୍ତ ଶୁଣ
ନିର୍ଭୟ ହୋଇଣ ଯେ ମାର ତୁରେ ସୈନ୍ୟ ।
ରାମଚନ୍ଦ୍ରଙ୍କ ଆଜ୍ଞାରେ ହନୁ ରଥରୁ ଓହ୍ଲାଇ
ରଥ ଧରି ରଥର ଉପରେ କଚାଡ଼ଇ ।
କାଣ୍ଡ ଖଣ୍ଡା ଶାବେଳୀକି ନ ମାନଇ ବୀର
ରଥୀଙ୍କି ମାରିଣ ରଥ କରେ ନାରଖାର ।
ଦେଖିକରି ଶ୍ରୀରାମ ଯେ ଭେଦିଲେ ମନଭେଦୀ
ବାରଗଣ୍ଡା କୁମରଙ୍କୁ ପକାଇଲେ ଛେଦି ।
ଛଡ଼କୋଟି ରଥୀ ଯେ ହନୁମନ୍ତ ମାରି
ଅନ୍ଧକାର ରଜନୀ ଯେ ଘୋଟିଲା ତିମିରି ।
ଅନ୍ଧାରେ ହନୁମନ୍ତ ବିକ୍ରମ ମୂର୍ତ୍ତି ଧରି
ସେନାପତିମାନଙ୍କୁ ମାଇଲା ଧରିକରି ।
ଯେମନ୍ତେ ରମ୍ଭାବନେ ପଶଇ ମତ୍ତହସ୍ତୀ
ମାଇଲା ଅସୁରଙ୍କୁ ପଡ଼ିଲେ ମହୀଲୋଟି ।
ରଜନୀ ଶେଷହେଲେ ଉଦୟ ଦିନମଣି
ରଥୀ ସେନାପତିଙ୍କ ହନୁ ମାରଇ କ୍ରୋଧେପୁଣି ।
ଦେଖିଣ ଶ୍ରୀରାମ ଯେ ମନଭେଦୀ ମାରି
ଶରକୁ ଛାଡ଼ିଦେଲେ ମନ୍ତ୍ରକୁ ସୁମରି ।

ଏକାଶର ଗୋଟି ଯେ ଅନେକ ଶର ହେଲା
ପନ୍ଦରପଣ ନାତିଙ୍କି ଛେଦି ପକାଇଲା ।
ଦେଖିକରି ଅସୁର ବିରସଇ ମନ
ମୋର ବଂଶ ନିର୍ମୂଳ ଏବେ ହେଲେପୁଣ ।
ଏମନ୍ତ ସମୟେ ଶ୍ରୀରାମ ଅକ୍ଷୟେ ତ୍ରୋଣଧରି
ମାରନ୍ତେ ଶ୍ରୀରାମ ଯେ ସୈନ୍ୟବଳ ମାରି ।
ଅକ୍ଷୟେ ତ୍ରୋଣରୁ ଶର ଚଳେ ଘନ ଘନ
ବତିଶ କ୍ଷଉଣୀବଳ ମାରିଲେ ରାମାୟଣ ।
ଦଶଘଡ଼ି ସମୟରେ ଅସୁରବଳ ମଲେ
ରଣ ଛାଡ଼ ହନୁମନ୍ତ ମିଳିଲା ରଥରେ ।
ଯେତେକ ସୈନ୍ୟ ସେଥିରୁ ଉବୁରିଣ ଥିଲେ
ପଳାଇ ଯାଇଣ ନିଜ ନଗ୍ରରେ ପଶିଲେ ।
ବହିଲା ରକତ ନଦୀ ବଦଳ ପାଣି ପ୍ରାୟେ
ଚିତ୍ର ଉତ୍ପଳାରେ ଯେ ରୋଧିର ଯାଇହୋଏ ।
ଚିତ୍ର ଉତ୍ପଳା ନଦୀ ଯେ ବଢ଼ିଲା ସ୍ରୋତଟାଣ
ଗୋରୁ ମଇଁଷୀ ନର ବାନର ଭାସିଗଲେ ଜାଣ ।
ନାବ କାଠ ସଙ୍ଗରେ ମଡ଼ା ଭାସି ଯାଇ
ଶତେଯୂଣ ସେ ନଦୀରୁ ସମୁଦ୍ରେ ହୋଏଯାଇଁ ।
ଦୁଇକୂଳ ଲୋକେ ଦେଖି ଆଶ୍ଚର୍ଯ୍ୟିତ ହେଲେ
ଖରାକାଳେ ରୋଧିର ନଦୀ ବହିଲା ବିରସିଲେ ।
କବନ୍ଧ ନାଚନ୍ତି ଯେ ଖେଚରୀ କଲେ ଲୀଳା
ଶ୍ୱାନ, ଶୃଗାଳ, ଗୃଧ୍ରପକ୍ଷୀ ହୋନ୍ତି ମେଳା ।
ଦେଖିକରି ଅସୁର ଗର୍ଜନ୍ତି ଘନ ଘନ
ଶୂନ୍ୟରେ ଯାନକୁ ହେ ଟେକିଲେ ଦୈତ୍ୟରାଣ ।
ସ୍ୱର୍ଗପୁର ଭିତରେ ଯାଇଣ ପଶିଲା
ଦିବସ ରଜନୀରେ ସେ ସେପୁରେ ଯୁଦ୍ଧକଲା ।
ଦେବତାଏ ଡରିଣ ପଳାନ୍ତି ସ୍ୱର୍ଗଛାଡ଼ି ପୁଣ
ଶ୍ରୀରାମର ଯାଗଠାରେ ପ୍ରବେଶ ସୁରଗଣ ।
ଶ୍ରୀରାମଙ୍କ ତିନିଭାଇ ଯେ ସେଠାବରେ ଥିଲେ
ଦେବତାଙ୍କୁ ଦେଖିଣ ମାନ୍ୟଧର୍ମ କଲେ ।
ଦେବତାଏ ବୋଇଲେ ଆମ୍ଭେ ଯାଉଛୁସ୍ୱର୍ଗପୁର
ଲକ୍ଷ୍ମଣ ବୋଇଲେ କାହାକୁ ଭୟ ଯେ ତୁମର ।
ଏମନ୍ତ ସମୟରେ ଦିଗପାଳ ବ୍ରହ୍ମା ରୁଦ୍ର
ପିତୃ ଅଷ୍ଟବସୁ ମିଳେ ଜାଣି ବେଗ ।
ଦେବେବୋଇଲେସୁରଦୈତ୍ୟଶ୍ରୀରାମସଙ୍ଗରେଣ
ବାଣ ଗୁଣ ଟଙ୍କାରରେ କମ୍ପିଲା ସ୍ୱର୍ଗଜାଣ ।

ଏମନ୍ତ ସମୟରେ ସୁଧର୍ମା ସଭା ମିଳି
ସଭାପରେ ଦେବତାଏ ବସିଲେ ଯାଇକରି ।
ସ୍ୱର୍ଗରୁ ଦେବଋଷି ଅଇଲେ ଓହ୍ଲାଇ
ଗୋମତୀ କୂଳେ ପ୍ରବେଶ ହେଲେ ସର୍ବେ ଯାଇଁ ।
ଶ୍ରୀରାମଙ୍କ ସଙ୍ଗେ ଦୈତ୍ୟ ଯୁଦ୍ଧ କରୁଥିଲା
ସ୍ୱର୍ଗରୁ ମର୍ତ୍ତପୁରେ ଆସିଣ ମିଳିଲା ।
କାଶୀ ବାରଣାସୀ ଗିରିଜା ମଣ୍ଡଳ
ହସ୍ତୀନା, ଦ୍ୱାରକା, ନୀଳଗିରି ସୀମାଞ୍ଚଳ ।
ଏତେ ଯାଗା ବୁଲିଣ ଅଯୋଧ୍ୟା ପୁରେ ମିଳି
ଶ୍ରୀରାମର ସିଂହଦ୍ୱାରେ ଲଗାଇଲେ କଳି ।
ସେଠାରୁ ପଳାଏ ଦୈତ୍ୟ ଶ୍ରୀରାମ ଗୋଡ଼ାଇ
ସୁଗ୍ରୀବର ସିଂହଦ୍ୱାରେ କଳି କଲେ ଯାଇଁ ।
ଜଗତୀପରେ ଥାଇ ସୁଗ୍ରୀବ ଦେଖିଲେ
ଶ୍ରୀରାମଙ୍କ ସଙ୍ଗେ ଦୈତ୍ୟ ଯୁଦ୍ଧ କରେ ଭଲେ ।
ସେଠାବରୁ ଦୈତ୍ୟ ଯେ ପଳାଏ ଖରତରେ
ପାତାଳ ପୁରରେ ଯେ ମିଳେ ଦୈତ୍ୟବୀରେ ।
ବଳିର ଦୁଆରେ ସେ ଦୁହେଁ କଲେ ରଣ
ବଇଲୋଚନ ପୁତ୍ର ଦେଖିଲାକ ଜାଣ ।
ସେଠାରୁ ପଳାଇଲା ବେଗେ ଦୈତ୍ୟବୀର
ଯେନାମଣି ପାଟଣାରେ ମିଳିଲା ସତ୍ୱର ।
ରହି ନ ପାରିଣ ଯେ ହିରଣ୍ୟ ଗର୍ଭ ଗଲା
ସେଠାରେ ଶ୍ରୀରାମ ସଙ୍ଗେ ଅନେକ ଯୁଦ୍ଧକଲା ।
ସେଠାରୁ ଲଙ୍କାଗଡ଼ରେ ହେଲା ପରବେଶ
ଶ୍ରୀରାମ ସଙ୍ଗରେ ଯୁଝେ ଶମ୍ଭୁ ଦୈତ୍ୟ ଶିଷ୍ୟ ।
କାଣ୍ଡରଡ଼ି ଶୁଣି ବିଭୀଷଣ ମନ୍ଦୋଦରୀ
ଦେଖିଲେ ଶ୍ରୀରାମ ଶମ୍ଭୁ ଦୈତ୍ୟସଙ୍ଗେଯୁଦ୍ଧକରି ।
ବିଚାରିଲେ ଅସୁର ନିଶ୍ଚୟେ ଏବେ ମଲା
ସେଠାବରୁ ଅସୁର ବହନ ପଳାଇଲା ।
ଆପଣାର ରାଜ୍ୟରେ ହେଲା ପରବେଶ
ରଣ କରଇ ସେ ଶମ୍ଭୁ ଦୈତ୍ୟ ଶିଷ୍ୟ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ପାତାଳପୁର ଋଷି ଜମ୍ନେବଯାଗ ଭୂମିରେମିଳି ।
ଗୋମତୀ ନଦୀକୂଳେ ଯାଗ ଶାଳେ ହେଲେ
ଲକ୍ଷ୍ମଣ ତାହାଙ୍କୁ ଆସି ଚରଚା କଲେ ।
ଲକ୍ଷ୍ମଣଙ୍କୁ ପଚାରିଲେ କେହୁକଲେ ଯାଗ
ସଉମିତ୍ରୀ ବୋଇଲେ ଏ ଶ୍ରୀରାମଙ୍କ ଭାଗ ।
ପର୍ଶୁରାମ ବୋଇଲେ ସେ ଅସୁର ସଙ୍ଗେ ଯୁଝି
ଲକ୍ଷ୍ମଣ ବୋଇଲେ ସେ ଅଶ୍ୱ ଲାଗି ରାଗୀ ।
ଏମନ୍ତ ସମୟରେ ମିଳିଲେ ରାଜାଗଣ
ବୋଇଲେ ଦୈତ୍ୟ ସଙ୍ଗେଯୁଦ୍ଧ କରନ୍ତି ରାମରାଣ ।
ସଉମିତ୍ରୀ ବୋଇଲେ ସେ ପୂର୍ବଦିଗକୁ ଗଲେ
ଲକ୍ଷଣବନ୍ତ ଘୋଡ଼ାକୁ ସଙ୍ଗରେ ନେଇଥିଲେ ।
ଅସୁର ଓଗାଳିବାରୁ କରନ୍ତି ରାମ ରଣ
ଏମନ୍ତ ସମୟରେ ମିଳିଲେ ଋଷିଗଣ ।
ବୋଇଲେ ଶ୍ରୀରାମତ ଅଟନ୍ତି ବାସୁଦେବ
ଏ ସମୟରେ ମିଳିଲେ ବାଲ୍ମୀକି ଋଷି ଦେବ ।
ଅଗସ୍ତି ଋଷ୍ୟଶୃଙ୍ଗ ମିଳିଲେ ସମସ୍ତ
ଦେଖି ଶ୍ରୀରାମଙ୍କୁ ଅନେକ ପ୍ରଶଂସା କରନ୍ତିତ ।
ଏହି ସମୟରେ ବାନର ଭାଲୁ ମିଳେ
ସୁଗ୍ରୀବର ଅଙ୍ଗଦ ଆସିଣ ମିଳିଲେ ।
ଶତ୍ରୁଘନ ସେମାନଙ୍କୁ ବିଧିରେ ଚରଚିଲା
ଉପଯୁକ୍ତ ସ୍ଥାନରେ ତାହାଙ୍କୁ ରଖାଇଲା ।
ଏମନ୍ତ ସମୟେ ପାଞ୍ଚଲଙ୍କା ଅଧିପତି
ବିଭୀଷଣ ସହିତେ ପ୍ରବେଶ ହେଲେ ସେଥି ।
ଦେଖିଣ କୈକେୟୀ ଯେ ତାହାଙ୍କୁ ଚରଚିଲା
ପାତ୍ର ମନ୍ତ୍ରୀଙ୍କି ନବର ରାଜାଙ୍କୁ ଉଆସ ହେଲା ।
ଋଷିଙ୍କି ନିର୍ମଳ ନବର ଠାବ ଦେଲେ
ସୈନ୍ୟବଳ ସମସ୍ତେ ଛାମୁଣ୍ଡିଆରେ ରହିଲେ ।
କପିମାନଙ୍କୁ ଫଳ ମୂଳ ଦିଆଇଲେ
ଦୁଃଖୀ ଦରିଦ୍ରଙ୍କୁ ଯତନେ ରଖାଇଲେ ।
ତିନିପୁର ଜନମାନେ ଠୁଳ ହେଲେ ପୁଣ
ଅଠର ଯୁଗ ଘେରି ରହିଲେ ଆୟେତନ ।
ବଶିଷ୍ଠ ସୁରଭୀଙ୍କି ଚାହିଁଣ ଆଜ୍ଞାଦେଲେ
ଯେ ଯାହା ମନାସଇ ଦିଅ ଗୋ ବୋଇଲେ ।
ବଶିଷ୍ଠଙ୍କ ବୋଲରେ ସୁରଭୀ କାମରୂପୀ
କୋଟିଏ ବଜାର ଦୋକାନରେ ସେ ବ୍ୟାପି ।
ଯେ ଯାହା ଲୋଡ଼ନ୍ତି ଯେ ଦିଅନ୍ତି ତାଙ୍କୁ ପୁଣ
ନେଇଣ ସର୍ବଜନେ ତୋଷ ହେଲେ ଜାଣ ।
ରାଜ୍ୟର ନରନାରୀ ରୁଣ୍ଡ ହେଲେ ଯେ ସେଠାରେ
ସାମନ୍ତ ପାତ୍ର ମନ୍ତ୍ରୀଙ୍କ ଘରଣୀମାନେ ଗଲେ ।
ଏଥୁ ଅନନ୍ତରେ ଯେ ପାର୍ବତୀ ପଚାରି
ଅସୁର ସଙ୍ଗେ କିସ କଲେ ଚାପଧାରୀ ।

ଈଶ୍ୱର ବୋଇଲେ ସେ ଅନେକ ରଣ କଲେ
ତିନିପୁର ଚଉଦ ଭୁବନ ବୁଲିଲେ ।
ଶମନ ନାମେ ପୁର ଅଟଇ ଦୈତ୍ୟର
ଆପଣାର ରାଜ୍ୟେ ରଣ କରଇ ଅସୁର ।
ବାଆନେ ଥର ତାର ଶ୍ରୀରାମ ମୁଣ୍ଡକାଟି
କେବେହେଁ ନ ମରେ ସେ ଶମ୍ଭୁସୁର ନାତି ।
ଦେଖିଣ ଶ୍ରୀରାମ ଯେ ତ୍ରିଶୂଳ ଧରିକରେ
ଦଶଭୁଜା ଦୁର୍ଗାରୂପୀ ହୋଇଲେ ସେଠାରେ ।
ଅସୁର ବକ୍ଷସ୍ଥଳରେ ତ୍ରିଶୂଳ ଧରିମାରି
ବୁକୁ ଫାଟି ଅସୁର ପଡ଼ିଲାକ ଢଳି ।
ଦେଖିଣ ଶ୍ରୀରାମ ଯେ ଆନନ୍ଦ ହୋଇଲେ
ଧନ୍ୟରେ ଅସୁରରେ ବୋଲିଣ ପ୍ରଶଂସିଲେ ।
ଦେଖିଣ ଅସୁର ବଳ ପଳାଇଲେ ସର୍ବେ
ଯେ ଯାହାର ଆୟୁଧମାନ ଧରିଛନ୍ତି ସର୍ବେ ।
ସମୁଦ୍ରର ଭିତରେ ମଂଶାସୁରର ପୁର
ସେଠାରେ ସମସ୍ତେ ମିଳିଲେ ସତ୍ୱର ।
ନବର ହେଲା ତୁଚ୍ଛା ନ ରହିଲେ କେହି
ନର ଲୋକମାନେ ଶ୍ରୀରାମଙ୍କୁ ଓଳଗନ୍ତି ଯାଇଁ ।
ପାତ୍ର, ମନ୍ତ୍ରୀ, ସାମନ୍ତ ସେନାପତି ରଥୀ
ନୂଆକରି ସେ ରାଜ୍ୟରେ ସେମାନଙ୍କୁ ସ୍ଥାପି ।
ବୋଇଲେ ତୁମ୍ଭେ ଯାଇଁ କଟକ ବସ୍ତିକର
କାହାରି ପଦାର୍ଥ କେହି ନ କରିବେ ପୁର ।
ଦେଶ ଭାଙ୍ଗି ଆଣିଣ କଟକ କର ଉଜ
ହନୁମନ୍ତଙ୍କୁ ବୋଇଲେ ବରଷେ ରହି ବୁଝ ।
ବାର ବରଷ ଯାଗ ଯେ ଅନୁକୂଳ ମୋର
ସମୟ ନାହିଁ ଏଥିରେ ରହିବାକୁ ବୀର ।
ପାତ୍ର ମନ୍ତ୍ରୀ ଯାଇଣ ନିଉନ ଲୋକ ଆଣି
ରଣଭୂମି ଗୋଟାକୁ ନିର୍ମଳ କଲେ ପୁଣି ।
ସେ ନଗର ନିର୍ମଳ ଦାଣ୍ଡ ପରିମଳ
ଦୋହୋରି ଥିଲା ଲୋକେ ରହେ ଅସୁରଙ୍କଘର ।
ଅନେକ ପଦାର୍ଥ ଯେ ଅସୁରେ ରଖିଥିଲେ
ନରଲୋକେ ରହିଣ ସେ ଦ୍ରବ୍ୟ ଭୋଗ କଲେ ।
ରାଜାର ଭଣ୍ଡାରେ ଯେ ଶ୍ରୀରାମ ପାଶେଯାଇ
ଲକ୍ଷେକ ଭଣ୍ଡାର ଜଉ ମୁଦିଣ ଅଛି ତହିଁ ।
ଦୁଇସସ୍ର ଭଣ୍ଡାର ସେଥିରେ ମେଲାଅଛି
ସେ ଭଣ୍ଡାରକୁ ମୁଦ କରାଇଲେ ରଘୁବସି ।
ଦୁଇକକ୍ଷ ରତ୍ନଘର ହୀରାରେ ନିବାଡ଼
ଜଗତୀ କରିଅଛି ବାହାର ଭିତର ।
କୂଅ ବାମ୍ପୀ ପୋଖରୀ ପରିମାଣ ନାହିଁ
ଅନେକ ଜାତିରେ ଯେ ବୃକ୍ଷ ଅଛି ତହିଁ ।
ଫଳଭରେ ଡାଳମାନେ ଭୂମିରେ ଆସି ଲାଗି
ବନ ବୁଲି ଶ୍ରୀରାମ ଅଇଲେକ ବେଗି ।
ମାରୁତିକି ଘେନିଣ ଯେ ନାରଦ ସୁମରି
ଯାଗଶାଳାଠାରେ ନାରଦ ଜାଣିପାରି ।
ଶ୍ରୀରାମଙ୍କ ନିକଟରେ ପ୍ରବେଶ ମୁନିବର
ମନ ପବନ କଠାଉ ଲାଗିଛି ପୟର ।
ମୁନିଙ୍କି ଦେଖି ରାମ ବୋଲନ୍ତି ଉତ୍ତର
ଭୋ ମୁନି ପୁରକୁ ପବିତ୍ର ବେଗେ କର ।
ନାରଦ ମୁନି ସେ ନବର ପବିତ୍ର କରାଇଲେ
ସେଠାରେ ଫଳମୂଳ ନାରଦ ଭୁଞ୍ଜିଲେ ।
ସୁପକାର ଆସିଣ ରାନ୍ଧଣା ବିଧି କଲା
ଷଡ଼ରସେ ଭୋଜ୍ୟକଲେ କଉଶଲ୍ୟା ବଳା ।
ମାରୁତି ମାତେଳି ଯେ ଭୋଜନ ପାଇଁ କଲେ
ଶ୍ରୀରାମ ନାରଦଙ୍କୁ ସେଠାରେ ପଚ୍ଛରିଲେ ।
ବୋଇଲେ ଦୁଷ୍ଟ କି ଅଛନ୍ତି ଆଉ ପୁଣ
ନାରଦ ବୋଇଲେ ଦୁଷ୍ଟ ଏଠାରୁ ସରେ ଜାଣ
ତିନିପୁର ଚଉଦ ଭୁବନ ଦୁଷ୍ଟ ମଲେ
ଅସୁର କ୍ଷୟ କଲ ଧରଣୀ ସ୍ଥିର ହେଲେ ।
ଶୁଣିଣ ଶ୍ରୀରାମ ସେ ପୁରେ ମାରୁତିକି ରଖି
ନାରଦଙ୍କୁ ଘେନିଣ ଅଯୋଧ୍ୟା ଲେଉଟି ।
ଦେଖିଲେ ନବର ଯେ ହୋଇଅଛି ତୁଚ୍ଛା
ବିଚ୍ଛରିଲେ ଯାଗକୁ ସମସ୍ତେ କଲେ ଇଚ୍ଛା ।
ନିଜ ନବରରେ ଯେ ହେଲେ ପରବେଶ
ଚରଣ ଧୋଇଦେଲେ ମାୟା ସୀତା ବିଶେଷ ।
ଝୀନ ବସନରେ ଚରଣ ପୋଛି ଦେଲା
ଜାନକୀ ଆସିଣ ଯେ ଓଳଗି ହୋଇଲା ।
ଦେଖିଣ ଶ୍ରୀରାମ ଯେ ହସି କହେ ବାଣୀ
ସାନପୁଅ କୁଶ ପାଇଁ ଅର୍ଜିଲୁଁ ରାଜ୍ୟ ପୁଣି ।
ଏମନ୍ତ ସମୟରେ ଅଷ୍ଟ ପୁଅ ମିଳି
ଶ୍ରୀରାମଙ୍କ କୋଳରେ ବସିଲେ ହୋଇ ମିଳି ।
ପୁତ୍ରମାନଙ୍କୁ ଘେନିଣ ଭୋଜନ ସେ କଲେ
ସୀତୟାଙ୍କୁ ଘେନିଣ ରଜନୀ ବଞ୍ଚିଲେ ।

ରଜନୀ ଶେଷରେ ସମସ୍ତ ମାତା ଘେନି
ଜାନକୀ ସହିତେ ଅଷ୍ଟପୁତ୍ର ଘରି ଭଗ୍ନୀ ।
ପୋଇଲୀ ପରିବାରୀ ଦାସୀ ଧାଇ ମାତ
ଘେନିକରି ଶ୍ରୀରାମ ଚଳିଲେ ତୁରିତ ।
ଗୋମତୀ କୂଳରେ ଯେ ହେଲେ ପରବେଶ
ସମସ୍ତଙ୍କୁ ନବରେ ରଖିଲେ ନେଇତ ।
ଋଷିମାନଙ୍କୁ ଯାଇଣ ନମସ୍କାର କଲେ
ଦେବତାମାନଙ୍କୁ ଯେ ଓଳଗି ମେଳାଇଲେ ।
ପିତୃଲୋକମାନଙ୍କୁ ମାନ୍ୟଧର୍ମ କଲେ
ରାଜାମାନେ ଆସିଣ ଦରଶନ କଲେ ।
ଅନେକ ଦ୍ରବ୍ୟ ସେ ଯେ ଆଣିଥିଲେ ପୁଣ
ଭଣ୍ଡାରେ ରଖାଇଲେ ନେଇ ରାମରାଣ ।
ବାନର ଭାଲୁ ଯେ ଆସିଣ ଦେଖାଦେଲେ
ଦେଖିକରି ଶ୍ରୀରାମ ସନ୍ତୋଷ ହୋଇଲେ ।
ଆଠ ନବର ପାତ୍ରମନ୍ତ୍ରୀ ପରବେଶ
ଆଠ ନବରୁ ଅଇଲେ ବ୍ରାହ୍ମଣ ଆଠଲକ୍ଷ ।
ସେ ଦିନ ସେଠାରେ ଯେ ରହିଲେ ରାମରାଣ
ଘରି ମେଘ ମିଶି ମିଳିଲେ ସେହିସ୍ଥାନ ।
ସେଦିନ ରଜନୀ ଯେ ସେଠାରେ ବଞ୍ଚିଲେ
ନବରେ ଘରିଭାଇ ଭୋଜନ ଯାଇ କଲେ ।
ଆଞ୍ଚୋବନ ସାରିଣ ଭୁଞ୍ଜିଲେ ତାମ୍ବୁଳ
ଶ୍ରୀରାମର ଦୁଇ ପୁତ୍ର ଭରତର କୋଳ ।
ଭରତର ଦୁଇପୁତ୍ର ଲକ୍ଷ୍ମଣ କୋଳେ ବସି
ଶତ୍ରୁଘନ କୋଳରେ ଲକ୍ଷ୍ମଣ ପୁତ୍ର ବସି ।
ଶତ୍ରୁଘନ ଦୁଇପୁତ୍ର ଲକ୍ଷ୍ମଣ କୋଳେ ବସେ
ଦେଖିକରି ରାମ ଯେ ବହୁତ ହରଷେ ।
ଏମନ୍ତ ସମୟରେ ମିଳିଲେ ମାତାଗଣ
ଦେଖିକରି ଘରିଭାଇ କଲେ ତାଙ୍କୁ ମାନ୍ୟ ।
କଉଶଲ୍ୟା କୈକେୟୀ ସୁମିତ୍ର କଳାବତୀ
ବୋଇଲେ ଶ୍ରୀରାମ ହେ ଶୁଣ ଆମ୍ଭ ଗତି ।
ଆଖିକି ନ ଦିଶଇ କର୍ଣ୍ଣକୁ ନ ଶୁଭଇ
କୋଡ଼ିଏ ସସ୍ର ବରଷ ଭୋଗ କଲ ରହି ।
ଘରି ବଧୂ ଅଷ୍ଟନାରୀ ଦେଖିଲୁଁ ନେତ୍ରରେ
ଭାଗୀରଥୀ ସମାନେ ପୁତ୍ର ମିଳିଲେ ଆମ୍ଭରେ
ଆମ୍ଭେ ସନ୍ତୋଷରେ ତୁମ୍ଭଙ୍କୁ ମାଗୁଅଛୁ ଜାଣ
ଆମ୍ଭ ବଚନ ତୁମ୍ଭେ ନ କରିବଟି ଆନ ।

ଦେବତାଙ୍କୁ କହି ଆମ୍ଭଙ୍କୁ ପିତାଙ୍କ ସଙ୍ଗେ ଦିଅ
ସ୍ୱର୍ଗରେ ବସାଇ ଆମ୍ଭଙ୍କୁ ନିଶ୍ଚିନ୍ତ ହୋଇଥାଅ ।
ଶ୍ରୀରାମ ବୋଇଲେ ମୋର ଏକଥା ଅଟେ ମୂଳ
ଯାଗ ସରିଲେ ତୁମ୍ଭେ ଯିବ ସ୍ୱର୍ଗପୁର ।
ସ୍ୱଦେହ ଘେନିଣ ପିତାଙ୍କ ସଙ୍ଗେ ଯିବ
ଅଚିନ୍ତା ବଇକୁଣ୍ଠରେ ନିଷ୍ଚିନ୍ତେ ବସିବ ।
ଶୁଣିଣ ମାତାମାନେ ସନ୍ତୋଷ ହୋଇଲେ
ଯେ ଯାହା ନାତି ଘେନି ଆପଣା ପୁରେ ଗଲେ ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ଦେବତାଙ୍କୁ ପୂଜା କଲେ ଯାଇଣ ଦାଶରଥୀ ।
ଧୂପ ଦୀପ ଗନ୍ଧ ଯେ ଚନ୍ଦନ ଦେଲେ ଜାଣ
ନାନା ବର୍ଣ୍ଣେ ପୁଷ୍ପ ଦେଇ କଲେକ ବରଣ ।
ଦେବଋଷି, ବ୍ରହ୍ମଋଷି, ରାଜଋଷି ଜାଣ
ସିଦ୍ଧଋଷି, ନାଗଋଷି, ଶୁଦ୍ରଋଷି ଗଣ ।
ଏମାନଙ୍କୁ ଧନରତ୍ନ ଦେଇ ପୂଜା କଲେ
ବିନୀତ ହୋଇଣ ରାମ ତାହାଙ୍କୁ କହିଲେ ।
ଲକ୍ଷେକ ରାଜାଙ୍କୁ ସେ ଦେଲେକ ଅକ୍ଷତ
ଶ୍ରୀରାମ ବୋଇଲେ ତୁମ୍ଭେ ଅଟ ପୁରୁଷାର୍ଥ ।
ତୁମ୍ଭର ସୁପକ୍ଷରେ ଯାଗ ମୁଁ କରଇ
ମୋତେ ସାହା ହୁଅ ହେ ନୃପତି କୁଳସାଇଁ ।
ଶୀତଳ କଥା କହିଣ ରାଜାଙ୍କୁ ତୋଷିଲେ
ଦରିଦ୍ର ଲୋକଙ୍କୁ ସେ ଧନ ରତ୍ନ ବିଳୋହିଲେ ।
ବିପ୍ରବରମାନଙ୍କୁ ଅନେକ ଦାନ ଦେଲେ
ମାଗନ୍ତା ଲୋକଙ୍କୁ ସେ ବହୁଧନ ଦେଲେ ।
ସମସ୍ତଙ୍କୁ ତୋଷ କରାଇଣ ଦାଶରଥୀ
ଯାଗଶାଳାରେ ଯାଇଁ ପ୍ରବେଶ ହୁଅନ୍ତି ।
ଆଚାର୍ଯ୍ୟରେ ବରଣ କଲେ ଅଗସ୍ତିଙ୍କି
ଚରଣ ବରଣ କଲେ ମାର୍କଣ୍ଡ ଋଷିଙ୍କି ।
ସମିଧ ବରଣ ଯେ ସପତ ଋଷି କଲେ
ଆଉ ସର୍ବ ଋଷିଏ ବେଦ ଯେ ପଢ଼ିଲେ ।
ଶ୍ରୀରାମ ବିଜେ କଲେ କୁଶହସ୍ତ ହୋଇ
ମୁକୁଟ କୁଣ୍ଡଳ ହାରମାନ ସବୁ ଲାଇ ।
ପୂର୍ବରେ ଇନ୍ଦ୍ର ଚନ୍ଦ୍ର ଯେମନ୍ତେ ଯାଗ କଲେ
ସେ ଯାଗକୁ ବଳଇ ସ୍ୱର୍ଗ ଋଷି କଲେ ।
ବାର ବରଷକୁ ଶତେ ଏଗାର ଅଶ୍ୱମେଧ
ସଫଳ କଲେ ଶ୍ରୀରାମ ହୋଇଣ ଆନନ୍ଦ ।

ଝରି ମେଘ ଘୃତ ସମୁଦ୍ରରୁ ଘୃତ ଆଣି
ମୂଷଳଧାରା ପ୍ରମାଣେ କୁଣ୍ଡେ ଦ୍ୟନ୍ତି ପୁଣି ।
ଶଙ୍ଖ ମହୁରୀ ଯେ ଶୁଭେ ଧ୍ୱନି ପୁଣ
ବୀର ବାଜା ନିଶାଣ ଶବଦ କରେ ଟାଣ ।
ଘୃତ ଯବ ତିଳ ଯେ ଉତ୍ସର୍ଗ ବହନି
ଘୃତ ସମୀଧ ଯେ ସଜ ରଖି ପୁଣି ।
ମନ୍ତ୍ର ଆଧାନ ଯେ କରନ୍ତି ବ୍ରହ୍ମଋଷି
ଶ୍ରୀରାମଙ୍କ ସଙ୍ଗରେ ବଶିଷ୍ଠ ଯେ ବସି ।
ଝରି ପାଖରେ ବାଦ୍ୟ ବାଜେ ବୀରତୂର
ମୁଖ ରାବ ଶବଦରେ କମ୍ପେ ତିନିପୁର ।
ପୂର୍ବାହ୍ନରେ ରହେ ଯେ ଭ୍ରଥ ବିଭୀଷଣ
ଉତ୍ତରେ ସୁଗ୍ରୀବର ଦକ୍ଷିଣେ ଶତୃଘନ ।
ଏ ରୂପେ ଝରିଦ୍ୱାରେ ରହିଲେ ଜଗିକରି
ପୂର୍ବାହ୍ନରେ ସ୍ୱଧର୍ମା ଦେବତା ବିଜେକରି ।
ଉତ୍ତରେ ନୀଳ ସଭା ଉପରେ ଋଷି ରହି
ଧବଳ ସଭା ଉପରେ ବିଜେ କପି ଦେହୀ ।
ସୁବର୍ଣ୍ଣର ସଭା ଯେ ଦକ୍ଷିଣ ଦିଗେ ପୁଣ
ସେ ସଭାରେ ବିଜେକଲେ ସକଳ ରାଜାଗଣ ।
ଏଥୁ ଅନନ୍ତରେ ଯେ ଅଶ୍ୱମେଧ ଯାଗ
ଦେବତାମାନଙ୍କୁ ଯେ ଦେଲେ ହବିର୍ଭାଗ ।
ବ୍ରହ୍ମାରଦ୍ର ସହିତେ ମୂର୍ତ୍ତିବନ୍ତ ହୋଇ
ଘୃତ ପାନ କରନ୍ତି ସନ୍ତୋଷ ମନ ହୋଇ ।
ସ୍ୱୟଂ ନାରାୟଣ ଯେ କରୁଛନ୍ତି ଯାଗ
ଅନେକ ରୂପରେ ଅର୍ଜିଲେ ବଡ଼ ଭାଗ୍ୟ ।
ଅଗ୍ନି ଦେବତାର ଯେତେକ ପାପଥିଲା
ଶ୍ରୀରାମ ପୂଜନ୍ତେ ସେ ମୁକତ ହୋଇଲା ।
ଏସନେକ ଯାଗ ଯେ କଲେ ରାମରାୟେ
ଶୁଣିଣ ମହାରସ ପାତକ କର କ୍ଷୟେ ।
ଏମନ୍ତ ସମୟରେ ଅଇଲେ ଲୋମପାଦ
ଗୁହ ନାମେ ଶବର ମିଳିଲା ଆସିବେଗ ।
ପଂଝା ପଂଝା ହୋଇଣ ବାନର ଭାଲୁ ଆସେ
ଯାଗଠାରେ ପ୍ରବେଶ ହୋଇଲେ ହରଷେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଦେଖଣାହାରୀ ଲୋକେ ସମସ୍ତେ ଆସନ୍ତି ।
ଯାଗ ଦେଖି ସମସ୍ତେ ହେଲେ ତୋଷମନ
ଖାଇବା ପିଇବାରେ ଚରଚ୍ଚ ସୁସ୍ଥାପନ ।

ବାର ବରଷ ଯାଏ ଶ୍ରୀରାମ ଯାଗ କଲେ
ଶତେ ଏଗାର ଯାଗ ଯେ ସମ୍ପୂର୍ଣ୍ଣ ହୋଇଲେ ।
ପୂର୍ଣ୍ଣ ଆହୁତି କଲେ ହରଷେ ଶ୍ରୀରାମ
ସକଳ ଦେବତାଏ ହବି ପାଏ ପୁଣ ।
ସରିଲାକ ଯାଗ ହୋଇଲା ସମ୍ପୂର୍ଣ୍ଣ
ନାରୟଣ ଆହୁତିରେ ପ୍ରସନ୍ନ ଦେବଗଣ ।
ବ୍ରହ୍ମା ବୋଇଲେ ଶ୍ରୀରାମ ଯାଉଛୁ ସ୍ୱର୍ଗପୁର
ଯାଗ ତୋର ସୁଫଳ ଆମ୍ଭେ ହେଲୁଟି ନିର୍ମଳ ।
ଅନେକ କାଳର ଆମ୍ଭେ କଳଙ୍କି ହୋଇଥିଲୁ
ତୋର ହସ୍ତେ ହବି ପାଇ ମୁକତି ହୋଇଲୁ ।
ଶ୍ରୀରାମ ବୋଇଲେ ମୋତେ ପ୍ରସନ୍ନ ଯେବେହେଲ
ମୋହର କଳା ଏବେ କରହେ ବେଦବର ।
ମାତାମାନେ ମୋର ଯେ ଯାଆନ୍ତୁ ପିତାଙ୍କସଙ୍ଗେ
ଏକଥାକୁ ଅନୁଗ୍ରହ କର ଦେବ ଏବେ ।
ବ୍ରହ୍ମା ବୋଇଲେ ତୁମ୍ଭର ମାତାଗଣ ଆଣ
ଆସନ୍ତୁ ସ୍ୱର୍ଗପୁର ପିତାଙ୍କ ସଙ୍ଗେ ପୁଣ ।
ସ୍ୱଦେହ ଘେନିଣ ସେ ସ୍ୱର୍ଗରେ ବସନ୍ତୁ
ଅଚିନ୍ତା ପୁରରେ ସେ ସୁଖରେ ଦିନନ୍ୟନ୍ତୁ ।
ଶୁଣିଣ ଶ୍ରୀରାମ ଯେ ବେଗେ ଚଳିଗଲେ
ସକଳ ମାତାମାନଙ୍କୁ ଯାଇଁଣ କହିଲେ ।
ବୋଇଲେ ପିତାଙ୍କ ସଙ୍ଗେ ସ୍ୱର୍ଗକୁ ଯିବ ଆସ
ଶୁଣିଣ ସକଳ ମାତା ହୋଇଲେ ହରଷ ।
ଝରିବଧୂଙ୍କୁ ଯାଇଣ ବୋଧ କରି କହି
ନାତିମାନଙ୍କୁ ଅନେକ ସନ୍ତୋଷ ହେଲେ ସେହି ।
ଝରି ପୁତ୍ରଙ୍କୁ ଯେ ସୁକଲ୍ୟାଣ କଲେ
ଦେଖୁ ଦେଖୁ ଅଦୃଶ୍ୟ ହୋଇଣ ଶୂନ୍ୟେ ଗଲେ ।
ଅଚିନ୍ତା ବୈକୁଣ୍ଠରେ ହେଲେ ପରବେଶ
ସମସ୍ତ ନାରୀ ମିଶି ହେଲେ ଦୁଇଅଂଶ ।
ଦିତି ଅଦିତି ଦୁଇନାରୀ ହେଲେ ଜାଣ
ସତଷଠୀ ପୁରୁଷ ଦଶରଥଙ୍କ ଅଙ୍ଗେ ମିଶିପୁଣ ।
କଶ୍ୟପଙ୍କ ବେଶ ଧଇଲେ ଦଶରଥ
ନିଜ ଭୁବନେ ରହି ହୋଇଲେ ନିଶ୍ଚିନ୍ତ ।
ଏଥୁ ଅନନ୍ତରେ ଗୋ ଶାକମ୍ଭରୀ ଶୁଣ
ସୁଧର୍ମା ସଭାରେ ଉଠିଲେ ସେ ପୁଣ ।
ଦେବତାଏ ବୋଇଲେ ଥାଅ ହେ ଶ୍ରୀରାମ
ଆମ୍ଭେ ଯେ ଯାଉଅଛୁଁ ସ୍ୱର୍ଗପୁର ଜାଣ ।

ଏତେ କହି ଦେବତାଏ ଶୂନ୍ୟରେ ଚଳିଗଲେ
ଘରିଭାଇ ଦେଖିଣ ଓଳଗି ତାଙ୍କୁ ହେଲେ ।
ଜାନକୀ ଘରି ଭଗ୍ନୀ ଘେନିଣ ବିନତି
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ ।
ସ୍ୱର୍ଗରେ ଦେବତାଏ ସଭା ଯାଇଁ କଲେ
ସଭା ଭାଙ୍ଗିଣ ଦେବେ ଯେ ଯାହା ପୁରେ ଗଲେ
ଏଥୁ ଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ପୁଣ
ନବର ଭିତରେ ପ୍ରବେଶ ହେଲେ ଜାଣ ।
ଜାନକୀଙ୍କି ବୋଇଲେ ଭଣ୍ଡାରେ ତୁମ୍ଭେଥିବ
ଲକ୍ଷ୍ମଣ ଯେତେ ମାଗିବ ଧନ ତାକୁ ଦେବ ।
ନବରୁ ଯାଇଣ ଲକ୍ଷ୍ମଣଙ୍କୁ ଡକାଇଲେ
ଭରତ ଯାହା ମାଗିବ ଦେବ ତୁମ୍ଭେ ଭଲେ ।
ଜାନକୀ ଦେବେ ଭଣ୍ଡାରୁ ଆଣିଦେବୁ ତୁହି
ଭରତ ଦେବେ ଧନ ଯେ ଯାହା ମାଗଇ ।
ଶତୃଘନ ଆଜ ଯେ ପରୀଛା ହୋଇବ
ହନୁମନ୍ତ ବୀର ତାଙ୍କ ସଙ୍ଗତରେ ଥିବ
ପାର୍ବତୀ ବୋଇଲେ ହନୁ ମାଳ ପୁରେ ଥିଲା
କେଉଁଦିନ ଅଇଲା ଜଣାତ ନ ପଡ଼ିଲା ।
ଈଶ୍ୱର ବୋଇଲେ ଯେ ବରଷେ ଯାଗ ହେଲା
ବରଷକ ଉତ୍ତାରୁ ହନୁ ଯେ ଅଇଲା ।
ପାର୍ବତୀ ବୋଇଲେ କି କଲେ ରାମ ପୁଣ
ଈଶ୍ୱର ବୋଇଲେ ଋଷିଙ୍କି ଦେଲେ ଧନ ।
ଆଉ ଋଷିମାନଙ୍କୁ ଲେଖା ପ୍ରମାଣେ ଦେଲେ
ଧନ ପାଇ ଦେବଋଷି ସ୍ୱର୍ଗପୁର ଗଲେ ।
ପାତାଳ ଋଷିଙ୍କି ସେହି ରୂପେ ଦେଲେ ଧନ
ଧନ ପାଇ ଋଷିଏ ହରଷ କଲେ ମନ ।
ପର୍ଶୁରାମଙ୍କୁ ଲକ୍ଷେ ଦେଲେକ ସୁନିଆଁ
ପାତାଳ ପୁର ଋଷି ସନ୍ତୋଷ କଲେ ହିଆ ।
ସନ୍ତୋଷ ହୋଇ ପାତାଳକୁ ଗଲେବେଗ
ଯେ ଯାହା ସ୍ଥାନରେ ମିଳିଲେ ହର୍ଷଭାବ ।
ମର୍ତ୍ତ୍ୟପୁର ଋଷିଙ୍କି ମେଲାଣି ରାମ କଲେ
ଜଣକେ ଦଶସସ୍ର ସୁନିଆଁ ଆଣିଦେଲେ ।
ମାରକଣ୍ଡ, ଅଗସ୍ତି, ଦୁର୍ବାସା, ନାରଦ
ଋଷିଶୃଙ୍ଗ, ବିଶ୍ୱାମିତ୍ର, ବଶିଷ୍ଠ, ବାମଦେବ ।
ଏ ଋଷିମାନଙ୍କୁ ଲକ୍ଷେ ଲକ୍ଷେ ଧନ ଦେଲେ
ସନ୍ତୋଷ ହୋଇ ଋଷି ସର୍ବେ ଚଳିଗଲେ ।
ସକଳ ଋଷି ଯହୁଁ ଗଲେ ଯେଝା ସ୍ଥାନ
ରାଜାଗଣମାନଙ୍କୁ ଡକରା ହେଲା ପୁଣ ।
ଭରତଙ୍କୁ ବୋଇଲେ ଅଳଙ୍କାର ଆଣ
ମୁକୁଟ କୁଣ୍ଡଳ ଯେ ହାର ଦିଅ ପୁଣ ।
ଲକ୍ଷ୍ମଣ ଜାନକୀଙ୍କ ଛାମୁରେ ଜଣାଇ
ଏ ଭଣ୍ଡାର ମୁଦ ଦେଇ ଆସ ଗୋ ବଇଦେହୀ ।
ବୋଇଲେ ଅଳଙ୍କାର ଭଣ୍ଡାରେ ବେଗେ ପଶ
ମୁକୁଟ କୁଣ୍ଡଳ ହାର ଦିଅ ଗୋ ବିଶେଷ ।
ଶୁଣିଣ ଜାନକୀ ଅଳଙ୍କାର ଦେଲେ ଆଣି
ଲକ୍ଷ୍ମଣ ଭ୍ରଥଠାରେ ଦେଲେ ନେଇ ପୁଣି ।
ଅଶୀ ସସ୍ର ରାଜାଙ୍କୁ ଭରତ ନେଇ ଦେଲେ
ମୁକୁଟ କୁଣ୍ଡଳ ହାରଦେଇ ସନ୍ତୋଷ ତାଙ୍କୁ କଲେ ।
ସସ୍ରେ ଲେଖାଏଁ ସୁନିଆଁ ବାଟ ଖର୍ଚ୍ଚ ଦେଲେ
ରାଜାମାନଙ୍କୁ ସେ ସନ୍ତୋଷ କରାଇଲେ ।
କୋଡ଼ିଏ ସହସ୍ର ଯେ ରାଜା ପଛରେ ଜାଣ
ଶ୍ରୀରାମ ବୋଇଲେ ତୁମ୍ଭେ ନଯାଅ କିମ୍ପାପୁଣ ।
ରାଜାମାନେ ବୋଲନ୍ତି ଜଣାଣ ଆମ୍ଭର ଅଛି
ସେ କଥାକୁ ଅବଧାନ ହେଉ ଦଶରଥ ବସି ।
କଥାଏ ମାଗିବୁଁ ଆମ୍ଭେ ଦେବ ଯେବେ ସତ୍ୟ
ତେବେ ଫେଡ଼ି ଆମ୍ଭେ ଯେ କହିବୁ ନିଅତ ।
ଶ୍ରୀରାମ ବୋଇଲେ ଚିନ୍ତା ନ କର ଯେ କେହି
ଏଣୁ ଗଲେ ଘରିଗର୍ଭହେବେ ତୁମ୍ଭର ମହାଦେଈ ।
ଜଣକେ ଘରି ଗର୍ଭୁ ଘରିରାଣୀ ଠାରୁ
ଦୁଇ ପୁତ୍ର ଦୁଇ ଦୁହିତା ତାଙ୍କର ଗର୍ଭରୁ ।
ଜାତକରି ବିଭାକରି ମୋର ପାଶେ ଆସ
ମୁହିଁ ଗଲା ବେଳେ ତୁମ୍ଭେ ଯିବ ସ୍ୱର୍ଗବାସ ।
ରାଜା ଗୋଟିକେ ଘରିମାଳା ଲେଖିକରିଦେଲେ
ଯେଉଁ ରାଣୀମାନଙ୍କରେ ପ୍ରସନ୍ନ ହୁଅ ଭଲେ ।
ସେ ରାଣୀମାନଙ୍କୁ ତୁମ୍ଭେ ଏହା ନେଇ ଦେବ
ତେବେ ସେପୁତ୍ର ଦୋହିତା ତୁମ୍ଭର ଜାତହେବ ।
ଶୁଣିଣ ରାଜାମାନେ ଆନନ୍ଦ ହୋଇଲେ
ମୁକୁଟ କୁଣ୍ଡଳ ନେଇ ବାଟ ଖର୍ଚ୍ଚ ନେଲେ ।
ଆନନ୍ଦରେ ଚଳିଗଲେ ଯେ ଯାହା ନବର
ବତିଶ କୋଟି ରାଜା ଯେ ରହିଲେ କେବଳ ।
ଅଷ୍ଟଗୋଟି ଋଷି ଯେ ରହିଲେକ ପୁଣ
ବାଲମୀକ ଜନକ କୁଶଧ୍ୱଜ ଜାଣ ।

ଦେବାର ପଦାର୍ଥମାନ କିଛିହିଁ ନ ନେଲେ
ଶ୍ରୀରାମ ତାହାଙ୍କୁ ଯେ ରହିଣ ପୁଛାକଲେ ।
ସେ ବୋଇଲେ ଝିଅଘରୁ ନେବୁଁ ନାହିଁଧନ
ସନ୍ତାନହୀନ ଆମ୍ଭର ଦିଅ ହେ ତୁମ୍ଭେ ପୁଣ ।
ଶ୍ରୀରାମ ବୋଇଲେ ତୁମ୍ଭ ଦୋହିତା ପାଶେଯାଅ
ତୁମ୍ଭ ଦୁଃଖ କହିଣ ପୁତ୍ରଦାନ ପାଅ ।
ଶୁଣିଣ ଯେ ତିନିଋଷି ବେଗେ ଚଳିଗଲେ
ଜାନକୀଙ୍କ ଆଗରେ ସେ କଥା କହିଲେ ।
ଜାନକୀ ବୋଇଲେ ପିତା ବେଗେ ଯାଅଘର
ଦୁଇ ଦୁଇ ପୁତ୍ର ଯେ ହୋଇବେ ତୁମ୍ଭର ।
ଶୁଣିଣ ବାଲମୀକ ଜନକ କୁଶଧ୍ୱଜ
ଆପଣାର ନିଜସ୍ଥାନେ ଚଳିଗଲେ ବେଗ ।
ଏଥୁ ଅନନ୍ତରେ ଯେ କପିଙ୍କି ରାଇଲେ
ବାନର ଭାଲୁଙ୍କୁ ସେ ଅନେକ ଧନ ଦେଲେ ।
ମେଲାଣି ହୋଇଣ ଯେ ବାନର ଭାଲୁଗଲେ
ଯେ ଯାହାର ନିଜସ୍ଥାନେ ଯାଇଁଣ ମିଳିଲେ ।
ଯୂଥପତି ସେନାପତିମାନଙ୍କୁ ଦେଲେ ଧନ
ଗୁହନାମେ ଶବରକୁ ଅନେକ ମାଳା ପୁଣ ।
ସୁଗ୍ରୀବ ଅଙ୍ଗଦ ମୁକୁଟ କୁଣ୍ଡଳ ଦେଲେ
ଜମ୍ବେଦଙ୍କୁ ହାର ଦେଇ ମନ ତୋଷ କଲେ ।
ବିଭୀଷଣ, ସୁକର୍ଣ୍ଣ ଯେ ସୁବାହୁ ନାଦ ପୁଣ
ସ୍ୱୟଂ ମନୁକୁ ଘେନିଣ ଅଟନ୍ତି ପାଞ୍ଚଜଣ ।
ମୁକୁଟ କୁଣ୍ଡଳ ଧନରତ୍ନ ଆଣି ଦେଲେ
ମେଲାଣି ମାଗି ସେ ସର୍ବେ ଚଳିଗଲେ ।
ଦେଖଣାହାରୀମାନଙ୍କୁ ଧନରତ୍ନ ଦେଲେ
ସନ୍ନ୍ୟାସୀ ମାଗନ୍ତା ଯେ ସଭିଙ୍କି ତୋଷକଲେ ।
ଅଷ୍ଟ କଟକରୁ ଯେ ଆସିଥିଲେ ଯେତେ
ଧନ ପାଇ ମେଲାଣି ହୋଇଗଲେ ପଥେ ।
ପାତ୍ର ମନ୍ତ୍ରୀ ସାମନ୍ତ ଯେତେ ଆସିଥିଲେ
ଜଣକେ ପାଞ୍ଚଲକ୍ଷ ସୁନିଆଁ ଆଣି ଦେଲେ ।
ସମସ୍ତେ ମେଲାଣି ହୋଇ ଗଲେ ନିଜପୁର
ଚଉଦିଗରେ ବତିଶ ମଉଡ଼ମଣି ସାର ।
ବତିଶ ମଉଡ଼ମଣି ଶ୍ରୀରାମ ପାଶେ ମିଳି
ଦେଖିଣ ଶ୍ରୀରାମ ଯେ ବୋଇଲେ ତାଙ୍କୁ ଫେରି ।
ତୁମ୍ଭେ କିମ୍ପା ନ ଯାଇ ରହିଅଛ ପୁଣ
ସେ ବୋଇଲେ ଆମ୍ଭେ ଏବେ କରିବୁଁ ବରଣ ।
ଶ୍ରୀରାମ ବୋଇଲେ କିସ ବରଣ କରିବ
ରାଜାଏ ବୋଇଲେ ଚଉଭାଇପୁତ୍ରଙ୍କୁ ଏବେଦେବ ।
ଆମ୍ଭର ଦୋହିତା ତାଙ୍କୁ ବିଭା କରାଇବୁ
ତୁମ୍ଭର ବନ୍ଧୁ ହେଲେ ନେତ୍ରରେ ଦେଖିବୁ ।
ଶୁଣିକରି ରାମ ଯେ ସନ୍ତୋଷ ହୋଇଲେ
ଆଠଗୋଟି କୁମରଙ୍କୁ ବତିଶ ରାଜା ଭଲେ ।
ଚଉରିଗୋଟି ରାଜା ଯେ ଏକଇ କୁମରେ
ବାଣ୍ଟିକରି ବର କର କହିଲୁଁ ତୁମ୍ଭରେ ।
ଅଷ୍ଟଗୋଟି କୁମରଙ୍କୁ ଡକାଇ ଆଣିଲେ
ଶତୃଘନ କୁମରଙ୍କୁ ପଶ୍ଚିମ ଦିଗେ ଦେଲେ ।
ଏକ ପୁତ୍ରକୁ ଚଉରି ରାଜା ବରଣ କଲେ ପୁଣ
ବସନ୍ତ ପୁତ୍ର ସଙ୍ଗରେ ଗାଗ୍ରବ ଋଷି ପୁଣ ।
ଆରେକ ଚଉରିରାଜା ଚନ୍ଦନେ ବରିଲେ
ସେ କଟକେ ପୁରୋହିତ ଗଉତମ ଭଲେ ।
ମଦନ ସଙ୍ଗରେ ଋଷି କହିଲେକ ପୁଣ
ଲକ୍ଷ୍ମଣ କୁମରଙ୍କୁ ବରିଲେ ଉତ୍ତର ଦିଗ ରାଜନ ।
ଅରୁଣ କୁମର ଅଟେ ତାଙ୍କର ବଡ଼
ସେ କୁମରକୁ ଚଉରିରାଜା କରିଲେକ ଗାଢ଼ ।
ଅରଣ୍ୟକ ଋଷି ଯେ କୁଳର ପୁରୋହିତ
ଅରୁଣ ସଙ୍ଗରେ ସେ ରହିଲେ ବିଶେଷ ।
ବରୁଣ କୁମରକୁ ଚଉରିରାଜା ବରି
ବିଶ୍ୱାମିତ୍ର ପୁରୋହିତ ତାଙ୍କ ସଙ୍ଗେ ସରି ।
ପୂର୍ବଦିଗୁଁ ଚଉରିରାଜା ନବକୁ ବରିଲେ
ବଶିଷ୍ଠ ପୁରୋହିତ ତାଙ୍କ ସଙ୍ଗରେ ରହିଲେ ।
ଆଉ ଚଉରିରାଜା କୁଶକୁ ବରିଲେ ପୁଣ
ବାମଦେବ ଋଷି ପୁରୋହିତ ଜାଣ ।
ଚଉରିଦିଗେ ଆଠପୁତ୍ରେ ହେଲେ ଯେ ବରଣ
ଅଷ୍ଟରଥରେ ଯାଇ ବସିଲେ ତତକ୍ଷଣ ।
ପଚିଶ ଯୂଥପତି ସେହ୍ନାପତି ସାତ
ଆଠ ସେନାପତି ପାତ୍ର ମନ୍ତ୍ରୀ ଯେ ସାମନ୍ତ ।
ସାରଥୀ ଋଷି ଯାଇଁ ହେଲେ ପନ୍ଦର ତ
ପନ୍ଦର ଜଣଙ୍କ ସଙ୍ଗରେ ଏକ ପୁତ୍ର ।
ସମ୍ଭର୍ବରେ ବେଶ ହୋଇବାହାର ହେଲେପୁଣ
ମେଲାଣି ମାଗନ୍ତେ ଶ୍ରୀରାମ କହେ ପୁଣ ।
ଶ୍ରୀରାମ ବୋଇଲେ ଚରଚ୍ଚ ହୋଇ ଆଜ ରହ
କାଲି ପ୍ରଭାତରୁ ଏଠାରୁ ଚଳିଯାଅ ।

ଆମ୍ଭର ରାଣୀହଂସ ସମ୍ଭାଳ ନିଜପୁର
ପ୍ରବେଶ ହେବୁ ଯାଇଁ ତୁମ୍ଭର ମନ୍ଦିର ।
ଏତେ ବୋଲି ନିଜସ୍ଥାନ ଛାଡ଼ି ଦେବ ଗଲେ
ଯେ ଯାହାରେ ଥିଲେ ତାଙ୍କୁ ଚରଚ୍ଚ ଭାବକଲେ ।
ମର୍ଦ୍ଦନ ମାଜଣା ଯାଇ ନିଜପୁରେ ହେଲେ
ସ୍ନାନସାରି ଦେବାର୍ଚ୍ଚନ ନିତ୍ୟକର୍ମ କଲେ ।
ମଣୋହିରେ ଚରିଭାଇ ବିଜେକଲେ ଯାଇ
ଜାନକୀ ପଚାରିଲେ ସାନୁଜ ମୁଖଚାହିଁ ।
ମୋର ଅଷ୍ଟପୁତ୍ର କେଣେ ଗଲେ ପୁଣ
ଶତୃଘନ ବୋଇଲେ ମୋଠାରୁ ଏବେ ଶୁଣ ।
ଯାଗଶାଳାଠାରେ ଯେ ତୁମ୍ଭ ପୁତ୍ରେ ଥିଲେ
ବତିଶ ସମୁଧି ତୁମ୍ଭ ପୁତ୍ରଙ୍କୁ ଧରି ନେଲେ ।
ଚାରିଗୋଟି ସମୁଧି ଯେ ଏକ ପୁତ୍ରରେ ପୁଣ
ବତିଶ ରାଜା ନେଲେ ବରଣ କରିଣ ।
ଜାନକୀ ବୋଇଲେ ମୋତେ ନକହି କେଣେଗଲେ ।
ଶତୃଘନ ବୋଇଲେ ବରଣ ମାଳା ଗଳେ ।
ଶୁଣିକରି ଜାନକୀ ଆନନ୍ଦ ମନ ହେଲେ
ଯାଆମାନଙ୍କ ଆଗରେ ଯାଇଣ କହିଲେ ।
ଏଥୁ ଅନନ୍ତରେ ରାମଚନ୍ଦ୍ର ପୁଣ
ଅଭିଷେକ ହେଲେ ସେ ଜାନକୀ ଘେନିଣ ।
ଅଭିଷେକ ସାରି ମଣୋହି ଯାନ୍ କଲେ
ଚାରିଭାଇଙ୍କି ଜାନକୀ ପରଶିଲେ ଭଲେ ।
ଆଞ୍ଚୋବନ ସାରିଣ ତାମ୍ବୁଳ ଭୁଞ୍ଜିଲେ
ରତ୍ନ ପଲଙ୍କରେ ଯେ ଯାଇଣ ନିଦ୍ରାଗଲେ ।
ରଜନୀ ଶେଷ ହେଲେ ଉଦେ ଦିନମଣି
ଶଯ୍ୟା ଛାଡ଼ିଣ ରାମ ଉଠିଲେକ ପୁଣି ।
ତିନିଭାଇଙ୍କି କହିଲେ ଡାକିଣ ରାମରାଜ
ଯେ ଯାହାର ରାଜ୍ୟରେ ଯାଇ ସମ୍ଭାଳ ବେଗ ।
ଶୁଣିକରି ତିନି ଭାଇ ହରଷ ମନେ ଗଲେ
ମଧୁବନେ ଭ୍ରଥପୁରେ ଯାଇଣ ମିଳିଲେ ।
ଗଜେନ୍ଦ୍ର ପୁରରେ ଯେ ହେଲେ ପରବେଶ
ଅଷ୍ଟପୁତ୍ର ଘେନି ରାଜା ଗଲେ ନିଜବାସ ।
ରାମ ବିଜେକଲେ ଯେ ଅଯୋଧ୍ୟା ନବର
ସକଳ ଦ୍ରବ୍ୟମାନ ନେଲେ ସଙ୍ଗତର ।
ପାଞ୍ଚଦିନ ଅଯୋଧ୍ୟା ନବରେ ରହିଲେ
ଚତୁରାଙ୍ଗ ବଳ ଘେନି ପୂର୍ବଦିଗକୁ ଗଲେ ।
ତିନିଭାଇ ପୁରମାନ କରିଣ ଜାଗ୍ରତ
ପୂର୍ବଦିଗେ ଉପଗତ ହେଲେ ସେ ତୁରିତ ।
ଶ୍ୟାମସୁନ୍ଦର ରାଜା ପୁରେ ପରବେଶ
ସେ ରାଜାର ପାଞ୍ଚଭାଇ ଅଛନ୍ତି ବିଶେଷ ।
ରତ୍ନବେଦୀ ତିଆରଣ କରିଥିଲେ ରାୟେ
ପଞ୍ଚଶ ଦୁଲାଳୀ ଆଣି ବିଭା ସେ କରାଏ ।
ଦାନ ଯଉତୁକ ଅନେକ ଆଣି ଦେଲେ
ନିଉନ ହୋଇ ରାଜା ଅନେକ କହିଲେ ।
ମଦନ ରାଜା ପୁରେ ପୁତ୍ରକୁ ଘେନି ମିଳି
ଚାରିଭାଇ ସେରାଜାକୁ ବାଟରୁ ନେଲେ ବରି ।
ଷୋଳ କନ୍ୟା ଆଣି ବେଦୀରେ ବସାଇଲେ
ନବୀନ ସୁନ୍ଦର ପୁଅ ସେ କନ୍ୟାଙ୍କୁ ବିଭାଦେଲେ ।
ବଧୂ ଦେଖି ରାଘବ ମନରେ ତୋଷ ହେଲେ
ଆରଦିନ କୋନ୍ତଭୋଜ ରାଜ୍ୟରେ ମିଳିଲେ ।
ବାରଭାଇ ଘେନି ରାଜା ବାଟରୁ ବରିଲେ
ସେଠାରେ ଅଠର କନ୍ୟା ପୁତ୍ରେ ବିଭା ହେଲେ ।
ସେ କନ୍ୟାଙ୍କୁ ସେଠାରେ ରଖାଇ ରାମରାଣ
ବିରାଟ ଦେଶରେ ପ୍ରବେଶ ହେଲେ ଜାଣ ।
ଦେଖିଣ ବିରାଟେଶ୍ୱର ବାଟରୁ ବରିଲେ
ଦଶ ଭାଇଙ୍କର ଦଶ ଦୋହିତା ଆଣିଦେଲେ ।
ରତ୍ନବେଦୀ ଉପରେ ବିଭା କରାଇଲେ
ନବର ଭିତରେ ବିଭାଘର ବଢ଼ାଇଲେ ।
ସୁବର୍ଣ୍ଣ ରଥରେ ରାମ ବିଜେ କଲେ ଯାଇଁ
ପୁଷ୍ପକ ବିମାନ ଯେ ନବକୁ ଦେଲେ ନେଇ ।
ସେ ରଥରେ ବସିଲେ ଶ୍ରୀରାମ ଜ୍ୟେଷ୍ଠ ପୁତ୍ର
ଦଶ ଦୋହିତା ନେଇ ବସାଏ ବିରାଟ ।
ସହସ୍ରେକ ଦାସୀ ଯେ ତାଙ୍କ ସଙ୍ଗେ ଦେଲା
ଦୋହିତାମାନଙ୍କୁ ବୁଝାଇ ତୋଷ କଲା ।
ଲକ୍ଷେକ ହସ୍ତୀ ଯେ ବେନିଲକ୍ଷ ଅଶ୍ୱ
ଦଶସସ୍ର ସାରେଣୀ ଦେଲେ ଯେ ବିରାଟ ।
ସେବାକାରୀ ସଙ୍ଗରେ ପଦାତି ବଳ ଦେଲା
ରଥୀ ସହସ୍ରେକ ଯେ ସଙ୍ଗରେ ସମର୍ପିଲା ।
ପାଣିଦ୍ରବ୍ୟ ସହସ୍ରେକ ରଥରେ ଦେଲେ ପୁଣି
ଖଦୀ, ଚାମର, ଆଲଟ, ପଖା କେହୁ ଗଣି ।
ଦଣ୍ଡ ପାଟଛତ୍ର ଚିରାଳ ପନ୍ତି ପନ୍ତି
ଅତି ସମ୍ଭର୍ବରେ ସେଠାରୁ ଚଳିଯାନ୍ତି ।

କୋନ୍ତଭୋଜ ରାଜ୍ୟରେ ହେଲେ ପରବେଶ
ଦେଖିଣ ପାଦପୂଜା କଲେ ନରଇଶ ।
ଅଠର ଦୋହିତା ଯେ ଦୁଇ ସସ୍ର ଦାସୀ
ପୁଷ୍ପକ ଯାନରେ ଯେ ବସାଏ ନୃପତି ।
ନାଗବଳ ଲକ୍ଷେ ଅଶ୍ୱବଳ ଦୁଇ ଲକ୍ଷ
ଲକ୍ଷେକ ପଦାନ୍ତି ଲକ୍ଷେ ଦେଲେ ରଥ ।
ସାରେଣୀ ଦୁଇଲକ୍ଷ ସେବାକାରୀ ଜନ
ସହସ୍ରେକ ରଥ ପାଣିଦ୍ରବ୍ୟ ପୁଣ ।
ସକଳ ପଦାର୍ଥମାନ ଦେଇ ତୋଷ କଲେ ।
ଶ୍ରୀରାମର ଚରଣେ ବିନତି ହୋଇଲେ ।
ଦେଖିକରି ସନ୍ତୋଷ ହେଲେ ରୂପଧାରୀ
କୋନ୍ତଭୋଜ ରାଜାର ରାଜ୍ୟକୁ ଗଲେ ଚଳି ।
ସଉରଭ ଦେଶରେ ହେଲେ ପରବେଶ
ଶ୍ରୀରାମ ଚରଣେ ଶରଣ ବଳରାମ ଦାସ ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ଦେଖିଣ ମଦନ ରାଜା ହେଲେ ସେ ବିନତି ।
ଷୋଳ ଗୋଟି ଦୋହିତା ବେନି ସସ୍ର ଦାସୀ
ପୁଷ୍ପକ ବିମାନରେ ସମର୍ପେ ନୃପତି ।
ଲକ୍ଷେକ ହସ୍ତୀ ଦୁଇଲକ୍ଷ ଅଶ୍ୱ ଆଣି
ସାରେଣୀ ଦୁଇଲକ୍ଷ ଦେଲେ ନୃପମଣି ।
ପଦାତି ସେବାକାରୀ ସୁବର୍ଣ୍ଣ ରଥ ଲକ୍ଷେ
ଗାଈ ମଇଁଷି ହେ ଦେଲେ ଅଇବ୍ରତେ ।
ସକଳ ସାମଗ୍ରୀ ଦେଇ ସଙ୍ଗରେ ଅଇଲା
ଦାଶରଥୀ ତୋଷ ହୋଇ ସେଠାରୁ ଚଳିଗଲା ।
ପଳାଳି ଦେଶରେ ଯେ ହେଲେ ପରବେଶ
ପରମେଶ୍ୱର ରାଜା ଖଟିଲେ ଆସି ପାଶ ।
ପଞ୍ଚଶ ଦୋହିତା ଯେ ତିନି ସସ୍ର ଦାସୀ
ସାରେଣୀ ସେବାକାରୀ ଗାଈ ଯେ ମଇଁଷି ।
ପୁଷ୍ପକ ବିମାନେ ଦେଇ ସମର୍ପେ ନୃପତି
ଅଶ୍ୱ, ହସ୍ତୀ, ପଦାତି, ରଥୀ ଯେ ସେହ୍ନାପତି ।
ଅଷ୍ଟରତ୍ନରେ ସହସ୍ରେ ରଥ ଆଣିଦେଲେ
ନିଉନ ହୋଇ ରାଜା ଶ୍ରୀରାମଙ୍କୁ କହିଲେ ।
ଉଦଣ୍ଡ ପାଟଛତ୍ର ଯେ ଟେକାଏ ପୁତ୍ରମଣି
ବଜାଇ ବୀର ବାଜା ବାହାର ହେଲେ ପୁଣି ।
ପିତା ଖୁଡ୍ଡୁତାଙ୍କୁ ବିନୟ ଭାବ ହେଲେ
ଦଶ ଦିନରେ ଯାଇଁ ଅଯୋଧ୍ୟା ମିଳିଲେ ।

ଅଯୋଧ୍ୟା ନଗ୍ର ଦାଣ୍ଡରେ ହେଲା ଯେ ଗହଳ
ବାଦ୍ୟ ନିଶାଣରେ ଯେ କମ୍ପେ ତିନିପୁର ।
ଜାନକୀ ଦାସୀ ଘେନି ସିଂହଦ୍ୱାରେ ଆସି
ଅଣସ୍ତରୀ ବଧୂଙ୍କୁ ବନ୍ଦାପନା କରି ଶୁଭ୍ରକେଶୀ ।
ଅର୍ଘ୍ୟ ଦେଇ ପୁତ୍ରବଧୂ ସଙ୍ଗରେ ଘେନିଗଲେ
ରତ୍ନପରେ ରତ୍ନଘରେ ନେଇଣ ରଖାଇଲେ ।
ହସ୍ତୀ, ଘୋଡ଼ା, ସାରେଣୀ, ଧନ ରତ୍ନ ପୁଣ
ଗାଈ, ମଇଁଷି, ପଦାତି ଯେତେକ ସେ ଜାଣ ।
ସାଇତି ରଖିଲେ ଯେ ମନ୍ତ୍ରୀର ପୁଅ ନେଇ
ସମସ୍ତଙ୍କୁ ଚରଚ୍ଛ କଲେ ସେଥି ସେହି ।
ଏଥୁ ଅନନ୍ତରେ ଗୋ ଶୁଣ ଗୋ ଭଗବତୀ
ସୈନ୍ୟବଳ ଘେନିଣ ଫେରିଲେ ରଘୁପତି ।
ବେତାଳ ଦେଶରେ ଯାଇ ହେଲେ ପରବେଶ
ବ୍ରହ୍ମପୁତ୍ର ରାଜା ନାମଟି ବିଶେଷ ।
ସେ ରାଜା ଅଟଇ ଯେ ଷୋଳଭାଇ ପୁଣ
ଭାଇ ଗୋଟିକେ ଦୁଇ ଦୁଲାଳୀ ଏବେ ଜାଣ ।
ରତ୍ନବେଦୀ ପରେ କୁଶଙ୍କୁ ବସାଇଲେ
ବତିଶ ଦୋହୀତାଙ୍କୁ ଆଣି ବିଭା କଲେ ।
ବିଭା ସାରି ଶ୍ରୀରାମ ଚଳିଲେକ ପୁଣ
ପୁଷ୍ପକ ଯାନ ଆଣି ମାତେଳି ଦେଲେ ଜାଣ ।
ଯେତେକ ଧନ ରତ୍ନ ଯଉତୁକ ଦେଲେ
ସମସ୍ତ ଦ୍ରବ୍ୟ ପୁଷ୍ପକ ଯାନରେ ସାଇତିଲେ ।
ବତିଶି ବୋହୂ ତିନି ସସ୍ର ଦାସୀ ଯେ ବସିଲେ
ସେଠାରୁ ଶ୍ରୀରାମ କାଉଁରୀ ପୁର ଗଲେ ।
କାମଚଣ୍ଡୀ ରାଜା ଯେ ବାଟରୁ ବରି ନେଲେ
ସାତ ଭାଇଙ୍କର ଏକୋଇଶି ଦୁହିତା ସମର୍ପିଲେ
ବିଭା ସାରି ରଥପରେ ନେଇ ବସାଇଲେ
ଦୁଇଶତ ଦାସୀ ତାଙ୍କ ସଙ୍ଗତରେ ଯେ ଦେଲେ ।
ଦାନ ଯଉତୁକ ଦେଇଥିଲେ ଯେତେ
ଶ୍ରୀରାମଙ୍କୁ ଦେଖାଇଣ ଚଳିଲେ ତୁରିତେ ।
ପୁତ୍ର ବଧୂ ଘେନିଣ ସେଠାରୁ ଚଳିଗଲେ
ସମସ୍ତ ଘେନି ଶ୍ରୀରାମ ବାହାର ହୋଇଲେ ।
ମଗଧ ଦେଶରେ ଯାଇଁ ହେଲେ ପରବେଶ
ଅବଳା ମଉଡ଼ମଣି ଦେଖି ହେଲେ ତୋଷ ।
ନବ ଭାଇଙ୍କର ଅଠର କୁମାରୀ ଆଣି
କୁଶ ନାମେ କୁମରଙ୍କୁ ବିଭା କଲେ ପୁଣି ।

ଅଠର କୁମାରୀ ସଙ୍ଗେ ଦୁଇସସ୍ର ଦାସୀ
ରଥପରେ ନୃପତି ବସାଇଲେ ହସି ।
ଦାନ ଯଉତୁକ ଯେତେକ ଦେଇଥିଲା
ସକଳ ପଦାର୍ଥ ରାଘବ ଘେନିଦେଲା ।
ସେଠାରୁ ଗଉଡ଼େଶ୍ୱର ରାଜ୍ୟରେ ପରବେଶ
ବୀରଭଦ୍ର ବୋଲି ରାଜା ନାମ ଯେ ବିଶେଷ ।
ଅଠର ଭାଇ ଆସି ପ୍ରବେଶ ହେଲେ ପୁଣ
ସକଳ ଭାଇ ମିଶି ଶ୍ରୀରାମେ ପ୍ରଦକ୍ଷିଣ ।
ଅଠର କନ୍ୟା ରତ୍ନ ବେଦୀରେ ବସାଇଲେ
ବିଭା କରି ଅନେକ ଯଉତୁକ ଦେଲେ ।
ଶ୍ରୀରାମ ବୋଇଲେ ଶୁଣ ହେ ସୁରାଜ
ହସ୍ତୀ, ଘୋଡ଼ା ଯେତେକ ଦେଇଛ ଧନଦ୍ରବ୍ୟ ।
ବେଗକରି ରଥ ସାଜ ଯିବା ତୁମ୍ଭପୁରୁ
ଶୁଣିକରି ରାଜନ ସାଜିଲେ ହନ୍ତକାରୁ ।
ଅନେକ ସମ୍ଭର୍ବରେ ସେଠାରୁ ବାହାର
କାହାଳୀ ବୀର ବାଦ୍ୟ ଛତ୍ର ଚାମର ନିରନ୍ତର ।
ରଥ ଧ୍ୱଜ ଚିରାଳ ହେଲେ ଆଗେ ଛାଇ
ଅଣନଉ କନ୍ୟା ଘେନି କୁମର ବାହାରଇ ।
ଶ୍ରୀରାମ ଶତ୍ରୁଘନକୁ ଡାକିଣ ଆଜ୍ଞାଦେଲେ
ବେଗ କରି ଅଯୋଧ୍ୟା ଯାଅ ତୁମ୍ଭେ ଭଲେ ।
ସୀତୟାଙ୍କୁ କହିବ ଶମନ ପୁର ଯିବେ
ସାନପୁତ୍ର ବଧୂଙ୍କ ଶିରେ ଅର୍ଘ୍ୟ ବନ୍ଦାଇବେ ।
ଶୁଣି ଶତ୍ରୁଘନ ଅଯୋଧ୍ୟାକୁ ଚଳିଲେ ତୁରିତ
ରଥରୁ ଓହ୍ଲାଇ ଜାନକୀ ଆଗେ ଉପଗତ ।
ବୋଇଲେ ସାନପୁଅ ବଧୂଙ୍କୁ ଅର୍ଘ୍ୟ ଦେବ
ଶ୍ରୀରାମ ଆଜ୍ଞା ହୋଇଛି ଶମନପୁର ଯିବ ।
ଉଠବେଗେ ଠାକୁରାଣୀ ମାୟାରୂପ ଘେନି
ଶୁଣିଣ ଜାନକୀ ଯେ ବେଶ ହେଲେ ପୁଣି ।
ମନୁମାୟା ସୀତା ସଙ୍ଗତରେ ଘେନି ପୁଣ
ରଥରେ ବିଜୟ କରି କଲେକ ଗମନ ।
ଶମନ ପୁର ବନରେ ହେଲେ ପରବେଶ
ଦାସୀ ସଙ୍ଗେ ଘେନିଣ ମିଳିଲେ ହରଷ ।
ଏଥୁ ଅନନ୍ତରେ ଶ୍ରୀରାମ ତିନିଭାଇ
ଶମନ ନାମେ ପୁରେ ପ୍ରବେଶ ହେଲେ ଯାଇଁ ।
ପୁତ୍ର ବଧୂମାନେ ସଙ୍ଗରେ ଅଛନ୍ତି
ହସ୍ତୀ ଘୋଡ଼ା ରଥରେ ବାଟ ଯନ୍ତାଯନ୍ତି ।

ବୀର ବାଦ୍ୟ ଟମକ ନିଶାଣ ବାଜଇ
ଅତି ସମ୍ଭର୍ବରେ ସିଂହଦ୍ୱାରେ ମିଳେ ଯାଇ ।
ବଧୂମାନଙ୍କୁ ଦେଖିଣ ହରଷ ସୀତାହେଲେ
ଅର୍ଘ୍ୟ ବନ୍ଦାଇଣ ଯେ ନିଉଛାଳି କଲେ ।
ପୁତ୍ର ବଧୂ ନେଇଣ ଅନ୍ତଃପୁରେ ହେଲେ
ଛଡ଼ରସେ ଭୋଜନ ସମସ୍ତେ ସେଥିକଲେ ।
ସକଳ ଲୋକଙ୍କୁ ଚରଚ୍ଚ ମନ୍ତ୍ରୀ କଲା
ଧନରତ୍ନ ନେଇଣ ଭଣ୍ଡାରେ ସାଇତିଲା ।
ଦୁଇଦିନ ରହିଣ ଚରିଭାଇ ଗଲେ
ଦକ୍ଷିଣ ଦିଗରେ ଯାଇ ପ୍ରବେଶ ହୋଇଲେ ।
ଶତ୍ରୁଘନର ବେନି କୁମରଙ୍କୁ ବିଭାକରି
ଦୁଇଭାଇଙ୍କ ଶତେକନ୍ୟା ଦେଲେ ଯାଚିକରି ।
ବିଭା ଶେଷ କରାଇ ରଥରେ ବସାଇଲେ
ଅନେକ ଧନ ଯଉତୁକ ଆଣି ଭଲେ ।
ଶତ୍ରୁଘନର ପୁରେ ହେଲେ ପରବେଶ
ଦୁଇଭାଇ ଦୁଇରାଜ୍ୟେ ଗଲେ ସେ ବିଶେଷ ।
ସମସ୍ତଙ୍କୁ ଛାଡ଼ି ଫେରିଲେ ଚରିଭାଇ
ପଶ୍ଚିମ ଦିଗରେ ପ୍ରବେଶ ହେଲେ ଯାଇଁ ।
ଭରତ ଦୁଇ ପୁତ୍ରଙ୍କୁ ଆଠ ରାଜା ବରି
ଚରି ରାଜାରେ ଗୋଟିଏ ଜ୍ୱାଇଁ ବରଣ କରି ।
ଗୋଟିଏ କୁମରକୁ ସତାନବେ କନ୍ୟାଆଣି
ବିଭା କରାଇଲେ ରାଜନମାନେ ଜାଣି ।
ବିଭା ଶେଷ କରି ଅନେକ ଯଉତୁକ ଦେଲେ
ପୁତ୍ରବଧୂ ସଙ୍ଗେ ଘେନି ବାହାର ହୋଇଲେ ।
ଭରତ ରାଜ୍ୟରେ ଯାଇ ହେଲେ ପରବେଶ
ପୁତ୍ର ବଧୂଙ୍କୁ ଘରକୁ ନେଲେ ସେ ବିଶେଷ ।
ସେଠାରୁ ଚରିଭାଇ ଉତ୍ତର ଦିଗେ ଚଳି
ଲକ୍ଷ୍ମଣ ଦୁଇପୁତ୍ରଙ୍କ ପାରୁଶରେ ମିଳି ।
ବିଧି ବିଧାନରେ ବିଭା କାର୍ଯ୍ୟ ସାରିଲେ
ମନ ଆନନ୍ଦରେ ଯିବାକୁ ବାହାରିଲେ ।
ସଙ୍ଗରେ ଦୁଇପୁତ୍ର ଦୁଇଶ ଦଶ କନ୍ୟାଧରି
ରଥପରେ ବିଜୟ ହେଲେ ଆସିକରି ।
ଅନେକ ଧନରତ୍ନ ଯଉତୁକ ଦେଲେ
ସମସ୍ତ ଶ୍ରୀରାମ ରଥରେ ସାଇତିଲେ ।
ଲକ୍ଷ୍ମଣର ରାଜ୍ୟରେ ହେଲେ ପରବେଶ
ପୁତ୍ର ବଧୂ ଘରକୁ ନେଲେ ଯେ ବିଶେଷ ।

ପୁତ୍ର ବଧୂ ରଖିଣ ହରଷ ହୋଇଲେ
ଏଥୁ ଅନନ୍ତରେ କଥା ଶୁଣ ଭଲେ ।
ଶ୍ରୀରାମ ଡକାଇ ଗ୍ଭରିଭାଇ ଆଣି
ବୋଇଲେ ଯେ ଯାହା ଦେଶକୁ ଚଳ ପୁଣି ।
ପରଜା ପାଳି ତୁମ୍ଭେ ନିଶ୍ଚିନ୍ତରେ ବିହର
ଯେ ଯାହା ପୁରକୁ ସର୍ବେ ହୋଇଲେ ବାହାର ।
କେହୁ ହସ୍ତୀନାରେ କେହୁ ଭରଥପୁରେ ମିଳି
କେହୁ କାଞ୍ଚୀ, କର୍ଣ୍ଣାଟ ପୁରକୁ ଯାଏ ଚଳି ।
ଅଯୋଧ୍ୟା ପୁରେ ଶ୍ରୀରାମ ହୋଇଲେ ପ୍ରବେଶ
ଅନେକ ସୁଖେ ବିଳସେ ଦଶରଥ ଶିଷ୍ୟ ।
ଏଥୁ ଅନନ୍ତରେ ରାମଚନ୍ଦ୍ର ରାୟେ
ଦୋହିତାମାନଙ୍କୁ ବିଭା କରିବାକୁ ମନକଏ ।
ସୁମନ୍ତକୁ ଡକାଇ ଆଣିଲେ ବିଶେଷ
ବୋଇଲେ ଯାଅ ଭ୍ରଥ, ଶତ୍ରୁଘ୍ନ ଲକ୍ଷ୍ମଣଙ୍କ ପାଶ ।
କହିବ ଆସିବେ ସେ ଅଯୋଧ୍ୟା ନବରେ
ପୁତ୍ର, ବଧୂ, ଦୋହିତା ଘରଣୀଙ୍କ ସଙ୍ଗତରେ ।
ଆସିଲେ ଦୋହିତାଙ୍କୁ ବିବାହ କରାଇବା
ଋଷିଶୃଙ୍ଗ କୁମରଙ୍କୁ ବରିଣ ଆଣିବା ।
ଏହାଶୁଣି ସୁମନ୍ତ ବେଗେ ଚଳିଗଲେ
ତିନିଭାଇଙ୍କ ପୁରେ ବାରତା କହିଲେ ।
ଫେରିଣ ଅଯୋଧ୍ୟାରେ ହେଲେ ପରବେଶ
ଦର୍ଶନ କଲେ ଯାଇଁ ଶ୍ରୀରାମଙ୍କ ପାଶ ।
ଏଥୁ ଅନନ୍ତରେ ଭ୍ରଥ, ଲକ୍ଷ୍ମଣ, ଶତ୍ରୁଘନ
ଯେ ଯାହାର ପୁରରେ ମଣ୍ଡଣିକଲେ ଯାନ ।
ସମସ୍ତଙ୍କୁ ଘେନିଣ ଅଯୋଧ୍ୟା ପୁରେ ମିଳି
ରାମଙ୍କୁ ଦର୍ଶନ କରି ଭିତର ପୁରେ ଚଳି ।
ଯେ ଯାହା ସନ୍ତୋଷରେ ସମସ୍ତେ ରହିଲେ
ଏଥୁ ଅନନ୍ତରେ କଥା ଶୁଣ ଭଲେ ।
ଶ୍ରୀରାମ ଗ୍ଭରିଭାଇଙ୍କି ବସାଇ ପାଶରେ
ବୋଇଲେ ବିଭାଘର କରିବା ସତ୍ୱରେ ।
ବଶିଷ୍ଠଙ୍କୁ ଡକାଇ ସମସ୍ତ ଯୋଗାଇଲେ
ସୁମନ୍ତକୁ କୁହାଇ ନବର ମଣ୍ଡାଇଲେ ।
ବାଜିଲାକ ବାଦ୍ୟ ଯେ ହୋଇଲା ଚହଳ
ବାଦ୍ୟର ନିଶାଣରେ କମ୍ପଇ ତିନିପୁର ।
ଋଷିଶୃଙ୍ଗ ଗ୍ଭରିପୁତ୍ର ବରଣ କରି ଆଣି
ଶ୍ରୀରାମ ଗ୍ଭରିଭାଇ ଗ୍ଭରିଜ୍ୱାଇଁ ବରଣ ଜାଣି ।
ଗ୍ଭରି ବେଦୀରେ ବସାଇ ବିଭା କରାଇଲେ
ଯେ ବିଧି ବିଧାନରେ ବିଭା ଶେଷକଲେ ।
ଅନେକ ଧନରତ୍ନ ଯଉତୁକ ଦେଲେ
ଲକ୍ଷେ ଦାସୀ ସଙ୍ଗରେ ଶ୍ରୀରାମ ପଠାଇଲେ ।
ଲକ୍ଷେକ ଭଣ୍ଡାର ଯେ ସଙ୍ଗରେ ଗ୍ଭଳିଦେଲେ
ଧନବସ୍ତ୍ର ଅଳଙ୍କାର ବହୁତ ରାମ ଦେଲେ ।
ଗ୍ଭରିରଥେ ଗ୍ଭରିଝିଅ ଗ୍ଭରି ଜ୍ୱାଇଁ ବସି
ଅତି ସମ୍ଭର୍ବରେ ଋଷିମାନେ ବସି ।
ସରଯୁ ଗଙ୍ଗା କୂଳେ ଆଶ୍ରମେ ଯାଇମିଳି
ଶାନ୍ତ ଆସି କରି ନେଲେ ନିଉଛାଳି ।
ରଥରୁ ଓହ୍ଲାଇଣ ପୁତ୍ରବଧୂ ଗଲେ
ପୁତ୍ରବଧୂ ଘେନିଣ ଶାନ୍ତା ତୋଷ ହେଲେ ।
ପାତ୍ର ମନ୍ତ୍ରୀ ସୁମନ୍ତ ଯେ ପୁତ୍ରମାନେ ପୁଣ
ଋଷିଙ୍କି ମେଲାଣି ମାଗି ଅଇଲେ ଲେଉଟିଣ ।
ଶ୍ରୀରାମ ଆଗରେ ଓଳଗି ମେଲାଇଲେ
ଆନନ୍ଦ ହୋଇଣ ରାମ ଭାଇଙ୍କି ଆଜ୍ଞାଦେଲେ ।
ବୋଇଲେ ଯେ ଯାହା ପୁରକୁ ବେଗେ ଚଳ
ପରଜା ପାଳି ତୁମ୍ଭେ ନିଶ୍ଚିନ୍ତେ ବିହର ।
ଅଷ୍ଟ ଋଷିଙ୍କି ଆଣି ଅନେକ ଧନ ଦେଲେ
ପାତ୍ର ମନ୍ତ୍ରୀ ସାମନ୍ତମାନଙ୍କୁ ବୋଧ କଲେ ।
ଶ୍ରୀରାମ ଆଜ୍ଞାରେ ତିନିଭାଇ ଚଳିଗଲେ
ପୁତ୍ର, ବଧୂ, ଘରଣୀ ସଙ୍ଗତରେ ନେଲେ ।
କେହୁ ହସ୍ତୀନାରେ କେହୁ ଭରଥପୁରେ ମିଳି
କେହୁ କାଞ୍ଚି, କର୍ଣ୍ଣାଟ ପୁରକୁ ଯାଏ ଚଳି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଅଯୋଧ୍ୟାରେ ଶ୍ରୀରାମ ସୁଖରେ ବିହରି ।
ଦଶସହସ୍ର ନବଶତ ଚାଳିଶି ବର୍ଷ ବହିଗଲା
ଶ୍ରୀରାମ ନିଜ ଆଶ୍ରମକୁ ଯିବା ନିକଟ ହୋଇଲା ।
ଷାଠିଏ ବରଷ ଭୋଗ କରିବେ ରାମରାଣ
ବୟାଳିଶି ବରଷ ଚିନ୍ତାରେ ଯିବ ଦିନ ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ଶ୍ରୀରାମଙ୍କର କେତେଦିନ ମର୍ତ୍ତ୍ୟରେ ଭୋଗପୁଣ ।
କେତେଦିନ ଶ୍ରୀରାମ ମର୍ତ୍ତ୍ୟରେ ବିହରିଲେ
କେତେଦିନ ବାସୁଦେବ ମନରେ ଚିନ୍ତାକଲେ ।
କେତେ ସହସ୍ର ବରଷ ଯେ ତ୍ରେତୟାଯୁଗ ଭୋଗ
ଶୁଣିକରି ଈଶ୍ୱର କହିଲେ ଉମା ଆଗ ।

ପ୍ରଥମେ ଏ ଯୁଗେ ନର କରନ୍ତି ଯାହାଭୋଗ
ଛଡ଼ଲକ୍ଷ ବରଷ ବଞ୍ଚନ୍ତି ପ୍ରିୟ ଭାବ ।
ଦ୍ୱିତୀୟ ସମ୍ୱତ୍ସରେ ଦୁଇଲକ୍ଷ ଜାଣ
ତୃତୀୟେ ଲକ୍ଷେ ବରଷ ଭୋଗହୁଏ ପୁଣ ।
ଶେଷରେ ଦଶସସ୍ର ବରଷ ପ୍ରମାଣ
ଚାରିଯୁଗରେ ଚାରି ପ୍ରକାରେ ଭିଆଣ ।
ପିତା ଦଶରଥ ନବସସ୍ର ବରଷେ ଗଲେ
ସେଥିରୁ ସହସ୍ରେ ବରଷ ଉଗୁଳିଲେ ।
ଶ୍ରୀରାମଙ୍କୁ ଏଗାର ସହସ୍ର ବର୍ଷ ଭୋଗ
ନିଶ୍ଚିନ୍ତରେ ଭୋଗକଲେ ଦଶସସ୍ର
ନବଶତ ବର୍ଷଯୋଗ ।
ଶତେକ ବରଷ ଯେ ଚିନ୍ତାରେ ଦିନ ନେଲେ
ତେବେ ଶ୍ରୀରାମ ଯେ ପୁରକୁ ବାହାରିଲେ ।
ପାର୍ବତୀ ବୋଇଲେ ବାକି ଷାଠିଏ ବରଷ
ଅଯୋଧ୍ୟାରେ କିସ କଲେ ଅନାଦି ପୁରୁଷ ।
ଈଶ୍ୱର ବୋଇଲେ ଏବେ ଶୁଣ ଗୋ ସେକଥା
ସ୍ୱର୍ଗପୁରେ ବିଚାର କରନ୍ତି ଦେବତା ।
ବୋଇଲେ ବାସୁଦେବ ଆମ୍ଭର ସକାଶରେ
ମାନବ ଦେହ ରହିଲେ ମର୍ତ୍ତ୍ୟପୁରେ ।
କ୍ଷୀରସିନ୍ଧୁ ଶୟନ ହୋଇଅଛି ଶୂନ୍ୟ
ଯୁଗ ନିକଟ ହେଲାତ ନ ଆସେ ନାରାୟଣ ।
ବେଦବର ବୋଲନ୍ତି ଆଉ ଷାଠିଏ ବରଷ
କଷ୍ଟ ପୁରିଲେ ଶ୍ରୀରାମ ଆସିବେ ନିୟତ ।
ଏତେକହି ପିତାମହ ଦେବଙ୍କୁ ସଙ୍ଗେ ନେଲେ
ଅଗସ୍ତିଙ୍କ ଆଶ୍ରମରେ ପ୍ରବେଶ ହୋଇଲେ ।
ଦେଖିକରି ତପୋବନ୍ତ ନମସ୍କାର କଲେ
ଆସନରେ ନେଇ ଦେବଙ୍କୁ ବସାଇଲେ ।
ଧୂପ ଦୀପ ବିଧାନରେ କଲେ ପୂଜାବିଧି
ଦେବେ ବୋଇଲେ ତୁମ୍ଭେ ଶୁଣ ହେ ତପନିଧି ।
ଶ୍ରୀରାମ ଯେ ବାସୁଦେବ ଅଟନ୍ତି ନାରାୟଣ
ଆମ୍ଭର ଦୁଃଖ ଦେଖି ହୋଇଲେ ନର ଜନ୍ମ ।
ଏଗାରସସ୍ର ବରଷ ରହିଣ ଭୋଗ କଲେ
ବାକି ଷାଠିଏ ବରଷ ଗଲେ ଆସିବେ ଭଲେ ।
ତୁମ୍ଭେ ଯାଇ ଶ୍ରୀରାମଙ୍କୁ ଉଚ୍ଚାଟ କରାଇବେ
ପୁତ୍ରମାନଙ୍କୁ ତାଙ୍କର ରାଜ୍ୟ ସମର୍ପିବେ ।
ଏତେ କହି ପିତାମହ ନିଜ ପୁର ଗଲେ
ଦେବତାମାନେ ଯାଇଁ ସ୍ୱର୍ଗରେ ମିଳିଲେ ।

ଶୁଣିଣ ଅଗସ୍ତି ଯେ ବେଗେ ଚଳିଗଲେ
ଅଯୋଧ୍ୟା ନଗ୍ରରେ ସେ ପ୍ରବେଶ ହୋଇଲେ ।
ରତ୍ନ ସିଂହାସନ ପରେ ରାମ ବସାଇଲେ
ନାନା ପୁଷ୍ପ ଅକ୍ଷତ ଋଷିଙ୍କି ସମର୍ପିଲେ ।
ଅଗସ୍ତି ବୋଇଲେ ତୁମ୍ଭେ ରାମଚନ୍ଦ୍ର ଶୁଣ
କୁଶଳେ ପୁତ୍ରବଧୂ ଅଛନ୍ତିଟିକି ପୁଣ ।
ଅଷ୍ଟ ଭୁବନ ତୁମ୍ଭର ଅଛିଟି କୁଶଳେ
ତୁମ୍ଭେ ଚାରିଭାଇ ଅଛଟିକି ଭଲେ ।
କହିଲି କଥାଏ ବାବୁ ରଖିଲ କୁଳଧର୍ମ
ଋଷିଶୃଙ୍ଗ ପୁତ୍ରକୁ ଦୁହିତା ଦେଲ ପୁଣ ।
ଦୁଇକୁଳ ରଖିଲ ବିଚାରି ରଘୁନାଥ
ଶୁଣିକରି ଶ୍ରୀରାମ ନମିଲେ ପାଦଗତ ।
ବୋଇଲେ ତୁମ୍ଭ ପ୍ରସନ୍ନରେ ହେ ତପୀବର
ସକଳ କୁଶଳ ହେ ଅଛଇ ମୋହର ।
ଅଗସ୍ତି ବୋଇଲେ ରାମ ରାଜ୍ୟଭାର ତେଜ
ପୁତ୍ରମାନଙ୍କୁ ତୁମ୍ଭେ କର ହେ ରାଜ୍ୟରାଜ ।
ଚାରିଭାଇ ନନ୍ଦିଗ୍ରାମରେ ଯାଇଁ ରହ
ରାଜ୍ୟର ଭାର ତେଜ ଦଶରଥ ପୁଅ ।
ଏକଥା ଶୁଣି ରାମ ମନେ ସନ୍ତୋଷ ହେଲେ
ତିନିଭାଇଙ୍କି ରାମ ଡକାଇ ଅଣାଇଲେ ।
ତିନିଭାଇ ଆସିଣ ରାମ ଦର୍ଶନ କଲେ
ନବକୁ ରାଜା କରିବା ବଶିଷ୍ଠେ ବିଚାରିଲେ ।
ମନ୍ତ୍ରୀକି ଡାକିଣ ସକଳ ଦ୍ରବ୍ୟ ଆଣି
ବଶିଷ୍ଠ ଅଗସ୍ତିଙ୍କ ସଙ୍ଗରେ ଘେନି ପୁଣି ।
ଚତୁରାଙ୍ଗ ବଳ ସାଧିଣ ଆଣିଲେ
ନଗ୍ରରେ ଉତ୍ସବ ମଣ୍ଡଣି କରାଇଲେ ।
ଲକ୍ଷେ ବ୍ରାହ୍ମଣ ଦୁଇ ସସ୍ର ଋଷି ଆଣି
ବନ୍ଧୁ କୁଟୁମ୍ବଙ୍କୁ ନିମନ୍ତ୍ର କଲେ ପୁଣି ।
ତୀର୍ଥ ଜଳ ନେଇଣ ଶିରରେ ଢାଳିଲେ
ରାଜ ବେଶ କରାଇ ଅଭିଷେକ କଲେ ।
ଚାରି ଛାତ୍ରୀ ଉପରେ ଟେକାଇଲେ ନେଇ
ପୁତ୍ରବଧୂଙ୍କୁ ରାମ କୋଳରେ ବସାଇ ।
ଶ୍ରୀରାମ ବୋଇଲେ କୁମରମଣି ଶୁଣ
ରାଜ୍ୟର ଭାର ତୁମ୍ଭ ଶିରରେ ଦେଲୁ ପୁଣ ।
ପୁତ୍ରଙ୍କର ସମାନରେ ପରଜା ଏବେ ପାଳ
ଅକୀର୍ତ୍ତି ଅପ୍ରୀତି ନୋହିବେ ସର୍ବକାଳ ।

ଏତେ କହି ଭିତରକୁ ପୁତ୍ରବଧୂ ନେଲେ
ଜାନକୀ ସକଳ ବଧୂଙ୍କୁ ଅଣାଇଲେ ।
ବଧୂମାନଙ୍କ ସଙ୍ଗେ ପୁତ୍ରକୁ ବସାଇଲେ
ବନ୍ଦାପନା ବିଧି ଯେ ଜାନକୀ ଯାଇଁ କଲେ ।
ସେଠାରୁ ପୁତ୍ରକୁ ଶ୍ରୀରାମ ଘେନିଗଲେ
ଅମରି ପାଟହସ୍ତୀ ଉପରେ ବସାଇଲେ ।
ନଗ୍ର ବୁଲିବାରେ ଯେ ଶୋଭା ସେ ଦିଶିଲେ
ନରନାରୀ ଦେଖିଣ ଯେ ଆନନ୍ଦ ହୋଇଲେ ।
ନୂଆ ରାଜା ଦେଖିଣ ବନ୍ଦାପନା କଲେ
ଦୁଃଖୀ ଦରିଦ୍ରଙ୍କୁ ରାଧା ଧନବସ୍ତ୍ର ଦେଲେ ।
ଋଷିଙ୍କି ଧନରତ୍ନ ଦେଲେ ବହୁତ ପୁଣ
ଅନେକ ଧନ ଦେଲେ ବ୍ରାହ୍ମଣ ହସ୍ତେଣ ।
ହାଟ ବାଟ ଧୋବା ତୁଠ କରାଇଲେ ଯୂର
ଲେଖିକରି ଦେଲେ ପୂର ଦ୍ରବ୍ୟ ଯେ ସକଳ ।
ପାତ୍ର ମନ୍ତ୍ରୀ ସାମନ୍ତଙ୍କୁ ବୋଧିଣ ଧନ ଦେଲେ
ଚତୁରାଙ୍ଗ ବଳଙ୍କୁ ଧନ ବିହୋଳିଲେ ।
ଭୁରି ଭୋଜନ ଦେଲେ ଋଷି ଯେ ବ୍ରାହ୍ମଣ
ଘରି ଭାଇ ଯେ କଲେ ସେ ଭୋଜନ ।
ନବଙ୍କୁ ଡାକି ଦୁଇ ନବର ସମର୍ପିଲେ
ଜାନକୀଙ୍କି ଘେନିଣ ବାହାର ହୋଇଗଲେ ।
ଶମନ ନାମେ ପୁରରେ ପରବେଶ ହେଲେ
ଅନ୍ତଃପୁର ଜଗତୀରେ ରାମ ବିଜେ କଲେ ।
ବାସୁଦେବ ଋଷି ମନ୍ତ୍ରୀକି ଡକାଇଲେ
ଅଭିଷେକ ବିଧାନ ଅଣାଅ ବୋଇଲେ ।
ଶୁଣିଣ ମନ୍ତ୍ରୀ ବେଗେ ସକଳ ଅଣାଇଲା
କଟକଯାକ ସବୁ ଉତ୍ସବ କରାଇଲା ।
କୁଶଙ୍କୁ ଅଣାଇ ଶରରେ ଶାଢ଼ୀ ଦେଲେ
ରାଜବେଶ କରି ସିଂହାସନରେ ବସାଇଲେ ।
ଏ ରାଜ୍ୟ ନୃପତି ତୁମ୍ଭେ ହେଲ ଯେ ବୋଇଲେ
ପାଟହସ୍ତୀ ଉପରେ ଅମରୀ ଚଢ଼ାଇଲେ ।
ନଗ୍ର ବୁଲାଇଣ ନିଶାଣ ଟେକାଇଲେ
ଘରି ଛତ୍ରୀ ଟେକାଇ ବୀର ବାଦ୍ୟ ବଜାଇଲେ
ନୂଆ ରାଜା ଦେଖି ପ୍ରଜା ବନ୍ଦାପନା କଲେ
ନଗ୍ର ନରନାରୀ ଦେଖି ଆନନ୍ଦ ହୋଇଲେ ।
ନଗ୍ରରେ ହରଷ ଯେ ସମସ୍ତେ ହୁଲାସ
ନବରେ ମିଳିଲେ ଯାଇ ଶ୍ରୀରାମର ଶିଷ୍ୟ ।

ସକଳ ବଧୂଙ୍କୁ ଜାନକୀ ଅଣାଇଲେ
ବଡ଼ ବଧୂକୁ ପୁତ୍ର କୋଳରେ ବସାଇଲେ ।
ପୁତ୍ରବଧୂ ବନ୍ଦାପନା କଲେ ବଇଦେହୀ
ବ୍ରାହ୍ମଣମାନଙ୍କୁ ରାମ ବହୁତ ଧନଦେଇ ।
ଭାରିଭୋଜନ ଋଷି ବ୍ରାହ୍ମଣରେ ଦେଲେ
ଧନଦେଇ ଋଷିଙ୍କି ସନ୍ତୋଷ କରାଇଲେ ।
ଅନ୍ନବସ୍ତ୍ର ଧନ ବ୍ରାହ୍ମଣେ ଦେଲେ ପୁଣ
ହାଟବାଟ ଧୋବାତୁଠ ଯୂରକଲେ ଜାଣ ।
ଯୂରଗଲା ପଦାର୍ଥ ଲେଖିକରି ଦେଲେ
ଚତୁରାଙ୍ଗ ବଳଙ୍କୁ ତୋଷ କରାଇଲେ ।
ପାତ୍ରମନ୍ତ୍ରୀ ଅମନାତ୍ୟ ସମସ୍ତେ ପାଇ ଧନ
ଲକ୍ଷେକ ଧନଦେଲେ ପୁରୋହିତଙ୍କୁ ପୁଣ ।
ସକଳ ତୋଷ କରିଣ ପାଞ୍ଚଦିନ ରହି
ଘରିଭାଇ ଜାନକୀ ସଙ୍ଗରେ ଘେନିଯାଇ ।
ଗଜିନ୍ଦ୍ର ପୁରରେ ଯେ ହେଲେ ପରବେଶ
ଦେଖିଣ ନାଗ ଲୋକେ ହୋଇଲେ ହରଷ ।
ସିଂହଦ୍ୱାରେ ପରବେଶ ହେଲେ ରାମଯାଇଁ
ଜାନକୀଙ୍କି ଘେନିରାମ ବିଜେକଲେ ତହିଁ ।
ପାତ୍ରମନ୍ତ୍ରୀ ଅମନାତ୍ୟ ଡକାଇ ଋଷିଗଣ
ଶ୍ରୀରାମ ବୋଇଲେ ତୁମ୍ଭେ ମନ୍ତ୍ରୀମାନେ ଶୁଣ ।
ଅରୁଣ କୁମର ମୋର ଏପୁରେ ହେବରାଜା
ତୀର୍ଥରୁ ଜଳ ଅଣାଅ ସମ୍ଭାର କରଯା ।
ଶୁଣିଣ ପାତ୍ରମନ୍ତ୍ରୀ ବେଗେ ଚଳିଗଲେ
ସକଳ ତୀର୍ଥରୁ ସେ ଜଳ ଅଣାଇଲେ ।
କଟକ ମଣ୍ଡଣି କରି କଲେକ ଉତ୍ସବ
ଚତୁରାଙ୍ଗ ବଳ ବେଗେ ହେଲେ ସଜ ।
ବାଦ୍ୟ ନିଶାଣ ଶବଦେ କମ୍ପଇ ମେଦିନୀ
ସେପୁର ନରନାରୀ ବୋଲନ୍ତି ତାହା ଶୁଣି ।
କେ ବୋଲନ୍ତି ନୂଆରାଜା ହୋଇବେ ଆମ୍ଭର
ଏମନ୍ତ କୁହାକୁହି ହୁଅନ୍ତି ନାରୀନର ।
ତୀର୍ଥଜଳ ଘେନି ମନ୍ତ୍ରୀ ହେଲେ ପରବେଶ
ଦେଖିଣ ଶ୍ରୀରାମ ଯେ ମନରେ ହରଷ ।
ଅରୁଣ କୁମରକୁ ରାଜବେଶ କଲେ
ତୀର୍ଥ ଜଳରେ ନେଇ ସ୍ନାନ କରାଇଲେ ।
ସିଂହାସନରେ ବସାଇ ଛତ୍ର ଟେକାଇଲେ
ବଡ଼ବଧୂକୁ ପୁତ୍ରର କୋଳେ ବସାଇଲେ ।

ପାଟହସ୍ତୀ ଉପରେ ଅମରୀ ଟଣାଇଲେ
ଅମରୀପରେ ଅରୁଣ କୁମର ବସାଇଲେ ।
କଟକ ବୁଲିବାକୁ କରନ୍ତି ଗମନ
ସକଳ ନାରୀମାନେ ବନ୍ଦାନ୍ତି ଦ୍ୱାରେପୁଣ ।
କଟକ ଫେରିଣ ପୁତ୍ର ନବରେ ପରବେଶ
ଦେଖିକରି ଉର୍ମୀଳା ମନରେ ହରଷ ।
ସକଳ ବଧୂଙ୍କୁ ଠୁଳକରି ଅଣାଇଲେ
ବଡ଼ପାଟ ବଧୂକୁ ପୁତ୍ରକୋଳେ ବସାଇଲେ ।
ଦେଖିକରି ବଡ଼ିଯାଆ ବନ୍ଦାପନା କଲେ
ଏପୁରେ ରାଜନ ତୁ ହୋଇଲୁ ବୋଇଲେ ।
ଏଥୁଅନନ୍ତରେ ଯେ ରାମଚନ୍ଦ୍ର ପୁଣ
ହାଟବାଟ ଧୋବାତୁଠ ଯୁରକଲେ ଜାଣ ।
ବ୍ରାହ୍ମଣରେ ଦାନକଲେ ଦାରିଦ୍ର୍ୟରେ ଧନ
ଧନରତ୍ନ ଋଷିଙ୍କି ଯେ ବିଳୋହିଲେ ପୁଣ ।
ଅମାନାତ୍ୟ ଗଣଙ୍କ ଧନ ଲେଖିକରି ଦେଲେ
ଛତ୍ରିଛତ୍ର ଟେକି ପୁତ୍ର ରାଜ୍ୟ ଯେ ବୁଝିଲେ ।
ପାଞ୍ଚଦିନ ସେ ପୁରରେ ଶ୍ରୀରାମ ରହିଲେ
ସମସ୍ତଙ୍କୁ ଘେନି ରାମ କାବେରୀପୁର ଗଲେ ।
କାବେରୀ କଟକରେ ହେଲେ ପରବେଶ
ଦେଖିଣ ନରନାରୀ ମନରେ ହରଷ ।
ନବର ସିଂହଦ୍ୱାରେ ରଥରୁ ଓହ୍ଲାଇଲେ
ଅନ୍ତଃପୁର ଭିତରେ ପ୍ରବେଶ ଯାଇଁ ହେଲେ ।
ସକଳ ବଧୂ ଆସି ଦରଶନ କଲେ
ଚରଣ ତଳରେ ଯେ ଓଳଗି ଶୋଇଲେ ।
ଜାନକୀ ଉର୍ମୀଳା ଦୁହେଁ କଲ୍ୟାଣ ବାଞ୍ଛାକଲେ
ପାତ୍ରମନ୍ତ୍ରୀ ବିଶ୍ୱାମିତ୍ର ଆସିଣ ମିଳିଲେ ।
ଶ୍ରୀରାମ ବୋଇଲେ ତୁମ୍ଭେ ପାତ୍ରମନ୍ତ୍ରୀ ଶୁଣ
ବରୁଣ କୁମରକୁ ରାଜାହେବ ଜାଣ ।
ଶୁଣିକରି ତୀର୍ଥଜଳ ବେଗେ ଅଣାଇଲେ
ବରୁଣ କୁମରକୁ ରାଜାବେଶ କଲେ ।
କଟକ ଉଜ ଯେ କରାଇବେ ମନ୍ତ୍ରୀ
ଚତୁରାଙ୍ଗ ବଳଘେନି ପ୍ରବେଶ ହେଲେଟି ।
ବୀରବାଦ୍ୟ ଦୁନ୍ଦୁଭି ଯେ ଶଙ୍ଖହିଁ ମହୁରୀ
ବିବିଧରେ ବାଜଣା ବାଜେ ଘେରିକରି ।
ସିଂହାସନ ଉପରେ ରାଜାଙ୍କୁ ବସାଇଲେ
ତୀର୍ଥଜଳ ଘେନିଣ ଅଭିଷେକ କଲେ ।

ଅମରୀ ହସ୍ତୀପରେ ବିଜେ କରାଇଲେ
ତିନି କଟକରେ ହରଷେ ବୁଲାଇଲେ ।
ବ୍ରାହ୍ମଣେ ଦାନଦେଲେ ଋଷିଙ୍କି ଦେଲେ ଧନ
ଦରିଦ୍ରଙ୍କୁ ଦେଲେ ଯେ ଅନ୍ନବସ୍ତ୍ର ପୁଣ ।
ଚତୁରାଙ୍ଗ ବଳଙ୍କୁ ଶାଢ଼ୀସୁନା ଦେଲେ
ପାତ୍ରମନ୍ତ୍ରୀମାନଙ୍କୁ ଯାନ ସମର୍ପିଲେ ।
ହାଟବାଟ ଧୋବାତୁଠ ଯୁର କରାଇଣ
ଯୁରହେଲା ଦ୍ରବ୍ୟମାନ ଲେଖିଦେଲେ ପୁଣ ।
ଏହିପ୍ରାୟେ ଅଷ୍ଟଗୋଟି ପୁତ୍ରଙ୍କୁ ରାଜାକଲେ
ଅଯୋଧ୍ୟା କଟକରେ ପ୍ରବେଶ ଯାଇଁହେଲେ ।
ଚାରି ଭାଇ ଯେ ଯାହାର ପୁରରୁ ଆସିଲେ
ଘରଣୀମାନଙ୍କୁ ଘେନି ନନ୍ଦିଗ୍ରାମରେ ମିଳିଲେ ।
ଭରତଙ୍କ ନବରେ ରାମ ଲକ୍ଷ୍ମଣ ଯେ ରହି
ଭରତ ଶତ୍ରୁଘନ ନବରେ ରହେ ଯାଇଁ ।
ଏମନ୍ତେ ବାରବରଷ ସେଥିରେ ବହିଗଲା
ଜାନକୀ ଯିବାର କାଳ ପ୍ରବେଶ ହୋଇଲା ।
ଋଷି ଶୃଙ୍ଗ ନିଜ ଆଶ୍ରମରେ ଥିଲେ
ଆମ୍ଭଠାରେ ଆସିଣ ପରବେଶ ହେଲେ ।
ପଚାରନ୍ତି ରାମ କଥା ଜାଣକି ତୁମ୍ଭେ ଭଲେ
ତୁମ୍ଭେ ପଚାରିବା କଥା କହିଲୁଁ ଆମ୍ଭେ ଭଲେ ।
ଶୁଣିଣ ଋଷିକୁମର ଆନନ୍ଦ ହୋଇଲେ
ଗ୍ରନ୍ଥକରି ତାହା ଦେଖିକରି ନେଲେ ।
ଆମ୍ଭପାଶୁଁ ଋଷିଶୃଙ୍ଗ ଚଳିଗଲା ଖରେ
ପ୍ରବେଶ ହେଲେ ଯାଇଁ ସେ ଲଙ୍କାଗଡ଼ରେ ।
ବିଭୀଷଣ ମନ୍ଦୋଦରୀ ଆଗରେ କହେବାଣୀ
ଶ୍ରୀରାମ ରାମାୟଣ ଯୁଦ୍ଧ କି ଅଛ ଜାଣି ।
ନବୀନ ଅସୁରକୁ ଡକାଇ ବିଭୀଷଣ
ରାମାୟଣ ଯୁଦ୍ଧଗ୍ରନ୍ଥ କିସକଲେ ପୁଣ ।
ଶୁଣିଣ ଅସୁର ଗ୍ରନ୍ଥବେଗେ ଆଣିଦେଲା
ସେ ଗ୍ରନ୍ଥ ଘେନିଋଷି ଶୀଘ୍ରରେ ଅଇଲା ।
ଅଯୋଧ୍ୟା ନବରେ ଯେ ହେଲେ ପରବେଶ
ରାମପାଶେ ତୁରିତେ ମିଳିଲେ ଋଷିସୁତ ।
ଦେଖିଣ ଶ୍ରୀରାମ ଯେ ନମସ୍କାର କଲେ
ଆସନ ଦେଇଣ ଯେ ଋଷିଙ୍କି ବସାଇଲେ ।
କୁଶଳ ପଚାରିଲେ ଋଷିଙ୍କି ଚାପଧାରୀ
ଋଷିଶୃଙ୍ଗ ବୋଇଲେ କୁଶଳ ଆମ୍ଭରି ।

କେଣେ ଅଇଲେ ବୋଲି ରାମଚନ୍ଦ୍ର ପୁଛି
ଋଷିଶୃଙ୍ଗ ବୋଇଲେ ଗ୍ରନ୍ଥଘେନି ଆସିଅଛି ।
ଚଉରିଭାଇ ଏକଠାବେ ବସିଲେ କହିବା
ନୂଆ ପୁରୁଣା ଗୋଟିଏ ସମ୍ପୂର୍ଣ୍ଣ କରିବା ।
ଶୁଣିକରି ରାମ ଯେ ତିନି ଭାଇଙ୍କି ଡାକି
ବଶିଷ୍ଠଙ୍କୁ ହକାରି ଅଣାଇଲେ କତି ।
ଆସନରେ ଷଡ଼ଜଣ ବସିଲେକ ପୁଣ
ମହାନାଟକ ଶ୍ଳୋକ ଆରମ୍ଭ କଲେଜାଣ ।
ପ୍ରଥମରୁ କିଷ୍କିନ୍ଧ୍ୟା ଗ୍ରନ୍ଥକୁ ବର୍ଣ୍ଣିଲେ
ଜାମୁଗଛ ମୂଳେ ରାମଲକ୍ଷ୍ମଣ ବସିଥିଲେ ।
ଋଷ୍ୟମୂକେ ସୁଗ୍ରୀବର ଅଷ୍ଟସେନା ତୁଲେ
ରାମଙ୍କୁ ଦେଖିବାକୁ ହନୁମନ୍ତ ଗଲେ ।
ଆସିବା ପଚରିବାରୁ କହିଲେ ରାମସୁତ
କୋଟିଏ ସିଂହର ବଳ ହୋଇଲେ ହନୁମନ୍ତ ।
ବଳ ପରୀକ୍ଷା କରିବାକୁ ସେଠାରୁ ଚଳିଗଲେ
ବାମ୍ପୀ ସରୋବରେ ପ୍ରବେଶ ହୋଇଲେ ।
କେଶରୀ ଶାର୍ଦ୍ଦୋଳ ହସ୍ତୀମାରି ଆସିପୁଣ
ସୁଗ୍ରୀବରକୁ ଅଣାଇ ଭେଟ କଲା ଜାଣ ।
ସେଠାରେ ମଇତ୍ର ହେଲେ ଦୁଇଜଣ
ସୁଖଦୁଃଖ ସେଠାରେ କଲେ ଯେ ବୟାନ ।
ଶୁଣିକରି ରାମ ସପ୍ତଶାଳା ଛେଦି
ଏକାବାଣକେ ବାଳିକି ପକାଇଲେ ବଧି ।
କିଷ୍କିନ୍ଧ୍ୟା କଟକରେ ସୁଗ୍ରୀବି ରାଜାକଲେ
ବାଳି ଭାରିଯାକୁ ତା ତଳରେ ରଖିଲେ ।
ସୁଗ୍ରୀବର ବାନର ଭାଲୁଙ୍କୁ ଅଣାଇଲା
ଚଉରିଦିଗକୁ ରାମ ଦୂତ ପେଶି ଦେଲା ।
ଲଙ୍କାର ଗଡ଼କୁ ହନୁମନ୍ତ ଗଲା
ସଇନ୍ୟ ମାରି ଜାନକୀ ଦେବୀ ଠାବକଲା ।
ଶ୍ରୀରାମଙ୍କ ଆଗେ ଆସି କହିଲା ଖବର
ଲଙ୍କାକୁ କଟକାଇ କଲେ ରଘୁବୀର ।
ସମୁଦ୍ରେ ବନ୍ଧ ବାନ୍ଧି ଲଙ୍କାରେ ପରବେଶ
ସୁବଳୟା ଗିରିରେ ରହିଲେ କରି ବାସ ।
ଏକୋଇଶି ଦିନେ ଚଉରି ରାବଣ ନାଶକଲେ
ଅଗ୍ନି ପରୀକ୍ଷା ଜାନକୀ ସେଠାବରେ ହେଲେ ।
ଜାନକୀ ଘେନିଣ ଅଯୋଧ୍ୟା ଅଭିଷେକ ହେଲେ
ଏଗାର ସସ୍ର ବରଷ ରାଜ୍ୟ ଭୋଗ କଲେ ।

ଅଗ୍ନି ପରୀକ୍ଷା ଆଉଥରେ ମାଗିଲେ ରାମରାଣ
ଅଗ୍ନିରେ ପରୀକ୍ଷା ନଦେଇ ଜାନକୀଗଲେ ନିଜସ୍ଥାନ ।
କେତେଦିନ ଉତ୍ତାରୁ ଲକ୍ଷ୍ମଣ ପୁଣ ଗଲେ
ଶ୍ରୀରାମ ମର୍ତ୍ତ୍ୟପୁର ତେଜିଣ ଚଳିଲେ ।
ସାତଶ ପଞ୍ଚାଶ ମହାନାଟକ ଯେ ଶ୍ଳୋକ
ଏରୂପେ ହନୁମନ୍ତ ଲେଖିଣ କଲା ଜାତ ।
ଶ୍ରୀରାମ ଶୁଣିଣ ଯେ ସନ୍ତୋଷ ମନହେଲେ
ବାନର କଥା ମନରେ ଶୁଣିଲୁଁ ବୋଇଲେ ।
ଋଷିଶୃଙ୍ଗ ବୋଇଲେ ରାମାୟଣ ଯୁଦ୍ଧ
ଅସୁରେ ଯାହା ଲେଖିଛନ୍ତି ଶୁଣ ମହାରାଜ ।
ରାବଣ ତିନିଭାଇ ସହସ୍ର ମୁଖା ପୁଣ
ଶତେମୁଖା ମହୀରାବଣ ତୁମ୍ଭେ ଜାଣ ।
ଚଉରିଗଡ଼ରେ ଏ ଯେ ନୃପତିପଣେ ରାଜା
ଦଶରଥ ରାଜା ପୁତ୍ର ଅଟନ୍ତି ରାମରାଜା ।
ଚଉରି କୁମର ଯେ ଦଶରଥଙ୍କର ହେଲେ
ଶ୍ରୀରାମ ଲକ୍ଷ୍ମଣ ଯେ ବନକୁ ଅଇଲେ ।
ରାମର ଭାରିଯା ଯେ ଅଟେ ବଇଦେହୀ
ତାହାକୁ ଘେନି ସଙ୍ଗେ ଶ୍ରୀରାମ ବନେ ରହି ।
ସୁନ୍ଦରୀ ଦେଖି ରାବଣ ତାଙ୍କୁ ଲୋଭ କଲା
ମାୟାକରି ସତୀକି ଘେନିଣ ଅଇଲା ।
ଜାଣିକରି ଜାନକୀ ମାୟାକୁ ତେଜ୍ୟା କଲେ
ଅଗ୍ନିର ସ୍ୱରୂପ ସତୀ ଯେ ଧଇଲେ ।
ହରି ନ ପାରିଣ କହିଲା ବିଡ଼ମ୍ବଣ କଥାମାନ
ଅଗ୍ନିର ବୃଷ୍ଟିକଲା ସତୀ ତାହା ଉପରେଣ ।
ତାର ସ୍ୱାମୀ ଜାଣିଣ ମାରୁତି ଭେଦିଦେଲେ
ଏକାବାରେକେ ଅନେକ ବଳ ନାଶକଲେ ।
ଲଙ୍କା ପୋଡ଼ିଦେଇ ରାମଙ୍କୁ କହେ ଯାଇ
ବାନର ଘେନି ରାମ ଅଇଲେକ ଧାଇଁ ।
ପର୍ବତ ଅଣାଇଣ ସମୁଦ୍ରେ ବନ୍ଧ ବାନ୍ଧି
ଚଉରି ଭାଇ ରାଜାଗଣେ ହୋଇଲେକ ରୁନ୍ଧି ।
ବଇଦେହୀ ଶ୍ରୀରାମ ମନରେ କ୍ରୋଧହେଲେ
ଚଉରି ରାବଣ ମାରି ଅସୁର ଶେଷକଲେ ।
ଜାନକୀ ଘେନି ରାମ ଅଯୋଧ୍ୟା ପରବେଶ
ଏଗାର ସସ୍ର ବରଷ ଅଯୋଧ୍ୟା ନରେଶ ।
ଭାଇ ଭାରିଯା ଆଗେ ସ୍ୱର୍ଗକୁ ଚଳିଗଲେ
ପଛରେ ଶ୍ରୀରାମଚନ୍ଦ୍ର ବୈକୁଣ୍ଠ ପୁରଗଲେ ।

ଏମନ୍ତ ପ୍ରକାରେ ଦୈତ୍ୟ ଗ୍ରନ୍ଥ ଲେଖି ରଖି
ସୁନାଟକ ଶ୍ଳୋକ ସେ ଗ୍ରନ୍ଥ ନାମ ଗୋଟି ।
ଶୁଣିଣ ଶ୍ରୀରାମ ଋଷିଙ୍କି ପଚାରିଲେ
କିଷ୍କିନ୍ଧ୍ୟା ମହାନାଟକ ମାରୁତି ବିଚାରିଲେ ।
ଭେଟ ହେଲାଠାରୁ ତାକୁ ପରତେ ହୋଇଲା
ସେଠାରୁ ଦେଖିବା କଥା ସେ ବର୍ଣ୍ଣନା କଲା ।
ଅରଣ୍ୟବାସୀ ମୁଁ ଯେ ଯିବାରୁ ସତ୍ୟପୁଣ
ଜାନକୀ ମୋର ସଙ୍ଗେ ଯିବାର ପ୍ରମାଣ ।
ପଞ୍ଚବଟୀ ବନରେ ରହିବା କଥା ସତ
ଦଶଗ୍ରୀବ ମୋର ନାରୀ ନେବାର ବଳକୃତ ।
ଲଙ୍କାରେ ଦେଖିବାଠାରୁ ଗ୍ରନ୍ଥକୁ ବର୍ଣ୍ଣିଲେ
ଦୁଇକଥା ଅଧା ହେଲା ଶୁଣ ଋଷିଭଲେ ।
ଆଉ କିଏ କି ବର୍ଣ୍ଣିଲା କହ ମୋର ଆଗେ
ଋଷିଶୃଙ୍ଗ ବୋଇଲେ ଶୁଣ ହେ ଦେବଏବେ ।
ବାଲମୀକ ଋଷି ଯେ ତୁମ୍ଭର ଶ୍ୱଶୁର
ସେ ରାମାୟଣ ଗ୍ରନ୍ଥ କଲେକ ବିଚାର ।
ଜନମ ହେଲା କାଲୁ ଯିବାର ପରିଯନ୍ତେ
ବର୍ଣ୍ଣିଲେ ମହାମୁନି ପୁରାଣ ଉକତେ ।
ଅଯୋଧ୍ୟାକୁ ଋଷିଶୃଙ୍ଗ ଯିବାର ଯେ ପୁଣ
ପୁତ୍ରଲୋଭେ ଦଶରଥ ଯାଗକଲେ ପୁଣ ।
ଋଷିଶୃଙ୍ଗ ଚରୁଦେଲେ ହେଲେ ଚାରିପୁତ୍ର
ବାର ବରଷରେ ତାଙ୍କୁ ନେଲେ ବିଶ୍ୱାମିତ୍ର ।
ଯାଗରଖି ଅହଲ୍ୟା ପାଷାଣୁ ତାରିଲେ
ମିଥିଳାରେ ଧନୁ ଭାଙ୍ଗି ଜାନକୀ ବିଭାହେଲେ ।
ସୀତାଙ୍କୁ ଘେନି ରାମ ଆସନ୍ତେ ଅଯୋଧ୍ୟା
ବାଟରେ ଭେଟିଲେ ପର୍ଶୁରାମ ମହାଯୋଦ୍ଧା ।
କଳହ କରନ୍ତେ ରାମ ଋଷିଙ୍କି ଜିଣିଲେ
ଛଡ଼ମାସ ଶ୍ରୀରାମ ଅଯୋଧ୍ୟା ରହିଲେ ।
ରାଜା କରିବାକୁ ରାମ ପିତାଙ୍କର ମନ
କଇକେୟୀ ଜନନୀ ନାସ୍ତି କଲେ ଜାଣ ।
ଚଉଦବରଷ ଯେ ବନକୁ ଭେଦିଲେ
ଭାଇ ଭାରିଯାଙ୍କୁ ରାମ ସଙ୍ଗତରେ ନେଲେ ।
ଭାଇ ଦେଖନ୍ତେ ରାମ ସୀତା ଏକଥାନ
ରଜନୀ ଦିବସରେ ନୋହିଲା ବାରଣ ।
ଗୋଦାବରୀ କୂଳରୁ ରାବଣ ନେଲା ହରି
ନ ଦେଖିଣ ଶ୍ରୀରାମ କିଷ୍କିନ୍ଧ୍ୟାରେ ମିଳି ।
ସୁଗ୍ରୀବ ଦେଖିଣ ଯେ ବାଳିକି ନାଶ କଲେ
ବାନରଗଣ ରାଇ ଚାରିଦିଗକୁ ଭେଦିଲେ ।
ହନୁମନ୍ତ ଦେଖିଣ ଅଇଲା ଯାଇଁ ସୀତା
ସମୁଦ୍ରେ ବନ୍ଧ ବାନ୍ଧିଣ ଗଲେ ଜଗଜ୍ଜିତା ।
ରାବଣ ସଗୋତ୍ର ସହିତେ ନାଶ କଲେ
ଜାନକୀ କୋଳେ ଘେନି ଅଭିଷେକ ହେଲେ ।
ଏଗାର ସସ୍ର ବରଷ ସେଥିରେ ରହିଲେ
ଜାନକୀ ଶ୍ରୀରାମ ରମଣ ଭୋଗ କଲେ ।
ଗର୍ଭସ୍ଥିତ ହେବାରୁ ଜାନକୀ ତେଜ୍ୟାକଲେ ।
ନୀଚ ଲୋକଙ୍କର ବୋଲେ ଶ୍ରୀରାମ ରହିଲେ
ଯାଗବେଳେ ପୁତ୍ରମାନେ କହିଲେ ପିତାକଥା
ବିରକତେ ଶ୍ରୀରାମ ଆଣିଲେ ଯାଇଁ ସୀତା ।
ଅଗ୍ନି ପରୀକ୍ଷା ଜାନକୀକି ମାଗିବାରୁପୁଣ
ପାତାଳେ ପଶିଲେ ସତୀହୋଇ ତୋଷମନ ।
ଚଳିଗଲେ ପଛନ୍ତେ ଭାଇ ତା ଲକ୍ଷ୍ମଣ
କିଛିଦିନ ଅନ୍ତେ ଶ୍ରୀରାମ ଗଲେ ପୁଣ ।
ପିତା ଯିବାରୁ ନବ ରାଜ୍ୟରେ ରାଜାହୋଇ
ସେ କଥାକୁ ଶୁଣି ଶ୍ରୀରାମ ପୁଣି କହି ।
ବାଲମୀକ ଋଷି ଯେ ଶଶୁର ମୋର ପିତା
ଜାନକୀ ଅଟନ୍ତି ଯେ ତାଙ୍କର ଦୋହିତା ।
କେମନ୍ତେ ବିଡ଼ମ୍ବିଣ କଥା ସେ ବର୍ଣ୍ଣିଲେ
ସକଳ କଥା ମୋର ଛାଡ଼ିଣ ଗ୍ରନ୍ଥ କଲେ ।
ଏ ଗ୍ରନ୍ଥ ନିର୍ମଳ ଯେ ନୋହିଲା ମହାଋଷି
ଏ ଗ୍ରନ୍ଥକୁ ଜନ୍ମଠାରୁ ବର୍ଣ୍ଣିଲେ କେହ୍ନୁବସି ।
ଯେବେ ମୁହିଁ ନାରାୟଣ ଗ୍ରନ୍ଥ ମୋର ନାମେ
କେଉଁଠାରୁ ଅଇଲି କେ ମୋତେ ନିଉନେ ।
କ୍ଷୀର ସାଗର ଯେବେ ଅଟଇ ମୋର ବାସ
ଅନନ୍ତ ଉପରେ ମୋର ଯେବେ ହେ ନିବାସ ।
ଦେବତାଙ୍କ ହସ୍ତେ ଯେବେ ନ ମଲେ ରାକ୍ଷସ
କେମନ୍ତେ ଜାଣିଣ ମୁଁ ଅଇଲି ମର୍ତ୍ତ୍ୟଦେଶ ।
ସମସ୍ତଙ୍କ ଶରୀରେ ମୋହର ନିବାସ ତ
କିମ୍ପାଇଁ ବଇରୀ ଯେ ଅସୁରେ ହେଲି ମୁଁ ତ ।
ଆଦ୍ୟପ୍ରାନ୍ତ କରି କେହୁ ଅଛି କି ପୁଣ ବର୍ଣ୍ଣି
ସେକଥା ମୋର ଆଗେ କହ ହେ ମହାମୁନି ।
ମୋର କଥା କହିଲେ ସମ୍ଭବ ଯାହାରେ
ହରଷ ହେବେ ତା ଶୁଣିଲେ ମୁଁ କର୍ଣ୍ଣରେ ।

ଋଷିଶୃଙ୍ଗ ବୋଇଲେ ଶୁଣିବା ଏବେ ହେଉ
ହର ପାର୍ବତୀଙ୍କର କରିବା କଥା ଯେହୁ ।
ସେହି ବର୍ଣ୍ଣିବାର କଥା ଶୁଣିଲେ ହେବତୋଷ
ଦେହରେ ତୁମ୍ଭର ଯେ ନ ରହିବ ପ୍ରାଣ ।
ଶ୍ରୀରାମ ବୋଇଲେ ସେ କଥା ମୋତେ କହ
ତ୍ରିଲୋଚନ ନୀଳା କରେ ନିତ୍ୟ ପାର୍ବତୀ ଦେହ ।
ଋଷିଶୃଙ୍ଗ କହନ୍ତେ ଶ୍ରୀରାମଚନ୍ଦ୍ର ଶୁଣି
ମଣିଭଦ୍ର ସତ୍ୟଯୁଗେ ବୈକୁଣ୍ଠପୁରେ ପୁଣି ।
ପଶ୍ଚିମଦ୍ୱାରେ ଯେ ଦ୍ୱାରପାଳ ଜାଣ
ଜୟେ ବିଜୟେ ନାମ ତାଙ୍କର ଅଟେ ପୁଣ ।
ଅନନ୍ତ ଶୟନରେ ଭୋଳ ତୁମ୍ଭ ଅଙ୍ଗ
କମଳା ପ୍ରତିଦିନ ଦର୍ଶନ ପ୍ରୀତି ଭାବ ।
ଦିନେକ କମଳା ଯେ ଯାନ୍ତେ ସେ ବାଟରେ
ଜୟେ ବିଜୟେ ତେରଛେ ଚାହିଁଲେ ବେଦୀରେ ।
ଦେଖିଣ କମଳା ଯେ ତାଙ୍କୁ ଶାପଦେଲେ
ଅସୁର ଜନ୍ମହୁଅ ବୋଲିଣ ବୋଇଲେ ।
ତକ୍ଷଣେ ଦୁଇଜଣ ସେଠାବରୁ ଗଲେ
ହିରଣ୍ୟ କଶ୍ୟପ ହୋଇଣ ଜନ୍ମହେଲେ ।
ଦେବଙ୍କୁ ଜିଣିବାରୁ ଦେବେ ସ୍ତୁତି କଲେ
ନୃସିଂହ ରୂପ ଧରି ଅସୁର ନିବାରିଲେ ।
ରାବଣ କୁମ୍ଭକର୍ଣ୍ଣ ରୂପରେ ହେଲେ ଜାତ
ତ୍ରୈଲୋଚନ ହୋଇଲା ଇନ୍ଦ୍ରଜିତ ପୁତ୍ର ।
ଶତେମୁଖା ରାବଣ ହେଲା ଶଙ୍ଖାସୁର
ସହସ୍ର ମୁଖା ହୋଇଲା ଜଳନ୍ଧର ବୀର ।
ଶମ୍ଭୁସୁର ହୋଇଲା ଯେ ମହୀରାବଣ
ଏରୂପେ ଚାରି ରାବଣ ଜନ୍ମହେଲେ ପୁଣ ।
ପ୍ରଥମେ ସହସ୍ରେମୁଖା ଜାତ ଯେ ହୋଇଲା
ସଦାଶିବ ନାମଙ୍କୁ ବରକ୍ଷେ ମନାସିଲା ।
ଅମର ହୋଇଣ ତିନିପୁର ସେ ଜିଣିଲା
ସ୍ୱର୍ଗର ଦେବତାଙ୍କୁ ଧରି ଘେନିଗଲା ।
ଚଉଦ ଯୁଗଯାଏ ବନ୍ଦିରେ ରଖିଲା
ଈଶ୍ୱର କହିବାରୁ ଦେବଙ୍କୁ ଛାଡ଼ିଦେଲା ।
ତା ଉତ୍ତାରୁ ଶତେମୁଖା ରାବଣ ଜାତ ହେଲା
ତିନିପୁର ଜିଣିଣ ସେ ଦେବଙ୍କୁ ଧରିନେଲା ।
ସାତଯୁଗ ପରିଯନ୍ତେ ବନ୍ଦୀରେ ରଖିଲା
ଇନ୍ଦ୍ର ପବନ କହିବାରୁ ଦେବଙ୍କୁ ଛାଡ଼ିଦେଲା ।

ସେ ଉତ୍ତାରୁ ଦଶମୁଖା ରାବଣ ଜାତ ହେଲା
ତିନିପୁରେ ସାତଗଣ୍ଡା ଯୁଗ ସେ ବୁଲିଲା ।
ବ୍ରହ୍ମାର ବରେ ସେ ଯେ ହେଲା ଅମର ଜାଣ
ଦେବତାଙ୍କୁ ଧରିଣ ଖଟାଏ ପାଦେ ପୁଣ ।
ବ୍ରହ୍ମାଙ୍କ ବରେ ସେ ଯେ ନ କଲା ଅସୁର
ଦେବଙ୍କର କୂଟ ସେ ଯେ କଲେକ ଅପାର ।
ବୈକୁଣ୍ଠପୁରେ ସେ ଯେ ଯୁଗ ପରିଯନ୍ତେ
ତପସ୍ୟା କଲେ ବାସୁଦେବର ପାଦଗତେ ।
ସେଠାରୁ ବାସୁଦେବ ନିଦ୍ରା ତେଜ୍ୟା କଲେ
ମାରିବି ଅସୁର ବୋଲି ଦେବଙ୍କୁ କହିଲେ ।
ବୋଇଲେ ବାନର ଭାଲୁ ନରରୂପେ ଜାତ
ସକଳ ଦେବତାଏ କର ହେ ସମ୍ଭୁତ ।
କମଳାଙ୍କୁ କହିଲେ ବେଗରେ ତୁମ୍ଭେ ଚଳ
ମେରୁର କୋଳେ ଜାତ ହୁଅଯା ବେଗର ।
ବେଦମତୀ ନାମ ଯେ ତୋହାର ହୋଇବ
ବୃଦ୍ଧ ନାରୀ ତୋର ସଙ୍ଗରେ ଜାତ ହେବ ।
ବନରେ ଯାଇଁ ତପସ୍ୟା କରୁଥିବୁ ତୁହି
ତୋତେ ଦଶମୁଖା ଧରିବ ବଳେ ଯାଇଁ ।
ଶାପ ଦେଇ ଅଗ୍ନିରେ ଝାସିବୁ ସେହିରୂପ
ମୃତ୍ୟୁ ଅଙ୍ଗ ତୋର ନେବ ବିଶ୍ରବା ପୁଅତ ।
ମନ୍ଦୋଦରୀ ହସ୍ତରେ ନେଇଣ ତୋତେ ଦେବ
ମୋଞ୍ଚନ କର ବୋଲି ରାଣୀକି କହିବ ।
ବ୍ରହ୍ମାପୁତ୍ର ବୋଲେ ରାଣୀମଞ୍ଜୁଷେ ତୋତେଭରି
ସମୁଦ୍ରେ ନେଇଣ ପକାଇଦେବ ନାରୀ ।
ମାୟା ପୁରୁଷ ମଞ୍ଜୁଷ କୂଳରେ ଧରି କରି
ନେଇଣ ପୋତିଲେ ସେ ମିଥିଳା ନଗରୀ ।
ସନ୍ତାନ ନିମନ୍ତେ ଜନକ ଯେ ରାଜା
ସୁମରଣା କଲା ଦେବ ମହାରାଜା ।
ସେ ଆସି ତତକ୍ଷଣେ ଜନକଙ୍କୁ କହି
ଯାଗ କଲେ ନେତ୍ରରେ ନାରାୟଣ ଦେଖିବୁ ତୁହି ।
ଦଶରଥ ଘରେ ଜାତ ହେବି ମୁହିଁ
ଅନନ୍ତଙ୍କୁ ସଙ୍ଗେ ଘେନି ଚତୁର୍ଦ୍ଧା ରୂପ ହୋଇ ।
ମୋହର ଛଡ଼ମାସେ ତୋହର ଜନ୍ମ ପୁଣ
ଯାଗ କରିବେଟି ଜନକ ରାଜନ ।
ଯାଗଶାଳକୁ ସେ କରିବେ ଶୋଧନ
ଲଙ୍ଗଳରେ ଲାଗିବ ମଞ୍ଜୁଷଟି ଜାଣ ।

ମଞ୍ଜୁଷ ପାଦନ୍ତେ ଫେଡ଼ିବ ନେଇକରି
ବାହାର ହେବୁ ତୁ ଯେ ଯୁବା ସ୍ୱରୂପ ଧରି ।
ଶୁଣିଣ କମଳା ବେଗେ ଚଳିଗଲେ ପୁଣ
ମେରୁର ଘରରେ ଯେ ଜନ୍ମହେଲେ ତକ୍ଷଣ ।
ବେଦମତୀ ହୋଇଣ ତପସ୍ୟା ସେ ଯେ କଲା
ରାବଣ ଲଙ୍ଘନ୍ତେ ଜନକ ପୁର ଗଲା ।
ନାରାୟଣ ଜାଣିଲେ ଅନନ୍ତ ଶୟନେ
ଦଶରଥ ଘରେ ଜନ୍ମିଲେ ତତକ୍ଷଣ ।
ବିଭାଣ୍ଡକ କୁମର ଚରୁଯାଗେ ଦେଲେ
ବାସୁଦେବ ଚତୁର୍ଦ୍ଧା ରୂପରେ ଜାତ ହେଲେ ।
ବାରବରଷେ ସେ ତାଡ଼କୀ ନାଶ କଲେ
ଅନେକ ଅସୁର ଦେଖିଣ ମାଇଲେ ।
ବିଶ୍ୱାମିତ୍ର ଯାଗ ରଖି ଅହଲ୍ୟା ତାରିଲେ
ଶିବଧନୁ ଭାଙ୍ଗି ଜାନକୀ ବିଭାହେଲେ ।
ବାଟେ ପର୍ଶୁରାମ ଜିଣି ଅଯୋଧ୍ୟା ପ୍ରବେଶ
ଦଶରଥ ସାମର୍ଥ ଦେଖିଣ ହରଷ ।
ରାଜା କରିବାକୁ ମନରେ ବିଚାରିଲେ
କୈକେୟୀ ପାଟରାଣୀ ନିରୋଧି ସତ୍ୟ କଲେ ।
ଭାଇ ଭାରିଯା ଘେନି ଶ୍ରୀରାମ ବନ ଗଲେ
ବାରଦିନରେ ପିତା ପ୍ରାଣେ ନାଶ ହେଲେ ।
ଚିତ୍ରକୂଟରେ ଶ୍ରୀରାମ ପାଇଲେ ସନ୍ଦେଶ
ସେଠାରୁ ପଞ୍ଚବଟୀକି ଚଳିଲେ ରଘୁଶିଷ୍ୟ ।
ପଞ୍ଚବଟୀ ବନରେ ସେ ବୁଲିଣ ରହିଲେ
ସେଠାରେ ବିପତ୍ତି ପଡ଼ିଲା ଶ୍ରୀରାମରେ ।
ବିଶ୍ରବାର ଦୁହିତା ଶୂର୍ପଲକ୍ଷୀ ନାରୀ
ବନେ ବୁଲୁଥିଲା ସେ ଗିରସ୍ତ ଲୋଡ଼ିକରି ।
ଶ୍ରୀରାମ ଲକ୍ଷ୍ମଣ ସୀତା ଦେଖିଲା ନେତ୍ରରେ
ନୋକେଇ ହୋଇ କହିଲା ଭାଇର ଆଗରେ ।
ରାବଣ ଯାଇଣ ତପସ୍ୱୀ ବେଶ ଧରି
ଶ୍ରୀରାମର ଘରଣୀକି ନେଲା ହରି କରି ।
ରଥରେ ବସାନ୍ତେ ଦେବୀ ଅଗ୍ନିରୂପ ହେଲା
ସ୍ୱାମୀ ମାରିବେ ବୋଲି ତାକୁ ନ ଧ୍ୱଂସିଲା ।
ଅଗ୍ନିରୂପ ଦେଖିଣ ତାକୁ ରାବଣ ଭୟ କଲା
ଅଶୋକ ବନରେ ସେ ନେଇଣ ରଖିଲା ।
ପାହାରୀ ଜଗାଇଲା ବିଶ୍ରବାର ସୁତ
ବିଡ଼ମ୍ବଣ କଥା ତାକୁ କହିଲା ବହୁତ ।
ତାହାର ବଚନକୁ ଜାନକୀ କୋପକଲେ
ମନରେ ସ୍ୱାମୀଙ୍କି ସେ ସୁମରଣା କଲେ ।
ମୃଗ ମାରି ଯାଇଥିଲେ ଦୁଇଭାଇ ପୁଣ
ଲେଉଟି ଦେଖିଲେ ନାହିଁ ଜାନକୀଟି ପୁଣ ।
ଜାନକୀ ଅନେକ ବିକଳେ କହିଲେ
ଗରୁଡ଼ ପୁତ୍ରଠାରୁ ବାରତା ପାଇଲେ ।
ଋଷମୁକ ପର୍ବତରେ ହେଲେ ପରବେଶ
ସୁଗ୍ରୀବ ସଙ୍ଗରେ ଶ୍ରୀରାମ ହେଲେ ମିତ୍ର ।
ମଇତ୍ର ଛଳେ ରାମ ବାଳିକି ନାଶ କଲେ
ସପ୍ତଶାଳ ଛେଦି ଦୁନ୍ଦୁଭି ଅସ୍ଥି ଫିଙ୍ଗିଦେଲେ ।
ବାଳିର ଭାରିଯା ଅଟେ ତାରା ନାରୀ
ଶ୍ରୀରାମଙ୍କୁ ଶାପ ଦେଲା ମନେ କ୍ରୋଧ କରି ।
ବୋଇଲା ମୋର ସ୍ୱାମୀକି ଅକାରଣେ ମାରି
ଚଉଦ ବରଷ ଭାରିଯା ଭୋଗ ନୋହୁ ତୋହରି ।
ଶୁଣିକରି ଶ୍ରୀରାମ ପୁରୁଷାର୍ଥ ତାଙ୍କୁ କଲେ
ପଞ୍ଚକନ୍ୟାରେ ତାକୁ ଗଣିତା କରାଇଲେ ।
ସୁଗ୍ରୀର ତଳରେ ରଖିଲେ ତାକୁ ପୁଣ
ତେବେ ତୋଷ ହେଲା ତାରାବତୀ ଜାଣ ।
ବାନର ଭାଲୁଙ୍କୁ ସୁଗ୍ରୀ ଡକାଇ ଆଣିଲା
ନଉ ସାଗର ସୈନ୍ୟବଳ ସଜ କଲା ।
ଚାରିଦିଗକୁ ଶ୍ରୀରାମ ପେଶିଲେ ଦୂତ ପୁଣ
ଦକ୍ଷିଣ ଦିଗକୁ ଯେ ଗଲା ହନୁମାନ ।
ସମୁଦ୍ର ଡେଇଁଣ ସେ ଲଙ୍କାରେ ପ୍ରବେଶ
ଅଶୋକବନେ ଜାନକୀ ଦେଖେ ପବନ ଶିଷ୍ୟ ।
ବାରତା କହିଣ ସେ ଅସୁର ନାଶ କଲା
ଲଙ୍କା ପୋଡ଼ିଦେଇ ରାମ ଆଗରେ ମିଳିଲା ।
ଜାନକୀଙ୍କ ବାରତା ଶ୍ରୀରାମ ଆଗେ କହି
ଲଙ୍କାକୁ କଟକାଇ ଶ୍ରୀରାମ କରଇ ।
ପର୍ବତେ ବନ୍ଧ ବାନ୍ଧି ସୁବଳୟାରେ ଠଣା
ରାବଣର ସଙ୍ଗରେ କଲେ ରାତିହଣା ।
ତିନିଦିନେ ନାଗଫାଶ ରାବଣ ପୁତ୍ର ମାରି
ଗରୁଡ଼ଙ୍କୁ ଘେନି ଆସେ ମାରୁତି ଯାଇକରି ।
ପାଞ୍ଚଦିନେ କୁମ୍ଭକର୍ଣ୍ଣ ଅସୁର ନାଶ ଗଲା
ସାତଦିନେ ଇନ୍ଦ୍ରଜିତ ମାୟା ସୀତା ମାଇଲା ।
ନବଦିନେ ଷାଠିଏ କୁମର ନାଶ ଗଲେ
ଦଶଦିନେ ବାରଶତ ନାତି ତାର ମଲେ ।

ଏଗାର ଦିନରେ ଯେ ଇନ୍ଦ୍ରଜିତ ମଲା
ବାର ଦିନେ ମହୀରାବଣ କୁଟ କଲା ।
ତେରଦିନେ ଏକଘନୀ ମାଇଲା ରାବଣ
ସେଦିନ ଭରତଙ୍କୁ କହିଲେ ହନୁମାନ ।
ଲକ୍ଷେ ରାଜା ଘେନି ଭରତ ଲଙ୍କାରେ ପ୍ରବେଶ
ମହୀରାବଣକୁ ଯେ ଭେଦିଲା ଦଶାଈଶ ।
ଶତେମୁଖା ରାବଣକୁ ଅଯୋଧ୍ୟା ପେଶିଦେଲା
ଶତ୍ରୁଘନ ସଙ୍ଗରେ ଅସୁର ଯୁଦ୍ଧ କଲା ।
ନପାରି ଅସୁର ଯେ ଲଙ୍କାକୁ ପଳାଇଲା
ମହୀରାବଣ ମାୟାରେ ପଦ୍ମଭୂଅ କଲା ।
ଲକ୍ଷ୍ମଣଙ୍କୁ ହରିନେଇ ତାସଙ୍ଗେ ଯୁଦ୍ଧକଲା
ନପାରି ଅସୁର ଯେ ଲଙ୍କାକୁ ପଳାଇଲା ।
ଲକ୍ଷ୍ମଣ ତାର ପଛେ ଗୋଡ଼ାଇଛନ୍ତି ପରା
ଚଉଦଦିନେ ଯୁଦ୍ଧରେ ରାବଣ ମିଳିଲା ।
ସାତଦିନ ଦୁଇ ପ୍ରହର ଯୁଝିଲା ଅତିରାଗେ
ଦୁଇଦିନେ ଶତେମୁଖା ମଲା ତାର ଆଗେ ।
ପାଞ୍ଚଦିନେ ମହୀ ଯେ ରାବଣ ନାଶଗଲା
ଷଡ଼ଦିନେ ଭରତ ପ୍ରବେଶ ହୋଇଲା ।
ସାତଦିନେ ରାବଣେଶ୍ୱର ଯେ ନାଶଗଲା
ଲଙ୍କାଗଡ଼ରେ ବିଭୀଷଣ ରାଜା ହେଲା ।
ମନ୍ଦୋଦରୀକି ତାର ତଳରେ ରଖିଲେ
ସତୀଙ୍କ ସଙ୍ଗେ ଗଣିତା ଶ୍ରୀରାମ ତାକୁକଲେ ।
ସହସ୍ର ମୁଖା ରାବଣ ଶୁଣିଣ ବେଗେ ଆସି
ସମୁଦ୍ଧି ଛଳେ ଶ୍ରୀରାମ ସଙ୍ଗରେ ରଣେଧ୍ୱଂସି ।
ଶ୍ରୀରାମ ତାର ସକଳ ନାଶକଲେ
ସସ୍ରମୁଖା ରାବଣକୁ ଜାନକୀ ବଧିଲେ ।
ଚରି ରାବଣ ମାରି ଅଇଲେ ରାମରାଣ
ସେତୁବନ୍ଧ ତିନିଠା କାଟିଲେ ରାମରାଣ ।
ରାମେଶ୍ୱର ଧାମ କରି ଅଯୋଧ୍ୟା ଅଇଲେ
ଅଭିଷେକ ହେଲାବେଳେ ରାମଙ୍କୁ ନିମନ୍ତିଲେ ।
ସ୍ୱର୍ଗକୁ ଦିଗବିଜେ ଶ୍ରୀରାମ ପୁଣି କଲେ
ସଭାରେ ବସାଇ ଦେବଙ୍କୁ ଅଯୋଧ୍ୟା ଅଇଲେ ।
ରାଜାମାନେ ରାଜ୍ୟର ଲୋକ ଘେନିଣ ପୁଣ
ଶ୍ରୀରାମଙ୍କ ଚରଣେ କଲେ ଦରଶନ ।
ପାତାଳକୁ ଦିଗବିଜେ ଶ୍ରୀରାମ ପୁଣି କଲେ
ଧରାବତୀକି ପର୍ଶୁରାମ ଯେ ବିଭାକଲେ ।

ଜମ୍ବେବଙ୍କୁ ନିଜପୁରେ ନେଇଣ ରଖାଇଲେ
ଅଯୋଧ୍ୟାରେ ଶ୍ରୀରାମ ବରବେଶ ହେଲେ ।
ସପ୍ତଦ୍ୱୀପ ଦିଗବିଜେ କଲେ ରଘୁନାଥ
ସପତ ସାଗର ଅସୁରଙ୍କୁ କଲେ ନିପାତ ।
ସପତ ଦ୍ୱୀପର ଦୁଷ୍ଟଙ୍କୁ ନିବାରିଲେ
ସନ୍ଥଜନଙ୍କୁ ଶ୍ରୀରାମ ସଂସାରେ ରଖିଲେ ।
ତିନିପୁରେ ସାଧକରି ଅଇଲେ ରାମରାଣ
ଅଯୋଧ୍ୟା ନଗରେ ପ୍ରବେଶ ହେଲେ ଜାଣ ।
ଜାନକୀ ଘେନିଣ ତହିଁ ଜଳକ୍ରୀଡ଼ା କଲେ
ନାନାରଙ୍ଗେ ନୃତ୍ୟରସ କରି ଦିନନେଲେ ।
ବନରେ ପାରିଧି ଯାଇଁ କଲେ ରାମରାଣ
କୁବଳୟା ଗଜ ସଙ୍ଗରେ କଲେ ଘୋରରଣ ।
ଗଜଛଳେ ବଜ୍ରଧର ସମର ଆସିକଲେ
ଶ୍ରୀରାମ ଭାଇ ଭରତ ତାକୁ ଧରିନେଲେ ।
କ୍ରୋଧରେ ରାମରାଣ ମାରୁତି ରାଜା କଲେ
ସକଳ ଦେବତା ହନୁ ପାଦରେ ଖଟିଲେ ।
ଦୁଇ ମାସ ମାରୁତି ସ୍ୱର୍ଗରେ ଇନ୍ଦ୍ର ହେଲା
ରାମନାମ ଭଜି ଇନ୍ଦ୍ର ପାଲଟି ବସିଲା ।
ଏମନ୍ତେ ଦୁଇଶତ ବରଷ ଯାଏ ବହି
ଭୟ ହେଲା ଜମ୍ବୋଦ୍ୱୀପ ଋଷିମାନେ କହି ।
କ୍ରୋଧରେ ଶ୍ରୀରାମ ଯେ ପେଶିଲେ ଶତ୍ରୁଘନ
ଲବଣସୁରକୁ ମାଇଲେ ସେହୁ ପୁଣ ।
ମଧୁବନ ଦେଶରେ ମାରିଣ ରାଜା ହେଲେ
ଲବଣେଶ୍ୱର ଭାଇ ଯେ ହସ୍ତୀନାରେ ଥିଲେ ।
ଗୋତ୍ରେ ନାମ ଅସୁର ଯୁଝିଲେ ଆସିକରି
ଶତ୍ରୁଘନ ତାହାକୁ ମାଇଲେ ବିଚରି ।
ହସ୍ତୀନା ପଞ୍ଚକଟକେ ରାଜା ପୁଣ ହେଲା
ଦୁଇଗୋଟି ରାଜ୍ୟ ତାହା ପାଦରେ ରହିଲା ।
ଋଷି କହିବାରୁ ପୁଣ ଭରଥ ବୀର ଗଲେ
କେଶୀକି ଘଉଡ଼ି ଦେଇ ଭରଥ ରାଜାହେଲେ ।
ବିଷ୍ଣୁ ପୁରେ ଶ୍ୱେତ ନାମେ ଅସୁର ପୁଣ ଥିଲା
ଦୁଷ୍ଟପୁଣ କରିବାରୁ ଭରଥ ମାଇଲା ।
ଦୁଇ ରାଜ୍ୟରେ ରାଜାହେଲେ ଭରଥବୀର
ଶ୍ରୀରାମ ଆଗରେ ଋଷି କହିଲେ ସତ୍ୱର ।
ଜାଣିକରି ଶ୍ରୀରାମ ଲକ୍ଷ୍ମଣ ଭେଦିଦେଲେ
ଗୟଳସୁରକୁ ଲକ୍ଷ୍ମଣ ନାଶ କଲେ ।

ମକୀନ୍ଦ୍ର ପୁରେ ରାଜନ ହୋଇଲେ ଲକ୍ଷ୍ମଣ
ଗଣ୍ଡା ଅସୁର ଯୁଦ୍ଧକଲା ଆସି ପୁଣ ।
ଗଣ୍ଡାସୁରକୁ ମାରି କାବେରୀ ଦେଶେ ରାଜା
ଦୁଇ ରାଜ୍ୟ ଲକ୍ଷ୍ମଣ ଭୋଗକଲେ ତା ଯା ।
ଆଠଶତ ବରଷ ଯେ ପୁଣ ବହିଗଲା
ଭରିଭାଇ ଜମ୍ବୋଦ୍ୱୀପେ ରାଜାହେଲେ ପରା ।
ତିନିଭାଇ ଭାରିଜା ଗର୍ଭବାସ ହେଲେ
ଷଡ଼ପୁତ୍ର ତାଙ୍କର ଜନମ ହୋଇଲେ ।
ଜାନକୀ ଶ୍ରୀରାମ ପୁତ୍ରଙ୍କ ନାମ ଦେଲେ
ଉତ୍ସବ କରାଇଣ ଫେରି ସେ ଅଇଲେ ।
ଜାନକୀ ଗର୍ଭବାସ ହୋଇଲେକ ପୁଣ
ନୀଚ ଲୋକଙ୍କ ବୋଲେ ସୀତା ତେଜିଲେ ଶ୍ରୀରାମ
ପିତାଘରେ ରହିଣ ଜାନକୀ ଦିନ ନେଲେ
ଦଶମାସେ ଦୁଇପୁତ୍ର ଜନମ ହୋଇଲେ ।
ତିନି ଦିଅର ଜାଣନ୍ତି ନ ଯାନ୍ତି ଶ୍ରୀରାମ
ବାରବରଷ ଏଥିରେ ବହିଗଲା ପୁଣ ।
ଯାଗ କରିବାକୁ ଶ୍ରୀରାମ ଆରମ୍ଭିଲେ
ଲକ୍ଷେକ ରାଜାଙ୍କୁ ବରଣ କରି ନେଲେ ।
ଅଶ୍ୱ ଘେନି ଲକ୍ଷ୍ମଣ ଗଲେ ରାଜ୍ୟ ଫେରି
ବାଟରୁ ଦୁଇପୁତ୍ର ଘୋଡ଼ାଙ୍କୁ ନେଲେଧରି ।
ଜାଣିଣ ଭରିଭାଇ ଯୁଦ୍ଧ ତହୁଁ କଲେ
ବାଳକଙ୍କ ବାଣରେ ସମସ୍ତେ ହାରିଲେ ।
ପୁତ୍ର ଭାରିଯାଙ୍କୁ ଆଣି ରାମରାଣ
ଅଶ୍ୱମେଧ ଯାଗ କଲେକ ଭିଆଣ ।
ଚାରିଦିଗକୁ ଚାରିଭାଇ ଫେରିଗଲେ
ପୂର୍ବଦିଗେ ଶମ୍ଭୁସୁର ନାଡିକି ମାଇଲେ ।
ଶମନ ନାମେ ପୁର ହେଲା ରାମଙ୍କର
ଯାଗ ସାରି ରାଜାମାନେ ଗଲେ ଯେଝାପୁର ।
ବତିଶି ରାଜା ଅଷ୍ଟ ପୁତ୍ରଙ୍କୁ ବରିନେଲେ
ଶ୍ରୀରାମ ଯାଇଣ ପୁତ୍ରଙ୍କୁ ବିଭାକଲେ ।
ଆଠରାଜ୍ୟେ ଆଠପୁତ୍ର କରାଇଲେ ରାଜା
ଚାରିଭାଇ ମହୀକି କଲେ ତହୁ ତେଜ୍ୟା ।
ନନ୍ଦୀଗ୍ରାମେ ଚାରିଭାଇ ରହିଲେ ଏକଠାବେ
ଦଶସହସ୍ର ଅଠାନବେ ବରଷ ଗଲାତେବେ ।
ବୟାଳିଶ ବରଷ ସମ୍ପୂର୍ଣ୍ଣ ହୋଇଲେ
ଚାରିଭାଇ ଘେନି ରାମ ବୈକୁଣ୍ଠେ ବିଜେକଲେ ।
ତାରାର ଶାପ ଯେ ହୋଇଲା ନିକଟ
ପିତାଘରେ ଜାନକୀ ବାରବର୍ଷ ରହିଲେ ସତ୍ୟ ।
ଚଉଦ ବରଷକୁ ବୟାଳିଶି ପୁଣ
ଏହିଠାରେ ବୈକୁଣ୍ଠ କମଳା ଯିବେ ପୁଣ ।
ନୀଚ ଲୋକଙ୍କର ବୋଲେ ଶ୍ରୀରାମ ଆଜ୍ଞାହେଲେ
ଜାନକୀ ଅଗ୍ନିପରୀକ୍ଷା କର ଗୋ ବୋଇଲେ ।
ଦୁଇଭଗ୍ନୀ ଘେନି ସୀତା ପାତାଳେ ପଶିଲେ
ବୈକୁଣ୍ଠ ପୁରେ ଯାଇଁ ନିଶ୍ଚିନ୍ତେ ରହିଲେ ।
ସେଠାରୁ ସୁବର୍ଣ୍ଣ ସୀତା ରାମ ଭିଆଇଲେ
ଏଗାର ବରଷ ରାମ ଲକ୍ଷ୍ମଣ ତେଜ୍ୟାକଲେ ।
ଭାରିଯା ଘେନି ଲକ୍ଷ୍ମଣ ଗଲେ ସ୍ୱର୍ଗପୁର
କମଳାଙ୍କୁ ସେବାକରି ରହିଲେ ବୈକୁଣ୍ଠପୁର ।
ଏଗାର ବର୍ଷ ପୁରନ୍ତେ ରାମ ସ୍ୱର୍ଗ ଗଲେ
ଚଉଦ ଭୁବନ ଲୋକଙ୍କୁ ବୈକୁଣ୍ଠକୁ ନେଲେ ।
ଶ୍ରୀହରି ପାଟଣାରେ ସଭିଙ୍କୁ ରଖାଇଲେ
ଅନନ୍ତ ଶୟନରେ ସୁଖେ ନିଦ୍ରାଗଲେ ।
ଏ ଗ୍ରନ୍ଥକୁ ସଦାଶିବ ଉଚ୍ଚାରଣ କଲେ
ଈଶ୍ୱର କହିବାରୁ ପାର୍ବତୀ ଶୁଣିଲେ ।
ଶ୍ରୀରାମ ବୋଇଲେ ଏ ଗ୍ରନ୍ଥ ହେଲା ସାର
ତ୍ରିଲୋଚନ କହିବାରୁ ଜଣାଗଲା ମୋର ।
ମୁଁ ଯେବେ ବାସୁଦେବ ନୋହିଥାନ୍ତି ଜାଣ
ଅଣାକାର ପୁରୁଷ କିମ୍ପା କରନ୍ତେ ବର୍ଣ୍ଣଚିହ୍ନ
ଜାନକୀ ଯେବେ କମଳା ନୁହନ୍ତେ ମୋହର
ନରଦେହେ ଅଗ୍ନି ପରୀକ୍ଷା ଅଟେ ସାର ।
ଲକ୍ଷ୍ମଣଙ୍କୁ ଶ୍ରୀରାମ ବୋଇଲେ ଶୁଣ
ପୁରାଣ ପଣ୍ଡାଙ୍କୁ ଯେ ବିଧି ଦିଅ ଜାଣ ।
ହୀରା ନୀଳା ମୋତି ଯେ ମାଣିକ୍ୟ ସୁବର୍ଣ୍ଣ
ଲକ୍ଷେ ଲକ୍ଷେ ଏଥିରୁ ଦେଲେ ଯେ ଲକ୍ଷ୍ମଣ ।
ଶ୍ରୀରାମ ବୋଇଲେ ହେ ମୁନି ଏବେ ଶୁଣ
ଅସୁରେ କରିବା ପୁରାଣ ଅସୁରେ ପାନ୍ତୁପୁଣ
ହନୁମନ୍ତ କରିଥିଲେ ଯେ ମହାନାଟକ
ଉତ୍ତର ଦିଗରେ ଯେ ହେବ ସେ ପ୍ରକଟ ।
ବାଲମୀକ ପୁରାଣ ପୂର୍ବଦିଗରେ ଚାଳ
ଉତ୍କଳ ଦେଶରେ ମିଛ ପରିଚ୍ଛର ।
ପଶ୍ଚିମ ଦକ୍ଷିଣରେ ଈଶ୍ୱର ଗ୍ରନ୍ଥ ଦେବ
ସକଳ ଅଂଶେ ନିର୍ମଳ ଅଟନ୍ତି ପରିଭାବ ।

ଚାରି ଦିଗରେ ପୁରାଣ ବଖାଣ ଏବେକର
ଯେବେ ମୋହ ନାମରେ ଗ୍ରନ୍ଥ ହେଲାସାର ।
ଶୁଣିଣ ମୁନିବର ସେଠାରୁ ଚଳିଗଲେ
ଜାନକୀଙ୍କ ଆଗରେ ପ୍ରବେଶ ହୋଇଲେ ।
ସକଳ ବାରତା ଯେ ପଚାରିଲେ ସୀତା
ଭଲରେ ଅଛନ୍ତି ସବୁ ଶୁଣରେ ଆଦିମାତା ।
ଜାନକୀ ବୋଇଲେ ତୁମ୍ଭେ କେଣେ ଆସିଥିଲ
ଋଷିଶୃଙ୍ଗ ବୋଇଲେ ପୁରାଣ ପଢ଼ି ଜାଣେଭଲ ।
ଶ୍ରୀରାମ ଚାରିଭାଇଙ୍କି ବସାଇ ଶୁଣାଇଲୁଁ
ତୁମ୍ଭର ଛାମୁକୁ ଆମ୍ଭେ ଏବେ ଯେ ଅଇଲୁଁ ।
ଶୁଣିଣ ଜାନକୀ ଯେ ତିନିଗ୍ନୀଙ୍କି ରାଇ-
ଋଷି କହିବାରୁ ଶୁଣିଲେ ମନଦେଇ ।
ପ୍ରଥମେ ହନୁମନ୍ତ ପୁରାଣ ଶୁଣିଲେ
ଦ୍ୱିତୀୟେ ଅସୁର ଗ୍ରନ୍ଥକୁ ଦେବୀଶ୍ରବଣ ଡେରିଲେ ।
ତୃତୀୟେ ବାଲମୀକ ପୁରାଣ ଦିଶିଲେ
ପିତା ହୋଇ ମୋହର ଏକଥା ବର୍ଣ୍ଣିଲେ ।
ଚତୁର୍ଥେ ହର ପାର୍ବତୀ ପୁରାଣ ଶ୍ରବଣ
ବୋଇଲେ ଏ ପୁରାଣ ସାର ଅଟେ ଜାଣ ।
ଆଦ୍ୟରୁ ପ୍ରାନ୍ତଯାଏ କଥାଏ ନିବେଦନ
ଶୁଣିଣ ସନ୍ତୋଷ ଯେ ହୋଇଲେ ଚାରିଜଣ ।
ଅନେକ ଧନରତ୍ନ ଋଷିଙ୍କି ଆଣିଦେଲେ
ଘେନାଇଣ ଋଷିଶୃଙ୍ଗ ନିଜପୁରେ ଗଲେ ।
ନିଜ ମଢିଆରେ ପ୍ରବେଶ ଯାଇଁ ହେଲେ
ସନ୍ଧ୍ୟା ନିତ୍ୟକର୍ମ ଯେ ବିଧି ବଢ଼ାଇଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ପୁତ୍ରମାନଙ୍କୁ ରାଜାକଲେ ରାମରାଣ ।
ପୃଥିର ଭାଗ ଦେଇ ନନ୍ଦୀଗ୍ରାମରେ ରହି
ଚାରି ଭାଇ ସେଠାରେ କିସ କଲେ ତହିଁ ।
ଈଶ୍ୱର ବୋଇଲେ ସକଳ ତେଜ୍ୟାକଲେ
ନିଶ୍ଚିନ୍ତ ହୋଇଣ ନନ୍ଦୀଗ୍ରାମରେ ରହିଲେ ।
କେତେଦିନ ଉତ୍ତାରୁ ରାମ ଗଲେ ବୁଲି
ନୀଚ ଲୋକଙ୍କର ମୁଖୁଁ ଶୁଣିଲେ କଥାଚାରି ।
ପଞ୍ଚୀ ପଞ୍ଚୀ ହୋଇଣ ସର୍ବେ କରନ୍ତି ବିଚାର
ସମସ୍ତେ ଜାନକୀଙ୍କି ବୋଲନ୍ତି ନିର୍ମଳ ।
ଆମ୍ଭେ ନିର୍ମଳ ତାର ନଦେଖିଲଇଁ ପୁଣ
ଏ ରାଜ୍ୟେ ଅଗ୍ନି ପରୀକ୍ଷାକରନ୍ତେ ଯେବେଜାଣ ।
ଆମ୍ଭେମାନେ ଯେବେ ନେତ୍ରରେ ଦେଖନ୍ତାଇଁ
ନାରାୟଣଙ୍କ ବନୀତା ବୋଲିଣ ବୋଲନ୍ତାଇଁ ।
ସେମାନଙ୍କ ବିଚାର ଶୁଣି ଚାପଧାରୀ
ନବରେ ପ୍ରବେଶ ଯେ ହେଲେ ଯାଇଁକରି ।
ଭୋଜନ ସାରିଣ ଆଞ୍ଚୋବନ କଲେ
ତାମ୍ବୁଳ ଭୁଞ୍ଜିଣ ପଲଙ୍କେ ନିଦ୍ରାଗଲେ ।
ଜାନକୀ ପ୍ରବେଶ ଯେ ହେଲେ ରାମପାଶ
ନାନାରଙ୍ଗେ ଲୀଳାକଲେ ବ୍ରହ୍ମାଣ୍ଡର ନାଥ ।
ଶ୍ରୀରାମ ବୋଲନ୍ତି ଯେ ଶୁଣ ଗୋ ପ୍ରାଣସହୀ
ଏ ଯୁଗର ଲୋକ ଯେ ବହୁତ କଥା କହି ।
ଏପୁରେ ଥରେ ଦିଅ ଅଗ୍ନିରେ ପରୀକ୍ଷା
ସର୍ବେ ତୋଷ ହୁଅନ୍ତୁ ଯାଉ ତୋଠାରୁ କକ୍ଷା ।
ଜାନକୀ ବୋଲନ୍ତି ମୋର ଅଷ୍ଟପୁତ୍ରଙ୍କୁ ଆଣ
ନିଶ୍ଚୟେ ଅଗ୍ନିରେ ଯେ ଦେବି ମୋରପ୍ରାଣ ।
ଶୁଣି କରି ଶ୍ରୀରାମ ଶଯ୍ୟାରୁ ଉଠିଲେ
ଅଷ୍ଟସେନାଙ୍କୁ ଡକାଇ ବେଗେ ପେଶିଦେଲେ ।
ଆଠ ଦେଶରୁ ଆଠ ପୁତ୍ର ଯେ ଅଇଲେ
ପିତା ମାତାଙ୍କ ଚରଣେ ନମସ୍କାର କଲେ ।
ଶ୍ରୀରାମଙ୍କୁ ଜାନକୀ ବିନୟେ କହେ ବାଣୀ
ଏ ରାଜ୍ୟ ସମସ୍ତ ଲୋକ ଆଣ ହେ ଚାପପାଣି ।
ଶୁଣିକରି ରାମ ଯେ ଘୋଷଣା ଦିଆଇଲେ
ଜାନକୀ ଅଗ୍ନି ପରୀକ୍ଷା ଦେଖ ସମସ୍ତେ ଭଲେ ।
ଶୁଣିଣ ସକଳ ଜନେ ନନ୍ଦୀଗ୍ରାମେ ମିଳି
ତିନି ଭଗ୍ନୀ ଅଣାଇଁ ଜାନକୀ କହେ ଭାଳି ।
ନିଜ ପୁରକୁ ମୁଁ ଯିବି ଏହିକ୍ଷଣି
ଚିନ୍ତା ନ କରିବି ମୋର ସକାଶରେ ପୁଣି ।
ତିନି ଭଗ୍ନୀ ବୋଇଲେ ଆମ୍ଭେ ସଙ୍ଗେ ଯିବୁଁ
ଜାନକୀ ବୋଇଲେ ଗୋ ସଜହୁଅ ସବୁ ।
ଦାସୀ ପରିବାର ସବୁଙ୍କୁ ସଜ୍ଜକର
ଉର୍ମିଳାକୁ ବୋଇଲେ ଶୁଣ ମୋ ଉତ୍ତର ।
ତୁମ୍ଭେ ମୋର ସଙ୍ଗରେ ନ ଯା ଗୋ ଚନ୍ଦ୍ରମୁଖୀ
ତୋର ସ୍ୱାମୀ ଅଟଇ ଈଶ୍ୱର ତନୁ ଗୋଟି ।
ତୁହି ଅଟୁ ପାର୍ବତୀ ଅଙ୍ଗ ଯେ ସ୍ୱରୂପ
ସ୍ୱାମୀଙ୍କ ସଙ୍ଗତରେ ଯିବ ଗୋ ଅବଶ୍ୟ ।
ଅଳପ ଦିନରେ ହେ ସ୍ୱାମୀ ତୋର ଯିବ
ମୋର ସଙ୍ଗେ ଗଲେ ତୋତେ ଦୁର୍ଭୁକ୍ଷଣହେବ ।

ଏ ଦୁଇ ଭଗ୍ନୀ ଯେ ଅଟନ୍ତି ମୋର ଅଙ୍ଗ
ତିନି ରୂପରେ ମୁହିଁ ଜନମ ମହୀଭାଗ ।
ଶ୍ରୀରାମର ଅଂଶ ଲାଗି ଭରତ ଶତ୍ରୁଘନ
ଶଙ୍ଖ ଚକ୍ର ଦୁଇ ଯେ ଅଟନ୍ତି ତାଙ୍କର ପୁଣ ।
ଏ ଦୁଇ ଭଗ୍ନୀ ଯେ ମୋହର ସଙ୍ଗେ ଯିବେ
ତୋ ସ୍ୱାମୀ ସଙ୍ଗେ ଯିବୁ ଅଳପଦିନେ ଏବେ ।
ଏହି ଶ୍ରୀରାମ ଯେ କରିବେ ଦୁରାନ୍ତର
ତୋହର ସ୍ୱାମୀକି ସେ ପେଶିବେ ବନଘୋର
ଯେତେବେଳେ ବନକୁ ତୋରସ୍ୱାମୀ ଯିବ
ତେତେବେଳେ ବନଯିବୁ କହିଲି ସଦଭାବ ।
ଶୁଣିଣ ଉର୍ମୀଳା ନାରୀ ସନ୍ତୋଷ ହୋଇଲେ
ମୋଠାରେ ଦୟାଥିବ ବୋଲିଣ ବୋଇଲେ ।
ଜାନକୀ ସୁମାଳିନୀ ହରଷ ହୋଇଲେ
ଦାସୀଙ୍କି ବୋଇଲେ ଯେ ସୁବେଶ ହୁଅଭଲେ ।
ମନୁମାୟା ମାୟାସୀତା ଦୁହିଁଙ୍କି ରାଇ କହି
ସକଳ ଦାସୀଙ୍କି ବେଶକରି ଆଣ ଯାଇଁ ।
ଶୁଣିଣ ମନୁମାୟା ବେଗେ ଚଳିଗଲା
ସକଳ ଦାସୀଙ୍କି ଯେ ସୁବେଶ କରାଇଲା ।
ସାତସସ୍ର ଦାସୀ ଯେ ବେଶ ହୋଇ ଆସି
ମାୟାସୀତା ମନୁମାୟା ପ୍ରବେଶ ହେଲେ ସେଥି ।
ତିନି ସହସ୍ର ରହିଲେ ଉର୍ମୀଳା ସଙ୍ଗେ ଜାଣ
ମାଳିନୀ ସୁମାଳିନୀ ଛଡ଼ସସ୍ର ଦାସୀଙ୍କି ଘେନିଣ
ଜାନକୀଙ୍କ ନବରରେ ପରବେଶ ହେଲେ
ଜାନକୀ କୁମରଙ୍କୁ ଡକାଇ ଆଣିଲେ ।
ବୋଇଲେ ପୁତ୍ରରେ ଶୁଣ ମୋ ବଚନ ଏବେ
ପିତା ମାତା ଚିରଞ୍ଜୀବି କାହାର ନାହିଁଭବେ ।
ତୁମ୍ଭର କଳହ ମୁଁ ଭାଙ୍ଗି ଦେଇଛି ବାବୁ
ରାଜ୍ୟସମର୍ପି ଯେ ଦ୍ରବ୍ୟହିଁ ଦେଲି ସବୁ ।
ଆଉ କିଛି ଜଞ୍ଜାଳ ନାହିଁଟି ତୁମ୍ଭର
ଯେ ଯାହା ରାଜ୍ୟ ପରଜା ପାଳିଣ କରଘର ।
ବଧୂମାନଙ୍କୁ ତୁମ୍ଭେ ଉତ୍ତମେ ପାଳୁଥିବ
ଦାସୀମାନଙ୍କଠାରେ ପ୍ରୀତିଭାବ ହେବ ।
ପାତ୍ର ମନ୍ତ୍ରୀଙ୍କି ବିଚାରି କରୁଥିବ କାର୍ଯ୍ୟ
ପ୍ରତିଦିନ ନେଉଥିବ ପୁର ବାରତା ସର୍ବ ।
ପିତା ଯାହା କହିବେ ସେ ବୋଲ କରିବ
ସକଳ କଥା ପୁତ୍ରଙ୍କୁ କହିଲେ ପ୍ରିୟଭାବ ।

ଅଯୋଧ୍ୟା ନରନାରୀ ସମସ୍ତେ ଛନ୍ତି ରହି
ଶ୍ରୀରାମ ଚାରିଭାଇ ଯେ ଚାରିପାଶରେ ରହି ।
ପାତ୍ର ମନ୍ତ୍ରୀ ସାମନ୍ତ ସମସ୍ତେ ସେଠାରେ
ଅଗ୍ନି ଜଳୁଅଛି ଯେ ପର୍ବତ ଆକାରରେ ।
ପିତାମାନଙ୍କ ପାଶରେ ପୁତ୍ରମାନେ ଛନ୍ତି
ଜାନକୀ ଦୁଇ ଭଗ୍ନୀ ଘେନି ଚଳିଯାନ୍ତି ।
ବାହାରେ ଯାଇଣ ଜାନକୀ ଛିଡ଼ା ହେଲେ
ସକଳ ଦାସୀଗଣେ ଅଛନ୍ତି ପଛରେ ।
ଚାରିଭାଇ ମୁଖକୁ ଚାହିଁ ବୋଲନ୍ତି ଜାନକୀ
ମୋର ପୋଏ ତୁମ୍ଭଙ୍କୁ ଲାଗିଲେ ଏବେଟି ।
କେହି କିଛି ନ କହିବ ପୁତ୍ରଙ୍କୁ ମୋହର
ତୁମ୍ଭଙ୍କୁ ବିନତି ମୁଁ ହେଉଛି ଚାପଧର ।
ଜାନକୀ ବୋଇଲେ ତୁମ୍ଭେ ଶୁଣ ହେ ଧରିତ୍ରୀ
ବାଟଦିଅ ମୋତେ ମୁଁ ଯିବି ବୈକୁଣ୍ଠଟି ।
ଶୁଣିକରି ଧରଣୀ ହୋଇଲେ ବେନିଫାଳ
କ୍ଷୀର ସାୟେର ବୈକୁଣ୍ଠ ଯେବଣ ବାଟସାର ।
କରଯୋଡ଼ି ଧରଣୀ ଆଗେ ଛିଡ଼ାହେଲେ
ଆସ ବୈକୁଣ୍ଠପୁର ଯିବ ସେ ବୋଇଲେ ।
ଶୁଣିକରି ଜାନକୀ ମନରେ ତୋଷହେଲେ
ମନୁମାୟା ମାୟାସୀତା ଦୁହିଁଙ୍କି ଆଜ୍ଞା ଦେଲେ ।
ବୋଇଲେ ଆଗେ ଚଳ ଦାସୀଗଣ ଘେନି
ଶୁଣିକରି ମାୟାସୀତା ଚଳିଲେ ଆଗେପୁଣି ।
ତାରପଛେ ମନୁମାୟା ଗଲା ଯେ ବହନ
ଚଳିଲେ ସକଳ ଦାସୀ ହୋଇ ତୋଷମନ ।
ଦାସୀଗଣ ଯିବାରୁ ଦୁଇଭଗ୍ନୀ ଗଲେ
ପଛରେ ଜାନକୀ ଯେ ହରଷରେ ଚଳେ ।
ଶ୍ରୀରାମ ଯାଇଁଣ ଧଇଲେ ଅଞ୍ଚଳ
ଜାନକୀ ବୋଲନ୍ତି ପ୍ରଭୁ ଶୁଣ ମୋ ଉତ୍ତର ।
ଶ୍ରୀରାମ ବୋଇଲେ ମୋତେ ତୁ କିମ୍ପା ଛାଡ଼ିଯିବୁ
ଜାନକୀ ବୋଇଲେ ସରିଲା ସୁଖ ସବୁ ।
ବାଳିର ଭାରିଯା ତାର ମହାଶାପ ଦେଲା
ଚଉଦନ ବରଷ ସୀତା ଭୋଗେ ନୋହେ ପରା ।
ସେ କଥାକୁ ହେତୁ ହେ ନ କର ବାସୁଦେବ
ପର ଦୋଷରେ ମୋତେ ତେଜିଲେ ବନଭାଗ ।
ତୁମେତ ପ୍ରଭୁ ଦୟା ମୋଠାରେ ନ କଲ
ଭାଇ ଲକ୍ଷ୍ମଣର ସଙ୍ଗରେ ଛାଡ଼ିଦେଲ ।

ଲକ୍ଷେରାଜା ମୋର ସଙ୍ଗେ କଲେକ ଭୋଜନ
ଦେବତା ଋଷି କହିଲେ କଳଙ୍କ ନାହିଁପୁଣ ।
ତେବେ ତୁମ୍ଭେ ଅଜ୍ଞାନ ହୋଇଛ ଋପଧାରୀ
ମୋର ଅଂଶ ଘେନି ମୁଁ ଯାଉଛି ନିଜପୁରୀ ।
ଆଜିଠାରୁ ମୁଁ ଯେ ନ ରହଇ ଆଉ କ୍ଷଣେ
ବୟାଳିଶ ବରଷ ଗଲେ ଭେଟ ନିଜସ୍ଥାନେ ।
ଶୁଣିକରି ଅଞ୍ଚଳ ଛାଡ଼ିଲେ ରାମରାଣ
ପାତାଳରେ ପଶିଲେ ଜାନକୀ ତକ୍ଷଣ ।
ଦାସୀଗଣମାନେ ବିମାନେ ବିଜେକଲେ
ପୁଷ୍ପକଯାନ ପରେ ଜାନକୀ ବସିଲେ ।
ଦୁଇଭଗ୍ନୀ ବସିଲେ ଜାନକୀ ପାଶରେ
ଲକ୍ଷେକ ଋମର ଯେ ପଡ଼ିଲା ଆଗରେ ।
ଲକ୍ଷେକ ଆଲଟ ଲକ୍ଷେ ପଙ୍ଖା ପଡ଼ି
ଚିରାଳ ନିଶାଣ ଯେ ଆଗେ ଧାଡ଼ି ଧାଡ଼ି ।
ବିଞ୍ଚଣି ଧରିଣ ବିଞ୍ଚନ୍ତି ଆଗରେ
ଚଳିଲେ ଜାନକୀ ଯେ ଅତି ସମ୍ଭର୍ବରେ ।
ଫାଟିଥିଲା ଧରଣୀ ଯେ ହେଲା ସମତୁଲେ
ଏଥୁ ଅନନ୍ତରେ ଶୁଣ ଗୋ କଥା ଭଲେ ।
ଅନନ୍ତ ଶୟନେ ବୈକୁଣ୍ଠେ ପରବେଶ
ହୀରାର ପୁରେ ଯାଇଁ ରହିଲେ ହୋଇ ତୋଷ
ଦାସୀ ପରିଜନେ ସେବାରେ ନିଯୋଗୀତ
ଅପସରୀମାନେ ଯେ କରୁଛନ୍ତି ନୃତ୍ୟ ।
ନର ଦେହ ତେଜିଣ ଦେବ ଦେହ ଧରି
ଦେବନାରୀମାନେ ଦର୍ଶନ ଆସି କରି ।
ଅଚିନ୍ତା ବୈକୁଣ୍ଠ ପୁରେ ହୋଇଲା ଗହଳ
ରାତ୍ର ଦିବସ ବାରଣ ନ ଗଲା ତହିଁର ।
ନିଷ୍ଚିନ୍ତେ କମଳା ବୈକୁଣ୍ଠରେ ବିହରିଲେ
ଅମୃତ ଯୋଗାଡ଼ ତହିଁରେ ପାନକଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ପୁତ୍ରମାନେ ଶୋକକଲେ ମାତାଙ୍କୁ ନ ଦେଖିଟି ।
ଶ୍ରୀରାମ ଋରିଭାଇ ରୋଦନ ଯେ କଲେ
ରାଜ୍ୟରେ ନରନାରୀ ହାହାକାର କଲେ ।
ଯେ ଯାହାର ଘରକୁ ସମସ୍ତେ ଚଳିଗଲେ
ବଶିଷ୍ଠ କହିବାରୁ ନିବର୍ତ୍ତ ରାମହେଲେ ।
ତିନିଭାଇ ତୁନିହେଲେ ଅଷ୍ଟପୁତ୍ରେ ଶାନ୍ତି
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ ।
ବାହାରୁ ସମସ୍ତେ ଭିତର ପୁର ଗଲେ
ସେଦିନ ମନଦୁଃଖେ ଉପବାସ କଲେ ।
ଆରଦିନ ପୁତ୍ରମାନଙ୍କୁ ଋଲିଲେ ଯେଝାପୁର
ବୋଇଲେ ଛଡ଼ ପୁତ୍ରେ କ୍ରିୟା ବିଧିକର ।
ଶୁଣିଣ ପୁତ୍ରମାନେ ଯେ ଯାହା ପୁର ଗଲେ
ଋରିଦିନେ କ୍ରିୟାର ଆରମ୍ଭ ପୁଣ କଲେ ।
ବାରଦିନେ କ୍ରିୟାକର୍ମ ସାରିଲେକ ପୁଣ
ପୁତ୍ରମାନେ ମୁରୁଛିଲେ ମାତାମାନଙ୍କୁ ଜାଣ ।
ଚଉଦ ଦିନେ ଋଷିଙ୍କି ସୁମରେ ଶ୍ରୀରାମ ପୁଣ
ଜାନକୀ ମନେ ପଡ଼ିଲେ ହୃଦରେ ଚିନ୍ତା ଜାଣ ।
ବଶିଷ୍ଠ ପ୍ରବେଶ ହେଲେ ଶ୍ରୀରାମ ଆଗର
ଦେଖିଣ ଶ୍ରୀରାମର ଯେ କଲେ ନମସ୍କାର ।
ଆସନରେ ନେଇଣ ଋଷିଙ୍କି ବସାଇଲେ
ପତ୍ନୀ ଭଗ୍ନୀ ହେଲୁ ବୋଲି ଶ୍ରୀରାମ କହିଲେ ।
ବଶିଷ୍ଠ ବୋଇଲେ ନ ଭାଳ ତୁମ୍ଭେ ମନ
ଗଲା ମଲା ଏ ଦୁଇ ଯେ ଅଟଇ ସମାନ ।
ଗଲା ମଲା କଥା ଭାଳିଲେ କିସ ହେବ
ଉପାୟ ଅଛି ରାଘବ କରିବା ସଂଯୋଗ ।
ସୁବର୍ଣ୍ଣ ସୀତା ଗୋଟିଏ ଗଢ଼ାଇବା ପୁଣ
ପତ୍ନୀଭ୍ରଷ୍ଟା ତୁମ୍ଭେ ହେ ଖଣ୍ଡିବ ଶ୍ରୀରାମ ।
ଶୁଣି ଶ୍ରୀରାମ ମନେ ସନ୍ତୋଷ ହୋଇଲେ
ବିନ୍ଧାଣୀମାନଙ୍କୁ ସେ ଡକାଇ ଆଣିଲେ ।
ସୁବର୍ଣ୍ଣରେ ସୀତା ଗଢ଼ାଇଲେ ପୁଣ
ପବିତ୍ର କରି ତାକୁ ଦେଲେ ଜୀବଦାନ ।
ଅନ୍ତଃପୁର ଭିତରେ ନେଇଣ ରଖିଲେ
ଜାନକୀ ପ୍ରାୟେ ଯେ ବୁଦ୍ଧି ତାଠାରେ କଲେ ।
ରଜନୀରେ ଶ୍ରୀରାମ ଘେନିଣ ପହୁଡ଼ନ୍ତି
ନାନାବନ୍ଧରେ ତାକୁ କ୍ରୀଡ଼ା ଆରମ୍ଭନ୍ତି ।
ଏମନ୍ତେ କେତେକାଳ ସେଥିରେ ବହିଗଲା
ଶ୍ରୀରାମ ସ୍ୱର୍ଗ ଯିବାକୁ ଏଗାର ବର୍ଷ ରହିଲା ।
ସିଂହଦ୍ୱାରେ ଲକ୍ଷ୍ମଣଙ୍କୁ ଜଗାଇ ପାହାରୀ
ଭରଥ ଶତ୍ରୁଘନ ଘେନି ନବରେ ବିଜେକରି ।
ଚିନ୍ତାରେ ଶ୍ରୀରାମ ହୃଦୟ କ୍ଷୀନ୍ନ ଜାଣ
ଭିତର ପୁରୁ ଶ୍ରୀରାମ ବାହାର ନୋହେପୁଣ ।
ସ୍ୱର୍ଗରେ ଦେବତାଏ ବସି ବିଋରିଲେ
ମର୍ତ୍ତ୍ୟପୁରେ ରହି ଶ୍ରୀରାମ ସୁଖ ଭୋଗକଲେ ।

ଏତେବୋଲି ତ୍ରିଦଶ ଦେବତାଏ ପୁଣ
ବେଦବରଙ୍କ ଛାମୁରେ ପ୍ରବେଶ ହେଲେଜାଣ ।
ବୋଇଲେ ବାସୁଦେବ ରହିଲେ ମର୍ତ୍ତ୍ୟପୁରେ
କେତେଦିନେ ଆସିବେ ବ୍ରହ୍ମାଣ୍ଡ ଠାକୁରେ ।
ବେଦବର ବୋଲେ ଅଳପ ଦିନରେ ଆସିବେ
ଆସିବାକୁ ଉପାୟ କରିବା ଆମ୍ଭେ ଏବେ ।
ଶୁଣିଣ ଦେବତାଏ ନିଜପୁର ଗଲେ
ଏଥୁ ଅନନ୍ତରେ ପାର୍ବତୀ ଶୁଣ ଭଲେ ।
ନିଜପୁରେ ଜାନକୀ ସିଂହାସନରେ ବସି
ପାତାଳ ପୁର ଲୋକେ ଦର୍ଶନ କରନ୍ତି ।
ସିଦ୍ଧ ନାରୀମାନେ ମିଳି ପୁଷ୍ପାଞ୍ଜଳି ଦେଲେ
ଦେବନାରୀମାନେ ବନ୍ଦାପନା କଲେ ।
ଜାନକୀର ତେଜରେ ବୈକୁଣ୍ଠ ପୁର ଶୋଭା
ଦେଖିକରି ସକଳେ ତେଜକୁ ହୋଇଲୋଭା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ବିନତା ନନ୍ଦନ ଛାମୁରେ ଆସି ମିଳି ।
ନମସ୍କାର କଲା ଯେ ଚରଣେ ଖଗପତି
ଦେଖିକରି ପ୍ରସନ୍ନ ହେଲେ ତାଙ୍କୁ ସତୀ ।
କୁମ୍ଭକର୍ଣ୍ଣ ଆସିଲା ଦେବ ଦେହ ବହି
ପଶ୍ଚିମ ଦ୍ୱାରପାଳ ସେହି ଯେ ଅଟଇ ।
କମଳାଙ୍କୁ ଦେଖିଣ ପାୟେ ପଡି ଶୋଇ
ଉଠ ଉଠ ବୋଲି ଯେ ଜାନକୀ ଦେବୀକହି ।
ଭାଇ ତୋର କାହିଁରେ ନ ଦିଶଇ ପୁଣ
କୁମ୍ଭକର୍ଣ୍ଣ ବୋଇଲା ସେ ଯମପୁରେ ଜାଣ ।
ଶାପ ଅନୁକ୍ରମେ ଚଉରାଶୀକି ଦରଶନ
ତୁମ୍ଭର ଚରଣେ ସେ ଦୋଷୀ ହେଲା ଜାଣ ।
ଏସନ ସମୟରେ ମିଳିଲେ ସରସ୍ୱତୀ
କମଳାଙ୍କ ଚରଣରେ ହେଲେ ସେ ବିନତୀ ।
ବହୁତ ଦୁଃଖ ପାଇଲ ବୋଲିଣ କହିଲା
କରଯୋଡ଼ି ଆଗରେ ଦେବୀ ଉଭା ହେଲା ।
ଆଶ୍ୱାସନା କରିଣ ଦେବୀ କହେ ତାଙ୍କୁ
ଦେବତାଙ୍କ ଦୁଃଖଟି ଲାଗଇ ଆମ୍ଭଙ୍କୁ ।
ଏତେ କହି ଦେବୀ ଯେ ଭିତର ପୁର ଗଲେ
ସେ ଯିବାରୁ ସେବାରେ ସକଳେ ଖଟିଲେ ।
ମାଜଣା ହେଲେ ଯାଇଁ ସାହେର ଦୁହିତା
ଦିବ୍ୟବେଶ ଆଭରଣ ହେଲେ ଦେବୀ ସୀତା ।
ନିଜପୁରେ ଅଳଙ୍କାର ମଣ୍ଡଣ ଦେବୀ ହେଲେ
ବେଶ ହୋଇ ଜଗତ ମୋହିନୀ ତୋଷ ହେଲେ ।
ଅମୃତ ଭୋଜନ କରି ସିଂହାସନେ ବସି
ସରସ୍ୱତୀ ସଙ୍ଗରେ ହୁଅନ୍ତି ହସା ହସି ।
ଶାରଦା ବୋଇଲେ ପ୍ରଭୁ ଆସିବେ କେତେକାଳେ
କେଉଁ ସୁଖ ଲଭିବାକୁ ରହିଲେ ରବିତଳେ ।
କମଳା ବୋଇଲେ ଏବେ ପେଶିବା ଆମ୍ଭେଦୂତ
ଏତେକାଳ ରହିବାର ନୁହଇ ଉଚିତ ।
ମୁହିଁତ ଅଇଲି କିମ୍ପା ଅଛନ୍ତି ଦାଶରଥି
ଆଉତ କାର୍ଯ୍ୟ ନାହିଁ କିପାଇଁ ରହିଛନ୍ତି ।
ସରସ୍ୱତୀଙ୍କି ସଙ୍ଗରେ ଏମନ୍ତ କଥା ହୋନ୍ତେ
ଏକତିରିଶି ବର୍ଷ ବହିଗଲା ମୃତ୍ୟୁ ପଥେ ।
ଆସିବାକୁ ଏଗାର ବରଷ ପୁଣ ଅଛି
କମଳା ବିଚରିଲେ ଅନନ୍ତ ଆସ ଏଥି ।
ଏତେ ବୋଲି ଗରୁଡକୁ ବୋଲେ ଠାକୁରାଣୀ
ଦେବତାଙ୍କୁ ଯାଇଣ କହ ବେଗେ ପୁଣି ।
ଏବେ ତୁମ୍ଭର କାର୍ଯ୍ୟ ହୋଇଲାକ ସିଦ୍ଧ
କିମ୍ପାଇଁ ଠାକୁର ଥିବେ ମର୍ତ୍ତ୍ୟପୁର ମଧ ।
ବେଗେ ପଠାନ୍ତୁ ସ୍ୱାମୀଙ୍କୁ ନ କରନ୍ତୁ ହେଳା
ନୋହିଲେ ଶାପ ପାଇବେ ଦିଗପାଳ ପରା ।
ଦେବୀର ଆଜ୍ଞାରେ ଚଳିଲେ ଖଗପତି
ମେରୁର ଶିଖରେ ଅଛନ୍ତି ବେଦପତି ।
ଦେଖିଣ ନମସ୍କାର କଲେ ସେହୁ ଯାଇଁ
ଶୁଣ ବେଦବର ଅଇଲି ଯହିଁ ପାଇଁ ।
ତ୍ରୈଲୋକ୍ୟ ଠାକୁରାଣୀ ଅଟନ୍ତି କମଳା
ସେହି ମୋତେ ତୁମ୍ଭର ଠାବକୁ ପେଶିଦେଲା ।
ନାରାୟଣ ସ୍ୱାମୀଙ୍କୁ ମର୍ତ୍ତ୍ୟରେ ଜାତ କଲ
କାର୍ଯ୍ୟ ସିଦ୍ଧ ହେଲାତ କିମ୍ପା ବୈକୁଣ୍ଠ ନ ଆଣିଲ ।
ତୁମ୍ଭର ଉଚିତ ଏ ଯ ନୋହେ ସୁରଗଣ
ଠାକୁରେ ଆସିବାକୁ କର ହେ ବିଚରଣ ।
ନୋହିଲେ ସମ୍ପଦ ଯେ ନ ରହେ କାହାରି
କମଳାଙ୍କ କୋପରେ ସରିବ ସବୁ ଶିରୀ ।
ଖଗବର ବଚନରେ ବୋଲନ୍ତି ବେଦସାଇଁ
ଆଣିବା ଠାକୁରଙ୍କୁ ବହୁତ ଦିନ ନାହିଁ ।
ତୁ ଯାଇ ପକ୍ଷୀରାଜ ହୋ ଗୋସାମଣୀଙ୍କି କହି
ତାଙ୍କର କୋପକୁ ଯେ କେହି ତ ନୁହେଁ କହି ।

ସଂସାର ରଖିବାକୁ ଯେ ମଞ୍ଚରେ ଜନ୍ମହେଲେ
ଭାଗ ନିବାରି ନିଜ ପୁରକୁ ଅଇଲେ ।
ସ୍ୱାମୀ ରହିଅଛନ୍ତି ଭୋଗ ସୁଖକରି
ଅଳପ ଦିନରେ ଆସିବେ ଶ୍ରୀହରି ।
ଏତେକହି ବ୍ରହ୍ମା ଯେ ପଦ୍ମକ ମାଳାଦେଲେ
ଠାକୁରାଣୀଙ୍କ କଣ୍ଠରେ ଲମ୍ବାନ୍ତୁ ବୋଇଲେ ।
ଘେନିଣ ଖଗପତି ଆନନ୍ଦେ ଚଳିଗଲା
କମଳାଙ୍କ ପାଶରେ ତକ୍ଷଣେ ମିଳିଲା ।
ଠାକୁରାଣୀଙ୍କୁ ଦେଖିଣ ନମସ୍କାର ହେଲା
ବେଦବର କହିବାର ବୁଝାଇ କହିଲା ।
ଏତେବୋଲି ବ୍ରହ୍ମା ଯେ ପଦ୍ମକ ମାଳାଦେଲା
ନେଇଣ କମଳା କଣ୍ଠରେ ଲମ୍ବାଇଲା ।
ପଦ୍ମକ ମାଳା ନାମ ଅଟେ ଯେ ତାହାର
ଅକ୍ଷତ ବୋଲିଧାତା ଦେଲେ ଉପହାର ।
ଯେତେବେଳେ କମଳା ମଞ୍ଚରେ ଜାତ ହେଲେ
ପଦ୍ମମାଳା ନିଜ ଆଶ୍ରମେ ଥୋଇଲେ ।
ବୈକୁଣ୍ଠ ପୁର ନରନାରୀ ଦର୍ଶନ ନିମନ୍ତେ
ତେଣୁ ପଦ୍ମକ ମାଳା ରଖିଗଲେ ମୃତ୍ୟୁପଥେ ।
ସରସ୍ୱତୀ ତାହାକୁ ଯେ ସେବା କରିଥିଲେ
କମଳା ଆସିବା ଦେଖି ବିଧାତା ହସ୍ତେ ଦେଲେ ।
ସେହିମାଳା ଗୋଟିକ ବିଧାତା ସମର୍ପିଲେ
ଗଳାରେ ଲଗାନ୍ତେ ଦେବୀ ପଦ୍ମିନୀ ରୂପହେଲେ ।
ଏଥୁଅନନ୍ତରେ ଶୁଣ ଗୋ ଶାକମ୍ବରୀ
ସୁରଗଣ ଘେନିଣ ବିଧାତା ବିଚାରି ।
କେମନ୍ତେ ଶ୍ରୀରାମ ମର୍ତ୍ତ୍ୟପୁରରୁ ଆସଇ
କମଳାର କୋପକୁ ଭାର୍ଜନ କେହି ନାହିଁ ।
ଏତେ କହି କାଳ ମୁନିଙ୍କି ହକାରି
ସନ୍ନିଧରେ ବସାଇ କହିଲେ ବେଦଧାରୀ ।
ସେ ବୋଇଲେ ଏହିକ୍ଷଣି ମର୍ତ୍ତ୍ୟପୁରେ ଯିବ
ଶ୍ରୀରାମ ଆଗରେ ଏକାନ୍ତେ କହିବ ।
ନିରୋଧ କରିବ ଯେ ଏକାନ୍ତେ ସତ୍ୟକରି
ତୁମ୍ଭର ପାଶେ ଯେ ଆସିବ ପକାଅ ତାକୁମାରି ।
ଏକାନ୍ତେ ରାଘବଙ୍କୁ କହିବ କଥାମାନ
ବୋଲିବ ତୁମ୍ଭେ ତ ଅଟ ଭଗବାନ ।
ଜଗତର ହିତେ ଅସୁର ବଧ କଲ
ନିଜ ଆଶ୍ରମକୁ ଯେ କିମ୍ପାଇଁ ନ ଗଲ ।

ଏତେ ବୋଲି ଯାଇଣ ତିଆରି ବେଗେ ଆସ
ଶୁଣିଣ କାଳ ମୁନି ହୋଇଲେ ହରଷ ।
ପ୍ରତିଜ୍ଞା କରି ମୁନି ସ୍ୱର୍ଗରୁ ଆସେ ଚଳି
ବୋଇଲେ ଏହିକ୍ଷଣି ଆଣିବି ବନମାଳୀ ।
ଯୋଗବଳେ ମୁନି ଅଯୋଧ୍ୟା ପରବେଶ
ସିଂହଦ୍ୱାରେ ହେଲେ ଯାଇଁ ବିକଟାଳ ବେଶ ।
ପିଙ୍ଗଳ ଜଟା ଦେହ ବିଜୁଳି ସଞ୍ଜାତ
ଦାଢ଼ୀ ନିଶ ଦିଶଇ ଶୁକଳ ବର୍ଣ୍ଣ ସେତ ।
ବିକଟାଳ ବଦନ ବିଶେଷେଣ ଦିଶି
ଭଇରବ ବେଶରେ ପ୍ରବେଶ ହେଲେ ଆସି ।
ପେଟ ତାଙ୍କର ଖଙ୍କାଳ ଦିଶେ ଅନୁଆନ
ଖରତର ନିଃଶ୍ୱାସ ପ୍ରଚଣ୍ଡ ପବନ ।
ବାମକରେ କଙ୍କଣ ଡାହାଣେ କମଣ୍ଡଳ
କଷାବସ୍ତ୍ର ଆଭରଣ ରୁଦ୍ରାକ୍ଷ କାଠ ମାଳ ।
ଦେଖିଣ ଦ୍ୱାରପାଳ ଉଠିଲେ ଭୟ କରି
ତଣ୍ଡୁଳ ଦେଖିଣ ମୁନି ପ୍ରଚଣ୍ଡ ପଚାରି ।
ଶ୍ରୀରାମଙ୍କୁ ତୁମ୍ଭର କହରେ ବେଗକରି
କାଳ ଦମନ ଋଷି ଯେ ଦ୍ୱାରରେ ତୁମ୍ଭରି ।
ଶୁଣିଣ ଦ୍ୱାରପାଳ ଭିତରେ ଚଳିଗଲା
ସଉମିତ୍ରି ଅଗ୍ରତେ ଯାଇଁଣ କହିଲା ।
ଅପୂର୍ବ ଋଷି ଆସିଛି ନାମ ତା କାଳଦମନ
ବୋଇଲେ ବେଗେ କହ ଶ୍ରୀରାମ ଆଗେଣ ।
ସେ ଋଷିକି ଡରି ମୁହିଁ ଅଇଲି ଗୋସାଇଁ
ଶୁଣିକରି ଲକ୍ଷ୍ମଣ ଶ୍ରୀରାମଙ୍କୁ କହି ।
କାଳଦମନ ଋଷି ଯେ ବିଜୟ କଲେ ଆସି
ଶ୍ରୀରାମଙ୍କୁ ଜଣାଅ ବୋଲିଣ ମୋତେ ପେଶି ।
ଶ୍ରୀରାମ ବୋଇଲେରେ ଘେନି ଆସ ଯାଇଁ
କେବଣ କାର୍ଯ୍ୟରେ ଆସିଛି ତପୀସାଇଁ ।
ଶ୍ରୀରାମଙ୍କ ଆଜ୍ଞାରେ ଲକ୍ଷ୍ମଣ ଅଇଲେ
ସିଂହଦ୍ୱାରଠାରୁ ଋଷିଙ୍କି ଘେନି ଗଲେ ।
ଦେଖିଣ ରଘୁନାଥ ଆସନୁ ଉଠିଲେ
ସିଂହାସନ ଉପରେ ନେଇଣ ବସାଇଲେ ।
କୁଶଳ ପୁଚ୍ଛାପୁଚ୍ଛି ଯେ ହେଲେ ବେନିଜନ
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ କାଳଦମନ ।
କେବଣ କାରଣେ ମୁନି ଅଇଲ ପୁଣ ଏଥ
ତପୀ ବୋଇଲେ ତୁମ୍ଭେ ଶୁଣ ହେ ରଘୁନାଥ ।

ଏକାନ୍ତରେ କଥା ମୁଁ ଯେ ହେବି ହେ ରଘୁସାଇଁ
ସକଳ ଲୋକଙ୍କୁ ଏଥୁଁ ବାହାର କରତୁହି ।
ଲକ୍ଷ୍ମଣଙ୍କୁ ସିଂହଦ୍ୱାରେ ବସାଇଣ ଥିବୁ
ଯେ ଆସିବ ତାକୁ ଏଥେ ପ୍ରାଣରେ ମାରିବୁ ।
ହେଉ ବୋଲି ଶ୍ରୀରାମ ଯେ ସନମତ କଲେ
ମନ୍ତ୍ରୀ ଅମନାତ୍ୟ ଯେ ବାହାର କରିଦେଲେ ।
ବଶିଷ୍ଠ, ସୁମନ୍ତ୍ର, ଶତୃଘନ, ଭ୍ରଥ
ଯାଅଯା ବୋଲିଣ ଆଜ୍ଞାଦେଲେ ରଘୁନାଥ ।
ଲକ୍ଷ୍ମଣଙ୍କୁ ରହିଁଣ ରାମ ଆଜ୍ଞା ଦେଲେ
ଶୁଣିକରି ସମସ୍ତେ ବାହାର ହୋଇଲେ ।
ସିଂହଦ୍ୱାରେ ସଉମିତ୍ରୀ ଥିବୁ ଯେ ତୁ ରହି
କାହାକୁ ତୁ ଛାଡ଼ି ପୁଣ ନ ଦେବୁରେ ଭାଇ ।
ନିୟମ କରାଇଣ କହେ ମୁନି ଯାହା
ଯେ ଆସିବ ତୁମ୍ଭ ପାଶେ ମାରିବ ରଘୁନାହା
ଶୁଣିକରି ଲକ୍ଷ୍ମଣ ଦ୍ୱାରା ନିରୋଧଇ
ଶ୍ରୀରାମ ଆଗରୁ ଗଲାକ ଆଡ଼ ହୋଇ ।
କାଳ ଦମନ ମୁନି ଶ୍ରୀରାମ ଏକାନ୍ତ
ସଦାଶିବ ଗ୍ରନ୍ଥ କିମ୍ପା ପାଶୋରୁ ରଘୁନାଥ ।
ଦଇବଇଁ ହରିଲା ତୋର ବୁଦ୍ଧିବଳ
ତୋହର ଶରୀରେ କି ଆସି ଘୋଟିଲା କାଳ ।
ଦେହ ବହିଲେ ଯେବେ ସୁଜ୍ଞାନ ନୋହେ ଜାଣ
ମାୟା କଥାମାନ ନ ଜାଣେ ଯେବେ ପୁଣ ।
ମୂଢ଼ଜନ ସଙ୍ଗରେ ଯେ କରନ୍ତି ଭାଳେଣି
ଏତେ କଥାରେ ଦୁଃଖ ଯେ ମିଳଇ ରଘୁମଣି
ପରମ ଗୁପତ ଏ ଯେ ଦେବତାର କଥା
ଯେ ଏଣିକି ଆସିବ ଛେଦିବୁ ତାର ମଥା ।
ଯାହାର ଶବଦ ଅବା ଶୁଭିବ ଶ୍ରୀରାମ
ତାହାକୁ ନିଶ୍ଚୟେଟି ତୁହି ହେବୁ ବାମ ।
ଏତେ ବୋଲି ଏକାନ୍ତେ କହନ୍ତି ଯାହାମୁନି
ଶୁଣ ତୁ ରଘୁନାଥ ଅପୂର୍ବ ଯଶ ଧ୍ୱନି ।
ତୋହର ଭାରିଯା ଯେ ଅଟନ୍ତି ଲକ୍ଷ୍ମୀଦେବୀ
ସୁରନର ମୁନି ଯେ ତୋର ପାଦସେବି ।
ତାହାର ଗର୍ଭରୁ ମୁଁ ହୋଇଛି ସମ୍ଭୁତ
ସେ ମୋହର ଜନନୀ ତୁ ମୋହର ତାତ ।
ମୁଁ ଯାହାକୁ ଭେଟଇଁ ସେ ଯାଏ ଯମଆଳ
ମୋହର ନାମ ଗୋଟି ଅଟଇ ମୁନିକାଳ ।

ଏବେ ଶୁଣ ଗଣେ ଯେ ପେଶିଲେ ମୋତେରାଇ
ଭୋ ନାଥ ତୋର ଯେ ବୈକୁଣ୍ଠ ଯିବାପାଇଁ ।
ଦେବତାଙ୍କ ଛଳରେ ହେଲ ଅବତାର
ଅସୁର ମାରିଣ ଉଶ୍ୱାସିଲୁ ମହୀଭାର ।
ଦୁଷ୍ଟ ମାରିଣ ଯେ ସନ୍ଥ ରଖିଲୁ ମହୀଭାଗ
ଏବେ କିମ୍ପା ସ୍ୱର୍ଗକୁ ନ ଯାଉ ପଦ୍ମନାଭ ।
ତୁମ୍ଭେ ଯେବଣ ପୁରୁଷ ନ ଜାଣୁ ଦେବତାହା
ଅନନ୍ତ କୋଟି ବ୍ରହ୍ମାଣ୍ଡର ଅଟ ତୁମ୍ଭେ ନାହା ।
ତୋର ନାଭି କମଳରୁ ବ୍ରହ୍ମା ଜାତ ହୋଇ
ଜଗତ ପିତା ହୋଇ ସୃଷ୍ଟି ସେ ସର୍ଜଇ ।
ଶିର ତୋର ଆକାଶ ଚନ୍ଦ୍ର, ସୂର୍ଯ୍ୟ ନେତ୍ର
ଅପାପୀ ପୁରୁଷ ତୁ ଯେ ପବିତ୍ର ଅପବିତ୍ର ।
ଋରି ରାବଣ ଉପଦ୍ରବ ଯହୁଁ ସେ ହୋଇଲେ
ଅଧର୍ମ କଲାରୁ ମାଇଲ ଦଶରଥ ବାଳେ ।
ତେଣୁସିନା ତୋର ଯେ ଶ୍ରୀରାମ ନାମ ହେଲା
ତୋହର ସକାଶରେ ସଂସାର ରକ୍ଷା ହେଲା ।
ସ୍ୱୟଂଟି ନାରାୟଣ ଅଟ ହେ ଚକ୍ରଧର
ଆଦିମୂଳ ପୁରୁଷ ତୁ ଜଗତର ସାର ।
ଏ ମର୍ତ୍ତ୍ୟ ପୁରରେ କିପାଇଁ ତୁହି ଥିବୁ
ନିଜର ଆଶ୍ରମକୁ ଏବେ ଋଲ ବାବୁ ।
ବ୍ରହ୍ମାଦି ମୁନିମାନେ ଯୋଗାଧି ଯୋଗୀଜନେ
ମନ ଯେ ଚୈତନ ତୋହର ଚରଣେ ।
ତ୍ରୀଦଶ ଦେବତାଙ୍କୁ ଘେନି ଇନ୍ଦ୍ର ଚାହେଁ ବାଟ
ନ ଦେଖିଲେ ଜୀବନ ଛାଡ଼ିବେ ସକଳେତ ।
ତୁ ଯେବେ ମର୍ତ୍ତ୍ୟପୁରେ ନିଶ୍ଚିନ୍ତେ ରହିଲୁ
ନିଜ ସ୍ଥାନକୁ ଯିବାକୁ ମନ ଯେ ନ କଲୁ ।
ଶୁଣିକରି ଶ୍ରୀରାମ ଆନନ୍ଦ ହୋଇଲେ
ଏଗାର ବରଷ ଗଲେ ଯିବି ମୁଁ ବୋଇଲେ ।
ଦେବଙ୍କର ବୋଲ ଯେ ଅଲଙ୍ଘନ ମୋତେ
ମୋହର ରହିବାର ନୁହଇଁ ଯୁଗତେ ।
ଜାନକୀ ଗଲାଦିନରୁ ମନ ମୋ ସ୍ଥିରନାହିଁ
ଯିବଇଁ ସ୍ୱର୍ଗକୁ ଅଳ୍ପ ଦିନ ରହି ।
ଏସନ କଥା କାଳିଜ୍ଞାନ ମୁନିର ସଙ୍ଗେ ହୋନ୍ତେ
ସିଂହଦ୍ୱାରେ ମିଳିଲେ ଏକକ ତପୋବନ୍ତେ ।
ଅଙ୍ଗୀରା ନାମରେ ଯେ ଅଟନ୍ତି ମହାମୁନି
ତାହାଙ୍କୁ ପଠାଇଲେ ବେଦବରପୁଣି ।

ବୋଇଲେ ମହାମୁନି ମର୍ତ୍ତ୍ୟପୁରକୁ ଯାଅ
ଶ୍ରୀରାମ ସିଂହଦ୍ୱାରେ ପ୍ରବେଶ ବେଗେ ହୁଅ ।
ଶ୍ରୀରାମଙ୍କ ଠାକୁ ଆଗେ କାଳମୁନି ଯାଇ
ଋପଧାରୀଙ୍କି ଘେନି ଏକାନ୍ତେ ଭାଳଇ ।
ଶ୍ରୀରାମଙ୍କୁ ନିୟମ ଯେ କରାଏ କାଳୀଞ୍ଜନ
ଏକାନ୍ତ କାଳେ ଯେବେ ଆସିବେ ଅନ୍ୟଜନ ।
କେ ଅବା ମୁଖରେ ଯେ କରଇ ଶବଦ
ତାହାକୁ ରୁହାଇ କରିବୁ ପ୍ରାଣେ ବଧ ।
ଶ୍ରୀରାମ ସନ୍ମତ କଲେ ଯେ ତାହାର ବୋଲେ
ଏକାନ୍ତ ଭାଳେଣି ଯେ କାଳୀଞ୍ଜନ ତୁଲେ ।
ଲକ୍ଷ୍ମଣଙ୍କୁ ଦ୍ୱାରେ ଯେ ଅଛଇଁ ଜଗାଇ
ଏମନ୍ତ ବେଳରେ ପ୍ରବେଶ ହୁଅତୁରେ ଯାଇ ।
ଯେମନ୍ତେ ସଉମିତ୍ରି ଭାଙ୍ଗଇ ଏକାନ୍ତ
କୋପ କରିବେ ତାକୁ ଯେ ଜାନକୀର କାନ୍ତ ।
ସ୍ନେହ ଛାଡ଼ି ଶ୍ରୀରାମ ଭାଇକି ଯେମନ୍ତ ଛାଡ଼ଇ
ତେବେସିନା ବୈକୁଣ୍ଠକୁ ଆସିବେ ସୀତାସାଇଁ ।
ତୁମ୍ଭେ ହେ ବେଦମୁନି ନକର କେବେ ହେଳ
ଶ୍ରୀରାମ ଆସିବା ପାଇଁ ଅଯୋଧ୍ୟାକୁ ଚଳ ।
କୁଶଧାରୀ ବଚନରେ ଅଙ୍ଗୀରା ଚଳିଗଲେ
ଅଯୋଧ୍ୟା ସିଂହଦ୍ୱାରେ ଯାଇଣ ମିଳିଲେ ।
କୋପରେ ଥରହର କ୍ଷୁଧାରେ ଆରତ
ଲକ୍ଷ୍ମଣଙ୍କୁ ଋହିଁଣ ବୋଲନ୍ତି ତପୋବନ୍ତ ।
ଆହୋ ଲକ୍ଷ୍ମଣ ତୁ ରାମଙ୍କୁ ଯାଇ କହ
ଭୋକରେ ବିକଳ ଯେ ହୋଇଛି ମୋର ଦେହ ।
ଅଯୋଧ୍ୟା ନଗ୍ରକୁ ତୁମ୍ଭର ଦହିବି ଏହିକ୍ଷଣ
ଯେବେ ନ ଦେଖାଇବୁ ତୁ ରଘୁକୁଳରାଣ ।
ଏତେବୋଲି ଋଷି ଯେ ଅନେକ କ୍ରୋଧ ହେଲେ
ତମ୍ବାଚକ୍ର ପ୍ରାୟେ ଦୁଇ ନେତ୍ର ବୁଲାଇଲେ ।
ନିଶ୍ୱାସର ଘାୟେ ଯେ କମ୍ପେ ସିଂହଦ୍ୱାର
ଛିଡ଼ି ପଡ଼ିଲାକି ପୀଙ୍ଗଳ ଜଟାଭାର ।
ଅଯୋଧ୍ୟା ନଗ୍ର ଋଷି ଦହିବେ ସେହିକ୍ଷଣି
କ୍ରୋଧରେ ଜରଜର ଅଙ୍ଗୀରା ଋଷି ଜାଣି ।
ରୋମ ପୁଲକାଇ ଯେ ଅଧର କାମୋଡ଼ି
ଦନ୍ତ ଘେବାବନ୍ତେ ଶୁଭେ ମେଘ ଘଡ଼ଘଡ଼ି ।
ଦାଣ୍ଡର ବାଟ ଲୋକେ ଦେଖିଣ ପଳାଇଲେ
ଥରହର ହୋଇଣ ଧରଣୀ କମ୍ପିଲେ ।

ଲକ୍ଷ୍ମଣ ବୋଇଲେ ଯୋଡ଼ିଣ ବେନିକର
ଅକାରଣେ କୋପ ତୁ ନକର ମୁନିବର ।
ରାମଙ୍କୁ ଜଣାଇଲେ ନେବିଟି ତୋତେ ଆସି
କ୍ଷଣେ ରହ କୋପ ହେ ନକର ଦେବଋଷି ।
ଏତେ କହି ସଉମିତ୍ରି ଭିତରପୁର ଗଲେ
ଦଇବର ମାୟା ସେ ଜାଣି ନ ପାରିଲେ ।
ତେଣେ ସତ୍ୟ କରିଛନ୍ତି ଜାନକୀର ସାଇଁ
ଏକାନ୍ତକୁ ଗଲେ ଯେ ମୋହର ଜୀଇନାହିଁ
ନଗଲେ ମୁନି ଯେ ଧ୍ୱଂସିବେ ଏହି ପୁର
ପରଜା ଗୋରୁ ବିପ୍ରେ ନାଶିବେ ଅପାର ।
ମୁହିଁ ମଲେ ଏଥିରେ ବର୍ତ୍ତିବେ ସକଳ
ଏକଥା ନ କଲେ ମୋର ଜନ୍ମହିଁ ନିଷ୍ଫଳ ।
ପରର ଉପକାରୀ ଯେବଣଟି ପ୍ରାଣୀ
ସ୍ୱର୍ଗତ ଯାନ୍ତି ସବୁ ପୁରାଣେ ବଖାଣି ।
ରାଜ୍ୟର ନିମନ୍ତେ ମୁଁ ଦେବଇଁ ଜୀବନ
ଏମନ୍ତ ବିଋରି ବୀର ଚଳିଲେ ଲକ୍ଷ୍ମଣ ।
ଶ୍ରୀରାମ କାଳୀଞ୍ଜନ କଥା ହୋନ୍ତେ ବସି
ଏହିକାଳେ ମିଳିଲେ ସୁମିତ୍ରାର ଶିଷି ।
ଲକ୍ଷ୍ମଣକୁ ଦେଖି ରାମ ଭାଜିଲା ଏକାନ୍ତ
ଆସନୁ ଉଠିଲେ କାଳୀଞ୍ଜନ ତପୋବନ୍ତ ।
ଶ୍ରୀରାମଙ୍କୁ ବୋଇଲେ ଅଇଲା ଲକ୍ଷ୍ମଣ
ଯାହା ତୁମ୍ଭେ ସତ୍ୟକରି ଅଛ ହେ ରାମରାଣ ।
ସତ୍ୟ ଜାଣଟିକି ରାମ ମୁନି ପଋରିଲେ
ଯାହା ସତ୍ୟ କରିଛି ଶ୍ରୀରାମ ବୋଇଲେ ।
କାଳୀଞ୍ଜନ ମୁନି ଶୂନ୍ୟରେ ଗଲେ ପୁଣ
ରଘୁନାଥ ଛାମୁରେ ଉଭା ସୁମିତ୍ରା ନନ୍ଦନ ।
କରଯୋଡ଼ି ବୋଲନ୍ତି ଶୁଣ ହେ ଋପଧାରୀ
ଅଙ୍ଗୀରା ମୁନି ଆସି ଅକାରଣରେ କୋପକରି ।
ସିଂହଦ୍ୱାରେ ଛନ୍ତି ତାମସୀକ ରୂପ ବହି
ବୋଇଲେ ମୋତେ ବେଗେ ଦେଖାଅ ସୀତାସାଇଁ ।
ନୋହିଲେ ଏପୁର ମୁହିଁ ଦହିବି କୋପାନଳେ
ସେ କଥା ଶୁଣି ମୁଁ ଯେ ଅଇଲି ବିକଳେ ।
ଶ୍ରୀରାମ ବୋଲନ୍ତି ସେ ତପୀଙ୍କି ଘେନିଆସ
ଶୁଣିକରି ବାହୁଡ଼ିଲେ ସୁମିତ୍ରାଙ୍କ ଶିଷ୍ୟ ।
ସିଂହଦ୍ୱାରେ ଆସିଣ ମୁନିଙ୍କି କହିଲେ
ମହାକୋପାନଳେ ମୁନି ଭିତର ପୁରେ ଗଲେ ।

ଯାନ୍ତେଣ ବିଚ୍ଛରେ ମୁନି ଧନ୍ୟ ମୋର ପୁଣ୍ୟ
ଆଜ ମୋର ସୁଫଳ ହୋଇଲା ଜୀବନ ।
ଯାହାର ପାଦ ବ୍ରହ୍ମା ଚିନ୍ତନ୍ତି ଅନୁକ୍ଷଣେ
ଏଠାରେ ଅନ୍ନଖାଇ ପାପ କରିବି କ୍ଷମେ ।
ଏତେ ଭାଳି ମୁନି ଯେ ବେଗେ ଚଳିଯାୟେ
ଭିତର ପୁରେ ପ୍ରବେଶ ହେଲେ ତପୀ କାୟେ
ରଘୁନାଥଙ୍କୁ ଭେଟ ଶୀଘ୍ରରେ ହେଲେ ଆସି
ନମସ୍କାର କଲେ ଯେ କଉଶଲ୍ୟା ଋଷି ।
ଗଉରବ କରିଣ ମୁନିଙ୍କି ଘେନିଗଲେ
ସିଂହାସନ ଉପରେ ନେଇଣ ବସାଇଲେ ।
ନାନା ବିଧିମତରେ ମୁନିଙ୍କି କଲେ ପୂଜା
କାର୍ପୁଣ୍ୟ ହୋଇଣ କହିଲେ ରାମରାଜା ।
ଭୋମୁନି କେବଣ କାରଣେ ଆଗମନ
ମୋହର ଆଗରେ କହ ସେ କଥା ବିଧାନ ।
ଅଙ୍ଗୀରା ବୋଇଲେ ମୁଁ କ୍ଷୁଧାରେ ଆରତ
ଛଡ଼ରସ ପ୍ରକାରେ ମୋତେ ଦିଅ ଭାତ ।
ତୋର ଅନ୍ନ ଖାଇଲେ ମୁଁ ଯେ ହେବି ସୁସ୍ଥ
ବେଗେ ଭୋଜନ ମୋତେ ଦିଅ ହେ ରଘୁନାଥ ।
ଶୁଣିକରି ଶ୍ରୀରାମ ଲକ୍ଷ୍ମଣଙ୍କୁ ଋହିଁ
ବଶିଷ୍ଠଙ୍କୁ ତୁ ଯେ ବେଗ୍ରରେ ଆଣ ରାଇ ।
ତକ୍ଷଣେ ସଉମିତ୍ରି ଚଳେ ଆଜ୍ଞା ଘେନି
ଯେଉଁଠାରେ ଅଛନ୍ତି ବଶିଷ୍ଠ ମୁନି ।
ଲକ୍ଷ୍ମଣ ବୋଇଲେ ଅଙ୍ଗୀରା ଆସିଛନ୍ତି
ଶ୍ରୀରାମଙ୍କୁ ଖାଇବାକୁ ଅନ୍ନ ସେ ମାଗୁଛନ୍ତି ।
କ୍ଷୁଧାରେ କୋପଭର ହୋଇଛନ୍ତି ଋଷି
ତୁମ୍ଭର ତହିଁକି ମୋତେ ରଘୁନାଥ ପେଶି ।
ଅନ୍ନ ବ୍ୟଞ୍ଜନ ଯେ ଘେନାଇଁ ବେଗେ ଆସ
ଭୁଞ୍ଜିଲେ ଦେବମୁନି ହେବେ ଯେ ସନ୍ତୋଷ ।
ଶୁଣିଣ ବ୍ରହ୍ମମୁନି ସମ୍ପାଦ କଲେ ଅନ୍ନ
ଆପଣା ପୁତ୍ର ହସ୍ତରେ ବାହି ନେଲେ ପୁଣ ।
ଲକ୍ଷ୍ମଣ ଯେ ସଙ୍ଗରେ ତାଙ୍କୁ ଘେନିଗଲେ
ଶ୍ରୀରାମଙ୍କ ଛାମୁରେ ଯେ ଯାଇଣ ମିଳିଲେ ।
ଦେଖି କରି ଅଙ୍ଗୀରା ସନ୍ତୋଷ ହୋଇଲେ
ସ୍ନାନ ସାରିବାକୁ ସେ ସରଜୁ ନଦୀ ଗଲେ ।
ନିତ୍ୟକର୍ମ ସାରିଣ ଅଇଲେ ମୁନି ଖରେ
ଯାଇଣ ପ୍ରବେଶ ଶ୍ରୀରାମ ମନ୍ଦିରରେ ।

ଶ୍ରୀରାମଙ୍କୁ ବୋଇଲେ ପରଷ ତୁମ୍ଭେ ଅନ୍ନ
ତୁମ୍ଭର ହସ୍ତରେ ଆଜ ଆମ୍ଭର ଭୋଜନ ।
ତକ୍ଷଣେ ଶ୍ରୀରାମ ଯେ ପରଶିଲେ ଅନ୍ନ
ଭୁଞ୍ଜିକରି ସନ୍ତୋଷ ହେଲେ ମୁନି ପୁଣ ।
ଶ୍ରୀରାମଙ୍କୁ ବହୁତ ସୁକଲ୍ୟାଣ କଲେ
ଆପଣା ମଢ଼ିଆକୁ ଋଷି ଚଳିଗଲେ ।
ତିନିଦିନ ଏଥିରେ ଗଲା ପୁଣ ବହି
ସମସ୍ତଙ୍କୁ ଘେନି ରାମ ବିଚ୍ଛର କରଇ ।
ପିତାଙ୍କ ସତ୍ୟପାଳି କଲି ବନକୁ ଗମନ
ଏବେ ମୁହିଁ ନିଜରେ କରିଛି ନିୟମ ।
ଦେବକୁଟ ନ ଜାଣିଲି ବିଧାତା ହେଲା ବାମ
ସତ୍ୟ ମୋର କେମନ୍ତେ ରକ୍ଷା ହେବ ପୁଣ ।
ଏମନ୍ତ ବୋଲି ରାମ ଭାଳେ ହୃଦ ପଦ୍ମ
ସମସ୍ତେ ଜାଣିଲେ ଚିନ୍ତା ରଘୁନାଥର ହୃଦ ।
ଶ୍ରୀରାମ ଭାଳନ୍ତେ ଲକ୍ଷ୍ମଣ ତାହା ଜାଣି
କରଯୋଡ଼ି ବୋଇଲେ ଶୁଣ ହେ ରଘୁମଣି ।
କାଳ ମୁନିଙ୍କ ଆଗରେ ସତ୍ୟ ଯାହାକଲୁ
ସେ କଥାକୁ ଦେବ ହେ ମନରୁ ପାଶୋରିଲୁ ।
ମୋତେ ବେଗେ ନାଶ କରହେ ରଘୁରାଣ
ଶୁଣିକରି ରଘୁନାଥ ଛୁଇଁଲେ ଶ୍ରବଣ ।
ତୋତେ ମୁଁ ନାଶକଲେ ଅଧର୍ମ ପାଇବି
ତୋର ପରା ଭାଇକି ମୁଁ କେମନ୍ତେ ମୁରୁଛିବି ।
ମୋହର ଧର୍ମ ବୁଡ଼ି ଯାଉ କିନା ଏବେ
ତୁହିଥିଲେ ସବୁ ବଡ଼ପଣ ମୋର ତେବେ ।
ପ୍ରାଣ ପଛେ ଯାଉରେ ତୋହର ପାଇଁ ଭାଇ
ମୋହର ବଳେ ତୋତେ ମାରିତ ନୁହଇ ।
ଏତେ କହି ଶ୍ରୀରାମ ପଲଙ୍କେ ପହୁଡ଼ିଲେ
ପଲଙ୍କ ଉପରେ ରାମ ପହୁଡ଼ି ଶୋକକଲେ ।
ଆହା ଭାଇ ମୋରରେ ପ୍ରାଣର ଧନପତି
ତୋତେ ତେଜିଲେ ମୁଁ ଯେ ହୋଇବି ବିଅର୍ଥୀ ।
ସବୁ ଗୁଣେ ସୁଲକ୍ଷଣ ଅଟୁରେ ସଉମିତ୍ରି
ମୋତେ ଏକାରେ ଛାଡ଼ିଯିବୁରେ ଏହୁପୃଥ୍ୱୀ ।
ତୋହର ବାହୁବଳେ ପ୍ରଭୁପଣ ମୋର
ସବୁଙ୍କୁ ଜିଣିଲି ମୁଁ ଯେ ତୋର ବୁଦ୍ଧିବଳ ।
ଗୁଣରେ ଗୁଣନିଧି ଅଟୁରେ ମୋର ଭାଇ
ବନସ୍ତକୁ ଗଲୁ ତୁହି ମୋ ସଙ୍ଗେ ଗୋଡ଼ାଇ ।

ଅନେକ ଦୁଃଖରେ ତୁ ମୋତେ ସେବାକଲୁ
ଅନିଦ୍ରା ଅଭୋଜନେ ତୁହି ଯେ ବଞ୍ଚିଲୁ ।
ସୀତାକୁ ମୁରୁଛି ଥିଲି ତୋତେ ମୁଁ ଦେଖନ୍ତେ
ଏବେ ତୋତେ ବାବୁରେ ମୁର୍ଚ୍ଛିବି କେମନ୍ତେ ।
ଲଘୁ ଅଛି ସତ୍ୟ ମୁଁ ଧର୍ମକୁ କଲି ଦୂର
ଭାଇକି ମାରିବାର ନୁହଇ ବେଭାର ।
ବଳରାମ ଦାସ ଯେ ସେ ପାଦେ ଶରଣ
ବାରେ ମୋତେ ଉଦ୍ଧାର କରହେ ନାରାୟଣ ।
ପାର୍ବତୀ ବୋଇଲେ ଦେବ କଥାଏ ରଖିଲ
କାଳୀଞ୍ଜନ ମୁନିଙ୍କର କି ସ୍ୱଭାବ ନ କହିଲ ।
ଋଷି ହୋଇ କିମ୍ପା ସେ କାଳକୁ ଅନୁସରି
ସେ ଋଷିଙ୍କି ଦେଖିଲେ କାଳ ଯେବେ ପୂରି ।
ସେ ଋଷିଙ୍କ ଚରିତ୍ର କହ ତ୍ରୀଲୋଚନ
ବୋଲନ୍ତି ଈଶ୍ୱର ସେ କଥା ଏବେ ଶୁଣ ।
କାଳ ପୁରୁଷଙ୍କର ଅଟେ ସେ ନନ୍ଦନ
ତପସ୍ୟା କରିବାରୁ ହୋଇଲା ତାର ଜ୍ଞାନ ।
ତିନିଯୁଗ ପରିଯନ୍ତେ ଛିଇକରି ଦେଲା
ନାରାୟଣ ନାମକୁ ଉଚ୍ଚାରଣ କଲା ।
ବେଦବର ହେଲେ ତା ପାଶରେ ପରବେଶ
ଦେଖିଣ କାଳୀ ମୁନିକି କହିଲେ ବେଦବ୍ୟାସ ।
କାଳୀମୁନି ବୋଇଲେ ବର ଯେ ମୋତେଦେବ
ଯେଉଁଠାକୁ ଯିବି ମୁଁ ସେଠାକୁ କହିବ ।
ତାକୁ ମୁଁ ଦେଖିଲେ ସେ ଆସିବ ସ୍ୱର୍ଗପୁର
ମୃତ୍ୟୁ ହେବ ହୋଇଲେ ବ୍ରହ୍ମା ବିଷ୍ଣୁ ହର ।
ଶୁଣିଣ ଅସ୍ତୁହେଉ ବୋଲିଣ ବ୍ରହ୍ମା କହି
ମୋର ବୋଲେ ଗଲେ ମୃତ୍ୟୁ ତାକୁ ହୋଇ ।
ଏତେ କହି ବେଦବର ନିଜପୁର ଗଲେ
କାଳ ପୁରେ କାଳିଞ୍ଜନ ଯାଇ ସେ ରହିଲେ ।
ପାର୍ବତୀ ବୋଇଲେ ରାମ କଲେ କି ବିଚାର
ସେ କଥା ମୋର ଆଗେ କହହେ ଦିଗମ୍ବର ।
ଈଶ୍ୱର ବୋଇଲେ ରାମ ମନରେ ଗରୁଚିନ୍ତା
ଆପେ ସତ୍ୟ କରିଛନ୍ତି ଦଶରଥ ପୁତା ।
ଏମନ୍ତ ଚିନ୍ତାକରି ଶ୍ରୀରାମ ମଉନ
ସତ୍ୟ ଲଙ୍ଘିବ ଏବେ ହେଉଅଛି ପୁଣ ।
ଏସନ ସମୟରେ ପାତ୍ର ମନ୍ତ୍ରୀ ମିଳି
ବଶିଷ୍ଠ, କଶ୍ୟପ ସାମନ୍ତେ ଗଲେ ଚଳି ।

ରାଜ୍ୟରେ ଶୁଭିଲା ଶ୍ରୀରାମ ଚିନ୍ତାକଲେ
ଭାଇକି ମାରିବା ପାଇଁ ଋଷି ମନାଇଁ ଚଳିଲେ ।
ଭରତ, ଶତୃଘନ ଯେ ମିଳିଲେ ଆଗର
ଦେଖିକରି ଶ୍ରୀରାମ ନୟନ କଲେ ଦୂର ।
ବାହାରେ ଅବକାଶ ହେଲେ ରାମରାଣ
କରଯୋଡ଼ି ଆଗେ ଉଭା ହେଲେ ଲକ୍ଷଣ ।
ବଶିଷ୍ଠ ବୋଇଲେ ତୁମ୍ଭେ ଶୁଣ ହେ ରଘୁପତି
ଚିନ୍ତାରେ ରୋଦନ କଲେ ନୁହଇ ଯୁଗତି ।
କେବଣ କଥା ମୋର ଆଗରେ କହକିନା
ତୋତେ ଅସକ୍ଷ କଥା ବ୍ରହ୍ମାଣ୍ଡେ ନାହିଁ କିନା ।
ଶ୍ରୀରାମ ବୋଇଲେ ମୋତେ ବିଧାତା ହେଲା ବାମ
ସେ କଥା କହିଲେ ଆଉ କିସ ହେବ ପୁଣ ।
କାଳୀଞ୍ଜନ ମୁନିଙ୍କି ଯେ ଦଇବ ପେଶିଦେଲା
ସେ ମୁନି ଆସି ମୋତେ ସତ୍ୟ କରାଇଲା ।
ବୋଇଲେ ତୋର ମୋର କଥା ହେବା କାଳେ
ଯେ ଆସିବ ତାହାକୁ ଛେଦିବୁ ରଘୁବାଳେ ।
ସେ ମୁନିର ମାୟା ମୁଁ ଜାଣି ନ ପାରିଲି
ହେଉ ବୋଲି ତାର ଆଗେ ସତ୍ୟ ମୁହିଁକଲି ।
ଏସନେକ ସମୟେ ଅଇଲେ ଅଙ୍ଗୀରା
ଲକ୍ଷ୍ମଣ ଆଗରେ କହିଲେ ଭାଷା ଫେରା ।
ବୋଇଲେ ଶ୍ରୀରାମ ଆଗରେ ଯାଇଁ କହ
ନୋହିଲେ ରାଜ୍ୟତାର ଅଗ୍ନିରେ ହେବଦାହ ।
ଶୁଣିକରି ଲକ୍ଷ୍ମଣ ଯେ ମୋର ପାଶେ ଗଲା
ଡରେ ସଉମିତ୍ରୀ ଯେ ଭିତରେ କହିଲା ।
ତେଣୁ ସତ୍ୟଭଗ୍ନୀ ଯେ ହୋଇଲଇଁ ମୁହିଁ
ଲକ୍ଷ୍ମଣକୁ ଏବେ ମୁଁ କେମନ୍ତେ ମାରିବଇଁ ।
ବଶିଷ୍ଠ ଋଷି ମୋତେ ପ୍ରତିକାର କର
ଯେମନ୍ତ ସତ୍ୟ ରହିବ ନ ମରେ ଭାଇମୋର ।
ଶୁଣିକରି ବଶିଷ୍ଠ ଶ୍ରୀରାମ ତିଆରି
ବୋଲନ୍ତି ବଚନ ଋଷି ଶୁଣ ଉପଧାରୀ ।
ସତ୍ୟେରକ୍ଷି ବଳି ଯେ ପାତାଳକୁ ଚଳି
ସତ୍ୟରେ ଶିବଦାନା ଶରୀର ଦେଲା ବଳି ।
ସତ୍ୟରେ ହରିଶ୍ଚନ୍ଦ୍ର ବିକିଲେ ପୁତ୍ରନାରୀ
ସତ୍ୟରେ ଜୀମୂତ ବାହାନ ପ୍ରାଣ ହାରି ।
ସତ୍ୟରେ ସମୁଦ୍ର ନ ଲଙ୍ଘିଲେ କୁଳ
ସତ୍ୟରେ ବସୁମତୀ ନ ପଶଇ ତଳ ।

ସତ୍ୟରେ ଚନ୍ଦ୍ର ସୂର୍ଯ୍ୟ ଉଦେ ହେଉଛନ୍ତି
ସତ୍ୟ କରାଇ ଦକ୍ଷିଣକୁ ଗଲେ ଯେ ଅଗସ୍ତି ।
ସତ୍ୟରେ ପାର୍ବତୀ ପୁରୁଷ ହତ୍ୟା କଲା
ସତ୍ୟରେ ମନ୍ଦର ପର୍ବତ ଯେ ନ ବଢ଼ିଲା ।
ସତ୍ୟରେ ସଦାଶିବ ଖାଇଲେ ପୁଣ ବିଷ
ସତ୍ୟରେ ଶ୍ରୀହରି ଯେ ମାଇଲେ ରାକ୍ଷସ ।
ସତ୍ୟରେ ଔଷଧ ଦେଲେ ବ୍ୟାଧି ଭଲ ହୋଇ
ସତ୍ୟରେ ହୁତାଶନ ସକଳ ଭକ୍ଷଇ ।
ସତ୍ୟରେ ପବନ ବହଇ ସର୍ବ ଜୀବେ
ସତ୍ୟ ରଖିଲେ ଚାରିଯୁଗ ଲଭନ୍ତି ମୋ ଭବେ ।
ପିତାଙ୍କର ସତ୍ୟ ତୁମ୍ଭେ ରଖିଛ ରଘୁନାଥ
ତୁମ୍ଭର ସତ୍ୟ କିମ୍ପା ହୋଇବ ବିଅର୍ଥ ।
ମୋହ ତହୁଁ ଏବେ ଶୁଣ ହେ ଏକ ବୁଦ୍ଧି
ସେ ସତ୍ୟ ପାଳିତ ତୁମ୍ଭେ କ୍ଷତ୍ରିୟ ଗୁଣନିଧି ।
ଲକ୍ଷ୍ମଣ ନ ମରୁ ଯେ ସତ୍ୟ ତୁମ୍ଭର ରହୁ
ଶ୍ରୀରାମ ବୋଇଲେ ମୁନି ସେକଥା ମୋରହେଉ ।
କେଉଁ ବୁଦ୍ଧି ଅଛି ହେ କହନ୍ତୁ ବିସ୍ତାରି
ଏତେ ବୋଲି ଯାଇଣ ବସିଲେ ଚାପଧାରୀ ।
ବ୍ରହ୍ମାର ବଚନେ କହିଲେ ବେଦମାନ
ଶୁଣିଣ ସର୍ବ ଲୋକେ ହେଲେ ସାବଧାନ ।
ମଲା ଗଲା ଦୁଇ କଥା ଅଟଇ ସମାନ
ଅରଣ୍ୟକୁ ଲକ୍ଷ୍ମଣ ଏବେ ଯାଉ ପୁଣ ।
ଆଉବେଳେ ଅଯୋଧ୍ୟାକୁ ନ ଆସିବେ ସେହୁ
ପୁତ୍ରଙ୍କ ପୁରକୁ ନ ଯିବ ସତ୍ୟ ରହୁ ।
ଆମ୍ଭର ବିଚାରକୁ ଏମନ୍ତ ଯୋଗାଇ
ସମସ୍ତଙ୍କ ଠାରୁ ବୁଝୁଥାଅ ଏବେ ତୁହି ।
ଶୁଣିକରି ସମସ୍ତେ ଧନ୍ୟ ଧନ୍ୟ କଲେ
ଭଲ କଥାଗୋଟା ଏ ଋଷି ଭିଆଇଲେ ।
ସତ୍ୟ ରଖାଇଣ ଯେ ପ୍ରାଣୀକି ଜୀଆଇଁଲେ
ଏମନ୍ତ ବୋଲିଣ ସେ ସମସ୍ତେ କହିଲେ ।
ଶ୍ରୀରାମ ଲକ୍ଷ୍ମଣଙ୍କ ମନ ଯେ ମାନିଲା
ପାତ୍ର ମନ୍ତ୍ରୀଙ୍କର ମନକୁ ଏକଥା ରୁଚିଲା ।
ବଶିଷ୍ଠ କହିବାରୁ ରାମଚନ୍ଦ୍ର ଶାନ୍ତି
ଲକ୍ଷ୍ମଣଙ୍କୁ ଚାହିଁଣ ବୋଲନ୍ତି ରଘୁପତି ।
ଯାଅ ସଉମିତ୍ରିରେ ନ ଥାଅ ମୋର ପାଶ
ଯେବେରେ ଜୀବନକୁ ତୋର ଅଛି ଆଶ ।
ଜାଣୁ ଜାଣୁ ନିୟମ ଭାଙ୍ଗିଲୁ ମୋର ଯଦି
ଆନ ହୋଇଲେ କି ପ୍ରାଣ ପାନ୍ତା ଆଜି ।
ଯାଅତୁ କେଉଣସି ପୁରରେ ନ ରହ
ଅଷ୍ଟ କଟକ ଯେ ମୋହର ସନ୍ଦେହ ।
ଶ୍ରୀରାମର ବଚନ ଶୁଣି ସଉମିତ୍ରି
ଗଡ଼ଘାଲି ଚରଣେ ଶୋଇଲା ଝଟତି ।
ଉଠିଣ ଉଭା ହୋଇ ଶିରେ କର ଦେଲା
ଯାଉଛି ବୋଲିଣ ଯେ ଆଜ୍ଞା ସେ ମାଗିଲା ।
ବୟାଳିଶି ବରଷ ଥିଲା ଗଲେ ଯେ ଜାନକୀ
ସକଳ ଅଂଶ ନେଲା ସଙ୍ଗରେ ତାହାରଟି ।
ମୁଁ ଏବେ ଯାଉଛି ମୋ ସତୀ ସଙ୍ଗେ ଘେନି
ଏଗାର ବରଷ ପୁଣି ରହିଲା ରଘୁମଣି ।
ତିନିପୁର ଚଉଦ ଭୁବନ ସପ୍ତ ଦ୍ୱୀପ
ଦୁଷ୍ଟମାନେ ଏଥିରୁ ହୋଇଛନ୍ତି ଲୋପ୍ୟ ।
ସନ୍ଥମାନଙ୍କୁ ଦେବ ସଙ୍ଗରେ ଘେନି ଆସ
ନର ବାନର ଅସୁର ଯେତେ ଲୋକ ରାଜ ।
ସମସ୍ତଙ୍କୁ ଘେନିଣ ଆପଣ ଆସିବ
ଏଗାର ବରଷେ ପ୍ରଭୁ ଅଯୋଧ୍ୟା ଛାଡ଼ିବ ।
ଜାନକୀ ବୈକୁଣ୍ଠରେ ତୋତେ କରେ ଆଶ
ଆଗେ ମୁଁ ଯାଉଅଛି ଏଗାର ବରଷ ।
ଏତେ ବୋଲି ଲକ୍ଷ୍ମଣ ଦାରୁକକୁ ଚାହିଁ
ରଥ ସଜ କରରେ ଅରଣ୍ୟେ ଯିବି ମୁହିଁ ।
ଶୁଣି କରି ଦାରୁକ ରଥ ସଜ କଲା
ସିଂହଦୁଆରେ ଆସିଣ ଯାନ ରୁହାଇଲା ।
ନବରର ଭିତରେ ପଶିଲା ଲକ୍ଷ୍ମଣ
ଉର୍ମିଳା ଯେ ଖେଳୁଥିଲା ଦାସୀଙ୍କ ସଙ୍ଗେଣ ।
ଚରଣରେ ଓଳଗି ହେଲା ଆସି କରି
ସୌମିତ୍ରୀ ବୋଇଲେ ଯାଇଅଛି ବନଫେରି ।
କାଳିଞ୍ଜି ଋଷି ଯେ ସତ୍ୟ କରାଇଲେ
ଏକାନ୍ତ ସ୍ଥାନରେ ରାମ ସଙ୍ଗରେ ଭାଳିଲେ ।
ଏମନ୍ତ ସମୟରେ ଅଙ୍ଗିରା ଋଷି ମିଳି
ରାମଙ୍କୁ ଭେଟ ନକଲେ ରାଜ୍ୟ ଦେବି ଜାଳି ।
ଋଷିର କ୍ରୋଧ ଦେଖି ରାମର ପାଶେ ଗଲି
ରାମ ସତ୍ୟ କରିଛନ୍ତି ମାରିବେ ବୋଲି କରି ।
ବଶିଷ୍ଠ ବୋଲେ ରାମ ବନକୁ ମୋତେ ପେଶି
ଥାଅ ଗୋ ଏଥି ଚିନ୍ତା ନକର ଶୁଭ୍ରକେଶୀ ।

ଉର୍ମୀଳା ବୋଇଲେ ମୁଁ ସଙ୍ଗତରେ ଯିବି
କେଉଁ କଥାକୁ ସ୍ୱାମୀ ଏପୁରରେ ଥିବି ।
ଲକ୍ଷ୍ମଣ ବୋଇଲେ ତେବେ ବେଗେ ହୁଅ ସଜ
ଶୁଣିଣ ଉର୍ମୀଳା ନାରୀ ହେଲେ ଯେ ଧଇର୍ଯ୍ୟ ।
ଦାସୀମାନଙ୍କୁ ଘେନି ବେଗେ ସଜ ହେଲେ
ବେଶ ହୋଇ ସମସ୍ତେ ରଥରେ ବସିଲେ ।
ଲକ୍ଷ୍ମଣ ଯାଇଣ ବସେ ସେ ରଥର
ବାହିଲା ଦାରୁକ ଯାନ ଚଳିଲା ଖରତର ।
ଦେଖିକରି ତିନିଭାଇ କଲେକ ରୋଦନ
ପାତ୍ରମନ୍ତ୍ରୀ ସାମନ୍ତ ସକଳ ଜନ ପୁଣ ।
ଅଯୋଧ୍ୟା ନରନାରୀ ରୋଦନ ଦେଖିକଲେ
ବଡ଼ଦାଣ୍ଡେ ଲକ୍ଷ୍ମଣ ରଥ ଗ୍ଲେ ଭଲେ ।
ତିନି ଭାଇଙ୍କି ନିବର୍ତ୍ତ କରାଏ ବଶିଷ୍ଠ
ଲକ୍ଷ୍ମଣ ଯିବାରୁ ସର୍ବେ ହୋଇଲେ ନିବର୍ତ୍ତ ।
ଅନେକ ଲୋକ ଯେ ପଛରେ ଗୋଡ଼ାଇଲେ
ସରଯୂ ପାରିହୋଇ ଫେରାଇ ତାଙ୍କୁଦେଲେ ।
ଉର୍ମିଳାକୁ କୋଳେ ଧରି ହରଷ ସଉମିତ୍ରି
ସପତ ଦ୍ୱୀପ ଯେ ଦେଖାଏ ସତୀ କି ।
ଦାରୁକକୁ ଘେନିଣ ପାତାଳ ପୁର ଗଲେ
ସକଳ ସ୍ଥାନ ଦେଖାଇ ମଞ୍ଚକୁ ଅଇଲେ ।
ଗ୍ଲରି ଲଙ୍କା ଦେଖାଇ ସୁବର୍ଣ୍ଣ ଲଙ୍କା ଗଲେ
ଏହି ଗଡ଼େ ସୀତା ଥିଲେ ବୋଲିଣ କହିଲେ ।
ସପତ ଦ୍ୱୀପ ଦେଖାଇ ଫେରିଣ ଅଇଲେ
ଜମ୍ବୁଦ୍ୱୀପ ମଣ୍ଡଳରେ ପ୍ରବେଶ ଯାଇଁହେଲେ ।
ସତୀଙ୍କ କର ଧରି ଫେରନ୍ତି ବନ ଘୋର
ସକଳ ଋଷିଙ୍କି ସେ ଦେଖନ୍ତି ଆନନ୍ଦର ।
ଏକାମ୍ରର ବନରେ ପ୍ରବେଶ ଯାଇଁହେଲେ
ରଥରୁ ଓହ୍ଲାଇ ଆସନ ସେଥି କଲେ ।
ତିନିଦିନ ପରିଯନ୍ତେ ରାମନାମ ଗୁଣି
ନାରଦଙ୍କୁ ସୁମରଣା କଲେ ବୀରମଣି ।
ଆସି କରି ନାରଦ ହେଲେ ପରବେଶ
ଦେଖି ଲକ୍ଷ୍ମଣ ନମିଲେ ପାଦରେ ହରଷ ।
ବୋଇଲେ ମହାମୁନି ବେଗେ ବିଜୟେ କର
ଅଷ୍ଟ କୁମରଙ୍କୁ ମୋର ଅଣାଅ ଏଠାର ।
ଶୁଣି କରି ନାରଦ ବେଗେ ଚଳିଗଲେ
ଅଷ୍ଟ କୁମରଙ୍କୁ ସେ ଯାଇଁଣ କହିଲେ ।
ବୋଇଲେ ପିତା ଲକ୍ଷ୍ମଣ ଯିବେ ସ୍ୱର୍ଗବାସ
ଶ୍ରୀରାମ ତାହାଙ୍କୁ ପେଶିଲେ ବନବାସ ।
ଏକାମ୍ରର ବନରେ ଅଛନ୍ତି ସେ ରହି
ଦେଖିବାର ଶ୍ରଦ୍ଧାଥିଲେ ଯାଅ ବେଗହୋଇ ।
ଶୁଣିଣ ଅଷ୍ଟପୁତ୍ରେ ବେଗେ ଚଳିଗଲେ
ଏକାମ୍ରର ବନରେ ପ୍ରବେଶ ଯାଇ ହେଲେ ।
ଦେଖିଲେ ପିତା ଯେ ଜନନୀ ଛନ୍ତି ସେଥି
ନମସ୍କାର କଲେ କୁମର ମାନେ ଦେଖି ।
ପୁତ୍ରମାନଙ୍କୁ ସେ ବସାଇ ବେନିଜନ
ବୋଇଲେ ଆନନ୍ଦରେ ଆମ୍ଭେ ଗଲୁଁ ନିଜସ୍ଥାନ
ଅଳପ ଦିନରେ ପିତା ଯିବେ ସ୍ୱର୍ଗପୁର
ଚିନ୍ତା ନ କରିବଟି ମନରେ ତୁମ୍ଭର ।
ପରଜାଙ୍କୁ ପୁତ୍ରର ସମାନେ ପାଳିବ
ବନ୍ଧୁ କୁଟୁମ୍ବକୁ ଆଦର କରୁଥିବ ।
ରାଣୀମାନଙ୍କୁ ସୁବୁଦ୍ଧି ମନରେ ଦେଖିବ
ଦାସୀମାନଙ୍କୁ ଶୀତଳ ଭାଷାରେ ବୋଧିବ ।
ପରଥାଠ ବାରତା ଖବର ନିତିନେବ
ପାତ୍ର ମନ୍ତ୍ରୀଙ୍କି ଘେନି ବିଗ୍ଭର କରିବ ।
ଭାଇରେ ଭାଇରେ ନୋହିବଟି ଅପ୍ରୀତି
ମିଛ ନ କହିବ ସତ୍ୟରେ ଥିବ ନିତି ।
ଏମନ୍ତେ ପୁତ୍ରକୁ ସକଳ ବୁଝାଇଲେ
ଏସନକ ସମୟେ ତ୍ରିଦଶ ଦେବେମିଳେ ।
ଇନ୍ଦ୍ରଙ୍କୁ ଘେନିଣ ସେଠାରେ ମିଳିଲେ
ଦେବତାଙ୍କୁ ଦେଖିଣ ଲକ୍ଷ୍ମଣ ଓଳଗିଲେ ।
ମାନବ ଦେହ ଅନ୍ତର୍ଦ୍ଧାନେ ଗଲା ଜାଣ
ଦେବରୂପ ପ୍ରକାଶ ହେଲା ଆସି ପୁଣ ।
ତ୍ରିଦଶ ଦେବତାଙ୍କୁ ଲକ୍ଷ୍ମଣ ଗ୍ହିଁଲେ
ଅପସରୀ କିନ୍ନରୀ ଆଗରେ ମିଳିଲେ ।
ଦୁନ୍ଦୁଭୀ ବଜାଇ ପୁଷ୍ପ ବୃଷ୍ଟି କରି
ସ୍ୱର୍ଗରେ ସର୍ବଦେବେ ସମସ୍ତେ ସେଥିପୁରି ।
ଅନନ୍ତ ମୂରତି ଯେ ଲକ୍ଷ୍ମଣ ଧଇଲେ
ପାର୍ବତୀ ରୂପ ଯେ ଧରେ ଉର୍ମିଳା ଭଲେ ।
ଦାସୀଗଣ ବେଢ଼ି ଅଛନ୍ତି ନିରନ୍ତର
ଆଲଟ ଗ୍ମର ଧରି ପକାନ୍ତି ଆଗର ।
ବିଦ୍ୟାଧରୀ କିନ୍ନରୀ କରନ୍ତି ନୃତ୍ୟରଙ୍ଗ
ଦେବତାଏ ପଛରେ ବିଜୟେ ତାଙ୍କସଙ୍ଗ ।

ଉଠିଲାକ ବିମାନ ଯେ ଚଳିଲେ ସୁରଗଣ
କଂସାଳ ମର୍ଦ୍ଦଳ ଯେ ବାଜେ ଆଗରେ ପୁଣ ।
ମହାତେଜ ମୂର୍ତ୍ତି ଯେ ଲକ୍ଷ୍ମଣ ଶରୀର
ହଳ ମୁଷଳ ଧରିଛନ୍ତି ବେନିକର ।
ଶିରରେ ସପ୍ତଫେଣୀ ଅନେକ ଶୋଭାଦିଶି
ଚନ୍ଦ୍ରସୂର୍ଯ୍ୟ ତାଙ୍କର ନେତ୍ର ଯେ ପରକାଶି ।
ମୁକୁଟ କୁଣ୍ଡଳ ଶୋହେ ବେନିକର୍ଣ୍ଣେ
କଣ୍ଠରେ ରତ୍ନହାର ଦିଶେ ଶୋଭାବନେ ।
ଦେଖିଣ ଦେବତାଏ ସାଧୁ ସାଧୁ କଲେ
ଅପସରୀମାନେ ଯେ ହୁଳହୁଳି ଦେଲେ ।
ପାଟଛତ୍ର ନେଇଣ ଉପରେ ଟେକିଲେ
ପୁଷ୍କର ମେଘ ଯେ ଉପରେ ଛାୟାକଲେ ।
କୁବେର ଦେବତା ରତ୍ନବୃଷ୍ଟି କଲେ
ଅପସରୀ ଗାଇଲେ କିନ୍ନରୀ ନାଚିଲେ ।
ସ୍ୱର୍ଗପୁରେ ଦେବ ପ୍ରବେଶ ହେଲେ ଯାଇଁ
ଦେଖିକରି ବେଦବର ହରଷ ହୁଅଇ ।
ସୁଧର୍ମା ସଭା ଯେ ମଣ୍ଡିଣ ବେଦବ୍ରହ୍ମା
ଅର୍ଘ୍ୟ ଘେନିଣ କରେ ଅଛନ୍ତି ସର୍ବବାମା ।
ଅନନ୍ତ ଆସିବାରୁ ଦେବତା ଦେବୀଯାନ୍ତି
ହିଆରେ ହିଆଦେଇ ହେଲେ ଯନ୍ତାଯନ୍ତି ।
ସର୍ବ ଦେବତାଏ ସେଥିରେ ହେଲେ ରୁଣ୍ଡ
ଆନନ୍ଦେ କୁରୁଳିଲେ ସ୍ୱର୍ଗପୁର ବ୍ରହ୍ମାଣ୍ଡ ।
ତେତିଶ କୋଟି ଦେବତା ସଙ୍ଗରେ ଛନ୍ତିବେଢ଼ି
ଅନନ୍ତ ଚଳିଗଲେ ପଟୁଆର ପଡ଼ି ।
ତାଳଧ୍ୱଜ ରଥରେ ପନ୍ନଗା ବିଷ୍ଣୁବିଜେ
କିଜାଣି କୋଟି ସୂର୍ଯ୍ୟ ପ୍ରାୟେ ରୂପଗଞ୍ଜେ ।
ସ୍ୱର୍ଗର ନରନାରୀ ଆନନ୍ଦେ ଦେଖନ୍ତି
ଅର୍ଘ୍ୟ ବନ୍ଦାପନା କରି ହୁଳହୁଳି ଦ୍ୟନ୍ତି ।
ଏହି ଅନନ୍ତ ପୁରୁଷ ତ୍ରୀଦଶ ଦେବସ୍ୱାମୀ
ଅସୁର ମାରିବାକୁ ମର୍ତ୍ତ୍ୟପୁରେ ଜନ୍ମି ।
ସକଳ ଦେବତାଙ୍କୁ ଅଇଶ୍ୱର୍ଯ୍ୟ ଦେଲେ
ପୃଥ୍ୱୀଦେବୀ ଭାରା ଉଶ୍ୱାସି ଅଇଲେ ।
ଯେଉଁଠାରେ ସଭା ଅଛନ୍ତି ମଣ୍ଡିଟି
ସେହିଠାରେ ପ୍ରବେଶ ହୋଇଲେ ଅନନ୍ତଟି ।
ରଥରୁ ଓହ୍ଲାଇଣ ସଭାରେ ବିଜେ କଲେ
ଦେଖିଣ ପିତାମହ ଷଡ଼ଅର୍ଘ୍ୟ ଦେଲେ ।

ସର୍ବ ଦେବତାଏ ବସିଲେ ସଭାରେଣ
ଘେରିପାଶେ ପଟୁଆର ଅପସରୀ ଗଣ ।
କିନ୍ନରୀ ଅପସରୀ ନୃତ୍ୟ ଯେ କରନ୍ତି
ଅନନ୍ତଙ୍କ ମୁଖଚାହିଁ ହରଷ ହୁଅନ୍ତି ।
କୁବେର ଆଣିଦେଲେ ଅନେକ ରତ୍ନମାନ
ଆଭରଣ କରାଇଲେ ସହସ୍ର ଲୋଚନ ।
ଷଡ଼ ଉପଚାରରେ ବ୍ରହ୍ମା ପୂଜାକଲେ
ଚନ୍ଦ୍ର ଦେବତା ଯେ ଅମୃତ ଆଣିଦେଲେ ।
ଦେବଙ୍କ ବୋଲେ ଅନନ୍ତ କଲେ ଯେ ଭୋଜନ
ବିବିଧ ଆଛାଦିଲେ ସର୍ବ ଦେବଗଣ ।
ମଳୟ ଚନ୍ଦନ ଅମଳାଣ ବାସ
ଶୁଦ୍ଧ ସୁବର୍ଣ୍ଣ ଯେ ପାରିଜାତକ ପୁଷ୍ପ ।
ଚନ୍ଦ୍ରକାନ୍ତି ମୁକୁତା ଚନ୍ଦ୍ରକାନ୍ତି ହୀରା
ଅଗ୍ନିକାନ୍ତି ମାଣିକ୍ୟ ମାଳ ଯେ ଶତେସାରା ।
ନବରତ୍ନ ଯେ ନବରେ ଗୃହକାନ୍ତି
ଆନନ୍ଦରେ ଦେବତାଏ ଭୂଷଣ କରନ୍ତି ।
ନିରଞ୍ଜନ ବୋଲିଣ ଦେବେ ସ୍ତୁତିକଲେ
ଆମ୍ଭେମାନେ ନିସ୍ତରିଲୁ ବୋଲିଣ ବୋଇଲେ ।
ନିରଞ୍ଜନ ପୁରୁଷଙ୍କୁ ଦର୍ଶନ ଦେବଙ୍କର
କରଦ୍ୱଇ ଯୋଡ଼ି କହେ କୁଶଧର ।
ଭୋ ଦେବ ଶ୍ରୀପୁରୁଷ ଦେବହେ ଗୋସାଇଁ
ଅସୁର ମାରିବାକୁ ଜନ୍ମିଲେ ମଞ୍ଚେଯାଇଁ ।
ଭାରା ଉଶ୍ୱାସିଣ ରଖିଲ ତିନିପୁର
ଚଳତୁମ୍ଭେ ଏବେ ନିଜ ମନ୍ଦିରର ।
କମଳା ଦେବୀ ପାତାଳ ବାଟେ ଗଲେ
ନିଜ ମନ୍ଦିରେ ଅଛି ସାହେର ଦୁଲାଳେ ।
ଶ୍ରୀରାମ ଆସିବାର ଅଳପ ଦିନଅଛି
ତୁମ୍ଭେ ବୁଝାଇବ ମହାଲକ୍ଷ୍ମୀ କମଳାକ୍ଷୀ ।
ଆମ୍ଭ ଦେବତାଙ୍କ ଠାରେ ସୁଦୟା କରିଥାଅ
ଏବେ ଭୋଦେବ ନିଜ ମନ୍ଦିରକୁ ଯାଅ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଗାୟତ୍ରୀ, ସାବିତ୍ରୀ, ଶଚୀ ଦେବମାନଙ୍କ ନାରୀ
ସମସ୍ତେ ଆସିଣ ସେଠାରେ ଠୁଳ ହେଲେ
ଅନନ୍ତଙ୍କ ନାରୀଙ୍କି ଅର୍ଘ୍ୟ ବନ୍ଦାଇଲେ ।
ଅଷ୍ଟରତ୍ନେ ଭୂଷଣ କଲେ ମାଳାଦ୍ୱାରା
ଚୂଡ଼ିହୀରା ମାଣିକ୍ୟରେ ଦିଶେ ବଡ଼ ତୋରା ।

ବିଦମୁଦୀ ବାହୁଟୀ ବସଣୀ ରତ୍ନଗୁଣା
ଅଳକା ମଥାମଣି ଝୁମ୍ପା ଲୋଥିଜିଣା ।
ଅମଳାଣ ପାଟ ଯେ ପତନୀ ପିନ୍ଧାଇଲେ
ମେଘାଡ଼ମ୍ବରୁ ଖଣ୍ଡୁଆ ପହୁରାଣ ଦେଲେ ।
ଓଳଗି ମେଲାଇଲେ ସକଳ ଦେବନାରୀ
ସୁଦୟା କରିଥିବ ଅରୁଣ କୁମାରୀ ।
ଏସମୟେ ଉଠିଲେ ସଭାରୁ ଅନନ୍ତ
ସକଳ ଦେବଙ୍କର ସଙ୍ଗରେ ତୁରିତ ।
ତାଳଧ୍ୱଜ ଉପରେ ବିଜେକଲେ ଯାଇଁ
ଅତୁଟ ନାରୀଙ୍କି କୋଳରେ ବସାଇ ।
ଦେବତାଙ୍କୁ ମେଲାଣି ଦେଇ ଆପଣେ ଗଲେଚଳି
ଧୀରେ ଧୀରେ ରଥ ଯେ ଦାରୁକ ନିଏ ଘଳି ।
ପ୍ରଥମ ଦ୍ୱାରେ ଦେଖିଲେ ବିନତା ନନ୍ଦନ
ଶତେବାର ଓଳଗି ସେ ଆସି ହେଲା ପୁଣ ।
ଦ୍ୱିତୀୟ ଦ୍ୱାରେ କୁମ୍ଭକର୍ଣ୍ଣକୁ ଦେଖିଲେ
ସେହିଆସି ଓଳଗି ହେଲା ଚରଣରେ ।
ସ୍ୱାମୀକିମ୍ପା ନ ଆସିଲେ ବୋଲିଣ ବୋଇଲା
ଅନନ୍ତ ବୋଇଲେ ଆସିବେ ଅଳପ ଦିନପରା ।
ତୃତୀୟ ଦ୍ୱାରେ ସେ ଦେଖିଲେ କ୍ଷେତ୍ରପାଳ
ଶତେବାର ପରିଯନ୍ତେ କଲା ନମସ୍କାର ।
ସେଠାରୁ ଅନନ୍ତ ବିଜେ କରିଗଲେ
ଚତୁର୍ଥ ଦୁଆରେ ଯାଇଣ ମିଳିଲେ ।
ଉଠିଣ ସରସ୍ୱତୀ କଲେ ଦରଶନ
ବୋଇଲେ ନାରାୟଣ ନ ଆସେ କିମ୍ପାପୁଣ ।
ଅଳପ ଦିନେ ଆସିବେ ବୋଲିଣ ବୋଇଲେ
ସେଠାରୁ ଚଳିଯାଇ ଭିତରେ ମିଳିଲେ ।
ଦେଖିଲେ ବିଜୟେ ସାହେର ଦୋହୀତ
କମଳା ପାଦତଳେ ଶୋଇଲେ ଅନନ୍ତ ।
ଉଠ ଉଠ ବୋଲିଣ ବୋଲନ୍ତି ମହାସ୍ୱତୀ
ଶତେବାର ପ୍ରଣାମ କଲେ ସେ ବିନତି ।
ଭୋ ଲକ୍ଷ୍ମୀ ଏବେ ମୁଁ ଅଇଲି ବେଗ ହୋଇ
ଏହି ନିକଟରେ ଆସିବେ ତୁମ୍ଭସାଇଁ ।
କାଳର ଡାକ ଏବେ ଲାଗିଲା ଦେବଙ୍କର
ଆଗସରି ମୋତେ ପେଶିଲେ ଚକ୍ରଧର ।
ତୁମ୍ଭେ ଏବେ ଚିନ୍ତା ନ କର ଏଥେ ଥାଇ
ଅଳପ ଦିନରେ ଆସିବେ ରଘୁସାଇଁ ।

ସ୍ୱର୍ଗରୁ ଉତ୍ତମକି ଅଯୋଧ୍ୟା ପୁର ଗ୍ରାମ
ଅଳପ ଦିନରେଟି ଆସିବେ ଶ୍ରୀରାମ ।
ମୁହିଁ ଆସିବାର ହେଲା ବତିଶ ବରଷ
କାହାକୁ ଘେନି ସ୍ୱାମୀ ହୁଅନ୍ତି ହରଷ ।
କାର୍ଯ୍ୟତ ସରିଲା ଅଛନ୍ତି କିସ ପାଇଁ
ଦେଖିଲେ ସୁବର୍ଣ୍ଣ ସୀତା ମନରୁ ଛାଡୁ ନାହିଁ ।
ତୁମ୍ଭେ ଆମ୍ଭେ ଆସିବାରୁ ତାଙ୍କ ଚିନ୍ତାନାହିଁ
ଏକାକରି ଛାଡ଼ି ଅଇଲ ମୋର ସାଇଁ ।
ସରସ୍ୱତୀ ବୋଇଲେ ଆସିବେ ଏଥର
ମନ୍ଦ ବୋଲକୁ ଡରି ଅଛନ୍ତି ଚକ୍ରଧର ।
ଅଳପ ଦିନରେ ଯେବେ ଆସିବେ ଏଥକୁ
ଦାସୀ ଯାଉ ଘେନିଣ ଆସିବ ତାହାଙ୍କୁ ।
ଏମନ୍ତେ କଥାହେଲେ କମଳା ସରସ୍ୱତୀ
କରଯୋଡ଼ି ଅନନ୍ତ ବୋଲନ୍ତି ଶୁଣ ସତୀ ।
ଯେଉଁଦିନରୁ ମାତ ଅଇଲ ତୁମ୍ଭେ ଛାଡ଼ି
ଅଯୋଧ୍ୟାରୁ ଶିରୀ ସେ ଦିନୁ ଗଲା ସରି ।
କୃଷି ନ ଉପୁଜିଲେ ନ ଫଳିଲେ ବୃକ୍ଷ
ଦୁଃଖରେ ଦେହଧରି ଅଛନ୍ତି ରଘୁନାଥ ।
ଦଶରଥ ରାଜା ଯେ ଆୟୁଷ ଥାଉ ମଲେ
ତାଙ୍କ ଆୟୁର୍ବଳକୁ ଶ୍ରୀରାମ ଭୋଗକଲେ ।
ଏଗାର ସହସ୍ର ବର୍ଷ ହୋଇଲା ସମ୍ପୂର୍ଣ୍ଣ
ଏଗାର ବରଷ ଗଲେ ଆସିବେ ରଘୁନାନ ।
ଏ ବଚନ ଶୁଣିଲେ କମଳା ସରସ୍ୱତୀ
ଆନନ୍ଦ ସାଗରେ ସେ ବିହାର କରନ୍ତି ।
ଏଥୁ ଅନନ୍ତରେ ଦୁଇ ସପତଣୀ
ଷଡ଼ ଅର୍ଘ୍ୟରେ ପୂଜା ଆସନ ଦେଲେ ଆଣି ।
ଅମୃତ ପାନକର ବୋଲିଣ ବୋଇଲେ
ନାରାୟଣ ସମାନେ ଗଉରବ କଲେ ।
ଅନନ୍ତ ନାରୀ ଯେ ରଥରୁ ଓହ୍ଲାଇଲେ
କମଳାଙ୍କ ଚରଣେ ନମସ୍କାର କଲେ ।
ଅନେକ ସାନନ୍ଦ ଯେ ଜନକ ଦୁଲାଳୀ
ଅତୁଟ ନାରୀକି ସେ କୋଳାଗ୍ରତ କରି ।
ବୋଇଲେ ସ୍ୱାମୀ ସଙ୍ଗେ ନିଜସ୍ଥାନେ ରହ
ମୋହର ସକାଶେ କେତେ ଦୁଃଖ ତୋରଦେହ ।
ଅନନ୍ତ ଅତୁଟ ନାରୀ ସେଠାରୁ ଚଳିଗଲେ
କୋମଳ ନିଶ୍ଚିନ୍ତପୁରେ ନିଶ୍ଚିନ୍ତେ ବିଜେକଲେ ।

କୋମଳ ଶୀତଳପୁରେ ଦିନ ସେ ହରିଲେ
ଅତୁଟ ନାରୀକି ସେ ଘେନିଣ ସଙ୍ଗରେ ।
ମର୍ଦ୍ଦନ ମାଜଣା ହେଲେ ସେଥି ପୁଣ
ସ୍ନାହାନ ନିତ୍ୟକର୍ମ ସାରିଲେ ବହନ ।
ଅମୃତ ପାନକରି ନିଶ୍ଚିନ୍ତେ ରହିଲେ
ମର୍ତ୍ତ୍ୟପୁର କଥାମାନ ସବୁ ପାଶୋରିଲେ ।
ପାର୍ବତୀ ବୋଲନ୍ତି ଶୁଣ ହେ ତ୍ରିଲୋଚନ
ଲକ୍ଷ୍ମଣ ଆସିବାରୁ କି କଲେ ପୁତ୍ରେ ପୁଣ ।
ଈଶ୍ୱର ବୋଇଲେ ରୋଦନ ପୁତ୍ରେ କଲେ
ଯେ ଯାହା ରାଜ୍ୟକୁ ସେଠାରୁ ଚଳିଗଲେ ।
ରାଜ୍ୟେ ବିଖ୍ୟାତ କରି ଅନ୍ତଃପୁରେ କହେ
ମଝିଆଁ ଜନନୀ ପିତା ସ୍ୱର୍ଗପୁର ଯାୟେ ।
ଶୁଣିଣ ଅନ୍ତଃପୁରେ କଲେକ ବୋବାଳି
ଦାସୀମାନେ ପ୍ରବୋଧ କଲେ ଆସିକରି ।
ଅରୁଣ, ବରୁଣ ଲକ୍ଷ୍ମଣଙ୍କର ବେନିପୁତ୍ର
ତାତଜନନୀଙ୍କ କ୍ରିୟା ସମ୍ପାଦେ ବହୁତ ।
ପାତ୍ରମନ୍ତ୍ରୀଙ୍କୁ ଭେଦିଲେ ଶ୍ରୀରାମଙ୍କ ପାଶ
ସେ କହିଲେ ଲକ୍ଷ୍ମଣ ଗଲେ ସ୍ୱର୍ଗବାସ ।
ଶୁଣିକରି ରାମ ରୋଦନ ପୁଣି କଲେ
ବାରଦିନେ ଶଉଚ ବିଧିକି ସାଜିଲେ ।
ଧନରତ୍ନ ଅନେକ ଦାନ ପୁଣ୍ୟ କଲେ
ଦେବତା ବ୍ରାହ୍ମଣଙ୍କୁ ଭୁରି ଭୋଜନ ଦେଲେ ।
ଅଷ୍ଟପୁତ୍ରେ ଅନେକ ଦାନ ପୁଣ୍ୟ କଲେ
ଭୁରି ଭୋଜନ ହୋଇ ନିଶ୍ଚିନ୍ତେ ରହିଲେ ।
ଦୁଃଖୀ ଦରିଦ୍ରଙ୍କୁ ଦେଲେ ଧନ ବସ୍ତ୍ର
ମାଗନ୍ତା ଲୋକଙ୍କୁ ଧନ ଦେଇ କଲେ ତୃପ୍ତ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ଏଗାର ବରଷରେ ବିଜେ ରଘୁପତି ।
ନବର ଭିତରୁ ଶ୍ରୀରାମ ନୁହନ୍ତି ବାହାର
ଅନୁକ୍ଷେଣ ନେତ୍ରରୁ ବହେ ଲୋତକ ଧାର ।
ଜାନକୀ ଲକ୍ଷ୍ମଣ ଗଲା ଦିନରୁ ଚିନ୍ତା ବଡ଼
ବଶିଷ୍ଠ ବୋଧ କରନ୍ତି ଦଶରଥ ବାଳ ।
ଏରୂପେ ଛଡ଼ବରଷ ଏଥିରେ ବହିଗଲା
କାଳ ଶେଷ ହେଲା ବୋଲି ଶ୍ରୀରାମ ବିଚାରିଲା ।
ଯିବା ବୈକୁଣ୍ଠକୁ କିମ୍ବା ଏଥିରେ ଥିବା ରହି
ଭାଇ ଭାରିଯା ଗଲେ ସ୍ନେହ ଛାଡ଼ି ସେହି ।
ମୋତେ ନେ ଦେଖି ଚିନ୍ତା କରୁଥିବେ ପୁଣ
ଏମନ୍ତ ବିଚାର ଯେ କଲେ ଶ୍ରୀରାମ ରାଣ ।
ମାରୁତିକି ବୋଇଲେ ବେଗେ ଚଳିଯାଅ
ଯୂଥପତି, ସେନ୍ଯାପତି ଘେନାଇଁ ବେଗେ ଯାଅ ।
ଶୁଣିକରି ମାରୁତି ଶୀଘ୍ରେ ଚଳିଗଲା
କିଷ୍କିନ୍ଧ୍ୟା କଟକରେ ପ୍ରବେଶ ହୋଇଲା ।
ସୁଗ୍ରୀବର ଆଗରେ ଓଇଗିଲେ ଯାଇଁ
ଶ୍ରୀରାମ କୁଶଳ ସୁଗ୍ରୀବର ପଚାରଇ ।
ହନୁମନ୍ତ ବୋଇଲେ ଜାନକୀ ସ୍ୱର୍ଗ ଗଲେ
ଚଉଦ ବରଷ ହେଲା ପାତାଳେ ପଶିଲେ ।
ଦୁଇଭଗ୍ନୀ ଦାସୀ ଯେ ଘେନିଣ ମାୟାସୀତା
ପାତାଳକୁ ଗଲେ ଜନକ ଦୋହୀତା ।
ଲକ୍ଷ୍ମଣ ଉର୍ମିଳା ଘେନି ବୈକୁଣ୍ଠ ଗଲେ
ଚାରି ଭାଇଙ୍କ ପୁତ୍ର ରାଜ୍ୟରେ ରାଜାହେଲେ ।
ଆପେ ଯିବାକୁ ଲାଗିଅଛି ଉଦ୍ଯୋଗ
ବୋଇଲେ ସେନା ଯୂଥପତି ଘେନି ଆସବେଗ ।
ତାରା ବିଚାରିଲା ଏବେ ଶାପ ମୋର ହେଲା
ଚଉଦ ବରଷ ଜାନକୀ ରାମଙ୍କୁ ଛାଡ଼ିଲା ।
ଏମନ୍ତ ବିଚାରି ତାରା ମନରେ ସନ୍ତୋଷ
ସେନ୍ଯା, ଯୂଥପତି ଘେନି ଅଇଲା ହନୁମନ୍ତ ।
ଶ୍ରୀରାମଙ୍କ ଚରଣେ କଲା ଦରଶନ
ଦେଖିଣ ସନ୍ତୋଷ ହେଲେ ରାମରାଣ ।
ବୋଇଲେ ଯୂଥପତି ବେଗ ହୋଇଚଳ
ଯେତେକ ବାନର ଭାଲୁ ଅଛନ୍ତି ସର୍ବଠାର ।
ଯୁବାପିଲା ଛାଡ଼ିଣ ସବୁଙ୍କୁ ଘେନିଆସ
ନିଶ୍ଚୟ ସ୍ୱର୍ଗ ପୁରକୁ ଯିବା ଯେ ହରଷ ।
ସମସ୍ତ ଅଇଲେ ମୋହର ସଙ୍ଗେ ଯିବେ
ଅଚିନ୍ତା ବୈକୁଣ୍ଠ ପୁରେ ଯାଇଣ ରହିବେ ।
ଶୁଣିଣ ଯୂଥପତି ସେନାପତି ଗଲେ
ଚାରି ଦିଗକୁ ସେ ବାଣ୍ଟିହୋଇ ଚଳିଗଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଭରତ ଶତୃଘନ କହିଲେ ରଘୁପତି ।
ବୋଇଲେ ଶପତ ଦ୍ୱୀପକୁ ବେଗେଚଳ
ଚଉଦ ଭୁବନରେ ଚହଳ ଯାଇଁକର ।
ବୋଲିବ ଶ୍ରୀରାମ ଯିବେ ସ୍ୱର୍ଗପୁର
ଅଯୋଧ୍ୟାକୁ ତୁମ୍ଭେମାନେ ଯିବଟି ସତ୍ୱର ।

ଯୁବା ବାଳକ ଛାଡ଼ି ଯିବେ ଯେ ସମସ୍ତ
ତୁମ୍ଭେ ଯାଇଣ ରାଜାମାନଙ୍କୁ କହତ ।
ସକଳ ରାଜାଙ୍କୁ କହିବ ବେଗେଚଳ
ପାତାଳ ଭୁବନେ କହିବ ସର୍ବ ନର ।
ଜମ୍ନେବ ପର୍ଶୁରାମଙ୍କୁ କହିଣ ବେଗେ ଆସ
ଯେ ଆସି ନ ପାରିଲେ କହିବ ବିଶେଷ ।
ବୋଲଇ ରାମନାମ ସୁମରଣା କର
ପାଞ୍ଚ ବରଷ ଗଲେ ବୁଡ଼ିବ ଯାଇଁଜଳ ।
ରାମନାମ ସୁମରି ଜଳରେ ଝାସ ଦେବ
ମୁକତ ହୋଇଣ ଯେ ସ୍ୱର୍ଗ ପୁର ଯିବ ।
ପାଞ୍ଚ ଲଙ୍କା ଗଡ଼ରେ କହିବ ଯାଇଁ କରି
ବୋଲିବ ରାମଚନ୍ଦ୍ର ଯିବେ ନିଜପୁରୀ ।
ଶ୍ରୀରାମଙ୍କୁ ଦେଖିବାକୁ ଯିବ ଯେ ତୁମ୍ଭେମାନେ
ଯୁବା ବାଳକ ଛାଡ଼ି ଯାଅ ହେ ତୁମ୍ଭେ ଏଣେ ।
ସମସ୍ତଙ୍କୁ କହିଣ ବେଗ ହୋଇ ଆସ
କହିଥିଲେ ଆମ୍ଭର ଠାରୁ ଯାଉ ଦୋଷ ।
ଶୁଣି ମେଲାଣି ମାଗି ଦୁଇଭାଇ ଗଲେ
ସିଂହଦ୍ୱାରେ ରଥର ଉପରେ ବସିଲେ ।
ପ୍ରଥମେ ପାତାଳକୁ ଗଲେ ଯେ ଦୁଇଭାଇ
ପାତାଳ ପୁରେ ସଭିଙ୍କି କହିଲେ ପୁଣଯାଇ ।
ପାତାଳୁ ବାହାର ହୋଇ ପାଞ୍ଚଲଙ୍କା ଗଲେ
ଲଙ୍କାରେ ରାଜାମାନଙ୍କୁ କହିଣ ଲେଉଟିଲେ ।
ସପତ ସାଗର ବୁଲିଣ କହିଲେ
ଛଡ଼ଦ୍ୱୀପ ରାଜାଙ୍କୁ ଶ୍ରବଣ କରାଇଲେ ।
ଜମ୍ବୁଦ୍ୱୀପ ମଣ୍ଡଳରେ ପ୍ରବେଶ ହେଲେ ପୁଣ
ଲକ୍ଷେ ରାଜାଙ୍କୁ କହିଲେ ଭରତ ଶତ୍ରୁଘନ ।
ସୁଗ୍ରୀ ଅଙ୍ଗଦକୁ କହିଣ ଫେରିଲେ
ଭାଇବନ୍ଧୁ କୁଟୁମ୍ବ ଯେ ସଭିଙ୍କି କହିଲେ ।
ଆପଣା ରାଜ୍ୟରେ ଜାଗ୍ରତ ଯାଇଁକଲେ
ରାମ ସ୍ୱର୍ଗ ଯିବେ ଯେ ଯିବ ଆସ ଭଲେ ।
ବରଷକେ ଫେରି ରାମର ପାଶେ ହୋଇ
ଓଳଗି ମେଲାଇଲେ ଶ୍ରୀରାମଙ୍କୁ ଚାହିଁ ।
ବୋଇଲେ ସକଳ ରାଜ୍ୟେ କହିଣ ଅଇଲୁଁ
ସକଳ ରାଜାଙ୍କୁ ଶ୍ରବଣ କରାଇଲୁ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଚାରି ଦିଗକୁ ଯେ ଦୂତେ ଗଲେ ଫେରି ।
ନର, ବାନର, ଭାଲୁ, ଶାର୍ଦ୍ଦୋଳ ରୂପ ଦେଖି
ସମସ୍ତଙ୍କୁ ବୋଇଲେ ବୈକୁଣ୍ଠ ଯିବାଟିକି ।
ଯାହାକୁ କହିଲେ ଦେଖିଲା ଲୋକ ପୁଣ
ବୋଇଲେ ସ୍ୱର୍ଗକୁ ଯେବେ ଯିବାକୁ ଅଛି ମନ ।
ବଦରୀ ବନରେ ଗଙ୍ଗା କୂଳକୁ ଚଳ
ହେମଗିରି ସ୍ୱର୍ଗବାଟ ସେଠାକୁ ନୋହେ ଦୂର ।
ଗଲେ ସ୍ୱର୍ଗ ଯିବ ନ ଗଲେ ନର୍କଗତି
ଏତେ ବୋଲି ବାନରେ ଫେରିଣ କହନ୍ତି ।
ଦୁଇ ବରଷରେ ବୁଲିଲେ ସର୍ବପୁର
ସଭିଙ୍କି କହି ଦୂତେ ଫେରିଲେ ସକଳ ।
ଗୁହନାମେ ଶବରକୁ ହନୁ ଯାଇ କହି
ରାମ ସ୍ୱର୍ଗଯିବେ ତୁ ଯିବୁ ବେଗ ହୋଇ ।
ଯେତେ କନ୍ଧ ଶବର ଜମ୍ବୁଦ୍ୱୀପରେ ଠୁଳ
ବାଳ ଯୁବା ଛାଡ଼ିଣ ଅଣାଇଁ କରମେଳ ।
ଆସି ନ ପାରିବା ଲୋକଙ୍କୁ କହିବ
ରାମଙ୍କୁ ସୁମରି ସେ ଜଳରେ ଝାସଦେବ ।
ଏମନ୍ତ ବୋଲିଣ ଯେ ହନୁମନ୍ତ ଆସି
ଚାରିଦିଗକୁ ଶବର ଦୂତ ଦେଲା ପେଶି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଦଶରଥ ନନ୍ଦନ ମନରେ ବିଚାରି ।
ନାରଦଙ୍କୁ ସୁମରଣା କଲେ ଯେ ମନରେ
ତତ୍‌କ୍ଷଣେ ବ୍ରହ୍ମମୁନି ମିଳିଲେ ପାଶରେ ।
ମୁନିଙ୍କି ଦେଖି ରାମ ନମସ୍କାର କଲେ
ସୁବର୍ଣ୍ଣ ସିଂହାସନରେ ନେଇ ବସାଇଲେ ।
ବୋଇଲେ ପାତାଳ ମଞ୍ଚରେ ବୁଲିବି
ଋଷିମାନଙ୍କୁ ଯାଇ ପଚାରି ଆସିବ ।
ବୋଲିବ ବୈକୁଣ୍ଠକୁ ଯେବେ ଯିବାକୁ ଇଚ୍ଛା
ବଦରୀ ଗଙ୍ଗାଚଳ ଚିନ୍ତି କୌଶଲ୍ୟା ବତ୍ସା ।
ଏତେବୋଲି ସମସ୍ତଙ୍କୁ କହିବ ତୁମ୍ଭେଯାଇଁ
ମନଇଚ୍ଛା ହେଲେ ଋଷି ଆସନ୍ତୁ ଚଳାଇ ।
ଶୁଣି କରି ନାରଦ ବେଗ୍ରରେ ଚଳିଗଲେ
ପାତାଳ ଋଷିଙ୍କି ଯାଇଣ କହିଲେ ।
ମର୍ତ୍ତ୍ୟପୁର ଋଷିଙ୍କି କହିଲେ ଆସି ପୁଣ ।
ସମସ୍ତଙ୍କୁ କହିଣ ଗଲେ ନିଜସ୍ଥାନ ।
ଏଥୁ ଅନନ୍ତରେ ରାମ ସୁମରେ ବିଶ୍ୱକର୍ମା
ତତକ୍ଷଣେ ପ୍ରବେଶ ହେଲେ ରୂପ ବ୍ରହ୍ମା ।

ରାମ ବୋଇଲେ ତୁମ୍ଭେ ବୈକୁଣ୍ଠ ପୁରଚଳ
ଶ୍ରୀହରି ପାଟଣାରେ ଅନେକ ଘରକର ।
ସପତ ଦ୍ୱୀପରୁ ଯେ ଅନେକ ଲୋକଯିବେ
ସେହିପୁରେ ଯାଇଣ ସମ୍ଭାଳି ସେହୁହେବେ ।
ଶୁଣିଣ ବିଶ୍ୱକର୍ମା ବେଗେ ଚଳିଗଲା
ସତର ଯୂଣ ଦୀର୍ଘ ନବର ଭିଆଇଲା ।
ସୁବର୍ଣ୍ଣମୟେ ପୁର ଦିଶଇ ଯତନ
ନିବାଡ଼ି ବିଶ୍ୱକର୍ମା ଗଲା ନିଜ ସ୍ଥାନ ।
ହନୁଠାରୁ ଶୁଣି ଅଇଲେ ବାନର ଭାଲୁଅଷ୍ଟବର୍ଣ୍ଣ
ଗଣ୍ଡା, ଗୟଳ ଯେ ଶୂକର ହରିଣ ।
ସିଂହ, ଶାର୍ଦ୍ଦୋଳ ଯେ ନାନାବର୍ଣ୍ଣରେ ଜୀବ
ବଦରୀ ବନରେ ସେ କଲେ ଯାଇଁଠାବ ।
ଯେତେ ଋଷିଙ୍କର ମନ ଯେ ହୋଇଲା
ବଦରୀ ବନରେ ମିଳିଲେ ସେ ପରା ।
ଉଡ଼ନ୍ତା ବୁଡ଼ନ୍ତା ଯେ ଚଳନ୍ତି ଅଚଳନ୍ତି
ଶ୍ରୀରାମ ନାମ ଶୁଣି ଉତ୍ସାହେ ଧାମନ୍ତି ।
ସମସ୍ତେ ପ୍ରବେଶ ହେଲେ ବଦରୀ ଗଙ୍ଗାକୂଳେ
ରାମନାମ ସୁମରଣା କରନ୍ତି ହୃଦୟରେ ।
ଯୁବା ବାଳକଙ୍କୁ ଛାଡ଼ି ସମସ୍ତେ ଚଳିଗଲେ
ଏଥୁ ଅନନ୍ତରେ ଶୁଣ ତୁମ୍ଭେ ଭଲେ ।
ସପତ ସାଗର ଛଡ଼ଦ୍ୱୀପ ଜାଣ
ରାମନାମ ସୁମରଣା କଲେକ ଭିଆଣ ।
ଲକ୍ଷେ ରାଜାଙ୍କୁ ଯେ ଶ୍ରୀରାମ ଡକାଇଲେ
ନୃପତିମାନେ ଶୁଣି ମନେ ଆନନ୍ଦ ହେଲେ ।
ଯେ ଯାହା ରାଜ୍ୟ ଲୋକଙ୍କୁ ଡାକିଣ କହିଲେ
ଶ୍ରୀରାମ ସଙ୍ଗେ ବୈକୁଣ୍ଠ ଯିବା ଆସ ଭଲେ ।
ଯୁବା, ବାଳକ, ପୁତ୍ର, ବଧୂଙ୍କୁ ଗୃହେ ରଖି
ଅଯୋଧ୍ୟା ପୁର ଯିବା ସକଳ ଉପେକ୍ଷି ।
ପାତ୍ରଙ୍କର କୁମର ଯେ ମନ୍ତ୍ରୀମାନଙ୍କ ପୁତ୍ର
ଏମାନଙ୍କୁ ଶାଢ଼ୀ ଦେଲେ ରାଜାଏ ତୁରିତ ।
କେଉଁ ରାଜା ପୁତ୍ର ଯେ ନାତିଙ୍କି ଶାଢ଼ୀଦେଲେ
ଅଭିଷେକ କରାଇ ରାଜ୍ୟରେ ରାଜାକଲେ ।
ନର ନାରୀ ବୃଦ୍ଧା ଯେ ପରଜା ବଳ ଘେନି
ଅଚଳନ୍ତି ଲୋକମାନଙ୍କୁ କହି ପୁଣି ।
ବୋଇଲେ ରାମନାମ ସୁମରଣା କରୁଥିବ
ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଗଙ୍ଗାରେ ଝାସଦେବ ।

ତେବେ ବୈକୁଣ୍ଠ ପୁର ଯିବ ଯେ ତତ୍କାଳ
ଏତେକହି ରାଜାମାନେ ଅଇଲେ ଚଞ୍ଚଳ ।
ଲକ୍ଷେକ ନୃପତି ପରଜା ବଳ ଘେନି
ଅଯୋଧ୍ୟାରେ ପ୍ରବେଶ ହେଲେ ଯାଇଁ ପୁଣି ।
କିଷ୍କିନ୍ଧ୍ୟାରେ ସୁଗ୍ରୀବର ପୁତ୍ରଙ୍କୁ ରାଜାକଲା
ରାମନାମ ତୁଣ୍ଡରୁ କେବେହେଁ ନ ଛାଡ଼ିଲା ।
କିଷ୍କିନ୍ଧ୍ୟାରେ ଅଙ୍ଗଦ ପୁତ୍ରକୁ ରାଜାକରି
ବାଳକ ଯୁବା ରଖିଣ ସମସ୍ତଙ୍କୁ ଘେନି ଚଳି ।
ଅଯୋଧ୍ୟା ନଗରେ ହେଲେ ପରବେଶ
ଅଷ୍ଟ ଭୁବନରୁ ଅଇଲେ ଅଷ୍ଟ ଶିଷ୍ୟ ।
ବାଳ ଯୁବା ଛାଡ଼ିଣ ବୃଦ୍ଧାଙ୍କୁ ଘେନି ଆସି
ଗୁହ ନାମେ ଶବର ସେ ମିଳିଲାକ ଆସି ।
ପୁତ୍ରକୁ ରାଜା କରିଣ ଯୁବା ବାଳକ ରଖି
ରାମନାମ ତୁଣ୍ଡରେ ଶବର ଉଚ୍ଚାରଇଟି ।
ବୃଦ୍ଧା ସ୍ତିରୀ ପୁରୁଷ ସଙ୍ଗରେ ଘେନି ମିଳି
ଶ୍ରୀରାମଙ୍କୁ ଦର୍ଶନ କଲା ସେ ଯାଇ କରି ।
ଏମନ୍ତ ସମୟରେ ମିଳିଲେ ଅସୁର
ବାଳ ଯୁବା ରହିଲେ ଅଇଲେ ସକଳ ।
ବିଭୀଷଣ ସୁକର୍ଣ୍ଣ ସୁବାହୁ ନାଦ ଆସି
ମନ୍ଦୋଦରୀ ସଙ୍ଗରେ ସମସ୍ତେ ଋରୁହଂସୀ ।
ତ୍ରିଦଶ ସ୍ୱୟଂମନୁ ରାଜ୍ୟର ନର ନାରୀ
ସମସ୍ତଙ୍କୁ ଘେନିଣ ଅଯୋଧ୍ୟା ପୁରେ ମିଳି ।
ପର୍ଶୁରାମ ଜମ୍ବେବ ହେଲେ ପରବେଶ
ଶ୍ରୀରାମ ଦର୍ଶନରେ ବଳେ ମନ ତୋଷ ।
ଲାଗିଲା ଗହଳ ଅଯୋଧ୍ୟା ପୁରେ ଜାଣ
ବତିଶ ପୂଣ ଯାଏ ଯନ୍ତାଯନ୍ତି ପୁଣ ।
ଦେଖିଣ ଶ୍ରୀରାମ ମନରେ ତୋଷ ହେଲେ
ଅଷ୍ଟ କୁମରଙ୍କୁ ଡାକିଣ କହିଲେ ।
ଯେ ଯାହା ପୁର ଯାଇ ପରଜା ତୁମ୍ଭେପାଳ
ସମସ୍ତଙ୍କ ବାପା ମାଆ ନଥାନ୍ତି କାଳକାଳ ।
ଆମ୍ଭର ଯିବା ସମୟ ଆମ୍ଭେ ଯାଉଅଛୁଁ
ତୁମ୍ଭ ବେଳହେଲେ ବାବୁ ଯିବଟି ସେଠାକୁ ।
ପୁତ୍ରଙ୍କୁ ବୋଧ କରିଣ ଶ୍ରୀରାମ ମହୀପାଳ
ବଶିଷ୍ଠ ଋଷିଙ୍କି ବୋଇଲେ ତୁମ୍ଭେ ପାଳ ।
ମେଲାଣି ହୋଇଣ ପୁତ୍ରେ ଯେ ଯାହାପୁରେ ଚଳି
ଭୋଜନ କରିଣ ପୁତ୍ରେ ନିଜ ପୁରେମିଳି ।

ଅଷ୍ଟ ଋଷିଙ୍କି ବୋଇଲେ ରାମ ତଥ୍ୟକରି
ଜ୍ୟେଷ୍ଠ ପୂର୍ଣ୍ଣମୀ ଦିନ ଆମ୍ଭେ ଯିବୁଁ ନିଜପୁରୀ ।
ପର୍ଶୁରାମଙ୍କୁ ବୋଇଲେ ପାତାଳପୁରେ ଥିବ
ଷୋଳ ଯୁଗ ଗଲେ ମର୍ତ୍ତ୍ୟପୁରରେ ରହିବ ।
ତେବେ ମୋର ରୂପ ଯେ ଦେଖିବ ନୟନରେ
ରାମକୃଷ୍ଣ ଅବତାର ହୋଇବ ମଥୁରାରେ ।
ଏତେ ବୋଲି ଋଷିଙ୍କ ଧରିଣ ରାମ ରାଣ
ବୋଇଲେ ବେଗେ ଯାଅ ପାତାଳ ଭୁବନ ।
ଶୁଣିଣ ପର୍ଶୁରାମ ଆନନ୍ଦ ହୋଇଲେ
ନୀଳ ବର୍ଣ୍ଣ ହୋଇଣ ପାତାଳପୁର ଗଲେ ।
ବିଷ୍ଣୁ କଳା ଥିଲା ତାର ଅଙ୍ଗରେ ପୂର୍ବରୁ
ଶ୍ରୀରାମ ହରିନେଲେ ତାଙ୍କର ଅଙ୍ଗରୁ ।
ଜାମ୍ବେବଙ୍କୁ ବୋଇଲେ ତୁମ୍ଭେ ଚଳ ନିଜପୁର
ଯେଉଁକଥା ତୋର ମନେ ଅଛି ଯେ ବିଘର ।
ଯେତେବେଳେ ରାବଣଙ୍କୁ ମାରିଲି ଯୁଦ୍ଧରେ
ତେତେବେଳେ ବିଘରିଲୁ ତୋହର ମନରେ ।
ଭାବିଲୁ ଏ ରାମ ସଙ୍ଗେ ଯୁଦ୍ଧ ଯେବେ କରି
ତେବେ ପୁରୁଷାର୍ଥ ସିନା ଅଟଇ ତାହାରି ।
ଷୋଳ ଯୁଗ ଅନ୍ତେ ମୁଁ ହେବି ଅବତାର
ତେତେବେଳେ ମୋର ସଙ୍ଗେ କରିବ ସମର
ଯାଅ ଏଥି ଦଣ୍ଡେ ବାବୁ ନ କର ବିଳମ୍ବ
ଶୁଣିକରି ମତିଭ୍ରମ ହୋଇଲା ଜାମ୍ବବ ।
ଓଳଗି ମେଲାଇଣ ନିଜ ପୁରଗଲା
ଘରଣୀର ପାଶରେ ଯାଇଣ ମିଳିଲା ।
ବିଭୀଷଣଙ୍କୁ ଚହିଁ ବୋଲନ୍ତି ଚପଧାରୀ
ଲଙ୍କାଗଡ଼କୁ ତୋର ଚଳିଯାଅ ବେଗ କରି ।
ଚନ୍ଦ୍ର, ସୂର୍ଯ୍ୟ ଥିବାଯାଏ ସେ ପୁରରେ ଥିବୁ
ମନ୍ଦୋଦରୀକି ଘେନି ସୁଖରେ ବିଳସିବୁ ।
ଦେଖିବା ପାଇଁକି ତୋତେ ଅଣାଇଥିଲୁଁ ପୁଣ
ଏବେ ତୋ ରାଜ୍ୟେ ଚଳ ହନୁକୁ ବିମନ ।
ସାତକୋଟି ପଞ୍ଚାଶ ଲକ୍ଷ ରାଣୀ ରାବଣର
ସମସ୍ତେ ନମିଲେ ଶ୍ରୀରାମଙ୍କ ପୟର ।
ବିଭୀଷଣ, ମନ୍ଦୋଦରୀ ବୋଲନ୍ତି ନିଶ୍ଚଳ
ଆମ୍ଭମାନଙ୍କୁ ସ୍ୱାମୀ କରାଅ ନେଇ ମେଳ ।
ବିଭୀଷଣ ବୋଇଲେ ଏମାନେ ଦେବଯାନ୍ତୁ
ମନେ ତୋଷ ନାହିଁ ଏ ମୋ ପାଶେ ନ ଥାନ୍ତୁ ।

ଶ୍ରୀରାମ ବୋଇଲେ ଯେବେ ମନରେ କଲେ ଇଛା
ସ୍ୱାମୀର ଚରଣେ ଖଟନ୍ତୁ ପୁରୁ ମନୋବାଞ୍ଛା ।
ସୁକର୍ଣ୍ଣକୁ ବୋଇଲେ ତୋର ରାଜ୍ୟେଚଳ
ବିଭୀଷଣ ଥିବାଯାଏ ହୁଅ ମହୀପାଳ ।
ଦୁଷ୍ଟପଣ କଲେ ତୋତେ ମାରିବେ ରଘୁନାଥ
ବିଭୀଷଣ ବୋଲେ ଥିଲେ ହେବୁ ତୁ ନିଶ୍ଚିନ୍ତ ।
ନାଦକୁ ବୋଇଲେ ତୁ ମାତାର ବୋଲେଥିବୁ
ମାତାକୁ ଲଙ୍ଘିଲେ ଶିବଙ୍କ ହସ୍ତରେ ମରିବୁ ।
ସୁବାହୁକୁ ବୋଇଲେ ତୁ ଥିବୁ ନିଶ୍ଚିନ୍ତରେ
ଯେତେବେଳେ ଇଛା ତୋର ଯିବୁ ସ୍ୱର୍ଗଆଳେ ।
ତ୍ରୀଜଟାକୁ ବୋଇଲେ ତୁ ନିଶ୍ଚିନ୍ତରେ ଥାଅ
କଳି ଯୁଗରେ ଜମ୍ବୁ ଦ୍ୱୀପରେ ଭୋଗ ପାଅ ।
ଧର୍ମରେଣ ପୃଥ୍ୱୀ କରିବୁ ଆତଯାତ
ଶତେ ବରଷ ଥିବ ତେଜିବୁ ଜମ୍ବୁ ଦ୍ୱୀପ ।
ସହସ୍ରେ ଚାରିଶତ ବରଷ ଭୋଗ ତହିଁ
ପୁଣି ତିନି ଯୁଗ ଗଲେ ସେରୂପେ ଭୋଗପାଇ ।
ସ୍ୱୟଂ ମନୁକୁ ବୋଇଲେ ନିଶ୍ଚିନ୍ତରେ ଥାଅ
ତ୍ରୀଜଟାକୁ ଘେନିଣ ତୁ ବିଳହ ଋଷି ଦେହ ।
ଯେତେବେଳେ ଆନ ସୃଷ୍ଟି ହୋଇବ ଯେପୁଣ
ତେତେବେଳେ ସ୍ୱର୍ଗପୁର ଯିବ ମୁନିଜାଣ ।
ଏତେକହି ସେମାନଙ୍କୁ ମେଲାଣୀ ରାମ ଦେଲେ
ଓଳଗି ମେଲାଇଣ ନିଜପୁର ଗଲେ ।
ଯେ ଯାହାର ରାଜ୍ୟରେ ହେଲେ ପରବେଶ
ଏଥୁ ଅନନ୍ତରେ ଶୁଣ ଗୋ ଦିବ୍ୟରସ ।
ଅଙ୍ଗଦକୁ ଚାହିଁଣ ରାମ ଆଜ୍ଞାଦେଲେ
ଯାହା ବିଚାରିଲୁ ପୁତ୍ର ସେହି କଥା ହେଲେ ।
ସ୍ୱର୍ଗପୁରେ ଯାଇ ନକ୍ଷତ୍ର ରୂପେ ରହି
ପିତା ଶତୃନାଶ କଲେ ମନ ତ୍ରିପୁତି ହୋଇ ।
ଯେତେବେଳେ ତୋର ପିତାକୁ ନାଶକଲି
ଅଦୋଷରେ ତୋହର ପିତାକୁ ମାଇଲି ।
ତେତେବେଳେ ବିଚାରିଲୁ ମନରେ ତୋହର
ପିତା ଶତୃ ବଧକଲେ ମନମୋର ସ୍ଥିର ।
ଷୋଳ ଯୁଗ ଅନ୍ତେ ମୁଁ ହେବି ଅବତାର
ସେ ଯୁଗେ କୃଷ୍ଣନାମ ହେବ ଯେ ମୋହର ।
ଜାରା ଶବର ପୁରେ ଜାତ ତୁ ହୋଇଥିବୁ
ଚିଆର ଶରରେ ମୋତେ ତୁହି ମାରିବୁ ।

ପିତା ବୈରୀ ମାରି ତୁ ଯିବୁ ସ୍ୱର୍ଗପୁର
ସଙ୍ଗତରେ ଯିବ ଘରଣୀ ତୋହର ।
ଦୁଇଜଣ ନକ୍ଷତ୍ର ରୂପରେ ପୁଣ ରହି
ଷୋଳ ଯୁଗ ଗଲେ ପିତା ଋଣ ଶୁଝିବୁ ତୁହି ।
ଶୁଣିଣ ଅଙ୍ଗଦ ଓଳଗି ମେଲାଇଲା
ପିତାମାତାଙ୍କୁ କହିଣ ନିଜପୁରକୁ ଗଲା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ହନୁମନ୍ତକୁ ଚାହିଁଣ ଶ୍ରୀରାମ ବୋଲନ୍ତି ।
ଦୁଇକଥା ବିଚାର କଲୁ ଯେ ମନରେ
ଜାନକୀଙ୍କି ଦେଖି ଲୋଭ କଲୁ ତୁ ଚିତ୍ତରେ ।
ବୋଇଲୁ ଏମନ୍ତ ନାରୀ ଅଙ୍ଗ ଯେବେ ଛୁଇଁ
ଜନ୍ମ ତାର ସୁଫଳ ସ୍ୱର୍ଗରେ ଭୋଗ ପାଇ ।
ଜାନକୀକି ଦେଖି ଏମନ୍ତ ବିଚାରିଲୁ
ଷୋଳ ଯୁଗ ଗଲେ ତାକୁ ଛୁଇଁବୁ ଆଜ୍ଞାଦେଲୁ ।
ଆମ୍ଭେ ମଧୁପୁରେ ଜାତ ବସୁଦେବ ଘରେ
ଜାନକୀ ଅଂଶ ଜାତ ପଦ୍ମ ଯେ ବନରେ ।
ମାୟାରୂପ ଗୋଟି ତୋର ଅଟେ ମାୟାସୀତା
ଅଯୋନୀରେ ସମ୍ଭୁଇ ସେ ଗଙ୍ଗାର ଦୋହିତା ।
ପଦ୍ମ ପୁଷ୍ପ ଉପରେ ସେ କରିବ ରୋଦନ
ଭିଖଭାନୁ ଗୋପାଳ ଯେ ସେଠାକୁ ଯିବ ପୁଣ ।
ସେ କନ୍ୟାକୁ ଆଣିଣ ତା ଘରଣୀଠାରେ ଦେବ
ତାହାର ଘରଣୀ ତାକୁ ଯତନେ ପାଳିବ ।
ମନୁସେଣା ନାମରେ ଯେ ଗୋପାଳଘର ଗୋପେ
ତାହାର ଘରେ ଜାତ ତୁ ଚନ୍ଦ୍ରସେଣା ରୂପେ ।
ଭିଖଭାନୁ ତୋତେ ଯେ ସେ ଦୋହିତା ବିଭାକରି
ତେବେ ସେ ତାର ଅଙ୍ଗ ଛୁଇଁବୁରେ ହରି ।
ନପୁଂସକ ଲକ୍ଷଣ ହୋଇବ ତୋର ଅଙ୍ଗ
ଯେତେ ଆଲିଙ୍ଗନ କଲେ ନୋହିବ ରତିରଙ୍ଗ
ତା ଅଂଶରେ ଷୋଳସସ୍ର କନ୍ୟା ହେବେଜାତ
ସୁବର୍ଣ୍ଣ ସୀତା ହେବେ ସେ ପୁରରେ ଜାତ ।
ତାର ନାମ ଚନ୍ଦ୍ରାବଳୀ ହୋଇବଟି ପୁଣ
ତ୍ରିପୁର ଜାତହେବେ ବୃନ୍ଦାବତୀ ରୂପେ ଜାଣ ।
ସହଚରୀ ସେଥିରେ ଯେ ମନୁମାୟା ହେବ
ଦୂତିକା ବୋଲିଣ ତାର ନାମ ହୋଇଥିବ ।
ତୋହର ରୂପ ଗୋଟି ଦୁଇଭାଗ ହେବ
ଲକ୍ଷ୍ମଣ ଶକ୍ତିଭେଦ ଦିନ କଥା ମନେ ଭାବ ।
ଲକ୍ଷ୍ମଣ ଶକ୍ତିଭେଦେ ତୁ ଗନ୍ଧମାର୍ଦ୍ଦନ ଗଲୁ
ସେ ସ୍ଥାନକୁ ଦେଖି ତୁ ମନରେ ବିଚାରିଲୁ ।
ବୋଇଲୁ ଏ ସ୍ଥାନେ ମୁଁ ହୁଅନ୍ତି କପି ବ୍ରହ୍ମା
ତେବେ ଦିନ ମୋର ଯାନ୍ତା ସୁଖରେ ସିନା ।
ଏ ଦୁଇ କଥା ତୋତେରେ ହେବ ପରାର୍ପିତ
ଚଳକୁ ମାରୁତି ଗନ୍ଧମାର୍ଦ୍ଦନ ପର୍ବତ ।
କପି ବ୍ରହ୍ମା ହୋଇଣ ସେଥିରେ ଯାଇଁରହ
ଷୋଳ ଯୁଗଗଲେ ଦେଖିବୁ ପବନର ପୁଅ ।
ଏକଥା ଶୁଣି ମାରୁତି ବହୁ ରୋଦନ କଲା
ଓଳଗି ମେଲାଇଣ ବେଗେ ଚଳିଗଲା ।
ଗନ୍ଧମାର୍ଦ୍ଦନ ପର୍ବତେ ହେଲା ପରବେଶ
ସୁଖରେ ବିଳସିଲା ପବନର ଶିଷ୍ୟ ।
ଏଥୁ ଅନନ୍ତରେ କଥା ଶୁଣ ଭଗବତୀ
ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ସପତମୀ ତିଥି ।
ପାତ୍ର ମନ୍ତ୍ରୀ ବଶିଷ୍ଠଙ୍କୁ ଅଣାଇ ରାମରାଣ
ବୋଇଲେ ଏ ରାଜ୍ୟରେ ତୁମ୍ଭେ ଯେ କାରଣ ।
ଥାଅ ଆମ୍ଭେ ଗଲୁଁ ଆମ୍ଭର ନିଜପୁର
ଦୁଇ ଭାଇ ଘେନି ରାମ ବିଜୟେ ରଘୁବର ।
ସୁବର୍ଣ୍ଣ ସୀତାକୁ ନେଇ କୋଳରେ ବସାଇଲେ
ଆନନ୍ଦ ମନରେ ରାମ ଅଯୋଧ୍ୟା ତେଜ୍ୟାକଲେ ।
ପୁଷ୍ପକ ଯାନ ଯେ ଚଳଇ ଧୀର ଧୀର
ସରଜୁ ପାରି ହୋଇ ବିଜେ ରଘୁବୀର ।
ଲକ୍ଷେ ନୃପତି ଯେ ପରଜା ଜନ ଘେନି
ଅଯୋଧ୍ୟା ପୁରରୁ ଚଳିଲେ ସର୍ବେ ପୁଣି ।
ବାନର ଭାଲୁ ଯେ ଅନେକ ଜୀବେ ଚଳି
ସ୍ଥାବର ଜଙ୍ଗମମାନେ ଶ୍ରୀରାମ ପଛେ ଚଳି ।
ଉପରେ ଉଡ଼ନ୍ତା ଜୀବେ ଚଳିଲେ ସତ୍ୱର
ସମସ୍ତେ ମିଳିଲେ ବଦରୀ ଗଙ୍ଗାକୂଳ ।
ପାଞ୍ଚଦିନ ରାମ ରହିଣ ଚଳିଗଲେ
ବସନ୍ତ ଗିରିପରେ ପ୍ରବେଶ ଯାଇଁ ହେଲେ ।
ସୁଷେଣକୁ ଡକାଇ ବୋଲନ୍ତି ରାମରାଣ
ଯାହା ତୁ ମନରେ ବିଚାରୁ ଅଛୁ ପୁଣ ।
ଯେତେବେଳେ ରାମଧାମ କଲି ମୁଁ ବିଚାର
ତେତେବେଳେ ତୋର ମନେ କଲୁ ତୁ ବିଚାର ।
ବୋଇଲୁ ଏପଦ ଯେବେ ମୋର ହୋଇଥାନ୍ତା
କାଳେ କାଳେ ନିଶ୍ଚଳ ହୋଇଣ ରହନ୍ତା ।

ସେହିକଥା ତୋର ହେଉରେ ନିଶ୍ଚଳ
ବସନ୍ତ ଗିରିପରେ ରହତୁ ନିଶ୍ଚିନ୍ତରେ ।
ମୁକ୍ତେଶ୍ୱର ବୋଲିଣ ତୋର ନାମହେଉ
ତୋତେ ଯେ ସେବିବ ମୁକତ ସେ ହେଉ ।
ଏତେକହି ରାମ ତା ଶିରରେ ଦେଲେକର
ତକ୍ଷଣେ ସୁକ୍ଷଣେ ବୀର ହୋଇଲା ଅଚଳ ।
ନୀଳବର୍ଣ୍ଣ ରୂପେ ଲିଙ୍ଗ ପାଷାଣ ମୂର୍ତ୍ତିହେଲା
ପାଷାଣ ଦେଉଳ ରତ୍ନ ଭୂଷଣ ତୋଳିଲା ।
ସେ ମନ୍ଦିର ଭିତରେ ସେ ସୁକ୍ଷେଣ ରହିଲା
ସେଠାରୁ ଶ୍ରୀରାମ ଯେ ଚଳିଗଲେ ତ୍ୱରା ।
ବଦରୀ ବନ ଭିତରେ ପଶିଲେ ରାମ ବୀର
ପୁଷ୍ପକ ବିମାନ ଯେ ଚଳଇ ଧୀର ଧୀର ।
ଗଙ୍ଗା କୂଳରେ ଯାଇଁ ହେଲେ ପରବେଶ
ଗହଳ ଶବଦରେ ପୂରିଲା ଆକାଶ ।
ଆର କୂଳେ ହେମାଳୟ ସ୍ୱର୍ଗକୁ ବାଟ ପୁଣ
ହେମଗିରି ଉପରେ ବିଜୟ ଦେବଗଣ ।
ଶ୍ରୀରାମ ଡାକଦେଲେ ଉଡ଼ନ୍ତା ଜୀବମାନେ
ଗଙ୍ଗାରେ ସ୍ନାନକରି ପାଅ ସେ ସ୍ୱର୍ଗସ୍ଥାନେ ।
ଶୁଣି ଉଡ଼ନ୍ତା ଜୀବେ ଗଙ୍ଗାରେ ସ୍ନାନକଲେ
ଚତୁର୍ଦ୍ଧା ରୂପଧରି ଆରକୂଳେ ମିଳେ ।
ଦେବ ଲୋକେ ଆସିଣ ତାଙ୍କୁ ଘେନିଗଲେ
ଅଚିନ୍ତା ବୈକୁଣ୍ଠରେ ନେଇଣ ଠାବଦେଲେ ।
ଉଡ଼ନ୍ତା ବୁଡ଼ନ୍ତା ଜୀବଯିବାରୁ ଶ୍ରୀରାମଚନ୍ଦ୍ର ଦେଖି
ଅଚଳନ୍ତି ଜୀବଙ୍କୁ ବୋଇଲେ ଯାଅହେ ଉପେକ୍ଷି
ଶୁଣିଣ ଅଚଳନ୍ତି ସେ ରୂପ ତେଜ୍ୟାକଲେ
ଗଙ୍ଗାରେ ସ୍ନାନକରି ଆରକୂଳେ ମିଳେ ।
ତାହାଦେଖି ଚଳନ୍ତି ଜୀବେ ଗଙ୍ଗାରେ ପଶିଲେ
ଚତୁର୍ଭୁଜ ହୋଇଣ ଆରକୂଳେ ମିଳେ ।
ଦେବ ଲୋକମାନେ ଯେ ତାଙ୍କୁ ଘେନିଗଲେ
ଶ୍ରୀହରି ପାଟଣାରେ ନେଇଣ ଠାବ ଦେଲେ ।
ଭାଲୁ ବାନରଙ୍କୁ କହିଲେ ରାମରାଣ
ବୋଇଲେ ସ୍ନାନକର ଗଙ୍ଗାରେ ଯାଇପୁଣ ।
ଶୁଣିଣ ବାନର ଭାଲୁ ଗଙ୍ଗାରେ ସ୍ନାନକଲେ
ଚତୁର୍ଭୁଜ ହୋଇ ଆର କୂଳରେ ଉଭାହେଲେ
ଦେଖିଣ ଦେବତାଏ ଯେ ଯାହା ଅଂଶ ଚିହ୍ନି
ଆଦର କରିଣ ନେଲେ ଯେ ଯାହାର ପୁଣି ।

ଗୁହ ନାମେ ଶବରଙ୍କୁ ଶ୍ରୀରାମ ଡାକଦେଲେ
ତୋହର ମେଳଘେନି ଗଙ୍ଗାରେ ବୁଡ଼ଭଲେ ।
ଶବର ତା ମେଳଘେନି ଗଙ୍ଗାରେ ସ୍ନାନକଲା
ଆରକୂଳେ ଯାଇଣ ତତକ୍ଷଣେ ମିଳିଲା ।
ଚତୁର୍ଭୁଜ ହୋଇଣ ସମସ୍ତେ ହେଲେ ଛିଡ଼ା
ଦେବଲୋକେ ଆସିଣ ଘେନିଗଲେ ପରା ।
ଶ୍ରୀହରି ପାଟଣାରେ ନେଇଣ ଛାଡ଼ିଦେଲେ
ଅଚିନ୍ତା ନବରରେ ଯାଇଣ ବସିଲେ ।
ପୁଣିହିଁ ଶ୍ରୀରାମ ଯେ ଅସୁର ବଳଙ୍କୁ ଚାହିଁ
ବୋଇଲେ ନରନାରୀ ପଶ ଗଙ୍ଗାରେ ଯାଇଁ ।
ସେହୁପୁଣି ଚତୁର୍ଭୁଜ ହୋଇ ଆରକୂଳରେହେଲେ
ଦେବଗଣେ ଆସିଣ ତାହାଙ୍କୁ ନେଲାବେଳେ ।
ଶ୍ରୀରାମ ଡାକଦେଲେ ଦେବତାଏ ଶୁଣ
ଜୟେ ବିଜୟେ ଦ୍ୱାରପାଳଙ୍କ ପୁରରେ ରଖପୁଣ ।
ଶୁଣିଣ ଦେବତାଏ ରଥ ଘେନିଗଲେ
ଦ୍ୱାରପାଳ ପାଟଣାରେ ନେଇଣ ରଖାଇଲେ ।
କୁମ୍ଭକର୍ଣ୍ଣ ଆସି ତାଙ୍କ ସଙ୍ଗେ ଭେଟହେଲା
ସନମାନ କରିଣ ନିଶ୍ଚିନ୍ତେ ରଖିଲା ।
ରାବଣ ନାରୀଙ୍କଠାରେ ପ୍ରବେଶ ହୋଇଲା
ବାଚସ୍ପତି ଭୁବନରେ ତାହାଙ୍କୁ ରଖାଇଲା ।
ନାରୀମାନେ ବୋଇଲେ ସାନୁଜ ଏବେଶୁଣ
ଆମ୍ଭର ସ୍ୱାମୀ ଦିଶୁନାହାନ୍ତି ଏଥେ ପୁଣ ।
ବିଜୟେ ବୋଇଲା ସେ ଯମପୁରରେ ଅଛି
ନର୍କ ଦର୍ଶନ ଯେ ସେଠାରେ କରୁଅଛି ।
ଶ୍ରୀରାମ ଆସିଲାବେଳେ କହିବ ସକଳ
ଉଦ୍ଧାର କରିଣ ତାଙ୍କୁ ଆଣିବେ ରଘୁପଧର ।
ଏଥୁ ଅନନ୍ତରେ ରସ ଶୁଣ ଭଗବତୀ
ପରଜା ଜନଙ୍କୁ ଚାହିଁ ଶ୍ରୀରାମ ବୋଲନ୍ତି ।
ଚଳସର୍ବେ ଗଙ୍ଗାରେ ସ୍ନାନ ଯାଇଁକର
ଶୁଣିକରି ପରଜାଏ ଚଳିଲେ ସତ୍ୱର ।
ଗଙ୍ଗାରେ ସ୍ନାନକରି ବୁଡ଼ନ୍ତେ ଜଳର
ଚତୁର୍ଦ୍ଧା ରୂପରେ ସେ ମିଳିଲେ କୂଳର ।
କୂଳରେ ଦେବରୂପେ ହୋଇଲେକ ଛିଡ଼ା
ଦେବଗଣେ ତାହାଙ୍କୁ ଘେନିଗଲେ ପରା ।
ଶ୍ରୀହରି ପାଟଣାରେ ନେଇଣ ଠାବଦେଲେ
ଅଚିନ୍ତା ନଗ୍ରରେ ସେ ନିଶ୍ଚିନ୍ତେ ରହିଲେ ।

ପାତ୍ର ମନ୍ତ୍ରୀ ସମସ୍ତଙ୍କୁ ଚାହିଁଲେ ରାମରାଣ
ବୋଇଲେ ଜାହ୍ନଭୀରେ ପଶ ହେ ବହନ ।
ଶୁଣିଣ ପାତ୍ର ମନ୍ତ୍ରୀ ସାମନ୍ତ ଚଳିଗଲେ
ଜାହ୍ନଭୀ ଜଳ ଭିତରେ ଯାଇଁଣ ପଶିଲେ ।
ଆରକୂଳେ ପ୍ରବେଶ ଦେବରୂପ ଧରି
ପାଖରେ ଦେବଗଣ ମିଳିଲେ ଆସିକରି ।
ଶ୍ରୀରାମ ଡାକ ଦେଲେ ଦେବଗଣେ ଶୁଣ
ଯାନ ପରେ ବସାଇ ନିଅହେ ତାଙ୍କୁ ପୁଣ ।
ଶୁଣିଣ ଦେବଦୂତ ଦେବଯାନ ଆଣି
ସେଥିରେ ଉପରେ ବସାଇ ତାଙ୍କୁ ପୁଣି ।
ଶ୍ରୀହରି ପାଟଣାରେ ନେଇଣ ରଖାଇଲେ
ଏଥୁ ଅନନ୍ତରେ ଶୁଣ ଗୋ ଉମାଭଲେ ।
ରାଜାଗଣମାନଙ୍କୁ ଚାହିଁଣ ଦେବ ରାମ
ବୋଇଲେ ଗଙ୍ଗାରେ ଯାଇଣ କର ସ୍ନାନ ।
ଶୁଣିଣ ରାଜାମାନେ ରଥରୁ ଓହ୍ଲାଇଲେ
ଜାହ୍ନଭୀ ଜଳରେ ପଶିଣ ସ୍ନାନକଲେ ।
ହେମଗିରିରେ ପ୍ରବେଶ ହେଲେ ଯାଇ କରି
ଚତୁର୍ଭୁଜ ହୋଇଣ ଦେବ ତନୁ ଧରି ।
ଦେଖି ଦେବଗଣ ପ୍ରବେଶ ବେଗେ ହେଲେ
ତାହାଙ୍କୁ ଦେଖିଣ ରାମ ଡାକ ଦେଲେ ।
ଏମାନଙ୍କୁ ଆନନ୍ଦରେ ନିଅହେ ବୋଇଲେ
ମର୍ତ୍ତ୍ୟପୁରେ ଏମାନେ ପ୍ରଭୁ ହୋଇଥିଲେ ।
ଦେବରଥ ଉପରେ ବସାଇ ତାଙ୍କୁ ନିଅ
ଶ୍ରୀହରି ପାଟଣାରେ ବିପୁଳ ଘରେ ଥୁଅ ।
ଶୁଣିଣ ଦେବଗଣେ ଅନେକ ରଥ ଆଣି
ସେଥିପରେ ସେମାନଙ୍କୁ ବସାଇଲେ ଜାଣି ।
ବାଜଇ ଦୁନ୍ଦୁଭୀ ମର୍ଦ୍ଦଳ ଶଙ୍ଖଭେରୀ
ଆଗରେ ନୃତ୍ୟରଙ୍ଗ ଅପସରୀ କରି ।
ଅନେକ ଅଳଙ୍କାର ରତ୍ନ ଭୂଷଣ ହୋଇ
ବିଜୟ କଲେ ଯେ ନୃପତି କୁଳସାଇଁ ।
ବୈକୁଣ୍ଠ ପୁରରେ ପ୍ରବେଶ ଯାଇଁହେଲେ
ଗହଳ ଯେ ସ୍ୱର୍ଗପୁର ଦାଣ୍ଡ ନିଘଞ୍ଚରେ ।
ବିପୁଳ ପୁରରେ ନେଇଣ ଠାବଦେଲେ
ନାରୀମାନଙ୍କୁ ଘେନି ଅଚିନ୍ତାରେ ରହିଲେ ।
ଗଉରୀ ପଚାରିଲେ ଶୁଣ ତ୍ରିଲୋଚନ
ଆହୁରି କଥାଏକ ରହିଲାକ ପୁଣ ।

ଭ୍ରଥ ଖଣ୍ଡ ମଣ୍ଡଳ ପଞ୍ଚ ମଣ୍ଡଳରେ
ସଭାରେ ଯେତେ ଲୋକ ପକ୍ଷପାତ କରେ ।
ସେ ରାଜାମାନେ ଗଙ୍ଗାରେ ଝାସ ଦେଲେଟିକି
କେମନ୍ତେ ସେ ରହିଲେ କହ ବିଚାରିଟି ।
ଈଶ୍ୱର ବୋଇଲେ ଶୁଣ ଗୋ ଶାକମ୍ଭରୀ
ସେହିମାନଙ୍କରେ କଥା କହିବା ବିସ୍ତାରି ।
ଯେତେବେଳେ ସର୍ବେ ସ୍ୱର୍ଗପୁର ଗଲେ
ଦ୍ୱାରପାଳେ ତାଙ୍କୁ କେବେହେଁ ନ ଛାଡ଼ିଲେ ।
ଶ୍ରୀରାମଙ୍କ ଚରଣେ ବିନତି ସେ ହେଲେ
ଦ୍ୱାର ଛାଡୁ ନାହାନ୍ତି ବୋଲିଣ ବୋଇଲେ ।
ଶ୍ରୀରାମ ବୋଇଲେ ତୁମ୍ଭେ ବଡ଼ ଯେ ପାତକୀ
କେମନ୍ତେ ସ୍ୱର୍ଗକୁ ଯିବ ଯେ ତୁମ୍ଭେଟିକି ।
ସଭାରେ ପକ୍ଷାପକ୍ଷ ବହୁତ କରିଛ
ରଉରୋବ ନର୍କକୁ ଯିବଟି ପ୍ରତ୍ୟକ୍ଷ ।
ସେଠାରୁ ଦୂତମାନେ ଧରି ଘେନିଗଲେ
ରଉରବ କୁଣ୍ଡରେ ନେଇଣ ପକାଇଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରଥର ଉପରୁ ଓହ୍ଲାଇଲେ ଦାଶରଥୀ ।
ଦୁଇଭାଇ ସୁବର୍ଣ୍ଣ ସୀତାଙ୍କୁ ଘେନିଚଳି
ଜାହ୍ନଭୀ କୂଳରେ ଯାଇଣ ଦେବମିଳି ।
ଛିଡ଼ା ହୋଇ ଜାହ୍ନବୀ କୂଳରେ ଚାରିଜଣ
ଦେବେ ଡାକ ଦେଲେ ଆସହେ ଦେବ ପୁଣ ।
ଚଉଦ ଭୁବନ ସପତ ଦ୍ୱୀପ ମହୀ
ସମସ୍ତଙ୍କୁ ଉଦ୍ଧାର କର ହେ ଭାବଗ୍ରାହୀ ।
ଦୁଷ୍ଟଜନ ମାରିଣ ଦେବତାଙ୍କୁ ରକ୍ଷାକଲ
ଉଡ଼ନ୍ତା ବୁଡ଼ନ୍ତା ଚଳନ୍ତି ଅଚଳନ୍ତି ଉଦ୍ଧରିଲ ।
ନରବାନର ଯେ ଅସୁର କୁଳ ପୁଣ
ସମସ୍ତଙ୍କୁ ବୈକୁଣ୍ଠେ ଦେଲେ ଆଣି ସ୍ଥାନ ।
ଏବେ କିପାଁ ଉଛୁର କରୁଛ ଦେବହରି
ରାମ ବୋଇଲେ ମୋ ନାମ ସପତପୁରେ ଧରି ।
ସେମାନେ ଗଲେଣିଟିକି ମୋକ୍ଷ ହୋଇ ଜାଣ
ଦେବେ ବୋଇଲେ ଦେବ ଅଇଲେ ସର୍ବ ପୁଣ
ଚଳନ୍ତି ଅଚଳନ୍ତି ଉଡ଼ନ୍ତା ବୁଡ଼ନ୍ତା
ନରବାନର ଯେ ପରଜା ସର୍ବେ ଶ୍ରୋତା ।
ପାତ୍ରମନ୍ତ୍ରୀ ସାମନ୍ତ ନୃପତି କୁଳ ପୁଣ
ସମସ୍ତେ ଅଚିନ୍ତା ନବରେ ଠୁଳ ଜାଣ ।

ବାଳ ଯୁବା ଯେତେକ ସମସ୍ତେ ରହିଲେ
ତୁମ୍ଭନାମ ତୁଣ୍ଡରେ ଉଚ୍ଚରଣ କଲେ ।
ଶୁଣିକରି ରାମ ଆନନ୍ଦ ମନ ହେଲେ
ସୁବର୍ଣ୍ଣ ସୀତାଙ୍କୁ ଚାହିଁଣ ଆଜ୍ଞା ଦେଲେ ।
ବୋଇଲେ ଏରୂପ ଛାଡ଼ି ଧର ନିଜ କାୟା
କେହିତ ଆଉ ନାହିଁ କାହାକୁ କର ମାୟା ।
ସୁବର୍ଣ୍ଣ ସୀତା ବୋଲନ୍ତି ଶୁଣହେ ଦେବରାଜ
ପୁଷ୍ପକ ଯାନ କିମ୍ପା ନ ଯାଇଟି ସ୍ୱର୍ଗ ।
ଶୁଣିକରି ରାମ ଯାନକୁ ଅନାଇଲେ
କୁବେର ଭୁବନକୁ ଯାଅରେ ବୋଇଲେ ।
କ୍ଷୟେ ଗଲା ପାତକ ସରିଲା ଶାପ ତୋର
ଏବେ ଧନପତିକି ଯାଇଣ ସେବାକର ।
ଶୁଣିଣ ପୁଷ୍ପକଯାନ ଓଳଗି ମେଲାଇଲେ
ମାତେଳି ଶ୍ରୀରାମଙ୍କ ଚରଣେ ନମିଲା ।
ଉଠିଲାକ ଯାନ ବିକ୍ରମ ଗତି କରି
ଅଳକା ପୁରରେ ତୁରିତେ ଯାଇଁ ମିଳି ।
ଯାନକୁ ଦେଇଣ ମାତେଳି ବେଗେ ଗଲା
ସୁରପତି ଆଗରେ ଯାଇଣ ମିଳିଲା ।
ଦେଖିକରି ସୁରପତି ଆନନ୍ଦ ମନରେ
ଏଥୁ ଅନନ୍ତରେ ଶୁଣ ହେମବନ୍ତର ଦୁଲାଳେ
ସଦାଶିବ ବେଦବର ଦଶଦିଗପାଳ
ତ୍ରିଦଶ ଦେବତା ଘେନି ଭାଳେ ସ୍ୱର୍ଗର ମହୀପାଳ
ନ ଆସନ୍ତି ରାମ ଦେବ କିମ୍ପା କୂଳେ ରହି
ଏତେ ବୋଲି ସକଳ ଦେବତା ଘେନିଯାଇ ।
ହେମଗିରି ଉପରେ କଲେକ ନମସ୍କାର
ବୋଇଲେ ଦେବରାଜ ବିଜୟ ଏବେ କର ।
ଶ୍ରୀରାମ ବୋଇଲେ ତୁମ୍ଭେ ସମ୍ଭର୍ବେ ଏଥେ ଆଣ
ଶୁଣିଣ ଦେବତାଏ ସୁମରିଲେ ବାହାନ ।
ତତକ୍ଷଣେ ଯେ ଯାହା ବାହାନ ପାଶେ ମିଳି
କିନ୍ନରୀ ଅପସରୀ ଅଇଲେ ନୃତ୍ୟକାରୀ ।
ଅନେକ ସମ୍ଭର୍ବରେ ସମସ୍ତେ ହେଲେ ଉଭା
ଶ୍ରୀରାମ ବୋଇଲେ ଚାଲ ଗୋ ସୀତା ଯିବା ।
ଶ୍ରୀରାମଙ୍କୁ ସୀତା କହେ ତୁମ୍ଭର ଯାନ ନାହିଁ
ଆରକୂଳେ ଯାଇଁ ଛିଡ଼ା ହୋଇ ଦେବ ରହି ।
ଶୁଣିଣ ଶ୍ରୀରାମ ଯେ ବେଦବରଙ୍କୁ କହି
ମୋହର ଯାନ କିମ୍ପା ନ ଆଣୁ ପିତା ତୁହି ।

ଶୁଣିଣ ସୁରରାଜା ଯେ ମାତେଳି ପେଶି ଦେଲା
ନନ୍ଦିଘୋଷ ଯାନ ଆଣରେ ବୋଇଲା ।
ଶୁଣିଣ ମାତେଳି ବେଗେ ଚଳିଣ ଗଲା
ବସନବର୍ଣ୍ଣ ଯାନ ମଣ୍ଡିଣ ଆଣିଲା ।
ହେମଗିରି ଉପରେ ବିଜୟ ଯାନ ତହୁଁ
ସୁବର୍ଣ୍ଣ ସୀତା ରାମଙ୍କୁ ଜଣାଇଲେ ତହୁଁ ।
ବୋଇଲେ ଦେବ ଏଥର ବିଜୟ ତୁମ୍ଭେ କର
ଶ୍ରୀରାମ ବୋଇଲେ ଆଗରେ ତୁମ୍ଭେ ଚଳ ।
କମଳାଙ୍କୁ ଭେଟାଅ ମୋତେ ବେଗେ ନେଇ
ମୋରଠାରେ କ୍ରୋଧ ହୋଇଛି ବଇଦେହୀ ।
ଶୁଣିଣ ସୁବର୍ଣ୍ଣ ସୀତା ଗଙ୍ଗାରେ ପଶିଲା
ଦେଖିକରି ରାମ ସନ୍ତୋଷ ମନେ ହେଲା ।
ଦୁଇ ଭାଇଙ୍କର କର ଧରିଲେ ରାମ ହସ୍ତେ
ପଶିଲେ ଜଳ ଭିତରେ ଜଗତର ନାଥେ ।
ଦେବତାଏ ରାମନାମ ସୁମରଣା କଲେ
ଦେବନାରୀ ଅପସରୀ ହୁଳହୁଳି ଦେଲେ ।
ନୃତ୍ୟରଙ୍ଗ ଆଳାପ ହୋଇଲା ଯେ ଜାଣ
ବିଞ୍ଚଣୀ ଆଲଟ ଧରିଲେ ଦେବଗଣ ।
ଇନ୍ଦ୍ର କୁବେର ଯେ ଦଶ ଦିଗପାଳେ
କୋଟି କୋଟି ପାଟଛତ୍ର ଟେକାଏ ସେଠାରେ ।
ବ୍ରହ୍ମା ବେଦ ପଢ଼ିଲେ ସକଳ ଋଷି ଘେନି
ଗନ୍ଧର୍ବେ ବାଦ୍ୟନାଦ କଲେ ଆସି ପୁଣି ।
ସଦାଶିବ ଚଣ୍ଡୀ ଘେନି ବିଜେ କଲେ ଯାଇଁ
ଜଳର ଭିତରେ ଅଛନ୍ତି ରାମ ରହି ।
ଗଙ୍ଗା, ଯମୁନା, ସରସ୍ୱତୀ ତିନିଜଣ
ଶ୍ରୀରାମଙ୍କ ପାଦରେ ପୂଜା କଲେ ସେହୁ ପୁଣ ।
ଧୂପଦୀପ ଦେଇଣ ଅର୍ଘ୍ୟ ବନ୍ଦାଇଲେ
ଅନେକ ନ୍ୟୁନରେ ଚରଣ ସେବାକଲେ ।
ସନ୍ତୋଷ ହୋଇଲେ ଶ୍ରୀରାମଚନ୍ଦ୍ର ପୁଣ
ଶଙ୍ଖ ଚକ୍ର ଦୁଇଭାଇ ହୋଇଲେ ନିର୍ମାଣ ।
ଗଦା ପଦ୍ମ ଆଣିଣ ଦେଲେ ଗଙ୍ଗା ପୁଣ
ଦିବ୍ୟରୂପ ହୋଇଲେ ଦେବ ନାରାୟଣ ।
ଚାରି ଆୟୁଧ ଯେ ଧଇଲେ ଦେବହରି
ଚାରି କର ବିସ୍ତାର ହୋଇଲା ତାହାଙ୍କରି ।
ଆଗରେ ସୁବର୍ଣ୍ଣ ସୀତା କଢ଼ାଇଲେ ବାଟ
ହିମାଳୟ ସ୍ୱର୍ଗପୁରେ ବିଜେ ରଘୁନାଥ ।

ଦେଖିଣ ଦେବତାଏ ନମସ୍କାର କଲେ
ନନ୍ଦିଘୋଷ ରଥକୁ ଆଣି ସମର୍ପିଲେ ।
ପହଣ୍ଡ ମଣାଇ ସୁବର୍ଣ୍ଣ ସୀତା ନେଲା
ନନ୍ଦୀଘୋଷ ରଥରେ ନେଇ ବସାଇଲା ।
ରତ୍ନ ସିଂହାସନ ଉପରେ ନାରାୟଣ
ହରଷରେ ବସିଲେ ତଥିପରେ ପୁଣ ।
ତ୍ରୀଦଶ ଦେବତାଏ ଆଲଟ ପଙ୍ଖାଧରି
ଚାମର ବିଞ୍ଚଣୀ ଯେ ବିଞ୍ଚନ୍ତି ଆଗସରି ।
ଟୀରାଳ ନିଶାଣ ଯେ ବଇରେଖ ବାନା
ଏମାନେ ଧରିଣ ଆଗରେ ଛିଡ଼ା ସିନା ।
ପାଟଛତ୍ର ପନ୍ତି ପନ୍ତି ଦିଗପାଳେ ଟେକି
କନକ ଦଣ୍ଡଛତ୍ର ବରୁଣ ଅଛି ଟେକି ।
ନୃତ୍ୟକାରୀ ଅପସରୀ ଆଗରେ ନୃତ୍ୟକରି
ଝଞ୍ଜାଳ ମର୍ଦ୍ଦଳ ବଜାନ୍ତି କିନ୍ନରୀ ।
ବୀଣା ବଂଶୀ ସୀତାର ଗନ୍ଧର୍ବେ କରେ ସ୍ୱର
ଚାରିବେଦ ପଢ଼ନ୍ତି ଆଗରେ କୁଶଧର ।
କୋଟିଏ ଋଷି ଯେ ସଙ୍ଗରେ ତାଙ୍କର
ବେଦଧ୍ୱନି କରନ୍ତି ଶ୍ରୀରାମ ଆଗର ।
ଭିଡ଼ରେ ନିଘଞ୍ଚନ ଦାଣ୍ଡରେ ଗହଳ
ରାମତାଳି ଶବଦ ପଡ଼େ ନିରନ୍ତର ।
ହରିବୋଲ ହୁଳହୁଳି ଶବଦେ ଦିଗ ପୁରି
ସେ ପ୍ରଭୁ ଆଗରେ ତ୍ରୀଦଶଦେବେ ପଟୁଆରକରି ।
ମାତଳୀ ବାହିଲା ରଥ ଧୀର ଧୀର କରି
ସ୍ୱର୍ଗପୁର ବିଜୟ ପ୍ରଭୁ ଦେବ ହରି ।
ଦେବନାରୀମାନେ ବିଜେ ଯେଝାପୁରେ
ଆଳତୀ ବନ୍ଦାପନା କରନ୍ତି ହରଷରେ ।
ବସନ୍ତ ଚନ୍ଦନ ମଦନ କେଶରୀ
ଶ୍ରୀରାମ ଶ୍ରୀଅଙ୍ଗେ ଯେ ଅଷ୍ଟରତ୍ନରେ ଭରି ।
ଚନ୍ଦନ ବୋଳି ପଞ୍ଚ ବର୍ଣ୍ଣରେ ଫୁଲ ଦେଲେ
ତ୍ରୈଲୋକ୍ୟର ନାଥକୁ ବେଶ କରାଇଲେ ।
ସ୍ୱର୍ଗପୁର ଯାକ ଯେ ବୁଲନ୍ତି ନାରାୟଣ
ସକଳ ଦେବନାରୀ ଅର୍ଘ୍ୟ ଦ୍ୟନ୍ତି ଜାଣ ।
ସ୍ୱର୍ଗପୁର ବୁଲିଣ ସଭାରେ ପରବେଶ
ଦେଖିଲେ ସଭାଗୋଟି ହୋଇଛି ଚିତ୍ରବେଶ ।
ଅଷ୍ଟ ରତ୍ନରେ ମଣ୍ଡଣ ମାଳ ଚୂଳରେ ପୁଣ
ଶୋଭା ପାଉଅଛି ଝଟକ ଜ୍ୟୋତି ଜାଣ ।
ବେଦବର ସଦାଶିବ ସୁର ରାଜା କହି
ଏ ସଭାରେ ବିଜୟେ କର ହେ ଭାବଗ୍ରାହୀ ।
ଶୁଣିଣ ବାସୁଦେବ ରଥରୁ ଓହ୍ଲାଇଲେ
ସଭାରେ ବିଜୟ ସମ୍ବର୍ବିରେ ଯାଇଁ କଲେ ।
ସିଂହାସନ ଉପରେ ବିଜୟ ଦେବରାଜ
ସକଳ ଦେବତାଏ ମିଳିଲେ ତାଙ୍କ ଆଗ ।
କରଯୋଡ଼ି ଆଗରେ ଦେବତାମାନେ କହି
ନୃତ୍ୟରେ ଅବଧାନ କର ତ୍ରୈଲୋକ୍ୟର ସାଇଁ ।
ଶୁଣିଣ ଜଗନ୍ନାଥ ତାଳଧରି ଉଭା
ମର୍ଦ୍ଦଳ ଧଇଲେ ଯାଇଣ ବେଦବ୍ରହ୍ମା ।
ସଦାଶିବ ନାଚିଲେ ଆଗରେ ଢଳି ଢଳି
ଦଶ ଦିଗପାଳେ ବୁଲନ୍ତି ସଙ୍ଗେ ଘେରି ।
ଗାନ୍ଧାର ରାଗରେ ଗୀତ ସପ୍ତଋଷି ଗାଇ
ନୃତ୍ୟକାରୀମାନେ ଆଗରେ ଛନ୍ତି ରହି ।
ଆନନ୍ଦରେ ତାଣ୍ଡବ ନୃତ୍ୟ ତହିଁରେ ଦେଲା
ଯହିଁରେ ଜଗନ୍ନାଥ କରୁଛନ୍ତି ଲୀଳା ।
ତାଣ୍ଡବ ନୃତ୍ୟ ଯେ ସାରିଲେ ଦେବହରି
ତ୍ରୀଦଶ ଦେବଙ୍କର ମନ ତୋଷ କରି ।
ନନ୍ଦୀଘୋଷ ରଥରେ ବିଜୟେ ଜଗନ୍ନାଥ
ଦେଖିଣ ଦେବତାଏ ହେଲେ ଆନନ୍ଦିତ ।
ଆଲମ୍ୱ ପାଟଛତ୍ର ଚାମର ଖଦୀ ଧରି
ଦେବତାଏ ଆଗରେ ଢାଳନ୍ତି ଧୀର କରି ।
ଅପସରୀ କିନ୍ନରୀ ଆଗରେ ନୃତ୍ୟକରି
ଧୀର ଧୀର ହୋଇଣ ରଥ ଗଲା ଚଳି ।
ଶ୍ରୀହରି ପାଟଣାରେ ବିଜୟେ ଜଗନ୍ନାଥ
ବୈକୁଣ୍ଠ ପୁରଗୋଟି ଅତି ହିଁ ଶୋଭିତ ।
ଅର୍ଘ୍ୟ ବନ୍ଦାପନା କରନ୍ତି ସର୍ବନାରୀ
ଦାସୀମାନେ ସର୍ବେ ବଜାନ୍ତି ରାମତାଳି ।
ଶ୍ରୀହରି ପାଟଣା ଦେଖି ଖଟଣୀ ପୁରଗଲେ
ସେବାକାରୀମାନଙ୍କୁ ସେ ପୁରେ ଦେଖିଲେ ।
ଦ୍ୱାରପାଳ ପାଟଣାରେ ହେଲେ ପରବେଶ
ମଙ୍ଗଳ ଆଳତୀ କରନ୍ତି ରାଣୀହଂସ ।
ଏମନ୍ତ ସମୟରେ ରାବଣେଶ୍ୱର ନାରୀ
ପାହାଡ଼ ପାଡ଼ିଣ ଶୋଇଲେ ସର୍ବେ ଘେରି ।
ନାରାୟଣ ବୋଇଲେ ଉଠ ଗୋ ବେଗକରି
କେଉଁ ଦୁଃଖ ଅଛି ଆଉ କହ ଗୋ ବିସ୍ତାରି ।

ନାରୀମାନେ ବୋଇଲେ ଆମ୍ଭର ସ୍ୱାମୀ ନାହିଁ
ବୈକୁଣ୍ଠପୁରେ ଆମ୍ଭେ ହେଲ ମହାଦେହୀ ।
ବେଦବରଙ୍କୁ ଚାହିଁଣ ବୋଲନ୍ତି ଦେବହରି
ଜୟେ ଦ୍ୱାରପାଳକୁ ଆଣ ବେଗକରି ।
ବେଦବର ବୋଇଲେ ତୁମ୍ଭର ଶାପଅଛି
ଜଗନ୍ନାଥ ବୋଲେ ମୁଁ ତାହାକୁ ମାରିଛି ।
ଶୁଣିଣ କାଳ ବିକାଳ ବେଗେ ଚଳିଗଲେ
ଯାତନା ପୁରରୁ ରାବଣକୁ ଆଣିଲେ ।
ଦେଖିକରି ଜୟେ ଦ୍ୱାରପାଳ ଓଳଗିଲା
ନିସ୍ତରିଲ ବୋଲିଣ ଛାମୁରେ କହିଲା ।
ଶ୍ରୀହରି ବୋଇଲେ ତୋର ନବରକୁ ଚଳି
ସକଳ ଦେବତାଏ ଅଛନ୍ତି ସଙ୍ଗେ ଘେରି ।
ବୈକୁଣ୍ଠ ପୁରରେ ହେଲେ ପରବେଶ
କ୍ଷେତ୍ରପାଳ ଆସିଣ ମିଳିଲେ ରାମପାଶ ।
ଓଳଗି ମେଲାଇଣ ଦରଶନ କଲା
ବାସୁଦେବ ପାଶରୁ ବେଗ୍ରରେ ଚଳିଗଲା ।
ଦ୍ୱିତୀୟ ଦ୍ୱାରେ ଗରୁଡ଼ କଲା ଦରଶନ
ଦେଖିଣ ଶ୍ରୀରାମ ପ୍ରସନ୍ନ ହେଲେ ପୁଣ ।
ବୋଇଲେ କୁଶଳତ ଅଛିଟିକି ତୋର
ଗରୁଡ଼ ବୋଇଲେ ପ୍ରଭୁ ସୁଦୟା ତୋହର ।
ଦ୍ୱିତୀୟ ଦ୍ୱାରରୁ ଚଳିଗଲେ ଶିରୀଧର
ପ୍ରବେଶ ହୋଇଲେ ଆପଣା ନିଜପୁର ।
ଶୟନ ସ୍ଥାନକୁ ଚଳିଲେ ବେଗକରି
ନମସ୍କାର କରିଣ ସେଠାବରୁ ଫେରି ।
ଅନନ୍ତଙ୍କ ପୁରରେ ହେଲେ ପରବେଶ
ଅନନ୍ତ ଦେଖି ଆସେ ନାରାୟଣ ପାଶ ।
ନମସ୍କାର କରିଣ ଲୋଟଗାଳି ଶୋଇ
ଉଠ ଉଠ ବୋଲିଣ ଶ୍ରୀରାମ ଆଜ୍ଞା ଦେଇ ।
ବାସୁଦେବ ବୋଇଲେ ଅନନ୍ତ ତୁମ୍ଭେ ଶୁଣ
ଆମ୍ଭଙ୍କୁ ଛାଡ଼ି ଅଇଲ ବୈକୁଣ୍ଠ ପୁରେଣ ।
ଅନନ୍ତ ବୋଇଲେ ନାଥ ଘଉଡ଼ି ମୋତେଦେଲ
ଦେବକୂଟ ମାୟାରେ ସୋଦର ଦୂରକଲ ।
ହସିଣ ଶ୍ରୀହରି ଦେବଙ୍କୁ ଆଜ୍ଞା ଦେଲେ
ଯାଅ ଯାଅ ଯେ ଯାହା ପୁରକୁ ବୋଇଲେ ।
ସହସ୍ରେ ବରଷ ଆମ୍ଭେ ଏଥିରେ କରିବୁ ଲୀଳା
ସହସ୍ରେ ବରଷ ଗଲେ ଶୟନ ମୋର ପରା ।

ଶୁଣିଣ ଦେବତାଏ ହରଷ ମନ ହେଲେ
ଓଳଗି ମେଲାଇଣ ଯେ ଯାହା ପୁରଗଲେ ।
ମାୟା ସୀତାଙ୍କୁ ଘେନି ଦେବୀ ଦ୍ୱାରେପରବେଶ
ଅର୍ଘ୍ୟ ଦେବାକୁ କମଳା ହୋଇଲେ ହରଷ ।
ସୁବାସିତ ଜଳରେ ଚରଣ ଧୋଇ ଦେଲେ
ପାଦ ଉଦକ ନେଇଣ ମସ୍ତକେ ସିଞ୍ଚିଲେ ।
ଝୀନ ବସନରେ ପୋଛିଲେ ପାଦଦୁଇ
ମଙ୍ଗଳ ଆଳତୀ ଯେ ବନ୍ଦାଏ ଦେବୀ ନେଇ ।
ଅର୍ଘ୍ୟ ବନ୍ଦାପନା ସେଠାରେ ଦେବୀ କଲେ
ହସ୍ତଧରି ନିଜ ମନ୍ଦିରେ ଘେନିଗଲେ ।
ପହଣ୍ଡ ମଣାଇଣ ନେଲେକ କମଳା
ଅଷ୍ଟରତ୍ନ ପୁରେ ବିଜୟ ଚକାଡୋଳା ।
ମାଣିକ୍ୟର ପଲଙ୍କରେ ନେଇଣ ବସାଇଲେ
ସହସ୍ରେ ବାର ପର୍ଯ୍ୟନ୍ତେ ଓଳଗି ହୋଇଲେ ।
ଦେଖିକରି ତ୍ରିପୁତି ହେଲେ ଦେବହରି
ଆଦର କରିଧରେ ସାୟେର ଦୁଲାଳି ।
କୋଳରେ ବସାଇଣ ଆଶ୍ୱାସନା କଲେ
ତୁ ମୋର ପ୍ରାଣଧନ ବୋଲିଣ ବୋଇଲେ ।
ଅମୃତ ପାନ କରି ନିଶ୍ଚିନ୍ତେ ଦେବହରି
କମଳାଙ୍କୁ ଘେନିଣ ପଲଙ୍କେ ବିଜେକରି ।
ମାତଳୀ ଦ୍ୱାରୁ ଯେ ରଥ ଫେରାଇ ଘେନିଗଲା
ସୁରପତି ଭଣ୍ଡାରେ ନେଇଣ ସାଇତିଲା ।
କୁଶକେତୁ ଗଲେ ଯେ ଯଶୋବନ୍ତୀ ପୁର
ଦିଗପାଳମାନେ ମିଳିଲେ ନିଜପୁର ।
ସଦାଶିବ କପିଳାସରେ ହେଲେ ପରବେଶ
ଦେବତାମାନେ ସର୍ବେ ହୋଇଲେ ସନ୍ତୋଷ ।
ସ୍ୱର୍ଗର ଅପସରୀ ଯେ ନିଜପୁର ଗଲେ
ତିନିପୁର ଲୋକେ ନିଶ୍ଚିନ୍ତ ହୋଇଲେ ।
କ୍ଷୀର ସାୟେର ଭିତରେ ରହିଲେ ଚକ୍ରଧର
କମଳାଙ୍କୁ ଘେନିଣ କରନ୍ତି ବେହାର ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ ।
ଶ୍ରୀରାମ ଯିବାରୁ କି କଲେ ପୁତ୍ରମାନ ।
ଈଶ୍ୱର ବୋଇଲେ ସେ ଅଷ୍ଟ ପୁତ୍ରେ ପୁଣ
ଶ୍ରୀରାମ ତାହାଙ୍କୁ କହିଗଲେ ସ୍ୱର୍ଗସ୍ଥାନ ।
କ୍ରିୟା ଆରମ୍ଭ ଯେ କଲେ ନବକୁଶ
ଧନରତ୍ନ ଦାନ ସେ କଲେକ ବିଶେଷ ।

ବାରଦିନେ ପରିଯନ୍ତେ ଧନ ବିଳୋହିଲେ
କ୍ରିୟା କର୍ମ ସାରିଣ ନିଶ୍ଚିନ୍ତେ ରାଜ୍ୟକଲେ ।
ସାମନ୍ତ ପାତ୍ରମନ୍ତ୍ରୀ ଋଷିଙ୍କ ବୋଲକରି
ପୁତ୍ର ପ୍ରାୟେ ପରଜା ପାଳିଲେ ସ୍ନେହଧରି ।
ଲକ୍ଷେ ରାଜା ତାଙ୍କଠାରେ କରନ୍ତୁ ସ୍ନେହ ଭାବ
ରାଜ୍ୟରେ ଉପଦ୍ରବ ନୋହିଲକ ସର୍ବ ।
ଦୁଷ୍ଟଜନ ଦେଖିଲେ ମାରନ୍ତି ଖୋଜିକରି
ବରଷକେ ଥରେ ଦେଖା ହୁଅନ୍ତି ସର୍ବମିଳି ।
ପାର୍ବତୀ ବୋଇଲେ ଦେବି ଶୁଣ ମୋ ଉତ୍ତର
ବାସୁଦେବ ରହିଲେ କ୍ଷୀର ସାୟେର ଭିତର ।
ବାରସ୍ୱତି ଭୁବନ ଯେ ଅଷ୍ଟରତ୍ନେ ସାର
କମଳାଙ୍କୁ ଘେନି ଲୀଳା କରନ୍ତି ଚକ୍ରଧର ।
କେତେ ବରଷ ଲୀଳା ଯେ କଲେ ବାସୁଦେବ
ଅନନ୍ତ ଶୟନରେ ବିଜେକଲେ ମାଧବ ।
ଈଶ୍ୱର ବୋଇଲେ ସେ ଯେ ସହସ୍ରେ ବରଷ
ଲୀଳା ଭାବେ ଜଗନ୍ନାଥ ହେଲେ ଭୋଳଚିତ୍ତ ।
ଦେବତାଏ ପ୍ରତିଦିନ କରନ୍ତି ଦରଶନ
କ୍ଷୀର ସାୟେର ବୈକୁଣ୍ଠକୁ ଦେବେ ଯାନ୍ତି ପୁଣ ।
ଅତୁଟ ନାରୀକି ଘେନି ଅନନ୍ତ ଲୀଳା କଲେ
ଦ୍ୱାରପାଳ ରାବଣ କୁମ୍ଭକର୍ଣ୍ଣ ବିଳୋହିଲେ ।
ଏହି ରୂପରେ ସହସ୍ରେ ବରଷ ଗଲା ବହି
ତ୍ରିଦଶ ଦେବତାଏ ମିଳିଲେ ସର୍ବେ ଯାଇଁ ।
ନିଦ୍ରାବତୀକି ଡକାଇ ଦେବତା କହିଲେ
ଶ୍ରୀହରିଙ୍କ ଶରୀରେ ପଶ ତୁ ବୋଇଲେ ।
ଶୁଣିଣ ନିଦ୍ରାବତୀ ବେଗେ ଚଳିଗଲା
ଜଗନ୍ନାଥ ଶରୀରେ ଯାଇଁଣ ବ୍ୟାପିଲା ।
ନିଦ୍ରାରେ ଆଶକତ ହୋଇଲେ ଶ୍ରୀହରି
ଅନନ୍ତଙ୍କୁ ଡକାଇ ବୋଇଲେ ବୋଧକରି ।
ଦିଅ ତୁ ଆସନ ମୁଁ ଯେ କରିବି ଶୟନ
ଶୁଣିଣ ଅନନ୍ତ ହେଲେ ବିଶ୍ୱମୂର୍ତ୍ତି ପୁଣ ।
ଶରୀରକୁ ଅନନ୍ତ ଆସନ ପୁଣ କଲେ
କର୍ପୁର କସ୍ତୁରୀ କମଳା ସିଞ୍ଚେ ଭଲେ ।
ଦ୍ୱାରପାଳଙ୍କୁ ବୋଇଲେ ଜଗତ ଜୀବନ
ଚରିଦ୍ୱାର ମୋର ନିରୋଧ କର ପୁଣ ।
ଦୁଷ୍ଟଜନ ଦେଖିଲେ ଉପ୍ରୋଧ ନକରିବ
ମାଇଲେ ନିର୍ଦ୍ଦୟା ମୋର ନାହିଁ ହୃଦଭାବ ।
ପନ୍ଦର ଯୁଗ ଯେ ଏଥିରେ ବହିଯିବ
ତେବେ ସେ ଦେବତାଏ କରିବେ ମୋତେ ଭାବ ।
ଜୟ ବିଜୟ ଦୁହିଁଙ୍କି ବୋଇଲେ ଦେବରାଜ
ଦୁଇଜନ୍ମ ତୁମ୍ଭର ହେଲା ଏବେ ଭୋଗ ।
ରଙ୍ଗା ଅବତାରେ ରାଜୁସେୟ ଯାଗରେ
ଆମ୍ଭଙ୍କୁ ଭେଟିବ ଯେ ତୁମ୍ଭେ ସେହିଠାରେ ।
ରଙ୍ଗା ଅବତାରେ ମୁଁ ହେବି ଅବତାର
ଶାଲ୍ୱ ଶିଶୁପାଳ ଜନ୍ମ ତୁମ୍ଭ ଦୁହିଁଙ୍କର ।
ତୁମ୍ଭଙ୍କୁ ଚକ୍ରରେ ମୁଁ ଛେଦିବଇଁ ପୁଣ
କମଳା ଶାପ ମେଣ୍ଟିଣ ହେବ ତୁମ୍ଭେଜାଣ ।
ଗରୁଡ଼ଙ୍କୁ ବୋଇଲେ ନିଶ୍ଚିନ୍ତରେ ଥାଅ
କୃଷ୍ଣ ଅବତାରେ ମୋ ସଙ୍ଗେ ସଙ୍ଗହୁଅ ।
ଦେବତାଙ୍କୁ ବୋଇଲେ ଯେ ଯାହା ପୁରେଯାଅ
ବିପତ୍ତି ପଡ଼ିଲେ ମୋତେ ଆସିଣ କହ ।
କାଳ ନଉମୀ ଦୈତ୍ୟ ହେବେ ଅବତାର
ତାଙ୍କୁ ମାରିବା ପାଇଁ ଜନମ ମୋହର ।
ଏତେବୋଲି ଦେବ ଶୟନେ ବିଜେକଲେ
ଅମୂଲ୍ୟ ଶଯ୍ୟାପରେ ଯାଇ ନିଦ୍ରାଗଲେ ।
ଯେ ଯାହାର ସେବାରେ ଦେବତାମାନେ ଥିଲେ
ଶୟନ କରିବାକୁ ଦେବ ଯେ ଯାହାରେ ଗଲେ ।
ଅନନ୍ତ ସପ୍ତଫଣା ଉପରେ ଟେକିଧରେ
ଶ୍ରବଣଠାରେ ସରସ୍ୱତୀ ବିଜେ ଯାଇଁ କଲେ ।
ବୀଣା ଯନ୍ତ୍ର ଧରିଣ ସୁସ୍ୱରେ ବୋଇଲେ
ଚରଣ ଧରି କମଳା ବସିଲେ ଯାଇଁ ଭଲେ ।
ପଦ୍ମପାଦ ମଞ୍ଚାଳନ୍ତି କମଳା ସେ ଯାଇ
ଦାସୀଗଣେ ସେବା ଯେ କଲେ ସର୍ବେଥାଇ ।
ଆଲଟ ଚାମର ପଙ୍ଖା ଧରିଣ ଢାଳି
ମାଳବ ରାଗରେ ଗୀତ କଲେ ନୃତ୍ୟକେଳି ।
ତିନିଦ୍ୱାର ନିଷେଧ ହୋଇଲାକ ଜାଣ ।
ପୂର୍ବ ଯେ ପଶ୍ଚିମ ଦକ୍ଷିଣ ଦ୍ୱାର ପୁଣ ।
ଉତ୍ତର ଦ୍ୱାରେ ଯେ ବିନତା ସୁତ ରହି
ଶ୍ରୀହରିଙ୍କ ଆଜ୍ଞାରେ ସେ ଦ୍ୱାର ମେଲା ହୋଇ ।
ସମସ୍ତେ ନିଷେଧ ହେଲେ ସେହି ପୁରୁ
ଜଗତ ଜୀବନ ଅଚେତା ସେହିଠାରୁ ।
ବେଦବର କହିବାରୁ ମୋର ବ୍ୟାଧି ଗଲା
ଲକ୍ଷେ ପଦ ମୋର ମନେ ସୁମରଣା ହେଲା ।

ତୁମ୍ଭେ ଭାଗ୍ୟ କରିଥିଲ ଶୁଣିଲ କର୍ଣ୍ଣରେ
ସଦାଶିବ କହିଲେ ପାର୍ବତୀ ଆଗରେ ।
ବୋଇଲେ ପ୍ରଥମେ ହନୁ ରାମାୟଣ କଲା
ଦ୍ୱିତୀୟେ ନବୀନ ସୁର ଅସୁର ବର୍ଣ୍ଣିଲା ।
ତୃତୀୟେ ବାଲମୀକ ମୁନି କଲେ ଗ୍ରନ୍ଥ
ଚତୁର୍ଥେ ମୋର ମୁଖୁଁ ହୋଇଲା ଉକତ ।
ପାର୍ବତୀ ବୋଇଲେ କିଏସେ କେତେକଲା
ସେକଥା ଫେଡ଼ାଅ ମୋତେ ନିରଞ୍ଜନ ପରା ।
ଈଶ୍ୱର ବୋଇଲେ ସୁନ୍ଦର ଲଙ୍କା କାଣ୍ଡ
ଏ ଦୁଇ କାଣ୍ଡ ମାରୁତି ମନରେ କଲା ରୁଣ୍ଡ ।
ନବୀନ କିଷ୍କିନ୍ଧ୍ୟା ଆରଣ୍ୟକ କଲେ
ବାଲମୀକ ଅଯୋଧ୍ୟା ଆଦ୍ୟରୁ ଅଧେକଲେ ।
ତିନିଜଣ କହିଲେ ବୟାଣୋଇ ସହସ୍ର ପଦପରା
ତୁମ୍ଭେ ଶୁଣିଲ ମୁଁ କହିଲି ଲକ୍ଷେ ପଦହେଲା ।
ଏତେ ବୋଲି ପାର୍ବତୀ ଆଗେ ସଦାଶିବ କହି
ଶୁଣିଣ ସନ୍ତୋଷ ହେଲା ଅନ୍ନପୂର୍ଣ୍ଣା ଦେହୀ ।
ମହା ବୃଷଭ ଉପରେ ବସିଲେ ବେନିଜନ
ବଦରୀ ବନୁ ଗମନ କରିଗଲେ ପୁଣ ।
କପିଳାସ କନ୍ଦରେ ଯାଇଁଣ ବିଜେକଲେ
ଦାସୀଗଣେ ଆସି ଯେଝା ସେବାରେ ଲାଗିଲେ ।
ବଳରାମ ଦାସ ଯେ ସେ ବନରେ ଥାଇ
ନେପାଳୀ ମୂଷାରୂପରେ ସେହି ବନେ ରହି ।
ଈଶ୍ୱର ପାର୍ବତୀଙ୍କ ସମ୍ବାଦ ଶୁଣିଣ
କୃତାର୍ଥ ହୋଇଣ ମୁଁ ଲଭିଲି କାରଣ ।
ବ୍ରାହ୍ମଣ ରୂପରେ ଯେ ମାନବ ଶରୀରେ
ଜନମ ହୋଇଲି ମୁଁ ଦ୍ୱିଜବର ଘରେ ।
ତେଣୁ କରି ଜଗନ୍ନାଥ କଲେ ଯେ କରୁଣା
ଲକ୍ଷେ ପଦ ଗ୍ରନ୍ଥ କଲି ନୋହିଲି ଯେ ବଣା ।
ପୂର୍ବରୁ ହେତୁ ମୋର ହୃଦୟରେ ଥିଲା
ଭୁଲ ହେବାଠାରେ ଜଗମୋହନ କହିଦେଲା ।
ଆଦ୍ୟକାଣ୍ଡ ଖଣ୍ଡ କଲି ଷୋଳ ସସ୍ର ପଦତ
ଆଠସସ୍ର ପଦରେ ଅଯୋଧ୍ୟା କାଣ୍ଡ ସମାପ୍ତ ।
ଆରଣ୍ୟକ କାଣ୍ଡ ସାତ ସହସ୍ର ପଦହେଲା
କିଷ୍କିନ୍ଧ୍ୟା କାଣ୍ଡ ତାର ସମାନ ହୋଇଲା ।
ସିନ୍ଧୁଡ଼ା କାଣ୍ଡ ନବସହସ୍ର ପଦ ଜାଣ
ପାଞ୍ଚକାଣ୍ଡେ ସତଚାଳିଶି ସହସ୍ର ପଦ ପୁଣ ।
ଲଙ୍କା କାଣ୍ଡ ଉତ୍ତରା କାଣ୍ଡ ପୁଣ କଲି
ତେପନ ସସ୍ର ପଦରେ ଏ ଦୁଇକାଣ୍ଡ ବର୍ଣ୍ଣିଲି ।
ଏହି ପ୍ରାୟେ ଲକ୍ଷେ ପଦ ହୋଇଲା ସମ୍ପୂର୍ଣ୍ଣ
ବଳରାମ ଦାସ ସେବେ ଶ୍ରୀହରି ଚରଣ ।
ଜନନୀ ମୋର କମଳା ପିତା ମୋ ଜଗନ୍ନାଥ
ଈଶ୍ୱର ଦେବତା ମୋର ତାତ ଯେ ସାକ୍ଷାତ ।
ପାର୍ବତୀ ମାତ ମୋର ଅଟନ୍ତି ଯୁଗତେ ।
ଦୁଇ ମାତା ପିତା ମୋହର ସଂପ୍ରତେ
ଏତେବୋଲି ବଳରାମ ଦାସ କରନ୍ତି ବିନତି
ଶରଣ ରଖିଲେ ମୋତେ ଶାରଦାଦେବୀ ପତି ।
ଶ୍ରୀନୀଳାଚଳ ଜଗନ୍ନାଥ ମୋତେ ସାହାହେଲେ
କୋଳରେ ବସାଇ ଲଙ୍କାଗଡ଼ ଦେଖାଇଲେ ।
ସୁଜ୍ଞଜନମାନେ ହେ ନଧର ମୋର ଦୋଷ
ତୁମ୍ଭ ଚରଣେ ପ୍ରଣମ୍ୟ ବଳରାମ ଦାସ ।






ପ୍ରକାଶକ :

**ଧର୍ମଗ୍ରନ୍ଥ ଷ୍ଟୋର**

ଅଲିଶା ବଜାର, କଟକ - ୨

ଫୋନ୍ : (୦୬୭୧) ୨୬୦୮୨୯୬